# ଜଣେ ଶିକ୍ଷକ...

(ଆତ୍ମଚରିତ)

ଶଶିଭୂଷଣ ଦାଶ

ଦାଶ ପ୍ରକାଶନ
କିଶୋର ନିଳୟ, ଶିବାନନ୍ଦ ନଗର
ବରଗଡ଼ - ୭୬୮ ୦୨୮

# ଜଣେ ଶିକ୍ଷକ...
(ଆତ୍ମଚରିତ)

*ଲେଖକ :*
**ଶଶିଭୂଷଣ ଦାଶ**

*ପ୍ରକାଶକ :*
**ଦାଶ ପ୍ରକାଶନ**
କିଶୋର ନିଳୟ, ଶିବାନନ୍ଦ ନଗର
ବରଗଡ଼ - ୭୬୮ ୦୨୮
ଫୋନ୍ : ୦୬୬୪୬-୨୩୨୫୮୮

*ପ୍ରଥମ ପ୍ରକାଶ :* ୨୦୦୫

*ପ୍ରଚ୍ଛଦ :* ସଞ୍ଜୟ

*ଡି.ଟି.ପି. :*
ଶ୍ରୀ ରାକେଶ ଅଗ୍ରୱାଲ
ଆଇ ପ୍ଲାନେଟ
ହନୁମାନ କମ୍ପ୍ଲେକ୍ସ, ବରଗଡ଼

*ମୁଦ୍ରଣ:*
କାଳିଆ ପ୍ରିଣ୍ଟର୍ସ
କଟକ

*ମୁଦ୍ରଣ:* ଟ ୨୦୦

**JANE SIKSHYAKA**
(Atmacharita)

*Author :*
**Sashibhusan Das**

*Publisher :*
**Das Prakashan**
Kishore Niiaya
Sibanand Nagar
Bargarh - 768 028
Ph. : 06646-232588

*First Edition :* 2005

*Cover Design :* Sanjay

*D.T.P. :*
Sri Rakesh Agrawal
Eye Planet
Hanuman Complex, Bargarh

*Printer :*
Kalia Printers
Cuttack

**Price :** Rs. 200.00

# ଉତ୍ସର୍ଗ

ପରମପୂଜ୍ୟ ଗୁରୁଦେବ ସ୍ୱାମୀ ଚିଦାନନ୍ଦଜୀ ସରସ୍ୱତୀ
ଓ ପିତାମାତାଙ୍କ ସ୍ମୃତିରେ ।

ଲେଖକ


## କୃତଜ୍ଞତା ଜ୍ଞାପନ ଓ ସାହାଯ୍ୟ

ଗୁରୁଭକ୍ତି ରତ୍ନ ରାମେଶ୍ୱର ସୁବିଦ୍ଧି, ବରଗଡ଼

ଶ୍ରୀ ପ୍ରସନ୍ନ କୁମାର ଦାଶ, ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ, ରାଣାପ୍ରତାପ ହାଇସ୍କୁଲ, ବରଗଡ଼

ଶ୍ରୀ ଲମ୍ବୋଦର ସାହୁ, ଅବସରପ୍ରାପ୍ତ ସହକାରୀ ଶିକ୍ଷକ, ଜର୍କ ହାଇସ୍କୁଲ, ବରଗଡ଼

ଶ୍ରୀ ରତ୍ନାକର ମହାପାତ୍ର, ଅବସରପ୍ରାପ୍ତ ସହକାରୀ ଶିକ୍ଷକ, ଜର୍କ ହାଇସ୍କୁଲ, ବରଗଡ଼

ଶ୍ରୀ ବିଜୟ କୁମାର ଦାଶ, ଯନ୍ତ୍ରୀ, ମୁଖିଗୁଡ଼ା, କଳାହାଣ୍ଡି

ଡ଼ା. ନନ୍ଦକିଶୋର ଅଗ୍ରୱାଲ, ବରଗଡ଼

ଶ୍ରୀ ଶ୍ରୀବତ୍ସ ଦାଶ, ଶ୍ରୀ ଟଙ୍କଧର ପ୍ରଧାନ, ଶ୍ରୀ କୈଳାଶ ଛାପଡ଼ିଆ ଓ ଅନ୍ୟମାନେ ।


---





ଘର ପୂଜା ଆସ୍ଥାନ





ଅନିରୁଦ୍ଧ ସାହୁ
ଶିକ୍ଷାଗୁରୁ
୧୯୦୭-୧୯୮୪



ସ୍ୱାମୀ ଚିଦାନନ୍ଦ
ଦୀକ୍ଷାଗୁରୁ



ସ୍ୱାମୀ ଶିବାନନ୍ଦ
ପରମଗୁରୁ



ଁ ବାପା ବିହାରୀ ଦାଶ
୧୯୦୫-୧୯୭୦



ଁ ମା ପାର୍ବତୀ ଦେବୀ
୧୯୧୨-୧୯୬୯



ଁ ବଡ଼ ବା ପଦ୍ମଶ୍ରୀ
ଡ଼ା. କୃତାର୍ଥ ଆଚାର୍ଯ୍ୟ
୧୯୦୦-୧୯୭୯



ଶ୍ୱଶୁର୯ ଶିବଶଙ୍କର ଆଗ୍ନର୍ଯ୍ୟ ଏବଂ ଶାଶୁ ଶକୁନ୍ତଳା ଦେବୀ



ପଛ ଧାଡ଼ି (ଦଣ୍ଡାୟମାନ) - ତୃପ୍ତି, ସୁଦୀପ୍ତ, କୃପାସିନ୍ଧୁ, ଗିରୀଶଚନ୍ଦ୍ର, ବୁବୁନୁ, ପ୍ରଦୀପ୍ତ, ବାପୀ

୨ୟ ଧାଡ଼ି - ସବିତା, ବାସନ୍ତୀ, ଶୋଭା

୩ୟ ଧାଡ଼ି (ଚଉକିରେ) - ମାଧୁରୀ (କୋଳରେ ଅର୍ପଣ), ବାଦା ଶଶିବାବୁ, ପିଙ୍କୁ, ଯୋଗେଶ୍ୱରୀ (ମାମା) ରାଜକିଶୋର

୪ର୍ଥ ଧାଡ଼ି (ଆସୀନ) - ଲିକା, ମଧୁଛନ୍ଦା, ଲୁଲୁ, ମମତା, ସୁଧୀର

୫ମ ଧାଡ଼ି - ବୁନୁ, ନିପୁନ, ଲିମା, ଭଗ୍ଲୁ, ଅର୍ଚ୍ଚନା, ଟିକଲୁ, ଲିଜା, ନୁପୁର, ଅମ୍ରିତା, ସାହୁବାବୁଙ୍କ ଝିଅ ଲିପ୍ସୁ



ଶଶିବାବୁ, ଯୋଗେଶ୍ୱରୀ ଦେବୀ



ଆଶିଷ, ଝୁନୀ, ଭାବନା



ଭାଇ ଝସକେତନ ଓ ତା'ର ପରିବାର



ଶିବାନନ୍ଦ ଆଶ୍ରମ ପ୍ରତିଷ୍ଠା ଦିବସ
ସଭାପତି ଓ ଅନ୍ୟମାନେ



କର୍ଜ ହାଇସ୍କୁଲ, ବରଗଡ଼



୧୯୭୩ରେ ରାଜ୍ୟପାଳ ବି. ଡ଼ି. ଯତି ଓ
ଶ୍ରୀ ବିଧୂଭୂଷଣ ଦାସଙ୍କ ଗହଣରେ
ରାଜ୍ୟସ୍ତରୀୟ ପୁରସ୍କାରପ୍ରାପ୍ତି

ॐ

Om Sri Ganeshay Namah.
Om Aim Saraswatyai Namah.
Om Sri Satguru Paramatmana Namah.
Jai Sivananda! Jai Chidananda!

God Bless you! May this autobiography be published soon. It will inspire many readers. I wish the publication full success.

Hari Om TatSat.

SG.
ॐ
Chidananda Jayanti
24.09.2004

**ଅଭିମତ**

ଶ୍ରୀଯୁକ୍ତ ଶଶିଭୂଷଣ ଦାଶ ଜଣେ କୃତବିଦ୍ ଶିକ୍ଷକ। ଯେଉଁ ଉଚ୍ଚ ବିଦ୍ୟାଳୟରେ ସେ ରହିଛନ୍ତି, ଆଜି ବି ଛାତ୍ରମାନେ ଗଭୀର ଶ୍ରଦ୍ଧାର ସହ ତାଙ୍କ ପାଠ୍ୟଦାନ ଦକ୍ଷତାର ଆକର୍ଷଣୀୟ ଶୈଳୀ ତଥା ବୌଦ୍ଧିକ ଗାମ୍ଭୀର୍ଯ୍ୟକୁ ଭକ୍ତି ଓ ଶ୍ରଦ୍ଧାର ସହ ମନେପକାନ୍ତି। ଶିକ୍ଷା ପ୍ରଶାସନରେ ମଧ୍ୟ ସେ ଗଭୀର ଛାପ ଛାଡ଼ି ଯାଇଛନ୍ତି। ଏହି କ୍ଷେତ୍ରରେ ସେ ସ୍ମରଣୀୟ ହେବାର କାରଣ ହେଉଛି, ଯେଉଁ ପରିବେଶରେ ସେ ଜୀବନ ଯାତ୍ରା ଆରମ୍ଭ କଲେ, ସେଇଠି ଶିକ୍ଷକ ଓ ଛାତ୍ର ମଧ୍ୟରେ ବ୍ୟବସାୟିକ ସମ୍ପର୍କ ନ ଥିଲା, ଛାତ୍ର ପାଇଁ ଶିକ୍ଷକ ଥିଲେ ଆତ୍ମିକ ଉତ୍ତରଣର ମାଧ୍ୟମ।

ଶଶିବାବୁଙ୍କ ଆତ୍ମଜୀବନୀ, କେବଳ ନିଜ ଜୀବନର କାହାଣୀ ନୁହେଁ, ତାହା ଏ ଅଞ୍ଚଳର ସାତୋଟି ଦଶକର ମାନବୀୟ ସମ୍ପର୍କ, ପରମ୍ପରା, ଶିକ୍ଷା ଓ ସାମାଜିକ ଗତିଶୀଳତା ଉପରେ ଏକ ମନୋଜ୍ଞ ଆଲେଖ୍ୟ।

ଓଡ଼ିଆରେ ଏବଂ ବିଶେଷ କରି ଏ ଅଞ୍ଚଳରେ ଆତ୍ମଜୀବନୀ/ଜୀବନୀ ପୁସ୍ତକର ସଂଖ୍ୟା ଖୁବ୍ କମ୍। ସେହି ଦୃଷ୍ଟିରୁ ଶଶିବାବୁଙ୍କ ପୁସ୍ତକଟି ଓଡ଼ିଆ ଜୀବନୀ ସାହିତ୍ୟକୁ ଋଦ୍ଧିମନ୍ତ କରିବା ସଙ୍ଗେ ସତୁରୀ ବର୍ଷର ଅନୁଭବ ତଥା ଅତୀତର ଅବଲୋକନ କରିବା ଲାଗି ଶ୍ରଦ୍ଧାଳୁ ପାଠକଙ୍କୁ ସୁଯୋଗ ଦେବ।

ନାରାୟଣ ପୃଷ୍ଟେଠ
ବରଗଡ଼
ତା. ୧୦.୦୭.୦୫



# ସୂଚୀପତ୍ର

## ପ୍ରାକ୍ କଥନ

ମୁଁ କଅଣ ଲେଖିବି, କାହାପାଇଁ ଲେଖିବି ଓ କାହିଁକି ଲେଖିବି ? ଏ ବିଷୟରେ ଚିନ୍ତା କଲା ବେଳେ ମନରେ ସ୍ୱତଃ ଏକ ଭାବନାର ଉଦ୍ରେକ ହୁଏ - ସତେ ମୋର ଲେଖାଟି କ'ଣ ସମସ୍ତଙ୍କ ପ୍ରତି ଉପଭୋଗ୍ୟ ଓ ଉପାଦେୟ ହେବ ? ସେ ଯାହା ହେଉନା କାହିଁକି ବେଳେ ବେଳେ ବଂଧୁମାନଙ୍କ ମେଳରେ କଥା ପ୍ରସଙ୍ଗରେ ଆଲୋଚନା କଲାବେଳେ ଜୀବନ ରେ ଘଟିଥିବା କୌତୁକିଆ ଓ ସ୍ମରଣୀୟ ଘଟଣାଗୁଡ଼ିକ ସେମାନଙ୍କ ମଧ୍ୟରେ ପ୍ରସଙ୍ଗକ୍ରମେ ପ୍ରକାଶ କରାଯାଇଥାଏ - ସେତେବେଳେ ସେମାନେ ଆଗ୍ରହାନ୍ୱିତ ହୋଇ କହି ପକାନ୍ତି - "ଆପଣ ଆପଣଙ୍କ ଜୀବନୀ ଲେଖୁନାହାନ୍ତି କାହିଁକି ?" ମୁଁ ସେମାନଙ୍କ ପ୍ରସ୍ତାବ ଶୁଣି ଚୁପ୍ ରହେଁ । ପରବର୍ତ୍ତୀ ଅବସର ସମୟରେ ଚିନ୍ତା କରେଁ ଯେ, ସତେ କଅଣ ମୋର ଜୀବନୀ ଲେଖିବା ଯୁକ୍ତିଯୁକ୍ତ ହେବ ? ମୋର ଜଣେ ଶିକ୍ଷକ ବନ୍ଧୁ ଯେ କି ମୋର ଉପଦେଶ ଓ ପ୍ରେରଣା ପାଇ ନିଜେ ଉଦ୍‌ବୁଦ୍ଧ ହେଲେ ତଥା ନିଜର ଦୁର୍ଗୁଣ ଗୁଡ଼ିକ ପରିହାର କରି ଏକ ସାମାଜିକ ସୁମାନବ ରୂପେ ଚଳିବାକୁ ସ୍ଥିର କଲେ । ସେ ଭଦ୍ରଲୋକ ବିଗତ ୯-୩-୯୫ ର ଦିନ ଗୋଟାଏ ବନ୍ଧାଇ (୧୨ ନଂ) ଖାତାଟିଏ କିଣି ଆଣି ମୋତେ ଦେଲେ ଓ ମୋର ଜୀବନୀ ଲେଖିବାକୁ ସବିନୟ ଅନୁରୋଧ କରିଥିଲେ । ସେ ଦୃଢ଼ତାର ସହ ପ୍ରକାଶ କରିଥିଲେ ଯେ ଜୀବନୀ ର ପାଣ୍ଡୁଲିପି ପ୍ରସ୍ତୁତ ପରେ ମୁଦ୍ରଣ ଭାର ସ୍ୱୟଂ ବହନ କରିବେ । ଏହା ଶୁଣି ଅତ୍ୟନ୍ତ ଉତ୍ସାହିତ ହେଲି ଓ ପରବର୍ତ୍ତୀ ୩/୪ ମାସ ରେ ଲେଖାଟି ଶେଷ କରିବାକୁ ମନେ ମନେ ସ୍ଥିର କଲି । ତଦନୁଯାୟୀ ତାଙ୍କୁ ପ୍ରତିଶ୍ରୁତି ମଧ୍ୟ ଦେଇ ପକାଇଲି । ହେଲେହେଁ କେଜାଣେ କାହିଁକି ଏହି କାର୍ଯ୍ୟ ଆରମ୍ଭ କରିବାରେ ବିଶେଷ ଅନୁରକ୍ତ ହୋଇପାରିଲି ନାହିଁ ।

ଏହି ଜୀବନୀ ଲେଖିବା ପାଇଁ ଆଗରୁ ବହୁବାର ଅନ୍ୟାନ୍ୟ ହିତୈଷୀ ବନ୍ଧୁ ମାନେ ପ୍ରସ୍ତାବ ଦେଇ ମଧ୍ୟ ତାର ପରବର୍ତ୍ତୀ ଫଳର ଆଭାସ ପାଇନାହାନ୍ତି । ସେଥିରେ ଆର୍ଯ୍ୟପଦ୍ମ ✓ ବୀରବର ଦାଶ, ଇଉନାଇଟେଡ୍ ବେଙ୍କ, ବରଗଡ଼ ଶାଖାର ତତ୍କାଳୀନ ମେନେଜର ବନ୍ଧୁ ଶିଶିର ମିଶ୍ର ଓ ପଦ୍ମପୁର ର ସ୍ୱନାମଧନ୍ୟ ଗୁଣୀ, ଲେଖକ ତଥା ଏଡ୍‌ଭୋକେଟ୍ ଡ: ଗଙ୍ଗାଧର ଗୁରୁଙ୍କ ଭୂମିକା ଅନ୍ୟତମ ।

ଶେଷରେ ମୋର ବଦ୍ଧ ଧାରଣା ହେଲା ଯେ, ବନ୍ଧୁ ମାନଙ୍କଠାରୁ କୌଣସି ପ୍ରକାରେ ନିସ୍ତାର ମିଳିବାର ନୁହେଁ । ତେଣୁ ଜୀବନୀ ଲେଖାର ପ୍ରାରମ୍ଭିକ ବିଷୟବସ୍ତୁ ନିର୍ଦ୍ଧାରଣ ପାଇଁ ପ୍ରସ୍ତୁତିରେ ଲାଗିପଡ଼ିଲି । ଏହି ଜୀବନୀ ପୁସ୍ତକ ରଚନାର ମାନସିକ ଶୁଭାରମ୍ଭ କରାଯାଇଛି ୧୩.୩.୯୫ ସନ୍ଧ୍ୟାରେ । ଅବଶ୍ୟ କାର୍ଯ୍ୟ ଆରମ୍ଭ କଲେ

ଶେଷ କରିବା ବାଞ୍ଛନୀୟ । ତେଣୁ ଗୁରୁଙ୍କ ଉପରେ ଭରଷା ରଖି ଭଗବାନଙ୍କୁ ପ୍ରାର୍ଥନା - ଏହା ଅଚିରେ ସୁସଂପନ୍ନ ହେଉ । ପ୍ରକୃତିରେ ଏହି ପାଣ୍ଡୁଲିପିର ପ୍ରକାଶନ ପରେ ପାଠକ ମାନଙ୍କ ହାତରେ ପଡ଼ିଲେ ସେମାନେ ତାକୁ ପଢ଼ିବାକୁ କିଛିଟା ସମୟ ବିନିଯୋଗ କଲେ ମୋର ଶ୍ରମ ସାର୍ଥକ ହେଲା ବୋଲି ମନେ କରିବି । ଭଗବାନ ମୋତେ ଏହା ସଂପୂର୍ଣ୍ଣ କରିବାକୁ ପ୍ରେରଣା ଓ ମାନସିକ ବଳ ଦିଅନ୍ତୁ - ଏହାହିଁ ପ୍ରାର୍ଥନା । ଓଁ ଶାନ୍ତିଃ ।

ହରି ଓଁ ତତ୍ ସତ୍ ।

ଲେଖକ

(ଊନବିଂଶ ଶତାବ୍ଦୀ ର ତୃତୀୟ ଦଶକରେ ଦେଶର ସାମାଜିକ ପରିସ୍ଥିତି (୧୯୨୭ ର ପରବର୍ତ୍ତୀ କାଳ) ନିଜ ସ୍ମୃତିରୁ ଓ ବୟସ୍କ ମାନଙ୍କ ଠାରୁ ଶୁଣିଛି ।)

ପ୍ରୋକ୍ତ ବର୍ଣ୍ଣିତ ସମୟ ହେଉଛି ବ୍ରିଟିଶ ଶାସନର ପ୍ରାୟ ଚରମ ଭାଗ ବା ଶେଷ ପର୍ଯ୍ୟାୟ ।

ସେ ସମୟର ବିବରଣୀ ପ୍ରଦାନ କରିବାକୁ ହେଲେ ସାମାଜିକ, ଭୌଗୋଳିକ, ଅର୍ଥନୈତିକ ତଥା ନୈତିକ ବିଷୟବସ୍ତୁକୁ ଦୃଷ୍ଟିରେ ରଖି ବୟସ୍କ ବ୍ୟକ୍ତି ମାନଙ୍କଠାରୁ ଶୁଣି ମନେ ରଖିଥିବା ବିଷୟବସ୍ତୁକୁ ଆଧାର କରି ଲିପିବଦ୍ଧ ହୋଇଛି । କାରଣ ସେତେବେଳେ ବିଷୟବସ୍ତୁକୁ ଲିପିବଦ୍ଧ କରି କୌଣସି ଦୈନନ୍ଦିନୀ (Diary) ଲେଖା ହୋଇ ନ ଥିଲା ଯହିଁରୁ କ୍ରମାନୁଯାୟୀ ଘଟଣା ଗୁଡ଼ିକ ସଜାଯାଇ ପାରିବ । ଅଧୂନା ଯେତେ ସ୍ମରଣ କରାଯାଇଛି ତାକୁ ହିଁ ସର୍ବସ୍ୱ କରି ଏହି ଲେଖାର ପ୍ରାରମ୍ଭ ।

ଏହି ଗତ ୬୦/୭୦ ବର୍ଷ ମଧ୍ୟରେ ଦେଶର ଲୋକସଂଖ୍ୟା, ଖାଦ୍ୟ ପେୟ, ଆଚାର ବ୍ୟବହାର, ବେଶଭୂଷା, ଚାଲିଚଳଣ ଓ ଆୟବ୍ୟୟର ପରିସର ଏପରି ଭାବରେ ତଥାକଥିତ ଆଧୁନିକତାର କବଳରେ କବଳିତ ଯେ ସେ କାଳର ଅନୁଭୂତି ବିଷୟବସ୍ତୁ ଲେଖକ ସ୍ୱଚକ୍ଷୁରେ ଦର୍ଶନ, ଶ୍ରବଣ, ଉପଭୋଗ ତଥା ଅନୁଭବ କରିଛି ।

ସେତେବେଳର ଲୋକସଂଖ୍ୟା ବର୍ତ୍ତମାନର ତୁଳନାରେ ଯଥେଷ୍ଟ ନ୍ୟୁନ ଓ କିନିଷ ପତ୍ରର ବ୍ୟବହାରର ବହୁଳତା, ବିଭିନ୍ନତା, ଚାକଚକ୍ୟ ଓ ଲୋକଦେଖାଣିଆ ନ ଥିଲା । ଲୋକମାନେ ଅତି ସରଳ ଓ ନିରାଡ଼ମ୍ବର ଭାବରେ ଜୀବନ ଯାପନ କରୁଥିଲେ । ଯାନ ବାହନର ବ୍ୟବହାର ଆଦୌ ପ୍ରଚଳନ ନ ଥିଲା କହିଲେ ଚଳେ । ଏପରିକି ଧନୀ ଓ ମଧ୍ୟବିତ୍ତ ଲୋକମାନେ ଯାନବାହନ କହିଲେ ବଳଦ ଗାଡ଼ି, ଧନୀ ଲୋକେ ଘୋଡ଼ା ବା ଘୋଡ଼ା ଗାଡ଼ି ବ୍ୟବହାର କରୁଥିଲେ । ଗାଡ଼ି ମୋଟର ଏପରିକି ସାଇକଲର ବ୍ୟବହାର ମଧ୍ୟ ଯଥେଷ୍ଟ ପରିମାଣରେ ନ ଥିଲା । ମୋଟ ଉପରେ ସମସ୍ତ ପରମୁଖାପେକ୍ଷୀ ନ ରହି ଆତ୍ମନିର୍ଭରଶୀଳ ଥିଲେ । ସମାଜରେ ସାଧାରଣତଃ ଲୋକଙ୍କ ବ୍ୟବହାର୍ଯ୍ୟ ବସ୍ତୁ ଓ ଆବଶ୍ୟକତା ନ୍ୟୂନତମ ଥିଲା । ତେଣୁ ସେମାନେ ସୁରୁଖୁରୁରେ ଅନ୍ୟର ବିନା ସହାୟତାରେ କାଳ ଯାପନ କରୁଥିଲେ । ପରସ୍ପର ମଧ୍ୟରେ ସ୍ନେହ, ଶ୍ରଦ୍ଧା ଓ ମମତା ଥାଇ ଗାଁରେ ସାମାଜିକ ଚଳଣିରେ ବନ୍ଧା ହୋଇ ପରସ୍ପର ପ୍ରତି ସହାନୁଭୂତିଶୀଳ ମନୋଭାବରେ ଆବଦ୍ଧ ରହୁଥିଲେ । କୌଣସି ଗ୍ରାମ୍ୟ ପର୍ବପର୍ବାଣୀ, ଭଲ ମନ୍ଦ, ବିବାହ ବ୍ରତ ବା ମୃତ, ଅଶୌଚ କର୍ମରେ ସୁସଂପର୍କ ଓ ସହଯୋଗ ହେତୁ ଯେ କୌଣସି କର୍ମ ଏପରିକି ଶବଦାହ, ଝିଅ ପଠାଣି ବା ଅନ୍ୟାନ୍ୟ ସାମାଜିକ କାମରେ ଗାଁଯାକ ମିଳିମିଶି ଚଳାଇ ନେଉଥିଲେ ।

ଜଣେ ଶିକ୍ଷକ...

ଆଜିକାଲି ଭଳି ଗାଁ ଗହଳରେ ଉପୁଜିଥିବା ଅବାନ୍ତର ପରିସ୍ଥିତି, ଅସଦ୍‌ଭାବ, ହିଂସା, ପରଶ୍ରୀକାତରତା ଓ ଦୁଃସ୍ଥ ରାଜନୀତିର ପ୍ରାଦୁର୍ଭାବ ଦେଖା ନ ଥିଲା । ଲୋକେ ସତ୍ୟ, ଧର୍ମ, ନ୍ୟାୟ ଓ ଆଇନ, ଲୋକାଚାର ଆଦି ମାନିବାକୁ ଅଧିକ ପସନ୍ଦ କରୁଥିଲେ । କନିଷ୍ଠ ବା ଦୁର୍ବଳ ପ୍ରତି ସ୍ନେହ ଓ ସାହାଯ୍ୟ ତଥା ଗୁରୁଜନ ଓ ଜ୍ୟେଷ୍ଠ ମାନଙ୍କ ପ୍ରତି ଶ୍ରଦ୍ଧା, ଭକ୍ତି, ଭୟ ଓ ମାନ୍ୟ ପ୍ରଦର୍ଶନ ଓ ସାହାଯ୍ୟ ସହାନୁଭୂତି ପ୍ରଦର୍ଶନ ନିତ୍ୟ ନୈମିତ୍ତିକ ପ୍ରଥା ରୂପେ ପ୍ରଚଳିତ ଥିଲା । ଗାଁରେ ଗୌନ୍ତିଆ, ପଞ୍ଚ, ଝାଙ୍କର ଓ ଚୌକିଦାରଙ୍କ ସାହାଯ୍ୟରେ ଶାସନ କରୁଥିଲେ । ଚୋରୀ, ଡ଼କାୟତି ଓ ମାଲି ମକଦ୍ଦମାର ଏତେ ବେଶୀ ଦୌରାତ୍ମ୍ୟ ନ ଥିଲା । ଗ୍ରାମକୁ କୌଣସି ଅତିଥି ଅଭ୍ୟାଗତ ତଥା କୌଣସି ନୂଆଁ ଲୋକ ଆସିଲେ ସେମାନଙ୍କ ସଠିକ୍ ବିବରଣୀ ସଂଗ୍ରହ କରାଯାଇ ଚୌକିଦାର ବା ଝାଙ୍କର ଜରିଆରେ ସଂପୃକ୍ତ ଥାନାକୁ ଜଣାଇ ଦିଆଯାଉଥିଲା ।

ଗାଁ ଚାଟଶାଳୀରେ ଅବଧାନମାନେ ବା ଶିକ୍ଷକଗଣ ବିଶେଷତଃ ଦୂରଦୂରାନ୍ତରୁ ଆଗତ ବ୍ୟକ୍ତି ହେତୁ ତାଙ୍କ ରହଣୀ ଓ ଚଳଣୀ ସକାଶେ ଗ୍ରାମବାସୀଗଣ ସତର୍କ ଓ ସଜାଗ ରହୁଥିଲେ । ସେମାନେ ପଢୁଥିବା ଝିଅ ପୁଅ ମାନଙ୍କର ଶିକ୍ଷାଲାଭ ସକାଶେ ଛାତ୍ରଛାତ୍ରୀ ପ୍ରତି ଏକ ଟଙ୍କା, ଚାଉଳ ଏକ ତାମ୍ବି ଓ ତାଙ୍କ ଜମିରେ ଉତ୍ପାଦିତ ପନିପରିବା ବା ପର୍ବପର୍ବାଣୀରେ ଭଲମନ୍ଦ ଶିକ୍ଷକଙ୍କୁ ପ୍ରଦାନ କରୁଥିଲେ । ଯେପରିକି ଶିକ୍ଷକ ମହାଶୟ ତାଙ୍କ ପୁତ୍ରକନ୍ୟାଙ୍କ ପ୍ରତି ଆଗ୍ରହ ସହ ପାଠଧାନ କରିବେ । ସେମାନେ ଗ୍ରାମବାସୀଙ୍କ ଭଲମନ୍ଦ, ସୁବିଧା ଅସୁବିଧାରେ ସୁପରାମର୍ଶ ଓ ତାଙ୍କ ଆବଶ୍ୟକୀୟ ଚିଠିପତ୍ର ଓ ଦଲିଲ କାଗଜାତ ଲେଖାପଢ଼ା କରି ସାମୟିକ ସାହାଯ୍ୟ କରୁଥିଲେ ଓ ସମସ୍ତଙ୍କ ପ୍ରିୟଭାଜନ ହୋଇ ରହୁଥିଲେ । ଏମାନଙ୍କ ସମ୍ବନ୍ଧରେ ଏ ମତ ପୋଷଣ କରାଯାଇପାରେ ଯେ, ସେମାନେ Oliver Goldsmith ଙ୍କ ବର୍ଣ୍ଣିତ Deserted Village ର Village School Master ଙ୍କ ଉଦାହରଣ ପ୍ରଯୁଜ୍ୟ ।

ବର୍ତ୍ତମାନ ତତ୍କାଳୀନ ବ୍ୟବହୃତ ହେଉଥିବା ମୁଦ୍ରାର ଆଲୋଚନା ଅପ୍ରାସଙ୍ଗିକ ହେବ ନାହିଁ । ତତ୍କାଳୀନ ବ୍ରିଟିଶ ସରକାରଙ୍କ ସମ୍ରାଟଙ୍କ ବା ସାମ୍ରାଜ୍ଞୀଙ୍କ ମୁଣ୍ଡ ପ୍ରଚଳିତ ସମସ୍ତ ମୁଦ୍ରାରେ ଚିହ୍ନିତ ହେଉଥିଲା । ରୂପାରେ ଟଙ୍କା, ଆଠ ଅଣୀ, ଚାରଣୀ ତିଆରି ହୋଇଥିଲା । ସେ ମଧ୍ୟରେ ମହାରାଣୀ ଭିକ୍ଟୋରିଆ, ସପ୍ତମ ଏଡୁଆର୍ଡ୍, ପଞ୍ଚମ ଜର୍ଜଙ୍କ ମୁଣ୍ଡ ଅନ୍ୟତମ । ପ୍ରତ୍ୟେକ ଏକ ଟଙ୍କା ଏକ ତୋଲା/ ଭରି ଓଜନ ରୂପେ ପରିଗଣିତ ହେଉଥିଲା । ମୁଦ୍ରାର ପଛପଟେ ତାହା କେଉଁ ସାଲରେ ନିର୍ମିତ ତାର ସୂଚନା ପ୍ରଦାନ କରୁଥିଲା ।

ତତ୍କାଳୀନ ଏକ ଟଙ୍କା ମୁଦ୍ରାର ସମପରିମାଣ କ୍ଷୁଦ୍ରାଂଶ -

ରୂପାରେ ତିଆରି { ୨ଟି ଅଧୁଲି (ଆଠଅଣୀ/ ୫୦ ପଇସା)
୪ଟି ଚାରିଅଣୀ (ପଚିଶ ପଇସା)

ମିଶ୍ରିତ ଧାତୁରେ ତିଆରି { =୮ଟି ଦୁଇ ଅଣୀ
=୧୬ ଟି ଅଣୀ

ତମ୍ବାରେ ତିଆରି { =୩୨ଟି ଦୁଇ ପଇସା
=୬୪ଟି ପଇସା
=୧୨୮ଟି ଅଧଲା
=୧୯୨ଟି ପାହୁଲା

ସେତେବେଳେ ୧ ପଇସା = ୪ ବୋଡ଼ି ବା କେତେ କଉଡ଼ି ବା କଡ଼ା ସଙ୍ଗେ ସମାନ ଥିଲା । କାରଣ ସେତେବେଳେ ମୁଦ୍ରାର ସୁମୂଲ୍ୟ ଥିବାରୁ ତାର ଗୁରୁତ୍ୱ ଓ ଆବଶ୍ୟକତା ବୁଝିପାରୁଥିଲେ । ଅର୍ଥାତ୍ ୧ ପଇସାରେ ବଜାରରୁ ୪ଟି ଜିନିଷ କିଣି ଆଣିପାରୁଥିଲେ । କିନ୍ତୁ ତା'ପରେ ଷଷ୍ଠ ଜର୍ଜଙ୍କ ଟଙ୍କା ପ୍ରଚଳନ ପରେ ଆଉ ରୂପାରେ ଟଙ୍କା ତିଆରି ନ ହୋଇ ନିକେଲ ଓ ମିଶ୍ରିତ ଧାତୁରେ ତିଆରି ହେବାକୁ ଲାଗିଲା । କାରଣ ରୂପା, ତମ୍ବାର ଦର ଅନ୍ୟ ପ୍ରକାରେ ବ୍ୟବହୃତ ହେବାରୁ ଅଧିକ ମୂଲ୍ୟବାନ୍ ହେବାକୁ ଲାଗିଲା । ଧୀରେ ଧୀରେ କାଗଜ୍‌ରେ ନୋଟ୍ ଛପା ହୋଇ ଟ୧, ଟ୨, ଟ୫, ଟ୧୦, ଟ୧୦୦ ପ୍ରଚଳିତ ହେଲା । ଏବେ ତାହା ବୃଦ୍ଧି ପାଇ ଓ ପରିବର୍ତ୍ତିତ ହୋଇ ଟ୨୦, ଟ୫୦, ଟ୫୦୦ ଓ ଏବେ ଟ୧୦୦୦ ନୋଟ୍ ପ୍ରଚଳିତ ହେଲାଣି ।

ସେତେବେଳେ ପ୍ରଚଳିତ ଦୁଇ ପଇସି ଆକାରର ଅର୍ଥାତ୍ ଆଜିକାଲି ଦେଖାଯାଉଥିବା ବଡ଼ ଆକାରର ଏକ ଟଙ୍କା ଆକାରର ତମ୍ବାରେ ତିଆରି ଓ ସେଥିରେ ହନୁମାନ ମୂର୍ତ୍ତି ଖୋଦାଯାଉଥିଲା । ଶୁଣାଯାଏ ଏବେ ସେ ସବୁ ଧାତୁ ନିର୍ମିତ ପଇସା ବିଭିନ୍ନ କାର୍ଯ୍ୟରେ ବ୍ୟବହୃତ ପାଇଁ ବହୁ ଦରରେ ବିକ୍ରି ହେଉଅଛି ।

ପ୍ରାୟ ପଞ୍ଚମ ଦଶକ ପର୍ଯ୍ୟନ୍ତ ଏସବୁ ମୁଦ୍ରାର ପ୍ରଚଳନ ଥିଲା । କିନ୍ତୁ ୧.୪.୧୯୫୭ ଠାରୁ ଭାରତ ସରକାର ଦଶମିକ ମୁଦ୍ରା ଓ ଲମ୍ବ, ପ୍ରସ୍ଥ ପ୍ରଚଳନ ଆରମ୍ଭ କରିବାକୁ ସିଦ୍ଧାନ୍ତ ନେବାରୁ ଉପରୋକ୍ତ ମୁଦ୍ରାର ବଦଳରେ ୪ ଅଣୀ ବା ସୁଉକୀ ମରେ ୨୦ ପଇସି, ୧୦ ପଇସି, ୫ ପଇସି ଓ ୩ ପଇସି , ଦୁଇ ପଇସି ଓ ଏକ ପଇସାର ମୁଦ୍ରା ପ୍ରଚଳନ କଲେ । ଏସବୁ ପ୍ରଥମେ ନିକେଲ, ପିତଳରେ ପ୍ରସ୍ତୁତ କରାଯାଉଥିଲା କିନ୍ତୁ ମୁଦ୍ରାର ମୂଲ୍ୟ ତୁଳନାରେ ମୁଦ୍ରାରେ ତିଆରି ଧାତୁର

ମୂଲ୍ୟ ଅଧିକ ହେତୁ ସେସବୁ ପ୍ରାୟ ନିକେଲ୍ ଓ ଆଲୁମିନିୟମ ରେ ତିଆରି କରାଯାଉଅଛି । ପାଠକମାନଙ୍କ ଅବଗତି ନିମନ୍ତେ ଓ ତାଙ୍କର କୌତୁହଳ ପାଇଁ ତତ୍କାଳୀନ ବ୍ୟବହାର୍ଯ୍ୟ ବସ୍ତୁମାନଙ୍କ ଦରଦାମ ବିଷୟରେ ସମ୍ୟକ୍ ଧାରଣା ଦେବାପାଇଁ ସେଗୁଡ଼ିକ ନିମ୍ନରେ ପ୍ରଦତ୍ତ ହେଲା । ସେଗୁଡ଼ିକ ଜାଣି ଅନେକେ ମନେ କରିବେ ଯେ ଏସବୁ କପୋଳକଳ୍ପିତ ବା ଅଜଣା ରାଇଜର କାହାଣୀ । କିନ୍ତୁ ଏହା ନିରାଟ ସତ୍ୟ ଓ ଲେଖକର ଅନେକ ନିଜ ଅନୁଭୂତିର ବସ୍ତୁ ଅଟେ ।

ପ୍ରଥମେ ସୁନା, ରୂପାର ମୂଲ୍ୟରୁ ଆରମ୍ଭ କରାଯାଉ - ସୁନା ୧ ଭରିକୁ (ତୋଳା ଓଜନ) ଏବେ ପ୍ରାୟ ୧୧ ଗ୍ରାମ - ଟ୧୮ ରୁ ଟ୨୨ଙ୍କା । ରୂପା ୧ ଭରି କୁ ଟ୦।- ବା ଟ।୯(ଅର୍ଥାତ୍ ୩୭ ପଇସା) । ଧାନ ୧ ଟଙ୍କାରେ - ୩ ଖଣ୍ଡି - ୬୦ ତାମ୍ବି (ଓଜନ ପ୍ରାୟ ୧୦୦ ଟଙ୍କା = ୧ ତାମ୍ବି), ମୁଗ ୮ ତାମ୍ବି, ଅଟା ୧୦।୧୨ ସେର (ସେରକୁ ୮୦ ତୋଳା), ଭଲ ଘିଅ ୧ ସେର କୁ ଦଶ ଅଣା (୬୨ ପଇସା), ଚିନି ୧ ସେରକୁ ପାଞ୍ଚ ଅଣା (୩୧ ନୂ: ପ:), କିରାସିନି ତେଲ ଲିଟର (୧ ବୋତଲକୁ) ଦୁଇ ଅଣା (୧୨ ନୂ: ପ: ), ଲୁଣ ଟଙ୍କାରେ ୩୦।୪୦ ସେର (୧ ମହଣ ପର୍ଯ୍ୟନ୍ତ ), ପନିପରିବା ଟ.।ରେ ପ୍ରାୟ ୧ ଭାର (୨ ଭୁଗା ବା ଡାଲାରେ ଜଣେ ଲୋକ ବୋହି ପାରିବା ଭଳି ) ମିଳୁଥିଲା ।

ଜଳଖିଆ ଆଦିର ଦାମ -

ରସଗୋଲା, ପେଡ଼ା ର ଦାମ ଗୋଟାକୁ ଟ. (୬ ପାହୁଲା ବା ୨ପଇସା)

ପୁରୀ ଗୋଟାକୁ ୧ ପଇସା (ତରକାରୀ/ଶିରା ସହ)

ମୁଗବରା/ ପକୋଡ଼ି ୧ ଦନାକୁ ଏକ ପଇସା

ମିଠାଇ, ଗଜା, ରସଗୋଲା, ଜିଲାବି, ବାଲୁସାଇ ଆଦି ସବୁ ମିଶି ଯାତ୍ରା ପରବ ମାନଙ୍କରେ ସେର ପ୍ରତି ଛଅ ଅଣା ରୁ ଦଶ ଅଣା(୩୭ ନୂ: ପ: ରୁ ୬୨ ନୂ: ପ: ପର୍ଯ୍ୟନ୍ତ) ପର୍ଯ୍ୟାପ୍ତରେ ମିଳୁଥିଲା । ଅବଶ୍ୟ ୧୯୬୦ ସାଲ ପର୍ଯ୍ୟନ୍ତ ସୁନ୍ଦରଗଡ଼ରେ ହାଇସ୍କୁଲ ନିକଟସ୍ଥ ଏକ ଗଳିରେ ଥିବା ଗୁଡ଼ିଆ ଦୋକାନରେ ଜିଲବି ୧ ପଇସାରେ ଗୋଟିଏ ବା ଟଙ୍କାରେ ୬୪ଟା ପର୍ଯ୍ୟନ୍ତ ମିଳୁଥିଲା । ଏସବୁ ନିଜେ ଉପଭୋଗ କରିଛୁଁ । କାରଣ ୧୯୬୦ ସାଲରେ ଆମ କର୍ଜ ହାଇ ସ୍କୁଲ ସୁନ୍ଦରଗଡ଼ - ସମ୍ବଲପୁର ସୁନ୍ଦରଗଡ଼ ଶିକ୍ଷାମଣ୍ଡଳର ଅନ୍ତର୍ଭୁକ୍ତ ଥିବାରୁ ଆମ୍ଭେମାନେ ସୁନ୍ଦରଗଡ଼ ପର୍ଯ୍ୟନ୍ତ ଯିବାକୁ ପଡୁଥିଲା ବିଭାଗୀୟ କାମରେ ।

ଲୁଗାପଟାର ଦରଦାମ - ଧୋତି ୭ ହାତିଆ ଖଣ୍ଡକୁ ଏଗାର ଅଣା ଓ ୯/୧୦ ହାତର ଧୋତି ଏକ ଟଙ୍କାରୁ ଏକ ଟଙ୍କା ଦୁଇ ଅଣା ପର୍ଯ୍ୟନ୍ତ ମିଳୁଥିଲା - ସେଗୁଡ଼ିକ ବନ୍ଧୁକ ଛାପ, ଶାଢ଼ୀ ଖଣ୍ଡ ପ୍ରତି (କଟକପରି, ଚନ୍ଦନକୁରା, ଗରଇଲ) ଟ.୧ ବା ବିଜେପୁର ୧୦ ଫାଲିଆ ଶାଢ଼ୀ ଟ.୨ ରୁ ଟ. ୨୫ ( ପର୍ଯ୍ୟନ୍ତ ମିଳୁଥିଲା ।

ଏଠାରେ ସୂଚନାଯୋଗ୍ୟ ଯେ ସେତେବେଳେ ସ୍ତ୍ରୀମାନଙ୍କର ଶାଢ଼ୀ ମଧ ଧଳା ସୂତାରେ ମିଳୁଥିଲା । କିନ୍ତୁ ମାଷ୍ଟର ଦୁକାନର ପ୍ରତିଷ୍ଠାତା ୰ ପଦ୍ମଶ୍ରୀ (ପୁରୁଣା ରାୟ ସାହେବ) କୃତାର୍ଥ ଆଚାର୍ଯ୍ୟଙ୍କ ପ୍ରଚେଷ୍ଟାରେ ରଙ୍ଗୀନ ଶାଢ଼ୀ ଉପଲବ୍ଧ ହେଲା । ଏବେ ତାହାର ଖ୍ୟାତି ଆନ୍ତର୍ଜାତିକ ସ୍ତରରେ ପହଞ୍ଚି ସମ୍ବଲପୁରୀ ବସ୍ତ୍ରାଳୟ ସମବାୟ ସସୀମ ତନ୍ତଶିଳ୍ପ ସଂସ୍ଥାକୁ ସୁପରିଚିତ କରାଇଛି । ଏବେ ତାଙ୍କ ଦାୟାଦଗଣ ତାର ସୁଖ୍ୟାତି ଦିଗରେ ତତ୍ପର ହେବା ଉଚିତ । କମିଜ କନା ଗଜ ପ୍ରତି - ଦୁଇ ଅଣା ଛ ପାହୁଲାରୁ ତିନି ଅଣା ପର୍ଯ୍ୟନ୍ତ ବା ଏକ ଟଙ୍କା ଚାରି ଅଣା ପର୍ଯ୍ୟନ୍ତ ବିଲାତି ଉଚ୍ଚ ଧରଣର କନା ପ୍ରତି ଗଜରେ (୧୦୦୦୦୦) ନମ୍ବର ଚିହ୍ନିତ ଟୁଇଲ ଗଜପ୍ରତି ଟ. ୧ ବା ଟ. ୧। ଥିଲା । ମାର୍କିନ୍ କନା ବା ଲଙ୍ଗ କ୍ଲଥ ଗଜ ପ୍ରତି ଛଅ ପଇସା ରୁ ତିନି ଅଣା ଛଅ ପାହୁଲା ପର୍ଯ୍ୟନ୍ତ ବିକ୍ରି ହେଉଥିଲା । ଘୋଡ଼ାଇ ହେବା ଚାଦର ଦଶ ଅଣା ରୁ ବାର ଅଣା ବା ଦେଢ଼ୀ (ଦେଢ଼ ଗୁଣ ଚଉଡ଼ାର ମୋଟା ଚଦର), ମଲେଦା ପ୍ରଭୃତି ଟ୧, ବା ଟ. ୧୪ ରେ ମିଳୁଥିଲା ।

ସେତେବେଳେ ନାଟକରେ ବ୍ୟବହୃତ ସିଲ୍‌କ ଶାଢ଼ୀ ଖଣ୍ଡ ପ୍ରତି ଟ. ୨ । ରୁ ଟ. ୩ ପର୍ଯ୍ୟନ୍ତ ଓ ରଜା ଅଭିନୟ କରୁଥିବା ବ୍ୟକ୍ତିଙ୍କ କରିଲଗା କୋଟ ଟ.୪ ରୁ ଟ.୫ରେ ହାଫ୍ ଓ ଟ. ୬/୭ଙ୍କାରେ ପୁରା କୋଟ୍ ମିଳୁଥିଲା ।

ସାଇକେଲ ଗୁଡ଼ିକ ବିଦେଶୀ (କାରଣ ସେତେବେଳେ ଆମ ଦେଶରେ କାରଖାନା ନ ଥିଲା) ହାରକ୍ୟୁଲସ୍, ବିଏସ୍‌ଏ ଏବଂ ରେଲଓ୍ୱେ, ହମ୍ବର ଆଦି ଟ.୧୮/୨୦ରୁ ଆରମ୍ଭ କରି ଟ. ୨୫ ଓ ଟ. ୩୦ ପର୍ଯ୍ୟନ୍ତ ଥିଲା । ପୁରୁଣା ସାଇକେଲର ଦାମ୍ ପ୍ରାୟ ଟ. ୧୨/୧୩ ରେ ମିଳୁଥିଲା । ମୋର ଜାଣିବାରେ ମୋର ସାନ କାକା ବଡ଼ବାପାଙ୍କ ପାଇଁ ଟ. ୧୨ ରେ ଏକ ପୁରୁଣା ସାଇକଲ କିଣି ଆଣିଥିଲେ ।

ବଳଦ ହଳକୁ ଟ. ୨୦ ରୁ ଟ. ୫୦ ପର୍ଯ୍ୟନ୍ତ ମିଳୁଥିଲେ । କାରଣ ଆମେ ଗୋଟିଏ ଲବାନ୍ ଜାତୀୟ ହଳକୁ ଟ. ୨୨ ରେ ଓ ୧୯୪୨ ସାଲରେ ଏକ ୪/ ୬ ଦାନ୍ତିଆ ବଛାହଳକୁ ଟ. ୫୨ ରେ କିଣିଥିଲୁ ।

ପଟେ କୁକୁଡ଼ାର ଦାମ୍ ଟ./ ରୁ ଦଶ ପଇସା ପର୍ଯ୍ୟନ୍ତ, ଛେଳି ଓ ମେଁଢ଼ାର ଦାମ୍ ଟ. ୨।। ରୁ ଟ. ୩/୪ ପର୍ଯ୍ୟନ୍ତ ଥିଲା । ଅର୍ଥାତ୍ ମାଂସ ଆଦି କିଣିବାକୁ ହେଲେ ଆଜି ଭଳି କଂସେଇ ଦୋକାନ ନ ଥାଇ କେଇଜଣ ମିଶି ଛେଳି ବା ମେଁଢ଼ାକୁ କିଣି ତାକୁ ମାରି (ଭେକି କରି) ଭାଗ ଭାଗ କରି ନିଜ ନିଜ ମଧରେ ଘରେ ରାନ୍ଧିବା ପାଇଁ ନେଉଥିଲେ । ସେହି ପ୍ରତ୍ୟେକ ଭାଗର ଦାମ୍ ଦୁଇ ଅଣା ବା

ତିନି ଅଣା ଥିଲା ଓ ତାହା ଗୋଟିଏ ପରିବାର ପାଇଁ ଚଳି ଯାଉଥିଲା । ଆଜିକାଲି ମାଂସ ୧ କେଜିକୁ ଟ. ୧୦୦ ବା ତା'ଠୁଁ ବେଶୀ, ପ୍ରାୟ ଟ. ୧୨୦ ପର୍ଯ୍ୟନ୍ତ ।

ଦିଆସିଲି ୧ ପଇସାରେ ୨ ପୁଡ଼ା ଓ ତା ସଙ୍ଗେ ଏକ ଛୁଞ୍ଚି । ପାନ ବିଡ଼ା- ୪ ବିଡ଼ାକୁ ୧ ପଇସା, ୨ ବିଡ଼ାକୁ ୧ ପଇସା ଓ କଟକରେ ବହୁଦିନ ପର୍ଯ୍ୟନ୍ତ ପ୍ରାୟ ପଞ୍ଚମ ଦଶକ ତକ, ୧ ପଇସାରେ ୪ ବିଡ଼ା ମିଳୁଥିଲା ।

ଚମଡ଼ାରେ ତିଆରି ସାଧାରଣ ଦେଶୀ ଚପଲ ସାରକୁ ଦଶ ପଇସା ବା ତିନି ଅଣାରେ, ଯୋତା ୧ ସାରକୁ ଦଶ ଅଣା, ରବର ଯୋତା ସାରକୁ ତିନି ଅଣା ବା ତିନି ଅଣା ଛଅ ପାହୁଲା ମିଳୁଥିଲା । ୧୯୪୭ ସାଲରେ ମୋର ବିବାହ ବେଳେ ବାଟା ପୁରା ଯୋତା ଟ. ୧୦ ରେ କିଣାଯାଇଥିଲା ।

ଡ଼ାକଘର କାର୍ଡ଼ ପଇସେ, ଦୁଇ ପଇସା ବା ପାଞ୍ଚ ପଇସା, ଲଫାଫା ଏକ ଅଣା ପର୍ଯ୍ୟନ୍ତ ମିଳୁଥିଲା । ତଦନୁସାରେ ରେଜିଷ୍ଟ୍ରି ଖର୍ଚ୍ଚାଦି ପ୍ରଚଳିତ ଥିଲା । ମନିଅର୍ଡ଼ର ଫର୍ମ ଓ ରେଜିଷ୍ଟ୍ରି ଚିଠି ପ୍ରାପ୍ତି ସ୍ୱୀକୃତି ଫର୍ମ (A.D.) ଆଦି ମାଗଣାରେ ମିଳୁଥିଲା । ସେସବୁର ଦୁରୁପଯୋଗ ହେତୁ ସେଗୁଡ଼ିକ ଏବେ ମୂଲ୍ୟ ଦେବାକୁ ପଡୁଛି ।

ଏପରି ଭାବରେ ବିଚାର କଲେ ସେତେବେଳର ଦରଦାମ ଓ ଆଜିକାଲିର ପ୍ରଚଳିତ ଦର ଆକାଶ ପାତାଳ ହେଲେହେଁ ଏସବୁ ନିରାଟ ସତ୍ୟ ଓ ଅଙ୍ଗାଙ୍ଗୀଭୂକ୍ତ ଘଟଣା ।

ଯଦିଓ ସେତେବେଳେ ଯାତାୟତ ପାଇଁ ଯାନବାହନର ଏତେ ସୁବିଧା ସୁଯୋଗ ନ ଥିଲା ତଥାପି ସେ କାଳର ବସ୍ ଭଡ଼ା ଓ ରେଳଭଡ଼ା, ପେଟ୍ରୋଲ ଦରଦାମ୍‌ର ଆଭାସ ଦେବା ଯୁକ୍ତିଯୁକ୍ତ ମନେ ହୁଏ । ଏ ଶତାବ୍ଦୀର ୪ର୍ଥ ଦଶକରେ ବରଗଡ଼ରେ କଛି ମୋଟର କଂପାନୀ ଓ ସମଲେଶ୍ୱରୀ ମୋଟର କଂପାନୀ ନାମରେ ଦୁଇଟି ସଂସ୍ଥାର ବସ୍ ଚଳୁଥିଲା । ସେହି ଉଭୟ ଘରୋଇ କଂପାନୀ ମଧ୍ୟରେ ଯାତ୍ରୀ ନେବାକୁ ଯଥେଷ୍ଟ ପ୍ରତିଯୋଗିତା ଲାଗିଥିଲା । ଏପରିକି ଯାତ୍ରୀ ମାନଙ୍କୁ ନିଜ ଗାଡ଼ିରେ ବସାଇ ନିର୍ଦ୍ଧାରିତ ସ୍ଥାନକୁ ନେଇଯିବାକୁ ମାଗଣା ମିଳୁଥିଲା ଓ ମଝିରେ ମଝିରେ ରୁମାଲର ଉପହାର ବା ଜଳଖିଆ ଖାଇବାକୁ ଯାତ୍ରୀମାନଙ୍କୁ ଦିଆଯାଉଥିଲା । ଏସବୁ ଥିଲା ନିତ୍ୟ ନୈମିତିକ୍ କୌତୁହଳ ପୂର୍ଣ୍ଣ ଘଟଣା ।

ମୋର ଜାଣିବାର ଦିନଠାରୁ ଅର୍ଥାତ୍ ୧୯୪୨ ପରଠାରୁ ବରଗଡ଼ରୁ ସମ୍ବଲପୁର ଯିବାପାଇଁ ମୁଣ୍ଡୋଘାଟ ପର୍ଯ୍ୟନ୍ତ ବସ୍‌ରେ ଯିବାକୁ ହେଲେ ଗାଡ଼ି ଭଡ଼ା (୨୯ ମାଇଲକୁ) ଦଶ ଅଣାରୁ ବଢ଼ି ୧୯୪୪/୪୬ ରେ ଚଉଦ ଅଣା ହେଲା ।

କାରଣ ସେତେବେଳେ ମହାନଦୀରେ ପୋଲ ବନ୍ଧା ହୋଇ ନ ଥିବାରୁ ମୁଣ୍ଡୋଘାଟରୁ ଡଙ୍ଗା ଯୋଗେ ଅପର ପାର୍ଶ୍ୱକୁ ଯିବାକୁ ପଡୁଥିଲା ସମ୍ବଲପୁର । ସମ୍ବଲପୁରରୁ ମେରାମଣ୍ଡଳୀ ବସ୍ ଭଡ଼ା ଟ. ୨।। (ଓ ମେରାମଣ୍ଡଳୀରୁ କଟକ ରେଳଭଡ଼ା ଏକ ଟଙ୍କା ଦୁଇ ଅଣା ଥିଲା । ଏପରି ଭାବେ ବରଗଡ଼ରୁ କଟକ ଯିବାକୁ ହେଲେ ବାଟରେ ଖାଦ୍ୟ ଖର୍ଚ୍ଚକୁ ମିଶାଇ ମୋଟରେ ଟ. ୫ ପଡୁଥିଲା ।

ସମ୍ବଲପୁରରୁ ମେରାମଣ୍ଡଳୀ ଯିବାକୁ ହେଲେ ଆଗରୁ ବସ୍‌ରେ ସ୍ଥାନ ସଂରକ୍ଷଣ ପାଇଁ ନିଜର ନାମ ଲେଖାଇବାକୁ ପଡୁଥିଲା । ଏବେ ସବୁ ଭଡ଼ା ଅଭିବୃଦ୍ଧି ଘଟି ଆକାଶଛୁଆଁ ଦରରେ ପହଞ୍ଚିଲାଣି । ଜନସଂଖ୍ୟାର ଅଭିବୃଦ୍ଧି ସଂଗେ ସଂଗେ ଯାତାୟାତର ଚାହିଦା ବଢ଼ିଛି । ଏ ସଂକ୍ରାନ୍ତରେ ପେଟ୍ରୋଲର ଦରଦାମ ସୂଚନା ଦେବା ଆବଶ୍ୟକ ମନେ ହୁଏ ।

ପେଟ୍ରୋଲର ଗେଲେନ୍ ପ୍ରତି (୪.୫ ଲିଟର) ଟ.୧ ରୁ ଟ. ୧୨ ପର୍ଯ୍ୟନ୍ତ ଥିଲା । ଏବେ ତାହା ଲିଟର ପ୍ରତି ଟ. ୪୦ ପର୍ଯ୍ୟନ୍ତ ଗଲାଣି । ମଝିରେ ଡିଜେଲ୍ ର ଦାମ୍ ମଧ ବଢ଼ି ବଢ଼ି ଲିଟର ପ୍ରତି ୧୦ ପଇସାରୁ ଏବେ ଟ. ୨୯/୩୦ ହେଲାଣି ।

ପ୍ରଥମରେ ବରଗଡ଼ରେ ଯେତେବେଳେ ଟେକ୍ସୀ ଭଡ଼ାରେ ଚାଲିଲା ସେତେବେଳେ କିଲୋମିଟର ପ୍ରତି ଟ. ୦.୩୭ ନୂ:ପ: ଓ ବରଗଡରୁ ସମ୍ବଲପୁର ଭଡ଼ା ଯାତ୍ରୀ ଜଣକୁ ଟ. ୧୨ ରୁ ଟ. ୨, ଟ. ୨।, ଟ. ୨୨ , ଟ. ୩ ଓ ଟ. ୫ ପର୍ଯ୍ୟନ୍ତ ଦେବାକୁ ପଡୁଥିଲା । ଏବେ ତେଲର ମୂଲ୍ୟ ବଢ଼ିବା ଯୋଗୁଁ ଆଉ ଟେକ୍ସୀ ଭଡ଼ାରେ ଚାଲୁନାହିଁ । ତାର ସଙ୍ଗେ ତାଳ ଦେବା ପାଇଁ ଟ୍ରେକର୍, ଜିପ୍ ଆଦି ଓ ଅନ୍ୟାନ୍ୟ ସ୍ୱଳ୍ପ ଯାତ୍ରୀବାହୀ ୪୦୭ ଗାଡ଼ି ଆଦି ଚାଲୁଛି । ଏସବୁର ତୁଳନାତ୍ମକ ଦରଦାମ ବିଚାର କଲେ ନିଜକୁ ମଧ ଆଶ୍ଚର୍ଯ୍ୟ ହେବାକୁ ହୁଏ ଓ ସ୍ୱତଃ ମନେ ହୁଏ - ସତେ ସମୟ କେଡ଼େ ବଳବାନ୍ ।

## ବଂଶାବଳୀ ଓ ଜନ୍ମ:-

ଅବିଭକ୍ତ ସମ୍ବଲପୁର ଜିଲ୍ଲାର ବରଗଡ଼ ସବ୍‌ଡିଭିଜନ୍‌ର (ଅଧୁନା ବରଗଡ ଜିଲ୍ଲା) ବରଗଡ ଥାନାନ୍ତର୍ଗତ ବେହେରା ଏକ କ୍ଷୁଦ୍ର ଗ୍ରାମ । ଏହା ବରଗଡ-ବଲାଙ୍ଗୀର ରାଜପଥର ୮ କିଲୋମିଟର ଦୂରରେ ବେହେରା ଉପକେନାଲ କୂଳରେ ରାଜପଥ ଠାରୁ ପ୍ରାୟ ୨ କିଲୋମିଟର ଅନ୍ତରରେ

ଅବସ୍ଥିତ । ଏହାର ଚତୁର୍ଦ୍ଦିଗରେ ଆମ୍ବତୋଟା ଓ ଅନ୍ୟାନ୍ୟ ଅନାବନା ବୃକ୍ଷ ଘେରି ରହିଥିବାରୁ ତାହା ରାଜପଥରୁ ଦୃଶ୍ୟ ହୁଏ ନାହିଁ । ଏହାର ପୂର୍ବ ଭାଗ ରେ ଖୁଣ୍ଟପାଲି, ଦକ୍ଷିଣରେ ବାଗ୍‌ବାଡ଼ି ଦୁଇଟି ବଡ଼ ଗ୍ରାମ, ଉତ୍ତରରେ ପଲସାଜୋର ନାମରେ ଏକ କ୍ଷୁଦ୍ର ନାଳ ପ୍ରବାହିତ । ପଶ୍ଚିମରେ ବରଗଡ - ବଲାଙ୍ଗୀର ରାଜପଥ ଓ ବାଲିଯୋରୀ ଓ କୁସନପୁରୀ ଗ୍ରାମ । ନାଳରେ ବର୍ଷା ଦିନ ବ୍ୟତୀତ ଅନ୍ୟ ଋତୁରେ ଜଳ ପ୍ରବାହିତ ହେଉ ନ ଥିଲା । ଏବେ ହୀରାକୁଦ ଡେମ୍ ହେବା ଦିନ ଠାରୁ ୧୯୫୭ ମସିହା ପରଠାରୁ ଅନବରତ ଜଳସ୍ରୋତ ଦେଖାଯାଏ । ଏହି ଗ୍ରାମର (ବେହେରା) ଲୋକସଂଖ୍ୟା ପ୍ରାୟ ୬୦୦ ରୁ ୮୦୦ ମଧ୍ୟରେ ଥିଲା । ପରିବାର ସଂଖ୍ୟା ପ୍ରାୟ ୨୦୦ ରୁ କମ୍ । ଏଠାରେ ବ୍ରାହ୍ମଣ ୩/୪ ଘର, କୁଲତା ୫୦ ଘର, ଗଉଡ଼ ୪୦/୫୦ ଘର, ସହଁରା ୫୦/୬୦ ଘର ବାସ କରୁଥିଲେ । ଏହି ଗ୍ରାମର ଦୁଇଟି ପଡ଼ା - ଖମାରୀ ଟିକ୍ରା ଓ ପ୍ରଭାକର ଟିକ୍ରା ୨ଟି ଅଲଗା ଅଛି ।

ସେଥିରେ ପ୍ରାୟ ୨୦/୩୦ ପରିବାର ଓ ଲୋକସଂଖ୍ୟା ପ୍ରାୟ ଏକ ଶହ ପର୍ଯ୍ୟନ୍ତ ଥିଲା । ଏମାନଙ୍କ ମଧ୍ୟରେ କୁଲିତା, ଗୌଡ଼ ଓ ବ୍ରାହ୍ମଣ ଘରକୁ ଛାଡ଼ି ଦେଲେ ବାକି ମାନେ ଜମିହୀନ ସୁଖ୍‌ବାସୀ ଥିଲେ । ସେମାନେ ଗ୍ରାମର ସ୍ୱଚ୍ଛଳ ପରିବାରର ଚାଷ ଜମିରେ ସହଯୋଗ କରି ଭୁତି ବା ମଜୁରୀ ପାଇ ଗୁଜୁରାଣ ମେଣ୍ଟାଉଥିଲେ । ଗ୍ରାମର ଗୌନ୍ତିଆ ମଧ୍ୟ କୁଲିତା ଜାତିର । ତାଙ୍କ ନାମ ୰ ଜିତେନ୍ଦ୍ରିୟ ସାହୁ ଓ ସେ ଏ ଅଞ୍ଚଳରେ ତତ୍କାଳୀନ ପ୍ରତିଷ୍ଠିତ ବ୍ୟକ୍ତି ଥିଲେ । ବ୍ରାହ୍ମଣ ପରିବାର ମଧ୍ୟରେ ୨/୩ ଟି ପରିବାର ବଳରାମ ଗୋତ୍ରୀ ଓ ଅନ୍ୟଟି ଉତ୍କଳୀୟ କାଶ୍ୟପ ଗୋତ୍ରୀ ଦାଶ ପରିବାର । ଏହି ପରିବାରର ସେ ସମୟର ମୁଖ୍ୟ ୰ ଶ୍ରୀ ରଘୁନାଥ ଦାଶ - ଲେଖକଙ୍କର ପିତାମହ ଥିଲେ । ରଘୁନାଥ ଦାଶଙ୍କ ପିତା ବ୍ରଜବଂଧୁ ଦାଶ, ମାତା ଜାନକୀ ଦେବୀ ପଣ୍ଡା ପରିବାର ( ସଁୟା - ତୁରୁଙ୍ଗା), ବ୍ରଜବଂଧୁ ଦାଶଙ୍କ ପିତା ପରମାନନ୍ଦ ଦାଶ, ସ୍ତ୍ରୀ - ଅମୃତୀ ଦେବୀ (ମେଲଛାମୁଣ୍ଡା ମିଶ୍ର ପରିବାର), ପରମାନନ୍ଦଙ୍କ ପିତା ଲବଣିଧର ଦାଶ, ସ୍ତ୍ରୀ କ୍ଷୀରବତୀ ଦେବୀ, ଲବଣିଧର ଦାଶଙ୍କ ପିତା ଗୟାଧର ଦାଶ, ସ୍ତ୍ରୀ ତ୍ରିବେଣୀ ଦେବୀ ଥିଲେ । ଏମାନେ ସମସ୍ତେ ପ୍ରାୟ ମେଲଛାମୁଣ୍ଡା ଥାନାର ତାଲପାଲି ଗ୍ରାମରେ ବାସ କରୁଥିଲେ । ବାପାଙ୍କ ପିତୃପିତାମହ ପୁରୀ ଜିଲ୍ଲା ବୀର ରାମଚନ୍ଦ୍ରପୁରରୁ ଆସିଥିଲେ ବୋଲି ଶୁଣାଯାଏ ।

ବ୍ରଜବଂଧୁ ଦାଶ ଓ ତାଙ୍କ ପତ୍ନୀ ଓ ଅନ୍ୟ ପୁତ୍ର ରାଜକୁମାର ଦାଶଙ୍କ ସହ ବୋଡ଼ାସମ୍ବରର ତାଲପାଲି ଗ୍ରାମରେ ଅବସ୍ଥାନ କରୁଥିଲେ ।

ଉପରୋକ୍ତ ବଂଶୋଦ୍ଭବ ପୁତ୍ର କନ୍ୟା ଗଣ ଏବେ ବ୍ରାହ୍ମଣମାଲ - ଥାନା- ମେଲଛାମୁଣ୍ଡା, ବରଗଡ ଥାନା ଅନ୍ତର୍ଗତ ବେହେରା, ଖୁଣ୍ଟପାଲି, ବୀରମାଲ, ବରଗଡ, ସରସରା, ଡୁରୁଙ୍ଗା, ସୋହେଲା ଓ ଗୁଡ଼େଶିରାରେ ଅବସ୍ଥାନ କରୁଅଛନ୍ତି । ଏମାନଙ୍କ ପରିବାରବର୍ଗଙ୍କ ସୂଚନା ଦେବାକୁ ହେଲେ ଏକ ଲମ୍ବା ତାଲିକା କରିବାକୁ ହେବ । ତଥାପି ଦାଶ ବଂଶ ପାରିବାରିକ ସଂପର୍କୀୟ ଏକ ସୂଚୀ ଦେବାର ପ୍ରଯତ୍ନ କରାଯାଉଛି । ରଘୁନାଥ ଦାଶ ବେହେରା ଆସି ବସବାସ କଲେ ଓ. ବ୍ରାହ୍ମଣମାଲ ସହ ସଦା ସର୍ବଦା ସଂପର୍କ ରଖିଥିଲେ । ମୋର ପିତାମହ ରଘୁନାଥ ଦାଶ ତତ୍କାଳୀନ ସ୍ୱନାମଧନ୍ୟ ଜମିଦାର ଭଳି କଟାପାଲି ଗୌନ୍ତିଆ ଶ୍ରୀ ବାଲ୍ମିକୀ ଦାଶଙ୍କ ଦୁହିତା କୁମାରୀ ହରପ୍ରିୟା ଦେବୀଙ୍କୁ ସ୍ୱଂୟବର ସଭାରେ ଉପଯୁକ୍ତ ବିବେଚିତ ହୋଇ ପାଣିଗ୍ରହଣ କରିବାର କଥାଟି ମୋର ପିଉସୀ ସ୍ୱର୍ଗତା ଫୁଲ ଦେବୀ କୁହନ୍ତି । କିନ୍ତୁ ତାର ସଠିକ ବିବରଣୀ ଆମର ହସ୍ତଗତ ହୋଇନାହିଁ । ମୋର ପିତାମହଙ୍କ ଚାରି ପୁତ୍ର - ମହାରାଜ ଦାଶ, ବିହାରୀ ଦାଶ, ରାଧେଶ୍ୟାମ ଦାଶ ଓ ଉପେନ୍ଦ୍ର ଦାଶ । ଚାରି ଝିଅ - ଫୁଲ ଦେବୀ, ସୂର୍ଯ୍ୟ ଦେବୀ, ଅମ୍ବିକା ଦେବୀ ଓ ବସନ୍ତ ଦେବୀ (ଜୀବିତ) ଥିଲେ । ଲେଖକ ଉପରୋକ୍ତ ବିହାରୀ ଦାଶଙ୍କ ପ୍ରଥମ ପୁତ୍ର । ତାଙ୍କ ଶାଶୁ ଘର ରେଙ୍ଗାଲପାଲି । ଲୋକନାଥ ମହାପାତ୍ରଙ୍କର ଜ୍ୟେଷ୍ଠା କନ୍ୟା ପାର୍ବତୀଙ୍କ ସହ ବିବାହ ୧୯୨୬ ରେ ସଂପାଦିତ ହୋଇଥିଲା । ମୋର ଜନ୍ମ (ଲେଖକଙ୍କ) ୧୯୨୭ ସେପ୍ଟେମ୍ବର ୨ ତାରିଖରେ - ଭାଦ୍ର ଶୁକ୍ଳ ଷଷ୍ଠୀ ବର୍ଷା ମୁଖର ମଧ୍ୟାହ୍ନରେ ବୋଲି କଥୋପକଥନରୁ ଜଣାଯାଏ । ସେଦିନ କୁଲାର ମୁହଁ ରେ ବର୍ଷା - ଅର୍ଥାତ୍ ମୂଷଳଧାରାରେ । ବାହାକୁ ବାହା ଦିଶେ ନାହିଁ - ବର୍ଷାର ପ୍ରାବଲ୍ୟ ଏତାଦୃଶ ଥିଲା ।

ସେ ଦିନର ଏକ କୌତୁକିଆ ଘଟଣାର ପ୍ରକାଶ ଆବଶ୍ୟକୀୟ ମନେ ହୁଏ । ସେ ଦିନ ସକାଳେ ଯେତେବେଳେ ମୋର ମାତାଙ୍କ ପ୍ରସବ ବେଦନା ଆରମ୍ଭ ହୁଏ ସେତେବେଳେ ସମସ୍ତେ ଅନୁଭବ କଲେ ଏକ ନବାଗତ ଶିଶୁର ଆଗମନକୁ । ସମୟ କେତେବେଳେ କେହି ପୂର୍ବରୁ ସ୍ଥିର କରି ନ ପାରି ସେତେବେଳେ ଗାଈ କ୍ଷୀରର ଆବଶ୍ୟକତା ଦୃଷ୍ଟିରୁ ମୋର ବଡ଼ବାପା ସ୍ୱର୍ଗତଃ ମହାରାଜ ଦାଶ ଯେ

କି ସଁୟା ତୁରୁଙ୍ଗା ନିମ୍ନ ପ୍ରାଥମିକ ବିଦ୍ୟାଳୟ ରେ ସହକାରୀ ଶିକ୍ଷକ ରୂପେ କାର୍ଯ୍ୟରତ ଥିଲେ ଓ କୌଣସି କାର୍ଯ୍ୟ ପାଇଁ ଗୃହରେ ଅଟକି ଥାନ୍ତି, ସେ ଗ୍ରାମର ଏକ ପଡ଼ୋଶୀ ଘରକୁ ଯାଇ କ୍ଷୀର ଆଣିଲେ । କ୍ଷୀର ଆଣିବା ବେଳେ ଦୁଧବାଲୀ ୰ ସୁମତି ଦେବୀ ମୋର ବଡ଼ ବାପାଙ୍କୁ ପଚାରିଲେ, "ବୁଆ, ଗୁରସ୍ (କ୍ଷୀର) କାଣା କର୍‌ବୁ ?" ବଡ଼ ବାପା କହିଲେ, "ଆଜି ସ୍କୁଲକୁ ଇନିସ୍‌ପେକ୍ଟର ଆସିବେ, ତେଣୁ ଗୁରସ୍ ଦରକାର ।" ଆବଶ୍ୟକତାର ଗୁରୁତ୍ୱ ନ ଜଣାଇଲେ କ୍ଷୀର ହୁଏତ ନ ମିଳି ପାରେ, ତେଣୁ ବଡ଼ ବାପା ସେପରି ବୋଧ ହୁଏ କହିଥିବେ ବୋଲି ଅନୁମାନ । ଉକ୍ତ ଦିବସର ମଧ୍ୟ ଭାଗରେ ଅର୍ଥାତ୍ ପ୍ରାୟ ୧୨ ଟା ୩୦ ରେ ମୋର ଜନ୍ମ ପରେ ସମସ୍ତେ ଆଶ୍ୱସ୍ତ ହୋଇ ଯେଝା'ର କାମରେ ଲାଗି ଗଲେ । ବଡ଼ ବାପା ମଧ୍ୟାହ୍ନରେ ମୋର ଜନ୍ମ ହେବା ପରେ ଯେତେବେଳେ ସ୍ନାନ ପାଇଁ କଁଟାକୁ (ଏକ ଜଳଭଣ୍ଡାର) ଯାଉଥିଲେ, ସେତେବେଳେ ବିପରୀତ ଦିଗରୁ ପୂର୍ବ ସୂଚୀତ ସୁମତି ଦେବୀ ବଡ଼ ବାପାଙ୍କୁ ପଚାରିଲେ, "ବୁଆ, ଇନିସ୍‌ପିଟର ଆସ୍‌ଲେ ?" ବଡ଼ ବାପା କହିଲେ, "ନନା, ଯା ଦେଖ୍‌ବୁ ଯା - ଘରକେ ଇନିସ୍‌ପେକ୍ଟର ଆସିଛେ ।" ଏହା ଶୁଣି ସେ ଆଶ୍ଚର୍ଯ୍ୟ ହୋଇ ପୁଣି ପଚାରିଲେ, "ବୁଆ, ନାଇଁ ବୁଝି ପାର୍‌ଲି ଗା ।" ବଡ଼ ବାପା ପୁଣି କହିଲେ, "ଆମ ଘରେ ବିହାରୀର ପୁଅଟେ ହୋଇଛି ।" ତାହା ଶୁଣି ସୁମତି ଦେବୀ ଖୁସିରେ ଗଦ୍ ଗଦ୍ ହୋଇ ଚାଲି ଗଲେ । ପରେ ସେ ଆମ ଘରକୁ ଆସି ମୋତେ ଦେଖିଲେ ଓ ସେ ଦିନରୁ ମୋତେ "ଇନିସ୍‌ପିଟର" ବୋଲି ଶେଷ୍ ତକ ଡାକୁଥିଲେ । ଏହି କଥାଟି ଭବିଷ୍ୟତ ବାଣୀ ରୂପେ କାର୍ଯ୍ୟକାରୀ ହେଲା ଯେତେବେଳେ ୧୯୮୦ ସାଲରେ ମୁଁ ଧର୍ମଗଡ଼ ଶିକ୍ଷାଜିଲ୍ଲାଧିକାରୀ ରୂପେ ଯୋଗ ଦେଲି । ଅବଶ୍ୟ ସେତେବେଳେ ତ ବଡ଼ ବାପା ଇହଜଗତ ରେ ନ ଥିଲେ, ତାଙ୍କର ପୂର୍ବ ଘୋଷିତ ବାଣୀର ସତ୍ୟତା ଦେଖିବା ପାଇଁ । ଏପରି ଆଉ ଅନ୍ୟ କେତେକ ଘଟଣା ମୋର ଜୀବନ ରେ ଘଟିଛି ଯାହାକି ମୋର ଗୁରୁଜନମାନେ ଆଗରୁ କଳ୍ପନା କରି ଘୋଷଣା କରିଥିଲେ । ତାହା ପ୍ରସଙ୍ଗ କ୍ରମେ ସୂଚିତ ହେବ ।

ଏବେ ମୋର ଜନ୍ମ ଓ ପରିବାରରେ ମୋର ସ୍ଥାନ ବିଷୟରେ ଆଲୋଚନା କରିବା ବେଳେ ପରିବାରର ବିଭିନ୍ନ ବ୍ୟକ୍ତିଙ୍କ ବିଷୟରେ ସୂଚନା ଦେଲେ ଅପ୍ରାସଙ୍ଗିକ ହେବ ନାହିଁ ବୋଲି ମନେ ହୁଏ । ମୋର ପିତାମହଙ୍କ ଚାରି ଜଣ ପୁତ୍ର ଓ ୪ ଝିଅ ଜୀବିତ ଥିଲେ । ବଡ଼ ପୁଅ ମହାରାଜ ଦାଶ ସଁୟା ତୁରୁଙ୍ଗା ରେ ଦିବାକର ପଣ୍ଡାଙ୍କ ଝିଅ ଉଷା ଦେବୀ ଙ୍କୁ ବିବାହ କରିଥିଲେ । ତାଙ୍କର ଏକ କନ୍ୟା ଜନ୍ମ ହୋଇ ମରି ଯାଇଥିଲା । ୨ୟ ପୁତ୍ର ବିହାରୀ ଦାଶଙ୍କ (ମୋର ବାପା) ବିବାହ ପୂର୍ବରୁ

ବର୍ଣ୍ଣିତ ହୋଇଛି । ୩ୟ ପୁତ୍ର ରାଧାଶ୍ୟାମ ଦାଶ ଜଡ଼ା ଗ୍ରାମର ଗିରିଧାରୀ ଆଚାର୍ଯ୍ୟଙ୍କ କନ୍ୟା ତାରାବତୀଙ୍କ ପାଣିଗ୍ରହଣ କରିଥିଲେ । ୪ର୍ଥ ପୁତ୍ର ଉପେନ୍ଦ୍ର ଦାଶ ଜହ୍ନାପଡ଼ା ଗ୍ରାମର ଚକ୍ରଧର ମହାପାତ୍ରଙ୍କ ଦୁହିତା ଭଗବତୀ ଦେବୀଙ୍କୁ ବିବାହ କରିଥିଲେ ।

ପିତାମହଙ୍କ ଚାରି ଝିଅ ମାନଙ୍କ ମଧ୍ୟରେ ବଡ଼ ଝିଅ ଫୁଲ ଦେବୀ ସରସରା ଅନିରୁଦ୍ଧ ପଣ୍ଡାଙ୍କୁ ବିବାହ ହୋଇ ଅକାଳରେ ବିଧବା ହୋଇ ଘରେ ରହିଲେ । ୨ୟା ଝିଅ ସୂର୍ଯ୍ୟ ଦେବୀ ଗୋପାଇପାଲିର ଲକ୍ଷ୍ମଣ ଦାଶଙ୍କୁ ବିବାହ କରି ଗୋଟାଏ କନ୍ୟାର ମାତା ହୋଇଥିଲେ । ୩ୟା କନ୍ୟା ଅମ୍ବିକା ଦେବୀ ସୋହେଲା ଶ୍ରୀ ଜଗଦୀଶ ଦେବତାଙ୍କ ୨ୟ ପୁତ୍ର ଧନପତି ଦେବତାଙ୍କୁ ବିବାହ କରି ତାଙ୍କର କୌଣସି ସନ୍ତାନ ସନ୍ତତି ହୋଇ ନ ଥିଲେ । ୪ର୍ଥ ଅର୍ଥାତ୍ କନିଷ୍ଠା କନ୍ୟା ବସନ୍ତ ଦେବୀ ବିଶାଲପାଲିର ଅଭିମନ୍ୟୁ ପାଲ୍‌ଙ୍କ ଜ୍ୟେଷ୍ଠ ପୁତ୍ର କହ୍ନାଇ ପାଲ୍‌ଙ୍କୁ ବିବାହ କରି ଅକାଳରେ ବିଧବା ହେଲେ । ଏପରି ଭାବେ ୮ ଜଣ ଭାଇ ଭଉଣୀଙ୍କ ମଧ୍ୟରେ କାହାରି ପୁତ୍ର ହୋଇ ନ ଥିବାରୁ ଏହି ପରିବାରରେ ମୋର ଆବିର୍ଭାବ ସମସ୍ତଙ୍କ ମନରେ ନବୀନ ଆନନ୍ଦ ଓ ଆଶା ସଞ୍ଚାର କରି ଭବିଷ୍ୟତ ଉଜ୍ଜ୍ୱଳମୟ ହେବ ବୋଲି ଏକ ଉଚ୍ଚ ଆକାଂକ୍ଷାର ସୂତ୍ରପାତ ହେଲା । ତେଣୁ ମୋର ମାଁଙ୍କ ସ୍ଥାନ ଆମ ଘରେ ଏକ ରକମର ସ୍ୱତନ୍ତ୍ର ଭାବେ ଉତ୍କୃଷ୍ଟ ରୂପେ ଅଧିକାର କରି ସେ ସମସ୍ତଙ୍କ ପ୍ରିୟ ପାତ୍ରୀ ହେଲେ । ଅବଶ୍ୟ ବଡ଼ ମା, ପିଉସୀ ମାନେ ମଧ୍ୟ ଏ ଖବର ପାଇ ଉଲ୍ଲସିତ ହେଲେ । ମୋର ଜନ୍ମ ସମୟକୁ ମୋର କାକାମାନଙ୍କ ବିବାହ ସଂପନ୍ନ ହୋଇ ନ ଥିଲା । ଅବଶ୍ୟ କାଳକ୍ରମେ ପରିବାର ମଧ୍ୟରେ ମୋର ଆବିର୍ଭାବ ଘରେ ସମସ୍ତଙ୍କ ଆଶାପୂରଣ ହେଲା । ମୋର ବାପା କାକାଗଣ ଆମ ଗାଁରେ ସ୍କୁଲ ନ ଥିବାରୁ ମାଟିବଂଶ ଅବଧାନଙ୍କଠାରେ ଶିକ୍ଷାଲାଭ କରୁଥିଲେ । ସେତେବେଳେ ଆଜିକାଲି ଭଳି ପାଠପଢ଼ାର ବା ପଢ଼ାଇବାର ସୁବିଧା ନ ଥିଲା । ସାଧାରଣତଃ ପିଲାମାନେ ଖଡ଼ିରେ ମାଟି ଉପରେ ଅକ୍ଷର ଲେଖାଯାଇ ତା' ଉପରେ ବୁଲାଇ ଅକ୍ଷର ଶିକ୍ଷା କରୁଥିଲେ । ପରେ ତେନ୍ତୁଳି ମଞ୍ଜିରେ ଅକ୍ଷର ତିଆରି କରି ଶିକ୍ଷା କରୁଥିଲେ । ସେତେବେଳେ କାଁ ଭାଁ ସ୍ଲେଟ୍ ପେନ୍‌ସିଲ୍‌ର ବ୍ୟବହାର ଥିଲା । ମୋର ବଡ଼ ବାପା ୫ମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଥିଲେ । ମୋର ବାପା ବିହାରୀ ଦାଶ ଓ କାକା ରାଧାଶ୍ୟାମ ଦାଶ ଆଦି ଗ୍ରାମରେ ସ୍କୁଲ ନ ଥିବାରୁ ମାଟିବଂଶ ଅବଧାନଙ୍କ ତତ୍ତ୍ୱାବଧାନରେ ଅଧ୍ୟୟନ କରୁଥିଲେ । ଥରେ ଅବଧାନ ମୋର ବାପାଙ୍କ ପାଠରେ ଅସନ୍ତୋଷ ପ୍ରକାଶ କରି ଆକଟ କରି ଦଣ୍ଡ ବିଧାନ କରିବାକୁ ଉଦ୍ୟତ ହେଲେ ।

ମୋର ବାପା ରାଗୀ ପ୍ରକୃତିର ବ୍ୟକ୍ତି ଥିବାରୁ ଶିକ୍ଷକଙ୍କ ଶାସନରେ ବାଧା ଦେବାରୁ ଉକ୍ତ ମହାଶୟ ମୋର ଅଜାଙ୍କଠାରେ ଆପତ୍ତି କଲେ । ସେହି ଦିନଠାରୁ ମୋର ବାପାଙ୍କ ପାଠରେ ଡୋରି ବନ୍ଧା ହେଲା । କିନ୍ତୁ ସେ ବେଶ୍ ତୀକ୍ଷ୍ଣ ବୁଦ୍ଧି ସଂପନ୍ନ ଓ ସାମାଜିକ କର୍ତ୍ତବ୍ୟ ସଂପାଦନରେ ଯୋଗ୍ୟ ଥିଲେ । ତେଣୁ ତାଙ୍କ ଗୃହ ସଂସାର ସେ ସୁରୁଖୁରୁରେ ଚଳେଇ ନେଲେ । ତାଙ୍କ ପାଠର ଅଭିଜ୍ଞତା ବିଷୟ ଆଲୋଚନା କଲେ ପାଠକ ମାନେ ଆମୋଦିତ ହେବେ । ସେ ଯେତିକି ଜାଣିଥିଲେ ସେଥିର ସୁବ୍ୟବହାର କରି ସେ କେବେ ଠକି ଯାଉ ନ ଥିଲେ । ଅର୍ଥାତ୍ ସେ ଲେଖିଲା ବେଳକୁ ଏକ ଶହ ସାତ କୁ ୧୦୦୭ ଲେଖି ହିସାବ କିତାପରେ ଭୁଲ୍ ହେଉ ନ ଥିଲା । ଏପରି ଭାବେ ତତ୍କାଳୀନ ଶିଶୁମାନଙ୍କର ଶିକ୍ଷା ପାଇଁ ସେତେ ସୁବିଧା ନ ଥିଲା । ଅନେକ ଦିନ ପରେ ଗ୍ରାମରେ ଏକ ନିମ୍ନ ପ୍ରାଥମିକ ବିଦ୍ୟାଳୟ ସ୍ଥାପିତ ହେବାରୁ ଆମ୍ଭେମାନେ ପ୍ରାଥମିକ ପାଠପଢ଼ାର ସୁଯୋଗ ପାଇଥିଲୁଁ । ମୁଁ ଗାଁ ସ୍କୁଲରେ ପ୍ରାଥମିକ ପାଠ ପଢ଼ାର ସୁଯୋଗ ପାଇ ୩ୟ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଥିଲି । ତାପରେ ଖୁଣ୍ଟପାଲିରେ ୫ମ ଶ୍ରେଣୀ ପାସ୍ କରି ବରଗଡ଼ ଉଚ୍ଚ ବିଦ୍ୟାଳୟରେ ମାଟ୍ରିକ ପଢ଼ି କଲେଜ ଶିକ୍ଷା ପରେ ଚାକିରୀରେ ପ୍ରବେଶ କରିବା ହେତୁ ଗାଁର ଶିକ୍ଷା ଓ ଶିକ୍ଷାନୁଷ୍ଠାନ ଉପରେ ସେତେ ଧ୍ୟାନ ଦିଆଯାଇ ପାରିଲା ନାହିଁ । ଏବେ ମଧ୍ୟ ଗ୍ରାମବାସୀଗଣ ଆମର ଗ୍ରାମର ଉନ୍ନତି ପାଇଁ ଆମ୍ଭର କେତେକଙ୍କର ଉପସ୍ଥିତି କାମନା କରିଥାନ୍ତି ।

ବଡ଼ ବାପା ସ୍ୱର୍ଗତ ମହାରାଜ ଦାଶ ୫ମ ଶ୍ରେଣୀ ପାସ୍ କଲା ପରେ ବରଗଡ଼ର ତତ୍କାଳୀନ ଏକ ସରକାରୀ ପଦସ୍ଥ କର୍ମଚାରୀ ବଡ଼ ବାପାଙ୍କୁ ଏକ ସରକାରୀ କାର୍ଯ୍ୟରେ ନିଯୁକ୍ତି ପାଇଁ ଘରଠାରୁ ଏକ ଦୂର ସ୍ଥାନକୁ ଯିବା ପାଇଁ ପ୍ରସ୍ତାବ ଦେବାରୁ ମୋର ଆଈ ସେଥିରେ ସଂପୂର୍ଣ୍ଣ ମନା କରି ଦେବାରୁ ତାହା ବନ୍ଦ ହେଲା ଓ ପରେ ସେ ପ୍ରାଥମିକ ବିଦ୍ୟାଳୟର ସହକାରୀ ଶିକ୍ଷକ ରୂପେ ମାସକୁ ଟ.୫।୮ (ଟ. ୫.୩୭ ପ:) ରେ କାର୍ଯ୍ୟ କଲେ । ତାହା ପରେ ବୃଦ୍ଧି ପାଇ ମାସକୁ ଟ. ୨୫ ହିସାବରେ ମିଳିଲା । ସେହିପରି ସାନ କାକା ମଧ୍ୟ ୭ମ ଶ୍ରେଣୀ ପାସ୍ ପରେ ଶିକ୍ଷକ ରୂପେ କାର୍ଯ୍ୟ କରି ମାସକୁ ଟ. ୮ ରୁ ବୃଦ୍ଧି ପାଇ ଅବସର ଗ୍ରହଣ ପରେ ୧୯୭୩ ରେ ମାସକୁ ପେନ୍‌ସନ୍ ଟ.୪୦ ପାଇଲେ । ତାହା ସର୍ବନିମ୍ନ ମାସିକ ଟ. ୩୦୦ ରେ ସ୍ଥିର ହୋଇଥିଲା ।

ସେ ସମୟରେ ଆମ ଘରର ପରିସ୍ଥିତି ଅନୁସାରେ ମାଆଙ୍କ ଆଦର୍ଶ କେବଳ ତତ୍କାଳୀନ କାର୍ଯ୍ୟରତ ମୋର ବଡ଼ ବାପା ଓ ସାନ କାକାଙ୍କ ବ୍ୟତୀତ ଆଉ

କେହି ନ ଥିଲେ । ତେଣୁ ସେ ସର୍ବଦା ଆଶା ରଖିଥିଲେ ଯେ ଅନ୍ୟ କିଛି ନ ହେଲେ ବି ଅନ୍ତତଃ ତାଙ୍କ ପୁଅ ଜଣେ ଶିକ୍ଷକ ହୋଇ ପାରିବ । ତାହା ପ୍ରକୃତରେ ସତ୍ୟରେ ପରିଣତ ହେଲା ଓ ମୁଁ ଶିକ୍ଷକତା କରି ବେଶ୍ ସୁନାମ ଅର୍ଜନ କଲି ।

ମୋର ଜନ୍ମ ଦିନର ଏକ ଉଲ୍ଲେଖନୀୟ ଘଟଣା ଏହି ଯେ, ସେ ଦିନ ମୋର ବଡ଼ ପିଉସୀ ଫୁଲ ଦେବୀ ଘରେ ଅନୁପସ୍ଥିତ ଥିଲେ । ସେ ବିଧବା ଓ ଘରେ ଥାଇ ସମସ୍ତ ନବଜାତ ଶିଶୁଙ୍କ ଯତ୍ନ ଓ ଲାଳନ ପାଳନ ତାଙ୍କର ଦ୍ୱାରା ସମାହିତ ହୁଏ । କିନ୍ତୁ ମୋର ଜନ୍ମ ଦିନରେ ଅନୁପସ୍ଥିତ ହେତୁ ସେ ଏ ସୁଯୋଗରୁ ବଞ୍ଚିତ ହେଲେ । ପ୍ରକାଶ ଥାଉ କି ଲେଖକର ୮ ଜଣ ପୁଅ ଝିଅ ଓ ତାଙ୍କର ପୁଅ ଝିଅଙ୍କ ଶୈଶବକାଳୀନ ଯତ୍ନ ତାଙ୍କ ଦ୍ୱାରା ସମାହିତ ହୋଇଥିଲା । ତାଙ୍କ ମୋ' ପ୍ରତି ଅଗାଧ ସ୍ନେହ ଥିଲା କିନ୍ତୁ ଜନ୍ମ ଦିନ ଅନୁପସ୍ଥିତି ହେତୁ ପିଉସୀ ସୂର୍ଯ୍ୟ ଦେବୀଙ୍କ ପ୍ରାଧାନ୍ୟ ବଢ଼ି ଯାଇଥିଲା ।

ସେତେବେଳେ ଆମ ବଂଶରେ କାହାରି ପୁତ୍ର ନ ଥିଲେ । ସମସ୍ତେ ମୋତେ ବଂଶର ଭବିଷ୍ୟତର ଆଶା ଓ ଭରସା ତଥା କୂଳଦୀପ ବୋଲି ମନେ କରୁଥିଲେ । ଅବଶ୍ୟ ତାହା ପରେ ପ୍ରକୃତ ଫଳପ୍ରଦ ଓ ସାକାର ହୋଇ ମୋର କୂଳଦୀପ ଆଖ୍ୟା ପ୍ରତିପାଦିତ ହେଲା । ଭବିଷ୍ୟତ ଗଣନାରୁ ଗଣକମାନେ ମଧ୍ୟ ଏହା ପ୍ରକାଶ କରିଥିଲେ ।

ବାଲ୍ୟକାଳର ଆଉ କେତେକ ଘଟଣା ଯଦିଓ ଏତେ ଆବଶ୍ୟକ ନୁହେଁ, ତଥାପି ଗୋଟିଏର ବର୍ଣ୍ଣନା ଆବଶ୍ୟକ ମନେ ହୁଏ । ମୋର ବୟସ ବୃଦ୍ଧି ହେତୁ ସମୟ ସମୟରେ ବାଳରୋଗ ଜନିତ କଷ୍ଟ ଶିଶୁକୁ ଭୋଗ କରିବାକୁ ପଡ଼େ ଓ ମୋତେ ମଧ୍ୟ ତାହା ଭୋଗିବାକୁ ହେଲା । ମୋର ଏକ ବର୍ଷ ବେଳେ ମୋର ତୁଣ୍ଡରେ ଘା ହୋଇ ଛତି ଫୁଟିଲା ଭଳି ହେଲା । ମୁଁ ଏପରିକି ମାଁଙ୍କ ଠାରୁ କ୍ଷୀର ପାନ କରି ନ ପାରି କେବଳ କ୍ରନ୍ଦନରତ ଥିଲି । ତେଣୁ ଘରର ସମସ୍ତେ ଭୀତତ୍ରସ୍ତ ଓ ବ୍ୟସ୍ତ ହୋଇ ବିଭିନ୍ନ ହିତାକାଂକ୍ଷୀ ବ୍ୟକ୍ତିଙ୍କ ପରାମର୍ଶ କ୍ରମେ ନିକଟସ୍ଥ ଗ୍ରାମୀଣ ଚିକିତ୍ସାର କିଛି ଫଳ ନ ହେବାରୁ ଶେଷରେ ମୋର ଅଜା ବିଭିନ୍ନ ବୈଦ୍ୟ ଓ କବିରାଜଙ୍କ ଚିକିତ୍ସାରେ ସନ୍ତୁଷ୍ଟ ହୋଇ ନ ପାରି ଭଗବତ୍ ଆଶା ଲୋଡ଼ିଲେ । ତତ୍କାଳୀନ ବୈଦ୍ୟ ଓ କବିରାଜଙ୍କ ମଧ୍ୟରେ ଆମ ଗାଁର ଦୁର୍ଯୋଧନ ସେଠ୍, ଖୁଣ୍ଟପାଲିର ଉଗ୍ରସେନ ପୂଝାରୀ, ତୁରୁଙ୍ଗାର ଶାଖା ଦାଶ, ସରସରାର ମୃତ୍ୟୁଞ୍ଜୟ ମିଶ୍ର ଆଦି ଅନ୍ୟତମ । ଏମାନଙ୍କ ଚିକିତ୍ସାରେ ସୁଫଳ ନ ମିଳିବାରୁ ଓ ମୋର ଦୁଃଖ କ୍ରମଶଃ ଉପଶମ ନ ହେବାରୁ ପରଦିନ ସକାଳେ ମୋର ଅଜା ଆମର ସଂପର୍କୀୟ ବଂଧୁ ଲେଣ୍ଡା ଗ୍ରାମବାସୀ ଧନଞ୍ଜୟ ମିଶ୍ରଙ୍କ ଜ୍ୟେଷ୍ଠ ଭ୍ରାତା ଜ୍ୟୋତିଷାଚାର୍ଯ୍ୟଙ୍କ ଦ୍ୱାରସ୍ଥ ହେଲେ ।

ସେ ମୋର ଜନ୍ମ ସମୟର ଗ୍ରହ ସ୍ଥିତି ଦେଖି ଅଭୟ ବାଣୀ ଶୁଣାଇ କହିଲେ, ଶିଶୁର କିଛି ମାରକ ଦୋଷ ନାହିଁ କେବଳ ସାମାନ୍ୟ ଶାରୀରିକ ପୀଡ଼ା ଭୋଗ କରିବାକୁ ହେବ ଓ ତାହା ଶିବାଳୟ ରେ ପୂଜାର୍ଚ୍ଚନା ଦ୍ୱାରା ଉପଶମ ହେବ । ତେଣୁ ତାହା କରଣୀୟ । ମୋର ଅଜା ସେଠାରୁ ସିଧା ସଳଖ ଗାଇସୀମାର ପ୍ରତ୍ୟକ୍ଷ ଶିବାଳୟ ସ୍ଥିତ ବରାହ୍‌-ବାଲୁଙ୍କେଶ୍ୱର ବାବାଙ୍କ ଶରଣାପନ୍ନ ହେଲେ । ସେଠାରେ ପୂଜାର୍ଚ୍ଚନା କରାଇ ସନ୍ଧ୍ୟା ପୂର୍ବରୁ ଆମ ଘରକୁ ଫେରିବା ବେଳେ ଆଗରୁ ସୂଚୀତ ମୋର ପିଉସୀଙ୍କ ଠାରୁ ମୋର କ୍ଷୀର ପାନ କରୁଥିବାର ଦେଖି ସମସ୍ତେ ଆଶ୍ୱସ୍ତ ହେଲେ । ଐଶ୍ୱରୀକ ଶକ୍ତିର ମହିମା ଯେ ପ୍ରତ୍ୟକ୍ଷ ବିଶ୍ୱାସରେ ଉପଲବ୍ଧ ହୁଏ ଏହା ତାହାର ଜ୍ୱଳନ୍ତ ପ୍ରମାଣ । ସେହି ଦିନ ଠାରୁ ମୋର ଭଲ ମନ୍ଦ ପାଇଁ ଗାଇସୀମା ଶିବାଳୟ ସ୍ଥିତ ମହାଦେବଙ୍କୁ ସମର୍ପଣ କରିଥିଲେ । ଆଜି ପର୍ଯ୍ୟନ୍ତ ସେ ମନ୍ଦିରର ଠାକୁରଙ୍କ ପୂଜାର୍ଚ୍ଚନାରେ ଆମର ଅତୁଟ ବିଶ୍ୱାସ ରହିଛି ଓ ସେଠାକାର ପୂଜକ ଆମ ସମସ୍ତଙ୍କ ନାମରେ ବିଶେଷତଃ ଶ୍ରାବଣ ମାସରେ ଓ ଶିବରାତ୍ରୀ ଅବସରରେ ଶିବଙ୍କ ଠାରେ ପୂଜାର୍ଚ୍ଚନା କରି ଆମଠାରୁ ପୂଜା ଦରକାରୀ ଜିନିଷ ବା କଳ୍ପିତ ମୂଲ୍ୟାଦି ଆଦି ସଂଗ୍ରହ କରିନିଅନ୍ତି । ଧନ୍ୟ ପ୍ରଭୁ ! ଦେବ ଦେବ ମହାଦେବଙ୍କ ଅପାର କରୁଣାର ପ୍ରଭାବ !

ମୋର ଶୈଶବାବସ୍ଥାରେ ପ୍ରାୟ ୨ ବର୍ଷରୁ କମ୍ ସମୟରେ ମୋତେ ଗୋଟିଏ ବାଉଁଶ ନିର୍ମିତ ଗାଣ୍ଡୁଆ (ଡ଼ଲା) ରେ ରସି ଲଗାଇ ଘରର ବାରଣ୍ଡାର ପାଟିରେ ବାନ୍ଧି ଝୁଲାଇବାର ବ୍ୟବସ୍ଥା କରାଯାଇଥିଲା କାରଣ ସେତେବେଳେ ଆଜି କାଲି ଛୁଆ ପାଇଁ ମିଳୁଥିବା ଦୋଳିର ପ୍ରଚଳନ ନ ଥିଲା । ତେଣୁ ସେହି ଝୁଲାଇବା ବେଳେ ଅଧିକ ଆନନ୍ଦ ଓ ଉତ୍ସାହର ସହ ମୋର ପିଉସୀ ସୂର୍ଯ୍ୟ ଦେବୀ ଅପେକ୍ଷାକୃତ ଜୋର୍‌ରେ ଝୁଲାଇ ଦେବାରୁ ରସିର ଦୁର୍ବଳତା ହେତୁ ବା ଅନ୍ୟ କୌଣସି କାରଣରୁ ଛିଣ୍ଡିଗଲା ଓ ସେହି ଡ଼ଲାଟି ଛିଙ୍ଗାଡ଼ି ହୋଇ ପଡ଼ି ଗଲା, ଫଳରେ ମୁଁ ମଧ ପଡ଼ି ଗଲି ଓ ମୋର କପାଳ ଫାଟି ରକ୍ତାକ୍ତ ହେଲି ଓ ଜୋର୍‌ରେ କାନ୍ଦିବାକୁ ଲାଗିବାରୁ ଘରର ସମସ୍ତେ ତ୍ରସ୍ତ ହୋଇ ଦଉଡ଼ିଲେ ଓ ମୋର ଏତାଦୃଶ ଅବସ୍ଥାରେ ମୋର ପିଉସୀଙ୍କୁ ଦୋଷୀ କରି ଗାଳି ଗୁଲଜ କରିବାକୁ ଲାଗିଲେ ଓ ମୋର କ୍ଷତ ପାଇଁ ଚିକିତ୍ସାର ବନ୍ଦୋବସ୍ତ କରିବାରୁ ପ୍ରାୟ ୨ ଦିନ ପରେ ମୋର ଘା' ଶୁଖିଲା ଓ ସେ ପର୍ଯ୍ୟନ୍ତ ମୋର ପିଉସୀ ନିଜର ଦୋଷ ପାଇଁ ଅନୁଶୋଚନା କରି କାନ୍ଦିଥିଲେ । ପରେ ସମସ୍ତେ ତାଙ୍କୁ ବୁଝାବୁଝି କରିବାରୁ କ୍ରନ୍ଦନରୁ ନିବୃତ୍ତ ହେଲେ ।

ଆଉ ଥରେ ଆମ ଗାଁ ରେ 'ମେଁଢ଼ା ମାଡ଼' ଉତ୍ସବ ହେବାକୁ ଥାଏ । କାରଣ ସେତେବେଳେ ମେଁଢ଼ା ମାଡ଼, କୁକୁଡ଼ା ମାଡ଼, ତିତିରି ମାଡ଼ , ଷଣ୍ଢ ମାଡ଼ ଆଦି ପଲ୍ଲୀ ମାନଙ୍କରେ ପ୍ରଚଳିତ ଉପଭୋଗ୍ୟ ଉତ୍ସବ । କାରଣ ସେତେବେଳେ ଗ୍ରାମବାସୀ ଏଥିରୁ ଆନନ୍ଦ ଉପଭୋଗ କରୁଥିଲେ । ଯାହାର ପଶୁ ଅନ୍ୟ ସମଜାତୀୟ ପଶୁଙ୍କୁ ଯୁଦ୍ଧରେ ବା ଖେଳରେ ହରାଇ ଦେବ ସେ ପ୍ରଶଂସାର ପାତ୍ର ଥିଲା । ତାପରେ ଗ୍ରାମମାନଙ୍କରେ ସାରୀ, ଶୁଆ, ମଇନା, କୁକୁର ଓ ବିରାଡ଼ି ପୋଷିବାର ସଉକ ଅନେକଙ୍କର ଥିଲା । ସେହି ମେଁଢ଼ା ମାଡ଼ ଦେଖିଯିବାକୁ ସମସ୍ତେ ସଜବାଜ ହୋଇ ଥାଆନ୍ତି । ସେତେବେଳେ ପିଲାଝିଲାଙ୍କ ପାଇଁ ଆଜିକାଲି ଭଳି ପେଣ୍ଟ କମିଜର ବ୍ୟବହାର ନ ଥିଲା । ମୋ' ପାଇଁ ଏକ ୫/୬ ହାତ ର ଛୋଟ ଲୁଗାଟିଏ (କରିଆ) ବ୍ୟବସ୍ଥା କରାଯାଇଥିଲା । ସେପରି ଛୋଟ ଝିଅ ମାନଙ୍କ ପାଇଁ ୫/୬ ହାତ ର ଛୋଟ କପଡ଼ା (କପଟା) ବ୍ୟବହାର କରାଯାଉଥିଲା । ମୋ' ପାଇଁ ଉଦ୍ଦିଷ୍ଟ ଜରିଆର ଏକ ସୁଦୃଶ୍ୟ ଧଡ଼ି ଥିଲା ଓ ମୁଁ ତାକୁ ପିନ୍ଧି ମେଁଢ଼ା ମାଡ଼ ଦେଖିବାକୁ ଯିବାର ବ୍ୟବସ୍ଥା କରି ବେଶ କଲେ । ମୋର ଉଚ୍ଚତାନୁଯାୟୀ ସେହି କରିଆ ଖଣ୍ଡକ ଲମ୍ବା ଚଉଡ଼ା ବେଶୀ ହେବାରୁ ତାକୁ ପିନ୍ଧିଲା ବେଳେ ନିଜର ଆୟତ୍ତାଧୀନ ନ ଥିଲା । ତେଣୁ ସେ କପଡ଼ା ପିନ୍ଧି ମୁଁ ଚଳପ୍ରଚଳ ପାଇଁ ବ୍ୟଗ୍ର ଥିଲି ଓ ତାହା ବେଶୀ 'ଲହର ଝପର' ହେତୁ ମୁଁ ପିଁଢ଼ାକୁ ଚଢ଼ିଲା ବେଳେ ଛଟକାଇ ହୋଇ ପଡ଼ିଥିଲି ଓ ମୋର ଦାନ୍ତ ବାଜି ଓଠ ଫାଟି ଯାଇ ରକ୍ତାକ୍ତ ହୋଇଯିବାରୁ ମେଁଢ଼ା ମାଡ଼ ଦେଖାରେ ପୂର୍ଣ୍ଣଚ୍ଛେଦ ପଡ଼ିଲା । ଅନ୍ୟ ମାନେ ମଧ୍ୟ ସେ ସୁଯୋଗରୁ ବଞ୍ଚିତ ହେଲେ । ଉପରୋକ୍ତ ଦୁଇଟି ଘଟଣାର ପ୍ରତୀକ ସ୍ୱରୂପ ଏ ପର୍ଯ୍ୟନ୍ତ ମୋର କପାଳ ଓ ଓଠରେ ସେହି ପ୍ରତିଘାତର ଚିହ୍ନ ସୁସ୍ପଷ୍ଟ ।

ଆଗରୁ ସୂଚୀତ ଆମ ବଂଶର ମୋର ଅଜାଙ୍କର ଭାଇ ରାଜକୁମାର ଦାଶ ବୋଡ଼ାସମ୍ବର ଅଞ୍ଚଳର ମେଲଛାମୁଣ୍ଡା ତଥା ଗାଇସିଲାଟ ନିକଟସ୍ଥ ବ୍ରାହ୍ମଣମାଲରେ ରହୁଥିଲେ । ସେହି ଗ୍ରାମ ନିକଟସ୍ଥ ତାଲପାଲି ଗ୍ରାମରେ ମଧ୍ୟ ଆମ ବଂଶୀୟ ଲୋକ ରହୁଥିଲେ । ତେଣୁ ସେଠାକୁ ଆମେ ଅନେକ ସମୟରେ ପର୍ବପର୍ବାଣୀ ବା ବିବାହ ଉତ୍ସବ ପାଇଁ ଯାଉଥିଲୁଁ । ଆମର ଯିବାର ମାଧ୍ୟମ ଥିଲା ବଳଦଗାଡ଼ି । ମୋର ଜନ୍ମ ହେବା ପରେ ମୋର ପଣୀ ଅଜା ବ୍ରଜବଂଧୁ ଦାଶ ଓ ପତ୍ନୀ ଜାନକୀ ଦେବୀଙ୍କ ବୃଦ୍ଧାବସ୍ଥା ହେତୁ ସେମାନେ ଆମ ଗ୍ରାମ ବେହେରାକୁ ଆସିବାକୁ ଅସମର୍ଥ ହେବାରୁ ଆମ ଗାଁରୁ ମୁଁ ଓ ମୋର ଅଜାଙ୍କ ସଙ୍ଗେ ବଳଦଗାଡ଼ିରେ ଯାଇଥିଲୁଁ । ସେତେବେଳେ ବଳଦଗାଡ଼ିରେ ଯିବାକୁ ହେଲେ ଅପରାହ୍ନ ୪ଟା ପୂର୍ବରୁ ଏଠାରୁ ବାହାରି

ସନ୍ଧ୍ୟା ପର୍ଯ୍ୟନ୍ତ ବିଜେପୁର ନିକଟସ୍ଥ ପଥର୍ଲା ଗ୍ରାମରେ ଯାହାକି ମୋର ସାନ ଅଜାଙ୍କ ଶାଶୁଘର ଥିଲା । ସେଠାରେ ବା ଅନ୍ୟ କୌଣସି ଗ୍ରାମରେ ବଂଧୁଙ୍କ ଘରେ ରାତ୍ର ଯାପନ କରି ପରଦିନ ପ୍ରାତଃ ପୂର୍ବରୁ ପୁଣି ଯାତ୍ରା ଆରମ୍ଭ କରୁଁ । ପ୍ରାୟ ୧୦/୧୧ ଟା ବେଳେ ବ୍ରାହ୍ମଣମାଲରେ ପହଞ୍ଚିବାକୁ ହେଉଥିଲା । ଏପରି ଭାବେ ପ୍ରତିଥର ଯିବା ଆସିବା ବେଳେ ବାଟରେ ବିଶ୍ରାମ ନେଇ ଯାତ୍ରା ଶେଷ କରାଯାଏ । ଆଜିକାଲି ଭଳି ସେତେବେଳେ ବସ୍ ପ୍ରଚଳନ ପ୍ରାୟ ନ ଥିଲା କହିଲେ ଚଳେ ।

ବ୍ରାହ୍ମଣମାଲରେ ପହଞ୍ଚିବାରୁ ମୋର ପ୍ରପିତାମହ ବ୍ରଜବଂଧୁ ଦାଶ ତଥା ପରିବାରର ଅନ୍ୟ ମାନେ ଅତିଶୟ ଆନନ୍ଦିତ ହେଲେ । ସେତେବେଳେ ମୋର ଗୁରୁଣ୍ଡିବା ସମୟ ହୋଇଥିବାରୁ ମୁଁ ଗୁରୁଣ୍ଡିବା ବେଳେ ମୋ' ଦେହରେ ଧୂଳିମଳି ନ ଲାଗିବା ପାଇଁ ସବୁ ଆଡ଼େ ବାରଣ୍ଡା ଓ ଦୁଆର ଯାକ ପଟି, ପାଛୁଡ଼ାଦି ପକାଇ ଘୋଡ଼ାଇ ରଖିଥିଲେ । ପ୍ରପିତାମହ ମୋତେ ଦେଖି ଏତେ ଆନନ୍ଦିତ ହୋଇଥିଲେ ଯେ ସେ ଅତିଶୟ ପରିଷ୍କାର ପରିଚ୍ଛନ୍ନ ଥାଇ ମଧ୍ୟ ମୋତେ କାଖେଇବା ପାଇଁ ଆଗ୍ରହୀ ଥିଲେ । ମୁଁ ତାଙ୍କ ଦେହରେ କ୍ୱଚିତ୍ ମଳମୂତ୍ର ତ୍ୟାଗ କରି ଦେଲେ ମଧ୍ୟ ସେ ବିରକ୍ତି ପ୍ରକାଶ କରୁ ନ ଥିଲେ । ଏ ସବୁ ଦେଖି ମୋର ଗୁରୁନାନୀ - ତାଙ୍କର ସାନ ଝିଅ ତଥା ମୋର ବାପାଙ୍କ ସାନ ପିଉସୀ ହାରା ଦେବୀ ଓ ମୋର ବଡ଼ ପିଉସୀ ଫୁଲ ଦେବୀ ଯେଉଁ ଦୁଇ ଜଣ କି ଘରେ ବିଧବା ହୋଇ ରହୁଥିଲେ, ସେମାନେ ଦମ୍ଭର ସହିତ ତାଙ୍କ ବାପାଙ୍କୁ ଏହାର କାରଣ ପଚାରିବାରୁ ସେ ଅତି ଗଦ୍‌ଗଦ୍ ହୋଇ କହି ପକାଇଲେ ଯେ ତାଙ୍କର ଆଉ ଯମ ଦର୍ଶନ ନାହିଁ । କାରଣ ଯେଉଁ ବ୍ୟକ୍ତି ୩ୟ ବଂଶଧର ଅର୍ଥାତ୍ ଅଣନାତିର ମୁଁହ ଦେଖନ୍ତି, ସେ ଅତି ଭାଗ୍ୟବାନ ଓ ଯମକଷ୍ଟରୁ ବହିର୍ଭୁତ ହୋଇ ସ୍ୱର୍ଗାରୋହଣ କରିବା ଅଧିକାରୀ ବୋଲି ପ୍ରବାଦ ଅଛି । ଏପରି ଭାବେ ଚାରି ଭାଇ ଓ ଚାରି ଭଉଣୀଙ୍କ ଏକୋଇର ବଳା, ଅନ୍ଧର ଲଉଡ଼ୀ ଭାବେ ମୋର ପରିବାରରେ ଚନ୍ଦ୍ରକଳାର ବୃଦ୍ଧି ପାଇଲା ଭଳି ବଢ଼ିଲି ।

## ମୋର ବାଲ୍ୟ ଶିକ୍ଷା (ବେହେରା ନିଃ ପ୍ରାଃ ବିଦ୍ୟାଳୟ):-

ମୋର ଶୈଶବାବସ୍ଥା ଅତିକ୍ରାନ୍ତ ହୋଇ ଯେତେବେଳେ ମୋତେ ପ୍ରାୟ ୪ ୧/୨ ବର୍ଷ ହେଲା ଅର୍ଥାତ୍ ୧୯୩୨ ସାଲରେ ଆମର ଗ୍ରାମର ଗ୍ରାମ ଚାଟଶାଳୀରେ ମୋର ନାମ ଲେଖା ହେଲା । ମୋର ଜନ୍ମ ତାରିଖ ୨୧.୮.୧୯୨୮ ବୋଲି

ଲେଖାଗଲା । ସେତେବେଳେ ଗୁଡ଼େଶିରା ନିବାସୀ ସ୍ୱର୍ଗତ ସୂର୍ଯ୍ୟମଣି ଦାଶ ଆମ ଗାଁ ସ୍କୁଲରେ ଶିକ୍ଷକତା କରୁଥିଲେ । ତାଙ୍କର କି ବିଶେଷ ବ୍ୟକ୍ତିତ୍ୱ ଥିଲା ମୋତେ ଜଣା ନାହିଁ ତଥାପି ତାଙ୍କ ନାଁ ଶୁଣିଲେ ମୁଁ ଅତିଶୟ ଭୟଭୀତ ହୋଇ ମୋର 'ପିଳେହି ପାଣି' ହୋଇ ଯାଉଥିଲା । ଅବଶ୍ୟ ସେତେବେଳେ ମୁଁ ମୋର ଅଜାଙ୍କଠାରୁ ଓ ମୋର ପିଉସୀଙ୍କଠାରୁ ଅନେକ ଭଜନ ଜଣାଣ, ଗଳ୍ପ ଓ କୌତୁକ ପ୍ରଶ୍ନୋତ୍ତରର ସମାଧାନ କରି ଶିଖିଥିଲି । ତଥାପି ଦାଶ ମହାଶୟଙ୍କ ନାମ ଶୁଣିଲେ ମୁଁ ଭୟରେ ଆମ ଢ଼ବା ଘରର ମଚା (ଭାଡ଼ି) ତଳେ ଲୁଚି ରହୁଥିଲି । ସେଠାରୁ ମୋତେ ଟାଣି ଆଣି ସ୍କୁଲକୁ ପଠାଇଲେ ମୁଁ ଡର ଛାଡ଼ି ବିଦ୍ୟାଧ୍ୟୟନରେ ବ୍ୟସ୍ତ ରହୁଥିଲି ।

ଅକ୍ଷର ଶିକ୍ଷା - ସ୍କୁଲର ଚଟାଣ ରେ 'ଅ' 'ଆ' ଆଦି ଅକ୍ଷର ଖଡ଼ୀରେ ଲେଖି ଘୋଷିବା ଓ ଅକ୍ଷର ଉପରେ ବୁଲାଇବା ଅଭ୍ୟାସ କରି ଆମ୍ଭେମାନେ ଅକ୍ଷର ଲେଖିବା ଅଭ୍ୟାସ କରିଥିଲୁଁ । ସମସ୍ତ ଅକ୍ଷର ଶିଖି ଗଲା ପରେ ସେଥିରେ ମାତ୍ରା ଓ ଫଳା ଲଗାଇଲୁଁ ଓ ସ୍ଲେଟ୍ ପେନ୍‌ସିଲ୍ ଓ କାଗଜ କଲମରେ ଲେଖା ଅଭ୍ୟାସ କଲୁଁ । ଛଅ ମାସ ମଧରେ ମାତ୍ରା ଲଗାଇ ଅକ୍ଷର ଶିକ୍ଷା କରି ମଧୁସୂଦନ ରାଓଙ୍କ ବର୍ଣ୍ଣବୋଧ ବହି ଶେଷକୁ ପଢ଼ି ଶିକ୍ଷା କଲୁଁ । ଅଙ୍କ ଶିକ୍ଷା ମଧ ୧୦୦ ପର୍ଯ୍ୟନ୍ତ ସରିଥିଲା । ସେତେବେଳେ ଅଧିରାଜ ମୋହନ ସେନାପତିଙ୍କ 'ଓଡ଼ିଆ ଶିକ୍ଷା ସୋପାନ' ନୂତନ ଭାବେ ପ୍ରଚଳିତ ହେଲା । ମୁଁ ମଧୁ ରାଓଙ୍କ ବର୍ଣ୍ଣବୋଧ ପଢ଼ି ଶିଖି ସାରି ଥିବାରୁ ମୋର ଓଡ଼ିଆ ଶବ୍ଦାର୍ଥ ବୋଧ ଜ୍ଞାନ ଉନ୍ନତ ଥିବାରୁ ସେହି ନୂତନ ପାଠ୍ୟ ପୁସ୍ତକ ମୋର ଶିକ୍ଷାଲାଭରେ ଅନ୍ତରାୟ ହୋଇ ପାରି ନ ଥିଲା ।

ଇତି ମଧରେ ଆମ ସ୍କୁଲକୁ ଖରମୁଣ୍ଡାର ଅନ୍ୟତମ ଶିକ୍ଷକ ୰ କୃଷ୍ଣଚନ୍ଦ୍ର ସାହୁ ବଦଳି ହୋଇ ଆସିଲେ ଓ ସେ ଆମ ଘରେ ଆସି ରହିବାରୁ ସେ ଆମ ଗୃହରେ ମୋତେ ଶିକ୍ଷା ଦେବାର ଦାୟିତ୍ୱରେ ରହିଲେ । ଆମ ଘରେ ରହିବାବେଳେ ତାଙ୍କ ଖାଦ୍ୟ ପେୟର ଯେପରି ଅସୁବିଧା ନ ହୁଏ, ସେଥି ପ୍ରତି ମୋର ମାଆ ସଜାଗ ଦୃଷ୍ଟି ଦେଉଥିଲେ । ତାଙ୍କୁ ଅନେକ ସମୟରେ ରନ୍ଧାବଢ଼ାରେ ସାହାଯ୍ୟ କରି ଘରୁ ତରକାରୀ ପତ୍ର ପର୍ଯ୍ୟନ୍ତ ଯୋଗାଉ ଥିଲେ । ତେଣୁ ସେ ସନ୍ତୁଷ୍ଟ ହୋଇ ମୋର ପଢ଼ାରେ ସ୍ୱତନ୍ତ୍ର ଦୃଷ୍ଟି ଦେଉଥିଲେ । ରାତିରେ ମୋତେ ପଢ଼ାଇବା ଶେଷ ହେବା ପର୍ଯ୍ୟନ୍ତ ମାଆ ଜଗି ରହୁଥିଲେ । ତେଣୁ ମୁଁ ୨ୟ /୩ୟ ଶ୍ରେଣୀ ରେ ପଢ଼ିବା ବେଳକୁ ଏତେ ଅଳ୍ପ ବୟସରେ ମଧ ପଣକିଆ ୨୫ ଖନ୍ଦା, (ପା, ଅଧା, ପଉନା, ସଓା, ଦେଢ଼ା, ଅଢ଼ିଆ) ଆଦି ସବୁ ମୁଖସ୍ଥ କରି ପକାଇଥିଲି ।

ଜଣେ ଶିକ୍ଷକ...

ଗାଁରେ ପଢ଼ିବା ସମୟରେ ଅନ୍ୟ ଯେଉଁ ଶିକ୍ଷକ ମାନେ ଆମ ସ୍କୁଲକୁ ବଦଳି ହୋଇ ଆସିଥିଲେ ସେମାନେ ହେଲେ ବରଗଡ଼ର ୰ ନୀଳାଦ୍ରୀ ଦାଶ, ସଂକ୍ରାଡ଼ାର ୰ ସନାତନ ପୁରୋହିତ ଓ ଶେଷବେଳକୁ ଆମ ଗାଁର ଗଙ୍ଗାଧର ସାହୁ ଆଦି ଗୁରୁଜନ ମାନେ । ଏହି ନିମ୍ନ ପ୍ରାଥମିକ ବିଦ୍ୟାଳୟ ଗଠନ ବେଳେ ଶିଶୁ ବୋଧ, କଥାବଳୀ, ସାହିତ୍ୟ - ପ୍ରବେଶ, ଅଙ୍କ ପୁସ୍ତକ ଅନ୍ତର୍ଭୁକ୍ତ ଥିଲା । ଏତଦ୍‌ବ୍ୟତୀତ ଦୈନିକ ପ୍ରାର୍ଥନା, ଖେଳ କସରତ, ପ୍ରକୃତି ପର୍ଯ୍ୟବେକ୍ଷଣ, ବଗିଚ୍ଚ କାମ ଓ ଗଳ୍ପକଥନ ଆଦି ଦୈନିକ ପାଠ ପଢ଼ାର ଅନ୍ତର୍ଭୁକ୍ତ ଥିଲା । ବଗିଚ୍ଚରେ ଫୁଲ ଗଛ ଲଗାଇ ତାକୁ ବଞ୍ଚାଇବା ପାଇଁ ସ୍କୁଲ ନିକଟସ୍ଥ କଟାରୁ ପାତଲି ରେ ୨ ଜଣ ମିଶି ପାଣି ଆଣି ଦେଉଥିଲୁଁ । ଏପରିକି ବର୍ଷକୁ ଥରେ ସ୍କୁଲ ଛାତ ମରାମତି ଓ ବଗିଚ୍ଚର ବାଡ଼ବନ୍ଦୀ ପାଇଁ ଗାଁରୁ ନଡ଼ା, ପୁଆଳ, ବାଉଁଶ, ଗଛ ଆଦି ସଂଗ୍ରହ କରୁଥିଲୁଁ ।

ସେତେବେଳେ ସ୍କୁଲରେ ଅନ୍ୟାନ୍ୟ ପାଠ୍ୟକ୍ରମ ସହିତ ଖେଳ କସରତ, କର୍ମ ସଙ୍ଗୀତ, ଅଭିନୟ ସହ ଶିକ୍ଷାଦାନ କରାଯାଉଥିଲା । ସେ ଗୁଡ଼ିକ ହେଲା - 'ବଡ଼ ହେଲେ ମୁହିଁ କୃଷକ ହେବି', ପୋଲିସ କର୍ମ, ପହରାବାଲା, ତଥା 'ଅଙ୍କା ବଙ୍କା ଦେଖ ଲତା ଗଛେ ଯାଏ ମାଡ଼ି' ଆଦି ଆମ୍ଭେମାନେ ମୁଖସ୍ଥ କରି ଅଭିନୟ କରିଥିଲୁଁ ।

ମୁଁ ଆମ ଗାଁରେ ପଢୁଥିବା ବେଳେ ମୋର ବଡ଼ ବାପା ସଁୟା ତୁରୁଙ୍ଗା ଅର୍ଥାତ୍ ତାଙ୍କ ଶାଶୁ ଘର ଗାଁରେ ସହକାରୀ ଶିକ୍ଷକତା କରୁଥିଲେ । ତାଙ୍କର ନିଜର ଜଣେ ଝିଅ ଓ ଗୋଟିଏ ପୁଅଙ୍କ ମୃତ୍ୟୁ ହେତୁ ତାଙ୍କର କେହି ନ ଥିବାରୁ ମୁଁ ତାଙ୍କ ସାଙ୍ଗେ ଯାଇ ରହୁଥିଲି । ମୋତେ ପାଞ୍ଚ ବର୍ଷ ହେବା ପର୍ଯ୍ୟନ୍ତ ଅର୍ଥାତ୍ ତାଙ୍କ ପୁଅଟିଏ ହେବାରୁ ମୋର ତାଙ୍କ ସଙ୍ଗେ ରହିବା କମିଗଲା । ତେଣୁ ତାଙ୍କ ସଙ୍ଗେ ରହି ମଧ ମୋର ପାଠରେ ବ୍ୟାଘାତ ଘଟୁ ନ ଥିଲା ଓ ପାଠରେ ମୋର ଅଜା ଓ ଅନ୍ୟ ମାନଙ୍କ ସଜାଗ ଦୃଷ୍ଟି ହେତୁ ପ୍ରାୟ ସମସ୍ତଙ୍କଠାରୁ ଆଗୁଆ ଥିଲି । ମୋର ସାନ କାକା ସେତେବେଳେ ପଦ୍ମପୁରର କନସିଂହା ଠାରେ ସହକାରୀ ଶିକ୍ଷକତା କରୁଥିଲେ । ସେତେବେଳେ ମୋର ଖେଳିବା ପାଇଁ କାକା ଏକ ଛୋଟ ଧଳା ଛେଳି ଛୁଆଟିଏ ମୋ' ପାଇଁ ଆଣି ଥିବାର ମନେ ହୁଏ । ଏଥିରୁ ତାଙ୍କର ମୋ' ପ୍ରତି ଅଗାଧ ସ୍ନେହର କଳନା କରା ଯାଇ ପାରେ । ମୋର ଯାହା ମନେ ପଡ଼େ ତାଙ୍କର ବନ୍ଧାପନା ସକାଶେ ମୁଁ ଅଜାଙ୍କ ସହ ବଳଦ ଗାଡ଼ିରେ ହାକ୍ରା ଭାର ଧରି ଜହ୍ନାପଡ଼ା ଯାଇଥିଲୁଁ । ଆଜିକାଲି ପରି ସେତେବେଳେ ବିବାହ ଓ ବନ୍ଧାପନା ଏକା ସଙ୍ଗେ ସମାହିତ ହେଉ ନ ଥିଲା ।

ସୂଚନାଯୋଗ୍ୟ ଯେ ମୋର ମାଆଙ୍କ ଠାରୁ କ୍ଷୀର ପାନ ଛାଡ଼ିବା ପରେ

ପ୍ରାୟତଃ ମୁଁ ଆଉ ମୋର ମାଆଙ୍କ ସଙ୍ଗେ ନ ଶୋଇ ମୋର ଅଜା, ବଡ଼ ବାପା ବା ବଡ ପିଉସୀ ଙ୍କ ସଙ୍ଗେ ରାତ୍ରିରେ ଶୋଉ ଥିଲି । ସେତେବେଳେ ସେମାନେ ମୋତେ ରାତ୍ରିରେ କିମ୍ବା ପ୍ରଭାତରେ ଉଠାଇ ଭଜନ, ଜଣାଣ ତଥା ଜ୍ଞାନ ଉଦ୍ଦୀପକ କୌତୁକ ପ୍ରଶ୍ନର ସମାଧାନ ଆଦି ଶିଖାଉଥିଲେ । ସେହି ସଂପର୍କୀୟ ଘଟଣା ଏଠାରେ ଉଲ୍ଲେଖଯୋଗ୍ୟ ।

ଆଗରୁ ପ୍ରଦତ୍ତ ସୂଚନା ଅନୁଯାୟୀ ଆମର ପରିବାର ବେହେରା ଓ ବ୍ରାହ୍ମଣମାଳରେ ଅବସ୍ଥାନ କରୁଥିବା ହେତୁ ଆମକୁ ଉଭୟ ସ୍ଥାନକୁ ଯିବା ଆସିବା ପ୍ରାୟ ବହୁବାର ଲାଗିଥିଲା । ତେଣୁ ଆମ୍ଭେମାନେ କେବେ ଅଜାଙ୍କ ସହ ବଳଦ ଗାଡ଼ିରେ ଯିବା ବେଳେ ବାଟରେ ଅନେକ ଗାଆଁରେ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ପଡୁ ଥିଲା । ସେତେବେଳେ ମୋର ଅଜା ମୋତେ ସେ ସ୍କୁଲକୁ ନେଇ ସେଠାକାର ଶିକ୍ଷକ ମାନଙ୍କୁ ମୋର ଜ୍ଞାନ ପରୀକ୍ଷା ପାଇଁ ମୋର ବୟସ ଓ ଶ୍ରେଣୀକୁ ଦୃଷ୍ଟି ପ୍ରଶ୍ନ ପଚାରିବାକୁ ଅନୁରୋଧ କରୁଥିଲେ। କାରଣ ମୋର ନିର୍ଭୀକତା ବଢ଼ିବ ଓ ନୂତନ ପରିସ୍ଥିତିର ସମ୍ମୁଖୀନ ହୋଇ ଜୀବନ ଧାରଣରେ ସଠିକ୍ ମୁକାବଲା କରି ପାରିବି । ଅଜାଙ୍କର ବଦ୍ଧ ଧାରଣା ଯେ ମୁଁ ନିଶ୍ଚୟ ଶିକ୍ଷକ ମାନଙ୍କର ଉତ୍ତର ସଠିକ୍ ଭାବେ ଅନାୟାସରେ ଦେଇ ପାରିବି । ଏହା ପ୍ରକୃତରେ ସତ୍ୟ ପ୍ରମାଣିତ ହେଉଥିଲା । ଶିକ୍ଷକ ମାନେ ପ୍ରଶ୍ନ ପଚାରି ମୁଁ ଉତ୍ତର ପ୍ରଦାନରେ କୃତକାର୍ଯ୍ୟ ହେବାପରେ ମୋତେ କୌତୁହଳବଶତଃ  ଶିକ୍ଷକ ମାନଙ୍କୁ ଏକ ପ୍ରଶ୍ନ ପଚାରିବାକୁ ଉତ୍ସାହିତ କରୁଥିଲେ । କାରଣ ସେହି ପ୍ରଶ୍ନର ଉତ୍ତର ଆମ ଘରେ ଆଲୋଚିତ ହୋଇ ଅନେକ ବାର ସମାହିତ ହୋଇ ସାରି ଥିଲା । ତେଣୁ ମୁଁ ସେ ସମ୍ବନ୍ଧରେ ନିଶ୍ଚିତ ଥିଲି । ତେଣୁ ଅଜାଙ୍କ ଇଙ୍ଗିତ କ୍ରମେ ମୁଁ ଶିକ୍ଷକ ମାନଙ୍କୁ ଏହି ପ୍ରଶ୍ନଟି ପଚାରୁ ଥିଲି । ପ୍ରଶ୍ନଟି ଥିଲା - "କେତେ ସତା ଛଅ (ଛ) ?" ଏହି କୌତୁକିଆ ପ୍ରଶ୍ନର ଉତ୍ତର ଅଧିକାଂଶ ପ୍ରାୟ କୌଣସି ଶିକ୍ଷକ ସଠିକ୍ ଉତ୍ତର ପ୍ରଦାନରେ ଅସମର୍ଥ ଥିଲେ । ସେପରି ସ୍ଥଳେ ମୋର ଅଜା ମୋତେ ତାର ଉତ୍ତର ଦେବାକୁ ଇସାରା ଦେବାରୁ ମୁଁ ତାର ଉତ୍ତର ଦେଇ ତାର ସମାଧାନ କରୁଥିଲି । ସେହି ପ୍ରଶ୍ନର ଉତ୍ତର ହେଲା - "କ ସତା ଛ ।" ଅର୍ଥାତ୍ 'କ' ଠାରୁ ଗଣି ନେଲେ ସପ୍ତମ ସ୍ଥାନରେ 'ଛ' ଆସିବ । ତେଣୁ ପ୍ରଥମେ ସେମାନେ ବୁଝି ନ ପାରି ପରେ ପ୍ରାଞ୍ଜଳ ଭାବରେ ବୁଝାଇ ଦେବାରୁ ସେମାନେ ସନ୍ତୋଷ ଓ ଆନନ୍ଦ ପ୍ରକାଶ କରୁଥିଲେ । ଏଥିରେ ଅଜାଙ୍କର ଛାତି କୁଣ୍ଢେମୋଟ ହୋଇ ଯାଉ ଥିଲା ଓ ତା ପରେ ସ୍କୁଲରୁ ବାହାରି ପୁଣି ଆମେ ଆମ ଗନ୍ତବ୍ୟ ପଥରେ ଆଗେଇ ଯାଉଥିଲୁଁ । ଏପରି ଭାବେ ବାଟରେ ପଡୁଥିବା ସମସ୍ତ ବିଦ୍ୟାଳୟ ମାନଙ୍କରେ ଏହି

କୌତୁକିଆ ପର୍ବର ସଂଘଟିତ ହେଉଥିଲା ।

ସାନ କାକା ଉପେନ୍ଦ୍ର ଦାଶ କେବଳ କିଛି ମାତ୍ର ଇଂରାଜୀ ପାଠ ପଢ଼ିଥିଲେ । ସେ ଯେବେ ଆମ ଘରକୁ ଛୁଟିରେ ଆସୁଥିଲେ ସେତେବେଳେ ଖୁସିରେ ମୋତେ ନିମ୍ନଲିଖିତ ଗୀତଟି ଶିଖାଇ ଅଭିନୟ କରିବାକୁ କହୁଥିଲେ । ସେ ଗୀତଟି ହେଲା -

ମୁଁ ତ ଇଂଗିରାଜୀ ପାଠ ପଢୁଥିବି,
କାନରେ କଲମ, ଆଖିରେ ଚଷମା, ଚଉକୀ ଉପରେ ବସିଥିବି ।

ଏହାକୁ ମୁଁ ଅଭିନୟ କରି ଗାଉଥିଲି । ମୋର ପାଇଁ ସେତେବେଳେ ବଜାରରୁ ପଇସିକିଆ ଚଷମାଟିଏ ମଧ୍ୟ ଆଣି ଦେଇଥିଲେ । ସେତେବେଳେ ଜିନିଷ ସବୁ ସୁଲଭରେ ମିଳୁଥିଲା ଓ ପଇସା ଦୁର୍ମୂଲ୍ୟ ଥିଲା ।

ଆଉ ଏକ ଘଟଣା ମଧ୍ୟ ମନେ ହୁଏ, ସେତେବେଳେ ଆଜିକାଲି ଭଳି ପିଲାଙ୍କ ପାଇଁ ପେଣ୍ଟ, କମିଜ୍‌ର ପ୍ରଚଳନ ନ ଥିଲା । ପିଲାଙ୍କ ପାଇଁ ଛୋଟ କରିଆ, କପଟୀ ଆଦି କିଣାଯାଉଥିଲା । ତାକୁ ଛୁଆମାନେ ପର୍ବପର୍ବାଣୀରେ ପିନ୍ଧି ବାହାରୁ ଥିଲେ । ସେତେବେଳେ ପର୍ବପର୍ବାଣୀ କହିଲେ ରଥଯାତ୍ରା, ବାଲିଯାତ୍ରା ବା କାଁ ଭାଁ କେଉଁ ଠାରେ ହରିହାଟ, ଯଜ୍ଞ ଆଦି ସଂପାଦିତ ହେଉଥିଲା । ତନ୍ମଧ୍ୟରେ ପୁରୀ ରଥଯାତ୍ରା ଛଡ଼ା ଭଟଲୀର ଦଧିବାମନ ପ୍ରଭୁଙ୍କର ରଥଯାତ୍ରା ବା ଖୁଣ୍ଟପାଲିର ତଥାକଥିତ ବାଲିଯାତ୍ରା ପ୍ରସିଦ୍ଧ । ପୁରୀ ରଥଯାତ୍ରା ସଙ୍ଗେ ଭଟଲୀର ରଥଯାତ୍ରାର ନିଗୂଢ଼ ସଂପର୍କ ଥିବାର ଶୁଣାଯାଏ । ଉଭୟ ସ୍ଥାନର ରଥ ଏକ ସଙ୍ଗେ ଟଣା ଯିବାର କଥିତ ଅଛି । ଆଉ ଏକ କିମ୍ବଦନ୍ତୀ ଅଛି କି, ଲଙ୍କାର ରାଜା ବିଭୀଷଣ ପ୍ରତିଦିନ ଆସି ଜଗନ୍ନାଥଙ୍କୁ ଦର୍ଶନ କରନ୍ତି ଓ ବିଶେଷତ୍ୱ ସଂପର୍କରେ ଏବେ ପ୍ରଜାତନ୍ତ୍ର ସାପ୍ତାହିକୀ ରେ ପ୍ରକାଶିତ । ଜଗନ୍ନାଥଙ୍କ ପଡ଼ିଆରୀ ଜଣେ ପଣ୍ଡା ବିଭୀଷଣଙ୍କୁ ଦର୍ଶନ କରି ତାଙ୍କ ଠାରୁ ସୁନା କଙ୍କଣ ପ୍ରାପ୍ତ ହୋଇଥିଲେ ଓ ତାହା ଏବେ ମଧ୍ୟ ତାଙ୍କ ଘରେ ପୂଜିତ । ରଥଯାତ୍ରା ବେଳେ ମଧ୍ୟ ବିଭୀଷଣ ଲଙ୍କାରୁ ଆସି କଳା ମଲ୍ଲୀମାଳ ପ୍ରଦାନ କଲା ପରେ ରଥଟଣା ଆରମ୍ଭ ହେବାର ପ୍ରବାଦ ଅଛି । ଏହା ରାମଙ୍କ ପରବର୍ତ୍ତୀ ଅବତାର ଜଗନ୍ନାଥ ଓ ବିଭୀଷଣଙ୍କ ପରମ ଭକ୍ତିର ସୂଚନା ପ୍ରଦାନ କରେ। ଜଗନ୍ନାଥ ଦାରୁ ବିଗ୍ରହ ଓ ଅବତାରୀ ରାମ ଓ କୃଷ୍ଣ ଯେ ଅଭିନ୍ନ ଓ ଏକ ତା'ର ନିରବଚ୍ଛିନ୍ନ ସଂପର୍କ ।

ଭଟଲୀ ରଥ ଦେଖିବାକୁ ଯିବା ପାଇଁ ଥରେ ମୋ' ପାଇଁ ମାଣିଆବନ୍ଧୀ ଧୋତି ଓ ଚଦର ଯଥାଟିଏ ଅଣା ଯାଇଥିଲା । ତାକୁ ସଫା କରାଇ ନୀଳ ରଙ୍ଗ ଦେବା ପାଇଁ ଘରକୁ ଆମ ଗାଁର ଧୋବା ଦୁର୍ଯ୍ୟୋଧନ ସେଠ୍‌ଙ୍କୁ ଡକା ଯାଇ ତାକୁ

ସୁଦୃଶ୍ୟ କରାଯାଉଥିଲା । ଉକ୍ତ ଦୁର୍ଯ୍ୟୋଧନ ସେଠ୍ ଗ୍ରାମର ତଥାକଥିତ ଛୋଟ ଛୁଆଙ୍କର ସାମୟିକ ରୋଗ ନିରାକରଣ ସକାଶେ ବେଶ୍ ପରିଚିତ । ରୋଗଟି ହେଲା, ଛୁଆଙ୍କୁ ଅତିଶୟ ମାତ୍ରା ରେ ଖାଦ୍ୟ ସେବନ ହେତୁ କଫ, ଗଜରୀ ଓ ଚୂର୍ଣ୍ଣା ରୋଗ ହେଲେ ଲୌକିକ ପ୍ରଥାନୁଯାୟୀ ଏହି ଦୁର୍ଯ୍ୟୋଧନଙ୍କୁ ଡକାଇ ଜଡ଼ା, ରାଶି ତେଲ ହାତରେ ଦେଇ ଏକ ପ୍ରଜ୍ଜଳିତ ସଳିତାକୁ ସେହି ହାତରେ ସ୍ପର୍ଶ କରି ଏପଟ ସେପଟ କଲେ ଚଡ଼ ଚଡ ଶବ୍ଦ କରେ ଓ ତାର ଶବ୍ଦ ଅନୁସାରେ ଶିଶୁକୁ ଚୂର୍ଣ୍ଣା ବଛରାର ଅଳ୍ପାଧିକ ପ୍ରମାଣ ମିଳେ ଓ ତାହା କରିବା ଦ୍ୱାରା ଥରେ ବା ଏକାଧିକ ବାର କରିବା ଦ୍ୱାରା ଉକ୍ତ ରୋଗ ଉପଶମ ହୁଏ । ଏଣୁ ସେ ଏକ ପ୍ରକାର ଶିଶୁ ରୋଗ ବିଶେଷଜ୍ଞ ବୋଲି ଗଣ୍ୟ । ଏହା ଛଡ଼ା ସେ ଶିଶୁ ମାନଙ୍କୁ ମନ୍ତ୍ର ଦ୍ୱାରା କୁଦୃଷ୍ଟିର ପ୍ରଭାବ ମୋଚନ ତଥା ମଣିଷ ଦେହରେ ଜଙ୍ଘର ସନ୍ଧିରେ ଉଠାନ୍ (ବାଗୀ/ ଫୁଲିବା) ହେଲେ ତାକୁ ମଧ ତନ୍ତ୍ର, ଔଷଧ ବା ଶେଷରେ ପାଚି ଗଲେ ଗରମ ଢ଼ାପଣରେ ଶଥା ଦେଇ ତାକୁ କଣା କରି ପୂଜ ନିଷ୍କାସନ କରି ରୋଗ ଉପଶମ କରୁଥିଲେ । ତେଣୁ ତାଙ୍କର କୌଳିକ ଧୋବା କାମ ଛଡ଼ା ଏହି 'ଟୁଣୁଟୁଣୁକିଆ' ଔଷଧାଦି ସେବନ କରି ବେଶ୍ ସୁନାମ ଅର୍ଜନ କରିଥିଲେ । ଆଜିକାଲି ଭଳି ଡାକ୍ତର ସେବା ବା ଉପଯୁକ୍ତ କବିରାଜୀ ଚିକିତ୍ସା ସଂପୂର୍ଣ୍ଣ ସୁଦୂର ପରାହତ ଥିଲା ।

ବହୁ ପୂର୍ବରୁ ଆମ ବରଗଡ଼ ସବ୍‌ଡିଭିଜନର ଭଟଲି ଯାତ୍ରାର ପ୍ରସିଦ୍ଧି ଥିଲା । ତେଣୁ ତାହା ଦେଖିବାକୁ ମୁଁ ଓ ମୋର ଅଜା ସେଠାକୁ ଯାଇଥିଲୁ ଓ ତାଙ୍କ ଭଉଣୀ ମୈନାଦେବୀଙ୍କ ଘରେ ବିଶ୍ରାମ କଲୁ ।

ମୋର ବାଲ୍ୟ ଶିକ୍ଷା ସମୟରେ ଆଗରୁ ପ୍ରଦତ୍ତ ସୂଚନା ଅନୁସାରେ ଅନେକ ସମୟରେ ଦୁରୁଙ୍ଗାରେ ବଡ ବାପାଙ୍କ ସଙ୍ଗରେ ରହୁଥିବାରୁ ମଝିରେ ମଝିରେ ବେହେରା ଓ ଦୁରୁଙ୍ଗା ଯାତାୟାତ କରିବାକୁ ପଡୁଥିଲା । ଅଧିକ ଆବଶ୍ୟକ ନ ହେଲେ ବଳଦ ଗାଡ଼ିର ଉପଯୋଗ ଅନୁଭୂତ ହେଉ ନ ଥିଲା । ତେଣୁ ଚ୍ଚାଲି ଚ୍ଚାଲି ଯିବାକୁ ପଡୁଥିଲା । ତେଣୁ ପାଦଚଲା ବାଟର ସ୍ୱଚ୍ଛତା ଅନୁସାରେ ଦୂରତା ପରିହାର୍ ପୂର୍ବକ କ୍ଷୁଦ୍ରତମ ପଥ ନେଇ ବିଲ ବାଡ଼ି ବା ଅନ୍ୟାନ୍ୟ ଧରସା ରାସ୍ତାରେ ନଦୀ ନାଳ ପାର ହୋଇ ଯିବାକୁ ପଡୁଥିଲା । ପ୍ରଥମରେ କିଛି ପଥ ଗଲା ପରେ ନାଳ ପୁଣି ଚଲା ବାଟ ଓ ପରେ ପୁଣି ନାଳ ପାର ହୋଇ ଯିବାକୁ ପଡୁଥିଲା । ଏପରି ଭାବେ ୩ଟି ନାଳ ପାର ହୋଇ ଓ ତିନୋଟି ସଡ଼କ ପାର ହୋଇ ଦୁରୁଙ୍ଗାରେ ପହଞ୍ଚିବାକୁ ହେଉଥିଲା ।

ମୋର ତତ୍କାଳୀନ ଶ୍ରଦ୍ଧେୟ ନାମ 'ବାବୁ' ବୋଲି ଥିଲା ଓ ଆମ ସଂପର୍କୀୟ

ପରିବାର ରେ ବାବୁ କହିଲେ ମୋତେ ହିଁ ବୁଝାଉଥିଲା । ବଡ଼ ବାପାଙ୍କ ପୁତ୍ର କନ୍ୟା ନ ଥିବାରୁ ତାଙ୍କ ପୁତ୍ର ପ୍ରାପ୍ତି ସକାଶେ ବଡ ବାପା ରୁଦ୍ରାଭିଷେକ ଅନୁଷ୍ଠାନ କରୁଥିଲେ ଓ ସେତେବେଳେ ପାତ୍ର ଧରି ପାଣି ଅଜାଡ଼ିବା କାମରେ ମୁଁ ସାହାର୍ଯ୍ୟ କରୁଥିଲି । ବାପା କେବଳ ମନ୍ତ୍ରାଦି ଉଚ୍ଚାରଣ କରୁଥିଲେ । ପରିଶେଷରେ ଶିବ ତାଙ୍କ ଗୁହାରି ଶୁଣି ଏକ ପୁତ୍ର ସନ୍ତାନ ଜାତ ହେଲା ୧୯୩୨ ସାଲରେ । ତାର ନାମ ଲୋକନାଥ, ନାଦିଆ/ଗୁଦାଲୁ ଦିଆ ଗଲା । ସେହି ବର୍ଷ ମୋର ଭଉଣୀ ସୁଷମାର ମଧ ଜନ୍ମ ହେଲା । ତାଙ୍କ ପୁତ୍ର ପ୍ରାପ୍ତି ପର୍ଯ୍ୟନ୍ତ ମୁଁ ତାଙ୍କ ସଙ୍ଗେ ଥିବାରୁ ପର୍ବପର୍ବାଣୀରେ ମୋ' ପାଇଁ ଉପଯୋଗୀ ବ୍ୟବହାର୍ଯ୍ୟ ସାମଗ୍ରୀ ଓ ପୋଷାକ ଆଦି ଆଣି ଦେଉଥିଲେ । ମୋର ଯାହା ମନେ ହୁଏ ସପ୍ତପୁରୀ ଅମାବାସ୍ୟା ବେଳେ ପୂର୍ବବର୍ତ୍ତୀ ଶୁକ୍ରବାର ଦିନ ଏକ କାଠ ଘୋଡ଼ାକୁ ଯତନରେ ଘୋଡ଼ାଇ ଢ଼ାଙ୍କି ବର୍ଷାସିକ୍ତ ଦିବସରେ ମୋ' ପାଇଁ ଆଣି ଥିଲେ । ମୁଁ ତାକୁ ଅନ୍ୟ ଶିଶୁମାନଙ୍କ ସାଙ୍ଗରେ ଉପରୋକ୍ତ ପର୍ବରେ ଟାଣି ଥିଲି ଓ ତାଙ୍କ ସାଙ୍ଗରେ ଏକ ଆମ୍ବ ତୋଟାକୁ ଯାଇ ଆନନ୍ଦରେ ଫେରି ଆସିଥିଲୁଁ ।

ଏପରି କାଳର ଗତି ଅନୁସାରେ ଦିନେ ଖରା ବେଳେ ରାତିରେ ଦିନସାରା କାର୍ଯ୍ୟ ବ୍ୟସ୍ତ ରହି ହଠାତ୍ କୌଣସି କାରଣ ନ ଥାଇ ଆଇଙ୍କର ମୃତ୍ୟୁ ହେଲା । ବୋଧ ହୁଏ ଆଜିକାଲି ଭଳି ହଠାତ୍ ହୃଦ୍‌କ୍ରିୟା ବନ୍ଦ (Heart Attack) ହୋଇ ଥିବାର ଅନୁମାନ କରା ହୁଏ । ସେତେବେଳେ ସେପରି ଆଶୁ ଡାକ୍ତରୀ ଚିକିତ୍ସାର ସୁଲଭ ନ ଥିବା ହେତୁ କୌଣସି ତତ୍କାଳୀନ ଚିକିତ୍ସା କରାଯାଇ ପାରି ନ ଥିଲା । ତାଙ୍କର ହଠାତ୍ ମୃତ୍ୟୁ ହେତୁ ମୋର ଅଜା ଅତିଶୟ ଭାବପ୍ରବଣ ହୋଇ ତାଙ୍କ ବିରହ ବେଦନା ସହ୍ୟ କରି ନ ପାରି ଅନେକ ସମୟରେ ଆଇଙ୍କ ଦହନ-ସ୍ଥଳ ଶ୍ମଶାନକୁ ଯାଇ ତାଙ୍କ ଚିରାଚରିତ ପ୍ରଥାନୁଯାୟୀ 'ଫୁଲଛିର ମାଁ' ବୋଲି ସମ୍ବୋଧନ କରି ସେଠାରେ ବସି ରହୁଥିଲେ । ପରେ ମୋର ପିଉସୀ ଓ ତାଙ୍କ ସାନ ଭଉଣୀ ହାରା ଦେବୀ ସେଠାକୁ ଖୋଜି ଯାଇ ସାନ୍ତ୍ୱନା ଦେଇ ଫେରାଇ ଆଣୁଥିଲେ । ଏଥିରୁ ତାଙ୍କ ଦାମ୍ପତ୍ୟ ସ୍ନେହର ଅତୁଳନୀୟ ପ୍ରବଣତା ସୂଚିତ ହୁଏ । ଏହା ପ୍ରାୟ ବହୁ ଦିନ ଧରି ଚାଲିଥିଲା ।

ମୋର ଗାଁ ସ୍କୁଲ ରେ ପଢୁଥିବା ବେଳେ ମୋର ଆଉ କେତେକ ଅନୁଭୂତି ଓ ପିଲାକାଳର ଖେଳ ଏଠାରେ ସୂଚନା ଦେବା ଅପ୍ରାସଙ୍ଗିକ ହେବ ନାହିଁ ।

ସେତେବେଳେ ବାର୍ଷିକ ଖାଦ୍ୟ ସଂଗ୍ରହ ପାଇଁ ଜମିରୁ ଆଦାୟ ହେଉଥିବା ଧାନକୁ ସିଝାଇବା ପାଇଁ ଆମ୍ବତୋଟାରୁ ଶୁଖିଲା ପତ୍ର ନିଜର ବଳଦଗାଡ଼ିରେ ସଂଗ୍ରହ କରି ଆଣିବାକୁ ପଡୁଥିଲା । ସେଥିରେ ଭାଗ ନେବାରେ ଆମ୍ଭେ ଶିଶୁମାନେ ଆନନ୍ଦିତ ହେଉଥିଲୁ ।

ପୁଣି ସେତେବେଳେ ପ୍ରଚଳିତ ଗାଁଉଲି ଖେଳ ମଧରେ କେଳି ଦଣ୍ଡା, ବାଟି, ଗାଦୀ ଖେଳ ଓ ଗେଡ଼ି ଖେଳ ବେଶ୍ ଆକର୍ଷଣୀୟ ଥିଲା । ସେଥି ମଧ୍ୟରୁ ଏବେ ଗେଡ଼ୀ ଖେଳ, କେଲି ଦଣ୍ଡା ଓ ବାଟି ଖେଳର ପ୍ରଚଳନ ଅଛି । କିନ୍ତୁ ଅନ୍ୟ ଖେଳ ସବୁ ଏତେ ପ୍ରଚଳନ ନାହିଁ । ଆଜିକାଲି ସିଗାରେଟ କଂପାନୀ ବା ଅନ୍ୟ ବ୍ୟବସାୟୀ ପ୍ରତିଷ୍ଠାନ ମାନେ ଉଚ୍ଚ ବାଡ଼ିରେ ଗୋଡ଼ ରଖିବା ପାଇଁ କାଠ ବା ବାଉଁଶ ପଟା ବନ୍ଧାଯାଇ ତାକୁ ଗୋଡ଼ରେ ବ୍ୟବହାର କରି ବିଜ୍ଞାପନ ପ୍ରଚାର କରୁଛନ୍ତି । ଏହା ଦ୍ୱାରା ଉଚ୍ଚରୁ ଗୋଡ଼କୁ ରଖି ବାଡ଼ି ସାହାଯ୍ୟରେ ଦୂରକୁ ପାହୁଣ୍ଡ ପକାଇ ଚାଲିବାକୁ ହୁଏ ଓ ସେହି ଚାଲି ଦର୍ଶକ ମନରେ କୌତୁହଳ ଓ ଅମୋଦ ପ୍ରଦାନ କରେ । ଏହି ଗେଡ଼ୀ ଖେଳ ବିଶେଷତଃ ବର୍ଷା ଋତୁରେ କାଦୁଅରୁ ରକ୍ଷା ପାଇବା ପାଇଁ ଓ ସ୍ଥାନରୁ ସ୍ଥାନକୁ ଯିବାର ସୁବିଧା ପାଇଁ ବ୍ୟବହୃତ କରାଯାଉଥିଲା । କାରଣ ସେତେବେଳେ ଗାଁର ରାସ୍ତା ସବୁ କର୍ଦ୍ଦମାକ୍ତ । ତାର କେହି ରକ୍ଷଣାବେକ୍ଷଣ କରୁ ନ ଥିବାରୁ ଏହା ଚାଲିବାର ଅନୁପଯୋଗୀ ହୋଇ ପଡ଼ିଥିଲା । ଗେଡ଼ୀରେ ଚାଲିବା ବ୍ୟତୀତ ଗୋଡ଼ରେ ଘୁଙ୍ଗୁରୁ ବାନ୍ଧି ନାଚିବାର ମଧ ପ୍ରଚଳନ ଅଛି ।

ଗାଦୀ ଖେଳ - ଏହା ଏକ ତିନିକୋଣିଆ ଛୋଟ କାଠ ତିଆରି ଖେଲଣା । ଏହା ପ୍ରାୟ ୩" ରୁ ୫" ବା ୧ ୧/୨" ରୁ ୩" ପର୍ଯ୍ୟନ୍ତ ଉଚ୍ଚ ପତଳା କାଠପଟାରେ ତିଆରି । ଏହାକୁ ଗାଦୀ କହୁଥିଲେ । ଏପରି ପିଲାମାନେ ନିଜେ ନିଜେ ଘର ମାନଙ୍କରୁ ପିତାମାତାଙ୍କୁ କହି ଓ ତାକୁ ଯୋଗାଡ଼ କରି ଖେଳିବା ସ୍ଥାନକୁ ଧରି ଆସୁଥିଲେ । ସମସ୍ତେ ମିଶାଇ ତାକୁ ସର୍ବସମ୍ମତ ଏକ ଦୂର ସ୍ଥାନରେ ଧାଡ଼ିରେ ରଖାଯାଇ ତାକୁ ପ୍ରତିଯୋଗୀ ବାଳକ ମାନେ ପାଳି କରି ଏକ ଛୋଟ ଗାଦୀକୁ ଗୋଟିଏ ବାଡ଼ି ସାହାଯ୍ୟରେ ଏକ ନିର୍ଦ୍ଦିଷ୍ଟ ସ୍ଥାନରୁ ଚୁକ୍ତି ଅନୁସାରେ ୨/୩/୪ ଥରରେ ସେହି ଗାଦୀ ଧାଡ଼ିକୁ ତଳେ ପକାଇ ଦେଲେ ସେ ବିଜୟ ଲାଭ କରୁଥିଲା । ଏପରିକି ସର୍ତ୍ତ ଅନୁଯାୟୀ ସେ ସବୁର ଅଧିକାରୀ ମଧ ହେଉଥିଲା । କିନ୍ତୁ ସେ ସବୁ ଜିନିଷର ସୁଲଭତା ନ ଥିବାରୁ ଶେଷରେ ଯେ ଯାହାର ଗାଦି ଧରି ଘରକୁ ଫେରୁଥିଲେ । ଏହି ଖେଳରେ ୨/୩ ବା ୪ ଜଣ ବାଳକ ପାଳି ଅନୁସାରେ ଭାଗ ନେଇ ଥାଆନ୍ତି ଓ ସବୁଠାରୁ କମ୍ ଥରରେ ସବୁ ଗାଦିକୁ ପକାଇ ଦେଲେ ସେ ବିଜୟୀ ହୁଏ । ଏଥିରେ ସାଧାରଣତଃ ବଳ ବୁଦ୍ଧି ଓ ଅଭ୍ୟାସର ଆବଶ୍ୟକତା ହୁଏ ।

ସୋଲ ଖେଳ - ଏହା ମଧ ଗ୍ରାମାଞ୍ଚଳର ଏକ ଜନପ୍ରିୟ ଓ ଆକର୍ଷଣୀୟ ଖେଳ ଥିଲା । ସୋଲ ହେଉଛି କଉଁରିଆ ଗଛର ମଞ୍ଜି । ଏହି ଗଛ ପାକଳ ହେଲେ ତାକୁ ପାଣିରେ ବତୁରାଇ କିଛି ଦିନ ପରେ ଗଛର ଛାଲିକୁ ବାହାର କରି ମଞ୍ଜି

(ସୋ଼ଲ)କୁ ଅଲଗା କରନ୍ତି । ବାହାରି ଥିବା ଛାଲିକୁ ଛଣପଟ ରୂପେ ନାନା କାମରେ ବ୍ୟବହାର କରାଯାଏ । କିନ୍ତୁ ସୋଲଟି ଉଶ୍ୱାସ କ୍ଷିପ୍ର ଦହନୀୟ ହୋଇଥାଏ । ସେହି ସୋଲକୁ ଘରେ ନିଆଁ ଧରାଇ ଇନ୍ଧନ କାର୍ଯ୍ୟର ପ୍ରାରମ୍ଭ କରାଯାଏ । ଏହି ପ୍ରାରମ୍ଭିକ ନିଆଁ ଧରାଇବା ପାଇଁ କାଠ ଛାଲି ବା ଛୁଇ (ଆଖୁରସ ନିସୃତ ଶୁଷ୍କ ଆଖୁ ଖଣ୍ଡ) ଏସବୁ ଶୀଘ୍ର ନିଆଁ ଜାଳିବାରେ ସହାୟକ ।

ଉପରୋକ୍ତ ଶୁଷ୍କ ସୋଲ ଗୁଡ଼ିକୁ ପିଲାମାନେ ସଂଗ୍ରହ କରି ଗୋଛାଏ ଲେଖାଏ ଧରି ସନ୍ଧ୍ୟା ଅବ୍ୟବହିତ ପୂର୍ବରୁ ଗାଁ ଦାଣ୍ଡରେ ରୁଣ୍ଡ ହୁଅନ୍ତି । ସେମାନେ ଏକ ନିର୍ଦ୍ଦିଷ୍ଟ ସ୍ଥାନରୁ ନିଜ ନିଜ ସୋଲକୁ ଭୂମି ଉପରେ ଘୋଷାରି ନିଜ ଶକ୍ତି ମୁତାବକ ଦୂରକୁ ପ୍ରେରଣ କରନ୍ତି । ଥରକୁ ଜଣେ ପିଲା ନିଜ ସୋଲକୁ ଦୂରକୁ ଫିଙ୍ଗିଦିଏ । ଯେଉଁ ବାଳକର ସୋଲ ସମସ୍ତଙ୍କ ସୋଲକୁ ଟପି ଦୂରକୁ ଯାଏ ସେ ଅନ୍ୟ ସବୁ ସୋଲର ଅଧିକାରୀ ହୁଏ । ତାପରେ ଖେଳର ସମାପ୍ତି ଘଟେ । ପରିଶେଷରେ ସେହି ବିଜୟୀ ବାଳକ ସେ ସବୁ ସୋଲକୁ ନିଜେ ନେଇଯାଏ ବା ଇଚ୍ଛା ଅନୁସାରେ ସମସ୍ତଙ୍କୁ ଯେ ଝା ସୋଲ ଦେଇ ପର ଦିନ ମାନଙ୍କରେ ଖେଳିବାକୁ ପୁଣି ନିମନ୍ତ୍ରଣ ଜଣାଏ ।

ଆଉ ଏକ ପିଲାବେଳର ଖେଳକୁ ବର୍ଣ୍ଣନା ନକରି ରହି ପାରୁ ନାହିଁ । ତାହା ହେଲା ବାଉଁଶ ଡଲା (ଗାଣ୍ଡୁଆ)ର ଶକ୍ତ ବାଉଁଶ ତିଆରି ମଣ୍ଡଳା ବିଶେଷ । ତାହାକୁ ଡଲାରେ ଜିନିଷ ବୋହିବା ପାଇଁ ଛୋଟ ଛୋଟ ବାଉଁଶ ଖଣ୍ଡରେ ଗୁନ୍ଥା ଯାଇଥାଏ । ସେହି ଡଲାଟି ପୁରୁଣା ହୋଇ ଅବ୍ୟବହୃତ ଯୋଗ୍ୟ ହେଲେ ସେଥିରୁ ସେହି ମଣ୍ଡଳା ବାହାର କରି ବାଳକମାନେ ଏକ ବାଡ଼ି (ବାଉଁଶ ବା ବାଈଁ ଗଛର ଏକ କାନୀ ଥିବା) ସାହାଯ୍ୟରେ ଚଳାଇ ଆମ ସାଥୀରେ ନେଇ ଯାଇ ପାରୁଥିଲୁଁ । ଏହା ପ୍ରାୟ ଆମର ଖେଳିବା ସମୟରେ ବା ଗାଧୋଇ ଯିବା ବେଳେ ବା ସନ୍ଧ୍ୟାରେ ବନ୍ଧ କଟାକୁ କପଡ଼ା କାଚି ଯିବା ବା ଝାଡ଼ା ଯିବା ବେଳେ ନେଇ ଯାଉଥିଲୁଁ ଓ ସେଥିରୁ ଅଶେଷ ଆନନ୍ଦ ମିଳୁଥିଲା । ମୋ ସଙ୍ଗେ ମୋର ପାଠୁଆ ଅପାଠୁଆ ସାଙ୍ଗ ସାଥୀ ମାନେ ଯୋଗ ଦେଉଥିଲେ । ଏଠାରେ ଆଉ ଏକ କଥା ଉଲ୍ଲେଖଯୋଗ୍ୟ । ଆମ ଗାଁ ବନ୍ଧ ଓ କଟା ଆଡ଼ିରେ ଅନେକ କଣ୍ଟାଯୁକ୍ତ ବମ୍ବୁର ଗଛ ଥିଲା । ସେହି ଗଛରୁ ଅନେକ ସମୟରେ ଏକ ପ୍ରକାର ଅଠା ମୁଣ୍ଡା ହୋଇ ଜମା ରହେ । ତାହା ନାନା ରଙ୍ଗର ହୋଇ ସମସ୍ତଙ୍କୁ ବିଶେଷତଃ ଆମକୁ ଆକୃଷ୍ଟ କରୁଥିଲା । ଆମେ ସେସବୁ ସଂଗ୍ରହ କରି ଆମ ଖେଳଣା ମଣ୍ଡଳାରେ ସଂଯୋଗ କରି ତାକୁ ଚଳାଇବା ସମୟରେ ସୂର୍ଯ୍ୟାଲୋକରେ ଝଟକୁ ଥିଲା ଓ ଆମେ ସେଥିରେ କୃତ୍ରିମ ଆଲୋକ ସଂଯୋଗ

ହେବା ମନେ କରି ଆନନ୍ଦ ଲଭିବାର ଉପଭୋଗ କରୁଥିଲୁଁ । ଏପରି ଭାବେ ଗ୍ରାମୀଣ ଚିନ୍ତାଧାରା ଓ ସାମାଜିକ ବିଷୟବସ୍ତୁର ପ୍ରଭାବ ଆମ ଉପରେ ପଡ଼ିଥିଲା ।

ସେତେବେଳେ ବୟସ୍କ ବୁଢ଼ାବୁଢ଼ୀଙ୍କଠାରୁ କାହାଣୀ ଶୁଣିବାରେ ଆଗ୍ରହୀ ହେଉଥିଲୁଁ ।

ଗାଁରେ ପାଠ ପଢୁଥିବା ବେଳେ ବିଶେଷତଃ ଶୀତ ଋତୁରେ ପୌଷ ପୂର୍ଣ୍ଣମୀ ବେଳେ ବୟସ୍କ ଲୋକେ ମାଲପଥର ଉଠାଇବାଦି କୌତୁକିଆ ଖେଳ ମାନଙ୍କରେ ଭାଗ ନେଉଥିଲେ । ନଡ଼ିଆ ଖେଳରେ ବିଶେଷତଃ ମୋର ସାନ କାକା ୰ ଉପେନ୍ଦ୍ର ଦାଶ ତଥା ତତ୍କାଳୀନ ପ୍ରାଥମିକ ସ୍କୁଲ ଶିକ୍ଷକଙ୍କ ଅଂଶଗ୍ରହଣ ବେଶ୍ ଉପଭୋଗ୍ୟ ହେଉଥିଲା । ସେତେବେଳେ ଗୋଟିଏ ନଡ଼ିଆର ଦାମ୍ ପ୍ରାୟ ସେ କାଳର ୨ ପଇସା ବା ୬ ପାହୁଲା ୩ ନୂଆ ପଇସା ଥିଲା । ନଡ଼ିଆ ଖେଳର ପ୍ରଣାଳୀ ୨ ରକମର ଥିଲା । ପ୍ରଥମ ପ୍ରକାରେ ନଡ଼ିଆକୁ ଭୂମିରେ ବାଡ଼େଇ ତହିଁରୁ ନଡ଼ିଆ ଖଣ୍ଡ ବାହାର କରିବା ଓ ଆଉ ଏକ ପ୍ରଣାଳୀ ନଡ଼ିଆକୁ ଫିଙ୍ଗି ଏକ ନିର୍ଣ୍ଣିତ ସ୍ଥାନକୁ ପହଞ୍ଚାଇବା । ନଡ଼ିଆ ବାଡ଼େଇବାକୁ ଡାହାଣ ହାତ ଓ ବାଁ ହାତ ଉଭୟର ପ୍ରୟୋଗ କରାଯାଉଥିଲା । ଡାହାଣ ହାତରେ ୨/୩ ଥର ଓ ବାଁ ହାତରେ ୨ ଥର ବା ଥରେ ଭୂମିରେ ପିଟି ନଡ଼ିଆ ବାହାର କରିବାକୁ ପଡୁଥିଲା । ଏହା ସାଧାରଣତଃ ଦୁଇ ଜଣଙ୍କ ମଧ୍ୟରେ ପ୍ରତିଯୋଗିତା ଚାଲୁଥିଲା । କୌଣସି ଏକ ନଡ଼ିଆକୁ ଦେଖି ପରୀକ୍ଷା କରି ତାକୁ ଡାହାଣ ହାତରେ ଓ ବାଁ ହାତରେ ଥରେ ବା ଦୁଇ ଥର ବାଡ଼େଇବାର ଚୁକ୍ତି ହେଉଥିଲା । ପ୍ରଥମ ଜଣକ ସେଥିରେ ସମ୍ମତ ହେଲେ ନଡ଼ିଆ ପିଟା ଆରମ୍ଭ ହୋଇ ନିର୍ଦ୍ଦିଷ୍ଟ ଥର ବାଡ଼େଇବା ପରେ ଯଦି ନଡ଼ିଆ ଖଣ୍ଡ ବାହାରୁଥିଲା ତେବେ ଯେ ବାଡ଼େଇଥିଲା ସେ ନଡ଼ିଆକୁ ଜିତୁଥିଲା । ନଚେତ୍ ଯାହା ସଙ୍ଗେ ଯାହା ଚୁକ୍ତି ଥିଲା ସେ ସବୁ ନେଉଥିଲା । ଅର୍ଥାତ୍ ବାଡ଼େଇବା ବ୍ୟକ୍ତି ହାରିଯାଇ ତାର ଦାମ ତାକୁ ଦେବାକୁ ପଡୁଥିଲା । ଏପରି ଭାବେ ଅନେକ ଦ୍ୱନ୍ଦୀ ପ୍ରତିଦ୍ୱନ୍ଦୀ ଏଥିରେ ଭାଗ ନେଉଥିଲେ । ଏଥିରେ ଅନେକ ଥର ନଡ଼ିଆ ବାଡ଼େଇବା ବେଳେ କାଖରେ ଲୁଗା ଚାପି ଧରି ବାଡ଼େଇବା ଚୁକ୍ତି ହେଉଥିଲା । କାରଣ ଏଥିରେ ବେଶୀ ବଳ ପ୍ରୟୋଗ କରାଯାଇ ପାରୁ ନ ଥିଲା ।

ନଡ଼ିଆ ଫୋପାଡ଼ିବା ଅନ୍ୟ ଏକ ପ୍ରତିଯୋଗିତା । କୌଣସି ଏକ ନିର୍ଦ୍ଦିଷ୍ଟ ଦୂରତାକୁ ଅର୍ଥାତ୍ ପଡ଼ିଆର ଏକ ନିର୍ଦ୍ଦିଷ୍ଟ ସ୍ଥାନ ବା ଏକ ଚାଷକମିର ହିଡ଼ ବା ଅନ୍ୟ ଏକ ସୂଚୀତ ଦୂରତାକୁ ନଡ଼ିଆକୁ ହାତରେ ଧରି ଫିଙ୍ଗିବାକୁ ହେଉଥିଲା । ତାପରେ ନଡ଼ିଆ ଫିଙ୍ଗିବା ବେଳେ ନଡ଼ିଆ ଗୋଟିଏ ସ୍ଥାନରେ ପଡ଼ି ତାପରେ ସେ କିଛି ଦୂର

ଗଡ଼ିଯିବାର ସମ୍ଭାବନା ଥିଲା । ତାକୁ ମଧ ବିଗ୍ରରକୁ ନେବାକୁ ପଡୁଥିଲା ନଚେତ୍ ସେ ହାଁରିଯାଉଥିଲା । ଏଥିରେ ପାଖରେ ଦେଖୁଥିବା ଦର୍ଶକ ବନ୍ଧୁମାନେ ଉଭୟ ବାଦୀ ବା ପ୍ରତିବାଦୀ ପକ୍ଷର ସହାୟକ ହୋଇ ଆଉ ଅନେକ ନଡ଼ିଆ ଯୋଡୁଥିଲେ। ଅର୍ଥାତ୍ ଫିଙ୍ଗିବା ବାଲା ବା ଯାହା ପ୍ରେରଣାରେ ନଡ଼ିଆ ଫିଙ୍ଗା ଯାଉଥିଲା ସେ ଅନ୍ୟାନ୍ୟ ସହାୟକ ବନ୍ଧୁଙ୍କ ନଡ଼ିଆକୁ ଜିତି ନେଉଥିଲା ବା ତାର ଦାମ୍ ଦେଲା ବେଳେ ସେ ସବୁର ଦାମ୍ ଦେବାକୁ ପଡୁଥିଲା ।

ଗାଁ ମାନଙ୍କ ଦାଣ୍ଡରେ ବଡ଼ ବଡ଼ ପଥର ଖଣ୍ଡ ଗୋଲାକାର ଭାବେ ପଡ଼ିଥିବାର ଦେଖାଯାଉଥିଲା । ତେଣୁ ମାଳପଥର, ଓଜନିଆ ପଥର ବୋଲି କହୁଥିଲେ। ତାକୁ ହଟାଇବା ବା ଉଠାଇବା ପାଇଁ ଶକ୍ତିବିବାଦ ଲାଗୁଥିଲା । ସେଥିରେ ବୟସ୍କ ବଳଶାଳୀ ଲୋକମାନେ ଭାଗ ନେଇ ନିଜର ବଳ ଓ ଗ୍ରତୁରୀ ପ୍ରଦର୍ଶନ କରି ଦର୍ଶକମାନଙ୍କୁ ଆନନ୍ଦ ପ୍ରଦାନ କରୁଥିଲେ ।

ଏତଦ୍‌ଭିନ୍ନ ଗ୍ରାମୀଣ ସାଂସ୍କୃତିକ କାର୍ଯ୍ୟକ୍ରମ ମଧରେ ଗାଁରେ ଆୟୋଜିତ ହେବାକୁ ଥିବା କୃଷ୍ଣଙ୍କ ଲୀଳା, ରାହାସ, ଅପେରା ବା ଶରତ୍‌କାଳୀନ ଡ଼ାଲଖାଇ ନୃତ୍ୟ ଅନ୍ୟତମ । ସେତେବେଳେ ଆମ ଗାଁରେ, ଖୁଣ୍ଟପାଲିରେ ବା କୁମ୍ଭାରୀରେ ବୈଶାଖ ଓ ଜ୍ୟେଷ୍ଠ ମାସରେ କୃଷ୍ଣ ଲୀଳା ପ୍ରାୟ ୧ ମାସରୁ ଦେଢ଼ ମାସ ପର୍ଯ୍ୟନ୍ତ ରାତ୍ରରେ ଅଭିନୟ କରାଯାଉଥିଲା । ମୋର ବଡ଼ ବାପାଙ୍କ ଶାଶୁଘର ଟୁରୁଙ୍ଗାରେ ଚୈତ୍ର ଶୁକ୍ଳ ପକ୍ଷ ରାମ ନବମୀ ଠାରୁ ପୂର୍ଣ୍ଣମୀ ପର୍ଯ୍ୟନ୍ତ ରାମ ଜନ୍ମ ଠାରୁ ରାବଣର ମୃତ୍ୟୁ ପର୍ଯ୍ୟନ୍ତ ବୈଷ୍ଣବ ପାଣିଙ୍କ ନାଟକ ଅଭିନୟ କରାଯାଉଥିଲା ।

ଆମ ଗାଁର କୃଷ୍ଣ ଲୀଳାର ବିଶେଷତ୍ୱ ଏହି ଯେ ଜଣେ ଗାୟକ ସେ କାଳର ଗାଁଧଳୀ ଲେଖକଙ୍କ ଲେଖା ଗୀତ ନାନା ରାଗ ରାଗିଣୀରେ ଗାନ କରାଯାଇ ମଝିରେ ମଝିରେ ତାର ଅଭିନୟ ପାଇଁ ଲୋକଙ୍କୁ ସୁବିଧା ଦିଆଯାଉଥିଲା । ସେଥିରେ ଗାଁର ଲୋକମାନେ, ଯୁବା, ବୟସ୍କ ଓ ବୃଦ୍ଧାବସ୍ଥା ଲୋକମାନେ ନାଟକର ବିଭିନ୍ନ ଚରିତ୍ରରେ ଅଭିନୟ କରୁଥିଲେ । ଲୋକମାନେ ଗାଁ ସ୍ତ୍ରୀ ଲୋକଙ୍କର ଲୁଗାପଟା ଓ ଗହଣା ମାଗିଆଣି ତାକୁ ପିନ୍ଧି ସ୍ତ୍ରୀ ଭୂମିକାରେ ଅଭିନୟ କରୁଥିଲେ । ସେହି ଅଭିନୟର ବିଶେଷ ଚରିତ୍ର ଗୁଡ଼ିକ ହେଲା ଗୋପୀ, କୃଷ୍ଣ, ରାଧା, କଂସ, କଂସର ରକ୍ଷକ, ଯଶୋଦା, ବିଶାଖା, ମନ୍ତ୍ରୀ, ଚୌକିଦାର, ଶୁକମୁନି, ନାରଦ, ପରିକ୍ଷୀତ ମହାରାଜ ଆଦି ଅନେକ । ଯେଉଁ ଦିନ ଯେଉଁ ଚରିତ୍ର ଗୁଡ଼ିକ ଥାଏ ସେହି ଦିନ ସେ ସବୁ ଅଭିନୟ ପାଇଁ ବିଭିନ୍ନ ଲୋକ ଅଂଶ ଗ୍ରହଣ କରିବେ । କିନ୍ତୁ ପ୍ରତିଦିନର ମୁଖ୍ୟ ଚରିତ୍ର ହେଲା ରାଜା ପରିକ୍ଷୀତ ଓ ଶୁକମୁନି । ସେମାନେ ଗୀତ ଗାଇ ଅଭିନୟ କରି

କଥୋପକଥନ ଛଳରେ ସେ ଦିନର ଅଭିନୟ ହେବାକୁ ଥିବା ଚରିତ୍ରର ସୂଚନା ଦେବେ ଓ ପରେ ନିୟମିତ ଚରିତ୍ର ଅଭିନୟ ଆରମ୍ଭ ହେବ । ଏପରି ଭାବେ କୃଷ୍ଣ ଜନ୍ମ ଠାରୁ ତାଙ୍କ ବାଲ୍ୟଲୀଳା, ମଥୁରାଗମନ ଓ କୃଷ୍ଣଙ୍କ ଦ୍ୱାରା କଂସ ବଧ ପର୍ଯ୍ୟନ୍ତ ୪୮ ଲୀଳା ପ୍ରାୟ ମାସାଧିକ କାଳରେ ସଂପୂର୍ଣ୍ଣ ହୁଏ । ଏଥିରେ ଗ୍ରାମବାସୀ ପ୍ରାୟ ରାତ୍ରରେ ପ୍ରଥମ ଭାଗ ଶେଷରୁ ଦ୍ୱିତୀୟ ୩ୟ ପ୍ରହର ପର୍ଯ୍ୟନ୍ତ ଦର୍ଶନ କରି ଆମୋଦିତ ହୋଇ ଥାଆନ୍ତି । ଏହା ଗ୍ରାମର ଏକ ମଧ୍ୟ ସ୍ଥଳରେ ଅଭିନୀତ ହେଉଥିବାରୁ ତାକୁ ଲିପା ପୋଛା କରାଯାଇ ପ୍ରତିଦିନ ସନ୍ଧ୍ୟା ବେଳେ ଦର୍ଶକ ମାନେ ନିଜ ନିଜ ସ୍ଥାନ ସଂରକ୍ଷଣ କରି ରଖି ଥାଆନ୍ତି ।

ଏହି ଲୀଳାରେ ମୋର କାକା ଉପେନ୍ଦ୍ର ଦାଶ ପ୍ରାୟ ଶୁକମୁନି ଭୂମିକାରେ ଅଭିନୟ କରନ୍ତି । କୌତୁହଳ କ୍ରମେ ମୁଁ ମଧ୍ୟ ତାଙ୍କ ସଙ୍ଗେ ତାଙ୍କର ଚେଲା ରୂପେ ପଛେ ପଛେ ବେଶ ହୋଇଯାଏ ଓ ଅଭିନୟରେ ଯୋଗ ଦିଏ । ଗ୍ରାମରେ ବେଶ ହେବା ମାନେ ଗାଁରେ ମିଳୁଥିବା 'ଛୁଇ ମାଟି' ଏହା ଏକ ଧଳା ରଙ୍ଗର ମାଟି ଭୂମିରୁ ବାହାରେ । ତାକୁ ଗାଁରେ ଲୋକେ ଚୂନ ପରିବର୍ତ୍ତେ ଘରକୁ ଧଳା ରଙ୍ଗ ଯୁକ୍ତ କରିବାରେ ଘସି ଥାଆନ୍ତି । ସେପରି ଗାଁର ଘର କାନ୍ଥକୁ ଲାଲ ରଙ୍ଗ କରିବାରେ ଲାଲ ମାଟି ମଧ୍ୟ ଗାଁରେ ମିଳେ । ଉପରୋକ୍ତ ଧଳା ଛୁଇମାଟିକୁ ଗାଁରେ ଘରେ ଲୋକେ ମୁଣ୍ଡା ମୁଣ୍ଡା କରି ସାଇତି ରଖି ଥାଆନ୍ତି । ତାକୁ ଅଣାଯାଇ ଲୋକେ ତାକୁ ମୁଁହରେ ଲଗାଇ ନିଜକୁ ସଜାନ୍ତି ଓ ତାହା ଆଜିକାଲିର ପାଉଡର ବା ଆଧୁନିକ ବେଶ ହେବାର ଉପକରଣର ସ୍ଥାନ ପୂରଣ କରୁଥିଲା । ଏପରିକି ହାଣ୍ଡିର କଳା ମଧ୍ୟ ସେହି ବେଶରେ ବ୍ୟବହୃତ ହେଉଥିଲା । ଏହା ଥିଲା ଗ୍ରାମୀଣ ସଂସ୍କୃତି । ମୁଁ ଅନେକ ସମୟରେ କଂସର ଦଗୁଆନ ଭାବେ ବାହାରି କଂସର ଜୟଗାନ କରିବାକୁ ସୁବିଧା ପାଉଥିଲି ।

ପରେ ପରେ ଗାଁରେ ଅପେରା ଓ ସୁଆଙ୍ଗ ହେବା ବେଳେ ନାଟକରେ ଭଣ୍ଡାରୀ ଭୂମିକାରେ ଅଭିନୟ କରି ଲୋକଙ୍କୁ ଆନନ୍ଦ ପ୍ରଦାନ କରିଥିଲି । ଆମ ସାନ କାକା ଗ୍ରାମ୍ୟ କୀର୍ତ୍ତନ ମଣ୍ଡଳୀର ଯୋଗଦାନ କରି ସୁନାମ ଅର୍ଜନ କରିଥିଲେ । ସେଥିରେ ମଧ୍ୟ ମୁଁ ତାଙ୍କ ସଙ୍ଗେ ଯୋଗ ଦେଉଥିଲି । ଅର୍ଥାତ୍, ପିଲା ଦିନରୁ ମୋର ସାଂସ୍କୃତିକ କାର୍ଯ୍ୟ ପ୍ରତି ଆଗ୍ରହ ଥିବାରୁ ଓ ଧୀରେ ଧୀରେ ଦକ୍ଷତା ବଢ଼ିବାରୁ ପରବର୍ତ୍ତୀ ସମୟରେ ହାଇସ୍କୁଲରେ ଓ କଲେଜ ପାଠ ପଢ଼ିବା ବେଳେ ବିଭିନ୍ନ ଭୂମିକାରେ ଅଂଶ ଗ୍ରହଣ କରି ପ୍ରଶଂସିତ ହୋଇଥିଲି ।

**ଗ୍ରାମ୍ୟ ବିଦ୍ୟାଳୟ ପାସ୍ କରି ଗୃହ ତ୍ୟାଗ ଓ ଖୁଣ୍ଟପାଲି ୟୁ.ପି. ସ୍କୁଲରେ ନାମ ଲେଖା :-**

ଏପରି ଭାବେ ଆମ ଗ୍ରାମର ସ୍କୁଲ ଶିକ୍ଷା ଓ ପ୍ରାୟ ବାଲ୍ୟ ଜୀବନ ପରେ ମୋତେ ୧୯୩୬ରେ ଗ୍ରାମ ଛାଡ଼ିବାକୁ ହେଲା । କାରଣ ୩ୟ ଶ୍ରେଣୀ ପରେ ଆମ ଗାଁରେ ପାଠ ପଢ଼ିବାର ସୁବିଧା ନ ଥିଲା । ନିକଟସ୍ଥ ସରସରା, ଖୁଣ୍ଟପାଲି ଗ୍ରାମରେ ସେତେବେଳେ ୪ର୍ଥ ଓ ୫ମ ଶ୍ରେଣୀ ଥିଲା । ଖୁଣ୍ଟପାଲିରେ ତତ୍କାଳୀନ ସୁନାମଧନ୍ୟ ପ୍ରାଥମିକ ସ୍କୁଲ ଶିକ୍ଷକ ୰ ଶ୍ରୀଯୁକ୍ତ ଅନିରଦ୍ଧ ସାହୁ ପ୍ରଧାନ ଶିକ୍ଷକ ରୂପେ କାର୍ଯ୍ୟରତ ଥିଲେ । ତେଣୁ ଭବିଷ୍ୟତ ଉନ୍ନତି ପାଇଁ ଖୁଣ୍ଟପାଲି ସ୍କୁଲକୁ ଯିବାକୁ ହେଲା । ସେତେବେଳେ ଶିକ୍ଷାବର୍ଷ ଜାନୁୟାରୀ ମାସଠାରୁ ଡିସେମ୍ବର ମାସ ପର୍ଯ୍ୟନ୍ତ ପ୍ରାୟ ପୌଷରୁ ମାର୍ଗଶିର ପର୍ଯ୍ୟନ୍ତ ପ୍ରଚଳିତ ଥିଲା । ତେଣୁ ଜାନୁୟାରୀ ମାସର ପ୍ରଥମରୁ ଅର୍ଥାତ୍ ୨ ତାରିଖରୁ ନୂତନ ଛାତ୍ର ଗ୍ରହଣ ଓ ନାମଲେଖା କାମ ଚ୍ଚଲେ ।

ମୁଁ ଗାଁରେ ପଢୁଥିବା ବେଳେ ମୋତେ ପରିବାରର ସମସ୍ତେ ଅଧିକ ସ୍ନେହ ବଶତଃ ମୋତେ ଅଣ୍ଟାରେ ରୂପାର ଏକ ଅଣ୍ଟା ସୂତା (ଗୁନ୍‌ଚି), କାନରେ ଫାସିଆ ଓ ଲୁରୁକି, ହାତରେ ରୂପାର ବଳା ପିନ୍ଧାଇ ଥିଲେ । କିନ୍ତୁ ଘର ଛାଡ଼ି, ଗାଁ ଛାଡ଼ି ଅନ୍ୟତ୍ର ଯିବାକୁ ହେବାରୁ ସେ ସବୁକୁ ମୋ' ଠାରୁ କାଢ଼ି ନିଆଗଲା । ହେଲେହେଁ ପ୍ରଥମ ଦିନରେ ଖୁଣ୍ଟପାଲିକୁ ନାମ ଲେଖାଇବା ପାଇଁ ଯିବା ବେଳେ ତାକୁ ପିନ୍ଧି ଯାଇଥିଲି । ସ୍କୁଲର ପିଲା ମାନେ ମୋର ବେଶ ଦେଖି ମନେ ମନେ ନିଶ୍ଚୟ ହସିଥିବେ । ବେହେରା ରହଣୀର ଶେଷରେ ଗୃହତ୍ୟାଗ ସମୟ ଆସିଲା । ଏହା ପରେ ମୁଁ ଘରେ ପଢ଼ା ବର୍ଷରୁ ଅବକାଶ ସମୟ, ଖରା ଛୁଟି, ଦଶହରା ଛୁଟି ବା ବଡ଼ ଦିନ ଛୁଟି ଭିନ୍ନ ଅନ୍ୟ ସମୟରେ ରହିବାର ସୁଯୋଗରୁ ବଞ୍ଚିତ ଥିଲି । ତେଣୁ ମୋର ପରିବାରଠାରୁ ପ୍ରତ୍ୟକ୍ଷ ସ୍ନେହ ପ୍ରାପ୍ତି ଆଉ ମିଳି ନ ଥିଲା । ହେଲେହେଁ ମୁଁ ପରୋକ୍ଷରେ ସ୍ନେହ ପ୍ରାପ୍ତିର ଅନୁଭବ କରିଥିଲି । ୧୯୩୫ ପରେ ବେହେରା ରହଣୀରେ ଯବନିକା ପାତ ଓ ଅନ୍ୟତ୍ର ରହଣୀର ଅୟମାରମ୍ଭ ହେଲା । ଏହା ବାହାରିଆ ଜାଗାରେ ରହିବାର ଅପୂର୍ବ ସୁଯୋଗ । ନିଜକୁ ପରିସ୍ଥିତିର ସାମଞ୍ଜସ୍ୟ ନେଇ ଖାପ ଖୁଆଇ ଚଳିବାକୁ ହେଲା ।

ଖୁଣ୍ଟପାଲି ଉ: ପ୍ରା: ବିଦ୍ୟାଳୟ ସେତେ଼ବେଳେ ନିଜର ପାଠପଢ଼ା ଓ ଛାତ୍ରଙ୍କ ବୃତ୍ତି ପାଇବା ଦୃଷ୍ଟିରୁ ପ୍ରସିଦ୍ଧ ଥିଲା । କାରଣ ଏଠାରେ କାର୍ଯ୍ୟରତ ହେ: ମା: ଅନିରୁଦ୍ଧ ସାହୁ ମହାଶୟ ପରିଶ୍ରମୀ, ଛାତ୍ର ବତ୍ସଳ, ସୁଗୁଣବାନ୍ ଓ ସର୍ବୋପରି କର୍ତ୍ତବ୍ୟନିଷ୍ଠ ଥିବାରୁ ସେ ଅଭିଭାବକ, ସହକର୍ମୀ, ଉପରିସ୍ଥ କର୍ମଚ୍ଚରୀ ତଥା

ଜନସାଧାରଣଙ୍କ ପ୍ରୀତିଭାଜନ ହୋଇ ପାରିଥିଲେ। ଖୁଣ୍ଟପାଲି ଉ: ପ୍ରା: ସ୍କୁଲରେ ପଢ଼ାଇବା ପାଇଁ ଆମ ପରିବାରର ସମସ୍ତେ ସେମାନଙ୍କ ଏକମାତ୍ର ଅଳି ଅଳ ପୁତ୍ରକୁ ଘରୁ ବାହାରକୁ ଛାଡ଼ିବା ପାଇଁ ସଂକଳ୍ପ କଲେ। କାରଣ ମୋର ବଡ଼ ବାପା ଓ କାକା ପାଠ ପଢ଼ି ଶିକ୍ଷକତା କରୁଥିଲେ। ସେମାନେ ଚାକିରୀ ସ୍ୱାଦ ଚାଖିଥିଲେ। ତେଣୁ ପରିବାରରୁ ଦୂରେ ରହିବାକୁ ହେଲା। ୨/୧/୧୯୩୬ ଦିନ ନୂତନ ସ୍କୁଲ ଶିକ୍ଷାବର୍ଷ ଆରମ୍ଭ। କାରଣ ୧/୧ ତାରିଖଟି ଇଂରାଜୀ ଶାସନାନୁଯାୟୀ ନବବର୍ଷାରମ୍ଭ ଛୁଟି ଥାଏ। ତେଣୁ ସେଦିନ ସକାଳେ ମୋର ସ୍ୱର୍ଗତ ଅଜା ରଘୁନାଥ ଦାଶ ମୋତେ ସଙ୍ଗେ ଧରି ଖୁଣ୍ଟପାଲି ଯାଇ ଉ: ପ୍ରା: ସ୍କୁଲରେ ନାମ ଲେଖାଇଲେ।

ମୋର ଠିକ୍ ମନେ ଅଛି ଆମର ପ୍ରଧାନ ଶିକ୍ଷକ ସ୍ୱର୍ଗତ ଅନିରୁଦ୍ଧ ସାହୁ ୪ର୍ଥ ଓ ୫ମ ଶ୍ରେଣୀର ଅଧ୍ୟାପନା ଦାୟିତ୍ୱରେ ଥିଲେ। ନୂତନ ଆଗତ ପିଲାଙ୍କ ମନରେ ଉତ୍ସାହ ଜଣାଇବା ପାଇଁ ସେ ୫ମ ଶ୍ରେଣୀରୁ ଆସି ୪ର୍ଥ ଶ୍ରେଣୀରେ ପାଠ୍ୟ ଦାନ କରିଥିଲେ। ସେତେବେଳେ ୪ର୍ଥ ଓ ୫ମ ଶ୍ରେଣୀ ପାଇଁ ସାହିତ୍ୟ କୁସୁମ ପୁସ୍ତକ ସାହିତ୍ୟ ଭାବେ ପଢ଼ା ଯାଉଥିଲା । ସେଥିରେ ୪ର୍ଥ ଶ୍ରେଣୀ ପାଇଁ ଉଦ୍ଦିଷ୍ଟ ପ୍ରଥମ ପାଠ ଥିଲା - 'ଉଦର ଓ ଅବୟବ ମାନେ' । ସେ ପାଠକୁ ଶିକ୍ଷକ ନିଜେ ଉତ୍ତମ ଭାବେ ସରବ ପଠନ କରି ତାକୁ ଛାତ୍ର ମାନଙ୍କୁ ପାଠ କରାଇ ତାକୁ ସରଳ ଭାବେ ବୁଝାଇ କଠିଣ ଶବ୍ଦର ଅର୍ଥ କହି କଳା ପଟାରେ ଲେଖି ଦେଲେ । ପଢ଼ା ଶେଷରେ ସେ ପାଠର ସାରାଂଶ ଓ ତାତ୍ପର୍ଯ୍ୟକୁ ଗୁରୁତ୍ୱ ଦେଇ ବୁଝାଇ ଦେଲେ ଓ ପରସ୍ପର ମଧ୍ୟରେ ସହଯୋଗ ନ ହେଲେ, ସେ ବିଷୟରେ ବୁଝାଇ ବୁଝାଇ ନିଜ ନିଜ ମଧ୍ୟରେ ସହଯୋଗୀ ହେବାକୁ ସୂଚନା ଦେଲେ । ତା' ପରେ ସେ ମହାଶୟ ବୋଧ ହୁଏ ୫ମ ଶ୍ରେଣୀ କୁ ଯାଇ ତାଙ୍କ ପାଠ ଦାନ କଲେ, ତା'ର ସଠିକ୍ ମନେ ନାହିଁ । ସେ ଦିନ ବ୍ୟାକରଣରୁ କିଛି ଆଭାସ ଦେଇ ଅକ୍ଷର, ଶବ୍ଦ ଧାରଣା ଦେଇ ପଦର ପ୍ରକାର କେତେ ତାହା କରିବାକୁ ଯାଇ ବିଶେଷ୍ୟ, ବିଶେଷଣ, ସର୍ବନାମ, କ୍ରିୟା ଓ ଅବ୍ୟୟ ପଦକୁ ଉଦାହରଣ ଦେଇ ବୁଝାଇ ଦେଇଥିଲେ । ଏବେ ମଧ୍ୟ ସେ ସବୁ କର୍ଣ୍ଣରେ ମୋର ଝଙ୍କାରିତ ହେଉଛି । ତାପରେ ପୂର୍ବାହ୍ନ ପାଠଦାନ ସାରି ଆମକୁ ଛୁଟି ଦେଲେ । କାରଣ ବିଦ୍ୟାଳୟକୁ ସେତେବେଳେ ସକାଳରେ ଓ ଦ୍ୱିପହରରେ ଦୁଇ ଥର ୭ଟା ରୁ ୧୧ ଟା ଓ ପୁଣି ୧ ଟା ରୁ ୪ ଟା ପର୍ଯ୍ୟନ୍ତ ଯିବାକୁ ପଡୁଥିଲା ।

ସେ ଦିନ ଛୁଟି ପରେ ମୁଁ ମୋର ଅଜାଙ୍କ ସହ ଆମ ଗାଁ କୁ ଚାଲି ଆସିଲୁଁ । ଖୁଣ୍ଟପାଲିରେ ସେତେବେଳେ ମୋର ଅଜାଙ୍କ ଠାରୁ ବୟସରେ ସାନ ଶ୍ୟାମସୁନ୍ଦର

ଦାଶ ବେଶ୍ ଗଣ୍ୟମାନ୍ୟ ଓ ତତ୍କାଳୀନ ଧନୀ ଥିଲେ । ତାଙ୍କର କେବଳ ଜଣେ ଝିଅ 'ଦର୍ପଣ' ଥିଲେ । ପୁତ୍ରାଦି କିଛି ନ ଥିବାରୁ ଝିଅର ପୁଅ ନାତି ସୁରେଶ୍ୱର ମହାପାତ୍ର ତାଙ୍କ ଘରେ ଆସି ରହି ପଢୁଥିଲେ । ମୋର ଅଜା ବୟସରେ ଜ୍ୟେଷ୍ଠ ଓ ତାଙ୍କ ବ୍ୟକ୍ତିତ୍ୱ ହେତୁ ତାଙ୍କୁ ସମସ୍ତେ ମାନି ଖାତିର କରୁଥିଲେ । ମୋର ଅଜା ତାଙ୍କ ଘରେ ମୋର ରହିବା ଓ ପଢ଼ିବା ପାଇଁ ପ୍ରସ୍ତାବ ଦେବାରୁ ସେ ଆପାତତଃ 'ହଁ' କଲେ । ମୋର ଖୁଣ୍ଟପାଲିରେ ରହଣୀ ଓ ଖାଦ୍ୟପେୟର ବ୍ୟବସ୍ଥା କରି ଯାରି ମୋତେ ଧରି ଗାଁକୁ ଫେରିଲେ । ଶ୍ୟାମସୁନ୍ଦର ଦାଶଙ୍କ ପତ୍ନୀ ଶ୍ରୀୟା ଦେବୀ ବେଶ୍ ସ୍ନେହଶୀଳା ଥିଲେ ଓ ଏ ପ୍ରସ୍ତାବକୁ ସାଦରେ ଗ୍ରହଣ କରିଥିଲେ ।

ସେ ଦିନ ଘରକୁ ଫେରି ପୁଣି ଖୁଣ୍ଟପାଲି ଯାଇ ପଢ଼ିବାକୁ ସ୍ଥିର ହେବାରୁ ମୁଁ ସେଠାକୁ କଅଣ ଧରି ଯିବି ତାର ଯୋଗାଡ଼ କରା ଗଲା । ସେ ମଧ୍ୟରେ ଅତି ଦରକାରୀ ଗୋଟିଏ ଖଟ, ବିଛଣା ମଧ୍ୟରେ କନ୍ଥାଟିଏ ଓ ଉପରେ ପକାଇବା ପାଇଁ ଚଦର ଥିଲା କି ନା ମନେ ନାହିଁ। ହୁଏତ କନ୍ଥାରେ ଖୋଳଟିଏ ଥାଇ ପାରେ। ୨ ଖଣ୍ଡ ଧୋତି ୬/୭ ହାତର, ଖଣ୍ଡିଏ ଗାମୁଛା, ବହି ପତ୍ର ରଖିବା ପାଇଁ ବସ୍ତାନୀ ଟିଏ, ସିଲଟ ପେନ୍‌ସିଲ୍, ଶିଶା, କଲମ ଓ ରବର ଆଦି ନେଇଥିଲି ଠିକ୍ ମନେ ନାହିଁ । ବୋଧ ହୁଏ ଦୁଇ ଦିନ ପରେ ମୋର ଅଜା ମୋତେ ନେଇ ଶ୍ୟାମସୁନ୍ଦର ଦାଶଙ୍କ ଘରେ ଛାଡ଼ି ଆସି, ପ୍ରଧାନ ଶିକ୍ଷକଙ୍କୁ ମୋର ପୂର୍ଣ୍ଣ ଜିମା ଦେଇ ଗାଆଁକୁ ଫେରିଲେ। ସେତେବେଳେ ମୋର ମନର ଅବସ୍ଥା କିପରି ଥିଲା ଏବେ ମୁଁ ଠିକ୍ ରୂପେ ପ୍ରକାଶ କରି ପାରୁ ନାହିଁ । ତାପରେ ଘର ଛାଡ଼ି ଅନ୍ୟ ଜଣକ ଘରେ ରହି ଅନ୍ୟ ଏକ ପରିସ୍ଥିତିରେ ରହି ଚଳିବାକୁ ଶିଖିଲି । ଅବଶ୍ୟ ପ୍ରତିଦିନ ନ ହେଲେ ବି ୨/୩ ଦିନରେ ଆମ ଘରୁ ଆସି ମୋର ଖବର ବୁଝି ଯାଉଥିଲେ । ତେଣୁ ଏକାକୀ ରହି ଶିଖିବାକୁ ଅଭ୍ୟସ୍ତ ହେଲି । ସ୍କୁଲରେ ପ୍ରଚଳିତ ଉପାଦେୟ ପାଠ୍ୟ ପୁସ୍ତକ ଓ ଅନ୍ୟାନ୍ୟ ଉପକରଣ ଯୋଗାଡ଼ କରି ପାଠପଢ଼ା ସୁରୁଖୁରୁରେ ଚ୍ଲିଲା । ମୋର ମନ ମଧ ଘର ବିଷୟ ଭୁଲି ପାଠରେ ଲାଗିଲା । ସେଠାରେ ପଢ଼ା ସମୟ ୪ର୍ଥ ଓ ୫ମ ଶ୍ରେଣୀ ପାଇଁ ୧୯୩୬ ଓ ୩୭ । ତେଣୁ ସେତେବେଳେ ପାଠ ପଢ଼ା କିପରି ଚ୍ଲିଥିଲା ଓ ଶିକ୍ଷକ ଓ ଛାତ୍ରଙ୍କ ସଂପର୍କ ଓ ସମୟର କିପରି ବିନିଯୋଗ ହେଉଥିଲା ତାହା ଜଣାଇବା ଉଚିତ୍ ।

ସେହି ବର୍ଷ ଅପ୍ରେଲ ମାସ ୧ ତାରିଖରେ ଆମ ପ୍ରଦେଶ ଓଡ଼ିଶା, ବିହାରରୁ ଅଲଗା ହୋଇ ସ୍ୱତନ୍ତ୍ର ପ୍ରଦେଶ ହେବାରୁ ସେ ଦିନ ବହୁ ଉତ୍ସାହ ଓ ଉଲ୍ଲାସରେ ନବ ପ୍ରଦେଶ ଗଠନ ଦିବସ ପାଳିତ ହୋଇଥିଲା ଓ ଆମ୍ଭମାନଙ୍କୁ ମିଷ୍ଟାନ୍ନ ବଣ୍ଟନ କରା

ଯାଉଥିଲା । ସେହି ବର୍ଷରୁ ଅନେକ ବର୍ଷ ଧରି ନୂଆଁ ପ୍ରଦେଶ ଗଠନ ଦିବସ ରୂପେ ପ୍ରତିପାଦିତ ହୋଇ ଆସୁଥିଲା । ଅବଶ୍ୟ ଏବେ ଆଉ ତାର ସେତେ ଗୁରୁତ୍ୱ ଦିଆ ଯାଉ ନାହିଁ କିନ୍ତୁ ପାଳନ କରୁଛନ୍ତି ।

ଆଗରୁ ସୂଚୀତ ହୋଇଛି ଯେ, ବିଦ୍ୟାଳୟ ଗୁଡ଼ିକ ସେତେବେଳେ ଉଭୟ ଓଳି ବସୁଥିଲା । ପୂର୍ବାହ୍ନ ୭ଟାରୁ ୧୧ ଟା ଓ ଅପରାହ୍ନ ୧ ଟାରୁ ୪ ଟା । ଏହା ଥିଲା ନିୟମ । କିନ୍ତୁ ସାଧାରଣତଃ ସ୍କୁଲ ଗୁଡ଼ିକ ସକାଳରୁ ମଧାହ୍ନ ଅର୍ଥାତ୍ ହଳ ଢିଲିବା ପର୍ଯ୍ୟନ୍ତ ଓ ଉପର ଓଳି ଖାଇ ସାରି ପାନ୍ତି ବେଳା ପର୍ଯ୍ୟନ୍ତ - ଅର୍ଥାତ୍ ସ୍ତ୍ରୀ ମାନେ କୂଅଁ, ପୋଖରୀରୁ ପାଣି ଆଣିବାକୁ ଯିବା ପର୍ଯ୍ୟନ୍ତ ଓ ଟିକିଏ ପରେ ମଧ । କାରଣ ସେତେବେଳେ କାହାରିଠାରେ ଆଜିକାଲି ଭଳି ଘଣ୍ଟା ନ ଥିଲା । ସାଧାରଣତଃ ଶିକ୍ଷକ ମାନେ ଅନ୍ୟ ଗାଁରୁ ଆସି ଏହି ଗାଁରେ ପରିବାର ଧରି ରହୁଥିଲେ । ଗ୍ରାମବାସୀ ଗଣ ମଧ ଆଗ୍ରହରେ ଶିକ୍ଷକମାନଙ୍କୁ ନିଜର ଖାଲି ପଡ଼ିଥିବା ଘରକୁ ବିନା ଭଡ଼ାରେ ଯୋଗାଇ ଦେଉଥିଲେ । ସେଥିରେ ତାଙ୍କ ନିଜର ଏତିକି ସ୍ୱାର୍ଥ ଥିଲା ତାଙ୍କ ଘରର କୌଣସି ଶିଶୁ ବିଦ୍ୟାଳୟରେ ପଢ଼ିବାକୁ ଥିଲେ ତା' ଉପରେ ଶିକ୍ଷକଙ୍କ ସୁଦୃଷ୍ଟି ପଡ଼ିବ ଓ ସେ ଭଲ ପାଠ ପଢ଼ି ମଣିଷ ହେବ । ତେଣୁ ଶିକ୍ଷକଙ୍କ ଆଗ୍ରହ, ସୁଗୁଣ ଓ ଆଦର୍ଶ ଥିଲେ ଅଭିଭାବକ ମାନେ ନିଜର ଶକ୍ତି ଅନୁଯାୟୀ କିଛି ମୁଦ୍ରା ବା ଜିନିଷ ଆକାରରେ ସାହାଯ୍ୟ କରୁଥିଲେ । ଅନେକ ସ୍ଥଳେ ଶିକ୍ଷକ ମାନେ ତାକୁ ଗ୍ରହଣ କରିବାରେ କୁଣ୍ଠାବୋଧ କରୁଥିଲେ । ଯେହେତୁ ଶିକ୍ଷାଦାନ ତାଙ୍କ ନୈତିକ କର୍ତ୍ତବ୍ୟ । ସେଥିପାଇଁ ସେମାନେ ସରକାରଙ୍କଠାରୁ ଦରମା ପାଉଥିଲେ । ଏହା ତାଙ୍କ କି ଉଚ୍ଚ ଆଦର୍ଶର ଚିନ୍ତାଧାରା ! ଏବେ ତାର ବଦଳରେ ଟିଉସନ ପଢ଼ାଇ ଆୟ ବଢ଼ାଇବାରେ ଶିକ୍ଷକ ମାନେ ବ୍ୟସ୍ତ । ସମୟ କେତେ ପରିବର୍ତ୍ତନଶୀଳ ସତେ !

ସେତେବେଳେ ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ଶ୍ରୀ ଅନିରୁଦ୍ଧ ସାହୁ, କୁମ୍ଭାରୀ ଗ୍ରାମର । ସହକାରୀ ମାନେ ତୋରାର ଶ୍ରୀ ଉପେନ୍ଦ୍ର ସାହୁ, ରେମଣ୍ଡାର ଶ୍ରୀ ରାମକୃଷ୍ଣ ଦାଶ । ପରେ ତାଙ୍କ ସ୍ଥାନରେ ଶ୍ରୀ ସନାତନ ଭୋଇ ପରିବର୍ତ୍ତନ ହୋଇ ଆସିଲେ । ଶିକ୍ଷକମାନଙ୍କ ପ୍ରତ୍ୟେକଙ୍କର ଏକ ଏକ ବିଶିଷ୍ଟ ଗୁଣ ଥିଲା । ପ୍ରଧାନ ଶିକ୍ଷକ ଶିକ୍ଷାଦାନରେ ନିଷ୍ଠା ଓ ନିପୁଣତା ସହ ଛାତ୍ରବତ୍ସଳ ଓ ଶୃଙ୍ଖଳାଧର୍ମୀ ଥିଲେ । ସେ ଚିତ୍ରାଙ୍କନ, ହସ୍ତକର୍ମରେ ନିପୁଣ ଥିଲେ ଓ ତାଙ୍କ ପୋଷାକପତ୍ର ପରିଷ୍କାର ଓ ପରିଚ୍ଛନ୍ନ ଓ ସୁସ୍ଥ ଓ ଉତ୍ତମ ଚେହେରାଯୁକ୍ତ ଥିଲେ । ଶ୍ରୀ ଉପେନ୍ଦ୍ର ସାହୁ ପାଠଦାନ ବ୍ୟତୀତ ଛାତ୍ର ସ୍ନେହୀ, ସମୟାନୁବର୍ତ୍ତୀତା ସହ ଛାତ୍ରମାନଙ୍କ ବ୍ୟବହାର୍ଯ୍ୟ ଆବଶ୍ୟକୀୟ

ଜିନିଷ କାଗଜ, କଲମ, ଶିଶା, ରବର, ସ୍କେଲ, ସ୍ୟାହି ଆଦି ନିଜ ହାତରୁ ଖର୍ଚ୍ଚ କରି ସମସ୍ତଙ୍କୁ ଯୋଗାଇ ଦେଉଥିଲେ । ତେଣୁ ଛାତ୍ରମାନେ ସୁବିଧାରେ ସ୍କୁଲରେ ପାଇ ପାରୁଥିଲେ ଓ ସମୟାନୁକ୍ରମେ ସେ ସବୁର ମୂଲ୍ୟ ପରିଶୋଧ କରୁଥିଲେ । ସେତେବେଳେ ବିଭିନ୍ନ ଛାତ୍ର ବ୍ୟବହୃତ ଜିନିଷର ମୂଲ୍ୟ ଏଭଳି ଥିଲା । ଧଳା କାଗଜ ଅନେକ ପ୍ରକାରର ମିଳୁଥିଲା । ତାହା ଅତି ପତଳା (୬ ପନି), ଟିକିଏ ଭଲ ସଦାବେଳେ ବ୍ୟବହାର ପାଇଁ (୮ ପନି), ମୋଟା କାଗଜ (୧୦ ପନି ବା ୧୬ ପନି) ମିଳୁଥିଲା । ପୁଣି ରୁଲିଂ କାଗଜ ମଧ (୮ ପନି) ମିଳୁଥିଲା । ବୋଧହୁଏ ଏହି ପନି ହିସାବଟି ପାଉଣ୍ଡକୁ ପନି ବୋଲି କୁହାଯାଉଥିବାର ମନେ ହୁଏ । ଅର୍ଥାତ୍ ୧ ରିମ୍ କାଗଜର ଓଜନ ହିସାବରେ ଏହା କୁହାଯାଉଥିଲା । ପତଳା କାଗଜରେ ସାଧାରଣତଃ ଲେଖିବାର ଉପଯୋଗୀ ନ ହେବାରୁ ତାହା ରଫ୍ ଖାତା ରୂପେ ବ୍ୟବହାର କାରାଯାଉଥିଲା ଓ ଶିଶାରେ ସେଥିରେ ଲେଖିବାକୁ ହେଉଥିଲା । କାରଣ କଲମରେ ଲେଖିଲେ ଉଭୟ ପାଖରୁ ଦେଖାଯାଉଥିବାରୁ ସବୁ କାମ ପାଇଁ ଉପଯୋଗୀ ନ ଥିଲା । ୮ ପନି ବା ୧୦ ପନି ସବୁଠାରେ ବ୍ୟବହୃତ ହେଲାବେଳେ ୧୬ ପନି ଡ୍ରଇଂ ଓ ମେପ୍ ଡ୍ରଇଂ ପାଇଁ ବ୍ୟବହାର କରାଯାଉଥିଲା । ବନ୍ଧା ଡ୍ରଇଂ ଖାତାର ମୂଲ୍ୟ ଅଧିକ ଥିବାରୁ ଏହି ମୋଟା କାଗଜ ସେ କାମ ପାଇଁ ବ୍ୟବହୃତ ହେଉଥିଲା । ରଚନା ଖାତା ଓ ଦୈନିକ ହସ୍ତାକ୍ଷର ପାଇଁ ରୁଲିଂ କାଗଜ ବ୍ୟବହାର କରାଯାଉଥିଲା । ଆମେମାନେ ଆମର ବିଭିନ୍ନ ଖାତା ପାଇଁ ନିଜେ ମଲାଟ ତିଆରି କରି ତାର ସୁରକ୍ଷା କରାଯାଉଥିଲା । କମ୍ ଖର୍ଚ୍ଚରେ କିପରି କାମ ଚଳିବ ସେ ବିଷୟରେ ଶିକ୍ଷକମାନେ ନିଘା ରଖି ଯଥାନୁରୂପ ଉପଦେଶ ପ୍ରଦାନ କରୁଥିଲେ ।

ପାଠ୍ୟପୁସ୍ତକ ମାନଙ୍କ ମୂଲ୍ୟ ମଧ ଆଲୋଚନା ଯୋଗ୍ୟ । ପୁସ୍ତକ ମାନଙ୍କର ମୂଲ୍ୟ ପ୍ରାୟ ଟ. । (୨୫ ନୂ:ପ: ରୁ) ଆରମ୍ଭ କରି ଟ. ୫, ଦଶ ଅଣା ପର୍ଯ୍ୟନ୍ତ ଓ ସ୍ୱାସ୍ଥ୍ୟରକ୍ଷା, ସାହିତ୍ୟ, ଇତିହାସ, ଗଣିତ ଓ ଭୂଗୋଳ ପୁସ୍ତକର ଦାମ ଥିଲା ଟ. ।(୨୫ ନୂ: ପ:) ରୁ ଆରମ୍ଭ କରି ପ୍ରାୟ ଟ. ୫୦ ପ: ରୁ ଟ. ୦.୬୦ ପ: ପର୍ଯ୍ୟନ୍ତ। କାଗଜର ଦାମ୍ ଥିଲା ଦିସ୍ତାକୁ (୨୪ ଫର୍ଦ୍ଦ) ଟ. ୦.୬ ପାହୁଲା ୩ ନୂଆ ପଇସାରୁ ଟ. ୦.୫ ପଇସା ପର୍ଯ୍ୟନ୍ତ । ମୋଟା କାଗଜ (୧୬ ପାଉଣ୍ଡ)ର ଦାମ୍ ଦିସ୍ତାକୁ ଏକ ଅଣା ଛଅ ପାହୁଲା (ବା ଦଶ ନୂଆ ପଇସା) । କାଠିକଲମରେ ବ୍ୟବହୃତ ନିବ୍ ଗୁଡ଼ିକ ଅନେକ ପ୍ରକାରର ଥିଲା । ସେ ଗୁଡ଼ିକ ହେଲା ପିତଳ ନିବ୍, ଛଞା ନିବ୍, ପିପ୍ପଳ ପତ୍ରିଆ, ଲମ୍ବାଳିଆ କଣ୍ଟା ଥିବା ପ୍ରାୟ ୨ ପଇସାରେ ଅର୍ଥାତ୍ ନୂଆଁ ତିନି ପଇସାରେ ମିଳୁଥିଲା । କାଠିକଲମର ଦାମ୍ ଏକ ପଇସାରୁ ଆରମ୍ଭ କରି ଟ./

ପର୍ଯ୍ୟନ୍ତ ନିବ୍ ସହ ମିଳୁଥିଲା । ଲେଖିବା ଶିଶାର ଦାମ୍ ୧ ପଇସାରୁ ଆରମ୍ଭ କରି ଟ. / ପର୍ଯ୍ୟନ୍ତ ଓ ରବର ଖଣ୍ଡକୁ ପଇସେ ବା ଅଧଲାଏ ଥିଲା । ଲେଖିବା ସ୍ୟାହି ବଟିକାର ଦାମ୍ ପଇସାରେ ୨ଟି (J. B. D.) ମିଳୁଥିଲା । ସେହି ବଟିକାକୁ ଦୁଆତରେ ପାଣି ଦେଇ ଗୋଳି କଲମ ବୁଡ଼ାଇ ଲେଖୁଥିଲୁଁ । ସେତେବେଳେ Fountain pen (ଝରା କଲମ)ର ବ୍ୟବହାର ନ ଥିଲା । କାଠିକଲମରେ ଲେଖିବା ହେତୁ ସ୍ୟାହି ଶୁଖାଇବା ପାଇଁ କାଳୀ ଶୋଷକ କାଗଜ (Blotting Paper) ବ୍ୟବହୃତ ହେଉଥିଲା । ପରେ ପରେ ଉପର ଶ୍ରେଣୀରେ ପଢ଼ିଲା ବେଳେ ବିଭିନ୍ନ କମ୍ପାନୀ ଦ୍ୱାରା ତିଆରି (ବୋଧ ହୁଏ ବିଜ୍ଞାପନ ସକାଶେ) ରଙ୍ଗ ବେରଙ୍ଗ କାଳୀ ଶୋଷକ କାଗଜର ବ୍ୟବହାର କରୁଥିଲୁଁ ।

ଏହି ବିଦ୍ୟାଳୟର ପାଠଦାନ ସଂପର୍କରେ ବର୍ଣ୍ଣନା ଉଚିତ୍ ମନେ କରେଁ । ସ୍କୁଲ ତ ଉଭୟ ଓଳି ବସୁଥିଲା । ସେତେବେଳେ ଆମ ସ୍କୁଲରେ ଶିଶୁ ଶ୍ରେଣୀ ଠାରୁ ୫ମ ଶ୍ରେଣୀ ପର୍ଯ୍ୟନ୍ତ ୬ଟି ଶ୍ରେଣୀ ପାଇଁ ୩ ଜଣ ଶିକ୍ଷକ ଥିଲେ । ଅର୍ଥାତ୍ ଜଣକୁ ୨ଟି ଶ୍ରେଣୀର ପାଠଦାନ କରିବାକୁ ପଡୁଥିଲା । ଆମ ୪ର୍ଥ ଓ ୫ମ ଶ୍ରେଣୀର ଦାୟିତ୍ୱ ପ୍ରଧାନ ଶିକ୍ଷକ ନେଇଥିଲେ । ସେପରି ଅନ୍ୟ ଶ୍ରେଣୀ ସବୁ ଆଉ ଦୁଇ ଜଣଙ୍କ ଉପରେ ଅର୍ଥାତ୍ ଶିଶୁ ଓ ପ୍ରଥମ ଶ୍ରେଣୀ ପାଇଁ ଶ୍ରୀ ରାମକୃଷ୍ଣ ଦାଶ ଓ ୨ୟ ଓ ୩ୟ ଶ୍ରେଣୀ ପାଇଁ ଶ୍ରୀ ଉପେନ୍ଦ୍ର ସାହୁଙ୍କୁ ଭାର ଦିଆ ଯାଇଥିଲା । ସେମାନେ ନିଜ ନିଜ ଶ୍ରେଣୀ ପାଠ ଦାନ ପାଇଁ ସିଲାବସ୍ ଅନୁସାରେ ଖସଡ଼ା ପ୍ରସ୍ତୁତ କରି ନିର୍ଦ୍ଦିଷ୍ଟ ସମୟରେ ସମାପନ କରୁଥିଲେ । ଆମ ୪ର୍ଥ ଓ ୫ମ ଶ୍ରେଣୀ ପାଇଁ ସକାଳୁ ସାହିତ୍ୟ ଓ ଗଣିତ ଓ ଉପର ଓଳି ଇତିହାସ, ଭୂଗୋଳ ଓ ସ୍ୱାସ୍ଥ୍ୟରକ୍ଷା, ପ୍ରକୃତି ପର୍ଯ୍ୟବେକ୍ଷଣ, ଡ୍ରଇଂ ଆଦି ବିଷୟ ପଢ଼ା ଯାଉଥିଲା । ଏହା ବ୍ୟତୀତ ଦୈନିକ ହସ୍ତାକ୍ଷର, ସାପ୍ତାହିକ ରଚନା ଓ ପତ୍ରଲିଖନ, ହସ୍ତାକ୍ଷର, ମେପ ଡ୍ରଇଂ, ପାଗ ଟିପ୍ପଣୀ ଆଦି ଯଥା ସମୟରେ ପଢ଼ା ଯାଉଥିଲା । ଦୈନିକ ହସ୍ତାକ୍ଷର ସାଦା କାଗଜର ଖାତାରେ ନିଜେ ରେଖା ଟାଣି ଓ ସାପ୍ତାହିକ ହସ୍ତାକ୍ଷର ରୁଲିଂ ଖାତା ବା ପ୍ରଥମ ଧାଡ଼ି ଆଦର୍ଶରେ ଲେଖା ବା ଛପାଯାଇ ତଦନୁସାରେ ଲେଖା ଯାଉଥିଲା । ପ୍ରତିଦିନ ସ୍କୁଲରେ ଲେଖିବା ପାଇଁ ସାଙ୍ଗରେ ଖାତା, ସିଲଟ, କଲମ, ଶିଶା ଓ ଦୁଆତ ଧରି ସ୍କୁଲକୁ ଯାଉଥିଲୁଁ। କୌଣସି ଦିନ ସଙ୍ଗେ ଦୁଆତ ନେଇ ନ ଥିଲେ ବା ଦୁଆତରେ କାଳି ସରି ଯାଇଥିଲେ ସାଙ୍ଗ ସାଥୀଙ୍କ ଠାରୁ ଧାର୍ କରି ଫାଳେ ବା ୨ ଫାଳ ଲେଖି ପରେ ଆମ ଦୁଆତରୁ ତାଙ୍କୁ ଲେଖିବାକୁ ସୁଯୋଗ ଦେଇ ଧାର ପରିଶୋଧ କରୁଥିଲୁଁ । ଡ୍ରଇଂ ଓ ମେପ୍ ଡ୍ରଇଂର ଆଦର୍ଶ ଶିକ୍ଷକ ନିଜେ କଳାପଟାରେ ବା କାଗଜରେ ଦେଖାଉଥିଲେ ।

ଜଣେ ଶିକ୍ଷକ...

ପରୀକ୍ଷା ବେଳେ କିପରି ଅକ୍ଷର ଗୋଲ କରି ଲେଖାଯିବ, ଧାଡ଼ି ସିଧା ଓ ଶବ୍ଦ ଗୁଡ଼ିକ ପରସ୍ପର ଠାରୁ ପୃଥକ୍ ରହିବ ଓ ଲେଖିଲା ବେଳେ କିପରି ବସିବ ଓ ଖାତାକୁ କିପରି ଧରାଯିବ, କଲମର କେଉଁ ଠାରେ ହାତ ରଖିବା ପ୍ରଣାଳୀ ଆଦି ଯାବତୀୟ ଉପଦେଶ ଶିକ୍ଷକ ନିଜେ ଆଦର୍ଶ ହୋଇ ଦେଖାଇ ଦେଉଥିଲେ। ଏହା ପ୍ରଧାନ ଶିକ୍ଷକଙ୍କଠାରୁ ଶିଖି ଦେଖି ନିଜେ ଅଭ୍ୟାସ କରୁଥିଲୁଁ। ଆବଶ୍ୟକ ସ୍ଥଳେ ଶିକ୍ଷକଙ୍କ ନିର୍ଦ୍ଦେଶାନୁସାରେ ପରିପୂର୍ଣ୍ଣତା ପାଇଁ ଶିକ୍ଷା କରୁଥିଲୁଁ। ପାଗ ଟିପ୍ପଣୀ ପାଇଁ ଉଦ୍ଦିଷ୍ଟ ଖାତାରେ ପ୍ରତିଦିନ ପ୍ରକୃତିର ପାଗ ଅନୁସାରେ ପୂରଣ କରା ଯାଉଥିଲା । ପ୍ରକୃତି ପର୍ଯ୍ୟବେକ୍ଷଣ ଶିକ୍ଷା ପାଇଁ ବୃକ୍ଷ, ପତ୍ର, ଫୁଲ ଓ ମଞ୍ଜି ସଂଗ୍ରହ କରି ତାକୁ ଯତ୍ନ ସହ କିଆରୀରେ ଲଗାଇ ପାଣି ଦେଇ ତାର କ୍ରମବିକାଶକୁ ଅନୁଧାନ କରି ଉଲ୍ଲେଖ କରା ଯାଉଥିଲା । ହସ୍ତକର୍ମ ସକାଶେ ମାଟି, ଗୋଲି, କାଠି ସାହାଯ୍ୟରେ ଆମ୍ବ, ପଣସ, ପିକୁଳି, ବାଇଗଣ ଆଦି ପରିବାର ନମୁନା ନିଜେ ତିଆରି କରି ତହିଁରେ ରଙ୍ଗ ଦେଉଥିଲୁଁ । ପ୍ରଧାନ ଶିକ୍ଷକ ଜଣେ କୁଶଳୀ, ନିପୁଣ ତଥା ଚିତ୍ରକଳା ବିଶାରଦ ହେତୁ ତାଙ୍କ ତିଆରି ଫଟୋଚିତ୍ର ଓ ହସ୍ତକର୍ମ ବହୁବାର ଉଚ୍ଚ ପ୍ରଶଂସିତ ହୋଇଥିଲା । କିନ୍ତୁ ସରକାରୀ ସ୍ତରରେ ତାଙ୍କ ଯୋଗ୍ୟତାକୁ ଚାହିଁ ଉପଯୁକ୍ତ ସମ୍ମାନ ଦିଆ ଯାଇ ନ ଥିଲା । ପରେ ଏ ଲେଖକ କର୍ମରତ ଥିବାବେଳେ ତାଙ୍କ ପୁରସ୍କାର ପାଇଁ ଯତ୍ନଶୀଳ ହୋଇ ମଧ କୃତକାର୍ଯ୍ୟ ହୋଇ ପାରି ନ ଥିଲେ । ତାଙ୍କ ତିଆରି ହସ୍ତକର୍ମ, ଫଳ, ପରିବାଦି ଫମ୍ପା ଭାବେ ତିଆରି କରି ଓ ରଙ୍ଗୀନ କରି ଶ୍ରେଣୀ କୋଠରୀରେ ଝୁଲାଇ ଦିଆ ଯାଉଥିଲା । ଦର୍ଶକମାନେ ତାକୁ ସତ୍ୟ ମନେ କରି ଆଶ୍ଚର୍ଯ୍ୟ ହେଉଥିଲେ । ବହୁ ଶିକ୍ଷକ ଓ ଛାତ୍ର ତାଙ୍କ ସାହାଯ୍ୟରେ ହସ୍ତକର୍ମ ଫଟୋଚିତ୍ର କରାଇ ଶିକ୍ଷାଦାନରେ ବ୍ୟବହାର କରି ଉଚ୍ଚ ପ୍ରଶଂସିତ ହେଉଥିଲେ । ହସ୍ତକର୍ମ ଭାବେ ଆମେ ନିଜେ ମାଟିରେ ଇଟା ଗଢ଼ି ଶୁଖାଇ ଆଦର୍ଶ ଗୃହର ନମୁନା ନିଜେ ଛପର କରି କବାଟ ଝରକା ଲଗାଇବା ବ୍ୟବସ୍ଥା କରିଥିଲୁଁ । ସେସବୁ ଉପରିସ୍ଥ କର୍ମଚାରୀଗଣଙ୍କ ପରିଦର୍ଶନ ସମୟରେ ତାଙ୍କର ଦୃଷ୍ଟି ଆକର୍ଷଣ କରୁଥିଲା । ଶିକ୍ଷକମାନଙ୍କ ଶିକ୍ଷାଦାନରେ ସମର୍ପିତ ଜୀବନ ଭାବଯୁକ୍ତ ଥିଲା ।

ରଚନା ଲିଖନ ପାଇଁ ବିଭିନ୍ନ ସୂଚନା ଦେଇ ଓ ତାକୁ ବିଶଦ୍ ଭାବେ ଆଲୋଚନା କରାଯାଇ ତାପରେ ଛାତ୍ରମାନଙ୍କୁ ଲେଖିବା ପାଇଁ ନିର୍ଦ୍ଦେଶ ଦିଆ ଯାଉଥିଲା । ଋତୁ ଅନୁଯାୟୀ ଅର୍ଥାତ୍ ବର୍ଷା ଋତୁରେ ନଦୀବଢ଼ି ଦୃଶ୍ୟ ବିଷୟରେ ରଚନା ଲେଖିବା ପାଇଁ ଆମକୁ ନେଇ ଶିକ୍ଷକ ମହାଶୟ ଗ୍ରାମ ସନ୍ନିକଟ କୀରା

ନଦୀକୁ ପ୍ରତ୍ୟକ୍ଷ୍ୟ ଦର୍ଶନ ଓ ଜ୍ଞାନ ଲାଭ ପାଇଁ ନେଉଥିଲେ ଓ ସେଠାରୁ ଫେରିଆସି ନିଜର ଅନୁଭୂତି ସହ ରଚନା ଲେଖିବାକୁ ନିର୍ଦ୍ଦେଶ ଦେଉଥିଲେ । ତେଣୁ ରଚନା ଲେଖିବାରେ ସୁବିଧା ହେଉଥିଲା ।

ରଚନା ବ୍ୟତୀତ ପତ୍ରଲିଖନ, ଦତ୍ତ ଶବ୍ଦ ସାହାଯ୍ୟରେ ଗଳ୍ପ ଲିଖନ ମଧ୍ୟ ଏକ ଅଂଶ ବିଶେଷ ଥିଲା । ତେଣୁ ରଚନା ଲିଖନ ବେଳେ ଏପରି କେତେକ ମୁଖ୍ୟ ଶବ୍ଦ ପ୍ରଦାନ କରି ତାକୁ ବ୍ୟବହାର କରି ପୂର୍ଣ୍ଣ ଗଳ୍ପଟି ଲେଖା ଯାଉଥିଲା । ଏହାରି ସୁଅଭ୍ୟାସ ଦ୍ୱାରା ପରୀକ୍ଷା ବେଳେ ତାର ସଦୁପଯୋଗ କରା ଯାଇପାରୁଥିଲା । ଏହାଛଡ଼ା ଦୈନିକ ପ୍ରାର୍ଥନା, ବିଦ୍ୟାଳୟ ସଫେଇ, ବାଡ଼ବନ୍ଦୀ ମରାମତି କରିବାକୁ ଶିକ୍ଷା ଦିଆ ଯାଉଥିଲା । ଏପରି ଭାବେ ଦୈନନ୍ଦିନ ପାଠ ପଢ଼ା, ହସ୍ତ କର୍ମ ଓ ବଗିଚା କାର୍ଯ୍ୟ ଓ ଭୂମିରେ ପ୍ରଦେଶ ଓ ଭାରତର ରିଲିଫ ମେପ୍ ତିଆରି ଆଦି ସ୍କୁଲ କାର୍ଯ୍ୟ ସରିବା ପରେ ପ୍ରତିଦିନ ମଧ୍ୟାହ୍ନରେ ଓ ସନ୍ଧ୍ୟାରେ ଅଧ ଘଣ୍ଟାରୁ ଘଣ୍ଟାଏ ପର୍ଯ୍ୟନ୍ତ ୪ର୍ଥ ଓ ୫ମ ଶ୍ରେଣୀ ଛାତ୍ରମାନଙ୍କୁ ବର୍ଷର ଅଧିକାଂଶ ଦିନ ରାମାୟଣ ଓ ମହାଭାରତର ସଂପୂର୍ଣ୍ଣ ଚରିତ ଅତି ପ୍ରାଞ୍ଜଳ ଓ ଚିତ୍ତାକର୍ଷକ ଶୈଳୀରେ ବର୍ଣ୍ଣନା କରି ଗଳ୍ପ ମାଧ୍ୟମରେ ବୁଝାଇ ଦେଉଥିଲେ । ଏହା ଥିଲା ତତ୍କାଳୀନ ସାମାଜିକ ଓ ନୈତିକ ଶିକ୍ଷାର ପ୍ରଭାବ ଛାତ୍ରମାନଙ୍କ ଚରିତ୍ର ଗଠନରେ ସହାୟକ ହେଉଥିଲା । ପ୍ରଧାନ ଶିକ୍ଷକ ଏହି ଦାୟିତ୍ୱରେ ଥିଲେ ।

ପାଠ ପଢ଼ାଇବାର ଆଉ ଏକ ଉନ୍ନତ ଶୈଳୀ ଆମ ପ୍ରଧାନ ଶିକ୍ଷକଙ୍କ ସ୍ୱତଃ ପ୍ରଣୋଦିତ ପନ୍ଥା । ପ୍ରତିଦିନ ସନ୍ଧ୍ୟାରେ ତାଙ୍କ ରହୁଥିବା ବାସଘର ସାମ୍ନାରେ ଥିବା ଏକ ପିଣ୍ଡାରେ ପ୍ରାୟ ୨ ଘଣ୍ଟା ଧରି ୪ର୍ଥ ଓ ୫ମ ଶ୍ରେଣୀ ପିଲାଙ୍କୁ ନେଇ ତାଙ୍କର ସନ୍ଦେହ ମୋଚନ ଓ ଆଗ୍ରହୀ ଛାତ୍ରଙ୍କୁ ଆହୁରି ଉତ୍ସାହିତ କରିବାର ପଥ ସୁଗମ କରୁଥିଲେ । ଏହା ଆଜିକାଲିର Remedial Measure ଭଳି ନୁହେଁ କି ? ଏହା ତାଙ୍କର ବ୍ୟକ୍ତିଗତ ଓ ଛାତ୍ରବତ୍ସଳତାର ସ୍ପଷ୍ଟ ପ୍ରତୀକ ମାତ୍ର । ଏଥିରେ ୪ର୍ଥ ଓ ୫ମ ଶ୍ରେଣୀରୁ ପ୍ରାୟ ୨୦/୨୫ ଜଣ ଛାତ୍ର ସନ୍ଧ୍ୟାବେଳେ ଯୋଗ ଦେଉଥିଲେ । ଏହି ପ୍ରଥା ପ୍ରାୟ ବର୍ଷଯାକ ଚାଲିଥିଲା । ଛାତ୍ର ଛାତ୍ରୀ ମାନେ ନିଜ ନିଜ ଲଣ୍ଠନ ନେଇ ବହି ବସ୍ତାନୀ ସହ ଆସୁଥିଲେ । ଯେଉଁ ଛାତ୍ର ଲଣ୍ଠନ ନ ନେଇ ଆସେ, ସେ ସହପାଠୀ ଛାତ୍ରଙ୍କ ଲଣ୍ଠନର ଆଲୋକରେ ପଢ଼ିଥାଏ । ଏଥିରୁ ପ୍ରଧାନ ଶିକ୍ଷକଙ୍କ ଶିକ୍ଷାଦାନ ପ୍ରତି ନିଷ୍ଠା ଓ ଆନ୍ତରିକତା ଓ ଛାତ୍ରମାନଙ୍କ ଉନ୍ନତି ପାଇଁ ଉଦ୍ୟମର ପରିଚୟ ମିଳେ । ତେଣୁ ଗ୍ରାମବାସୀ ଗଣ ତାଙ୍କ ଉପରେ ଗଭୀର ସନ୍ତୁଷ୍ଟ ଥିଲେ ।

ଛାତ୍ର ଛାତ୍ରୀ ମାନଙ୍କ ପାଠର ଅନୁଶୀଳନ ଓ ଜ୍ଞାନ ଆହରଣର ପରିମାପ

ବୃଦ୍ଧି ସକାଶେ ତ୍ରୟ ମାସିକ, ଷାଣ୍ମାସିକ ଓ ବାର୍ଷିକ ପରୀକ୍ଷା ବ୍ୟତୀତ ପ୍ରତି ଶନିବାର ଦିନ ଏକ ଏକ ବିଷୟରେ କ୍ରମାନୁଯାୟୀ ସାପ୍ତାହିକ ପରୀକ୍ଷା କରା ଯାଉଥିଲା। ଏହାର ଗୂଢ଼ନିହିତ ଉଦ୍ଦେଶ୍ୟ ଏହା ଥିଲା ଯେ, ଆଗାମୀ ବାର୍ଷିକ ୫ମ ଶ୍ରେଣୀ ଓ ବୃତ୍ତି ପରୀକ୍ଷା ପାଇଁ ଉପଯୁକ୍ତ ଛାତ୍ର ଛାତ୍ରୀ ନିର୍ଦ୍ଧାରଣର ପନ୍ଥା ସୁଗମ ଓ ସହଜ ହେଉଥିଲା। ତେଣୁ ଏସବୁ ଅଭିଭାବକ ଓ ଜନସାଧାରଣଙ୍କ ଆପତ୍ତିର ପରିସରଭୁକ୍ତ ନ ଥିଲା ।

ଆଉ ଏକ ବିଶେଷ ସୂଚନା ଦେବାର ଉପାଦେୟତା ଏହା ଯେ, ସେତେବେଳେ ୫ମ ଶ୍ରେଣୀ ଶେଷରେ ସାରା ଅବିଭକ୍ତ ସମ୍ବଲପୁର ଜିଲ୍ଲାର ମେଧାବୀ ଓ କୃତୀ ଛାତ୍ର ଛାତ୍ରୀ ବିବେଚନା ପାଇଁ ବୃତ୍ତି ପରୀକ୍ଷା ହୁଏ ପ୍ରତି ବର୍ଷ ନଭେମ୍ବର ମାସରେ । ସେଥି ପାଇଁ ଆଗ୍ରହୀ ଓ ଉତ୍ସାହୀ ଶିକ୍ଷକମାନଙ୍କୁ ଖବର ଦିଆଯାଇ ପ୍ରତି ସେପ୍ଟେମ୍ବର ମାସରେ ନିର୍ବାଚନୀ ପରୀକ୍ଷା କରାଯାଏ । ପ୍ରଥମରେ ପ୍ରତ୍ୟେକ ଉପଖଣ୍ଡ ସ୍ତରରେ ନିର୍ବାଚନ କରାଯାଇ ବୃତ୍ତି ପରୀକ୍ଷାକୁ ପଠାଯାଏ । ସେହି ପରୀକ୍ଷାରେ ଯେଉଁ ଛାତ୍ର ଛାତ୍ରୀ ସର୍ବୋଚ୍ଚ ସଂଖ୍ୟା ଅଧିକାର କରେ ସେ ୫ମ ଶ୍ରେଣୀର ସର୍ବଶ୍ରେଷ୍ଠ ଛାତ୍ର ରୂପେ ବିବେଚିତ ହୋଇ ଭିକ୍ଟୋରିଆ ମେମୋରିଏଲ୍ (Victoria Memorial) ବୃତ୍ତି ମାସକୁ ଟ.୫ ହିସାବରେ ୬ ବର୍ଷ ପର୍ଯ୍ୟନ୍ତ ପାଏ। ତତ୍‌ସଙ୍ଗେ ସରକାରଙ୍କ ତରଫରୁ ମାସକୁ ଟ ୪ ଙ୍କା ଲେଖାଏଁ ୨ ବର୍ଷ ପାଇଁ ପାଇ ଥାଏ ଓ ଏହା U. P. Scholarship ଭାବେ କଥିତ । ଉପରୋକ୍ତ ଭିକ୍ଟୋରିଆ ବୃତ୍ତି ତଦାନୀନ୍ତନ ଇଂଲଣ୍ଡ ସାମ୍ରାଜ୍ଞୀ ମହାରାଣୀ ଭିକ୍ଟୋରିଆଙ୍କ ନାମରେ ପ୍ରଦତ୍ତ ହେଉଥିଲା। ତାର ଦାତା ଥିଲେ ବୋଧ ହୁଏ ରାଜବୋଡ଼ାସମ୍ବର ପଦ୍ମପୁର ଜମିଦାର। ତେଣୁ ଏହି ଜିଲ୍ଲାରେ ସର୍ବଶ୍ରେଷ୍ଠ ବିବେଚିତ ୫ମ ଶ୍ରେଣୀ ଛାତ୍ର ମାସକୁ ଟ. ୯ ଲେଖାଏଁ ୨ ବର୍ଷ ଓ ଟ. ୫ ଲେଖାଏଁ ଆଉ ଚାରି ବର୍ଷ ପାଇବାକୁ ହକ୍‌ଦାର ହୁଏ। ତେଣୁ ଦରିଦ୍ର ମେଧାବୀ ଛାତ୍ରଙ୍କ ପକ୍ଷେ ଉଚ୍ଚ ଶିକ୍ଷାର ପଥ ସୁଗମ ହୋଇଥାଏ।

ଏହି ପରୀକ୍ଷା ପାଇଁ ଛାତ୍ର ଛାତ୍ରୀ ନିର୍ବାଚନ କାମ ପ୍ରାୟ ୪ର୍ଥ ଶ୍ରେଣୀରୁ ପ୍ରତ୍ୟେକ ୟୁ. ପି. ସ୍କୁଲରେ ଆରମ୍ଭ ହୋଇଯାଏ । ୫ମ ଶ୍ରେଣୀର ଷାଣ୍ମାସିକ ପରୀକ୍ଷାର ଫଳାଫଳ ଉପରେ ପ୍ରଥମ ୨ ଜଣ ଛାତ୍ର ଛାତ୍ରୀଙ୍କୁ ନିର୍ବାଚନୀ ପରୀକ୍ଷା ପାଇଁ ପଠା ଯାଇଥାଏ । ସେହି ପରୀକ୍ଷାର ଫଳ ଅନୁସାରେ ନିର୍ବାଚିତ ଛାତ୍ରଙ୍କୁ ବୃତ୍ତି ପରୀକ୍ଷା ପାଇଁ ପ୍ରସ୍ତୁତ କରା ଯାଇଥାଏ । ସାରା ଓଡ଼ିଶାରେ ଏହି ବୃତ୍ତି ପରୀକ୍ଷା ପାଇଁ ଏକ ପ୍ରଶ୍ନ ପତ୍ର ଓ ତାହା ସ୍କୁଲ ନିର୍ଦ୍ଦେଶାଳୟରୁ ଆସେ । ପ୍ରତି ସବ୍‌ଡିଭିଜନ ସ୍ତରରେ କେତୋଟି ନିର୍ଦ୍ଧାରିତ ସଂଖ୍ୟକ ବୃତ୍ତି ଥାଏ । ସେହି ଅନୁସାରେ ବିବେଚିତ

ଛାତ୍ରଙ୍କୁ ସଂପୃକ୍ତ ଶିକ୍ଷା ଜିଲ୍ଲା ଅଧିକାରୀ ବୃତ୍ତି ପ୍ରଦାନ ପାଇଁ ଆଦେଶନାମା ଦିଅନ୍ତି ଓ ସେମାନେ କେତେକ ନିର୍ଦ୍ଦିଷ୍ଟ ହାଇସ୍କୁଲରେ ପଢ଼ିଲେ ସେ ବୃତ୍ତି ପାଇବା ପାଇଁ ଯୋଗ୍ୟ ହୁଅନ୍ତି । ସେହି ହାଇସ୍କୁଲର ପ୍ରଧାନ ଶିକ୍ଷକଙ୍କ ଜରିଆରେ ଉକ୍ତ ବୃତ୍ତି ସମୟାନୁସାରେ ପ୍ରଦତ୍ତ ହୁଏ ।

୪ର୍ଥ ଓ ୫ମ ଶ୍ରେଣୀରେ ପଢୁଥିବା ବେଳେ ମୋର ସହପାଠୀ ମାନେ ହେଲେ ସର୍ବଶ୍ରୀ ତପୀ ମେହେର, ବିଦ୍ୟାଧର ବେହେରା, ଥବୀର ଭୋଇ ଓ ଛାତ୍ରୀ ମାନଙ୍କ ମଧ୍ୟରେ ରମ୍ଭା ଦେଇ, ଠିବିରି ଓ ନୂରାବତୀ ଥିଲେ ।

ଖୁଣ୍ଟପାଲି ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ସେତେବେଳେ ବହୁତ ସୁନାମ ଅର୍ଜନ କରିଥିଲା । ଏକାଦି କ୍ରମେ କିଛି ବର୍ଷରୁ ଏହି ସ୍କୁଲର ଛାତ୍ରମାନେ ଉକ୍ତ ଭିକ୍ଟୋରିଆ ବୃତ୍ତି ହାସଲ କରି ଜିଲ୍ଲାରେ ଶୀର୍ଷସ୍ଥାନ ଅଧିକାର କରୁଥିଲେ । ତେଣୁ ବହୁ ଛାତ୍ର ଓ ଅଭିଭାବକ ଏହି ବିଦ୍ୟାଳୟ ପ୍ରତି ଆଗ୍ରହୀ ହୋଇ ଯୋଗ ଦେଉଥିଲେ । ମୋର ମଧ୍ୟ ଏହି ମହାନ୍ ଆଶା ରଖି ଏହ ସ୍କୁଲରେ ନାମ ଲେଖାଯାଇଥିଲା । ଆମ ବଂଶର ଏକମାତ୍ର ଅଳିଅଳ ପୁତ୍ରକୁ ଘରରୁ ଏଠାକୁ ପ୍ରେରଣ କରିଥିଲେ ନିଜ ସ୍ନେହରେ ଜଳାଞ୍ଜଳି ଦେଇ । ଅବଶ୍ୟ ପରବର୍ତ୍ତୀ କାଳରେ ମୋର ସୁଫଳ ଦେଖି ପରମ ସନ୍ତୋଷ ଲାଭ କରିଥିଲେ । ତାଙ୍କର ତ୍ୟାଗ ଓ ସ୍ନେହରୁ ବଞ୍ଚିତ ହୋଇ ସୁଫଳାଫଳ ପ୍ରାପ୍ତି ପରେ ଏକ ମହାର୍ଘ ଅଟ୍ଟାଳିକା ନିର୍ମିତ ହୋଇ ଜାଜ୍ୱଲ୍ୟମାନ ରୂପେ ପ୍ରତିଭାତ ହେଲା ।

୪ର୍ଥ ଶ୍ରେଣୀ ବାର୍ଷିକ ପରୀକ୍ଷାରେ ମୁଁ ପ୍ରଥମ ହୋଇ ୫ମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେଲି । ତପୀ ମେହେର ୨ୟ ସ୍ଥାନରେ ରହିଲେ । ଏବର୍ଷ ଶ୍ୟାମସୁନ୍ଦର ଦାଶ ନିଜ ଘରେ ମୋତେ ରଖିବାକୁ ମନା କଲେ । ତେଣୁ ମୋର ବାପା ଆମ ବଂଶୀୟ ଆଉ ଏକ ଘରେ ଅର୍ଥାତ୍ ୰ ଲକ୍ଷ୍ମଣ ଦାଶଙ୍କ ମାତା ବିଧବା ହୋଇ ଅଲଗା ରହୁଥିଲେ । ତାଙ୍କ ନାମ ବେଡ଼ୀ ଥିଲା ଓ ତାଙ୍କ ଘରେ ମୋର ଖାଇବା ପାଇଁ ବନ୍ଦୋବସ୍ତ କରିଥିଲେ । ତାହାଙ୍କ ସ୍ନେହ, ଶ୍ରଦ୍ଧା ଓ ସେହି ବୟସରେ ମଧ୍ୟ ମୋତେ ଖାଇବାକୁ ଦେବାର ଦାୟିତ୍ୱ ଏ ପର୍ଯ୍ୟନ୍ତ ସ୍ମରଣୀୟ । ତାଙ୍କ ଯୋଗୁଁ ମୋର ପାଠ ପଢ଼ାର ଉନ୍ନତିର ପଥ ସୁଗମ ହେଲା । ତାଙ୍କର ପ୍ରଦତ୍ତ ଖାଦ୍ୟ ଆନନ୍ଦରେ ଗ୍ରହଣ କରୁଥିଲି । ସେ ମୋର ମାନ୍ୟରେ ପଣିଆଇ ଥିଲେ । ତାଙ୍କ ଘରେ ତାଙ୍କର ଜଣେ ଆତ୍ମୀୟ ତାଳମେଣ୍ଡା ନିବାସୀ ବିଶ୍ୱେଶ୍ୱର ଶତପଥୀ ତାଙ୍କ ପୁଅ ବୋହୂ ଘରେ ରହୁଥିଲେ । ଶତପଥୀ ମୋ' ଠାରୁ ୨ ବର୍ଷ ତଳେ ପଢୁଥିଲେ । ତାଙ୍କ ଘରେ ଦୁଇ ଓଳି ଅନ୍ନ ଛଡ଼ା ଆଉ କିଛି ମିଳୁ ନ ଥିଲା । ସେ ତ ନିଜକୁ ରକ୍ଷା କରିବା ଅସମ୍ଭବ ପୁଣି ଆଉ ଜଣକୁ ଆଶ୍ରୟ ଓ ଅନ୍ନଦାନ କରିବା

ଏକ ଦୁରୂହ ବ୍ୟାପାର । ତଥାପି ମୋର ଖୁଣ୍ଟପାଲିରେ ପଢ଼ିବା ବେଳେ ଜନୈକା କେଉଟୁଣୀକୁ ଘରୁ ଧାନ ଆଣି ଦେଇଥିଲେ ଓ ସେ ମୋତେ ସମୟାନୁକ୍ରମେ ମୁଢ଼ି ବା ଚିନାବାଦାମ ଦେଇ ତାର ହିସାବ ରଖୁଥିଲା । ଏହାକୁ ମୁଁ ଆନନ୍ଦରେ ଜଳଖିଆ ରୂପେ ଗ୍ରହଣ କରୁଥିଲି । ୧୯୩୭ ସାଲ ଅର୍ଥାତ୍ ୫ମ ଶ୍ରେଣୀଟି ମୋ ପାଇଁ ଏକ ରକମ ପରୀକ୍ଷାର ବର୍ଷ ଥିଲା । କାରଣ ଏ ବର୍ଷର ଚେଷ୍ଟା ଓ ତାର ଫଳାଫଳ ଉପରେ ମୋର ଉଚ୍ଚ ଶିକ୍ଷା ଓ ଭବିଷ୍ୟତ ନିର୍ଭର କରୁଥିଲା । ତେଣୁ ଶିକ୍ଷାବର୍ଷ ଆରମ୍ଭରୁ ମୋତେ ସତର୍କତା ଓ ପ୍ରଗାଢ଼ ଚେଷ୍ଟା ସହ ବିଦ୍ୟାଧ୍ୟୟନ କରିବାକୁ ପଡୁଥିଲା । ମୋର ଉପରୋକ୍ତ ବଡ଼ ମାଁଙ୍କ ଘରେ ସକାଳେ ଓ ସନ୍ଧ୍ୟାରେ ଯାହା ହୁଏ ତାକୁ ସନ୍ତୋଷରେ ଖାଇ ସ୍କୁଲକୁ ଓ ସନ୍ଧ୍ୟାରେ ପ୍ରଧାନ ଶିକ୍ଷକଙ୍କ ଘରକୁ ପଢ଼ିବାକୁ ଯାଉଥିଲି । ଅନେକ ଦିନ ମଧ୍ୟାହ୍ନରେ ଭାତ ଓ ନଳିତା ସାଗ ମିଳୁଥିଲା । ସନ୍ଧ୍ୟାରେ ରନ୍ଧାବଢ଼ା ସରି ନ ଥିଲେ ନ ଖାଇ ପଢ଼ିବାକୁ ଯାଉଥିଲି । ଅନେକ ଦିନ ଶିକ୍ଷକଙ୍କ ଘରେ ଖାଉଥିଲି ବା କେବେ ବଡ଼ ମାଁ ଡାକି ଗଲେ ଖାଇବାକୁ ଆସୁଥିଲି । ଅନେକ ଦିନ ଶିକ୍ଷକଙ୍କ ଘରେ ଶୋଉଥିଲି କାରଣ ପ୍ରଭାତରୁ ଉଠି ପଢ଼ିବାର ସୁବିଧା ଥିଲା । ପ୍ରଧାନ ଶିକ୍ଷକଙ୍କ ସ୍ତ୍ରୀ ଅତି ଧର୍ମପ୍ରାଣା ହେତୁ ଓ ମୁଁ ଜାତିରେ ବ୍ରାହ୍ମଣ ହେତୁ ମୋତେ ଖାଇବାକୁ ଦେବାକୁ ଅମଙ୍ଗ ହେଉଥିଲେ । ଅବଶ୍ୟ ସେତେବେଳେ ମୋର ବ୍ରତ ହୋଇ ନ ଥିଲା । ତଥାପି ସେତେବେଳେ ଜାତିଆଣ ପ୍ରଥା ବଡ଼ କଠୋର ଥିବାରୁ ଏହା ଚିନ୍ତା କରିବାକୁ ପଡୁଥିଲା ।

ଏ ସଂପର୍କରେ ସମାଜର ଆଉ କେତେକ ଅତି ସାଧାରଣ କଥା ବର୍ଣ୍ଣନା ଯୋଗ୍ୟ ମନେ ହୁଏ । ଆଗରୁ ବ୍ରାହ୍ମଣ ମାନେ ଛତିଶ ବର୍ଣ୍ଣର ରାଜା ଥିଲେ । ସେମାନେ ବେଦାଧ୍ୟୟନ, ଶାସ୍ତ୍ର ଚର୍ଚ୍ଚା, ଠାକୁର ପୂଜା, ଜ୍ୟୋତିଷୀ, କର୍ମ କର୍ମାଣୀ ଆଦିକୁ ସଂପୂର୍ଣ୍ଣ ନିଜସ୍ୱ କରିଥିଲେ । ତେଣୁ ସମାଜର ଅନ୍ୟ ଶ୍ରେଣୀର ଲୋକେ ତାଙ୍କୁ ବହୁ ସମ୍ମାନ ପ୍ରଦର୍ଶନ କରୁଥିଲେ । ସେତେବେଳେ ଉଚ୍ଚ ନୀଚ ଜାତିର ଭେଦଭାବ ଅତି ଭୀଷଣ ରୂପ ନେଇଥିଲା । ହରିଜନ, ଗିରିଜନ ତଥା ନୀଚ ଶ୍ରେଣୀର ଲୋକେ ବ୍ରାହ୍ମଣଙ୍କ ଘରକୁ ଯିବା ତ ଦୂରର କଥା, ତାଙ୍କୁ ଛୁଇଁଲେ ବ୍ରାହ୍ମଣମାନେ ଲୁଗା କଚ୍ରେ ଓ ଦରକାର ହେଲେ ପଇତା ମଧ ପରିବର୍ତ୍ତନ କରୁଥିଲେ । କୁକୁର ଓ କୁକୁଡ଼ା ଆଦି ପଂଶୁ ପକ୍ଷୀଙ୍କୁ ଛୁଇଁଲେ ଗୋଡ଼ଧୂଆ ଓ ଲୁଗା କାଚିବାର ନିତ୍ୟକର୍ମ ଥିଲା । ଝାଡ଼ା ଗଲେ ମଧ ଲୁଗା କାଚିବାକୁ ପଡୁଥିଲା । ବ୍ରାହ୍ମଣମାନେ କାହାରି ଘରେ ଜଳ ସ୍ପର୍ଶ କରୁ ନ ଥିଲେ । ସେତେବେଳେ ଆଜି ଭଳି ଏତେ ହୋଟେଲ ବା ଜଳଖିଆ ଦୋକାନ ନ ଥିଲା । ସାଧାରଣତଃ ବ୍ରାହ୍ମଣମାନେ କେବଳ

ନିଜର ବନ୍ଧୁବାନ୍ଧବ ବା ନିଜ ଜାତିର ବ୍ରାହ୍ମଣ ଘରେ ଭୋଜନ କରୁଥିଲେ । ସେତେବେଳେ ଉତ୍କଳୀୟ, ଆରଣ୍ୟକ, ରଘୁନାଥିଆ ଓ ହଳଧର ଗୋଷ୍ଠୀର ବ୍ରାହ୍ମଣ ଥିଲେ । ସେମାନଙ୍କ ମଧ୍ୟରେ ବୈବାହିକ ସଂପର୍କ ହୋଇପାରୁ ନ ଥିଲା । ତାହା ଏବେ ସାଧାରଣ ଚଳଣୀରେ ପରିଣତ ହେଲାଣି । ସେ ସବୁ କୁସଂସ୍କାର ରୂପେ ବିବେଚିତ ହେଉଛି । ଏ ସବୁ ସଂସ୍କାର ପାଇଁ ନାନା ଅନୁଷ୍ଠାନ ଗଢ଼ି ଉଠିଲାଣି । ଏଥିପ୍ରତି ଲୋକଙ୍କ ଆଗ୍ରହ ଧୀରେ ଧୀରେ ବଢ଼ି ଚାଲିଛି । ଆଗେ କୁଆଡ଼େ ବୁଲି ଘରକୁ ଫେରିଲେ ସେ ଲୁଗା ପିନ୍ଧି ଘରକୁ ଯିବା ନିଷେଧ ଥିଲା । ଏବେ ଜାତୀୟ ସରକାର ଓ ଅନ୍ୟ ସଂସ୍ଥା ସେ ସବୁର ମୂଳୋତ୍ପାଟନ କରି ସରଳ ଓ ମିଶ୍ରିତ ଜୀବନ ଯାପନରେ ଆଗେଇ ଆସିଲେଣି ।

ଆମ ୫ମ ଶ୍ରେଣୀର ପାଠ ବୋଧ ହୁଏ ଗୀଷ୍ମ ଛୁଟି ପୂର୍ବରୁ ସରି ପୁନରାଲୋଚନା ଆରମ୍ଭ ହେଲା । ଏହି ଶ୍ରେଣୀ ପାଇଁ ଉଦ୍ଦିଷ୍ଟ ଦାଶରଥୀ ପାଣିଗ୍ରାହୀଙ୍କ ରଚିତ୍ ନବବିଧାନ ଗଣିତ ବ୍ୟତୀତ ଅଙ୍କ ପୁସ୍ତକର କଠିଣ ପ୍ରଶ୍ନାବଳୀ ସବୁ ସମାଧାନ କରି ଆୟତ୍ତ କରିଥିଲୁଁ । ସେପରି ରଚନା ଲିଖନର ଉନ୍ନତି ପାଇଁ ଦୈତାରୀ ମହାନ୍ତିଙ୍କ ଲିଖିତ ସରଳ ପ୍ରବନ୍ଧ ଓ ପରେ ନୂତନ ଭାବେ ପ୍ରକାଶିତ ପ୍ରାଥମିକ ପ୍ରବନ୍ଧ ସଞ୍ଚୟନ ସେଥିରେ ବର୍ଣ୍ଣିତ ରଚନା, ଗଳ୍ପ ଲିଖନ, ପତ୍ର ଲିଖନ ପଢ଼ି ଅଭ୍ୟାସ କରି ଆୟତ୍ତ କରିଥିଲୁଁ । ଭୂଗୋଳ ଓ ଇତିହାସ ଉଚ୍ଚ ଶ୍ରେଣୀର ପାଠ୍ୟ ପୁସ୍ତକରୁ ବିଷଦ୍ ଆଲୋଚନା କରା ଯାଇଥିଲା । ଓଡ଼ିଆ ବ୍ୟାକରଣର ସାଧାରଣ ପଠିତ ବିଷୟ ଛଡ଼ା ସ୍ୱର ସନ୍ଧି, ବ୍ୟଞ୍ଜନ ସନ୍ଧି, ବିସର୍ଗ ସନ୍ଧି ଓ ସବୁ ପ୍ରକାର ସମାସର ଶିକ୍ଷା ଦିଆ ଯାଇଥିଲା । ମାନସାଙ୍କର କଠିଣ ପ୍ରଶ୍ନ ଓ ବୁଦ୍ଧିଗତ ପ୍ରଶ୍ନର ଶୀଘ୍ର ଉତ୍ତର ଦେବାର ସୁଅଭ୍ୟାସ କରା ଯାଉଥିଲା । ଏ ସବୁ ବିଷୟରେ ସାପ୍ତାହିକ ପରୀକ୍ଷା କରାଯାଇ ନମ୍ବର ଦିଆ ଯାଉଥିଲା ।

ଏପରି ଭାବେ ତ୍ରୟ ମାସିକ ଓ ଷାଣ୍ମାସିକ ପରୀକ୍ଷା ପରେ ବିଭାଗୀୟ ନିର୍ଦ୍ଦେଶାନୁକ୍ରମେ ଅଗଷ୍ଟ/ ସେପ୍ଟେମ୍ବର ମାସରେ ଉପଖଣ୍ଡ ସ୍ତରରେ ବୃତ୍ତି ପରୀକ୍ଷା ପାଇଁ ନିର୍ବାଚନୀ ପରୀକ୍ଷାରେ ଆମ ସ୍କୁଲରୁ ମୁଁ ଓ ତପୀ ମେହେର ଯୋଗ ଦେଇ ନଭେମ୍ବର ମାସରେ ବୃତ୍ତି ପରୀକ୍ଷା ପାଇଁ ନିର୍ବାଚିତ ହୋଇଥିଲୁଁ । ସେହି ଦିନରୁ ପାଠ ଦାନର ମାନ ଓ ତାକୁ ଆୟତ୍ତ କରିବାର ପ୍ରଚେଷ୍ଟା ପରିଶ୍ରମ ସହ ମନୋଯୋଗ ସାପେକ୍ଷ ହେଲା । ତପୀ ମେହେର ଓ ମୋର ମଧ୍ୟରେ ତୀବ୍ର ପ୍ରତିଦ୍ୱନ୍ଦିତା ଚାଲିଥିଲା । ସେ କେବେ ପ୍ରଥମ ହେଲେ ମୁଁ କେବେ ପ୍ରଥମ ହୁଏ ଅତି କମ୍ ନମ୍ବର ତଫାତ୍‌ରେ ସବିଶେଷ ଉତ୍ସାହର ସହ ପାଠ ପଢ଼ା ଚାଲିଥିଲା ।

ଜଣେ ଶିକ୍ଷକ...

ଆମର ବୃତ୍ତି ପରୀକ୍ଷା ନଭେମ୍ବର ମାସରେ ହେବାକୁ ଥିବାରୁ ଆମକୁ ବହୁ ପରିଶ୍ରମ କରିବାକୁ ପଡୁଥିଲା । ତେଣୁ ଶିକ୍ଷାଦାନ, ପୁନରାଲୋଚନା ଓ ମୁଖସ୍ଥ କରିବାରେ ବହୁତ ଧ୍ୟାନ ଦିଆ ଯାଇଥିଲା । ଦିନ ବେଳେ ବିଦ୍ୟାଳୟରେ ପାଠ ପଢ଼ା, ରାତ୍ରିରେ ସମସ୍ତ ଛାତ୍ରଙ୍କ ସହ ପାଠ ପଢ଼ି ରାତ୍ରିର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ଜାଗ୍ରତ ରହି ପାଠାଭ୍ୟାସ ଓ ଆୟତ୍ତ କରା ଯାଉଥିଲା । ପୁଣି ପ୍ରଭାତରୁ ଚଢ଼େଇ ମାନଙ୍କ ଉଠିବା ପୂର୍ବରୁ ବୋଧ ହୁଏ ପ୍ରାତଃ ୩ଟାରୁ ଉଠି ପାଠ କୁ ବାରମ୍ବାର ପଢ଼ିବାକୁ ପଡୁଥିଲା । ଅବଶ୍ୟ ସେତେବେଳେ କେବେ ପଢ଼ିବା ପାଇଁ ବିରକ୍ତି ଭାବ ଓ ଅନିଚ୍ଛା ପ୍ରକାଶ ପାଉ ନ ଥିଲା । କିନ୍ତୁ ଶିକ୍ଷକଙ୍କ ତାଗିଦା, ସ୍ନେହ ଓ ସର୍ବୋପରି ପରିବାରର ଉଚ୍ଚାକାଂକ୍ଷାକୁ ଚୁରମାର କରିବାର ସତ୍‌ସାହସ ନ ଥିଲା । ସେତେବେଳେ ବହୁ କଷ୍ଟରେ ତପସ୍ୟା ଭଳି ପ୍ରାୟ ୧୮/୨୦ ଘଣ୍ଟା କଠିଣ ପରିଶ୍ରମରେ କଟୁଥିଲା । ତେଣୁ ଯେଉଁ ୨/୪ ଘଣ୍ଟା ରାତ୍ରରେ ଶୋଇବାକୁ ମିଳେ, ସେତେବେଳେ ଅତି ନିଘୋଡ଼ ନିଦରେ ଶୋଇ ପଡୁଥିଲି । ସେତେବେଳେ ଏପରି ଅର୍ଦ୍ଧ ସଂଜ୍ଞାହୀନ ଅବସ୍ଥାରେ ଥିଲି ଯେ, ମୋର ଗୋଡ଼ର ତଳି ପା' ଚମଡ଼ାକୁ ମୂଷା କାଟି ଖାଇ ଦେଉଥିଲେ ବି ଜାଣି ପାରୁ ନ ଥିଲି । ଏପରିକି ତାଙ୍କ ଦୌରାତ୍ମ୍ୟରେ ମୋର ଗୋଡ଼ର ତଳି ପା' ଚମଡ଼ା ସମଗ୍ର ଭାବେ ନଷ୍ଟ ହୋଇ ଚାଲିବାରେ ବାଧା ସୃଷ୍ଟି କଲା । ତେଣୁ ପରୀକ୍ଷା ଦେବା ପାଇଁ ମୋତେ ବୋହି ନେବାକୁ ପଡ଼ିଥିଲା ।

ବୃତ୍ତି ପରୀକ୍ଷା ପାଇଁ ବିଷୟ ନିର୍ଘଣ୍ଟ ଏପରି ଥିଲା - ପ୍ରଥମ ଦିନ ସାହିତ୍ୟ ଓ ଇତିହାସ, ଦ୍ୱିତୀୟ ଦିନ ଗଣିତ ଓ ଭୂଗୋଳ ଓ ତୃତୀୟ ଦିନ ସ୍ୱାସ୍ଥ୍ୟରକ୍ଷା ଓ ମାନସାଙ୍କ ।

ପ୍ରଥମ ଦିନର ପରୀକ୍ଷାରେ ସାହିତ୍ୟର ପ୍ରଶ୍ନ ଠିକ୍ ଥିଲା । ରଚନା ଲିଖନରେ କେତେ ବିଶିଷ୍ଟ ଶବ୍ଦ ଦିଆଯାଇ ଗଳ୍ପ ଲିଖନ ପାଇଁ ନିର୍ଦ୍ଦେଶ ଥିଲା । ଉକ୍ତ ଗଳ୍ପ ଲିଖନଟି ଆମ ବିଦ୍ୟାଳୟରେ ଶିକ୍ଷକ ମହାଶୟ ଦିନେ ଆଲୋଚନା କରୁଥିଲେ । ତେଣୁ ମୁଁ ଅକ୍ଳେଶରେ ତାର ଉତ୍ତର ଲେଖିଥିଲି । କିନ୍ତୁ କୌଣସି ଅସୁବିଧା ହେତୁ ତପୀ ମେହେର ସେ ଦିନ ଅନୁପସ୍ଥିତ ଥିବାରୁ ସେହି ଗଳ୍ପଟି ତାଙ୍କ ଧାରଣାର ବହିର୍ଭୁତ ଥିବାରୁ ସେ ଉତ୍ତର ଲେଖି ପାରି ନ ଥିଲେ ଓ ତାକୁ ଛାଡ଼ି ଦେଇଥିଲେ । ହେଲେ ହେଁ ଅନ୍ୟ ସବୁ ବିଷୟରେ ଆମେ ଠିକ୍ ଠିକ୍ ଉତ୍ତର ଦେଇଥିଲୁଁ । ଗଣିତ ଓ ମାନସାଙ୍କରେ ମଧ ଦୁହେଁ ପୂର୍ଣ୍ଣ ଉତ୍ତର ଦେଇଥିଲୁଁ । ଆଉ ସବୁ ବିଷୟ ମଧ ଆମ ଶକ୍ତି ସାମର୍ଥ୍ୟ ଅନୁସାରେ ସନ୍ତୋଷଜନକ ହୋଇଥିଲା । ହେଲେ ହେଁ ତପୀ ମେହେର ସାହିତ୍ୟରେ ରଚନା ଲିଖନର ଉତ୍ତର ଲେଖି ନ ଥିବାରୁ ବୃତ୍ତି ପରୀକ୍ଷାରେ ଉପଯୁକ୍ତ ନମ୍ବର ରଖି ବୃତ୍ତି ପାଇବାର ଆଶା କ୍ଷୀଣ ହୋଇଥିଲା ।

ଏହି ସମୟରେ ଆଉ ଏକ ଘଟଣାର ସୂଚନା ଆବଶ୍ୟକ ମନେ ହୁଏ । ଆଗରୁ ତପୀର ପିତାଙ୍କ ଜଣେ ବନ୍ଧୁ ଆସି ଆମ ସଙ୍ଗେ ରହୁଥିଲେ। ତାଙ୍କର ଆସି ଆମ ସଙ୍ଗେ ରହିବାର କୌଣସି କାରଣ ନ ଥିଲା । ପରେ ବୁଝା ବୁଝି କରିବାରେ ଜଣା ପଡ଼ିଲା ଯେ ସେ ଜଣେ ତାନ୍ତ୍ରିକ ଓ ସେମାନେ ମୋ' ଉପରେ କୌଣସି ମନ୍ଦ ପ୍ରଭାବ ପକାଇବା ପ୍ରଚେଷ୍ଟାରେ ଥିଲେ ଓ ତହିଁରେ ବିଫଳ ହେଲେ । କାରଣ ମୁଁ ମୋର ବାପା ଓ ପ୍ରଧାନ ଶିକ୍ଷକଙ୍କ ମଝିରେ ଶୋଇଥିଲି ଓ ପ୍ରଧାନ ଶିକ୍ଷକଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଥିଲି । ସେମାନେ ମୋତେ କୁଆଡ଼େ ବି ଏକାକୀ ଛାଡୁ ନ ଥିଲେ। ତେଣୁ ମୋ' ଉପରେ କୌଣସି କୁ-ପ୍ରୟୋଗର ସୁବିଧା ନ ପାଇ ଦ୍ୱିତୀୟ ଦିନ ପରୀକ୍ଷା ପରେ ସେ ସନ୍ଧ୍ୟାରେ ଚାଲି ଯାଇଥିଲେ । ପ୍ରଥମ ଦିନ ତପୀ ମେହେର ସାହିତ୍ୟରେ ୨୦ ମାର୍କର ଉତ୍ତର ଛାଡ଼ି ଦେଇଥିଲେ । ତେଣୁ ଅନ୍ୟାନ୍ୟ ବିଷୟରେ ଖୁବ୍ ଭଲ କରି ମଧ୍ୟ ତାଙ୍କ ଆଶା ନିରାଶାରେ ପରିଣତ ହେଲା । ଶେଷ ଦିନ ଆମେ ଦୁହେଁ ଉଭୟ ବିଷୟରେ ସନ୍ତୋଷଜନକ ଉତ୍ତର ପ୍ରଦାନ କରିଥିଲୁଁ । ପରୀକ୍ଷା ଶେଷ ଦିନ ଆମେ ନିଜ ନିଜ ଘରକୁ ଫେରି ଯିବାର କଥା କିନ୍ତୁ ସେ ଦିନ ଜର୍କ ହାଇସ୍କୁଲ ଶିକ୍ଷକ ଓ ଛାତ୍ରଙ୍କ ନିମନ୍ତ୍ରଣ କ୍ରମେ ରାତ୍ରିରେ ଏକ ସମୂହ ପଂକ୍ତି ଭୋଜନର ବ୍ୟବସ୍ଥା ହେତୁ ଆମକୁ ସେହି ଦିନଟି ରହିବାକୁ ହେଲା । ସନ୍ଧ୍ୟାରେ ସମସ୍ତ ୫ମ ଓ ୭ମ ଶ୍ରେଣୀର ପରୀକ୍ଷାର୍ଥୀ ଓ ଶିକ୍ଷକଗଣ ହାଇସ୍କୁଲରେ ଜମା ହେଲୁଁ । ସେତେବେଳେ ସେଠାରେ ଗ୍ରାମୋଫୋନ (କଳ ଗାଉଣା) ବାଜି ସମସ୍ତଙ୍କୁ ଆକୃଷ୍ଟ କରୁଥିଲା । ମଝିରେ ତାହା ବନ୍ଦ ହୋଇ ଯିବାରୁ ଆମେ କୌତୂହଳୀ ହୋଇ କଅଣ ହେଲା ବୋଲି ସେ ଆଡ଼କୁ ଗଲୁଁ । କାରଣ ଏହି ଅନୁଭୂତି ଆମ ପକ୍ଷେ ସଂପୂର୍ଣ୍ଣ ଅଭିନବ ଓ ନୂଆଁ । ସେ ପାଖରେ ଜଣେ ବୟସ୍କ ସମ୍ଭ୍ରାନ୍ତ ପୋଷାକଧାରୀ ବ୍ୟକ୍ତି ଠିଆ ହୋଇଥିଲେ । ସେ ଆମର ଆଗ୍ରହ ଦେଖି କହିଲେ, ତୁମ୍ଭେ ମାନେ ଖାଉଥିବ ଓ ସେତେବେଳେ କଳ ଗାଉଣା ବଜା ଯିବ ଓ ଶୁଣିବ । ଏହା ଶୁଣି ଆମେ ଆନନ୍ଦିତ ହୋଇ ଖାଇବାକୁ ବସି ପଡ଼ିଲୁଁ । ଖାଇବା ପାଇଁ ଆମ୍ଭଙ୍କୁ ମିଠା-ଭାତ, ଡାଲି, ତରକାରୀ, ଖଟା ଓ ରସଗୋଲାଦି ପରିବେଷଣ କରା ଯାଇଥିଲା । ଜୀବନରେ ସର୍ବ ପ୍ରଥମେ ଏପରି ଏକ ଅପୂର୍ବ ସ୍ୱାଦିଷ୍ଟ ଭୋଜନ କରିବାର ସୁଯୋଗ ପାଇଥିଲି। ତାହା ଏ ପର୍ଯ୍ୟନ୍ତ ମନେ ରହିଛି ।

ଶୀତ କାଳ ହେତୁ ଉକ୍ତ ସମ୍ଭ୍ରାନ୍ତ ବ୍ୟକ୍ତି ଅର୍ଥାତ୍ ପ୍ରଧାନ ଶିକ୍ଷକ ଖଣ୍ଡେ ପଶମ ସୁଏଟର ପିନ୍ଧିଥିଲେ । ପରଦିନ ଆମ ଗାଁକୁ ଫେରିବା ବେଳେ ମୋର ଆଗ୍ରହ ଦେଖି ମୋର ବାପା ମୋ' ପାଇଁ ପ୍ରାୟ ଟ. ୨ କିୟା ଏକ ଟଙ୍କାର ଖଣ୍ଡେ ସୂତାର

ସୁଏଟର କିଣି ଦେଇଥିଲେ । ମୁଁ ଗାଁକୁ ଯାଇ ଅତି ଆଗ୍ରହରେ ସମସ୍ତଙ୍କୁ ମୋର ସୁଏଟର ଦେଖାଇ ଏପରି ଏକ ସୁଏଟର ହାଇସ୍କୁଲର ପ୍ରଧାନ ଶିକ୍ଷକ ପିନ୍ଧିଥିଲେ ବୋଲି କହିବାରୁ ମୋର ଜଣେ ଗ୍ରାମୀଣ ହିତୈଷୀ ତଥା ଅଳ୍ପ ବୟସ୍କ ବନ୍ଧୁ ସାମାଜିକ ମାନ୍ୟରେ ବଡୁ - ମାଖୁନୁ ସାହୁ ଅତି ଆନନ୍ଦରେ କହି ପକାଇଲେ, 'ତୁମେ ମଧ ଦିନେ ବଡ଼ ଲୋକ ହେବ ।' ଏହା ଶୁଣି ବହୁତ ଆନନ୍ଦିତ ହୋଇଥିଲି ।

ଏପରି ଭାବେ କିଛି ଦିନ ଗାଁରେ ରହି ଖୁଣ୍ଟପାଲି ଯାଇ ସ୍କୁଲକୁ ଗଲି । କାରଣ ଆମର ବାର୍ଷିକ ପରୀକ୍ଷା ହୋଇ ନ ଥାଏ । ତେଣୁ ଯିବାକୁ ହେଲା । ଇତି ମଧରେ ଘରେ ଥିବା ବେଳେ ରାତିରେ ଏକ ସ୍ୱପ୍ନ ଦେଖିଲି । ସ୍ୱପ୍ନରେ ଗୋଟିଏ ଧଳା ହାତୀ ମୋତେ ଗୋଡ଼ାଉଥିଲା ଓ ମୁଁ ଭୟରେ ଦୌଡୁଥିଲି । ମୋର ନିଦ ଭାଙ୍ଗି ଗଲା । ଏ କଥା ଘରର ଅନ୍ୟମାନଙ୍କୁ କହିବାରୁ ସମସ୍ତେ ଏହାକୁ ଶୁଭ ଲକ୍ଷଣ ବୋଲି ମତ ଦେଲେ ଓ ଖୁସି ହେଲେ । କିଛି ଦିନ ପରେ ବୃତ୍ତି ପରୀକ୍ଷାର ଫଳ ଘୋଷିତ ହେଲା ଓ ମୁଁ ବୃତ୍ତି ପାଇବାର ଯୋଗ୍ୟ ବୋଲି ଜଣା ଗଲା । ଏହା ଧଳା ହାତୀ ସ୍ୱପ୍ନ ଦେଖାର ଶୁଭ ଫଳ ନୁହେଁ କି ? ଗଣେଶଙ୍କ ଆଶୀର୍ବାଦରୁ ଏପରି ସୁଫଳ ମିଳିବାର ପୂର୍ବାଭାସ ଥିଲା ବୋଲି ମନେ ହେଲା । ତାପରେ ବର୍ଷ ଶେଷରେ ବାର୍ଷିକ ପରୀକ୍ଷା ହେଲା ଓ ସେଠାରୁ ଉତ୍ତୀର୍ଣ୍ଣ ହେଲି । ସେଠାରୁ ମୋର ଉଚ୍ଚ ଶିକ୍ଷାର ପଥ ସୁଗମ ହେଲା । ଏଥି ସକାଶେ ଗୁରୁଜନଙ୍କ ଆଶୀର୍ବାଦ ବିଶେଷ କରି ଶ୍ରୀଯୁକ୍ତ ଅନିରୁଦ୍ଧ ସାହୁଙ୍କ ସୁଶିକ୍ଷା ଦାନ ଓ ମୋର ଆପ୍ରାଣ ପ୍ରଚେଷ୍ଟା ସର୍ବୋପରି ଈଶ୍ୱରଙ୍କ ଅଶେଷ କୃପାର ସୁଫଳ ଅଟେ । ତାହା ପରବର୍ତ୍ତୀ ଜୀବନରେ ମୋର ସୁଶୃଙ୍ଖଳ ଜୀବନ-ଯାପନ, ଶିକ୍ଷା ଓ ଉନ୍ନତି ପଥରେ ପ୍ରଭୂତ ସହାୟକ ହୋଇ ପାରିଥିଲା ।

ପରବର୍ତ୍ତୀ ବର୍ଷ ମାନଙ୍କରେ ପଢୁଥିବା ଏହି ସ୍କୁଲର ଛାତ୍ର ଛାତ୍ରୀ ମାନଙ୍କ ଠାରୁ ଏପରିକି ତାଙ୍କ ନିଜ ପୁତ୍ର ଯତୀନ୍ଦ୍ର ସାହୁଙ୍କ ଠାରୁ ଶୁଣିବାକୁ ମିଳିଲା ଯେ, ତାଙ୍କର ପଢ଼ାଇଥିବା ଛାତ୍ର ମାନଙ୍କ ମଧରେ ମୁଁ ତାଙ୍କର ପ୍ରିୟତମ ଛାତ୍ରର ସ୍ଥାନ ଅଧିକାର କରି ତାଙ୍କ ସ୍ନେହର ଆଧିକ୍ୟ ଲାଭ କରିଥିବାରୁ ତାଙ୍କ ହୃଦୟର ନିଭୃତ କୋଣରେ ଏକ ସ୍ଥାନ ପାଇବାର ଯୋଗ୍ୟତା ହାସଲ କରିଥିବାର ଜାଣିଲି । ଏହା ଗୁରୁ ସ୍ନେହାଶିଷ ପ୍ରାପ୍ତିର ଏକ ଅଭୁଲା ସ୍ମୃତି । ଏହି ସ୍ନେହ ଭାବ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ମୋ' ପ୍ରତି ଅକ୍ଷୁର୍ଣ୍ଣ ରହିଥିଲା । ମୁଁ ତଦନୁସାରେ ମୋର ଯଥାରୀତି ସମ୍ଭାବ୍ୟ ଭକ୍ତି ପ୍ରଦର୍ଶନ କରୁଥିଲି । ପରବର୍ତ୍ତୀ କାଳରେ ମଧ ମୋତେ ଦେଖିଲେ ମୋର ଛାତ୍ର ଜୀବନର କଥାକୁ ଦୋହରାଇ ଓ ସ୍ମରଣ କରାଇ ଆତ୍ମ ପ୍ରସାଦ ଲାଭ କରୁଥିଲେ ବୋଲି ସ୍ୱତଃ ଜଣା ପଡୁଥିଲା । ଏଥିରୁ ସମସ୍ତେ ଜାଣି ରଖିବା ଉଚିତ୍ ଯେ, ଶିକ୍ଷକ

ମାନଙ୍କ ପରମ ସନ୍ତୋଷ ଦ୍ୱାରା ଛାତ୍ରମାନଙ୍କ ଉନ୍ନତିର ପଥ ସୁଗମ ହୁଏ । ତାହା ମୋର ବ୍ୟକ୍ତିଗତ ଜୀବନରେ ଏକ ଜ୍ୱଳନ୍ତ ଉଦାହରଣ । ଏପରି ସୌଭାଗ୍ୟର ମୁଁ ଅଧିକାରୀ ହୋଇଥିଲି । ସେଠାରୁ ଉତ୍ତୀର୍ଣ୍ଣ ହୋଇ ବୃତ୍ତି ଭୋଗୀ ଛାତ୍ର ହିସାବରେ ବରଗଡ଼ ଜର୍ଜ ହାଇସ୍କୁଲରେ ପଢ଼ିବାକୁ ହେବ ବୋଲି ସ୍ଥିର ହେଲା । କାରଣ ସେହି ବୃତ୍ତି ଭୋଗୀ ଛାତ୍ରମାନେ ଏହି ସ୍କୁଲରେ ପଢ଼ିବାକୁ ବାଧ ହୁଅନ୍ତି । ମୋତେ ମଧ ତାହା କରିବାକୁ ହେଲା । ଏଣୁ ଉଚ୍ଚ ଶିକ୍ଷା ପାଇଁ କି ପ୍ରକାର ଯୋଗାଡ଼ ଯତ୍ନ ଓ ଅନ୍ୟ ଯୋଜନା କରିବାକୁ ହେବ ଆମ ପରିବାରରେ ବିଗ୍ଚର କରିବାକୁ ଲାଗିଲେ। କାରଣ ବଡ଼ଖାନା ଛୁଟି ପରେ ନୂତନ ବର୍ଷାରମ୍ଭରେ ବରଗଡ଼ ଯାଇ ନାମ ଲେଖାଇବାର ନିୟମ ଥିଲା । କାରଣ ଜାନୁୟାରୀ ୧ ତାରିଖ ନବବର୍ଷର ପ୍ରଥମ ଦିନ ପରେ ନାମ ଲେଖା ଯିବା ନିୟମଭୁକ୍ତ । ତେଣୁ ଖୁଣ୍ଟପାଲି ସ୍କୁଲ ଓ ଗ୍ରାମରୁ ବିଦାୟର ଅନ୍ତିମ ପର୍ଯ୍ୟାୟର ଯବନିକାପାତ ହେଲା ।

## ଜର୍ଜ ହାଇସ୍କୁଲରେ ପ୍ରବେଶ ଓ ଅଧୟନ (୧୯୩୮ ରୁ ୧୯୪୪):-

ପ୍ରତି ଇଂରାଜୀ ବର୍ଷର ଶେଷ ସପ୍ତାହଟି ସବୁ ବିଦ୍ୟାଳୟ ଓ ଶିକ୍ଷାନୁଷ୍ଠାନ ଗୁଡ଼ିକ ବଡ଼ଖାନା ଛୁଟି (X'mas Holiday) ପାଇଁ ବନ୍ଦ ରହେ । ଏହା ପ୍ରାୟ ମାର୍ଗଶୀର-ପୌଷ ମାସରେ ପଡ଼େ । ଏହି ସମୟରେ ପ୍ରାୟ ବର୍ଷର ବାକିଥିବା ଘରୁଆ କାମ ଅର୍ଥାତ୍ ଧାନ ଅମଳ ଓ ସାଇତିବା କାମ ସମସ୍ତେ ସମାପନ କରିଥାନ୍ତି। ତାପରେ ପର ବର୍ଷ ଆରମ୍ଭରୁ ନୂତନ ଶିକ୍ଷା ବର୍ଷ ଆରମ୍ଭ ହେଉଥିବାରୁ ବିଦ୍ୟାଳୟ ମାନଙ୍କରେ ନାମଲେଖା, ଖାତାପତ୍ର ତିଆରି ଓ ବହିପତ୍ର ଆଦି ଯୋଗାଡ଼ ପାଇଁ ସାଧାରଣତଃ ବ୍ୟସ୍ତ ରହନ୍ତି ।

ମୋର ଘରୁ ବାହାରକୁ ପଢ଼ିବା ପାଇଁ ପ୍ରସ୍ତୁତି କାର୍ଯ୍ୟ ଅର୍ଥାତ୍ ମୋ ପାଇଁ ଗୋଟିଏ ବାକ୍ସ, ଲଣ୍ଠନ, ଲୁଗା ପଟା, ବିଛଣା, ଖଟ, ଥାଳୀ, ଗିନା, ଲୋଟା ଆଦିର ଯୋଗାଡ଼ କରିବାକୁ ପଡ଼ିଲା । କାରଣ ସେ ସବୁ ନ ହେଲେ ଘରୁ ବାହାରକୁ ଗଲା ବେଳେ ନିଜର ସବୁ ଜିନିଷ ନ ଥିଲେ ଅସୁବିଧା ଭୋଗ କରିବାକୁ ପଡ଼ିବ । ତେଣୁ ବୋଧ ହୁଏ ୧୯୩୮ ସାଲ ଜାନୁୟାରୀ ମାସ ପ୍ରଥମ ସପ୍ତାହରେ ଆସି ଜର୍ଜ ହାଇସ୍କୁଲରେ ୫ମ ଶ୍ରେଣୀରେ ନାମ ଲେଖା ହେଲା । ନାମ ଲେଖାଇବା ପାଇଁ ବୋଧ ହୁଏ ଟ୧୫ଙ୍କା ପର୍ଯ୍ୟନ୍ତ ପଡ଼ିଥିଲା । କିନ୍ତୁ ସେତିକି ପରିମାଣ ମୁଦ୍ରା ଘରେ ସଞ୍ଚିତ ନ ଥିବାରୁ ପିଲା ବେଳେ ମୋର ପିନ୍ଧିଥିବା ସୁନାର ଫାସିଆ ଯାହାକି ମୋର ମାଁ ପିନ୍ଧିଥିଲେ ତାକୁ ବିକି ପ୍ରାୟ ଟ. ୧୧ ଯୋଗାଡ଼ କରି ୫ମ ଶ୍ରେଣୀରେ ମୋର

ନାମ ଲେଖା ହେଲା, ଯେହେତୁ ବୃତ୍ତି ଭୋଗୀ ଛାତ୍ର ମାନେ ଜର୍କ ହାଇସ୍କୁଲରେ ନାମ ଲେଖାଇ ପଢ଼ିଲେ ଟ. ୫ ସେ ବୃତ୍ତି ପାଇ ପାରିବେ ବୋଲି ନିୟମ ଥିଲା । ଆମ୍ଭମାନଙ୍କୁ ସେତେବେଳେ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ଇଂରାଜୀ ଶିକ୍ଷା ଦିଆଯାଉ ନ ଥିଲା । ଉଚ୍ଚ ବିଦ୍ୟାଳୟ ମାନଙ୍କରେ ଇଂରାଜୀ ୪ର୍ଥ ଶ୍ରେଣୀରୁ ପଢ଼ା ଯାଉଥିଲା । ତେଣୁ ୪ର୍ଥ ଓ ୫ମ ଶ୍ରେଣୀର ଇଂରାଜୀ ଶିକ୍ଷାର ପରିପୂର୍ଣ୍ଣତା ପାଇଁ ୫ମ ଶ୍ରେଣୀରେ ନାମ ଲେଖିବାର ବିଧି ଥିଲା ।

ସେତେବେଳର ବରଗଡ଼ ସହର ବିଷୟରେ ସମ୍ୟକ୍ ସୂଚନା ପ୍ରଦାନ ଆବଶ୍ୟକ ଓ ସମୀଚୀନ ମନେ ହୁଏ । ୧୯୩୮ ସାଲରେ ଯେତେବେଳେ ମୁଁ ଆସି ଜର୍କ ହାଇସ୍କୁଲରେ ନାମ ଲେଖାଇଲି ସେତେବେଳେ ଏହି ସହରର ଲୋକସଂଖ୍ୟା ବୋଧ ହୁଏ ୫/୭ ହଜାରରୁ କମ୍ ଥିଲା । ସେତେବେଳେ ସହରର ସ୍ୱାସ୍ଥ୍ୟ ଆଜିର ସ୍ୱାୟତ୍ତ ଶାସନ ବିଭାଗରେ ଥାଇ ଇଉନିୟନ୍ ବୋର୍ଡ ଦ୍ୱାରା ପରିଚ୍ଛାଳିତ ହେଉଥିଲା । ଆଜିକାଲିର ମ୍ୟୁନିସିପାଲିଟି ଅଫିସ ଥିବା ସ୍ଥାନରେ ଏକ ଛୋଟ ଘରେ ସେ କାର୍ଯ୍ୟ ଚ୍ଛଳିଥିଲା । ସେତେବେଳେ ବଡ଼ କୋଠା ମଧ୍ୟରେ କଚେରୀଘର, ମୁନସଫ୍ କୋର୍ଟ, ଜର୍କ ହାଇସ୍କୁଲ, ବାଳିକା ନିମ୍ନ ମାଧ୍ୟମିକ ବିଦ୍ୟାଳୟ, ପ୍ରାକଟିସିଂ ସ୍କୁଲ, ବସ୍ତି ସ୍କୁଲ ଓ ଜୀରା ନଦୀରୁ କଚେରୀ ପର୍ଯ୍ୟନ୍ତ ଯାଇଥିବା ପ୍ରଧାନ ରାସ୍ତାରେ ଆଜିକାଲିର ବିରାଟ ଅଟ୍ଟାଳିକା ସବୁ ନ ଥିଲା । ବୋଧ ହୁଏ ଗଣେଶ ରାମ ହରନାରାୟଣଙ୍କ କୋଠା (ଲମ୍ୱା କୋଠାଘର), ଫକୀରା ଅଗ୍ରୱାଲଙ୍କ ଦୋକାନ ଘର, ଆଜିକାଲିର ପ୍ରକାଶ ଷ୍ଟୋର, ପଞ୍ଚାୟତି ଧର୍ମଶାଳାର ପୁରାତନ କୋଠା ଆଦି ଥିବାର ମନେ ହୁଏ । ନୂତନ ଅଟ୍ଟାଳିକା ଗୁଡ଼ିକ ପରବର୍ତ୍ତୀ ସମୟରେ ବୋଧ ହୁଏ ୧୯୪୨ ସାଲ ପରେ ନିର୍ମିତ ହୋଇଥିଲା ।

ସରକାରୀ ଅଫିସ ମାନଙ୍କ ମଧ୍ୟରେ ଏସ.ଡି.ଓ. (S.D.O.) ଅଫିସ, ମୁନ୍‌ସଫ୍ ଅଫିସ, ତହସିଲ ଅଫିସ, ସରକାରୀ ଡାକ୍ତରଖାନା, ପଶୁ ଡାକ୍ତରଖାନା ଶିକ୍ଷା ବିଭାଗର ସବ୍ ଇନ୍ସପେକ୍ଟରଙ୍କ ଅଫିସ୍, ପୂର୍ତ୍ତ ବିଭାଗ (P.W.D.) ଅଫିସ ଆଦି ଥିଲା । ବରଗଡ଼ରେ ଏସ୍. ଡି. ଓ. ସର୍ବୋଚ୍ଚ ସରକାରୀ କର୍ମଚ୍ଚରୀ ଥିଲେ ଓ ତାଙ୍କ ତଳେ ଜଣେ Second Officer ଓ ତହସିଲଦାର ଥିଲେ । ତାଙ୍କ ତଳେ Revenue Inspector, ପଟୱାରୀ, ଅମିନ ଆଦି କାମ କରୁଥିଲେ ।

ଆଜିକାଲି ଭଳି ସେତେବେଳେ ଏତେ ହୋଟେଲ, ଜଳଖିଆ ଦୋକାନ, ପାନ ଦୋକାନ ଆଦି ନ ଥିଲା, ହେଲେହେଁ ସେତେବେଳର ନାମଜାଦା ଗୁଡ଼ିଆ ଦୋକାନ, ତୁଳସୀଆ ମହାରାଜଙ୍କ ବର୍ତ୍ତମାନର ଦୀପମାଳା ବସ୍ତ୍ର ଭଣ୍ଡାର ନିକଟସ୍ଥ

ପିପ୍ପଳ ଗଛ ତଳେ 'ନିଉ ଆର୍ଟ ପ୍ରେସ୍' ସ୍ଥାନରେ ଥିଲା । ତାଙ୍କ ଦୋକାନର ରସଗୋଲା, ପେଡ଼ା, ଜିଲପି, ବାଲୁସାଇ, ପୁଡ଼ୀ ଆଦି ଉଚ୍ଚ ମାନର ସ୍ୱାଦିଷ୍ଟ ଭୋଜନ ଥିଲା ଓ ସେ ସବୁ ଭେଜାଲ ନ ଥିଲା । ଯେ କୌଣସି ମିଠା ଗୋଟିକେର ମୂଲ୍ୟ ୨ ପଇସା ବା ଟ ୦.୬ ପାହୁଲା । ଅନ୍ୟ ସବୁ ଜିଲପି, ପୁଡ଼ୀ, ତିନିକୋଣିଆ ନିମ୍‌କି ଆଦି ଗୋଟାକୁ ୧ ପଇସା ବା ଟ୦.୩ ପାହୁଲା ଥିଲା । କିନ୍ତୁ ଜିନିଷର ସେତିକି କମ୍ ଦାମ୍ ଥିଲେ ମଧ କୌଣସି ଧନୀ ଲୋକ ବ୍ୟତୀତ ସେପରି ଦୋକାନକୁ ଯାଇ ଖାଇ ପାରୁ ନ ଥିଲେ । ସେତେବେଳେ ସେର୍, ଅଧସେର୍, ପାଆ ଓଜନରେ ବିକ୍ରି ହେଉଥିଲା ଓ ସେରକୁ ପ୍ରାୟ ଆଠ ଅଣା ବା ଏକ ଟଙ୍କା ପର୍ଯ୍ୟନ୍ତ ଥିଲା । କିନ୍ତୁ ପଇସା ଏପରି ଦୁର୍ମୂଲ୍ୟ ଥିଲା ଯେ ସେତିକି ମଧ ଲୋକ କିଣି ଖାଇ ପାରୁ ନ ଥିଲେ । ସେତେବେଳେ ତ ନୋଟ୍‌ର ବ୍ୟବହାର ନ ଥିଲା । ରୂପା ଟଙ୍କା - ମହାରାଣୀ ଭିକ୍ଟୋରିଆ, ସପ୍ତମ ଏଡୁଆର୍ଡ ଓ ୫ମ ଜର୍ଜ ଛବି ଥିବା ମୁଦ୍ରା ଚଳୁଥିଲା । ଆଠ ଅଣା ବା ଅଧୁଲି, ଚ୍ୱରିଅଣୀ ଏ ସବୁ ମଧ ରୂପା ତିଆରି ବ୍ୟବହୃତ ହେଉଥିଲା । ତା ତଳକୁ ଦୁଇ ଅଣୀ, ଅଣୀ ରୂପା ମିଶ୍ରିତ, ଦୁଇ ପଇସି, ଅଧଲା ଓ ପାହୁଲା - ଖାଣ୍ଟି ତମ୍ବାର ଥିଲା । ଦୁଇ ପଇସି ଓ ପଇସାରେ ହନୁମାନ ମୂର୍ତ୍ତିର ଚିହ୍ନ ଥାଇ ଅନେକେ ତାକୁ ସାଇତି ରଖୁଥିଲେ । ବର୍ତ୍ତମାନର ଜିଲ୍ଲା "ସେଣ୍ଟ୍ରାଲ କୋ-ଅପରେଟିଭ" ବେଙ୍କର ଉତ୍ତର ପଶ୍ଚିମ କୋଣରେ ଭାଲୁର-ପକୋଡ଼ି ଦୋକାନ ଥିଲା । ହୋଟେଲ ମଧରେ ବୁଧୁ ମିଶ୍ରଙ୍କ ଅନ୍ନପୂର୍ଣ୍ଣା ହିନ୍ଦୁ ହୋଟେଲ ଓ ଗୋଟିଏ ମାରୱାଡ଼ୀ ବାସା ଥିଲା । ମିଲ୍ ପ୍ରତି ସେତେବେଳେ ଦୁଇ ଅଣା (୧୨ ପାହୁଲା) ବା ଦୁଇ ଅଣା ତିନି ପାହୁଲା (୧୫ ପାହୁଲା) ଲେଖାଏଁ ଥିଲା । କଚେରୀ କାମରେ ଯେଉଁମାନେ ବରଗଡ଼ ଆସି ରହିଯାଉଥିଲେ ସେମାନେ ହୋଟେଲରେ କାଁ ଭାଁ ଖାଉଥିଲେ ବା ନିଜେ ରୋଷେଇ କରି ଖାଉଥିଲେ । ଆବଶ୍ୟକ ବେଳେ ଏବେ ଯେଉଁ ମ୍ୟୁନିସିପାଲିଟି ଅଫିସ୍ କଡ଼ରେ ହାଟପଦା ୟୁ. ପି. ସ୍କୁଲ ଅଛି ତାର କଡ଼ରେ ଏକ ସରାଇ ଘର ଥିଲା ଓ ଲୋକେ ସେଠାରେ ରାତ୍ରରେ ରହି ରାନ୍ଧି ବାଢ଼ି ଖାଇ ରହୁଥିଲେ ।

ଆଜିକାଲିର ହାଟପଦା ସେତେବେଳେ ପ୍ରଶସ୍ତ ଥିଲା । କାରଣ ଆଜିର ସମ୍ବଲପୁରୀ ବସ୍ତ୍ରାଳୟ ସୌଧ, ବାଳିକା ଉଚ୍ଚ ବିଦ୍ୟାଳୟ କୋଠା ଓ କୋ-ଅପରେଟିଭ୍ ବେଙ୍କର ଘରର ବାଉଣ୍ଡରୀ ଆଦି ତିଆରି ହୋଇ ନ ଥିଲା ବା ମୁନିସିପାଲିଟି ଦୋକାନ ଘର ମଧ ନ ଥିଲା । ବର୍ତ୍ତମାନର ଉମା ଟକୀଜ ନିକଟରେ ମୋହନ ସାହୁ ନାମକ ଏକ ଗୁଡ଼ିଆ ରହୁଥିଲେ । ତାଙ୍କ ଦୋକାନ ମଧ ଭଲ ଚଳୁଥିଲା । ବିଶେଷ କରି ସେ ଜର୍ଜ ହାଇସ୍କୁଲ ଛାତ୍ରାବାସ ମାନଙ୍କୁ ତାଙ୍କ ତିଆରି ଜିନିଷ ବିକ୍ରି କରିବା ପାଇଁ ଆସୁଥିଲେ ।

ଆଜିକାଲିର ଟାଉନ୍ ହାଇସ୍କୁଲ, P.H.D. ଅଫିସ୍, ପାଣି ଟାଙ୍କି, ବୃନ୍ଦାବତୀ ପଲି କ୍ଲିନିକ୍‌ର ସ୍ଥାନ ଖୋଲା ଥିବାରୁ ସେଠାରେ ଗୋରୁ ବଜାର ବସୁଥିଲା । ଏବେ ଅଳ୍ପ କିଛି ବର୍ଷ ହେଲା ଏହା ଦୂରକୁ ସ୍ଥାନାନ୍ତରିତ ହୋଇଯାଇଛି ।

ବରଗଡ଼ର ଆଉ ଏକ ବିଶେଷତ୍ୱ ହେଉଛି - ଶୁକ୍ରବାର ହାଟ । ଏହାର ପ୍ରାଧାନ୍ୟ ବହୁ ଦିନରୁ ଆଜି ପର୍ଯ୍ୟନ୍ତ ରହିଛି । ଏହା ଗୁରୁବାର ସନ୍ଧ୍ୟାରୁ ଆରମ୍ଭ ହୋଇ ଶନିବାର ସନ୍ଧ୍ୟା ପର୍ଯ୍ୟନ୍ତ ଚାଲି ଥାଏ । ଗୁରୁବାର ସନ୍ଧ୍ୟାରେ ଦୂରରୁ ବେପାରୀମାନେ ଆସି ଲୁଗାପଟା ତଥା ଅନ୍ୟାନ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀକୁ ସିଧା ସଳଖ ଭାବେ କିଣି ନିଅନ୍ତି । ଶୁକ୍ରବାର ଦିନ ଗୋଟିଏ ଅତି ବଡ଼ ଧରଣର ହାଟ ବସେ । ଏହି ହାଟରେ ଛୁଞ୍ଚିସୂତା, ଶିଳଶିଳପା, ପଥର ଜିନିଷ, ଅଳଙ୍କାର, ବାଉଁଶ ତିଆରି ଜିନିଷ, ଲୁହା ଜିନିଷ, କାଠ ଜିନିଷ ତଥା ଅନ୍ୟାନ୍ୟ ଝିଅ ପଠାଣୀର ଯାବତୀୟ ଉପକରଣ ଆଦି ମିଳିଥାଏ । ଟଙ୍କା ଧରି ଆସିଲେ ଜଣେ ସୁବିଧାରେ ଝିଅ ବାହାଘର ପାଇଁ ସବୁ କିଣି ପାରିବ । ପରଦିନ ଶନିବାରରେ ଗୋରୁଗାଈର କିଣା ବିକା ହୁଏ । ଏଣୁ ଏହି ବଜାରରେ ବହୁ ଜନସମାଗମ ହୁଏ । ସେମାନଙ୍କ ବନ୍ଧୁ ମିଳନ ସଙ୍ଗେ କିଣା ବିକା କାମ ସୁରୁଖୁରୁରେ ସମାହିତ ହୁଏ । ତେଣୁ ଏହି ଦିନ ପ୍ରାୟ ବରଗଡ଼ର ସମସ୍ତଙ୍କ ଘରେ ବନ୍ଧୁବାନ୍ଧବଙ୍କ ସମାଗମ ଓ ଚର୍ଚ୍ଚା ହୁଏ । ଏଥିରେ ପୂର୍ବେ ଲୋକେ ଆନନ୍ଦ ଲାଭ କରୁଥିଲେ । କିନ୍ତୁ ଆଜିକାଲି ସେହି ସୌହାର୍ଦ୍ଦ୍ୟ ପରିଲକ୍ଷିତ ହୁଏ ନାହିଁ ବୋଲି ମନେ ହୁଏ । ଏବେ ଗୋରୁ ବଜାର ଦୂରକୁ (ରେଳଷ୍ଟେସନ ପାଖକୁ) ଗଲାଣି ।

ଜର୍ଜ ହାଇସ୍କୁଲରେ ନାମ ଲେଖାଇ ସାରି ମୁଁ ଓ ମୋର ବାପା ଅମ୍ବାପାଲି ଗଲୁଁ । ସେ ଦିନ ଶୁକ୍ରବାର ଥିଲା ଓ ସ୍କୁଲ ସକାଳେ ବସୁଥିଲା । କାରଣ ସେଠାରେ ମୋର ରାଧା ମାଉସୀ ଓ ମଉସା ହରିହର ଦାଶ ତାଙ୍କ ନିଜ ଗାଁ ନୀଳେଶ୍ୱରରୁ ଆସି ରହିଥିଲେ । ତାଙ୍କ ଘରେ ଆମେ ସେ ଦିନ ରହିଲୁ, ପରଦିନ ଶନିବାର ଦିନ ସକାଳେ ପାଠ ପଢ଼ା ସାରି ପୁଣି ଅମ୍ବାପାଲିରେ ଖାଇ ପିଇ ଉପର ଓଳି ଗାଁକୁ ଫେରିଲୁଁ । ଅମ୍ବାପାଲି ମୋର ମା'ଙ୍କ ମାମୁଁଘର ଗାଁ ବିର୍ତ୍ତିଆଘରେ ।

ତା' ପର ଦିନ ରବିବାର ଥିଲା । ତେଣୁ ସେ ଦିନ ମୋର ଜିନିଷପତ୍ର ସଜଡ଼ା ସଜଡ଼ି କରି ରବିବାର ସନ୍ଧ୍ୟାରେ ଅମ୍ବାପାଲି ଯାଇ ମାଉସୀ ଘରେ ରହିଲି । ସେଠାରେ ସକାଳେ ଖାଇ ସାରି ବରଗଡ଼ ହାଇସ୍କୁଲକୁ ପଢ଼ିବାକୁ ଗଲି । ସେମାନେ ସାଧାରଣତଃ ମଧ୍ୟାହ୍ନରେ ଖିଆ ପିଆ କରୁଥିବାରୁ ସକାଳୁ ସ୍କୁଲକୁ ଯିବା ପାଇଁ ମୋ ସକାଶେ କେବଳ ରନ୍ଧାବଢ଼ା କରି ଖାଇବାକୁ ଅସୁବିଧା ହେଉଥିଲା । ଏଣୁ ସକାଳେ

କେଉଁ ଦିନ ଭାତ ବା କେବେ ପୂର୍ବ ଦିନର ବାସି ପଖାଳ ଓ ସାମାନ୍ୟ ଆନୁସଙ୍ଗିକ ତରକାରୀ ବା ଭଜା ଖାଇ ପଢ଼ିବାକୁ ଯାଉଥିଲି । ଅପରାହ୍ନ ଖାଇଛୁଟି ବେଳେ ମୋତେ ଦେଇଥିବା ଜଳଖିଆ ପଇସାଏ ବା ଅଧଲାଏ ଖର୍ଚ୍ଚ କରି ମନ ଶାନ୍ତ କରୁଥିଲି। ପୁଣି ୪ଟା ପରେ ସ୍କୁଲରୁ ଫେରି ମାଉସୀ ରଖିଥିବା ପଖାଳ ବା ଅନ୍ୟ କିଛି ଖାଇ ଖେଳିବାକୁ ଯାଉଥିଲି । ଏପରି ଭାବେ କିଛି ଦିନ ଅତିବାହିତ ହେଲା। ଦିନେ ଶେଷ ଘଣ୍ଟାରେ ଖେଳ ପିରିୟଡ ଥିବାରୁ ସେଥିରେ ଯୋଗ ନ ଦେଇ ଘରକୁ ଚାଲି ଆସିଲି । ତେଣୁ ସେହି ଖେଳ ପାଇଁ ଦାୟିତ୍ୱ ନେଇଥିବା ଶିକ୍ଷକ ୰ ଚନ୍ଦ୍ରଭାନୁ ବାରିକ ଅନୁପସ୍ଥିତ ଛାତ୍ରଙ୍କୁ ପଳାତକ (Fled) ବୋଲି ଦଣ୍ଡବିଧାନ କରି ଶାସ୍ତି ଖାତାରେ ନାମ ଦରଜ କଲେ ଓ ଆମକୁ ଅର୍ଥଦଣ୍ଡ ହେଲା ବୋଲି ଜଣାଇଲେ । ସେଦିନ ଶ୍ରେଣୀରେ ଅତି କଠୋର ଭାବେ ଘୋଷଣା କରି ଜଣାଇଦେଲେ ଯେ ନୂତନ ଭାବେ ନାମ ଲେଖା ଯାଇଥିବା ଛାତ୍ରମାନେ ପ୍ରାରମ୍ଭରୁ ଶୃଙ୍ଖଳା ଓ ନିୟମ ମାନିବାକୁ ନ ଶିଖିଲେ ଭବିଷ୍ୟତରେ ତାଙ୍କର ଉନ୍ନତି ଅସମ୍ଭବ ତଥା ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିବ । ଏହି ଦିନ ଠାରୁ ମୁଁ କେବେ କୌଣସି ପିରିୟଡରେ ଅନୁପସ୍ଥିତ ରହି ନ ଥିଲି । ଅବଶ୍ୟ ପରେ ମୋର ସୁବ୍ୟବହାରରେ ପ୍ରୀତ ହୋଇ ସେହି ଜରିମାନା ଛାଡ଼ କରିଥିଲେ । ସେତେବେଳେ ତଳ ଶ୍ରେଣୀରେ ପାଠ ପଢ଼ାଉଥିବା ଶିକ୍ଷକମାନେ ହେଲେ ସର୍ବଶ୍ରୀ ୰ ଗୌରୀଶଙ୍କର ପାଣିଗ୍ରାହୀ, ୰ ସତ୍ୟନାରାୟଣ ବହିଦାର, ୰ ଚନ୍ଦ୍ରଭାନୁ ବାରିକ, ୰ ମିତ୍ରଭାନୁ ପ୍ରଧାନ ତଥା ଆଉ କେତେ। ତତ୍କାଳୀନ ପ୍ରଧାନ ଶିକ୍ଷକ ଥିଲେ ୰ ଶ୍ରୀ ହାରାଚନ୍ଦ ନାୟକ, ସହକାରୀ ପ୍ରଧାନ ଶିକ୍ଷକ ଥିଲେ ୰ ଶ୍ରୀ ଗଙ୍ଗାଧର ରଥ, ଅନ୍ୟାନ୍ୟ ମାନେ ହେଲେ ୰ ଶ୍ରୀ କାହ୍ନୁ ମିଶ୍ର, ୰ ଜଗନ୍ନାଥ ମିଶ୍ର, ୰ ଶଶିଭୂଷଣ ମିଶ୍ର ଶର୍ମା, ଯୁଧିଷ୍ଠିର କର, ସଂସ୍କୃତ ପଣ୍ଡିତ ଥିଲେ ଚନ୍ଦ୍ରଶେଖର ରଥ, ରଘୁନାଥ ବହିଦାର ଥିଲେ ସ୍କାଉଟ ଓ ସମୂହ ଡ୍ରିଲ ଶିକ୍ଷକ, ପୂର୍ଣ୍ଣାନନ୍ଦ ତ୍ରିପାଠି ଦପ୍ତର କିରାଣୀ ଥିଲେ । ଶନିବାର ଦିନ ସକାଳେ ପ୍ରଥମ ଘଣ୍ଟାରେ ସାମୂହିକ ଡ୍ରିଲ (Mass Drill) କ୍ଲାସ ହେଉଥିଲା। ସେତେବେଳେ କେତେକ ଉଚ୍ଚ ଶ୍ରେଣୀର ଛାତ୍ରମାନେ ଡ୍ରମ୍, ସାଇଡ୍ ଡ୍ରମ୍, ବିଗୁଲ୍, କ୍ଲାରିଓନେଟ୍, ବଂଶୀ ଓ ତିନିକୋଣିଆ ଲୁହା ବଜାଇ ତାଳମାନ ସହ ଏହି ଡ୍ରିଲ କରା ଯାଉଥିଲା । ଡ୍ରିଲ୍ ଗୁଡ଼ିକ ବିଭିନ୍ନ ପ୍ରକାରର ଥିଲା - ସାଦା ଡ୍ରିଲ୍, ଶରୀର ବଙ୍କା (Body Bending), ଜିମ୍ନାଷ୍ଟିକ ଡାନସି (Gymnastic Dancing), ତାଳିମରା ଡ୍ରିଲ୍ (Clapping Exercise) ଆଦି କେତେକ ଆନନ୍ଦଦାୟକ ଡ୍ରିଲ୍ ଥିଲା। ପ୍ରଥମେ ପ୍ରଥମେ ସେ ସବୁ କଷ୍ଟ ମନେ ହେଉଥିଲା। ପରେ ଅଭ୍ୟାସରେ ପଡ଼ିଗଲା।

ଉତ୍ତାରୁ ବେଶ ଆରାମଦାୟକ ଥିଲା ଓ ସ୍ୱାସ୍ଥ୍ୟର ଉନ୍ନତି ବିଧାନ କରୁଥିଲା । ପ୍ରକୃତରେ ଯେଉଁମାନେ ସେହି ବାଦ୍ୟଯନ୍ତ୍ର ଗୁଡ଼ିକ ବାଦନ ଓ ଚ୍ଚଳନ କରୁଥିଲେ, ତାଙ୍କ ପ୍ରତି ପ୍ରଗାଢ଼ ଭକ୍ତି ଓ ଆଦର ଥିଲା । ସେମାନେ ଥିଲେ ୰ ରଘୁନାଥ ମିଶ୍ର, ୰ ଲଳିତ ମୋହନ ମେହେର, ୰ ବିଭୁତି ଭୁଷଣ ବିଶ୍ୱାସ, ୰ ଲତାବନ କୁଆଡ଼ି ଓ ଆଉ କେତେକ । ସେମାନଙ୍କୁ ଆମେ ବଡ଼ ଭାଗ୍ୟବାନ ବୋଲି ଭାବୁଥିଲୁ ଓ ବେଶ ସମ୍ମାନ ଦେଖାଉଥିଲୁଁ ।

ଇତି ମଧ୍ୟରେ ଆଗରୁ ସୂଚୀତ ଗୌରୀଶଙ୍କର ପାଣିଗ୍ରାହୀଙ୍କ ପ୍ରଥମା ପତ୍ନୀଙ୍କ ମୃତ୍ୟୁ ହେତୁ ସେ ତାଙ୍କ ଦୁଇଟି ପୁଅ ଓ ଗୋଟିଏ ଝିଅଙ୍କୁ ଧରି ଖଜୁରଟିକ୍ରାର ଏକ ଭଡ଼ା ଘରେ ରହୁଥିଲେ ଓ ସେ ନିଜେ ରନ୍ଧାବଢ଼ା କରି ଖାଇବାରେ ଅସୁବିଧା ଅନୁଭବ କରି କେତେକ ସ୍କୁଲ ଛାତ୍ରଙ୍କୁ ନେଇ ଏକ ମେସ୍ କରିବାର ଯୋଜନା କଲେ । ତେଣୁ ଖୁଣ୍ଟପାଲିର ସନ୍ୟାସୀ ଦେବତା, ରେଙ୍ଗାଲପାଲିର ଟଙ୍କଧର ଭୋଇ, ନୂଆ ସରସରାର ଋଷଭ ଭୋଇ ଆଦି ଉଚ୍ଚ ଶ୍ରେଣୀର ଛାତ୍ରମାନେ ମିଶି ଏକ ମେସ୍ କରିବାର ଯୋଜନା କଲେ । ତେଣୁ ଅମ୍ପାପାଲି ବରଗଡ଼ରୁ ସାମାନ୍ୟ ଦୂରତ୍ୱ ତଥା ସମୟାନୁକ୍ରମେ ଖିଆପିଆର ଅସୁବିଧା ହେତୁ ମୁଁ ମଧ୍ୟ ତାଙ୍କ ସଙ୍ଗେ ରହିଲି । ସେତେବେଳେ ରେଙ୍ଗାଲପାଲିର ଜନୈକ ଯୁବକ ରନ୍ଧାବଢ଼ାରେ ସାହାଯ୍ୟ କରୁଥିଲେ । ଏପରି କିଛି ଦିନ ଅତିବାହିତ ହେବା ପରେ ମୋର ବଡ଼ ବାପାଙ୍କ ସହ ବଡ଼ ପିଉସୀଙ୍କ ଦିଅର ସମ୍ବଲପୁର ନିବାସୀ ମନବୋଧ ପଣ୍ଡାଙ୍କ ୨ୟା ଦୁହିତା ସତ୍ୟବତୀ ଦେବୀଙ୍କୁ ଗୌରୀଶଙ୍କର ଦ୍ୱିତୀୟ ବିବାହ କରି ଆଣିଲେ । ଫଳତଃ ଖଜୁରଟିକ୍ରାରେ ଚ୍ଚଲୁଥିବା ମେସ୍‌ଟି ବନ୍ଦ ହେଲା ଓ ଗୌରୀବାବୁ ତାଙ୍କ ନବବିବାହିତା ପତ୍ନୀ ଓ ପିଲା ଝିଅଙ୍କୁ ନେଇ ରହିଲେ । ମୋର ବଡ଼ ବାପାଙ୍କ ହେତୁ ତାଙ୍କର ଦ୍ୱିତୀୟ ବିବାହ ସଂଘଟିତ ହୋଇଥିବାରୁ ସେ ସୌଜନ୍ୟତା ହେତୁ ବାଧ ହୋଇ ମୋତେ ତାଙ୍କ ଘରେ ରଖିଲେ । ଅବଶ୍ୟ ଖାଦ୍ୟ ଖର୍ଚ୍ଚ ବାବଦକୁ ମୋର ବାପା ଅନୁରୂପ ମୁଦ୍ରା ପ୍ରଦାନ କରୁଥିଲେ । ତାଙ୍କ ବଡ଼ ପୁଅ ଗଗନ ବିହାରୀ ପାଣିଗ୍ରାହୀ ୭ମ ଶ୍ରେଣୀରେ ଓ ବିନୋଦ ବିହାରୀ ପାଣିଗ୍ରାହୀ ମୋ ସଙ୍ଗେ ହାଇସ୍କୁଲରେ ପଢୁଥିଲେ । ଏହିପରି ଭାବରେ କିଛି ଦିନ ତାଙ୍କ ଘରେ ରହିବା ପରେ କୌଣସି କାରଣରୁ ମୋତେ ସ୍କୁଲ ହଷ୍ଟେଲରେ ରହିବାକୁ ହେଲା । ମୁଁ ଟିକିରା ହଷ୍ଟେଲରେ ଯାଇ ରହିଲି । ସେତେବେଳେ ଟିକିରା ହଷ୍ଟେଲ (ଆଜିକାଲିର ଖଜୁରଟିକ୍ରା ଉ: ପ୍ରା: ସ୍କୁଲ) ଓ ତାର କଡ଼ରେ ଆଧା ଏକ ଧାଡ଼ି ଘର ଥିଲା । କାଳକ୍ରମେ ତାହା ବିଧ୍ୱସ୍ତ ହୋଇଛି । ଆଉ ଏକ ହଷ୍ଟେଲ ହାଇସ୍କୁଲ ନିକଟସ୍ଥ ଏଡଓ୍ୱାର୍ଡ ମେମୋରିଆଲ ହଷ୍ଟେଲ ଥିଲା ।

ଟିକ୍ରା ହଷ୍ଟେଲରେ ପ୍ରାୟ ଶତାଧିକ ଅନ୍ତେବାସୀ ଓ ଇ. ଏମ୍. ହଷ୍ଟେଲରେ ପ୍ରାୟ ୫୦ ଜଣ ଛାତ୍ର ରହୁଥିଲେ । ସେତେବେଳେ ଟିକ୍ରା ହଷ୍ଟେଲର ପରିଚାଳକ ଥିଲେ ଶ୍ରୀ ଗଙ୍ଗାଧର ରଥ ଓ ହଷ୍ଟେଲ ଜଗୁଆଳି ଅମରୁ ବନଛୋର, ସେହିପରି ଇ. ଏମ୍. ହଷ୍ଟେଲ ପରିଚାଳକ ଥିଲେ ଶ୍ରୀ ଶଶିଭୂଷଣ ମିଶ୍ର ଶର୍ମା ଓ ବୋର୍ଡିଂ ଜଗୁଆଳି ଥିଲେ ଧୋବା ଠେଲା । ଏତଦ୍ ବ୍ୟତୀତ ସ୍କୁଲରେ ହେଡ୍ ପିଅନ ଥିଲେ ବଳଦେବ ଧରାଇ ଓ ବିଶ୍ୱେଶ୍ୱର ରାଉତ ଥିଲେ ସହାୟକ । ବିଶ୍ୱେଶ୍ୱର ଖେଳ ସାମଗ୍ରୀ ଦାୟିତ୍ୱରେ ଥିଲେ । ଏହି ୪ର୍ଥ ଶ୍ରେଣୀ କର୍ମଚାରୀଗଣ ପ୍ରାୟ ମାସକୁ ୭/୮ ଟଙ୍କା ଲେଖାଏଁ ପାଉଥିଲେ ଓ ଶିକ୍ଷକମାନେ ପ୍ରାୟ ଟ. ୨୫ ରୁ ଆରମ୍ଭ କରି ଯୋଗ୍ୟତାନୁସାରେ ମାସକୁ ୬୦/୭୦ ଟଙ୍କା ପର୍ଯ୍ୟନ୍ତ ପାଉଥିଲେ । ପ୍ରଧାନ ଶିକ୍ଷକଙ୍କ ଦରମା ମାସକୁ ବୋଧ ହୁଏ ୧୧୦ ଟଙ୍କା ଥିଲା । ଅନ୍ୟମାନଙ୍କ ମଧ୍ୟରେ ବଳଦେବ ଧରାଇ ବଡ଼ ସଚ୍ଚୋଟ ଥିବାରୁ ତାଙ୍କୁ ସମସ୍ତେ ଆଦର ଓ ଖାତିର କରୁଥିଲେ । ଏପରିକି ପରୀକ୍ଷା ବେଳେ ତାଙ୍କର ବିଶେଷ ସମ୍ମାନ ଥିଲା । ଉଭୟ ବୋର୍ଡିଂ ପାଇଁ ଗୋଟିଏ ଲେଖାଏଁ ମେସ୍ ରହୁଥିଲା । ସେଠାରେ ଜଣେ ପୂଜାରୀ ଓ ଆଉ ଜଣେ ଚାକର ନିଯୁକ୍ତ ଥିଲେ । ଶୁଣାଯାଏ ଆମ ଟିକ୍ରା ବୋର୍ଡିଂର ପୂଜାରୀ ଗୋପେଇପାଲି ନିବାସୀ ଚିନ୍ତାମଣି ଦାଶ ଥିଲେ । ଆମ ସମୟରେ ବରଗାଁର ମଧୁସୂଦନ ଦାଶ ଓ ପରେ ମହରଗୁ ଦାଶ ଟିକ୍ରା ବୋର୍ଡିଂରେ ରାନ୍ଧୁଣିଆ ଭାବେ ଯୋଗ ଦେଲେ । ସେତେବେଳେ ଇ. ଏମ୍. ହଷ୍ଟେଲରେ ବରାହଗୁଡ଼ାର ଲୁଭ ମିଶ୍ର ପୁଝାରୀ ହେଲେ ଓ ବଂଶୀ ନାଗ ଚାକର ରୂପେ କାର୍ଯ୍ୟ କରୁଥିଲେ । ବୋର୍ଡିଂର ସୁପରିଚାଳନା ପାଇଁ ପ୍ରତ୍ୟେକ ବୋର୍ଡିଂରେ ଜଣେ ଜଣେ ବୟସ୍କ ଉଚ୍ଚ ଶ୍ରେଣୀରେ ପଢୁଥିବା ଛାତ୍ର ମନିଟର ରୂପେ ମନୋନୀତ ହେଉଥିଲେ । ସେ ବୋର୍ଡିଂର ନିୟମାନୁସାରେ ପ୍ରାତଃଉତ୍ଥାନ ଘଣ୍ଟା ୬ ଟାରେ , ୭ ଟାରେ ପଢ଼ିବା ଘଣ୍ଟା, ୮ ଟାରେ Hobby ବା ଅନ୍ୟାନ୍ୟ କର୍ମ ପାଇଁ ଘଣ୍ଟା ଓ ୯ ଟାରେ ପଢ଼ା ଶେଷ ଘଣ୍ଟାର ସୂଚନା ଦେଉଥିଲେ । ୧୦ ଟା ବେଳେ ପଢ଼ିବାକୁ ଯିବା ପାଇଁ ଘଣ୍ଟା ମଧ୍ୟ ବଜାଇବାକୁ ହେଉଥିଲା ।, ସେହିପରି ସନ୍ଧ୍ୟା ୬ ଟାରେ ସମସ୍ତେ ବୋର୍ଡିଂକୁ ଫେରିବା ଘଣ୍ଟା ଓ ୬ ଟା ୩୦ ମି. ସମୟରେ ପ୍ରାର୍ଥନା ଘଣ୍ଟା ବାଜୁଥିଲା । ୭ ଟା ରୁ ୯ ଟା ପଢ଼ା ବେଳ ଓ ୯ ଟା ପରେ ଭୋଜନ ସାରି ନିଜ ନିଜ ସ୍ଥାନରେ ବିଶ୍ରାମ ନେବାକୁ ହେଉଥିଲା । ଅବଶ୍ୟ କେହି ଚାହିଁଲେ ୧୦ ଟା ପରେ ମଧ୍ୟ ପଢ଼ି ପାରୁଥିଲା । ପ୍ରତ୍ୟେକ କୋଠରୀର ସବୁଠାରୁ ଉଚ୍ଚ ଶ୍ରେଣୀ ପଢୁଥିବା ଛାତ୍ର କୋଠରୀ ମନିଟର ରୂପେ ବଛା ହେଉଥିଲେ । ଏହି ଉଚ୍ଚ ଶ୍ରେଣୀର ଛାତ୍ରମାନେ ନିମ୍ନ ଶ୍ରେଣୀର ଛାତ୍ରଙ୍କୁ ନିଜ ଭାଇ ପରି ସ୍ନେହ କରୁଥିଲେ । ତାଙ୍କ ପଢ଼ାର କଠିଣତର

ବିଷୟ ସବୁ ବୁଝାଇବାରେ ସାହାଯ୍ୟ କରୁଥିଲେ । ସେହି ସମୟରେ ମେସ୍ ଖର୍ଚ୍ଚ ମାସକୁ ୮ ତାମି (କିଲୋଗ୍ରାମ୍) ଚାଉଳ ଓ ୧ ତାମି ଡାଲି ଓ ଟ.୨ ଦେବାକୁ ପଡୁଥିଲା । ଯେ ଚାଉଳ ବା ଡାଲି ଦେଇ ନ ପାରିବ ତାକୁ ପ୍ରାୟ ଟ. ୪ ପର୍ଯ୍ୟନ୍ତ ମେସ୍ ଖର୍ଚ୍ଚ ପଡୁଥିଲା । ସାଧାରଣତଃ ଧନୀ ପିଲା ମାନେ ଭଲ ଚାଉଳ ଘରୁ ଆଣୁଥିବାରୁ ମେସ୍‌ରେ ଖାଇବା ଭାତ ଅତି ଉଚ୍ଚ ଧରଣର ଥିଲା । କୌଣସି ଛାତ୍ର ଖରାପ ଚାଉଳ ଘରୁ ଆଣିଲେ ତାର ପ୍ରତି ଦଣ୍ଡ ବିଧାନ ମଧ ମେସ୍‌ର ପ୍ରତିନିଧି ଛାତ୍ରମାନେ କରୁଥିଲେ । ମୋର ମନେ ଅଛି ଟିକ୍ରା ବୋର୍ଡ଼ିଂରେ ଥିଲାବେଳେ ମୋର କିଛି ପଇସା ହେଲେ ପୂଝାରୀକୁ ଅଣିଚିଏ ଦେଇ ମୋ ପାଇଁ ରୋଟି ଓ ଚିନିର ବ୍ୟବସ୍ଥା କରିବାକୁ ଅନୁରୋଧ କରୁଥିଲି । ଏହା ଥିଲା ମୋର କେବେ କେବେ ଉପର ଓଳି ଜଳଖିଆ । ଆନନ୍ଦ ସହକାରେ ପୂଝାରୀ ଏହାକୁ କରି ଦେଇଥିଲେ ଓ ସେମାନେ ଛାତ୍ରମାନଙ୍କୁ ସ୍ନେହ ଦେଖାଇ ବିଶେଷ ଯତ୍ନ ନେଇଥିଲେ । ବେଳେ ବେଳେ ଛୋଟ ଛାତ୍ରମାନେ ୯ ଟା ପର୍ଯ୍ୟନ୍ତ ଚେଇଁ ନ ପାରି ଶୋଇଗଲେ ତାଙ୍କୁ ପିଲାମାନେ ବା ପୂଝାରୀ ନିଜେ ଯାଇ ଉଠାଇ ଖାଇବାକୁ ଦେଉଥିଲେ । ମୋଟ ଉପରେ ଛାତ୍ରାବାସରେ ଏକ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ରାଜତ୍ୱ କରୁଥିଲା । ପିଲାମାନେ ଘରକୁ ଗଲେ ବିଦ୍ୟାଳୟ ଛଡ଼ା ବୋର୍ଡ଼ିଂ ପାଇଁ ମଧ ମନିଟରଙ୍କୁ ବା ପରିଚାଳକଙ୍କୁ ଦରଖାସ୍ତ ଦେଇ ଯାଉଥିଲେ ଓ ମେସ୍‌ରେ ଖାଇବାଟା ବନ୍ଦ କରିବା ପାଇଁ ମେସ୍ ମେନେଜର ବା ପୂଝାରୀଙ୍କୁ କହି ଯିବାକୁ ପଡୁଥିଲା । କେବେ ଫେରିବାକୁ ହେବ ଜଣାଇ ଦିଆଯାଉଥିଲା । ନଚେତ୍ ନିଜର ଅନୁପସ୍ଥିତିରେ ମେସ୍‌ରେ ମିଲ୍ ବନ୍ଦ ନ ହେଲେ ତାର ମୂଲ୍ୟ ଦେବାକୁ ପଡୁଥିଲା । ମେସ୍ ପରିଚାଳନା ପାଇଁ ଦୁଇ ଜଣ ଛାତ୍ର ଜଣେ ଉଚ୍ଚ ଶ୍ରେଣୀର ଓ ଜଣେ ତଳ ଶ୍ରେଣୀର ବଛା ଯାଉଥିଲା । ଉଚ୍ଚ ଶ୍ରେଣୀର ଛାତ୍ର ପ୍ରଥମ ମେନେଜର ଓ ନିମ୍ନ ଶ୍ରେଣୀର ଛାତ୍ର ଦ୍ୱିତୀୟ ମେନେଜର ରୂପେ କାର୍ଯ୍ୟ କରୁଥିଲେ । ପ୍ରଥମ ମେନେଜର ଟଙ୍କା ପଇସାର ହିସାବ କିତାବ ଓ ଦ୍ୱିତୀୟ ମେନେଜର ମିଲ୍ ଅନୁସାରେ ଚାଉଳ, ଡାଲି, ପନିପରିବା, କାଠ ଆଦି ଯୋଗାଇବା କାମ କରୁଥିଲେ । କୌଣସି ଛାତ୍ରଙ୍କ ନିକଟକୁ ତାଙ୍କ ଅଭିଭାବକ ଆସିଲେ ତାଙ୍କ ପାଇଁ ମଧ ମେସ୍‌ରେ ସୁଲଭ ମୂଲ୍ୟରେ ଖାଇବାର ବନ୍ଦୋବସ୍ତ କରାଯାଉଥିଲା । ଅବଶ୍ୟ ଏହା ସାମୟିକ ଓ କ୍ୱଚିତ୍ ଘଟୁଥିଲା । ଏହିପରି ଭାବରେ କିଛି ଦିନ ଟିକ୍ରା ବୋର୍ଡ଼ିଂରେ ରହିବା ପରେ ଅର୍ଥାତ୍ ୧୯୩୮ ସାଲରେ ୫ମ ଶ୍ରେଣୀରେ ମୁଁ ଇ. ଏମ୍. ବୋର୍ଡ଼ିଂରେ ରହିବା ପାଇଁ ଆବେଦନ କରି ଆସିଲି ଓ ସେଠାରେ ପ୍ରାୟ ୧୯୩୯ ରୁ ୧୯୪୪ ପର୍ଯ୍ୟନ୍ତ ରହିଲି ।

୧୯୩୮ ରେ ମୁଁ ୫ମ ଶ୍ରେଣୀରେ ପଢ଼ିବା ସମୟରେ ମୋତେ ଇଂରାଜୀ ଶିଖିବା ପାଇଁ ପରିଶ୍ରମ କରିବାକୁ ପଡୁଥିଲା ଓ ଅନ୍ୟ ବିଷୟ ସବୁ ପୂର୍ବରୁ ପଢ଼ିଥିବା ହେତୁ ସବୁ ମନେ ଥିଲା । ତେଣୁ ସାହିତ୍ୟ, ରଚନା, ଗଣିତ ଆଦି ସବୁଥିରେ ଦକ୍ଷତାର ସହ ଅଧିକ ନମ୍ବର ଆଣି ପ୍ରଥମ ସ୍ଥାନ ଅଧିକାର କରୁଥିଲି । ସେତେବେଳେ ମୋ ସଙ୍ଗେ ପଢୁଥିଲେ - ଧନୁର୍ଦ୍ଧର ସାହୁ, ଦେବେନ୍ଦ୍ରନାଥ ବିଶୋଇ, ସୂର୍ଯ୍ୟପ୍ରସାଦ ପଣ୍ଡା, ଜୟଲାଲ ନନ୍ଦ, ଧର୍ମରାଜ ପ୍ରସାଦ, ଅକ୍ଷୟ କୁମାର ଦାଶ, ଆର୍ତ୍ତତ୍ରାଣ ପୃଷ୍ଟେଠ, ଅଜିତ ମହାନ୍ତି, ବ୍ରଜସୁନ୍ଦର ମହାନ୍ତି, S.D.O.ଙ୍କ ପୁଅ ଓ ଭଣଜା ମୋର ସହପାଠୀ ଥିଲେ । ସେମାନେ ଏବେ ନିଜ ନିଜ କର୍ମକ୍ଷେତ୍ରରେ ଅଛନ୍ତି ଓ କେତେ ଇହଧାମରୁ ଗଲେଣି । ମୋର ପାଠ ପଢ଼ା ସଙ୍ଗୀଗଣ ମୋ ସଙ୍ଗରେ ପ୍ରତିଯୋଗିତା କରି ମଧ ଟପି ପାରୁ ନ ଥିଲେ । ତେଣୁ ସେମାନେ ମୋ ପ୍ରତି ପରୋକ୍ଷରେ ଅହଂକାର ଥାଇ ମଧ କିଛି କରି ପାରୁ ନ ଥିଲେ । କାରଣ ମୋ ପାଠ ପଢ଼ାର ଉତ୍କର୍ଷତା ହେତୁ ଶିକ୍ଷକଗଣ ମୋଠାରେ ସନ୍ତୁଷ୍ଟ ଥିଲେ । ଥରେ ସେ ବର୍ଷ ପଢ଼ିବା ବେଳେ ସ୍କୁଲର ବରିଷ୍ଠ ଭୂଗୋଳ ଶିକ୍ଷକ ଶଶିଭୂଷଣ ମିଶ୍ର ଶର୍ମା ଆମ ଶ୍ରେଣୀକୁ ଆସି ଭୂମଣ୍ଡଳ ମାନଚିତ୍ରରେ ଆଫ୍ରିକା ମହାଦେଶ ଦେଖାଇବାକୁ ନିର୍ଦ୍ଦେଶ ଦେଲେ । ମୁଁ ସେଥିରେ ଅକ୍ଷମ ହେବାରୁ ସେ କଟୂ ମନ୍ତବ୍ୟ ଦେଇ କହିଲେ ଯେ ମୁଁ ବୃତ୍ତି ପାଇବା ପାଇଁ ଅଯୋଗ୍ୟ । ମୁଁ ଦୁଃଖିତ ନ ହୋଇ ମୁଁ ଆଗରୁ ଭୂମଣ୍ଡଳ ମାନଚିତ୍ର ବିଷୟରେ ଅଜ୍ଞ ଥିବାରୁ ଏହା ଘଟିଲା ମନେ କରି ନିଜକୁ ସାନ୍ତ୍ୱନା ଦେଲି ।

ସେତେବେଳେ ସ୍କୁଲରେ ପ୍ରତିବର୍ଷ ପ୍ରାୟ ପୁରସ୍କାର ବିତରଣୀ ସଭା ଅନୁଷ୍ଠିତ ହେଉଥିଲା । ସେତେବେଳେ ପ୍ରତି ଶ୍ରେଣୀର ପ୍ରଥମ ତିନିଜଣ ଛାତ୍ର ଓ ଅନ୍ୟାନ୍ୟ ବିଷୟ ମାନଙ୍କରେ କୃତିତ୍ୱ ହାସଲ କରିଥିବା ଛାତ୍ର, ମନିଟର, ଶୃଙ୍ଖଳା, ଉତ୍ତମ ଚରିତ୍ର ପାଇଁ ଛାତ୍ରଙ୍କୁ ପୁରସ୍କାର ଦେଇ ଉତ୍ସାହିତ କରାଯାଉଥିଲା । ପୁରସ୍କାର ବିତରଣୀ ଦିନ ଛାତ୍ରମାନଙ୍କ ବାକ୍‌ଶକ୍ତି ବର୍ଦ୍ଧନ ଓ ଅଭିନୟ ପାଇଁ ଆକୃଷ୍ଟ କରିବା ଉଦ୍ଦେଶ୍ୟରେ Recitation କରାଯାଇ ତାଙ୍କୁ ମଧ ପୁରସ୍କୃତ କରାଯାଉଥିଲା । ୧୯୩୯ର ପୁରସ୍କାର ବିତରଣୀ ଉତ୍ସବରେ ସେହି ସାଂସ୍କୃତିକ କାର୍ଯ୍ୟକ୍ରମରେ ଭାଗ ନେଇ ଇଂରାଜୀରେ Cricket Match ବିଷୟରେ ମୁଁ ଓ ସୂର୍ଯ୍ୟପ୍ରସାଦ ପଣ୍ଡା ଇଂରାଜୀ କଥୋପକଥନ କରି ସେ ଦିନ ମୁଖ୍ୟ ଅତିଥି ତଥା ସଭାପତି ତତ୍କାଳୀନ S.D.O. Mr. H. Bellଙ୍କ ଦ୍ୱାରା ଶ୍ରେଷ୍ଠ ବିବେଚିତ ହୋଇ ପୁରସ୍କାର ପାଇଥିଲୁଁ । ସେହି ଦିନ ଠାରୁ ମୋର ଅଭିନୟରେ ଆଗ୍ରହ ବଢ଼ିଲା ଓ ପରେ ଆହୁରି ଅନେକ ସ୍ଥଳରେ ପ୍ରଶଂସା ମିଳିଥିଲା । ଏହାଛଡ଼ା ମୁଁ ନିୟମିତ ଉପସ୍ଥାନ, ସୁଚରିତ୍ର,

ଓଡ଼ିଆ ଓ ଗଣିତରେ ସର୍ବୋଚ୍ଚ ନମ୍ବର ପାଇ ପୁରସ୍କୃତ ହୋଇଥିଲି । ପୁରସ୍କାର ପାଇଥିବା ପୁସ୍ତକ ମଧ୍ୟରେ ଇଂରାଜୀ ଶବ୍ଦକୋଷ ଓ ବିଦଗ୍ଧ ଚିନ୍ତାମଣି ଅନ୍ୟତମ । ବିଦଗ୍ଧ ଚିନ୍ତାମଣି ପୁସ୍ତକଟି ମୋର ସାନ କାକା ଛାନ୍ଦ ଗାଇବାରେ ବ୍ୟବହାର କରି ଆନନ୍ଦିତ ହେଲେ ।

ଏହି ଶ୍ରେଣୀରେ ଅଧ୍ୟୟନ ସମୟରେ ଏକ ଘଟଣା ଉଲ୍ଲେଖ କରି ସୂଚନା ଦିଆଯାଉଛି ଯେ ମୋର ଜଣେ ପାଠପଢ଼ା ସାଥୀଙ୍କ ସଙ୍ଗରେ ବ୍ୟକ୍ତିଗତ ମନୋମାଳିନ୍ୟ ହେତୁ ମୋର ସାଥୀର ପିତା ଯେ କି ଜଣେ ଶିକ୍ଷକ ଥିଲେ ସେ କ୍ରୋଧାନ୍ୱିତ ହୋଇ ମୋ ଉପରେ ଦଣ୍ଡବିଧାନ କରିଥିଲେ । ତାହା ଅତି ଗୁରୁତର ଥିଲା । ତେଣୁ ଏହା ଛାତ୍ର ଓ ଶିକ୍ଷକ ମହଲରେ ପ୍ରତିକ୍ରିୟା ସୃଷ୍ଟି କରିଥିଲା । ସେହି ଦିନଟି ଶୁକ୍ରବାର ହେତୁ ମୋର ବାପା ଓ କାକା ସମସ୍ତେ ଆସିଥିଲେ ଓ ସେହି ଶିକ୍ଷକଙ୍କ ଉପରେ କାର୍ଯ୍ୟାନୁଷ୍ଠାନ ପାଇଁ ଦରଖାସ୍ତ ଦେଲେ । ଏହା ଶୁଣି ଉକ୍ତ ଶିକ୍ଷକ ମୋର ବାପାଙ୍କୁ କ୍ଷମା ମାଗିଥିଲେ, କିନ୍ତୁ ସେମାନେ ରାଜି ନ ହେବାରୁ ଉକ୍ତ ଶିକ୍ଷକ ଆମ ସଙ୍ଗେ ଆମ ଗାଁକୁ ଯାଇ ମୋର ମା ଓ ଖୁଡ଼ୀଙ୍କ ଆଗରେ ପଶ୍ଚାତାପ କଲେ । ପରିଶେଷରେ ମୋର ବାପା, ବଡ଼ ବାପା ଦୟା ପରବଶ ହୋଇ ତାଙ୍କ ଆବେଦନକୁ ଫେରାଇ ଆଣିଥିଲେ । ଏହିପରି ଏହି ଘଟଣାର ପରିସମାପ୍ତି ଘଟିଲା । ହେଲେହେଁ ଅନେକ ଦିନ ପର୍ଯ୍ୟନ୍ତ ସ୍କୁଲର ଅନ୍ୟ ଛାତ୍ରଗଣ ସେ ଶିକ୍ଷକଙ୍କୁ ଆକ୍ଷେପ ଜନିତ କଟୂକ୍ତି ପ୍ରୟୋଗରୁ କ୍ଷାନ୍ତ ହୋଇ ନ ଥିଲେ । ଧନ୍ୟ ଗୁରୁଶିଷ୍ୟ ସ୍ନେହ ତଥା ସ୍ୱାର୍ଥ । ହାୟରେ ଶିକ୍ଷକ ସମାଜ । ଏହା କି ଛାତ୍ରବତ୍ସଳତା ? ମନୋବିଜ୍ଞାନ ଟ୍ରେନିଂ ପ୍ରାପ୍ତ ଶିକ୍ଷକ - ଛାତ୍ରର ସମ୍ପର୍କ? ଭଗବାନ ! ଏ ଦେଶର ଗୁରୁକୁଳାଶ୍ରମର ଗୁରୁଶିଷ୍ୟ ସମ୍ପର୍କ ମନେ ପଡ଼ିଲେ ହତୋତ୍ସାହୀ ହେବାକୁ ପଡ଼େ । ଏହି ଶ୍ରେଣୀରେ ପଢୁଥିବା ବେଳେ ମୋର ବ୍ରତୋପନୟନ ହୋଇଥିଲା ଓ ସେତେବେଳେ ମୋର ଆଖି ଧରିଥିଲା ଓ ଠିକ୍ ଭାବେ ଦେଖି ପାରୁ ନ ଥିଲି । ଏଥିରେ ଯୋଗ ଦେବା ପାଇଁ ମୋର ଉଦ୍ଦିଷ୍ଟ ପିନ୍ଧାଣି କରାଯାଇଥିବା କନ୍ୟାଟି ମଧ୍ୟ ଆମ ଘରକୁ ଆସିଥିଲା । ହାଇସ୍କୁଲର ଶିକ୍ଷକମାନେ ମଧ୍ୟ ଏଥିରେ ଯୋଗ ଦେଇଥିଲେ ।

ମୁଁ ହାଇସ୍କୁଲରେ ପଢୁଥିବା ବେଳେ ପ୍ରାୟ ପ୍ରତି ବର୍ଷ ଶ୍ରେଣୀ ଉତ୍ତୀର୍ଣ୍ଣ ବେଳେ ପ୍ରଥମ ସ୍ଥାନ ଅଧିକାର କରୁଥିଲି । ୭ମ ଶ୍ରେଣୀରେ ପଢୁଥିବା ସମୟରେ ଇଖମରା ମିଡିଲ ସ୍କୁଲରୁ ବିଦ୍ୟାଧର ବେହେରା, କମଗାଁରୁ ମଥୁରା ପ୍ରଧାନ, ଝସକେତନ ପ୍ରଧାନ ଆଦି ଆସି ଆମ ସଙ୍ଗେ ପଢ଼ିଲେ । ଏ ମଧ୍ୟରେ ବରଗଡ଼ ଥାନାର ପୋଲିସ ବାବୁଙ୍କ ପୁଅ ଦେବେନ୍ଦ୍ରନାଥ ବିଶୋଇ ମଧ୍ୟ ଆମ ସଙ୍ଗରେ

ପଢୁଥିଲେ । ଦେବେନ୍ଦ୍ର ବିଶୋଇ ପୋଲିସ ବାବୁଙ୍କ ପୁଅ ଥିଲେ । ତେଣୁ ସେ ମୋତେ ଗୋଟିଏ Copying Pencil ଦେଇଥିଲେ । Copying Pencil କିଣିବାକୁ ବାହାରେ ମିଳୁ ନ ଥିଲା । ତାକୁ ହାଇସ୍କୁଲରେ ପଢୁଥିବା ବେଳେ ଅନେକ ବର୍ଷ ଧରି ବ୍ୟବହାର କରିଥିଲି । ମଥୁରା ପ୍ରଧାନ ତାଙ୍କ ପୁରୁଣା ଝରି କଲମ (fountain pen) ମୋତେ ଦେଇଥିଲେ । ତାର କ୍ଲିବ୍ ନ ଥିଲା କି ଉପର ଭାଗଟି ଠିକ୍ ଭାବେ ତଳ ଭାଗରେ ଲାଗୁ ନ ଥିବାରୁ କାଗଜ ଗୁଡ଼ାଇ ତାକୁ ବ୍ୟବହାର କରୁଥିଲି । ମୁଁ ଗୋଟିଏ ନୂଆ ଝରି କଲମ କିଣିବା ପର୍ଯ୍ୟନ୍ତ ତାକୁ ବ୍ୟବହାର କରୁଥିଲି, ଅତି ଆଦର ଯତ୍ନରେ ରଖି ।

ଅଷ୍ଟମ ଶ୍ରେଣୀ ବେଳକୁ ଅନ୍ୟ ଛାତ୍ରମାନେ ଆସି ନାମ ଲେଖାଇଲେ । ସେମାନଙ୍କ ମଧ୍ୟରେ ଧ୍ରୁବା ତ୍ରିପାଠୀ ଆସି ନାମ ଲେଖାଇଲେ । ସେତେବେଳେ ଶ୍ରୀଯୁକ୍ତ ରାଜେନ୍ଦ୍ର ପଣ୍ଡା ପୂର୍ବର ଛାତ୍ରନେତା (୮ ସମ୍ବଲପୁର ଜିଲ୍ଲା ବୋର୍ଡ ଚେୟାରମେନ) ଆସି ଆମ ଶ୍ରେଣୀ ଶିକ୍ଷକ ରୂପେ ଯୋଗ ଦେଲେ । ସେତେବେଳେ ସେ ନିଜେ ଧୋବା ତ୍ରିପାଠୀଙ୍କ ନାମ ଧ୍ରୁବଚରଣ ତ୍ରିପାଠୀ ବୋଲି ପରିବର୍ତ୍ତନ କରି ଛାତ୍ର ହାଜିରାରେ ଲେଖିଥିଲେ । ପୁଣି ବିପିନ ବିହାରୀ ମିଶ୍ର କିଛି ଦିନ ଶିକ୍ଷକତା କରି ସରକାରୀ D.W.O. ହୋଇ ଚାଲିଗଲେ ଓ ରାଜେନ୍ଦ୍ର ପଣ୍ଡା, ଶ୍ରୀମତ୍ ସାହୁ, ନିତ୍ୟାନନ୍ଦ ଦର୍ଜି ମଧ୍ୟ I.A. ବା B.A. ପଢ଼ିବା ବେଳେ କିଛି କିଛି ଦିନ କାର୍ଯ୍ୟ କରି ପୁଣି ପଢ଼ିବା ପାଇଁ ଯାଉଥିଲେ ।

୮ମ ଶ୍ରେଣୀରେ ପଢ଼ିବା ବେଳେ ଗଣିତରେ ତ ଭଲ ନମ୍ବର ରଖୁଥିଲି, କିନ୍ତୁ ଇଂରାଜୀ ଉଭୟ ବିଷୟରେ ୭୫% ରୁ ଉର୍ଦ୍ଧ୍ୱ ନମ୍ବର ରଖୁଥିଲି । ସଂସ୍କୃତରେ ୯୬% ରଖିବାର ମୋର ମନେ ଅଛି । ଏପରି ଭାବେ ଶ୍ରେଣୀମାନଙ୍କରେ ସନ୍ତୋଷଜନକ ନମ୍ବର ରଖି ପ୍ରଶଂସାର ପାତ୍ର ହେଲି । ପରେ ଶ୍ରୀ ଜୟକୃଷ୍ଣ ପରିଡ଼ା ସଂସ୍କୃତ ଶିକ୍ଷକ ଓ ଜମେଶ୍ୱର ମିଶ୍ର, ନଟବର ଦାଶ ଆଦି ଶିକ୍ଷକ ରୂପେ ଆସି ଯୋଗ ଦେଇଥିଲେ । ସୁନାମଧନ୍ୟ ଭୂଦାନ କର୍ମୀ ମଦନମୋହନ ସାହୁ ମଧ୍ୟ ଆମ ଓଡ଼ିଆ ଶିକ୍ଷକ ଥିଲେ । ଏ ସମସ୍ତ ଶିକ୍ଷକଙ୍କ ପାଠ୍ୟଦାନ ଅତି ଉଚ୍ଚ ଧରଣର ଥିବାରୁ ପାଠ ପଢ଼ାରେ ବେଶ ମନୋଯୋଗୀ ହୋଇପାରୁଥିଲୁ । ସେମାନେ ନିଜ ନିଜ ବିଷୟରେ ଜଣେ ଜଣେ ସୁଯୋଗ୍ୟ ଶିକ୍ଷକ ଥିଲେ । ଅନ୍ୟାନ୍ୟ ଶିକ୍ଷକମାନେ ସ୍କୁଲରେ ସାମୟିକ ଭାବେ ଯୋଗଦେଇ ଅନ୍ୟତ୍ର ଉଚ୍ଚ ସରକାରୀ କାର୍ଯ୍ୟ ପାଇ ଚାଲି ଯାଉଥିଲେ । ସେମାନଙ୍କ ମଧ୍ୟରେ ଶ୍ରୀ ନନ୍ଦକିଶୋର ନନ୍ଦ B.Sc. ପାସ୍ କରି କିଛି ଦିନ ଶିକ୍ଷକତା କରି Excise Inspector ଚାକିରୀ ପାଇ ଚାଲିଗଲେ ।

ସେ କଲେଜରେ ପଢୁଥିବା ବେଳେ ଖେଳ ପାଇଁ 'College Star' ଉପାଧି ପାଇଥିଲେ । ତେଣୁ ତାଙ୍କ କିଛି ଦିନ ରହଣୀ କାଳରେ ଆମ ସ୍କୁଲରେ Sports ଖେଳ ପ୍ରତିଯୋଗିତାର ପ୍ରଯମାରମ୍ଭ ହୋଇଥିଲା । ଶ୍ରୀ ନନ୍ଦ ଶେଷରେ Excise Commissioner ରୂପେ ଅବସର ନେଲେ । ଶ୍ରୀ ଗୋପାଳଚନ୍ଦ୍ର ପ୍ରଧାନ କିଛି ଦିନ କାର୍ଯ୍ୟ କରି ପୋଲିସ୍ ଚାକିରୀ ପାଇ ଚାଲିଗଲେ । ସେ ପୋଲିସ୍ ଡି.ଏସ୍.ପି. ରୂପେ ଅବସର ନେଇଥିଲେ । ଶ୍ରୀ ଯୋଗୀନ୍ଦ୍ର ପଣ୍ଡା ସ୍କୁଲରେ ଶିକ୍ଷକତା କରି ପଶୁ ବିଭାଗରେ ଯୋଗ ଦେଲେ ଓ ପଶୁ ବିଭାଗର ଡାଇରେକ୍ଟର ଭାବେ ଅବସର ନେଇଥିଲେ । ସେତେବେଳେ ୮ମରୁ ଏକାଦଶ ଶ୍ରେଣୀରେ ଇଂରାଜୀ ୨୦୦ ମାର୍କ, ଗଣିତ ୧୦୦ ମାର୍କ, ସଂସ୍କୃତ ୧୦୦ ମାର୍କ, ଇତିହାସ, ଭୂଗୋଳ ପ୍ରତ୍ୟେକଟି ୧୦୦ ମାର୍କ, ଓଡ଼ିଆ ୨୦୦ ମାର୍କ ପରୀକ୍ଷା ଦେବାକୁ ପଡୁଥିଲା । ଏହା ଛଡ଼ା ଇଚ୍ଛାଧୀନ ବିଷୟ ୧୦୦ ମାର୍କର ଥିଲା (ଗଣିତ ବା ସଂସ୍କୃତ ଇଚ୍ଛାଧୀନ ବିଷୟ ଥିଲା) । ପାସ୍ ମାର୍କ ଥିଲା ୩୦% । ଏହା ବ୍ୟତୀତ ପାଠପଢ଼ା ଛଡ଼ା ଛାତ୍ରମାନଙ୍କ ଶୃଙ୍ଖଳା ଓ ସେବା ମନୋଭାବର ବୃଦ୍ଧି ପାଇଁ ସ୍କୁଲରେ First Aid (ପ୍ରାଥମିକ ଚିକିତ୍ସା), ବାଳଚର (Scout) ଓ ରେଡ୍‌କ୍ରସ୍ ସଂସ୍ଥା ଥିଲା । ମୁଁ ଏ ସବୁରେ ଭାଗ ନେଇଥିଲି । ସେତେବେଳେ Scout ମାନେ କୌଣସି ମେଳା ମହୋତ୍ସବରେ ଶୃଙ୍ଖଳା ରକ୍ଷା ପାଇଁ ପ୍ରେରିତ ହେଉଥିଲେ । ଏବେ ସେହି ମନୋଭାବର ଅଭାବ ଲକ୍ଷ୍ୟ କରାଯାଉଛି । Red Crossର ମୌଳିକ ଲକ୍ଷ୍ୟ ସର୍ବପ୍ରଥମରେ ସାହାଯ୍ୟ ଦାନ କରିବା । ଏହା ବିଶେଷତଃ ଯୁଦ୍ଧକ୍ଷେତ୍ରରେ ପ୍ରଯୁଜ୍ୟ । ତାହା ସ୍କୁଲ ଓ କଲେଜରେ ମଧ୍ୟ ଶିକ୍ଷା ଓ ଆଲୋଚନା ମାଧ୍ୟମରେ ପ୍ରସାର କରାଯାଉଥିଲା । ଏତଦ୍‌ଭିନ୍ନ ଶ୍ରେଣୀରେ ତର୍କସଭା (Debate), ଖେଳ ଆଦି Extra Curicular Activities ରୂପେ ପରିଗଣିତ ହେଉଥିଲା । ଏବେ ତାହା ପାଠ୍ୟକ୍ରମରେ Co-curicular activites ରୂପେ ପରିଚିତ । ଏହା ଛଡ଼ା ସ୍କୁଲରେ ନାଟକ ମଧ୍ୟ ଅଭିନୀତ ହେଉଥିଲା ଓ ମୁଁ ନବମ ଶ୍ରେଣୀ ପଢ଼ିବା ବେଳେ 'ଧର୍ମପତ୍ନୀ' ନାଟକରେ ବଇଁଶିଆ ଭୂମିକାରେ ଅଭିନୟ କରି ପ୍ରଶଂସିତ ହୋଇଥିଲି ।

ଆମ ବିଦ୍ୟାଳୟର ସୁନାମଧନ୍ୟ ପ୍ରଧାନ ଶିକ୍ଷକ ଶ୍ରୀ ଜଗନ୍ନାଥ ମିଶ୍ର ଓ ରଘୁନାଥ ବହିଦାର ନାଟକାଭିନୟ ଓ ଦିଗ୍‌ଦର୍ଶନରେ ଅଭିଜ୍ଞ ଥିବାରୁ ପ୍ରାୟ ପ୍ରତିବର୍ଷ ଗୋଟିଏ ଲେଖାଏଁ ନାଟକ ଅଭିନୀତ ହେଉଥିଲା ଓ ଏଥିରେ ଛାତ୍ରମାନଙ୍କ ଅଭିନୟ କୌଶଳର ପରିବୃଦ୍ଧି ଘଟୁଥିଲା । ଅଭିନୀତ ନାଟକ ମଧ୍ୟରେ କର୍ଣ୍ଣାର୍ଜୁନ, ମିସର କୁମାରୀ, ଲବକୁଶାଦି ପ୍ରଧାନ । ଏସବୁ ନାଟକରେ ଯେଉଁ କୃତୀ ଛାତ୍ରମାନେ

ଅଭିନୟ କରିଥିଲେ ସେମାନେ ହେଲେ ଶାନ୍ତିଲାଲ ଯୋଷୀ, ଦୟାଲାଲ ଯୋଷୀ, ରାହାସ ବିହାରୀ ପଣ୍ଡା, ଲଳିତ ମୋହନ ମେହେର ଓ ରଘୁନାଥ ମିଶ୍ର । ଏମାନେ ପରବର୍ତ୍ତୀ କାଳରେ ମଧ୍ୟ ପ୍ରତିଷ୍ଠିତ କଳାକାର ରୂପେ ସ୍ୱୀକୃତି ପାଇଥିଲେ ।

ହାଇସ୍କୁଲରେ ପଢୁଥିବା ବେଳେ ସ୍କୁଲରେ ପ୍ରାୟ କୌଣସି ପୂଜାପର୍ବ ପାଳନ କରାଯାଉ ନ ଥିଲା । ବିଶେଷତଃ ବିଦ୍ୟାଳୟ ପାଇଁ ଆବଶ୍ୟକୀୟ ପୂଜା ହେଲା ଗଣେଶ ପୂଜା ଓ ସରସ୍ୱତୀ ପୂଜା । ଗଣେଶ ପୂଜା ପରଦିନ ବା ପୂର୍ବଦିନରେ ନୂଆଁଖାଇ ଏକ ବିଶେଷ ପର୍ବ ରୂପେ ପାଳିତ ହେଉଥିବାରୁ ସାଧାରଣତଃ ସମସ୍ତ ଛାତ୍ର ନିଜ ନିଜ ଗ୍ରାମକୁ ଯାଉଥିଲେ । ଏଥିପାଇଁ ପ୍ରାୟ ୨/୩ ଦିନ ଛୁଟି ମିଳୁଥିଲା । ଅନ୍ୟଟି ସରସ୍ୱତୀ ପୂଜା ବିଶେଷ କରି ଛାତ୍ରାବାସମାନଙ୍କରେ ପାଳିତ ହେଉଥିଲା । ହାଇସ୍କୁଲରେ ଦୁଇଟି ଛାତ୍ରାବାସ ଟିକ୍ରା ହଷ୍ଟେଲ ଓ ଇ. ଏମ. ହଷ୍ଟେଲ ଥିଲା । ଉକ୍ତ ପୂଜାକୁ ଉଭୟ ହଷ୍ଟେଲରେ ବହୁତ ଜାକଜମକ୍‌ରେ ପାଳନ କରାଯାଉଥିଲା ।

ଏତଦ୍‌ବ୍ୟତୀତ ଛାତ୍ରାବାସ ଜୀବନ ଆଉ କେତେକ ଦିଗ ବର୍ଣ୍ଣନା ଯୋଗ୍ୟ । ହଷ୍ଟେଲରେ ରହିବା ବେଳେ ମୁଁ ୬ ବର୍ଷରେ ପ୍ରାୟ ୬ଟି କୋଠରୀରେ ରହି ଆସିଛି । ପ୍ରତ୍ୟେକ ବର୍ଷରେ ମୁଁ ରହିବା ବେଳେ କୋଠରୀର ସର୍ବୋଚ୍ଚ ଶ୍ରେଣୀର ଛାତ୍ର ହିସାବରେ ନିମ୍ନଲିଖିତ ବ୍ୟକ୍ତି କୋଠରୀ ବା ଛାତ୍ରାବାସର ମନିଟର ଥିଲେ । ସେମାନେ ହେଲେ ଶ୍ରୀ ସତୀଶ ଗୌନ୍ତିଆ, ଶ୍ରୀ କଷ୍ଟଚରଣ ପ୍ରଧାନ, ଅଧୁନା ଅବସରପ୍ରାପ୍ତ ରାଜ୍ୟର ସର୍ବୋଚ୍ଚ ରେଜିଷ୍ଟ୍ରେସନ ଅଧିକାରୀ - ଶ୍ରୀ ଅଚ୍ୟୁତାନନ୍ଦ ପୁରୋହିତ, ଶ୍ରୀ ମକରଧ୍ୱଜ ପ୍ରଧାନ, ଶ୍ରୀ ପୀତବାସ ପଣ୍ଡା, ଶ୍ରୀ ରାମଚନ୍ଦ୍ର ଶତପଥୀ ଆଦି । ଶେଷରେ ମୋତେ ମଧ୍ୟ କୋଠରୀ ମନିଟର ହେବାକୁ ପଡ଼ିଥିଲା । ବୋର୍ଡ଼ିଂର ନିୟମ ଅନୁଯାୟୀ ସର୍ବକନିଷ୍ଠ ଛାତ୍ରମାନେ ଉଚ୍ଚ ଶ୍ରେଣୀର ଛାତ୍ରମାନଙ୍କର ଆଜ୍ଞାବହ ଥିଲେ । ଏପରିକି ଦରକାର ପଡ଼ିଲେ କୋଠରୀ ଝାଡୁ କରିବା ଓ ଉଚ୍ଚ ଶ୍ରେଣୀ ଛାତ୍ରମାନଙ୍କ ଲଣ୍ଠନ ପୋଛିବା ତାଙ୍କ ପ୍ରାଥମିକ କର୍ତ୍ତବ୍ୟ ଥିଲା । ସକାଳେ କୂଅଁଶାଳାରେ କୌଣସି ଛାତ୍ର ପାଣି ଟାଣୁଥିବା ବେଳେ ଉଚ୍ଚ ଶ୍ରେଣୀର ଛାତ୍ରମାନେ ପାଇଖାନାରୁ ଫେରି ହାତ ପରିଷ୍କାର କରିବା ବେଳେ ଛୋଟ ଶ୍ରେଣୀ ଛାତ୍ରମାନେ ସେହି ପାଣି ଟାଣି ଯୋଗାଇବା ତାଙ୍କ କର୍ତ୍ତବ୍ୟ ଓ ଦାୟିତ୍ୱ ଥିଲା । ବଜାରର ଆବଶ୍ୟକୀୟ ଜିନିଷ କିଣାକିଣି କାମ ମଧ୍ୟ ଛୋଟ ଛାତ୍ରମାନେ ସମ୍ପାଦନ କରୁଥିଲେ । ସମୟ ସମୟରେ ଉଚ୍ଚ ଶ୍ରେଣୀର ଛାତ୍ରମାନେ ତାଙ୍କ ସଙ୍ଗେ ବସି ଭୋଜନ କରିବା ନୀତି ବିରୁଦ୍ଧ ଥିଲା । ସାଧାରଣତଃ ଉଚ୍ଚ ଶ୍ରେଣୀର ଛାତ୍ରମାନେ ଶେଷରେ ଏକ ସଙ୍ଗେ ବସି ଭୋଜନ କରୁଥିଲେ ଓ ସେତେବେଳେ ପାଠ୍ୟବସ୍ତୁର ଆଲୋଚନା

କରାଯାଇ ହସଖୁସିରେ ଗପ କରୁଥିଲେ। ସାଧାରଣତଃ ଛୋଟ ଛାତ୍ରମାନେ ସେଥିରେ ଭାଗ ନେବାର ଅସମୀଚୀନ ମନେ ହେଉଥିଲା। ବିଶେଷ କରି ସେମାନେ ଅଧିକାଂଶ ସମୟରେ ଇଂରାଜୀରେ ଆଲୋଚନାରତ ଥିଲେ। ଆଉ ମଧ୍ୟ ଛାତ୍ରାବାସର ସମସ୍ତଙ୍କ ନିଜର ବାସନ ନ ଥିବାରୁ ଏକ ସଙ୍ଗେ ଖାଇବାକୁ ହେଲେ ବାସନର ଅଭାବ ପଡୁଥିଲା। ଖାଇବା ବେଳେ ଛାତ୍ରମାନେ ନିଜ ନିଜ ଥାଳିଗିନା ଧରି ଭୋଜନ କରୁଥିଲେ। ତେଣୁ ଯାହାର ଥାଳିଗିନା ନ ଥାଏ ସେମାନେ ଶେଷରେ ଖାଉଥିଲେ ଓ ବିଶେଷ କରି କେତେକ ଅବହେଳାକାରୀ ଉଚ୍ଚ ଶ୍ରେଣୀର ଛାତ୍ର ଏହି ଅସୁବିଧା ସୃଷ୍ଟି କରୁଥିଲେ, କିନ୍ତୁ ତାଙ୍କୁ ଆପତ୍ତି କରିବାର କାହାରି ସତ୍‌ସାହସ ନ ଥିଲା।

ସେତେବେଳେ ଶୁକ୍ରବାର ଓ ଶନିବାର ସକାଳରେ ସ୍କୁଲ ହେଉଥିଲା ଓ ରବିବାର ସାପ୍ତାହିକ ଛୁଟି। ତେଣୁ ଶୁକ୍ରବାର, ଶନିବାର, ରବିବାର ସକାଳ ଓଳିରେ କେତେକ ଖାଦ୍ୟପ୍ରେମୀ ଛାତ୍ର ମେସ୍‌କୁ ଯାଇ ଏପରି ଖାଇ ବସୁଥିଲେ ଯେ ଯଦି ସେମାନେ ଟିକିଏ ଆଗଗୁ ଖାଇବାକୁ ଯାଇଛନ୍ତି ତେବେ ପରବର୍ତ୍ତୀ ଛାତ୍ରମାନେ ଓ ଗୁକର ପୂଝାରୀଙ୍କ ପାଇଁ ଖାଦ୍ୟାଭାବ ହୋଇ ପୁଣି ଥରେ ରାନ୍ଧିବାକୁ ପଡୁଥିଲା। ଏଥିରେ ସେହି ଖାଦ୍ୟପ୍ରିୟ ଛାତ୍ରଗଣ ଅସୀମ ଆନନ୍ଦ ଅନୁଭବ କରୁଥିଲେ। ଏହି ଛାତ୍ରମାନଙ୍କ ମଧ୍ୟରେ ଥିଲେ ସର୍ବଶ୍ରୀ ଟଙ୍କଧର ଭୋଇ, ସୁଶୀଳ ବହିଦାର, ଲାଲବିହାରୀ ଭୋଇ, ଋଷଭ ଭୋଇ, ଉଦୟ ସେଠ ଓ ଅନ୍ୟମାନେ। ଏହା ଅବଶ୍ୟ ଆମୋଦ ଦାୟକ ଓ ମଜାମଜଲିସ୍ ପାଇଁ ଖୋରାକ ଯୋଗାଉଥିଲା। ସେତେବେଳେ ମେସରେ ସବୁଦିନ ମୁଗଡାଲି ଓ ତରକାରୀ ରନ୍ଧା ଯାଉଥିଲା। ତେଣୁ ଯେଉଁ ଦିନ କେବେ କେବେ ରାହାଡ଼ି ଡାଲି ବା ଆମ୍ବିଲା ବା ମାଂସ ମାଛ ରନ୍ଧାଯାଉଥିଲା ସେଦିନ ସାଧାରଣତଃ ଛାତ୍ରମାନେ ତାଙ୍କ ସାଧାରଣ ଭୋଜନ ପରିମାଣ ଠାରୁ କିଛି ଅଧିକ ଆବଶ୍ୟକ କରୁଥିଲେ। ଏହା ଜାଣି ଆଗରୁ ପୂଝାରୀ ଅଧିକ ଗ୍ରଉଳ ରାନ୍ଧିବାର ବ୍ୟବସ୍ଥା କରି ରହୁଥିଲେ। ଶେଷରେ ଆଉ ଥରେ ରାନ୍ଧିବାର ଆବଶ୍ୟକତା ନ ପଡ଼ିବା ଦୃଷ୍ଟିରୁ ଏହା କରୁଥିଲେ। ମେସ୍‌ରେ ମାସକୁ ଥରେ ଭୋଜୀ, ଦୁଇ ଥର ମାଛ ଓ ସମୟାନୁସାରେ ମାଂସର ବ୍ୟବସ୍ଥା କରାଯାଉଥିଲା। ଏଥିରେ ପ୍ରାୟ ପୁଡ଼ୀ, ରୋଟି, ତରକାରୀ, ମାଛ ମାଂସ, କ୍ଷିରୀ ଆଦିର ବ୍ୟବସ୍ଥା କେବେ କେବେ କରିବାକୁ ହେଉଥିଲା। ମେସ୍‌ରେ ରୋଟି କରାଯିବା ଦିନ ପୂଝାରୀ ଓ ଗୁକର ଏକାକୀ ଏତେ ଲୋକଙ୍କ ପାଇଁ ରୋଟି କରିପାରିବେ ନାହିଁ ବୋଲି କେତେକ ଛାତ୍ର ତାଙ୍କୁ ସାହାଯ୍ୟ କରୁଥିଲେ।

ସେତେବେଳେ ଆମ ବୋର୍ଡିଂରେ ଗୁଜର ବଂଶୀନାଗ ରୋଟି ସେକିବା ବେଳେ "ଡିଲୋ ମା ଡିଲୋ ଡିଲୋ" କହି ରୋଟି ଫୁଲିବା ବେଳେ ଗୀତ ଗାଇ ସମସ୍ତଙ୍କୁ ଆନନ୍ଦ ପ୍ରଦାନ କରୁଥିଲେ ।

ଥରେ ଶୁଣିବାକୁ ମିଳିଲା କି ଉଚ୍ଚ ଶ୍ରେଣୀର ଛାତ୍ରମାନେ ଭୋଜନ କଲାବେଳେ (ଇଂରାଜୀରେ) ତାଙ୍କ ସଙ୍ଗେ ଜଣେ ଛାତ୍ରଙ୍କ ସଂପର୍କୀୟ ବ୍ୟକ୍ତି ଭୋଜନ କରୁଥିଲେ । ସେ କିଛି କିଛି ଇଂରାଜୀ ଜାଣି ଥିଲେ । ତେଣୁ ଛାତ୍ରମାନେ ନିଜ ନିଜ କଥାବାର୍ତ୍ତା ପରେ ଭଦ୍ରଲୋକ ଅତି ଆନନ୍ଦରେ କହି ପକାଉଥିଲେ - "This meal very good is", ଅର୍ଥାତ୍ ଏହି ଖାଦ୍ୟ ଅତି ଉତ୍କୃଷ୍ଟ ଅଟେ । ସେଠାରେ ଖାଉଥିବା ସମସ୍ତେ ବଡ଼ ସନ୍ତର୍ପଣରେ ନିଜ ନିଜର ହସକୁ ଗୁପି ରଖୁଥିଲେ । କାରଣ ତାଙ୍କ ହସ ଉକ୍ତ ଭଦ୍ରବ୍ୟକ୍ତିଙ୍କୁ ଅପଦସ୍ତ ପରିସ୍ଥିତିରେ ପକାଇଥାନ୍ତା । ଏଥିରୁ କମ ଜାଣିଥିବା ଲୋକର ନିଜର ସେ ବିଷୟରେ ଜ୍ଞାନ ଥିବା ଗୁଣକୁ ଦେଖାଇ ହେବାର ଆଗ୍ରହ ପ୍ରତିପାଦନ କରେ ।

ହାଇସ୍କୁଲରେ ନାମ ଲେଖାଇବା ପରେ ମୋର ମେଧା ଓ ବିଚକ୍ଷଣତା ଯୋଗୁଁ ମୁଁ ଶ୍ରେଣୀମାନଙ୍କରେ ସର୍ବଶ୍ରେଷ୍ଠ ଆସନ ଗ୍ରହଣ କରୁଥିଲି । ମୁଁ ଅବଶ୍ୟ ବୃତ୍ତିଭୋଗୀ ଛାତ୍ର ଥିଲି । କିନ୍ତୁ ଆମର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ ଥିବାରୁ ଦରଖାସ୍ତ ଦେଇ ମୋର ସ୍କୁଲ ଦରମା ଛାଡ଼ କରାଉଥିଲି । ଥରେ ମୁଁ ଯେତେବେଳେ କଷ୍ଟଚରଣ ପ୍ରଧାନଙ୍କ କୋଠରୀରେ ରହୁଥିଲି ସେତେବେଳେ ଦରମା ଛାଡ଼ ତାଲିକା ପ୍ରକାଶ ପାଇବାକୁ ଥାଏ । ଏପରି ସମୟରେ ଦିନେ ସନ୍ଧ୍ୟାରେ କଷ୍ଟବାବୁ ମୋର ଦରମା ଛାଡ଼ ହୋଇ ନାହିଁ ବୋଲି ସୂଚନା ଦେଲେ । ଏହି ଖବର ମୋର ମନରେ ଭୀଷଣ ଆଘାତ ଦେଲା ଓ ମୁଁ ବିଷଣ୍ଣ ହୋଇ ମନ ମାରି ବସିଲି । ଏପରିକି ମୁଁ ସେ ଦିନ ରାତିରେ ଖାଇବାକୁ ଯିବାର ଇଚ୍ଛା ହେଲା ନାହିଁ । ମୋର ଏପରି ଅବସ୍ଥା ଦେଖି କଷ୍ଟବାବୁ ଶେଷରେ ସତ କଥା କହି ପକାଇଲେ ଯେ ମୋର ପ୍ରକୃତରେ ଦରମା ଛାଡ଼ ହୋଇଛି । କିନ୍ତୁ ପ୍ରଥମେ ମୁଁ ବିଶ୍ୱାସ ନ କରି ନୀରବ ରହିଲି । ଶେଷରେ ବିଷୟର ସତ୍ୟତା ବିଷୟରେ ସ୍ପଷ୍ଟ ସୂଚନା ପାଇ ମୁଁ ଭୋଜନ କରିଥିଲି । ସେତେବେଳେ ଦରମା ଛାଡ଼ ଶିକ୍ଷା ପାଇଁ ଏକ ବିଶେଷ ସାହାଯ୍ୟକାରୀ ଦିଗ ଥିଲା । ନଚେତ୍ କେବେ ଶ୍ରେଣୀ ଦରମା ନ ଦେଇ ଛାତ୍ରମାନଙ୍କ ଶ୍ରେଣୀରୁ ନାମ କର୍ତ୍ତନ କରାଯିବାର ନଜିର ଅଭାବ ନାହିଁ । ହୁଏତ କେତେକ ବେହିସାବୀ, ସ୍ୱେଚ୍ଛାଚାରୀ ଛାତ୍ରମାନେ ଘରୁ ପର୍ଯ୍ୟାପ୍ତ ପରିମାଣ ଟଙ୍କା ଆଣି ନିଜର ବିଳାସ ବ୍ୟସନରେ ଖର୍ଚ୍ଚ କରିଦେଇ ସ୍କୁଲ ଦରମା ଦେଇ ନ ପାରି ନାମ କଟି ଯାଉଥିଲା । ହଷ୍ଟେଲରେ ଥିବା

ବେଳେ ମୋର ଅନ୍ୟାନ୍ୟ ଖର୍ଚ୍ଚ ଛଡ଼ା ସପ୍ତାହକୁ ହାତ ଖର୍ଚ୍ଚ ଓ କିରୋସିନି ତେଲ ଖର୍ଚ୍ଚ ବାବଦକୁ ଦୁଇ ଅଣା ବା ୧୨ ପଇସା ମିଳୁଥିଲା । ସେଥିରେ ଟ ୦/ର ତେଲରେ ମୋର ଛୋଟ ଲଣ୍ଠନରେ ସପ୍ତାହକୁ ୨ ଥର ଭରାଯାଇ ପ୍ରାୟ ରାତି ୧୦ ଟା ପର୍ଯ୍ୟନ୍ତ ପାଠ ପଢ଼ାଯାଇ ପାରୁଥିଲା । ବାକି ଅଣାକରେ ଦିନକୁ ଅଧଲାଟିଏ ହିସାବରେ ୩.୫ ପଇସା ଜଳଖିଆରେ ଖର୍ଚ୍ଚ ହେଉଥିଲା । ଅର୍ଥାତ୍ ଦିନକୁ ଅଧଲାକର ମୁଢ଼ି, ଚିନାବାଦାମ/ମୁଢ଼ି, ଉଖୁଡ଼ା ଅବା ଆଉ କିଛି ଖାଦ୍ୟ ଖାଇ ଚଳିବାକୁ ହେଉଥିଲା । ସେତେବେଳେ ଉଭୟ ହଷ୍ଟେଲକୁ ଜଳଖିଆ ବିକ୍ରୟ ପାଇଁ ପୂର୍ବରୁ ବର୍ଣ୍ଣିତ ମୋହନ ସାହୁ ତାଙ୍କ ହାତତିଆରି ସାମାନ ଧରି ଆସୁଥିଲେ । ତାଙ୍କ ଆଣିଥିବା ଦ୍ରବ୍ୟ ମଧ୍ୟରେ ପୁଡ଼ୀ, ତରକାରୀ, ଚିନିମିଶା ମୁଗବରା, ପକୋଡ଼ି, ସିଂଗଡ଼ା, ରସଗୋଲା ଅନ୍ତର୍ଭୁକ୍ତ । ପୁଡ଼ୀ, ସିଂଘଡ଼ା, ବରା, ପକୋଡ଼ିର ଦାମ ପ୍ରାୟ ପଇସେ ଲେଖାଏଁ ଓ ରସଗୋଲା ଗୋଟାକୁ ଦୁଇ ପଇସା ଥିଲା । ତେଣୁ ପୁଡ଼ୀ ତରକାରୀ, ବରା, ପକୋଡ଼ି ଖାଇବାକୁ ଇଚ୍ଛା ହେଲେ ୨ ଦିନରେ ଥରେ ଜଳଖିଆ ଖିଆଯାଉଥିଲା ବା ରସଗୋଲା ଖାଇବାକୁ ଇଚ୍ଛା ହେଲେ ୪ ଦିନରେ ଗୋଟାଏ ରସଗୋଲା ଖିଆଯାଇ ପାରୁଥିଲା । ଏହା ପଢ଼ି ପାଠକ ବା ଆଜିକାଲିର ଛାତ୍ରମାନେ ଏହାକୁ କପୋଳ କଳ୍ପିତ ବା ମିଛ ବୋଲି ମନେ କରିପାରନ୍ତି । କିନ୍ତୁ ଏହା ଯେ ନିରାଟ ସତ୍ୟ ଓ ନିଜ ଅଙ୍ଗେ ନିଭାଇଥିବା ଘଟଣା ଅଟେ । ହାଇସ୍କୁଲରେ ପଢୁଥିବା ବେଳେ ଅନ୍ୟାନ୍ୟ ଘଟଣା ମଧ୍ୟରେ ତତ୍କାଳୀନ ପୋଷାକ ପତ୍ର ଓ ତାର ମୂଲ୍ୟାଦି ଆଲୋଚନା କରାଯିବା ଉଚିତ୍ ମନେ କରେ । ଆମ୍ଭମାନଙ୍କ ସାଧାରଣ ପୋଷାକ ଧୋତି ଓ ଗାମୁଛା । ସ୍କୁଲକୁ ପଢ଼ିଯିବା ବେଳେ କାମିଜ ପିନ୍ଧି ଯିବାକୁ ପଡୁଥିଲା । ଧୋତି ଖଣ୍ଡକୁ ଦଶ ଅଣା (୬୨ ପଇସା), ଗାମୁଛା ଖଣ୍ଡେ ଟ୦। (୨୫ ପଇସା)ରେ ମିଳୁଥିଲା । କାମିଜ କପଡ଼ା ଗଜକୁ ୧୨ ନୂ.ପ.ରୁ ୧୯ ନୂ.ପ.ପର୍ଯ୍ୟନ୍ତ ଥିଲା । କାରଣ ସେତେବେଳେ ମିଟର ବ୍ୟବହାର କରାଯାଉ ନ ଥିଲା । ପ୍ରାୟ ୧ ମିଟର ବେଶୀ ହେଲେ ୧୨ ଗଜରେ କମିଜ ଖଣ୍ଡେ ତିଆରି ହେଉଥିଲା ଓ ସିଲାଇ ମଧ୍ୟ ଛଅ ପଇସା ବା ୧୨ ପଇସା ଥିଲା । ତେଣୁ ହାରାହାରି ୩୧ ନୂଆ ପଇସା ବା ୩୭ ନୂଆ ପଇସାରେ ଖଣ୍ଡେ ପିନ୍ଧିବା ଭଳି କାମିଜ ତିଆରି ହୋଇ ପାରୁଥିଲା । ଅନ୍ୟ ପିଲାମାନେ ଅବଶ୍ୟ ଆହୁରି ଦାମିକା କପଡ଼ାରେ କାମିଜ ତିଆରି କରି ପିନ୍ଧୁଥିଲେ । କାରଣ ସେତେବେଳେ ଜାପାନୀ ଘୋଡ଼ା ସିଲ୍କ କପଡ଼ାର ଦାମ ମଧ୍ୟ ସେତେ ବେଶୀ ନ ଥିଲା । ସେତେବେଳେ ଇଂଲଣ୍ଡର ବକିଂଗହାମରୁ ଆସୁଥିବା ଧଳା ୧୦୦୦୦୦ ନମ୍ବର ଟୁଇଲର ଗଜ ପ୍ରତି ଟ ୧ ବା ଟ ୧। ଥିଲା । ତାହା ତିଆରି କରିବାକୁ ପ୍ରାୟ

ଟ୨ ବା ଟ ୨୪ ପଡୁଥିଲା । ମୋର ମନେ ଅଛି ବୋଧ ହୁଏ ଦଶମ ଶ୍ରେଣୀ ଅଧୟନ ବେଳେ ମୋର ବାପା ମୋ ପାଇଁ ସେପରି ଏକ କାମିଜ କରାଇ ଦେଇଥିଲେ । ତାହା ତୁଷାର ଭଳି ଶୁଭ୍ର ଓ ଚିକ୍କଣ ଥାଇ ଚକ୍ ଚକ୍ କରୁଥିଲା ଓ ତା'ର ପ୍ରତ୍ୟେକ ଗଜରେ '୧୦୦୦୦୦' ଛାପା ଥିଲା ଓ ଲାଖ ନମ୍ବର ଟୁଇଲ ବୋଲି ପ୍ରତିପାଦିତ ହେଉଥିଲା ।

ପଢ଼ିବା ସମୟର ଅନେକ ଘଟଣା ଘଟିଯାଇଛି । ତଥାପି କେତେକ କୌତୁକିଆ ଘଟଣା ଉଲ୍ଲେଖ ନ କରି ରହିପାରୁ ନାହିଁ । ମୁଁ ବରଗଡ଼କୁ ପଢ଼ିବାକୁ ଆସିବା ପରେ ମୋର ବାପା କାକାମାନେ ଏକାନ୍ନବର୍ତ୍ତୀ ପରିବାରରୁ ଭାଗ ଭାଗ ହୋଇ ଅଲଗା ଅଲଗା ହୋଇ ଗଲେ । ତେଣୁ ମୋର ପଢ଼ାଖର୍ଚ୍ଚ ତୁଲାଇବା ପାଇଁ ତଥା ଆମ ପରିବାରର ଜନସଂଖ୍ୟା ଅନ୍ୟ ଭାଇମାନଙ୍କଠାରୁ ବେଶୀ ଥିବା ହେତୁ ବାପାଙ୍କୁ କୌଣସି ଏକ ଅନ୍ୟ ଧନ୍ଦା କରିବାକୁ ପଡ଼ିଲା । ବଡ଼ଖା ବାପା ଓ ସାନ କାକା ତ ଶିକ୍ଷକତା କରି କିଛି ଉପାର୍ଜନ କରୁଥିଲେ । ଏହା ଛଡ଼ା ଆମର ପୁରୋହିତି କର୍ମ ପାଇଁ ପଥର୍ଲା ଓ ବାଲିକୋରୀ ଦୁଇ ଖଣ୍ଡ ଗାଁ ଥିଲା । ସେଥିରୁ କିଛି ବାର୍ଷିକ ଆୟ ହେଉଥିଲା । ଆମ ଘରଖର୍ଚ୍ଚ ଓ ମୋର ପଢ଼ାଖର୍ଚ୍ଚ ପାଇଁ ସେ ଆୟ ପର୍ଯ୍ୟାପ୍ତ ନ ଥିଲା । ତେଣୁ ମୋର ପଢ଼ିବା ଦିନ ଠାରୁ ବାପା କିଛି ବ୍ୟବସାୟ ଆରମ୍ଭ କରିବା ମନସ୍ଥ କରି ବରଗଡ଼ ଜୀରାନଦୀ ଖଣ୍ଡିରେ ବରଗଡ଼ ସହର ଶେଷରେ ବାସ କରୁଥିବା ଜଲିଆ ମାରୱାଡ଼ୀ ସଙ୍ଗେ ଆଲୋଚନା କଲେ । ସେ ତାଙ୍କୁ ବିଶ୍ୱାସ କରି ଟ ୧୦ ଧାର ଦେଇ ଗ୍ରଉଳ ବ୍ୟବସାୟ ଆରମ୍ଭ କରିବାକୁ ପ୍ରସ୍ତାବ ଦେଲେ । ସେହିଦିନ ପରଠାରୁ ପ୍ରତି ଶନିବାର ଦିନ କିଛି କିଛି ଗ୍ରଉଳ କିଣି ବରଗଡ଼କୁ ବିକ୍ରି ପାଇଁ ଆଣିଲେ । ସେତେବେଳେ ଗ୍ରଉଳ ବସ୍ତା ପ୍ରାୟ ଟ ୩ ଥିଲା । ତେଣୁ ଉକ୍ତ ଟଙ୍କାରେ ସପ୍ତାହକୁ ପ୍ରାୟ ୩ ବା ୩.୫ ବସ୍ତାର ଗ୍ରଉଳ ବ୍ୟବସାୟ ଆରମ୍ଭ କରି କିଛି ଲାଭର ସୂତ୍ର ପାଇଲେ । ସେହି ଦିନ ଠାରୁ ସେହି ମାରୱାଡ଼ୀର ବିଶ୍ୱାସ ମଧ ତାଙ୍କ ଉପରେ ବଢ଼ିଲା ଓ ତାହା ପ୍ରାୟ ସପ୍ତାହକୁ ୨୦/୩୦ ବସ୍ତାର ବ୍ୟବସାୟ ପର୍ଯ୍ୟନ୍ତ ଗ୍ଲିଲା ।

ଏଥି ସକାଶେ ପ୍ରତି ଶନିବାର ଦିନ କିଣା ଯାଇଥିବା ଗ୍ରଉଳ ବସ୍ତାକୁ ଗାଡ଼ିରେ ଭଡ଼ା କରି ଆଣି ଗୋଦାମରେ ବା ସେହି ମାରୱାଡ଼ୀ ସାହୁକାରଙ୍କଠାରେ ଜମା ଦେଇ ତା'ର ମୂଲ୍ୟ ପାଉଥିଲେ । ତେଣୁ ଉକ୍ତ ଶନିବାର ଦିନ ପଢ଼ା ଶେଷରେ ମୋତେ ସେ ଗୋଦାମକୁ ଯିବା ପାଇଁ କହିବାରୁ ମୁଁ ପ୍ରାୟ ସବୁ ଶନିବାର ଦିନ ପଢ଼ା ସାରି ଗୋଦାମକୁ ଯାଇ ବାପାଙ୍କ ସହ ଗ୍ରଉଳର ମୂଲ୍ୟ ପାଇବା ପର୍ଯ୍ୟନ୍ତ ଜଗି

ରହୁଥିଲି। ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଯେ ମହାଜନ ଯେପରି ହିସାବରେ କିଛି ଖିଲାପ ନ କରେ ବା ଠକି ନ ଦିଏ। ଅବଶ୍ୟ ମୋର ବାପାଙ୍କୁ ହିସାବପତ୍ରରେ ସହଜରେ କେହି ଠକିବା ଏତେ ସହଜ ନ ଥିଲା। ସେ ଗ୍ରଟଶାଳୀ ଶିକ୍ଷକଙ୍କ ଠାରୁ ଯାହା କିଛି ପଢ଼ିଥିଲେ ବି ତାଙ୍କର ବୁଦ୍ଧିଶକ୍ତି ପ୍ରଖର ଥିଲା। ସେ ସବୁବେଳେ ଏକ ଶହ ଏକକୁ ୧୦୦୧ ରୂପେ ଲେଖି ହିସାବ କରୁଥିଲେ ଓ ତାହା ନିର୍ଭୁଲ ରହୁଥିଲା। ଏ ସବୁ ତ ସୁଅଭ୍ୟାସର ପ୍ରଭାବ। ଏ ପ୍ରସଙ୍ଗଟି ଅବାନ୍ତର ମନେ ହେଲେ ହେଁ ସମସ୍ତଙ୍କ ଜାଣିବା ପାଇଁ ଲିଖିତ। ମୋର ମଧ ବାପାଙ୍କ ସହ ହିସାବ କରିବା ପାଇଁ ଦିନ ୧୨ ଟା ବା ୨/୩ ଟା ସମୟ ପର୍ଯ୍ୟନ୍ତ ରହୁଥିଲି। କାରଣ ହିସାବ ଶେଷରେ ମହାଜନ ମୋତେ ହିସାବ ବାହାରେ ଏକ ପଇସା ମାତ୍ର ଦେଉଥିଲେ ଓ ମୋର ସାପ୍ତାହିକ ଖର୍ଚ୍ଚ ଦୁଇ ଅଣାରୁ ଦୁଇ ଅଣା ତିନି ପାହୁଲା ହୋଇଥିଲା। ଏହା ହିଁ ଥିଲା ମୋର ଶନିବାର ଦିନର କେତେ ଘଣ୍ଟା ପର୍ଯ୍ୟନ୍ତ ରହଣୀର ଉଦ୍ଦେଶ୍ୟ। ପରବର୍ତ୍ତୀ ସମୟରେ ଟ ୦ ପର୍ଯ୍ୟନ୍ତ ପାଇଥିଲି। ତାପରେ କେବେ କେବେ ହଷ୍ଟେଲକୁ ଆସି ମୁଁ ଓ ବାପା ଉଭୟେ ବୋର୍ଡିଂରେ ଖାଉଥିଲୁଁ। ସେଥିପାଇଁ ଆଗରୁ ମେସ ମେନେଜର ଓ ପୂଝାରୀଙ୍କୁ କହି ବ୍ୟବସ୍ଥା କରାଯାଇଥାଏ। କେବେ କେବେ ବାପା, ଗାଡ଼ିବାଲା ଓ ଅନ୍ୟ ବ୍ୟବସାୟୀମାନେ କୀରା ନଦୀ ବାଲିରେ ରନ୍ଧାବଢ଼ା କରି ଖାଆନ୍ତି ଓ ସେଥିରେ ମଧ ମୁଁ ଭାଗ ନେଇଥାଏଁ। ଅବେଳାରେ ଭୀଷଣ କ୍ଷୁଧା ହୁଏ। ସେ ନଦୀରେ ରନ୍ଧା ଖାଦ୍ୟ ଭାତ ଓ ଡାଲି ବା ଆଉ କିଛି ବେଶ ସ୍ୱାଦଯୁକ୍ତ ଖାଦ୍ୟ ଆନନ୍ଦପ୍ରଦ ହୁଏ। ଆଉ ମଧ କେବେ ଛୁଟି ଥିଲେ ଆମେ ବାପାଙ୍କ ସଙ୍ଗେ ଗାଁକୁ ଗଲେ ମାଆ, ବାପା, ଖୁଡ଼ୀମାନେ ଅତି ଆଗ୍ରହରେ ମୋର ଖାଇବା ପାଇଁ ବ୍ୟବସ୍ଥା କରନ୍ତି। ସାଧାରଣତଃ ମୁଁ ଘରକୁ ଗ୍‌ଲେ ମୋ ପାଇଁ ସମସ୍ତେ ତରକାରୀ ପତ୍ର ଆଣି ଦେଉଥିଲେ। ପରଦିନ ପାଳି କରି ସାନ କାକା ବା ବଡ଼ଖା ବାପାଙ୍କ ଘରେ ଖାଉଥିଲି। ରାତ୍ରିରେ ପ୍ରାୟ ସାନ କାକା ବା ବଡ଼ ବାପାଙ୍କ ଘରେ ଶୋଉଥିଲି। ରବିବାର ସକାଳ ଓ ଉପର ଓଳି ବା ମୋର ଘରେ ଥିବା ବେଳେ ମାଆ ଖୁଡ଼ୀମାନେ ମୋ ପାଇଁ ବିଭିନ୍ନ ପ୍ରକାର ଜଳଖିଆ ପ୍ରସ୍ତୁତ କରାଇ ଖୁଆଉଥିଲେ। ଏହା ତାଙ୍କ ମୋ ପ୍ରତି ପ୍ରଗାଢ଼ ସ୍ନେହର ପରାକାଷ୍ଠା ଥିଲା। ମୋର ସହପାଠୀ ବନ୍ଧୁମାନେ ମଧ ମୋ ସଙ୍ଗେ ଆମ ଘରକୁ ଗଲେ ସେମାନେ ମଧ ମୋ ଭଳି ସମାନ ବ୍ୟବହାର ପାଉଥିଲେ। ଆମ ଘରକୁ ଯାଇଥିବା ମୋର ସାଙ୍ଗମାନେ ହେଲେ ଧ୍ରୁବଚରଣ ତ୍ରିପାଠୀ, କୁମର ଚରଣ ବାରିକ ଆଦି। ମୁଁ ମଧ କେବେ ଛୁଟିରେ ଧ୍ରୁବ ଚରଣ ତ୍ରିପାଠୀଙ୍କ ସଙ୍ଗରେ ତାଙ୍କ ଗ୍ରାମ ତାଳଶ୍ରୀଗିଡ଼ାକୁ ଯାଇ ବେଶ ଚର୍ଚ୍ଚିତ ହୋଇଥିଲି। ଏହା ବ୍ୟତୀତ ମୁଁ ଯଦି କେବେ

ମୋର ପିଉସୀମାନଙ୍କ ଘରକୁ ଯାଏଁ ସେଠାରେ ମଧ ମୋର ଆଦରର ସୀମା ନ ଥିଲା। ସେମାନେ ବହୁତ ପିଠାପଣା କରି ଖୁଆଇବା ପାଇଁ ବ୍ୟଗ୍ର ଥିଲେ। କାରଣ ଆମ ବଂଶରେ ବା ସମ୍ପର୍କୀୟମାନଙ୍କ ମଧରେ କେହି ହାଇସ୍କୁଲରେ ପଢ଼ି ନ ଥିଲେ। ବିଶେଷତଃ ମୋର ପିଉସୀମାନଙ୍କ କେବଳ ଝିଅମାନେ ଥିଲେ। ଆଉ ଜଣେ ପିଉସୀଙ୍କ ପୁଅଟିଏ ମୋ ଠାରୁ ସାନ ଥିଲା। ମୁଁ ପିଉସୀମାନଙ୍କ ମଧ ଅତି ପ୍ରିୟପାତ୍ର ଥିଲି। ଗୋପାଇପାଲିର ପିଉସା ଲଛମନ ଦାଶ ଓ ପିଉସୀ ସୂର୍ଯ୍ୟ ଦେବୀ ମୋତେ ଅତିଶୟ ସ୍ନେହ କରୁଥିଲେ। ଏସବୁ ଘଟଣାକୁ ନେଇ ବିଗ୍ଚର କଲେ ସମାଜରେ ସେତେବେଳେ ମନୁଷ୍ୟମାନଙ୍କ ମଧରେ କେତେ ଆନ୍ତରିକତା, ସ୍ନେହ ମମତା ଥିଲା ସତେ। ଏବେ କିନ୍ତୁ ସେ ସବୁ ବିରଳ।

ସେହି ସମୟର ଆଉ ଏକ ଘଟଣା ମନେ ପଡ଼ିଲେ ମନ ଉଲ୍ଲସିତ ହୁଏ। ଆମେ ତଳ ଶ୍ରେଣୀରେ ପଢୁଥିବା ବେଳେ ବରଗଡ଼କୁ ଅନ୍ନପୂର୍ଣ୍ଣା ଥିଏଟର ଆସିଥାଏ। ସେଥିରେ ମେନେଜର ଥାନ୍ତି ସୁନାମଧନ୍ୟ ମଞ୍ଚଶ୍ରୀ ବାଉରୀବନ୍ଧୁ ମହାନ୍ତି। ସହକାରୀ ରୂପେ ରାଜକିଶୋର ମହାନ୍ତି, ବାଞ୍ଛାନିଧି ମହାରଥି କାର୍ଯ୍ୟ କରୁଥାଆନ୍ତି। ସେତେବେଳେ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ଅନେକ ଗୁଡ଼ିଏ ନାଟକ ମଞ୍ଚସ୍ଥ ହେଉଥିଲା। ସେ ଗୁଡ଼ିକ ହେଲା ଭକ୍ତର ଭଗବାନ, ବିଜୟ କୁମାର, ମହାପଥର ଯାତ୍ରୀ, କଳା ପାହାଡ଼ ଆଦି। ପରେ ପହିଲି ରଜ, କଂସା କବାଟ, କାଚ ଘର, ଚଉଠି ରାତି, ବୈରାଗୀର ସଂସାର, ଭରସା, ଲକ୍ଷହୀରା ଆଦି ଅଭିନୀତ ହେଉଥିଲା। ସେତେବେଳେ ମୁଖ୍ୟ ଭୂମିକାରେ ଅଭିନୟ କରୁଥିଲେ ମଞ୍ଚଶ୍ରୀ ମାଷ୍ଟର ମାଣିଆ, ଦୁର୍ଲଭ ସିଂ, ଲକ୍ଷ୍ମୀନାରାୟଣ ପାତ୍ର, କାଶୀନାଥ ସାହୁ, ବୃନ୍ଦାବନ ପାତ୍ର (ବୁଲବୁଲ), ଗଣେଶ୍ୱର ରଥ, କାର୍ତ୍ତିକ ଘୋଷ ଆଦି। ପ୍ରଥମେ ଅଭିନୟରେ ସ୍ତ୍ରୀ ଭୂମିକାରେ ଅଭିନୟ ପୁରୁଷମାନେ କରୁଥିଲେ। କିନ୍ତୁ ପରେ ଯେତେବେଳେ ଅନ୍ନପୂର୍ଣ୍ଣା ଥିଏଟର ଏପଟେ ଆସି ଅଭିନୟ କଲା ସେତେବେଳେ ସ୍ତ୍ରୀମାନେ ପ୍ରଥମ ହୋଇ ଅଭିନୟ କରିବାକୁ ଲାଗିଲେ। ପ୍ରଥମ ହୋଇ ମହିଳାମାନଙ୍କୁ ମଞ୍ଚକୁ ଆଣିବାରେ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ ନାଟ୍ୟାଚାର୍ଯ୍ୟ କାଳିଚରଣ ପଟ୍ଟନାୟକ। ସେ କଟକରେ ଓଡ଼ିଶା ଥିଏଟର ଆରମ୍ଭ କରି ନିଜେ ଭାତ, ଚୂନ୍ଦନ, ପରକଲମ ଆଦି ନାଟକ ଅଭିନୟ କରାଇ ଉଚ୍ଚ ପ୍ରଶଂସିତ ହୋଇଥିଲେ। ସେଥିରେ ବରିଷ୍ଠ ଅଭିନେତା ସାମୁଏଲ ସାହୁ, ପ୍ରିୟନାଥ ମିଶ୍ର, ଟିମା ବା ଦୀନବନ୍ଧୁ ସାହୁ ଆଦି ଅଭିନୟ କରୁଥିଲେ। ପରେ ପରେ ଅନ୍ନପୂର୍ଣ୍ଣା ଦୁଇ ଭାଗରେ ବିଭକ୍ତ ହେଲା। 'A' ଓ 'B' Group ରୂପେ। 'A' ଗ୍ରୁପଟି ପୁରୀ ବଡ଼ ଦାଣ୍ଡରେ ନିଜର ସ୍ଥାୟୀ ରଙ୍ଗମଞ୍ଚ

ଜଲେ ଓ 'B' ଗ୍ରୁପ କଟକ ବକ୍ସି ବଜାର ନିକଟରେ ପ୍ରଭାତ ସିନେମାହଲ ନିକଟରେ ଏକ ବଡ଼ ଜାଗାରେ ନିଜର ରଙ୍ଗମଞ୍ଚ ଗଢ଼ିଲେ। ଏହାର ପୃଷ୍ଠପୋଷକ ଥିଲେ ସୋମନାଥ ନନ୍ଦ ଓ ମେନେଜର ରାଜକିଶୋର ମହାନ୍ତି। 'A' ଗ୍ରୁପର ମେନେଜର ସେଇ ବାଉରୀବନ୍ଧୁ ମହାନ୍ତି, ବାଲୁଙ୍କେଶ୍ୱର ମିଶ୍ର ଓ ବାଞ୍ଛାନିଧି ମହାରଥୀ। କିଛି ଦିନ ପରେ ଓଡ଼ିଶା ଥିଏଟରସ୍ ମଧ୍ୟ ଭାଙ୍ଗିଗଲା ଓ 'A' ଗ୍ରୁପରୁ କିଛି ଅଭିନେତା ଓ ଅଭିନେତ୍ରୀ ଯାଇ 'B' ଗ୍ରୁପରେ ରହିଲେ। 'A' ଗ୍ରୁପରେ ରହିଲେ ଦୁଃଖୀଶ୍ୟାମ, ଦୁର୍ଲଭ ସିଂହ, ବୁଲବୁଲ ଓ ଅନ୍ୟମାନେ। ସ୍ତ୍ରୀ ଅଭିନେତ୍ରୀ ଭାବେ ଥିଲେ ମଞ୍ଜୁଶ୍ରୀ ରାଧାରାଣୀ, ପ୍ରତିମା ଘୋଷ, ଭାନୁମତୀ ଓ ଲକ୍ଷ୍ମୀ। 'B' ଗ୍ରୁପରେ ରହିଲେ ସାମୁଏଲ ସାହୁ (ବାବି), ପ୍ରିୟନାଥ ମିଶ୍ର, ପାଣ୍ଡେ, ଟିମା, କେଲୁଚରଣ ମହାପାତ୍ର, ଶଶିଭୂଷଣ, ମାଧବ ଶତପଥୀ ଆଦି। ନାରୀ ଅଭିନେତ୍ରୀମାନେ ହେଲେ ମଣିମାଳା, ମାନଦା, ଲୀଳାଦୁଲାଳୀ ଆଦି ଆଉ କେତେ। ପରେ ଏମାନେ ଚଳଚ୍ଚିତ୍ର ଜଗତରେ ଅଭିନୟ କରି ନାମ କରିଥିବା ଦେଖାଯାଇଛି। ଏଠାରେ ଗୋଟିଏ ବିଷୟ ସୂଚନା ଦିଆଯାଇପାରେ ଯେ ପ୍ରଥମେ ୩ୟ ଦଶକର ଶେଷ ଭାଗରେ ଅନ୍ନପୂର୍ଣ୍ଣା ଥିଏଟର ବରଗଡ଼ ଆସିଲା। ସେତେବେଳେ ଗେସ୍ ଲାଇଟ୍ (ହାଣ୍ଡିଲାଇଟ୍) ସାହାଯ୍ୟରେ ନାଟକ ପ୍ରଦର୍ଶନ କରାଯାଉଥିଲା ଓ ଅନ୍ଧକାର ଦୃଶ୍ୟ ପ୍ରଦର୍ଶନ ପାଇଁ ଆଲୋକ ଢ଼ାଙ୍କିବାର ବ୍ୟବସ୍ଥା ଟଲୁ ରସି ସାହାଯ୍ୟରେ ଆୟତ୍ତ କରାଯାଉଥିଲା। କ୍ରମେ ଉନ୍ନତ ହୋଇ ବିଜୁଳି ଆଲୁଅର ବ୍ୟବହାର ଦ୍ୱାରା ସମସ୍ତଙ୍କୁ ଆକୃଷ୍ଟ କରାଗଲା। ଏପରିକି ମଞ୍ଚରେ କେସେଟ୍ ସାହାଯ୍ୟରେ ବଳଦଗାଡ଼ି, ରେଳଗାଡ଼ିର ଯିବାଆସିବା ଶବ୍ଦ ମଧ୍ୟ ଶ୍ରବଣଯୋଗ୍ୟ ହୋଇପାରିଥିଲା। 'B' ଗ୍ରୁପରେ ମୂଲିଆ, ବେନାମୀ, ବୈରାଗୀର ସଂସାର, ଜହର, ଫେରିଆ ଆଦି କେତେକ ସାମାଜିକ ଓ ବିପ୍ଳବାତ୍ମକ ନାଟକ ମଞ୍ଚସ୍ଥ ହୋଇଥିଲା। ପରେ 'B' ଗ୍ରୁପ ମଧ୍ୟ ବରଗଡ଼ ଆସି ଅଭିନୟ କରି ଯାଇଥିଲେ।

ଆମେ ହାଇସ୍କୁଲରେ ପଢୁଥିବା ବେଳେ ଯଦିଓ ଥିଏଟର ଦେଖିବା ପାଇଁ ଟ୦। ଓ ଛାତ୍ରମାନଙ୍କ ପାଇଁ ରିହାତି ଦରର ବ୍ୟବସ୍ଥା ଥିଲା ତଥାପି ଆମ ଭଳି ସ୍ୱଳ୍ପ ଖର୍ଚ୍ଚରେ ଚଳିବା ଛାତ୍ରଙ୍କ ପକ୍ଷେ ଏହା ଆକାଶକୁସୁମ ଥିଲା। ତେଣୁ ଆମେ ସ୍କୁଲ ଛୁଟି ପରେ ଥିଏଟର ପେଣ୍ଡାଲକୁ ଯାଇ ନାଟକର ମେନେଜର ଓ ଅନ୍ୟାନ୍ୟମାନଙ୍କର ସଙ୍ଗେ ପରିଚିତ ହୋଇ ଅନେକ ଦିନ ମାଗଣାରେ ନାଟକ ଦେଖିବାକୁ ମିଳୁଥିଲା। ସାଧାରଣତଃ ନାଟକ ସନ୍ଧ୍ୟା ୭ ଟା ୩୦ ମି. ରୁ ୧୦ ଟା ୩୦ ମି. ପର୍ଯ୍ୟନ୍ତ ଅଭିନୀତ ହେଉଥିଲା। ତେଣୁ ଦିନେ ଦିନେ ଖାଇ ସାରି ଉଚ୍ଚ ଶ୍ରେଣୀର ଛାତ୍ରଙ୍କ ସଙ୍ଗେ ୯ ଟା

ପରେ ଲୁଗ୍‌ଛପା ଭାବରେ ଥିଏଟର ସ୍ଥାନକୁ ଯାଉଥିଲୁଁ ଓ ନାଟକ ଶେଷ ହେବା ପୂର୍ବରୁ ଦର୍ଶକମାନଙ୍କ ନିକଟକୁ ପ୍ରବେଶଦ୍ୱାର ଖୋଲା ହୋଇଯାଉଥିବାରୁ ଆମ୍ଭେମାନେ ଅକ୍ଳେଶରେ ନାଟକର ଶେଷ କେତେକ ଦୃଶ୍ୟ ଦେଖି ପରିତୋଷ ଲାଭ କରିଥିଲୁ। ମୋର ନାଟକ ଦେଖିବା ପାଇଁ ଅତିଶୟ ସଉକ ଥିବାରୁ କିପରି ଭାବେ ନାଟକ ଦେଖିପାରିବି ତାର ଉପାୟ ଖୋଜି ବାହାର କରୁଥିଲି।

ମୋର ନବମ ଶ୍ରେଣୀରେ ପଢୁଥିବା ବେଳେ ଅନ୍ନପୁର୍ଣ୍ଣା ଥିଏଟର ଆମ ଅଞ୍ଚଳକୁ ଆସି ବରଗଡ଼ରେ ନ ଦେଖାଇ ପ୍ରଥମେ ସୋହେଲାକୁ ଯାଇ ସେଠାରେ ପ୍ରଦର୍ଶନ ଆରମ୍ଭ କଲେ। ସେହି ଥରର ଆକର୍ଷଣୀୟ ନୂତନ ମୁଖ୍ୟ ନାଟକ ଥିଲା P.W.D. ଯାହାର ପ୍ରଶଂସା ଆଗରୁ ଶୁଣାଯାଇଥିଲା। ତେଣୁ ଆମେ କେତେଜଣ ଆମ ବୋର୍ଡ଼ିଂରୁ ଶନିବାର ସ୍କୁଲ ଛୁଟି ପରେ ଚାଲି ଚାଲି ସୋହେଲା ଗଲୁଁ ଓ ପ୍ରାୟ ସନ୍ଧ୍ୟାରେ ସେଠାରେ ପହଞ୍ଚିଲୁଁ। ଆମ ମଧରେ ଥିଲେ ଆଶୁତୋଷ ତ୍ରିପାଠୀ, କୁମର ଚରଣ ବାରିକ, ହେମଚନ୍ଦ୍ର ଆଚାର୍ଯ୍ୟ ଓ ଆଉ କେତେ। ସୋହେଲା ପହଞ୍ଚିବା ପରେ ଜଣାଗଲା ଯେ ସେଦିନର ନାଟକ ଦେଖିବାକୁ ବରଗଡ଼ରୁ ଆସିଛୁ ବୋଲି ମେନେଜରଙ୍କୁ କହିବାରୁ ଦୁଃଖିତ ହେଲେ କାରଣ ସେତେବେଳେ ଆଉ ପ୍ରୋଗ୍ରାମ ପରିବର୍ତ୍ତନର ଉପାୟ ନ ଥିଲା। ଯାହା ହେଉ ମେନେଜର ଆମର ଅନୁରୋଧ ରକ୍ଷା କରି P.W.D. ନାଟକ କେବେ ଅଭିନୀତ ହେବ ତା'ର ଦିନ ଓ ତାରିଖ ଆମକୁ ଜଣାଇ ଦେଲେ ଏବଂ କହିଲେ ସେହି ନାଟକର ମୁଖ୍ୟ ଅଭିନେତା କାଶୀନାଥ ସାହୁ ଛୁଟି ନେଇ ଘରକୁ ଯାଇଥିଲେ ଓ ସେ ନ ଆସିଲେ ଉପରୋକ୍ତ ନାଟକ ଅଭିନୀତ ହେବା ଅସମ୍ଭବ। ଯାହା ହେଉ ଏହାର ସଠିକ୍ ଖବର ଜାଣିବା ପାଇଁ ଆମେ ଉତ୍ସୁକ ରହିଲୁଁ। ଠିକ୍ ସମୟରେ ଉପରୋକ୍ତ ନାଟକ ଅଭିନୟର ଦିବସ ଜଣାଗଲା। କେତେକ ନାଟକ ପ୍ରେମୀ ବନ୍ଧୁ ସେହି ଦିବସରେ ସୋହେଲା ସାଇକେଲରେ ଯିବା ପାଇଁ ବାହାରିଲେ। ତେଣୁ ତାଙ୍କ ସଙ୍ଗେ ଯିବା ପାଇଁ ମୁଁ ଇଚ୍ଛା ପ୍ରକାଶ କରିବାରୁ ଆମ କୋଠରୀର ମନିଟର ଶ୍ରୀ ମକରଧ୍ୱଜ ପ୍ରଧାନଙ୍କ ସଙ୍ଗେ ସାଇକେଲରେ ସୋହେଲା ଗଲୁଁ। ଆମେ ସମସ୍ତେ ଯାଇ ସନ୍ଧ୍ୟାରେ ସୋହେଲାରେ ପହଞ୍ଚିଲୁଁ। ସେଠାରେ ମୋର ପିଉସୀ ଘର ଥିଲା। ପିଉସୀ ୰ ଅମ୍ବିକା ଦେବୀ ୰ ଜଗଦୀଶ ଦେବତାଙ୍କ ପୁତ୍ର ୰ ଧନପତି ଦେବତାଙ୍କୁ ବିବାହ କରିଥିଲେ। ଆମକୁ ଦେଖି ପିଉସୀ ବ୍ୟସ୍ତ ହେଲେ ଆମର ଖାଇବା ପାଇଁ। ପିଉସା ଆଗରୁ କହିଥିଲେ ସୁବିଧା ହୋଇଥାନ୍ତା ବୋଲି ବିରକ୍ତି ପ୍ରକାଶ କଲେ। ଆମେ ତାଙ୍କ ଘରେ ସାଇକଲ ଗୁଡ଼ିକ ଥୋଇ ନାଟକ ଦେଖିବାକୁ ଚାଲିଗଲୁ। କିଛି ସମୟ ପରେ ପିଉସା ଯାଇ ଖାଇବା

ପାଇଁ ଆମକୁ ଡାକି ଆଣିଲେ । କାରଣ ପିଉସୀ ରାତିରେ ପଡ଼ୋଶୀ ଘରୁ ଭାତ, ତରକାରୀ ମାଗି ଆଣି ଖାଇବାକୁ ଦେଇଥିଲେ । ଅସମୟରେ ଅତିଥି ଘରକୁ ଆସିଲେ ଗୃହକର୍ତ୍ତା ଓ ଗୃହକର୍ତ୍ତୀଙ୍କ ଅସୁବିଧା ହୁଏ । ନିଜେ ଘର କଲା ପରେ ତା'ର ଗୁରୁତ୍ୱ ଉପଲବ୍ଧି କରି ପିଉସା ପିଉସୀଙ୍କ ଅସହାୟ ଅବସ୍ଥା ମନେ ପଡ଼ି ଦୁଃଖିତ ଓ ଅନୁତପ୍ତ ହୋଇଥିଲି । ରାତି ପ୍ରାୟ ୧୦ ଟା ୩୦ ମି. ରେ P.W.D. ନାଟକ ଦେଖି ସାରି ସାଇକଲ ଧରି ରାତିରେ ବରଗଡ଼ ଫେରିଲୁଁ । ସେ ଦିନର ଏ ଅନୁଭୂତି ମନେ କଲେ ଉଚ୍ଚ ଶ୍ରେଣୀର ଛାତ୍ରମାନଙ୍କ କନିଷ୍ଠ ଛାତ୍ରମାନଙ୍କ ପ୍ରତି କି ଅଶେଷ ସ୍ନେହର ପ୍ରଭାବ ଥିଲା ସ୍ୱତଃ ଅନୁମାନ କରି ହୁଏ । ଏଣୁ ସେମାନେ ଆମର ଭକ୍ତି ସମ୍ମାନର କିପରି ନିଗୂଢ଼ ପାତ୍ର ଥିଲେ ଅନୁମାନ କରି ହେବ ନାହିଁ ।

ନବମ ଶ୍ରେଣୀର ପ୍ରାରମ୍ଭରେ ଅର୍ଥାତ୍ ୧୯୪୨ ସାଲର ପ୍ରଥମାର୍ଦ୍ଧରେ ଆମର ପ୍ରଧାନ ଶିକ୍ଷକ ସ୍ମରଣୀୟ ୰ ଶ୍ରୀ ହାରାଚ୍ଛନ୍ଦ ନାୟକ ଆମକୁ ଇଂରାଜୀ ଦ୍ୱିତୀୟ ପତ୍ର - ଇଂରାଜୀ ଗଦ୍ୟ, ପଦ୍ୟ ଓ ବ୍ୟାକରଣ ପଢ଼ାଉଥିଲେ । ତାଙ୍କ ପାଠ୍ୟଦାନ ପ୍ରଣାଳୀ ଅତି ଉଚ୍ଚ କୋଟୀର ଥିଲା । କିନ୍ତୁ ସେହି ପାଠ୍ୟଦାନର ସୁଯୋଗରେ ଶୀଘ୍ର ଯବନିକା ପଡ଼ିଲା । କାରଣ ନାୟକ ମହାଶୟ ସ୍କୁଲରେ ଦୀର୍ଘ ୧୪ ବର୍ଷର କାର୍ଯ୍ୟକାଳ ପରେ ବିଦାୟ ନେଇ ଅନ୍ୟତ୍ର ପରିବର୍ତ୍ତନ ହୋଇ ଚାଲିଗଲେ । ତାଙ୍କ ଭଳି ଏକ ଦକ୍ଷ ଶିକ୍ଷକର ସ୍ଥାନ ଅପୂରଣୀୟ ରହିଲା । କାରଣ ସେ ଇଂରାଜୀ, ଗଣିତ, ସାହିତ୍ୟ, ସଂସ୍କୃତ, ଓଡ଼ିଆ ଆଦି ସବୁ ବିଷୟରେ ନିପୁଣତାର ସହ ଶିକ୍ଷାଦାନ କରିପାରୁଥିଲେ । ତାଙ୍କ ଯିବା ପରେ ପ୍ରଧାନ ଶିକ୍ଷକର ଦାୟିତ୍ୱ ବିଦ୍ୟାଳୟ ପରବର୍ତ୍ତୀ ବରିଷ୍ଠ ଶିକ୍ଷକ ଶ୍ରୀଯୁକ୍ତ ଜଗନ୍ନାଥ ମିଶ୍ରଙ୍କ ହସ୍ତରେ ଅର୍ପିତ ହେଲା । ଉକ୍ତ ମହାଶୟ ନାଟକାଭିନୟ, ଟେନିସ୍ ଖେଳ ଆଦି ବାହ୍ୟ ବିଷୟରେ ସମୟ ଅତିବାହିତ କରୁଥିବାରୁ ପ୍ରଧାନ ଶିକ୍ଷକ ରୂପେ ଦାୟିତ୍ୱ କେତେ ଦୂର ତୁଲାଇ ପାରିବେ ସେଥିରେ ସମସ୍ତେ ସନ୍ଦିହାନ ଥିଲେ । ଯାହା ହେଉ ତାଙ୍କ ପ୍ରଧାନ ଶିକ୍ଷକତା କାଳରେ ସ୍କୁଲର ପାଠପଢ଼ା ବ୍ୟତୀତ ବିଦ୍ୟାଳୟର ଚତୁର୍ଦ୍ଦିଗରେ ବାଡ଼ ଓ ଖଜୁରଟିକ୍ରା ବୋର୍ଡିଂର ପୁରାତନ ଅବସ୍ଥା ଦୃଷ୍ଟିରୁ ଆଉ ଏକ ଛାତ୍ରାବାସର ଆବଶ୍ୟକତା ଦେଖାଇ ତତ୍କାଳୀନ ଉପଖଣ୍ଡ ଅଧିକାରୀ S.D.O. ଶ୍ରୀ ଏସ୍. କେ. ମଜୁମଦାରଙ୍କ ଦ୍ୱାରା ଗୀତା ହଷ୍ଟେଲ ତିଆରି ହୋଇଥିଲା ଓ ତାହା ତାଙ୍କ ପତ୍ନୀ ଗୀତାଙ୍କ ନାମରେ ନାମିତ କରାଗଲା । ତେଣୁ ଅନ୍ତେବାସୀଗଣ ଟିକ୍ରା ବୋର୍ଡିଂ ଛାଡ଼ି ନୂତନ ଛାତ୍ରାବାସକୁ ଚାଲି ଆସିଲେ । ପରେ ସେହି ଅବ୍ୟବହୃତ ହଷ୍ଟେଲଟି ପ୍ରାକ୍ଟିସିଂ ସ୍କୁଲରେ ପରିବର୍ତ୍ତିତ ହୋଇ ଏବେ ଖଜୁରଟିକ୍ରା ସ୍କୁଲରେ ପରିଣତ ହୋଇଛି ।

ଆମେ ଦଶମ ଶ୍ରେଣୀ ପଢୁଥିବା ବେଳେ ଏକାଦଶ ଶ୍ରେଣୀରେ ଲାଲବିହାରୀ ଭୋଇ, କୁମର ଚରଣ ବାରିକ ଆଦି ପଢୁଥିଲେ । ସେତେବେଳେ ଏକାଦଶ ଶ୍ରେଣୀର ବର୍ଷ ଶେଷ ପରେ ପରବର୍ତ୍ତୀ ଫେବୃୟାରୀ ମାସରେ ମେଟ୍ରିକ୍ ପରୀକ୍ଷା ଅନୁଷ୍ଠିତ ହେଉଥିଲା । ଏଣୁ ପ୍ରାୟ ଏକାଦଶ ଶ୍ରେଣୀର ଛାତ୍ରମାନେ ପାଟନା ୟୁନିଭରସିଟି ଅଧୀନରେ ହେଉଥିବା ମେଟ୍ରିକ୍ ପରୀକ୍ଷା ଦେବା ପାଇଁ ସମ୍ବଲପୁର ଯାଉଥିଲେ । ତାଙ୍କର ମେସ୍ ଚଳାଇବା ପାଇଁ ତାଙ୍କ ତଳ ଶ୍ରେଣୀର ଅର୍ଥାତ୍ ନୂତନ ଭାବରେ ଏକାଦଶ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହୋଇଥିବା ଜଣେ କାର୍ଯ୍ୟକ୍ଷମ ଛାତ୍ର ଯାଉଥିଲେ । ସେ ବର୍ଷ ମୁଁ ଏକାଦଶ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହୋଇ ୧୯୪୪ ଫେବୃୟାରୀ ମାସରେ ସମ୍ବଲପୁର ମେସ୍ ଚଳାଇବା ପାଇଁ ଯାଇଥିଲି । ସେଠାରୁ ଫେରିବା ପରେ ମୁଁ ବୋର୍ଡିଂରେ ମନିଟର ଦାୟିତ୍ୱରେ ରହିବା କଥା । କିନ୍ତୁ କେତେକ ସ୍ୱାର୍ଥପର ଛାତ୍ରଙ୍କ କୁଚକ୍ରାନ୍ତ ହେତୁ ମୋତେ ଦାୟିତ୍ୱ ଦିଆଗଲା ନାହିଁ । ଆମ ଶ୍ରେଣୀର ଆଉ ଜଣେ ଛାତ୍ର ସେ ଦାୟିତ୍ୱରେ ରହିଲେ । 'ଭଗବାନ ଯାହା କରନ୍ତି ପ୍ରାଣୀର ମଙ୍ଗଳ ସକାଶେ' । ଏହାଦ୍ୱାରା ମୋତେ ପଢ଼ିବା ପାଇଁ ବହୁତ ସମୟ ମିଳିଲା । ଏକାଦଶ ଶ୍ରେଣୀର ଅନ୍ୟାନ୍ୟ ବିଷୟରେ ଲେଖିବା ପୂର୍ବରୁ ସ୍କୁଲ ଓ ବୋର୍ଡିଂର ଆଉ କେତେକ ସୂଚନା ଦେବା ଆବଶ୍ୟକ ମନେ ହୁଏ । ସ୍କୁଲରେ ଫୁଟବଲ୍ ଖେଳ ନିୟମିତ ହୁଏ । ସ୍କୁଲର ଫୁଟବଲ୍ ଖେଳାଳୀମାନେ ଅନ୍ୟ ବିଦ୍ୟାଳୟକୁ ନିମନ୍ତ୍ରଣରେ ଖେଳିବାକୁ ଯାଇ କେବେ ଜିଣି କରି ଅଥବା ପରାଜିତ ହୋଇ ଫେରୁଥିଲେ । ସେମାନଙ୍କ ମଧ୍ୟରେ କହ୍ନାୟାଲାଲ ସାହୁ, ରାଜୀବ ଲୋଚନ କୁଅଁର, ପଦ୍ମଲୋଚନ ଦୋରା, ପ୍ରସନ୍ନ ବହିଦାର, ବିନୋଦ ବିହାରୀ ଦାଶ, ସୁଶୀଳ ବହିଦାର, ରାମଚନ୍ଦ୍ର ଶତପଥୀ ଆଦି ଅଗ୍ରଣୀ ଥିଲେ । ଆମ୍ଭେମାନେ ପାଠୁଆ ପିଲା ହିସାବରେ ଖେଳରେ ଏତେ ମନ ନ ଦେଇ କେବଳ ଦର୍ଶକ ଭାବେ ଖେଳକୁ ଉପଭୋଗ କରୁଥିଲୁଁ । ଆମ ଠାରୁ ତଳ ଶ୍ରେଣୀର ଛାତ୍ର ଲଖମରାର ନବୀନ ଚନ୍ଦ୍ର ଭୋଇ ମଧ ଜଣେ ଦକ୍ଷ ଫୁଟବଲ ଖେଳାଳୀ ଥିଲେ । ସେ ନିୟମିତ ଭାବେ ସ୍କୁଲକୁ ପଢ଼ିବାକୁ ଯାଉଥିଲେ କିନ୍ତୁ ଖେଳରେ ଅବହେଳା ପ୍ରଦର୍ଶନ କରୁ ନ ଥିଲେ । ସେ ଖେଳିବାରେ ବେଶୀ ଶକ୍ତି ଓ ସମୟ ବିନିଯୋଗ କରିବା ହେତୁ ଖେଳି ସାରି କ୍ଲାନ୍ତ ହୋଇ ପଡୁଥିଲେ ଓ ପ୍ରାୟ ବୋର୍ଡିଂକୁ ଆସି ସନ୍ଧ୍ୟାରେ ଶୋଇ ପଡୁଥିଲେ । ଏପରି ଭାବେ ତାଙ୍କ ଦୈନନ୍ଦିନ ପଢ଼ାପଢ଼ି ପ୍ରାୟ ବାଧାପ୍ରାପ୍ତ ହେଉଥିଲା । ପରୀକ୍ଷା ନିକଟବର୍ତ୍ତୀ ହେଲେ ସେ ପାଠକୁ ପ୍ରସ୍ତୁତ କରିପାରୁ ନ ଥିଲେ । ତେଣୁ ସେ ନିର୍ବିକାର ଭାବେ ପ୍ରକାଶ କରୁଥିଲେ ଯେ ଏତେ ଦିନ ତ ପଢ଼ି ହେଲା ନାହିଁ । ତେଣୁ ପରୀକ୍ଷା ପୂର୍ବରୁ ଆଉ ପରିଶ୍ରମ କରିବା

ଠିକ୍ ନୁହେଁ। କାରଣ ପାଠ ସରି ପାରିବ ନାହିଁ। ପରୀକ୍ଷା ପୂର୍ବ ଦିନ ଅତି ଆନନ୍ଦରେ ପ୍ରକାଶ କରୁଥିଲେ, "ଆଚ୍ଛା ଆଜିରାତିଟା ନିଶ୍ଚିନ୍ତରେ ଶୋଇ ପଡ଼ିଲେ ପରଦିନ ସକାଳୁ ଉଠି ପରୀକ୍ଷା ପାଇଁ ପ୍ରସ୍ତୁତ ହୋଇ ସ୍କୁଲକୁ ଯିବାକୁ ପଡ଼ିବ। ତେଣୁ ଏଥିରେ ଚିନ୍ତା କରିବା ନିଷ୍ପ୍ରୟୋଜନ।" ଏହାକୁ ଶୁଣି ଆମେ କେବଳ ତାଙ୍କ କଥାରେ ସମ୍ମତ ହେବା ଛଡ଼ା ଗତ୍ୟନ୍ତର ନ ଥିଲା।

ହଷ୍ଟେଲରେ ଏକ କୋଠରୀ ଠାକୁରଙ୍କ ପାଇଁ ଉଦ୍ଦିଷ୍ଟ ଥିଲା। ସେଠାରେ ଗଣେଷ, ସରସ୍ୱତୀ ଫଟୋ ରଖାଯାଇ ପ୍ରତିଦିନ ସକାଳେ ଓ ସନ୍ଧ୍ୟାରେ ପୂଜା କରାଯାଉଥିଲା। ବାର୍ଷିକ ସରସ୍ୱତୀ ପୂଜା ମଧ୍ୟ ଏ କୋଠରୀରେ ଅନୁଷ୍ଠିତ ହେଉଥିଲା। ଠାକୁରଙ୍କ ପୂଜାର ଦାୟିତ୍ୱ ବୋର୍ଡିଂର ଜନୈକ ଅଭାବଗ୍ରସ୍ତ, ସୁସ୍ୱଭାବ ବିଶିଷ୍ଟ ଜଣେ ପାଠୁଆ ପିଲାଙ୍କୁ ଦିଆ ଯାଉଥିଲା। ଉକ୍ତ ପୂଜକ ଛାତ୍ର ମେସରେ ମାଗଣା ଦୁଇ ଓଳି ଭୋଜନ କରୁଥିଲେ। ଠାକୁରଙ୍କ ପୂଜା ପାଇଁ ପ୍ରତ୍ୟେକ ଅନ୍ତେବାସୀ ବୋର୍ଡିଂ ଫିଜ୍ ସହ ଟ୦/ ଲେଖାଏଁ ଦାନ କରୁଥିଲେ। ଉକ୍ତ ସଂଗୃହୀତ ପାଣ୍ଠି ମାସକୁ ପ୍ରାୟ ଟ ୨ ବା ଟ ୨୨ ଥିଲା। ସେହି ପାଣ୍ଠିଟି ମାସିକ ପୂଜା ପାଇଁ ନୈବେଦ୍ୟ, ଧୂପ ଓ ଦୀପ ପାଇଁ ଉଦ୍ଦିଷ୍ଟ ଥିଲା। କୌଣସି ମତେ ସେ ଖର୍ଚ୍ଚ ପାଇଁ ଏହି ପାଣ୍ଠି ପର୍ଯ୍ୟାପ୍ତ ନ ଥିଲେହେଁ ଅଭାବ ପଡୁ ନ ଥିଲା। ପ୍ରତିଦିନ ସନ୍ଧ୍ୟାରେ ବୋର୍ଡିଂର ସତର୍କ ଘଣ୍ଟି ବାଜିଲେ ଅନ୍ତେବାସୀଗଣ ବୋର୍ଡିଂରେ ଏକାଠି ହୋଇ ନିଜ ଗୋଡ଼ ହାତ ଧୋଇ ବା ଅନ୍ୟାନ୍ୟ ନିତ୍ୟକର୍ମ ସମାପନ ପୂର୍ବକ ସମୂହ ପ୍ରାର୍ଥନାରେ ଯୋଗ ଦେଉଥିଲେ। ପୂଜା ଶେଷରେ ସମସ୍ତେ ପ୍ରସାଦ ସେବନ କରି ନିଜ ନିଜ କୋଠରୀକୁ ଫେରୁଥିଲେ। କେବେ କେବେ ଛାତ୍ରମାନଙ୍କ ଦ୍ୱାରା ପ୍ରଦତ୍ତ ନଡ଼ିଆ, କଦଳୀ ଭୋଗ ରୂପେ ଲାଗୁଥିଲା। କେବେ କେବେ ରତୁ ଜାଣି ପ୍ରଧାନ ଶିକ୍ଷକଙ୍କ ଘରୁ ପିଜୁଳି ଆସି ନୈବେଦ୍ୟ କରାଯାଇ ସମସ୍ତଙ୍କୁ ପ୍ରସାଦ ବିତରଣ କରାଯାଉଥିଲା। ପୂଜକ ଛାତ୍ର ପ୍ରତ୍ୟେକ କୋଠରୀକୁ ଯାଇ ପ୍ରସାଦ ଦେଇ ଆସୁଥିଲେ। ଏହି ପୂଜକ ଛାତ୍ରମାନଙ୍କ ମଧ୍ୟରେ ମୋର ସହପାଠୀ ଧ୍ରୁବଚରଣ ତ୍ରିପାଠୀ ଅନ୍ୟତମ। ତାଙ୍କୁ ଥରେ ଧୂମପାନ କରିବାର ଦେଖି କହିଥିଲି ଯେ ଜଣେ ପୂଜକ ଏପରି କୁଅଭ୍ୟାସ କରିବା ଅଶୋଭନୀୟ। ଏହି ବିଷୟ ଛାତ୍ରମାନଙ୍କ ନିକଟରେ ପହଞ୍ଚିଲେ ହୁଏତ ତାଙ୍କୁ ପୂଜା କାମରୁ ଅନ୍ତର କରାଯିବ। ତେଣୁ ଏଥି ପ୍ରତି ସେ ସାବଧାନ ରହିବା ଉଚିତ। ମୁଁ ତାଙ୍କର ଅତି ଅନ୍ତରଙ୍ଗ ବନ୍ଧୁ ଥିବାରୁ ତାଙ୍କୁ ଏ ବିଷୟରେ ସେଥିରୁ ନିବୃତ୍ତ କରି ପାରିଥିଲି। ପରେ ଧୂମପାନ କରିବା ଛାଡ଼ି ଦେଇଥିଲେ।

ହଷ୍ଟେଲରେ ଦରୁଆନ ଜଣେ ଲେଖାଏଁ ଥିଲେ। ତାଙ୍କ କାମ କୋଠରୀ

ଗୁଡ଼ିକ ଝାଡୁ କରିବା, ଛାତ୍ରମାନଙ୍କ ଆବଶ୍ୟକୀୟ ବସ୍ତୁ ବଜାରରୁ କିଣି ଆଣି ଯୋଗାଇବା, ବୋର୍ଡିଂ ବଗିଚ୍ଚରେ ପାଣି ଦେବା, କେହି ଅସୁସ୍ଥ ହେଲେ ଡାକ୍ତରଙ୍କ ପାଖରୁ ଔଷଧ ଆଣିବା, ଡାକ୍ତରଙ୍କୁ ଡାକି ଆଣିବା ତଥା ସକାଳେ ସମସ୍ତ ଛାତ୍ରମାନଙ୍କୁ କୂଅରୁ ପାଣି ଟାଣି ସ୍ନାନ କରାଇବା। ଯେଉଁମାନେ ସକାଳେ ସ୍ନାନ କରିଥାନ୍ତି ସେମାନଙ୍କୁ ଏହି କାମରେ ଦରୁଆନ ସାହାଯ୍ୟ କରି ପାରନ୍ତି ନାହିଁ। ପାଠ ପଢ଼ା ଘଣ୍ଟା ପରେ ପ୍ରାୟ ୯ ଟା ରୁ ୯ ଟା ୪୫ ମି. ପର୍ଯ୍ୟନ୍ତ ସ୍ନାନାଦି କର୍ମ ଚ୍ଚଲେ। ଯେଉଁ ଦିନ ଦରୁଆନର ଅନ୍ୟ କାମ ଥାଏ ସେଦିନ ଛାତ୍ରମାନେ ପରସ୍ପରକୁ ସାହାଯ୍ୟ କରି କୂଅଁରୁ ପାଣି ଟାଣି ଗାଧୋଇଥାନ୍ତି। ଏହିପରି ଥରେ ମୁଁ ଓ ଧ୍ରୁବଚରଣ ପରସ୍ପରକୁ ସାହାଯ୍ୟ କରି ଗାଧୋଉଥିବା ବେଳେ ମୁଁ ପ୍ରଥମେ ପାଣି ଟାଣି ତାଙ୍କୁ ଗାଧୋଇବାରେ ସାହାଯ୍ୟ କଲି। ପରେ ସେ ଯେତେବେଳେ ମୋ ପାଇଁ ପାଣି ଟାଣି ମୋ ଉପରେ ଗାଧୋଇବା ପାଇଁ ପାଣି ଢାଳୁ ଥିଲେ ସେତେବେଳେ ପାଣି ବାଲଟି ମୋ ମୁଣ୍ଡରେ ବାଜିଗଲା। ତେଣୁ ସେ ଆତଙ୍କିତ ହୋଇ ଭୟରେ କହି ପକାଇଲେ, "ଅନୁଗ୍ରହ ପୂର୍ବକ ବାଜି ଗଲା।" ତାପରେ ମୁଁ ତାଙ୍କୁ କଣ କହିଲ ବୋଲି ପଚ୍ଚରିବାରୁ ସେ ସେହି ବାକ୍ୟ ପୁଣି ଉଚ୍ଚାରଣ କଲେ। ତାପରେ ମୁଁ ବିରକ୍ତି ପ୍ରକାଶ କରି ଦୋହରାଇବାରୁ ସେ ପ୍ରକୃତିସ୍ଥ ହୋଇ ନିଜ ଭୁଲ୍ ଜାଣି ପାରି 'ହା' 'ହା' କରି jiÒf ö~^ØÛ_ KeÒKjÒf , Request me।" କାରଣ ତାଙ୍କର ପ୍ରକୃତ ଉଦ୍ଦେଶ୍ୟ ଥିଲା "ଅନୁଗ୍ରହ ପୂର୍ବକ କ୍ଷମା ଦେବେ।" ବଦଳରେ ଉପରୋକ୍ତ ବାକ୍ୟ କହି ପକାଇଥିଲେ। ଏହା ଏକ ଉପଭୋଗ୍ୟ ବିଷୟ ନୁହେଁ କି ?

ବରଗଡ଼ର ଜର୍ଜ ହାଇସ୍କୁଲରେ ଦୁଇ ଦିନିଆ ସକାଳୁଆ ସ୍କୁଲ ନିୟମ ବହୁ ଦିନ ପର୍ଯ୍ୟନ୍ତ ଚ୍ଚଲିଥିଲା। ପରେ ଏ ଶତାବ୍ଦୀର ପଞ୍ଚମ ଦଶକରେ କୌଣସି ମଣ୍ଡଳାଧୀଶଙ୍କ ବିଶେଷ ଆଦେଶରୁ ବହୁ ଦିନର ଏହି ପରମ୍ପରାର ଅବସାନ ଘଟିଲା ଓ ସପ୍ତାହରେ ଦିନେ କେବଳ ଶନିବାର ଦିନଟି ସକାଳୁଆ ସ୍କୁଲ ହେଲା। ଦୁଇ ଦିନ ସକାଳୁଆ ସ୍କୁଲ ହେଉଥିଲେ ମଧ୍ୟ ପାଠ ପଢ଼ାରେ କିଛି ବ୍ୟାଘାତ ଘଟୁ ନ ଥିଲା। ଶୁକ୍ରବାର ଦିନ ସକାଳ ସ୍କୁଲ ଓ ସାପ୍ତାହିକ ହାଟ ଦିନ ହେବାରୁ ବହୁତ ଲୋକ ହାଟ କରିବା ଓ ବନ୍ଧୁ ମିଳନ ଉଦ୍ଦେଶ୍ୟରେ ବରଗଡ଼ ଆସନ୍ତି। ମୋର ବାପା, କାକା, ବଡ଼ ବାପାଦି ମଧ୍ୟ ଏ ଦିନ ବରଗଡ଼ ଆସୁଥିଲେ ମୋତେ ଦେଖିବା ପାଇଁ। ଏ ଦିନ ସେମାନେ ମୋ ପାଇଁ ଆଣିଥିବା ଖାଦ୍ୟ ଉପରେ ମୋର ସହପାଠୀ ଓ ଶ୍ରେଣୀ ବନ୍ଧୁମାନଙ୍କ ଏକ ସତର୍କ ଦୃଷ୍ଟି ଥିଲା। କାରଣ ସେମାନେ ସେଥିରୁ କିଛି କିଛି ଭାଗ ପାଉଥିଲେ। ଥରେ ବାପା ଗାଁରୁ, ବଡ଼ ବାପା ତାଙ୍କ ରହୁଥିବା ତୁରୁଙ୍ଗାରୁ ଓ ସାନ

କାକା ତାଙ୍କ ରହୁଥିବା ଗ୍ରାମରୁ ଏପରି ବିଭିନ୍ନ ପ୍ରକାର ଖାଦ୍ୟ ଆଣି ଥାଆନ୍ତି । ଆମେ ସେସବୁକୁ ଆମ ମଧ୍ୟରେ ବାଣ୍ଟି ଖାଉଥିଲୁଁ । ଏପରି ଘରୁ ଖାଦ୍ୟ ପଦାର୍ଥ ଆସିବାରେ ତତ୍କାଳୀନ ଅନ୍ତେବାସୀ ସୁନାମଧନ୍ୟ କାଦୋବାହାଲ ଗୌନ୍ତିଆ ହାରାଧାନ ଦାଶଙ୍କ ପୁତ୍ର ବିନୋଦ ବିହାରୀ ଦାଶଙ୍କ ଘରୁ ବହୁତ ଖାଦ୍ୟ ପଦାର୍ଥ ଆସୁଥିଲା ଓ ତାହା ପ୍ରାୟ ବୋର୍ଡିଂରେ ଅନେକ ପିଲାଙ୍କୁ ଦିଆଯାଉଥିଲା । କାରଣ ସେମାନେ ପ୍ରତିଷ୍ଠିତ ଧନୀ ଲୋକ ଥିଲେ ।

ସେତେବେଳେ ମୋର ବଡ଼ ବାପା କଥା ପ୍ରସଙ୍ଗରେ ଆଲୋଚନା ବେଳେ ସ୍କୁଲ ସମ୍ବନ୍ଧରେ ମତ ଦେଇ କହିଥିଲେ ଯେ ଆମେ ଦିନେ ଏହି ହାଇସ୍କୁଲର ହେ. ମା. ହେବା । ଏହା ଯଦିଓ ସେତେବେଳେ ଅସମୀଚିନ ବା ଆଶାତୀତ ଥିଲା ତଥାପି ତାଙ୍କ ଉଚ୍ଚାଭିଳାଷ ଓ ଦୂରଦୃଷ୍ଟି ଏଥିରୁ ସୂଚିତ ହୁଏ । କାରଣ ତାଙ୍କର କଥାର ଗୁରୁତ୍ୱ ପରେ ସତ୍ୟରେ ପ୍ରତିପାଦିତ ହୋଇଥିଲା । କାରଣ ମୋର ଜନ୍ମ ବେଳର କଥା ଓ ଏ କଥା ପ୍ରକୃତରେ ସତ୍ୟରେ ପରିଣତ ହୋଇଥିଲା । ଆଉ ମଧ୍ୟ ତାଙ୍କ ଏକ ବିଶେଷ ଗୁଣ ଥିଲା ଯେ ସେ ମାଟି ପରୀକ୍ଷା କରି କେଉଁ ଠାରେ କୂଅଁ ଖୋଳିଲେ ପାଣି ମିଳିବ ତାହା ସଠିକ୍ ଭାବେ କହି ପାରୁଥିଲେ । ତାହାର ସତ୍ୟତା ଜଣା ପଡ଼ିଲା ଡାଙ୍ଗ ନିବାସୀ ଲଳିତ ମେହେରଙ୍କ କୂଅଁ ଖୋଳିବାରେ । ଯେହେତୁ ସେ ଗାଁରେ ଏକାଧିକ ବାର ବିଭିନ୍ନ ସ୍ଥାନରେ କୂଅଁ ଖୋଳି ଅକୃତକାର୍ଯ୍ୟ ହୋଇଥିଲେ ଓ ଲଳିତ ବାବୁଙ୍କ ଅନୁରୋଧରେ ସେ ଗାଁକୁ ଯାଇ ଠିକ୍ ଜାଗା ଦେଖାଇଲେ ଓ ସେଥିରେ ଏକ କୂଅଁ ଖୋଳାଯାଇ ପାଣି ମିଳିଲା । ଏଥିରୁ ତାଙ୍କର କଥାର ଗୁରୁତ୍ୱ ଓ ନିଶ୍ଚିତତାର ପୂର୍ଣ୍ଣ ବିଶ୍ୱାସ ହୁଏ ।

ମୁଁ ନବମ ଶ୍ରେଣୀ ପଢିବା ବେଳେ ଅର୍ଥାତ୍ ୧୯୪୨ ସାଲରେ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ସାରା ଦେଶରେ ଛାତ୍ର ଆନ୍ଦୋଳନର ବହ୍ନି ଜଳିଗଲା । ତା'ର ପ୍ରଭାବ ଆମ ବିଦ୍ୟାଳୟରେ ପଡ଼ିଥିଲା । ଏପରିକି ବିଦ୍ୟାଳୟକୁ ପାଠପଢ଼ି ନ ଯିବା ଛଡ଼ା ଅନେକ ବିପ୍ଳବାତ୍ମକ କାର୍ଯ୍ୟରେ ଛାତ୍ରମାନେ ଅଂଶ ଗ୍ରହଣ କରିଥିଲେ । ଏପରିକି ଆମ ସ୍କୁଲ ଅଫିସ୍‌ର କାଗଜପତ୍ର ପୋଡ଼ା ଯାଇଥିଲା । ଏପରି ଛାତ୍ର ଆନ୍ଦୋଳନର ନେତା ରୂପେ ପ୍ରଥମେ ରାଜେନ୍ଦ୍ର ପଣ୍ଡା ଓ ସେତେବେଳେ ଗଣନାଥ ପ୍ରଧାନ, ମକରଧ୍ୱଜ ପ୍ରଧାନ, ଘନଶ୍ୟାମ ପୁରୋହିତ, ଦୟାଲାଲ ଯୋଷୀ ଆଦି ଅଗ୍ରଣୀ ଥିଲେ । ଏମାନଙ୍କୁ ବୁଝାଇବା ପାଇଁ ନିଜେ ତତ୍କାଳୀନ S.D.O. S.J. Majumdar ଆମ ବୋର୍ଡିଂକୁ ଆସିଥିଲେ ଓ ଯେଉଁମାନେ ସେତେବେଳେ ଯୁକ୍ତିତର୍କ କରି ଆଲୋଚନା କରିଥିଲେ ତାଙ୍କୁ କାରାବରଣ କରିବାକୁ ପଡ଼ିଥିଲା ।

ପୋଲିସ କୌଣସି କାର୍ଯ୍ୟାନୁଷ୍ଠାନ କରିବା ଆଗରୁ କେତେକଙ୍କ ଅଭିଭାବକମାନେ ତାଙ୍କୁ ଅନ୍ୟତ୍ର ପଠାଇ ଦେଇଥିଲେ। ଏ ବିଷୟରେ ପ୍ରଧାନ ଶିକ୍ଷକଙ୍କୁ ପଗ୍ଭରିବାରେ ସେ କୌଣସି ଛାତ୍ର ବିରୋଧୀ ମତ ପ୍ରଦାନ କରି ନ ଥିଲେ। ଏପରି ଅନେକ ସରକାରୀ କର୍ମଗ୍ଭରୀ ସେତେବେଳେ ବ୍ରିଟିଶ ଶାସନରେ ଅତିଷ୍ଠ ହୋଇ ସ୍ୱାଧୀନତା ପାଇବାର ସ୍ୱପ୍ନ ଦେଖୁଥିଲେ। ତେଣୁ ସ୍ୱାଧୀନତା ସଂଗ୍ରାମୀ ଛାତ୍ର ବା ଅନ୍ୟାନ୍ୟ ସରକାରୀ କର୍ମଗ୍ଭରୀ କର୍ମରେ ତାଙ୍କର ପ୍ରତ୍ୟକ୍ଷ୍ୟ ସହଯୋଗ ନ ଥିଲେ ମଧ ଜାଣିଶୁଣି ନିର୍ଲିପ୍ତ ରହୁଥିଲେ। ଏପରି କେତେକ ନେତା, ସରକାରୀ ଗ୍ଭକିରିଆ ତଥା ପ୍ରତ୍ୟକ୍ଷ ବିପ୍ଲବୀଙ୍କ ଦ୍ୱାରା ମହାତ୍ମା ଗାନ୍ଧୀଙ୍କ ଅକ୍ଳାନ୍ତ ପରିଶ୍ରମର ଫଳସ୍ୱରୂପ ସ୍ୱାଧୀନତା ପ୍ରାପ୍ତିର ରୂପରେଖ ସୁଗମ ହୋଇଗଲା।

୧୯୪୩ ସାଲରେ ଗ୍ଭରିଆଡ଼େ ଗୁଜବ ଓ ସମ୍ବାଦ ପ୍ରଗ୍ଭରିତ ହେଲା ଯେ ଦେଶର ବିଭିନ୍ନ ସ୍ଥାନରେ ଅଶୁଭ ଲକ୍ଷଣ ଦେଖାଗଲା, ମନ୍ଦିର ଉପରେ ପେଗ୍ଭ ବସିଲା, ଅସମୟରେ ଅଶୁଭ ଲକ୍ଷଣ ଓ ବିଧିମାନ ଦେଖାଗଲା।

ଆଗରୁ ମାଳିକାରେ ଅଚ୍ୟୁତାନନ୍ଦ ଦାସ ପ୍ରକାଶ କରିଥିଲେ ଯେ ୧୯୪୩ ଅଗଷ୍ଟ ୧ ତାରିଖରେ କଳିଯୁଗ ଶେଷ ହେବ ଓ ସତ୍ୟଯୁଗର ଆରମ୍ଭ ହେବ। ତେଣୁ ଦେଶର ସବୁଆଡ଼େ ଭଜନ, କୀର୍ତ୍ତନ, ପୂଜା, ଯଜ୍ଞ ଓ ହୋମ ଆଦି କରି ପୃଥିବୀ ଶାନ୍ତି ଉପକ୍ରମମାନ ଗ୍ଭଲିଲା। ବିଭିନ୍ନ ଦୂରଦୂରାନ୍ତରେ କାର୍ଯ୍ୟରତ ବ୍ୟକ୍ତିମାନେ ନିଜ ନିଜ ଗ୍ରାମକୁ ପିତାମାତାଙ୍କ ନିକଟକୁ ଆସିଲେ। ଆମେ ମଧ ସ୍କୁଲରୁ ଛୁଟି ନେଇ ଜୁଲାଇ ମାସ ଶେଷରେ ନିଜ ଗ୍ରାମକୁ ଗଲୁଁ। ୩୧ ତାରିଖ ରାତିରେ ଦେଶ ସାରା ନାମ, ଯଜ୍ଞ, ଭଜନ, କୀର୍ତ୍ତନରେ ଲୋକେ ଉଜାଗର ରହିଲେ। ମୁଁ ମଧ ବିଳମ୍ବିତ ରାତ୍ରରେ ଶୋଇ ପରଦିନ କଳ୍ପିତ ଅଘଟଣକୁ ଅପେକ୍ଷା କରି ଶୋଇ ପଡ଼ିଲି। କିନ୍ତୁ ଅତି ଆଶ୍ଚର୍ଯ୍ୟର ବିଷୟ ଯେ କୌଣସି ଅଘଟଣ ନ ଘଟି ସବୁ ଦିନ ପରି ସକାଳୁ ଉଠି ଆମେ ନିଜ ନିଜ କର୍ମରେ ବ୍ୟସ୍ତ ରହିଲୁଁ। ପରଦିନ ଛୁଟି ପରେ ବିଦ୍ୟାଳୟକୁ ପଢ଼ିବାକୁ ବରଗଡ଼ ଆସିଲୁ। କଳିଯୁଗ ଶେଷ ଭାବନା ସମସ୍ତଙ୍କ ମନରୁ ଦୂର ହେଲା। ବୋଧ ହୁଏ ଦେଶବାସୀଙ୍କ ନିଷ୍ଠାପର ପୂଜାର୍ଚ୍ଚନା ଓ ନାମ ସଂକୀର୍ତ୍ତନର ଫଳ ହେତୁ କୌଣସି ଅଘଟଣ ଘଟିଲା ନାହିଁ।

୧୯୪୨ ସାଲ ପରେ ୪୩ ସାଲ ଆଡ଼କୁ ଦେଶରେ ଇଂଲଣ୍ଡ, ଆମେରିକା, ଜର୍ମାନୀ ଯୁଦ୍ଧର ପ୍ରଭାବ ହେତୁ ଦେଶରୁ ଖାଦ୍ୟ ରପ୍ତାନୀ ହେତୁ ଦେଶରେ ଖାଦ୍ୟାଭାବ ପରିଲକ୍ଷିତ ହେଲା। ଖାଦ୍ୟର ଦରଦାମ ବଢ଼ିବାକୁ ଲାଗିଲା। ତେଣୁ ଦେଶରେ ସରକାର ଯୋଗାଣ ବିଭାଗ ସୃଷ୍ଟି କଲେ। 'Food Worker'

କାର୍ଯ୍ୟର ଚାହିଦା ବଢ଼ିଲା । ତାଙ୍କ ଦରମା ଅଧିକ ହେତୁ କେତେକ ଶିକ୍ଷକ ଶିକ୍ଷକତା ଛାଡ଼ି ସେଥିରେ ଯୋଗ ଦେଲେ । କାରଣ ଶିକ୍ଷକର ଯୋଗ୍ୟତା 'Food Worker'ର କାମ ପାଇଁ ଅନୁକୂଳ ଥିଲା । ଖାଦ୍ୟ ଜିନିଷ କିରାସିନି, ଚିନି ଆଦି ବ୍ୟବହାର୍ଯ୍ୟ ସାମଗ୍ରୀକୁ ଯାବ୍‌ଦା ବା control କରାଗଲା । ବିଭିନ୍ନ କର୍ମଚାରୀ ରଖାଗଲା । ତେଣୁ ଶିକ୍ଷିତ ଯୁବକମାନେ ସରକାରୀ ଚାକିରୀ କରିବାର ସୁଯୋଗ ପାଇଲେ । ଖାଦ୍ୟ ଦ୍ରବ୍ୟ ମଧରେ ଚାଉଳ, ଚିନି ଓ ଅନ୍ୟାନ୍ୟ ପଦାର୍ଥମାନଙ୍କ ଭିତରେ ଲୁଗା, କିରୋସିନି ଆଦି ଉପରେ କଡ଼ା ଆଇନ ଲାଗୁ କରାଗଲା । ସରକାରଙ୍କ ଆଦେଶ ମୁତାବକ ଉକ୍ତ ଜିନିଷର ବିକ୍ରି କରାଗଲା । ତେଣୁ ଲୋକଙ୍କ ସୁବିଧା ପାଇଁ ସହରରେ ଓ ଗ୍ରାମମାନଙ୍କରେ କେତେକ ବଛା ବଛା ଦୋକାନୀ ନିଯୁକ୍ତ କରାଗଲା । ସେମାନେ ସରକାରୀ ଗୋଦାମରୁ ଜିନିଷ ଆଣି ସରକାରୀ ଦରରେ ଉକ୍ତ ଜିନିଷ ଗୁଡ଼ିକ ବିକ୍ରୟ କଲେ । ଏପରିକି ସହରରେ ପ୍ରତି ପରିବାରର ମୁଖ୍ୟ ବ୍ୟକ୍ତି ଓ ଅନୁଷ୍ଠାନମାନଙ୍କୁ ଜିନିଷ ଯୋଗାଇବା ପାଇଁ ଖାଉଟି କାର୍ଡ (Ration card)ର ପ୍ରଚଳନ କରାଗଲା । ତାକୁ ଦେଖାଇ ଲୋକେ ନିଜ ଚାହିଦା ମୁତାବକ ନିୟମାନୁଯାୟୀ ଖାଉଟି ଜିନିଷ କିଣିବାକୁ ପାଇଲେ । ସେହି ଆଇନରେ ସ୍କୁଲ, କଲେଜର ଛାତ୍ରାବାସ ଗୁଡ଼ିକ ଚାଉଳ, ଚିନି, କିରୋସିନି, ଗହମ, କପଡ଼ା ଆଦି ସୁଲଭ ଦରରେ କିଣିବାକୁ ପାଇଲେ । ବୋର୍ଡିଂ ପାଇଁ ଆସୁଥିବା କିରୋସିନି ତେଲକୁ ଟ୦। (୨୫ ପଇସା)ରେ ମିଳୁଥିଲା । ତେଣୁ ଯଦି ସୁବିଧାରେ କିଛି କିରୋସିନି କିଣିବାର ସୁଯୋଗ ପାଉଥିଲି ତାକୁ କିଣି ଗୋଟିଏ ବଡ଼ ଟିଣରେ ସାଇତି ରଖୁଥିଲି । କୌଣସି ଛାତ୍ର ନିଜର ପଢ଼ିବାର ସୁବିଧା ପାଇଁ ବିଭାଗୀୟ ସରକାରୀ ଆଦେଶ (Special permit) ଦ୍ୱାରା ୨/୪ ବୋତଲ ବା ଆଉ ଅଧିକ ସରକାରୀ ଦରରେ କିଣିବାକୁ ମିଳୁଥିଲା ସେସବୁ ଉଦ୍‌ବୃତ୍ତ ତେଲ ବଡ଼ ଟିଣରେ ରଖାଯାଇ ପୂର୍ଣ୍ଣ ହୋଇଗଲେ, ସୁବିଧା ଦେଖି ଗାଁରୁ ଲୋକ ଆସିଲେ ଘରକୁ ପଠାଇ ଦେଉଥିଲି । ମାଆ ଲୋକଙ୍କ ଚାହିଦା ଅନୁସାରେ ଗାଁରେ ପ୍ରଚଳିତ ମୂଲ୍ୟରେ ବିକ୍ରୟ କରି ଦୁଇ ପଇସା ରୋଜଗାର କରୁଥିଲେ । ଏହିପରି ଭାବେ ବର୍ଷକୁ ଏକାଧିକ ବାର ଟିଣ ଟିଣ କରି କିରୋସିନି ସଂଗ୍ରହ କରି ଘରକୁ ପଠାଉଥିଲି । ଗୋଟିଏ ବଡ଼ ଟିଣରେ ପ୍ରାୟ ୨୪/୨୫ ବୋତଲ ତେଲ ଧରୁଥିଲା । ଅବଶ୍ୟ ଏହା ଏକ ନିୟମ ବିରୁଦ୍ଧ କାମ - ଆବଶ୍ୟକତା ଦୃଷ୍ଟିରୁ ଏହା କରିବାକୁ ପଡୁଥିଲା । ବଡ଼ ବେପାରୀମାନେ ସୁବିଧା ସୁଯୋଗ ଉଣ୍ଡି ଚିନି, ଗହମ, କିରୋସିନି, କପଡ଼ା ଆଦି ଚଢ଼ା ଦରରେ ଗାଁରେ ଦୋକାନୀମାନଙ୍କୁ ବିକ୍ରି କରୁଥିଲେ । ଏହି ଦିନ ଠାରୁ କଳାବଜାର ଧନ୍ଦାର ପ୍ରାଦୁର୍ଭାବ ବଢ଼ିଲା କହିଲେ

ଅତ୍ୟୁକ୍ତି ହେବ ନାହିଁ।

ବୋର୍ଡିଂରେ ରହୁଥିବା ଛାତ୍ରମାନେ ଘରୁ ପ୍ରତିମାସ ଚାଉଳ ଆଣି ମେସ୍‌କୁ ଯୋଗାନ୍ତି। ଯେଉଁମାନେ ଧନୀ ଘରର ପିଲା, ତାଙ୍କ ଘରୁ ଆଣିଥିବା ଚାଉଳ ମାପିବା ବେଳେ ଆବଶ୍ୟକୀୟ ପରିମାଣରୁ ବେଶୀ ହେଉଥିଲା। ତାକୁ ମେସ୍‌କୁ ଦିଆଯାଇ ତାର ପ୍ରଚଳିତ ମୂଲ୍ୟ ହିସାବ କରାଯାଉଥିଲା। କିନ୍ତୁ ୧୯୪୨ ପରେ ୪୩ ସାଲରେ ଚାଉଳର କଟକଣା (control) ହେତୁ ଓ ଭଲ ଚାଉଳର ଦାମ୍ ବଜାରରେ ଅତ୍ୟଧିକ ଥିବା ହେତୁ ସେହି ଉଦ୍‌ବୃତ୍ତ ଚାଉଳକୁ ପରିଶେଷରେ ତାକୁ ଠୁଳ କରି ମୋର ପରିଚିତ ମାରୱାଡ଼ୀ ମହାଜନକୁ ଦେଲେ କିଛି ଅଧିକ ମୂଲ୍ୟ ମିଳୁଥିଲା। ସଂପୃକ୍ତ ଛାତ୍ରମାନଙ୍କୁ ଚାଉଳର ଉଚିତ ମୂଲ୍ୟ ଦେଇ ଅଧିକ ମୂଲ୍ୟକୁ ଆମ ନିଜର ଖର୍ଚ୍ଚ ରୂପେ ବ୍ୟବହାର କରାଯାଉଥିଲା। ଧୀରେ ଧୀରେ ଏ ବିଷୟ ସମସ୍ତେ ଜାଣିଲେ ଓ ମେସ୍‌ର ସଂପୃକ୍ତ ମେନେଜର ମାନେ ଉକ୍ତ ମିଳୁଥିବା ସରକାରୀ ଦରର ଖାଦ୍ୟକୁ ଅଧିକ ଦରରେ ବିକ୍ରୟ କରି ମେସ୍‌ର ଅନ୍ୟାନ୍ୟ ଖର୍ଚ୍ଚ ରୂପେ ବା ଅଧିକ ସୁବିଧା ପାଇଁ ବିନିଯୋଗ କରୁଥିଲେ। ବିଶେଷତଃ ବିଦ୍ୟାଳୟର ଛୁଟି ମାସରେ ଛାତ୍ରାବାସର ଛାତ୍ରମାନେ ଗାଁକୁ ଚାଲି ଯାଉଥିଲେ। ସେ ମାସର control ଜିନିଷକୁ ସମସ୍ତଙ୍କ ଜ୍ଞାତସାରରେ ଅର୍ଥାତ୍ ଛାତ୍ରାବାସର ତତ୍ତ୍ୱାବଧାରକଙ୍କ ଜରିଆରେ ତା'ର ଉଦ୍‌ବୃତ୍ତ ମୂଲ୍ୟ ହିସାବ ରଖି ସ୍କୁଲ ଖୋଲିବା ପରେ ମେସ୍‌ରେ ହିସାବ କରାଯାଉଥିଲା। କେତେକ ସମୟରେ ତା'ର ସଠିକ ହିସାବ ମେନେଜରମାନେ, ଶିକ୍ଷକମାନେ ବିଶେଷ କରି ମଫସଲ ଅଞ୍ଚଳର, ଦେଇ ନ ପାରି ଅପଦସ୍ତ ହେଉଥିଲେ।

ସାଧାରଣତଃ ମେସ୍‌ର ମେନେଜରମାନେ ଖାଇବା ବେଳେ ପୂଝାରୀ ଠାରୁ ଅଧିକତର ସୁବିଧା ପାଉଥିଲେ। କାଳ, ପାତ୍ର ଜାଣି ମଣିଷ ନିଜର ସ୍ୱାର୍ଥ ହାସଲ କରିବାରେ ପଛାଏ ନାହିଁ। ଅନେକ କ୍ଷେତ୍ରରେ ଧନୀ ଛାତ୍ରମାନେ ପୂଝାରୀକୁ କିଛି ପଇସା ଦେଇ ନିଜର କୌଣସି ଆଗନ୍ତୁକ ବନ୍ଧୁଙ୍କ ପରିଚର୍ଚ୍ଚା ସକାଶେ ବା ନିଜର ମନ ତୃପ୍ତି ପାଇଁ (extra) ଅଧିକ ତରକାରୀ, ଖଟା, ଭଜା ବା ମାଛ ମାଂସର ଆୟୋଜନ କରାଇଥାନ୍ତି। ସେଥିପାଇଁ ପୂଝାରୀ ବେଳେ ବେଳେ ଛୁଟିରେ ଗଲାବେଳେ ପର୍ବପର୍ବାଣିରେ ସଂପୃକ୍ତ ଛାତ୍ରଙ୍କଠାରୁ ପୁରସ୍କାର ପାଇଥାନ୍ତି। ମୋର ସାଙ୍ଗମାନେ ଉଚ୍ଚ କୋଟୀ ଦମ୍ପତିଙ୍କ ସନ୍ତାନ ଥିଲେ। ସେମାନେ କେବେ କେବେ ତାଙ୍କ ଜଳଖିଆ ଖାଇବା ବେଳେ ମୋତେ ସାଙ୍ଗରେ ବସ୍ତିର ହଲୁଆଇ ଦୋକାନକୁ ବା ବୋର୍ଡିଂକୁ ମୋହନ ଗୁଡ଼ିଆ ଜଳଖିଆ ବିକ୍ରି କରିବାକୁ ଆସିଲେ ତାଙ୍କ ଖର୍ଚ୍ଚରେ ଖୁଆଉଥିଲେ। ଅବଶ୍ୟ ଏହାର ଆଉ ଏକ କାରଣ ଥିଲା ଯେ ସେମାନେ ପାଠରେ

ମୋ ଠାରୁ ଟିକିଏ କମ୍ ଜାଣୁଥିଲେ ଓ ମୁଁ ତାଙ୍କୁ ସମୟ ସମୟରେ ସାହାଯ୍ୟ କରୁଥିଲି । ଏପରି ଦାନ ପ୍ରତିଦାନର ବିନିମୟ ତତ୍କାଳୀନ ଛାତ୍ରମାନଙ୍କ ମଧ୍ୟରେ ପ୍ରଚଳିତ ଥିଲା । ମୋର ବନ୍ଧୁମାନେ ହେଲେ ପ୍ରବୋଧ ପଟ୍ଟନାୟକ, ଶିବପ୍ରସାଦ ମିଶ୍ର (୰ ରାଘବ ମିଶ୍ରଙ୍କ ଜ୍ୟେଷ୍ଠ ପୁତ୍ର) ।

ମୋର ଗୁରୁଦେବଙ୍କ ପୁତ୍ର ଯତୀନ୍ଦ୍ର ସାହୁ ଭିକ୍ଟୋରିଆ ବୃତ୍ତି ପାଇ ଆସି ଆମ ସ୍କୁଲର ୬ଷ୍ଠ ଶ୍ରେଣୀରେ ସିଧା ନାମ ଲେଖାଇଲେ । କାରଣ ସେ ଘରେ ବାପାଙ୍କ ଠାରୁ ଇଂରାଜୀ ଶିକ୍ଷା କରି ୫ମ ଶ୍ରେଣୀ ସ୍ତରୀୟ ଇଂରାଜୀ ଜ୍ଞାନ ହାସଲ କରି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ତାଙ୍କ ପୂର୍ବରୁ ଆମ ଗାଁ ନିକଟସ୍ଥ ଗଂଝିଆ ଟିକିରା ପବିତ୍ର ପ୍ରଧାନ ମଧ୍ୟ ମୋ' ପରେ ଆସି ଆମ ସ୍କୁଲରେ ପଢ଼ିଲେ । ଖୁଣ୍ଟପାଲି ନିକଟସ୍ଥ ଡୁରୁଙ୍ଗାର ରାଧାକାନ୍ତ ସାହୁ ରେମଣ୍ଡା ମିଡିଲ ଉର୍ଣ୍ଣାକୁଲାର ସ୍କୁଲରୁ ଆସି ୭ମ ଶ୍ରେଣୀରେ ନାମ ଲେଖାଇ ପଢ଼ିଲେ । ଏମାନେ ସମସ୍ତେ ମୋ ଠାରୁ ଉଚ୍ଚ ଶ୍ରେଣୀରେ ପଢୁଥିଲେ । ମୁଁ ପାଠରେ ଅଗ୍ରଣୀ ଥିବାରୁ ସେମାନଙ୍କ ଭଲମନ୍ଦରେ ମୋତେ ବୁଝିବାକୁ ପଡୁଥିଲା । ମୋର ଗୁରୁଙ୍କ ପୁତ୍ର ଯତୀନ୍ଦ୍ରଙ୍କ ଖର୍ଚ୍ଚ ପାଇଁ ଟିକିଏ ବେପରୁଆ ଥିବାରୁ ଗୁରୁଦେବ ତା'ର ବିଷୟ ବୁଝିବା ପାଇଁ ମୋତେ ଜିମା ଦେଇଥିଲେ । ସମୟ ବିଶେଷରେ ତାଙ୍କୁ ଖର୍ଚ୍ଚରେ ବାରଣ କରିବା ହେତୁ ସେ ମୋ ଉପରେ ଅସନ୍ତୁଷ୍ଟ ଥିଲେ କାରଣ ତାଙ୍କ ଭଲମନ୍ଦ ସବୁ ଗୁରୁଦେବଙ୍କୁ ଜଣାଇ ଦେଉଥିଲି । ଗୁରୁଦେବ ମୋତେ ଅତିଶୟ ଭଲ ପାଉଥିବାରୁ ଓ ମୋର ଚ୍ଛଲିଚଳଣ ତାଙ୍କୁ ପସନ୍ଦ ହେଉଥିବାରୁ ମୋର କଥା ମାନି ଚଳିବାକୁ ତାଙ୍କ ପୁତ୍ରକୁ ସବୁବେଳେ ବୁଝାଉଥିଲେ । ଏହା ତାଙ୍କୁ ସେତେବେଳେ ଅସହ୍ୟ ହେଉଥିବ । ଅବଶ୍ୟ ପରେ ପରେ ତା'ର ଉପାଦେୟତା ବୁଝି ନିଜ ଭୁଲ୍ ସ୍ୱୀକାର କରୁଥିଲେ । ଏବେ ପରିଣତ ବୟସରେ ତାର ଅବତାରଣା କରି ଯତୀନ୍ଦ୍ର ଭାଇ ତାହା ସ୍ୱୀକାର କରନ୍ତି ।

ବୋଧ ହୁଏ ୧୯୪୨ ମସିହାରେ ନବମ ଶ୍ରେଣୀରେ ପଢୁଥିବା ବେଳେ ଥରେ ଶ୍ରାବଣ ଭାଦ୍ରବ ମାସରେ ମୁଁ ଜ୍ୱରରେ ପୀଡ଼ିତ ହେଲି । ପ୍ରାୟ ୨ ସପ୍ତାହ କାଳ ଶଯ୍ୟାଶାୟୀ ହୋଇଥିଲି । ଗୃହର ସମସ୍ତେ ବୈଦ୍ୟ ଓ ଚିକିତ୍ସାକାରୀଙ୍କୁ ଡକାଇ ଚିକିତ୍ସା କରାଗଲା । ଆମ ଗାଁର ବୈଦ୍ୟ ପ୍ରଭାକର ସାହୁ, ସରସରାର ଆମ ସମ୍ପର୍କୀୟ ମୃତ୍ୟୁଞ୍ଜୟ ମିଶ୍ର, ମୋର ମାଉସୀଙ୍କ ଶ୍ୱଶୁର, ଖୁଣ୍ଟପାଲି ଡୁରୁଙ୍ଗାର ଶାଖା ଦାଶ, ଲେନ୍ଦାର ପିଉସା ଧନଞ୍ଜୟ ମିଶ୍ର । ଏମାନଙ୍କ କାହାରି ଚିକିତ୍ସା ଫଳପ୍ରଦ ହେଲା ନାହିଁ । ଶେଷରେ ଡବଲଙ୍ଗ ଗ୍ରାମକୁ ବଳଦ ଗାଡ଼ି ପଠାଯାଇ ଜଣେ ବୈଦ୍ୟଙ୍କୁ ମଧ୍ୟ ଅଣାଯାଇଥିଲା । ଏସବୁ ବୈଦ୍ୟ ସିଦ୍ଧହସ୍ତ କିନ୍ତୁ ମୋ ଉପରେ ଚିକିତ୍ସା କାଟୁ କଲା

ନାହିଁ। ପରେ ଖୁଣ୍ଟପାଲିର ରାଜବୈଦ୍ୟ ଉଗ୍ରସେନ ପୁଝାରୀଙ୍କୁ ଡକାଯାଇ ମଧ୍ୟ ବିଫଳ ହେଲେ। ଜ୍ୱର ସାଂଘାତିକ ନ ଥିଲା। ଦେହରୁ ଉତାପ ସଂପୂର୍ଣ୍ଣ ଭାବେ ଉପଶମ ହେଉ ନ ଥିଲା। ତେଣୁ ଜ୍ୟୋତିଷ ଡକାଯାଇ ଗ୍ରହଶାନ୍ତିର ବ୍ୟବସ୍ଥା କରିବାର ସଂକଳ୍ପ କଲେ। ଏପରି ସମସ୍ତେ ଚିନ୍ତାଶୀଳ ଅବସ୍ଥାରେ ଥିବା ବେଳେ ଦିନେ ରାତିରେ ମୋତେ ଏକ ଦିବ୍ୟ ସ୍ୱପ୍ନ ଦର୍ଶନ ହେଲା। ସ୍ୱପ୍ନଟି ଥିଲା ଯେ, ଶୋଇଲା ପୂର୍ବରୁ ଈଶ୍ୱରଙ୍କୁ ନାମ ନେଇ ଶୋଇଲି। ମୁଁ ସୁପ୍ତ ଅବସ୍ଥାରେ ଦେଖିଲି ଏକ ଚତୁର୍ଭୁଜ ଧାରୀ ଜ୍ୟୋତିର୍ମୟ ପୁରୁଷ ଅପୂର୍ବ ବେଶଭୂଷାରେ ସଜ୍ଜିତ ହୋଇ ଚତୁର୍ଦ୍ଧାମୂରତି ଶଙ୍ଖ, ଚକ୍ର, ଗଦା, ପଦ୍ମ ଧାରଣ ପୂର୍ବକ ଅଷ୍ଟାଙ୍ଗ ଆଭୂଷଣ ସହ ଏକ ତେଜୀୟାନ ମୁକୁଟ ପରିଧାନ କରିଥିଲେ। ସେ ମୋ ଆଗରେ ଉଭାସିତ ହୋଇ ମୋତେ ନିଦରୁ ଉଠାଇ କହିଲେ, “ଉଠ ! ମୋ ସଙ୍ଗରେ ସ୍ୱର୍ଗକୁ ଚ୍ୱଲ।” ତାଙ୍କର ଏହି ବାକ୍ୟରେ ମୋର ନିଦ ଚଟ୍‌କିନା ଭାଙ୍ଗି ଗଲା ଓ ମୁଁ ଉଠି ସମସ୍ତଙ୍କୁ ଉଠାଇ ମୋ ସ୍ୱପ୍ନର ବର୍ଣ୍ଣନା କଲି। ଏହା ଶୁଣି କିଏ କେତେ ପ୍ରକାର ଅର୍ଥ କରି ଆନନ୍ଦ ଓ ବିଷାଦର ମିଶ୍ରଭାବ ପ୍ରକାଶ କଲେ। କାରଣ ଜୀବିତାବସ୍ଥାରେ ସ୍ୱର୍ଗକୁ ଯିବାର କୋଉଠି ଜଣା ନାହିଁ। ତେଣୁ ଏହାର କୁଫଳ ଆଶଙ୍କା କରି ଏପରି ଚିନ୍ତା କରିଥିଲେ। କିନ୍ତୁ ସୁଖର କଥା ପରଦିନ ସକାଳୁ ଉଠିଲା ବେଳକୁ ମୋର ଦେହର ତାତି ନ ଥିଲା ଅର୍ଥାତ୍ ଜ୍ୱର ସଂପୂର୍ଣ୍ଣ ଉପଶମ ଘଟିଲା। ଧୀରେ ଧୀରେ ମୁଁ ଆରୋଗ୍ୟ ଲାଭ କରି ପୂର୍ବ ସ୍ୱାସ୍ଥ୍ୟ ଫେରି ପାଇଲି। ସେହି ସ୍ୱପ୍ନର ଅନୁଭୂତି ମନେ କଲେ ଏବେ ମଧ୍ୟ ମନରେ ପରମାନନ୍ଦ ଜାତ ହୁଏ। ଧନ୍ୟ ଈଶ୍ୱରଙ୍କ ଲୀଳା ସତେ ! କେତେ ଅନୁପମ ଓ ଅନିର୍ବଚନୀୟ !

ମୋର ଏହି ଅସୁସ୍ଥତାର ଦୀର୍ଘତ୍ୱ ହେତୁ ଜ୍ୟୋତିଷ ଡକାଇ ଗଣନା କରାଇ ଗ୍ରହରିଷ୍ଟ ଶାନ୍ତିର ବିଧାନ ପାଇଁ ଆୟୋଜନ କଲେ। କାରଣ ସେତେବେଳେ ସେମାନେ ଗଣନା କରି ଜାଣିଲେ ଯେ ମୋର ଷୋଡ଼ଶ ବର୍ଷରେ ଏକ ସାଂଘାତିକ ମରଣୋନ୍ମୁଖୀ ଘାତ ଅଛି। ତାର ନିରାକରଣ ପାଇଁ ଜପ, ହୋମ, ଦାନ, ବେଢ଼ା ବୁଲା, ସତ୍ୟନାରାୟଣ ପୂଜା ବ୍ରତ ଆଦିର ଏକାନ୍ତ ପ୍ରୟୋଜନ। ତେଣୁ ଦାନରେ ମେଣ୍ଢା ଦାନ, ଗୋବର ଦାନ, ସୁବର୍ଣ୍ଣ ଦାନ, ଲୌହ, ତୈଳ ଦାନର ଅତି ପ୍ରୟୋଜନ। ଦୁଃଖଦ ସମୟର ଅବ୍ୟବହିତ ପୂର୍ବରୁ ଏହି ଜପ, ହୋମ, ଦାନାଦି କରାଗଲା।

ମୋର ଆରୋଗ୍ୟ ପର ଠାରୁ ମୋର ମାଆ ବର୍ଷାଧିକ କାଳ ଶନିବାର ବେଢ଼ାବୁଲି ବଟ, ଅଶ୍ୱତ୍ଥ ବୃକ୍ଷ ପୂଜା କଲେ। ସେହି ଦିନ ଠାରୁ ପ୍ରତି ସଂକ୍ରାନ୍ତି ଦିନ ଝାଡ଼େଶ୍ୱର ମନ୍ଦିରରେ ରୁଦ୍ରାଭିଷେକ ଜପ କରାଯାଇ ସେଠାରୁ ଘରକୁ ଆସି

ସତ୍ୟନାରାୟଣ ପୂଜା କରାଯାଇଥିଲା । ଏହି ସବୁର ଦାୟିତ୍ୱ ସରସରାର ଆମ ପୁରୋହିତ ୰ ଶ୍ୟାମସୁନ୍ଦର ପଣ୍ଡାଙ୍କୁ ଅର୍ପଣ କରାଯାଇଥିଲା । ୧ ବର୍ଷ ଉକ୍ତ ଶିବ ପୂଜା ଓ ସତ୍ୟନାରାୟଣ ପୂଜା ୧୯୪୩ ସାଲ କାର୍ତ୍ତିକ ପୂର୍ଣ୍ଣମୀରେ ପରିସମାପ୍ତି ଘଟିଲା । ଆମର ପରିବାର ତାଙ୍କ ଏକମାତ୍ର ଆଦରର ପୁତ୍ର ପାଇଁ ନିଜ ଶକ୍ତି ମୁତାବକ କର୍ତ୍ତବ୍ୟ ସଂପାଦନ କରି ପରିତୋଷ ଲାଭ କଲେ । ପ୍ରକାଶ ଥାଉ କି ଏ ମଧରେ ବଡ଼ ବାପା ରୁଦ୍ରାଭିଷେକ କରି ଏକ ପୁଅ ପାଇଥିଲେ ୧୯୩୨ରେ । ବୋଧ ହୁଏ ସେହି ସମୟରେ ମୋର ସୋହେଲା ପିଉସୀଙ୍କ ମଧ ଏକ ପୁତ୍ର ଜନ୍ମ ହେଲା । ସେମାନେ ହେଲେ ଲୋକନାଥ ଦାଶ ଓ ହରିବୋଲ ଦେବତା ।

ହାଇସ୍କୁଲ ପଢ଼ିବା ଶେଷ ଦୁଇ ବର୍ଷ ମଧରେ ବରଗଡ଼ରେ ନୂତନ ହୋଇ ଚଳଚ୍ଚିତ୍ର ପ୍ରଦର୍ଶନ କରାଗଲା । ସେତେବେଳର ସିନେମାର ପ୍ରେକ୍ଷାଳୟଟି ଅଧୁନା ସ୍ୱର୍ଗତ ସେବାରାମ ଫସାରୀଙ୍କ ଅଟ୍ଟାଳିକା ପାର୍ଶ୍ୱସ୍ଥ ସ୍ଥାନ ଓ ଡାକ୍ତର ଦୟାନନ୍ଦ ଫସାରୀଙ୍କ ଡାକ୍ତରଖାନା । ଏକ ଟିଣର ଛାତ ବିଶିଷ୍ଟ ବଡ଼ ଲମ୍ବା କୋଠରୀ ଥିଲା ଓ ଗୋଟିଏ ପଟେ ସିନେମା ମେସିନ ଓ ଅନ୍ୟ ପଟେ ଧଳା ପରଦା ଥିଲା । ସେତେବେଳେ ସିନେମାର ଟିକଟ ପ୍ରାୟ ୧୨, ୨୫ ଓ ୫୦ ପଇସା ଥିଲା । କିନ୍ତୁ ସ୍କୁଲ ଛାତ୍ରଛାତ୍ରୀଙ୍କ ପାଇଁ ରିହାତି ଦରର ବ୍ୟବସ୍ଥା ଥିଲା ଯଥା ୬, ୧୨ ଓ ୨୫ ପଇସା । ଆମ୍ଭେମାନେ ସାଧାରଣତଃ ସୁବିଧା, ସୁଯୋଗ ପାଇଁ ପରିମିତ ମୂଲ୍ୟ ମିଳିଲେ ୬ ପଇସା ଦେଇ ତଳେ ବସି ସିନେମା ଦେଖୁଥିଲୁ । ସେତେବେଳେ ଥରେ ମାତ୍ର ସିନେମା ପ୍ରଦର୍ଶିତ ହେଉଥିଲା । ବୋଧ ହୁଏ ୮ ଟାରୁ ୧୦/୧୧ ଟା ପର୍ଯ୍ୟନ୍ତ । ସେତେବେଳେ ଯେଉଁ ଖେଳ ଗୁଡ଼ିକ ପ୍ରଦର୍ଶିତ ହେଉଥିଲା ସେଗୁଡ଼ିକ ମଧରେ ଓଡ଼ିଆ ସୀତା ବିବାହ, ହିନ୍ଦୀ ଚିତ୍ର ହରିପୁର କଂଗ୍ରେସ, ରାମଗଡ଼ କଂଗ୍ରେସ, ବନ୍ଧୁକଓ୍ୱାଲୀ, ହଣ୍ଟରଓ୍ୱାଲୀ ଆଦି । ଚଳଚ୍ଚିତ୍ରରେ ପ୍ରଦର୍ଶିତ ଘୋଡ଼ା ଦୌଡ଼, ପର୍ବତାରୋହଣ, ଉଚ୍ଚ ଅଟ୍ଟାଳିକାରୁ ଲମ୍ଫପ୍ରଦାନ ଇତ୍ୟାଦି ମନରେ ବେଶ କୌତୂହଳ ସୃଷ୍ଟି କରି ଆକର୍ଷଣୀୟ ହେଉଥିଲା ।

ଆମ ଗ୍ରାମ ବେହେରାରୁ ବରଗଡ଼ ଯିବା ଆସିବା ପାଇଁ ଦୁଇଟି ବାଟ ଥିଲା । ଗୋଟିଏ ସବୁଦିନିଆ ଚଲାବାଟ ଓ ଅନ୍ୟଟି ବର୍ଷାଦିନିଆ ବାଟ । ଉଭୟ ବାଟେ ଚାଲି ଚାଲି ଯିବା ଆସିବାକୁ ପଡୁଥିଲା । ସବୁଦିନିଆ ବାଟଟି ଗାଁରୁ ବାହାରି ନିକଟସ୍ଥ ପଲସାଯୋର, ଗଞ୍ଜିଆ ଟିକ୍ରା, ସରସରା, ଜିରା ନଦୀ ପାର ହୋଇ ବାଲିଟିକ୍ରା ବାଟେ ବରଗଡ଼ ଯିବାକୁ ହେଉଥିଲା । ବର୍ଷା ଋତୁର ନଦୀରେ ପାଣି କମ୍ ଥିଲେ ଏହି ବାଟେ ଯିବା ଆସିବା କରୁଥିଲୁଁ । ନଚେତ୍ ବର୍ଷାକାଳରେ ଆମ ଗାଁରୁ ନିକଟସ୍ଥ

ବରଗଡ଼ ବଲାଙ୍ଗିର ସଡ଼କ ବାଟେ ନଦୀନାଳର ବଢ଼ି ହେତୁ ଗୁରପାଲି, ବୈମାନ ଟିକ୍ରା (ନୂଆଁ ସରସରା), ରେଙ୍ଗାଲ ପାଲି, ଅମ୍ଳାପାଲି ଦେଇ ଜୀରା ପୋଲ ବାଟେ ଆସୁଥିଲୁଁ। ବେଳେ ବେଳେ ବର୍ଷାର ଆଧିକ୍ୟ ହେଲେ ରେଙ୍ଗାଲପାଲି ଓ ଅମ୍ଳାପାଲି ମଧ୍ୟସ୍ଥ ନାଳା ବଂଜାରୀ ପାର ହେବା ଅସମ୍ଭବ ହେଉଥିଲା। ଥରେ ମୋର ମନେ ଅଛି, ଆମେ ସର୍ୟାଁ ଦୁରୁଙ୍ଗାରୁ ମୋର ବଡ଼ ମାଁ, ମୁଁ ଓ ତାଙ୍କ ପୁଅ ନାଦିଆ (ଲୋକନାଥ) ନବାନ୍ନ ଭକ୍ଷଣ ସକାଶେ ମୋର ଅଜାଙ୍କ ସହ ବଳଦଗାଡ଼ିରେ ସଡ଼କ ଦେଇ ବେହେରା ଆସୁଥିଲୁଁ। ସଙ୍ଗରେ ଜଣେ ହଳିଆ ଥିଲେ। ବଡ଼ ବାପା ଦୁରୁଙ୍ଗାରେ ଶିକ୍ଷକତା କରୁଥିବାରୁ ସ୍କୁଲ ଛୁଟି ପରେ ଆସିବାର ଥିଲା। ମୁଁ ବେଳେ ବେଳେ ବଡ଼ ବାପା ମାଁଙ୍କ ସଙ୍ଗେ ରହୁଥିବାରୁ ମୁଁ ମଧ୍ୟ ଦୁରୁଙ୍ଗାରେ ଥିଲି। ମୋର ଜନ୍ମ ହେବା ପରେ ତାଙ୍କ ପୁତ୍ର ସନ୍ତାନ ପ୍ରାୟ ପାଞ୍ଚ ବର୍ଷ ପର୍ଯ୍ୟନ୍ତ ନ ହେବାରୁ ସେମାନେ ମୋତେ ଅତିଶୟ ସ୍ନେହ କରୁଥିଲେ ଓ ପାଖରେ ରଖିବା ପାଇଁ ସର୍ବଦା ଇଚ୍ଛୁକ ଥିଲେ। ତାଙ୍କର ସେହି ଅନାବିଳ ସ୍ନେହ ତାଙ୍କ ପୁତ୍ର ଜନ୍ମ ହେବା ପରେ ମଧ୍ୟ ତାଙ୍କ ଶେଷ ଜୀବନ ପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ରହିଥିଲା।

ସେଥର ଦୁରୁଙ୍ଗାରୁ ଆମେ ଆସିଲା ବେଳେ ବଞ୍ଜାରୀ ନଦୀ ପୋଲ ଉପରେ ପ୍ରାୟ ୧ ଫୁଟ ଖଣ୍ଡେ ପାଣି ବହୁଥିଲା। ଏହି ନଦୀର ସ୍ରୋତ ପ୍ରଖର ଥିବାରୁ ଲୋକେ ନିଜେ ବା ବଳଦଗାଡ଼ି ପାର କରିବାକୁ ଶଙ୍କିତ ହେଉଥିଲେ। ମୋର ଅଜା ଜଣେ ବେପରୁଆ ପ୍ରକୃତିର ବ୍ୟକ୍ତି ଥିବାରୁ ଆମେ ସମସ୍ତେ ଗାଡ଼ିରେ ଥାଇ ହଳିଆକୁ ଆଗରେ ଚ୍ଲିବାକୁ କହି ନିଜେ ଗାଡ଼ି ପଛରେ ଥିଲେ। ସ୍ରୋତର ପ୍ରଖରତା ହେତୁ ବଳଦଗାଡ଼ିଟି ମଝି ପୋଲରୁ ଧୀରେ ଧୀରେ ସ୍ରୋତରେ ପୋଲ କଡ଼କୁ ଖସିବାକୁ ଲାଗିଲା। ଶେଷରେ ଏପରି ହେଲା ଯେ ଆଉ ଟିକିଏ ଖସି ଯାଇଥିଲେ ଗାଡ଼ିଟି ନଦୀ ଭିତରେ ଖସି ପଡ଼ିଥାନ୍ତା। ଅଜାଙ୍କ ଅପୂର୍ବ ସାହସ ଓ ମନୋବଳ ହେତୁ ବଳଦଗାଡ଼ିର କଡ଼କୁ ଯାଇ ଗାଡ଼ିର ଅଖକୁ ନିଜ କାନ୍ଧରେ ଟେକି ପୋଲ ମଝିକୁ ଠେଲି ଦେଇଥିବାରୁ ଗାଡ଼ିଟି ନାଳକୁ ଖସି ନ ଯାଇ ଆସନ୍ନ ବିପଦରୁ ଆମେ ରକ୍ଷା ପାଇଲୁଁ। ଏହି ଘଟଣା ଅନେକ ଦିନ ପର୍ଯ୍ୟନ୍ତ ଚର୍ଚ୍ଚାର ବିଷୟ ହୋଇଥିଲା। ୧୯୪୩ ସାଲର ଆଉ ଥରକର ଘଟଣା। ମୁଁ ରବିବାର ଛୁଟି ପାଇଁ ବର୍ଷା ଋତୁରେ ଶନିବାର ଦିନ ଘରକୁ ଆସିଥାଏ। ସେଦିନ ରାତି ସାରା ବର୍ଷା ହେବାରୁ ନଦୀନାଳ ବଢ଼ିଥାଏ। ତେଣୁ ମୋତେ ସୋମବାର ଦିନ ସକାଳୁ ସଡ଼କ ବାଟରେ ଯିବାକୁ କହି ବାପା ମୋତେ ସଡ଼କ ପର୍ଯ୍ୟନ୍ତ ଆଣି ପଲସାକୋର ପୋଲ ପାରି କରି ଫେରି ଗଲେ। ମୁଁ ସଡ଼କ ରାସ୍ତାରେ ଯାଇ ଜୀରା ନଦୀ ପୋଲ ବାଟେ ବରଗଡ଼ ଫେରିବାକୁ ଥାଏ।

ମୋର ଖର୍ଚ୍ଚ ସକାଶେ ମୋତେ ଘରେ ବାପା ଟ ୧ ଓ ସାପ୍ତାହିକ ଖର୍ଚ୍ଚ ପାଇଁ ଦୁଇ ଅଣା ଦେଇ ଥାଆନ୍ତି। ମୋଠାରେ ଗୋଟିଏ ଟଙ୍କା ଓ ଦୁଇଟି ଅଣୀ ଥାଏ। କାଠା ନଦୀ ପୋଲର ସେ ମୁଣ୍ଡରେ ପୋଲକୁ ପ୍ରବେଶ କରିବା ପୂର୍ବରୁ କନୈକ ହାତସଫେଇ ପ୍ରଦର୍ଶନକାରୀ ବ୍ୟକ୍ତି ୩ ପତା ତାସ ଧରି ଏକ ଖେଳ ପ୍ରଦର୍ଶନ କରୁଥାଆନ୍ତି। ଲୋକେ ସେ ଖେଳ ଦେଖି ନିଜ ଇଚ୍ଛା ମୁତାବକ ପଇସା ବାଜି ରଖି ଖେଳୁ ଥାଆନ୍ତି। ଉକ୍ତ ଖେଳର ତାତ୍ପର୍ଯ୍ୟ ଏହା ଥିଲା ଯେ ସେହି ତିନି ପତା ତାସ ମଧ୍ୟରେ ଗୋଟିଏ ଚିତ୍ରଯୁକ୍ତ (ରାଜା/ରାଣୀ/ଗୁଲାମ) ଚିତ୍ର ଓ ଅନ୍ୟ ଦୁଇଟି ଚିତ୍ର ବିହୀନ ପତା ଥାଏ। ସେହି ୩ ପତା ତାସକୁ ସେ ଏପରି ଅଦଳ ବଦଳ କରି ସ୍ଥାନ ପରିବର୍ତ୍ତନ କରି ରଖେ ଯେ ଦେଖଣାହାରୀ ସ୍ୱତଃ ଆମୋଦିତ ହୋଇ ସେହି ପତା ପାଖରେ ପଇସା ଖେଳେ। ପତା ପାଖରେ ଯେତେ ପଇସା ଖେଳାଯାଏ, ତାହା ଯଦି ଚିତ୍ରଯୁକ୍ତ ପତା ହୁଏ ତେବେ ଖେଳାଳୀ ୨ ଗୁଣ ପଇସା ପାଏ, ଅନ୍ୟ ପତାର ଖେଳାଳୀମାନେ ନିଜ ପଇସା ହରାଇ ଥାଆନ୍ତି। ମୁଁ ଗାଁରୁ ଫେରିବା ବେଳେ ଏପରି ଏକ ଖେଳାଉଥିବା ବ୍ୟକ୍ତି ଓ ତାଠାରେ ଅନ୍ୟମାନେ ଖେଳୁଥିବା ଦେଖି ମୋର ଆଗ୍ରହ ଜନ୍ମିଲା। ତେଣୁ କିଛି ସମୟ ଖେଳ ଦେଖିବା ପରେ ମୁଁ ସ୍ୱତଃ ଗୋଟିଏ ପତା ଉପରେ ଅଣୀଟିଏ ଖେଳିଲି। ସୁଖର କଥା ମୁଁ ସେଥିରେ ଜିଣି ଗଲି ଓ ଦୁଇ ଅଣା ପଇସା ପାଇଲି। ପୁଣି ଥରେ ଅଣୀଟିଏ ଖେଳି ଦୁଇ ଅଣା ପାଇଲି। ଏପରି ମୋଠାରେ ଟ୧। ହେଲା। ଏଥିରେ ମୋର ଲୋଭ ଓ ଆଗ୍ରହ ବଢ଼ିଲା। ତେଣୁ ମୁଁ ଉତ୍ସାହିତ ହୋଇ ଦୁଇ ଅଣା ଖେଳି ହାରି ଗଲି। ତାପରେ ପୁଣି ଅଣୀଟିଏ ଖେଳି ଜିଣିଲି। ସେତେବେଳେ ମୋଠାରେ ପୁଣି ଟ୧ ଅଣେ ରହିଲା। ତାପରେ ମୁଁ ଲୋଭପରବଶ ହୋଇ ଗୋଟିଏ ପତାରେ ମୋର ଟଙ୍କାଟିକୁ ଖେଳିଲି। ଭାଗ୍ୟ ଭଲ ସେ ମୋତେ 'କେତେ ଖେଳିଛ ?' ବୋଲି ପଚାରିଲେ। ମୋ ତୁଣ୍ଡରୁ ଏକ ଅଣା ବୋଲି ବାହାରି ପଡ଼ିଲା। ସେ ମୋର ଖେଳ ଦେଖି ମୋର ମନୋଭାବ ଜାଣି କହିଲେ 'ତୁମଠାରେ ଏକ ଅଣା ଅଛି, ତାକୁ ଦିଅ ଓ ଟଙ୍କାଟା ନିଅ।' ତାଙ୍କ କଥାନୁସାରେ ଟଙ୍କାଟି ଫେରାଇ ଆଣି ଅଣେ ଦେଇ ଖେଳିଲି। ସେଥର ଦୁର୍ଭାଗ୍ୟକୁ ସେ ପଇସା ହାରିଗଲି। ମୋଠାରେ କେବଳ ଟଙ୍କାଟିଏ ରହିଲା। ସେତେବେଳେ ମୋର ମନେ ପଡ଼ିଲା ଉକ୍ତ ଟଙ୍କାଟି ଏକ ନିର୍ଦ୍ଦିଷ୍ଟ ଖର୍ଚ୍ଚ ପାଇଁ ଉଦ୍ଦିଷ୍ଟ। ତେଣୁ ଅନ୍ୟ କିଛି ମନରେ ନ ଭାବି ଶୀଘ୍ର ସେ ସ୍ଥାନ ପରିତ୍ୟାଗ କରି କ୍ଷିପ୍ର ଗତିରେ ବୋର୍ଡ଼ିଂରେ ଆସି ହାଜର ହେଲି। ବାକିଆ ମେସ୍‌ଖର୍ଚ୍ଚ ପାଇଁ ସେ ଟଙ୍କାଟି ଦେଇ ଗାଧୁଆ ପାଧୁଆ ସାରି ଭୋଜନ ପରେ ସ୍କୁଲକୁ ଗଲି। ସେ ସପ୍ତାହର ବାକୀ ଦିନ ସୋମବାର ଠାରୁ ଶୁକ୍ରବାର ପର୍ଯ୍ୟନ୍ତ

ଜଳଖିଆ ପାଇଁ ପଇସା ନ ଥିଲା । ଭୋକରେ ରହିବାକୁ ପଡ଼ିଲା । ସେତେବେଳେ ମନରେ ଗଭୀର ଅବଶୋଷ ଜାଗି ଉଠିଲା ଓ ତିନିପତି ଖେଳର ସୁସ୍ୱାଦୁ ଓ ତାର ପରିଣାମର କୁଫଳ ଭୋଗ କରି ଅନୁତପ୍ତ ହେଲି । ଯେ କୌଣସି ବିଷୟରେ ନ ଜାଣି ସେଥି ପ୍ରତି ଆଗ୍ରହୀ ହେବା ଅନୁଚିତ । ମୋଟ ଉପରେ ତିନ୍‌ପତି, ଲୁଡୁ, ଘୁଡୁଘୁଡୁ ପଟି ଆଦି ଖେଳରେ ଯୋଗ ଦେବା ଅସମୀଚିନ ମନେ କରି ସେପରି କୁକର୍ମରୁ ପରବର୍ତ୍ତୀ ଜୀବନରେ ନିବୃତ୍ତ ହୋଇଥିଲି । ତେଣୁ ସମସ୍ତେ ଏପରି କୁଅଭ୍ୟାସରୁ ନିବୃତ୍ତ ରହିବା ବିଧେୟ । ନଚେତ ମୋ ଭଳି ଅକାରଣରେ, ଅଯଥାରେ ଭୋକରେ ରହିବା ସାର ହେବ ।

ଦଶମ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହୋଇ ଏକାଦଶ ଶ୍ରେଣୀରେ ପଢ଼ିବା ବେଳେ ମୁଁ ପ୍ରବେଶିକା ପରୀକ୍ଷାର୍ଥୀ ମାନଙ୍କ ସହ ସମ୍ବଲପୁର ଯାଇ ଫେରିବା ପରେ (୧୯୪୪ ଫେବୃୟାରୀ ମାସ ଶେଷରେ) ଶିକ୍ଷା ବିଭାଗୀୟ ଆଦେଶ-ନାମାନୁସାରେ ସେହି ବର୍ଷଠାରୁ ଶିକ୍ଷାବର୍ଷ ଜାନୁୟାରୀରୁ ଡିସେମ୍ବର ନ ହୋଇ ଜୁନ ମାସରୁ ପରବର୍ତ୍ତୀ ମଇ ମାସ ପର୍ଯ୍ୟନ୍ତ ଶିକ୍ଷାବର୍ଷ ରୂପେ ସ୍ଥିର କରାଗଲା । ତେଣୁ ସେହି ବର୍ଷଟି (ଅର୍ଥାତ୍ ୧୯୪୪ ସାଲଟି) ଶିକ୍ଷା କ୍ଷେତ୍ରରେ ଏକ ବିଶିଷ୍ଟ ଓ ସ୍ମରଣୀୟ ମାଇଲଖୁଣ୍ଟ ଅଟେ । ଦେଶର ଅନ୍ୟାନ୍ୟ ରାଜ୍ୟରେ ମଧ୍ୟ ଏହି ପରିବର୍ତ୍ତନ ଲାଗୁ କରାଗଲା । ତେଣୁ ସେହି ବର୍ଷ ପ୍ରବେଶିକା ପରୀକ୍ଷା ଫେବୃୟାରୀରେ ସରିଥିଲେ ହେଁ ପୁଣି ସେହି ବର୍ଷରେ ଅଧ୍ୟୟନ କରୁଥିବା ଛାତ୍ରଙ୍କ ପାଇଁ ଜୁନ୍ ମାସରେ ଏକାଦଶ ଶ୍ରେଣୀର ଆଉ ଏକ ବାର୍ଷିକ ପ୍ରବେଶିକା ପରୀକ୍ଷା କରାଗଲା । ସେମାନେ ପରବର୍ତ୍ତୀ ବର୍ଷରେ କଲେଜରେ ନାମ ଲେଖାଇ ପାରିବେ । ତେଣୁ ଆମ ପ୍ରଧାନ ଶିକ୍ଷକ ସ୍ୱର୍ଗତ ଜଗନ୍ନାଥ ମିଶ୍ର ଆମ ଶ୍ରେଣୀର ଛାତ୍ରମାନଙ୍କୁ ଡକାଇ ଏହା ପ୍ରକାଶ କଲେ ଯେ ଚଳିତ ବର୍ଷ ଜୁଲାଇରୁ ସମ୍ବଲପୁରରେ ପ୍ରଥମ କରି କଲେଜ ଆରମ୍ଭ ହେବ ଓ ଯେଉଁମାନେ ସେ ବର୍ଷ ଜୁନ୍‌ରେ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇପାରିବେ ସେମାନେ ମଧ୍ୟ କଲେଜରେ ନାମ ଲେଖାଇବାର ସୁଯୋଗ ପାଇବେ । ପ୍ରକାରାନ୍ତରେ ସେ ବର୍ଷ ଏକାଦଶ ଶ୍ରେଣୀର ଛାତ୍ରମାନଙ୍କ ପାଇଁ ଏକ ଅପୂର୍ବ ସୁଯୋଗ । ଏହା ଥିଲା ସ୍ୱଳ୍ପ ଶିକ୍ଷାବର୍ଷ (short session) । ସେତେବେଳେ ତଦାନିନ୍ତନ ସମ୍ବଲପୁର ଜିଲ୍ଲା ସାହେବ ଓ ଡେପୁଟୀ କମିଶନର ଥିଲେ ଅଜଫର୍ ସାହେବ । ସେ ମହାଶୟ ଗଣଶିକ୍ଷାର ଉନ୍ନତି ପାଇଁ ବିଶେଷତଃ ସମ୍ବଲପୁରବାସୀଙ୍କ ପାଇଁ ଚିର ସ୍ମରଣୀୟ । କାରଣ ଆଗରୁ ସୂଚୀତ ୧୯୪୨-୪୩ ରୁ ଦ୍ୱିତୀୟ ପୃଥିବୀ ମହାସମରର କରାଳ ବିଭୀଷିକାର ଅମାନୁଷିକ କାଣ୍ଡ ସାରା

ଜଗତରେ ବ୍ୟାପିଗଲା । ଆମ ଭାରତ ବା ସେଥିରୁ କିପରି ବାଦ୍ ପଡ଼ନ୍ତା ? ଓଡ଼ିଶା ଭାରତର ଏକ ସ୍ୱତନ୍ତ୍ର ପ୍ରଦେଶ ଭାବେ ଏହା ଏକ ଧାନ ଉତ୍ପାଦନରେ ଅଗ୍ରଣୀ ରାଜ୍ୟ ମଧ୍ୟରେ ଅନ୍ୟତମ ହୋଇଥିବାରୁ ଏଠାରୁ ଉଦ୍‌ବୃତ୍ତ ଧାନ ଚାଉଳ ରାଜ୍ୟ ବାହାରକୁ ତଥା ବିଦେଶକୁ ପଠାଇବାର ଆବଶ୍ୟକତା ହେଲା । ବିଦେଶରେ ଯୁଦ୍ଧର ଭୟାଭୟ ପରିସ୍ଥିତି ପାଇଁ ସର୍ବସାଧାରଣ ନିୟମିତ କର୍ମରୁ ବଞ୍ଚିତ ହୋଇ ଖାଦ୍ୟାଭାବର ସମ୍ମୁଖୀନ ହେଲେ । ତେଣୁ ସେଠାକୁ ଖାଦ୍ୟ ପଠାଇ ଚଢ଼ା ଦାମରେ ବିକ୍ରି କରାଯିବାର ବ୍ୟବସାୟିକ ରାସ୍ତା ଉନ୍ମୁକ୍ତ ହେଲା । ଖାଦ୍ୟବହୁଳ ଅଞ୍ଚଳରୁ ଖାଦ୍ୟ ରପ୍ତାନୀ ହେବା ଓ ସେଥିରେ ଆଦେଶ ଦେବା ଦାୟିତ୍ୱ ଜିଲ୍ଲାସାହେବଙ୍କ ରହିଥିଲା । ତେଣୁ ବରଗଡ଼ର ପ୍ରସିଦ୍ଧ ବ୍ୟବସାୟୀମାନେ ବାହାରକୁ ଧାନ ଚାଉଳ ଚାଲାଣର ଆଦେଶ ପାଇଁ ଜିଲ୍ଲାସାହେବଙ୍କ ଦ୍ୱାରସ୍ଥ ହେଉଥିଲେ । ସେହି ସୁଯୋଗରେ ବରଗଡ଼ର ସ୍ଥାନୀୟ ଏସ୍. ଡି. ଓ. ଏସ୍ .କେ. ମଜୁମଦାର, ଆଇ. ଏ. ଏସ୍. (I.A.S.) ଓ କଲେକ୍ଟର ଅକଫର ସାହେବ ସମ୍ବଲପୁରରେ ଏକ କଲେଜ ସ୍ଥାପନ ପାଇଁ ସେମାନଙ୍କ ଠାରୁ ଚାନ୍ଦା ସଂଗ୍ରହ କରିଥିଲେ । ତାର ନାମ College Trust Fund ନାମରେ ସମ୍ବଲପୁର ଜିଲ୍ଲାର କେତେକ ବିଶିଷ୍ଟ ବ୍ୟକ୍ତିଙ୍କୁ ସଭ୍ୟ ରୂପେ ମନୋନୟନ କରି ନିଜେ କଲେକ୍ଟର କମ୍ ଡେପୁଟି କମିଶନର ତା'ର ସଭାପତି ରହିଲେ ଓ ସେହି ପାଣ୍ଠି ସମ୍ବଲପୁରରେ ଶିକ୍ଷାନୁଷ୍ଠାନ ସ୍ଥାପନ ଦିଗରେ ଖର୍ଚ୍ଚ ହେବାର ପ୍ରସ୍ତାବ ରହିଲା । ବରଗଡ଼ ଏସ୍. ଡି. ଓ. ମଧ୍ୟ କିଛି ଚାନ୍ଦା ସଂଗ୍ରହ କରି କର୍ଜ ହାଇସ୍କୁଲ ହତା ମଧ୍ୟରେ ଥିବା ସମସ୍ତ ଖାଲି ଜାଗାରେ ତାଙ୍କ ସ୍ତ୍ରୀ ଗୀତା ମଜୁମଦାରଙ୍କ ନାମରେ ଏକ ଛାତ୍ରାବାସ ତିଆରି ପାଇଁ ଟ. ୨୪୦୦୦ ଦାନ କରିଥିଲେ । ଏବେ ସେହି ହଷ୍ଟେଲ ଘରଟି ସ୍ଥାନାଭାବ ହେତୁ ଶ୍ରେଣୀ କୋଠରୀ ରୂପେ ବ୍ୟବହୃତ ହେଉଛି ।

ଆମେ ପ୍ରଧାନ ଶିକ୍ଷକଙ୍କ ଉପଦେଶାନୁସାରେ ଶ୍ରେଣୀର କେତେକ ଛାତ୍ର ଯଥା ମୁଁ, ସୂର୍ଯ୍ୟପ୍ରସାଦ ପଣ୍ଡା ଓ ଆଉ କେତେ ଜଣ ସେ ବର୍ଷ ଜୁନ୍‌ରେ ପରୀକ୍ଷା ଦେବା ପାଇଁ ମନସ୍ଥ କଲୁଁ । ଅପ୍ରେଲ ମାସରେ ଆମର Test ପରୀକ୍ଷା କରାଗଲା ଓ ଜୁନ୍ ମାସ ମଧ୍ୟରେ ପ୍ରବେଶିକା ପରୀକ୍ଷା ଦେବା ପାଇଁ ପ୍ରସ୍ତୁତ ହେବାକୁ ଲାଗିଲୁଁ । ସେଥିପାଇଁ ଆମର ବାକୀ ଥିବା ପାଠ୍ୟ ବିଷୟକୁ ଶିକ୍ଷକମାନେ ଅଧିକା ସମୟ ଦେଇ ଅଧିକା ଶ୍ରେଣୀ ନେଇ ଶେଷ କଲେ । ପ୍ରଧାନ ଶିକ୍ଷକ ମଧ୍ୟ ସେ ବର୍ଷ ଗ୍ରୀଷ୍ମାବକାଶରେ ବରଗଡ଼ରେ ରହି ଆମର ବାକୀ ଥିବା ଇଂରାଜୀ ପାଠକୁ ପ୍ରାୟ ମଇ ପନ୍ଦର ତାରିଖ ମଧ୍ୟରେ ଶେଷ କଲେ । ଆମେ ପରୀକ୍ଷା ପାଇଁ ପୁନରାଲୋଚନା ପାଇଁ ପ୍ରାୟ ମାସେ ସମୟ ପାଇଲୁଁ । ଏତିକି ବେଳେ ଆମର

ବୋର୍ଡିଂ ପରିଚାଳକ ଥିଲେ ଶ୍ରୀ ଉଦୟନାଥ ସାମଲ। ଯେହେତୁ କିଛି କାରଣରୁ ଶ୍ରୀ ଶଶିଭୂଷଣ ମିଶ୍ର ଏହି ଦାୟିତ୍ୱରୁ ଅବ୍ୟାହତି ନେଇଥିଲେ। ସେହି ବର୍ଷ ଅନ୍ୟ ଶ୍ରେଣୀର ଛାତ୍ରମାନଙ୍କ ପାଇଁ ସଂପୃକ୍ତ ଶ୍ରେଣୀରେ ମଇ ମାସରେ ବାର୍ଷିକ ପରୀକ୍ଷା କରାଗଲା ଓ ସେମାନଙ୍କ ମଧ୍ୟରୁ ଉପଯୁକ୍ତ ଛାତ୍ରଙ୍କୁ ପରବର୍ତ୍ତୀ ଉଚ୍ଚ ଶ୍ରେଣୀକୁ ଉତ୍ତୀର୍ଣ୍ଣ କରାଗଲା। ଏପରି ଭାବେ ଏ ବର୍ଷ (୧୯୪୪)ର ପ୍ରଥମାର୍ଦ୍ଧକୁ କ୍ଷୁଦ୍ର ଶିକ୍ଷା ବର୍ଷ ରୂପେ (short session) ଗ୍ରହଣ କରି ଅନେକ ଛାତ୍ର ୬ ମାସରେ ଶ୍ରେଣୀ ଉତ୍ତୀର୍ଣ୍ଣ ହୋଇ ବର୍ଷଟିଏ ଲାଭ କରିଥିଲେ। ସେତେବେଳେ ମୋ ସଙ୍ଗରେ କୋଠରୀରେ ଥିବା ଜନୈକ ଛାତ୍ରଙ୍କୁ ମୋର ପଢ଼ା ବ୍ୟତୀତ ତାଙ୍କୁ ପଢ଼ାଇବାରେ ସବୁ ବିଷୟରେ ସାହାଯ୍ୟ କରିଥିଲି। ତେଣୁ ସେ ଛାତ୍ର ଜଣକ ଖୁସିରେ ମୋତେ ପାରିତୋଷିକ ବାବଦକୁ ଟ. ୫ ପ୍ରଦାନ କରିଥିଲେ ମୋର ଇଚ୍ଛା ବିରୁଦ୍ଧରେ। ଅବଶ୍ୟ ତାହା ମୋର ସେତେବେଳେ ଅନେକ ଉପକାରରେ ଆସିଲା। ମୁଁ ଆଉ କେତେ ଜଣ ପିଲା ପରୀକ୍ଷା ପାଇଁ ରହିବାକୁ ପଡ଼ିଲା। ମୋତେ ଦୟା ପରବଶ ହୋଇ ଆମ ବୋର୍ଡିଂ ପରିଚାଳକ ସ୍ୱର୍ଗତ ସାମଲ ତାଙ୍କର ରନ୍ଧାରେ ଖାଇବାକୁ ଆଦେଶ ଦେବାରୁ ମୋର ପଢ଼ିବା ଓ ପରୀକ୍ଷା ପାଇଁ ପ୍ରସ୍ତୁତିରେ ବାଧା ଉପୁଜି ନ ଥିଲା।

ଆମ ପରୀକ୍ଷା ସମୟ ନିକଟ ହୋଇ ଆସିବାରୁ ଜୁନ୍ ମାସର ମଧ୍ୟ ଭାଗରେ ଆମେ ପରୀକ୍ଷା ଦେବା ସକାଶେ ସମ୍ବଲପୁରକୁ ଗଲୁଁ। ସେତେବେଳେ ମୋର ବାପା ମୋ ପାଇଁ ଧୋତି, କାମିଜ ସହ ଚମଡ଼ାର ଏକ ଯୋଡା ହାଫ୍ ସୁ କିଣି ଦେଇଥିଲେ। ସେତେବେଳେ ତା'ର ଦାମ୍ ଥିଲା ବୋଧ ହୁଏ ଦଶ ଅଣା (୬୨ ନୂ.ପ.)। ସମ୍ବଲପୁର ଜିଲ୍ଲା ସ୍କୁଲ ଆମର ପରୀକ୍ଷା କେନ୍ଦ୍ର ଥିଲା। ଆମ ସଙ୍ଗେ ଆମ ବୋର୍ଡିଂ ପରିଚାଳକ ୰ ଶ୍ରୀଯୁକ୍ତ ଉଦୟନାଥ ସାମଲ ସମ୍ବଲପୁର ଯାଇଥିଲେ। ଆମ୍ଭେ ମଧ୍ୟ ସଙ୍ଗରେ ଚାକର, ପୂଜାରୀ ଧରି ଏକ ମେସ୍ କରିବା ପାଇଁ ଘର ଭଡ଼ା ନେଇଥିଲୁଁ ଜିଲ୍ଲା ସ୍କୁଲ ନିକଟର ଫାଟକରେ। ଫାଟକର ଅର୍ଥ ରେଲଗାଡ଼ିର ପ୍ରଥମ ଅଟକିବା ସ୍ଥାନ। ଆମେ ପରୀକ୍ଷା ଦେଇ ସାରି ଜୁନ୍ ମାସର ତୃତୀୟ ସପ୍ତାହରେ ଘରକୁ ଫେରିଲୁଁ। ସେତେବେଳେ ମୋର ବଡ଼ ପିଉସୀ ତାଙ୍କ ଦେବର ୰ ମନବୋଧ ପଣ୍ଡାଙ୍କ ସମ୍ବଲପୁରସ୍ଥ ଫାଟକ ନିକଟରେ ଥିବା ଘରେ ରହୁଥିଲେ। ପରୀକ୍ଷା ପରେ ମୋର ପିଉସୀ ମଧ୍ୟ ଘରକୁ ଚାଲି ଆସିଲେ। ଏପରି ଭାବେ ମୋର ବରଗଡ଼ରେ ପାଠ ପଢ଼ାରେ ଯବନିକା ପଡ଼ିଲା।

## କଲେଜ ପଢ଼ିବାକୁ ପ୍ରସ୍ତୁତି ପର୍ବ :-

୧୯୪୪ ସାଲ୍ ଜୁନ୍ ମାସ ଶେଷ ଭାଗରେ ସମ୍ବଲପୁରରୁ ପ୍ରବେଶିକା ପରୀକ୍ଷା ଦେଇ ଘରକୁ ଫେରିବା ପରେ ନାନା କଳ୍ପନାଜଳ୍ପନାର ଆରମ୍ଭ ହେଲା। ଆମ ଘରେ କାହିଁକି ଆମ ବଂଶରେ ବା ଅଞ୍ଚଳରେ କେହି ଏତେ ପାଠ ପଢ଼ି ନ ଥିଲେ। ତେଣୁ ଉଚ୍ଚ ଶିକ୍ଷା ପାଇଁ ସମସ୍ତଙ୍କ ସଠିକ ଧାରଣା ଜାଗ୍ରତ ହେବା ଅସ୍ୱାଭାବିକ। ସେହି ସମୟରେ ମୋର ଜଣେ ପିଉସୀଙ୍କ ବଡ଼ ଝିଅ ମୋର ନାନୀ ବିବାହ କରି ତାଙ୍କ ପତି ସଙ୍ଗେ ସୁନ୍ଦରଗଡ଼ରେ ଥିଲେ। ତାଙ୍କ ପତି କାର୍ତ୍ତିକ ଦାଶ ମଧ ଉଚ୍ଚ ପାଠୁଆ ନ ଥିଲେ। ସେ ବୋଧ ହୁଏ ଅଷ୍ଟମ/ନବମ ଶ୍ରେଣୀ ପଢ଼ି ସେଠାରେ ରାଜାଙ୍କର ପୋଲିସ ବିଭାଗରେ ଏକ କନଷ୍ଟେବଲ କାମ କରୁଥିଲେ। ଆଉ ଏକ ପିଉସୀଙ୍କ ବଡ଼ ଝିଅ ବିବାହ ଯୋଗ୍ୟା ହୋଇ ବରପାତ୍ର ଅନ୍ୱେଷଣରେ ଥିଲେ। ମୋର ମାଟ୍ରିକ ପରୀକ୍ଷା ଦେଲା ବେଳେ ୧୬ ବର୍ଷ ପୂରିଥିଲା। ସେତେବେଳେ ୧୫/୧୬ ବୟସ୍କ ଲୋକେ ବିବାହ ଚୂଡ଼ା ସାରି ଘର କରୁଥିଲେ। ସେତେବେଳେ ଶାରଦା ବିବାହ ଆଇନ ଲାଗୁ ହେବାକୁ ଯାଉଥାଏ। ଏଆଡ଼େ ପୁଣି ମୋର ପାଇଁ ନିର୍ଦ୍ଧାରିତ ପିନ୍ଧାଣୀ ଚୂଡ଼ାପକା କାମ ସରିଥିବା ଝିଅଟି ମଧ ବିବାହ ଯୋଗ୍ୟା ପ୍ରାୟ। ତେଣୁ ସମସ୍ତେ ତାଙ୍କ ମନରେ ମୋର ବିବାହ ବିଷୟ ମନେ ମନେ ଚିନ୍ତା କରୁଥିଲେ। ଇତି ମଧ୍ୟରେ ମୋର ସାନ ପିଉସୀ ଯେ କି ବିଶାଳପାଲି ପାଲ ବଂଶରେ ବୋହୂ ହିସାବରେ ଯାଇଥିଲେ, ମୋର ପିଉସା କହ୍ନାଇ ପାଲଙ୍କ ଅକାଳ ବିୟୋଗ ହେତୁ ସେତେବେଳେ ବିଧବା ହୋଇ ସାରି ଘରେ ରହୁଥିଲେ। ସମସ୍ତେ ଅନ୍ତରରେ ଗ୍ୱହୁଁଥିଲେ ଯେ ମୁଁ ବିବାହ ହୋଇ ଘରଦ୍ୱାର କରେଁ। ଅବଶ୍ୟ ସେହି ପାଠରେ ମଧ ମୁଁ ଗୋଟିଏ ଭଲ ଗ୍ୱକିରୀ କରିପାରିଥାନ୍ତି। କିନ୍ତୁ ମୁଁ ସମସ୍ତଙ୍କୁ ରୋକ୍‌ଠୋକ୍ ମନା କରି ଦେଲି ଯେ ମୁଁ ଆଗକୁ ପଢ଼ିବି ଓ ସେତେ ଶୀଘ୍ର ମୋର ବିବାହର ଆବଶ୍ୟକତା ନାହିଁ। ସେତେବେଳେ ବିବାହ ପାଇଁ ଆଜିକାଲି ଭଳି ବୟସ ସୀମାର କଟକଣା ଏତେଟା ନ ଥିଲା। ତେଣୁ ଘରେ ମୋର ପାଇଁ ନିର୍ଦ୍ଧାରିତ ଝିଅର ବାପ ଘରକୁ ଅର୍ଥାତ୍ ସର୍ଯାଁ ଦୁରୁଙ୍ଗା ମହାପାତ୍ର ଘରକୁ ଖବର ପଠାଇ ଦେଲେ ଯେ ଆମର ବାବୁ ବିବାହ ଏବେ କରିବାର ନାହିଁ। କାରଣ ସେ ଉଚ୍ଚ ଶିକ୍ଷା କରିବାକୁ ସମ୍ବଲପୁର ଯିବ। ସେମାନେ ଯଦି ଗ୍ୱହାନ୍ତି ଯୋଗ୍ୟ ପାତ୍ର ଦେଖି ଅନ୍ୟ କେଉଁଠି ବ୍ୟବସ୍ଥା କରିପାରନ୍ତି। ଫଳରେ ସେମାନେ ମୋର ପାଠ ପଢ଼ାକୁ ଅପେକ୍ଷା ନ କରି ଝିଅକୁ ଅନ୍ୟତ୍ର ବିବାହ କରାଇଲେ। ଅବଶ୍ୟ ମୋର ସେତେବେଳେ ଯୁବକ ସୁଲଭ ଉଷ୍ମ ରକ୍ତର ପ୍ରଭାବରେ ମୁଁ ମୋର ସୋହେଲା ପିଉସୀଙ୍କ ଝିଅ କୁମିଦିନୀକୁ ମନେ ମନେ ସୁବିଧା

ହେଲେ ବିବାହ କରନ୍ତି ଏହି ଇଚ୍ଛା ଜାଗ୍ରତ ହୋଇଥିଲା । କାରଣ ତାକୁ ପିଲାବେଳୁ ଜାଣିଥିଲି ଓ ତାର ସରଳ ବ୍ୟବହାର ମୋତେ ମୁଗ୍ଧ କରିଥିଲା ଓ ସେ ଅତ୍ୟନ୍ତ ସୁନ୍ଦରୀ । ଅଧ ପାଠୋଇ ହେଲେ ହେଁ ପରିଚିତା, ସୁନ୍ଦରୀ ଓ ସରଳ ଥିଲା ।ଏତଦ୍ ବ୍ୟତୀତ ଆଉ ଜଣେ ଦି'ଜଣ ଝିଅ ଆମ ଘରକୁ ବିବାହ ପ୍ରସଙ୍ଗରେ ଦେଖାଇ ହେବାକୁ ଆସିଥିଲେ । କିନ୍ତୁ କୌଣସି ପ୍ରସ୍ତାବ କାର୍ଯ୍ୟକାରୀ ହୋଇ ପାରିଲା ନାହିଁ। ତା'ର ଏକମାତ୍ର କାରଣ ଆମର ପ୍ରଧାନ ଶିକ୍ଷକ ଜଗନ୍ନାଥ ମିଶ୍ର ସମ୍ବଲପୁରରେ କଲେଜ ଆରମ୍ଭ ହେବାର ଓ ଉଚ୍ଚ ଶିକ୍ଷାର ପଥ ସୁଗମ ହେବାର ଉପଦେଶ ଦେଇଥିଲେ ଯାହାକି ମୋ କର୍ଣ୍ଣରେ ସବୁ ବେଳେ ଝଙ୍କାରିତ ହେଉଥିଲା ।

ଅଳ୍ପ  କିଛି ମାସ ପୂର୍ବରୁ ମୋର ସାନ କାକା ସରକଣ୍ଡାରେ ଶିକ୍ଷକତା କରିବା ବେଳେ ଟ ୧୨/୧୩ଙ୍କାରେ ଗୋଟିଏ ପୁରୁଣା ସାଇକଲ କିଣିଥିଲେ । ସେତେବେଳେ ବଡ଼ ବାପା ଓ ସାନ କାକା ଏକାନ୍ନବର୍ତ୍ତୀ ଥିଲେ । ତେଣୁ ଘରଖର୍ଚ୍ଚ ଉଭୟଙ୍କ ଆୟରୁ ଚଳୁଥିଲା । ଆମ ଘରକୁ ସାଇକଲଟିଏ ନୂଆଁ ହୋଇ ଆସିବାରୁ ତାହା ବଡ଼ ବାପା ବ୍ୟବହାର କରିବାକୁ ଲାଗିଲେ । ଆମ ଗାଁକୁ ପ୍ରବେଶ କରିବାରେ ଏହା ଦୁଇ ନମ୍ବର  ସାଇକଲ ଥିଲା । ପୂର୍ବରୁ ଆମ ଗାଁର ଗୌନ୍ତିଆ ଜିତେନ୍ଦ୍ରିୟ ସାହୁ ଆଗରୁ ଗୋଟିଏ ସାଇକଲ କିଣିଥିଲେ। ଆମ ଘରକୁ ସାଇକଲଟି ଆସିବାଟା ଅତ୍ୟାଶ୍ଚର୍ଯ୍ୟ ନ ହେଲେ ହେଁ ଆନନ୍ଦଦାୟକ ଓ ସ୍ମରଣୀୟ ଅଟେ । ଅବଶ୍ୟ ଏବେ ଆମ ଘରେ ପ୍ରାୟ ସାଇକଲ ସଂଖ୍ୟା ୭ଟି, ସ୍କୁଟର ମଟରସାଇକଲ ୩ଟା ଓ ମାରୁତି ଭେନ, ହୁଣ୍ଡାଇ ମିଶାଇ ତିନୋଟି ହେଲାଣି । ପିଲାମାନେ ଯୋଗ୍ୟ ହୋଇ ଏସବୁ କରିସାରିଲେଣି । ମୋର ପରୀକ୍ଷା ପରେ ମୁଁ ଚେଷ୍ଟା କରି ସାଇକଲ ଶିଖି ପକାଇଲି । ଗାଁରେ ତାକୁ ଚଳାଇବାର ଅଭ୍ୟାସ କଲି । ସେତେବେଳେ ବଡ଼ ବାପା ଆମ ଗ୍ରାମର ବିଦ୍ୟାଳୟରେ କାର୍ଯ୍ୟ କରୁଥିଲେ । ଥରେ ତାଙ୍କ ସଙ୍ଗେ ବରଗଡ଼ ଆସିଥିଲୁଁ । ସେଦିନ ଆମ ପ୍ରବେଶିକା ପରୀକ୍ଷାର ଫଳ ପ୍ରକାଶ ପାଇଲା ଓ ମୁଁ ପ୍ରଥମ ଶ୍ରେଣୀରେ ପାସ୍ କରିଥିବାର ଜାଣି ଘରକୁ ଗଲୁଁ । ଘରେ ଏ ଖବର ପାଇ ଅତି ଆନନ୍ଦିତ ହେଲେ । ଘରକୁ ଫେରିବା ବେଳେ ପ୍ରଥମ ଥର ପାଇଁ ସାଇକେଲରେ ଚଢ଼ି ବରଗଡ଼ରୁ ଘରକୁ ଆସିଥିଲି । ବଡ଼ ବାପା ଆଉ ଜଣକର ସାଇକେଲରେ ଆସିଲେ । ଏହା ପରେ ମୋର କଲେଜ ପଢ଼ିବାର ପ୍ରସ୍ତୁତି ବହୁତ ଜୋରସୋରରେ ଚାଲିଲା ।

ଏ ବର୍ଷଟି ସଂକ୍ଷିପ୍ତ ଶିକ୍ଷା ବର୍ଷ (short session) ହେତୁ ଯଦିଓ ମୁଁ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ୪୮୯ ମାର୍କ ପାଇ ପାସ୍ କଲି, ଏହା ଥିଲା ଉତ୍କଳ

ବିଶ୍ୱବିଦ୍ୟାଳୟ ଆରମ୍ଭର ପ୍ରଥମ ବର୍ଷ। ସେ ବର୍ଷ ଅଧିକ କୃତିତ୍ୱ ଦେଖାଇ ବେଶୀ ନମ୍ବର ରଖିବା ପାଇଁ ପ୍ରସ୍ତୁତି ସମୟ ଅତି କମ୍ ଥିଲା। ତେଣୁ ନିଜ ଖର୍ଚ୍ଚରେ ପଢ଼ିବାର ସ୍ଥିର ହେଲା। ପ୍ରାଥମିକ ନାମ ଲେଖା ପାଇଁ ଅତ୍ୟଧିକ ମୁଦ୍ରାର ଆବଶ୍ୟକ ଯାହାକି ଆମର ନିଜର ଆୟରୁ ସଂଗ୍ରହ କରାଯାଇ ନ ପାରେ। କେତେକ ବଦାନ୍ୟ ବ୍ୟକ୍ତିଙ୍କ ନିକଟକୁ ସାହାଯ୍ୟ ପାଇଁ ଦ୍ୱାରସ୍ଥ ହେବାକୁ ହେଲା। ମୋତେ ମୋର ବଡ଼ ବାପା ସାଙ୍ଗରେ ଧରି ସିକିର୍ଡିର ସ୍ୱନାମଧନ୍ୟ ବଦାନ୍ୟ ବ୍ୟକ୍ତି ଯେ କି ତତ୍କାଳୀନ ସମ୍ବଲପୁରୀ ବସ୍ତ୍ରାଳୟର ଅଂଶୀଦାରଙ୍କ ଭିତରୁ ଜଣେ। ସେ ଥିଲେ ଶ୍ରୀଯୁକ୍ତ ବଳିଷ୍ଠ ପ୍ରଧାନ। ତାଙ୍କ ସଙ୍ଗେ ସାକ୍ଷାତ ପରେ ସେ ଆମକୁ ଆମର ଆଗମନର ଉଦ୍ଦେଶ୍ୟ ପଚାରିଲେ। ମୋର ବଡ଼ ବାପା ମୋର ପରୀକ୍ଷା ଫଳ ଓ ଉଚ୍ଚ ଶିକ୍ଷା ବିଷୟରେ ଆଲୋଚନା ପ୍ରସଙ୍ଗରେ ଜଣାଇଲେ ପ୍ରକାରାନ୍ତରେ ସେ ପ୍ରକାଶ କଲେ ଯେ କଲେଜ ପଢ଼ିବା ପାଇଁ ବହୁଳ ଅର୍ଥର ଆବଶ୍ୟକ। ଏପରିକି କଲେଜର ନାମ ଲେଖା ପାଇଁ ମଧ ଆମର ଶକ୍ତି ବହିର୍ଭୁତ ପରିମାଣର ଆବଶ୍ୟକତା ଦୃଷ୍ଟିରୁ ଆମେ ଏକ ରକମ ଚିନ୍ତାର୍ଥୀ ଅଛୁଁ। ତେଣୁ ଆପଣଙ୍କ ନିକଟକୁ ତାର ସମାଧାନ ଓ ସାହାଯ୍ୟ ପାଇଁ ଆମେ ଆସିଛୁଁ। ସେ ଏହା ଶୁଣି ଅତିଶୟ ଆନନ୍ଦିତ ହୋଇ ଉତ୍ସାହର ବାଣୀ ଶୁଣାଇଲେ। ତାପରେ ଆମର ଖାଦ୍ୟପେୟର ବ୍ୟବସ୍ଥା କରି ଆମେ ତାଙ୍କ ଠାରୁ ବିଦାୟ ନେଇ ଆସିବା ବେଳେ ସ୍ୱତଃପ୍ରବୃତ୍ତ ହୋଇ ଟ୨୫ଙ୍କା ଦାନ କରି ପରେ ଅସୁବିଧା ହେଲେ ଜଣାଇବାକୁ ଅଭୟବାଣୀ ଶୁଣାଇଲେ। ଏହି ଦାନ ପରିମାଣ ମୋର ଭବିଷ୍ୟତ ଉଚ୍ଚ ଶିକ୍ଷାର ମୂଳଦୁଆ ପାଇଁ ଯଥେଷ୍ଟ ସହାୟକ ହୋଇଥିଲା। ପରେ ଅନ୍ୟାନ୍ୟ ବଦାନ୍ୟ ବ୍ୟକ୍ତିଙ୍କଠାରୁ ମଧ ସାହାଯ୍ୟ ମିଳିଲା। ଏଇ କିଛି ବର୍ଷରେ ମୋର ବାପା ତାଙ୍କ ବ୍ୟବସାୟ କଲାବେଳେ ଆମ ଗ୍ରାମ ସନ୍ନିକଟ ଗ୍ରାମ ଲୁଲଟ, ବାଗବାଡ଼ୀ, ବନ୍ଧାପଦର ଆଦି ଗ୍ରାମର ବିଶିଷ୍ଟ ବ୍ୟକ୍ତିମାନଙ୍କ ସଂସ୍ପର୍ଶରେ ଆସି ବେଶ ବନ୍ଧୁତା ଜନ୍ମାଇ ଥିଲେ। ସେମାନଙ୍କ ମଧରେ ଲୁଲଟର ତତ୍କାଳୀନ ଗୌନ୍ତିଆ ୰ ଶ୍ରୀ ନାରାୟଣ ସାହୁ ଓ ବରପାଲି ସ୍ୱନାମଧନ୍ୟ କୋଷ୍ଟା ବେପାରୀ ୰ ବିହାରୀ ମେହେର ଅନ୍ୟତମ। ଏହି ଉଭୟ ଭଦ୍ରବ୍ୟକ୍ତିଙ୍କର ମୋ ପ୍ରତି ପ୍ରଗାଢ଼ ସ୍ନେହ ଥିବାର ଲକ୍ଷ୍ୟ କରିଥିଲି। ସେମାନେ ମୋତେ ପୁତ୍ରବତ୍ ସ୍ନେହ କରୁଥିଲେ। ଉଭୟେ ବାପାଙ୍କ ସଙ୍ଗରେ ଘନିଷ୍ଠ ବନ୍ଧୁତା (ମଇତ୍ର ଭାବେ) ସୂତ୍ରରେ ବାନ୍ଧି ହୋଇଥିଲେ। ସେମାନେ ମୋର କଲେଜ ପଠନ ସମୟରେ ଯେଉଁ ଅକୃତ୍ରିମ ସ୍ନେହ ସାହାଯ୍ୟ ପ୍ରଦର୍ଶନ କରିଛନ୍ତି ତା'ର ପରିପ୍ରକାଶ ପାଇଁ ଭାଷା ନାହିଁ। ଅବଶ୍ୟ ତା'ର କିଛିଟା ଝଲକ ପରେ ଉଲ୍ଲେଖ କରାଯିବ।

ମୋର ଉକ୍ତ ମିତ୍ରବାପାଦ୍ୱୟ ସମୟାନୁକ୍ରମେ ମୋର ବାପାଙ୍କ ବ୍ୟବସାୟ ପାଇଁ ତଥା ମୋର ପଢ଼ା ଖର୍ଚ୍ଚ ପାଇଁ ଯଥା ସମୟରେ ସୁନା ବନ୍ଧକ ରଖି ବା ଦ୍ୱବା ଅଳଙ୍କାର ରଖି ତାଙ୍କ ଶକ୍ତି ଅନୁଯାୟୀ ସାହାଯ୍ୟ ପ୍ରଦାନ କରିଥିବାରୁ ମୁଁ ତାଙ୍କ ପ୍ରତି ଅଶେଷ ଋଣୀ । ଅବଶ୍ୟ ଉଭୟ ମିତ୍ରବାପା ସ୍ୱର୍ଗାରୋହଣ କଲେଣି, କିନ୍ତୁ ତାଙ୍କ ଅନାବିଳ ସ୍ନେହ ଓ ସମୟୋପଯୋଗୀ ଦାନ ପାଇଁ ମୋର ଉଚ୍ଚ ଶିକ୍ଷା ସମ୍ଭବ ହୋଇପାରିଥିଲା । ସେମାନଙ୍କ ସ୍ନେହ ଏପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ଅଛି ଓ ମୁଁ ସେମାନଙ୍କ ପ୍ରତି ଯଥୋଚିତ କର୍ତ୍ତବ୍ୟ କରିଅଛି ।

ପରିଶେଷରେ କଲେଜରେ ନାମ ଲେଖାଇବା ପାଇଁ ନିର୍ଦ୍ଧାରିତ ତାରିଖ ମଧ୍ୟରେ ବଡ଼ ବାପାଙ୍କ ସଙ୍ଗରେ ସମ୍ବଲପୁର ଯାଇ କଲେଜରେ କଳା ବିଭାଗରେ (Arts) ନାମ ଲେଖାଇଲୁଁ । ସେତେବେଳେ ବଡ଼ ବାପାଙ୍କ ପରିଚିତ ବନ୍ଧୁ ଅବସରପ୍ରାପ୍ତ ସମ୍ବଲପୁର ଜିଲ୍ଲାସାହେବଙ୍କ ବରିଷ୍ଠ କିରାଣୀ ୰ ଭୀଷ୍ମଦେବ ବିଶ୍ୱାଳ ଦଳାଇ ପଡ଼ାରେ ଘର କରି ରହୁଥିଲେ । ସେ ମହାଶୟ କୁଲୁଣ୍ଡା ନିବାସୀ ଓ ତାଙ୍କ ପୁଅର ଶାଶୁଘର ଆମ ଗାଁରେ ଥିଲା । ତାଙ୍କ ସଙ୍ଗେ ଯାଇ ଆମେ ସାକ୍ଷାତ କରିବା ପରେ ମୋର ପଢ଼ା ବିଷୟର ଆଲୋଚନା ହେଲା - କଲେଜରେ ପଢ଼ାଇବା ପାଇଁ ଖର୍ଚ୍ଚ ଯୋଗାଇବା ଅସାମର୍ଥ୍ୟ ଜାଣି - ବଡ଼ ବାପାଙ୍କ ପ୍ରସ୍ତାବରେ ସେ ନିଜ ବାସଗୃହର ଢ଼ବା ଉପର କୋଠରୀଟିଏ ତଥା ସଂଲଗ୍ନ ବାରଣ୍ଡାରେ ରନ୍ଧାବଢ଼ାର ସୁବିଧା ସହ ମୋର ରହିବା ପାଇଁ ବିନା ଆପତ୍ତିରେ ଓ ବିନା ଭଡ଼ାରେ ରାଜି ହେଲେ । ଏହି ସୁବିଧା ପାଇଁ ଅଳ୍ପ ଖର୍ଚ୍ଚରେ ପାଠ ପଢ଼ା ପଥ ସୁଗମ ହୋଇଥିଲା । ତାଙ୍କ ବଡ଼ ପୁଅ ୰ ଭୈରବ ଚନ୍ଦ୍ର ବିଶ୍ୱାଳ ଯେ କି ମୋର ଗ୍ରାମ୍ୟମାନ୍ୟରେ ପିଉସା ହେବେ, ତାଙ୍କ ସହ ମୋର ଧୀରେ ଧୀରେ ପରିଚୟ ହୋଇ ବନ୍ଧୁତା ବଢ଼ିଲା । ସେ ଆମ ଗାଁରେ ବିବାହ କରିଥିଲେ । ଭୀଷ୍ମଦେବ ବାବୁ ମହାଶୟ ମଧ୍ୟ ବିଚକ୍ଷଣ ଧର୍ମପରାୟଣ ଓ ସ୍ନେହୀ ଥିଲେ । ତାଙ୍କ ପତ୍ନୀଙ୍କ ସ୍ୱର୍ଗବାସ ହୋଇଯାଇଥିଲା ଓ ତାଙ୍କ କନିଷ୍ଠ ପୁତ୍ର ଗୋକୁଳ ଚନ୍ଦ୍ର ବିଶ୍ୱାଳ ହାଇସ୍କୁଲରେ ଅଧ୍ୟୟନ କରୁଥିଲେ । ତାଙ୍କ ଘରଟି ସମ୍ବଲପୁର ପୋଲିସ କ୍ଲବ ସାମନାରେ ଓ ଠିକ୍ ମହାନଦୀ କୂଳରେ । ତେଣୁ ପାନୀୟ ଜଳାଦି ନଦୀରୁ ଆଣିବାକୁ ହେଉଥିଲା ଓ ତାଙ୍କ ଘରେ ଉଠା ପାଇଖାନା ଥିବାରୁ ରହିବାରେ କିଛି ଅସୁବିଧା ହେଉ ନ ଥିଲା ।

କଲେଜରେ ନାମ ଲେଖାଇ ଆମେ ଘରକୁ ଫେରିଲୁ ଓ ଘରୁ ପ୍ରସ୍ତୁତ ହୋଇ ଯାବତୀୟ ରନ୍ଧନ ସାମଗ୍ରୀ ଡାଲି, ଚାଉଳ, କାଠ ଓ ରାନ୍ଧିବାର ପାତ୍ରାଦି (ଗଞ୍ଜ, ପିତଳ, ଗରିଆ ଆଦି) ଧରି ମୋର ବଡ଼ ପିଉସୀ ୰ ଫୁଲଦେବୀଙ୍କ ସହ ପ୍ରାୟ

୧୫/୨୦ ଦିନ ପରେ ଯାଇ ତାଙ୍କ ଘରେ ରହିଲୁଁ। ଏହିପରି ଭାବେ ମୋର ସମ୍ବଲପୁର ରହଣୀ ଓ କଲେଜ ପଢ଼ା ଆରମ୍ଭ ହେଲା। ଏହା ପୂର୍ବରୁ ଯାହା ମୋର ମନେ ହୁଏ ଏକ ସପ୍ତାହ ଖଣ୍ଡେ ଯାଇ ବନ୍ଧୁମାନଙ୍କ ସଙ୍ଗେ ରହି ହୋଟେଲରେ କିଛି ଦିନ ଖାଇ କଲେଜକୁ ପଢ଼ି ଯାଇଥିଲି। ସେତେବେଳେ ସମ୍ବଲପୁରରେ ଆଜିକାଲି ଭଳି ଦୋକାନବଜାର, ହୋଟେଲ ଓ ଜଳଖିଆ ଦୋକାନ ନ ଥିଲା। ଦଲାଇପଡ଼ାରେ ନୂଆଁ ହୋଇ ପ୍ରଭାତ ହୋଟେଲ ଖୋଲିଥାଏ ଓ ନନ୍ଦପଡ଼ାରେ ଗୋଟିଏ ସାମାନ୍ୟ ଧରଣର ହୋଟେଲ ଚାଲୁଥିଲା। ସେତେବେଳେ ମିଲ୍ ପ୍ରତି ବୋଧ ହୁଏ ଦୁଇ ଅଣା କିମ୍ବା ୨୫ ପଇସା ଥିଲା ଓ ବେଶ୍ ସନ୍ତୋଷ ହୋଇ ଖାଇବାକୁ ମିଳୁଥିଲା। ଆଜିକାଲି ଭଳି (Plate system) ପ୍ଲେଟ୍ ଅନୁଯାୟୀ ମାପି ଖାଦ୍ୟ ବିକ୍ରି ହେଉ ନ ଥିଲା। ସେତେବେଳର ସମ୍ବଲପୁର ବିଷୟରେ ସମ୍ୟକ୍ ଧାରଣା ଦେବା ପ୍ରାସଙ୍ଗିକ ମନେ ହୁଏ।

ସମ୍ବଲପୁର କହିଲେ କଚେରୀ, ଦଲାଇପଡ଼ା, ନନ୍ଦପଡ଼ା, ଝାଡୁଆ ପଡ଼ା, ବାଲିବନ୍ଧା, ବଡ଼ ବଜାର, କମଳି ବଜାର, କ୍ଷେତ୍ରରାଜପୁର, ଫାଟକ, ମୁଦିପଡ଼ା, ସାକ୍ଷୀପଡ଼ା, ଗୋବିନ୍ଦ ଟୁଲା, ଗୋଲ ବଜାର ଆଦି ପୁଞ୍ଜିଭୂତ ଘର ଥିବା ନାମକରଣ। ତେଣୁ କଚେରୀରୁ ବଡ଼ବଜାର ପର୍ଯ୍ୟନ୍ତ ବଡ଼ ସଡ଼କ ଓ ଲେଡି ଲୁଇସ ବାଳିକା ଉଚ୍ଚ ବିଦ୍ୟାଳୟରୁ ପଟ୍ଟନାୟକ ପଡ଼ା, ଗୁରୁ ପଡ଼ା, କଂସାରି ପଡ଼ା ଦେଇ ଟାଉନ୍ ହଲ୍, ସାନ ସଡ଼କ ଓ ଆଉ ଏକ ରାସ୍ତା, ଗେଟି ଟକିଜ୍ ରୋଡ୍। କଚେରୀରୁ ସିଧା-ସଳଖ ଗଲେ ଗୋଲବଜାର ପରେ ଟାଉନ ଥାନା, ଆଶାପାଲି, ଖ୍ରୀଷ୍ଟିୟାନ ପଡ଼ା ପରେ ଜିଲ୍ଲା ସ୍କୁଲ, ଫାଟକ, ବୁଢ଼ାରଜା ଅଂଚଳ ବିଶେଷତଃ ଜଣାଶୁଣା ଥିଲା। ସମ୍ବଲ୍‌ପୁରକୁ ପ୍ରବେଶର ପଥ ଥିଲା ମୁଣ୍ଡୋଘାଟରୁ ବର୍ଷାକାଳରେ ଡଙ୍ଗା ଯୋଗେ ଓ ଶୀତକାଳରେ ନଭେମ୍ବରରୁ ମଇ ମାସ ପର୍ଯ୍ୟନ୍ତ ଗଭୀର ଜଳ ଉପରେ କୃତ୍ରିମ ଲୁହାପୋଲ ଉପରେ ଏକ ପୋଲ ଯାହାର ନାମ ଥିଲା 'ପନ୍‌ଟୁନ୍ ବ୍ରିଜ୍'। ଯେଉଁ ପୋଲ ଉପରେ ଯାତାୟାତ କରିବା ପାଇଁ ଶୁଳ୍କ ଦେବାକୁ ପଡୁଥିଲା। ଏହି ପୋଲର ଦାୟିତ୍ୱ ନେଇଥିଲେ ତଦାନୀନ୍ତନ ଜିଲ୍ଲା ବୋର୍ଡ ସଂସ୍ଥା। ଏହି ପୋଲ ଉପରେ ଯାତ୍ରୀବାହୀ ବସ୍ ଯାତ୍ରୀଙ୍କୁ ନ ନେଇ ଖାଲି ଅବସ୍ଥାରେ ପାର କରା ଯାଉଥିଲା। ମାଲପତ୍ରକୁ ଏପଟରୁ ସେପଟକୁ ନେବା ପାଇଁ ସାଧାରଣତଃ ଡଙ୍ଗା ବା ଗୁପ (୨ଟା ଡଙ୍ଗା ଯୋଗେ)ର ବ୍ୟବହାର କରାଯାଉଥିଲା। ଅନେକ କ୍ଷେତ୍ରରେ ହେମାଲ (କୁଲି ମାନଙ୍କୁ ହେମାଲ କୁହାଯାଏ)ମାନଙ୍କ ସାହାଯ୍ୟରେ ଓଜନଦାର ଜିନିଷ ସବୁ ପୋଲ ଉପରେ ପାର କରା ଯାଉଥିଲା।

ବର୍ଷାଋତୁରେ ସମ୍ବଲପୁରରୁ ବରଗଡ଼ ଆସିବା ଏକ କୌତୁହଳପ୍ରଦ ଅଭିଜ୍ଞତା। ସେତେବେଳେ ସମ୍ବଲପୁରରୁ ବରଗଡ଼ ଆସିବାକୁ ହେଲେ ବାଲିବନ୍ଧା ଠାରୁ ବା ବଡ଼ବଜାର ଠାରୁ ଡଙ୍ଗାରେ ନଦୀ କୂଳେ କୂଳେ ଲକ୍ଷ୍ମୀ ଡୁଙ୍ଗୁରୀ (ଆଜିକାଲିର ନୂଆଁ ମହାନଦୀ ପୋଲ) ପର୍ଯ୍ୟନ୍ତ ଆସି ସେଠାରୁ ଡଙ୍ଗାକୁ ନଦୀ ସ୍ରୋତରେ ଛାଡ଼ି ଦିଆ ଯାଉଥିଲା। କେବଳ ଅଭିଜ୍ଞ ନାବିକମାନେ ମଙ୍ଗକୁ ଜଗି ଡଙ୍ଗାର ଗତିପଥକୁ ନିୟନ୍ତ୍ରଣ କରୁଥିଲେ। କାରଣ ନଦୀ ପୂର୍ଣ୍ଣଗର୍ଭା ସମୟରେ ମଧ ଜଳରେ ବୁଡ଼ିରହିଥିବା ପଥରରେ ବାଜି ଡଙ୍ଗା ବୁଡ଼ି ଯିବାର ଆଶଙ୍କା ଥିଲା। ମଝିରେ ଏକ ବିରାଟ ପଥର ଜଳ ମଧ୍ୟରେ ଲୁଚି ରହି ସେଠାରୁ ଜଳର ଗତିପଥକୁ ଦୁଇ ଭାଗ କରି ଦେଉଥିଲା। ଗୋଟିଏ ଧାର ସମ୍ବଲପୁର ଓ ଅନ୍ୟଟି ମୁଣ୍ଡୋଘାଟ ଦେଇ ପ୍ରବାହିତ ହେଉଥିଲା। ତେଣୁ ତାର ଉପରକୁ ଡଙ୍ଗା ନେଇ ଏପରି ଭାବରେ ତାକୁ ନିୟନ୍ତ୍ରଣ କରୁଥିଲେ ଯେପରି ଡଙ୍ଗାଟି ସେହି ବିରାଟ ପଥର ନିକଟସ୍ଥ ଜଳରାଶିକୁ 'ରାମେଶ୍ୱର ଦଧେଲ' ବୋଲି ଲୋକେ କହୁଥିଲେ। ଏଠାରେ ତ ଅତି ଗଭୀର ଜଳରାଶି କେବଳ ଗ୍ରୀଷ୍ମ ଋତୁରେ। ସେତେବେଳେ ନାବିକମାନେ ସେଠାରେ ପଥର ଉପରେ ଦୁଇଟି ପାଦଚିହ୍ନ ଦେଖି ପାରୁଥିଲେ। ବର୍ଷର ଅନ୍ୟ ସମୟରେ ତାହା ଜଳାବୃତ୍ତ ରହୁଥିଲା। ଏହି ପାଦଚିହ୍ନକୁ ରାମଙ୍କର ପାଦଚିହ୍ନବୋଲି ପ୍ରବାଦ ଅଛି। ଏହି ପଥର ନିକଟ ଦେଇ ଜଳସ୍ରୋତରେ ଡଙ୍ଗା ଗ୍ରପ ପାର ହେଲାବେଳେ ନାବିକମାନେ ମଧ କିଛି ନ କରି କେବଳ ମଙ୍ଗକୁ ଧରି ଡଙ୍ଗାର ଗତିକୁ ନିୟନ୍ତ୍ରଣ କରୁଥିଲେ। ନୌକାରେ ଯାଉଥିବା ଯାତ୍ରୀମାନେ ହରିବୋଲ, ହୁଳହୁଳି ଶବ୍ଦରେ ସେଠାରେ ନଡ଼ିଆ, ଫୁଲ ଅର୍ପଣ କରି ଭଗବତ କୃପା ପ୍ରାର୍ଥୀ ହେଉଥିଲେ। ତାପରେ ଡଙ୍ଗା ସେହି ପଥର ପାର ହୋଇ ମୁଣ୍ଡୋଘାଟକୁ ବହୁଥିବା ସ୍ରୋତଗାମୀ ହେବା ପରେ ସମସ୍ତେ ଆଶ୍ୱସ୍ତ ହେଉଥିଲେ। ମୁଣ୍ଡୋଘାଟରେ ଡଙ୍ଗାରୁ ଓହ୍ଲାଇ ବସ୍ ଧରି ବରଗଡ଼ ଆସିବାକୁ ହେଉଥିଲା। ତେଣୁ ସମ୍ବଲପୁରରୁ ସକାଳ ୧୦ଟାରେ ବାହାରିଲେ ଡଙ୍ଗାରେ ନଦୀ ପାର ହେବାକୁ ପ୍ରାୟ ୩/୪ ଘଣ୍ଟା ଓ ବସ୍‌ରେ ବରଗଡ଼ ଆସିବାକୁ ପ୍ରାୟ ୨ ଘଣ୍ଟା ସମୟ ଲାଗୁଥିଲା। ସେତେବେଳେ କଛି ମୋଟର କମ୍ପାନୀ ଓ ସମଲେଶ୍ୱରୀ ମୋଟର କମ୍ପାନୀର ଗାଡ଼ିମାନ ଚଳୁଥିଲା। ମୋର ସମ୍ବଲପୁର ପାଠ ପଢ଼ା ବେଳେ ବୋଧ ହୁଏ ଗାଡ଼ି ଟିକଟ ଖର୍ଚ୍ଚ ଟ୦୫, ଦଶ ଅଣା ଥିଲା ଓ ଡଙ୍ଗା ଖର୍ଚ୍ଚ ଟ୦/, ଦୁଇ ଅଣାଥିଲା। ଛାତ୍ରମାନଙ୍କ ପାଇଁ ରିହାତି ମିଳୁଥିଲା। ବରଗଡ଼ରୁ ସମ୍ବଲପୁର ଯିବା ବେଳେ ମୁଣ୍ଡୋଘାଟରୁ ଡଙ୍ଗା ଭସା ଯାଇ ପୂର୍ଣ୍ଣ ନଦୀ ବଢ଼ି ବେଳେ ଅପର କୂଳରେ କଚେରୀ ପାଖରେ ଓ ଜଳ କମିଗଲେ ମୁଣ୍ଡୋଘାଟରୁ

ବାଲିବନ୍ଧା, ବଡ଼ବଜାର ବା ସୁବିଧାଜନକ ଘାଟରେ ଲାଗୁଥିଲା । ସେଠାରୁ ସହରକୁ ନିଜେ ନିଜେ ସୁବିଧା କରି ଯାଉଥିଲେ । କାରଣ ସେତେବେଳେ ରିକ୍ସା, ଅଟୋ, ବା ଅନ୍ୟ ଯାନବାହନର ସୁବିଧା ନ ଥିଲା । ସେତେବେଳେ ଛାତ୍ରମାନେ ପାଠ ପଢ଼ିବାକୁ ସ୍କୁଲ ଯିବା ପାଇଁ ଚାଲି ଚାଲି ଯାଉଥିଲେ । କେତେକ ପ୍ରତିଷ୍ଠିତ ବା ଧନୀ ବ୍ୟକ୍ତିଙ୍କ ସନ୍ତାନମାନେ ସାଇକଲରେ ଯିବା ଆସିବା କରୁଥିଲେ । ମୁଁ ମଧ ଦଲାଇ ପଡ଼ାରୁ ଚାଲି ଚାଲି ଫାଟକରେ ଥିବା ଜିଲ୍ଲା ସ୍କୁଲ ଘରରେ ଅସ୍ଥାୟୀ ଭାବେ ଚାଲୁଥିବା କଲେଜକୁ ଯାଉଥିଲି ଓ ଚାଲି କରି ଫେରୁଥିଲି । ଦଲାଇ ପଡ଼ାଠାରୁ ଫାଟକ ପ୍ରାୟ ୧.୫ ବା ୨ କିଲୋମିଟର ବା ୧ ମାଇଲରୁ ବେଶୀ ଦୂରତା ଥିଲା । ଚାଲି ଚାଲି ଯିବାକୁ ଅଧ ଘଣ୍ଟାରୁ ଉର୍ଦ୍ଧ୍ୱ ସମୟ ଅତିବାହିତ ହେଉଥିଲା । ତେଣୁ ଆମର କଲେଜ ନିର୍ଘଣ୍ଟକୁ ଆଖି ଆଗରେ ରଖି ଖିଆପିଆ ସାରି ସେତିକି ସମୟ ପୂର୍ବରୁ ଦଲାଇ ପଡ଼ାର ଘରୁ ବାହାରିବାକୁ ପଡୁଥିଲା ।

ଆଗରୁ ମୋର କଲେଜରେ କଳା ବିଭାଗରେ ନାମ ଲେଖାଇବା କଥା ସୂଚନା ଦିଆ ଯାଇଛି । ତେଣୁ ଯେତେବେଳେ ମୁଁ କଲେଜକୁ ଯାଇ ପ୍ରଥମ ଦିନ Logic (ତର୍କଶାସ୍ତ୍ର) ଶ୍ରେଣୀରେ ବସି ପାଠ ପଢ଼ା ଶୁଣିଲି ତାହା ମୋତେ କିପରି ଲାଗିଲା । କାରଣ ଆମେ ଅଗଷ୍ଟ ମାସରେ ନାମ ଲେଖାଇ ଥିବାରୁ ଆମର ଆଗରୁ ନାମ ଲେଖାଇ ଥିବା ନିୟମିତ ଛାତ୍ରମାନେ ଜୁଲାଇରୁ ନାମ ଲେଖାଇ କିଛିଟା ଅଧିକ ପଢ଼ିଥିଲେ । ତେଣୁ ତାଙ୍କ ସମକକ୍ଷ ହେବା ପାଇଁ ଅଧାପକମାନେ କେତେଟା ଲେଖାଏଁ ଅଧିକା ଶ୍ରେଣୀ ନେଇ ସେମାନଙ୍କ ସଙ୍ଗେ ପହଞ୍ଚାଇବାର ବ୍ୟବସ୍ଥା କରିଥିଲେ । ସେଦିନର ପାଠ୍ୟ ବିଷୟର ଆଲୋଚନା ଥିଲା - some p = not s, some s = not p ଇତ୍ୟାଦି । ତେଣୁ ପ୍ରଥମରୁ ଏ ବିଷୟରେ ମୋର ଆଗ୍ରହ କମି ଗଲା । ସେଦିନ ମନେ ମନେ ସ୍ଥିର କଲି ମୁଁ Arts ବଦଳରେ Science ପଢ଼ିବାକୁ । ମୁଁ ପ୍ରଥମ ଶ୍ରେଣୀରେ ମେଟ୍ରିକ ପାସ୍ କରିଥିବାରୁ ମୋର Science ରେ ନାମ ଲେଖାଇବା ପାଇଁ କିଛି ଅସୁବିଧା ହେଲା ନାହିଁ । ସେହି ଦିନ ଠାରୁ Biology (ଜୀବ ବିଜ୍ଞାନ) ଅତିରିକ୍ତ ବିଷୟ ସହ Physics, Chemistry, Mathematics ନେଇ ପଢ଼ିଲି । ଏହା ସଙ୍ଗେ English ବାଧ୍ୟ ରୂପେ ପଢ଼ିବାକୁ ହେଲା । Oriya (M.I.L.)କୁ ମଧ ପଢ଼ିବାର ଆବଶ୍ୟକ ହେଲା ନାହିଁ କାରଣ ପାଠ୍ୟକ୍ରମରେ ସେପରି ନିର୍ଦ୍ଦେଶ ନ ଥିଲା ।

ସେତେବେଳେ କଲେଜ ଅଧକ୍ଷ ଥିଲେ ରାୟସାହେବ ନାରାୟଣ ମିଶ୍ର ଓ ସେ ପଦାର୍ଥ ବିଜ୍ଞାନ ବିଭାଗର ଦାୟିତ୍ୱରେ ଥିଲେ । ତାଙ୍କ ବିଭାଗରେ ଥିଲେ ଶ୍ରୀ

ରାମଚନ୍ଦ୍ର ରାଜଗୁରୁ, ଶ୍ରୀ କି. ପି. ଦିଓ୍ୟାନ। ରସାୟନ ବିଜ୍ଞାନ ବିଭାଗରେ ଥିଲେ ଶ୍ରୀ ରାଜକିଶୋର ମିଶ୍ର ଓ ଶ୍ରୀ ଦାଶରଥୀ ମିଶ୍ର। ଜୀବ ବିଜ୍ଞାନ ବିଭାଗର ଦାୟିତ୍ୱରେ ଥିଲେ ଶ୍ରୀ ଭି. କି. କିଗ୍ରାନ, ଉଦ୍ଭିଦ ବିଜ୍ଞାନ ବିଭାଗରେ ଥିଲେ ଶ୍ରୀ ଆର. ବୈଦନାଥନ, ଇଂରାଜୀ ପାଇଁ ଥିଲେ Sri A.P.O. Brien ଓ Sri K.P.A. Pillai, ତର୍କଶାସ୍ତ୍ର ବିଭାଗରେ ଥିଲେ ଶ୍ରୀ ଶ୍ରୀନିବାସ ସାହୁ, ଅର୍ଥବିଜ୍ଞାନ ପାଇଁ ଥିଲେ ଶ୍ରୀ ବୈଦ୍ୟନାଥ ମିଶ୍ର। ଇତିହାସ ପାଇଁ ଶ୍ରୀ କୃଷ୍ଣଚନ୍ଦ୍ର ମିଶ୍ର, ଓଡ଼ିଆ ପାଇଁ ଶ୍ରୀ ରାମଚନ୍ଦ୍ର ମିଶ୍ର। ସଂସ୍କୃତ ପାଇଁ ଶ୍ରୀ ସର୍ବେଶ୍ୱର ରଥ, ଗଣିତ ପାଇଁ ଥିଲେ ଶ୍ରୀଯୁକ୍ତ ଇନ୍ଦୁଭୂଷଣ ଦାସଗୁପ୍ତ। ଶ୍ରୀ ଶିତିକଣ୍ଠ ନାୟକ, ଗ୍ରନ୍ଥାଗାରର ଦାୟିତ୍ୱରେ ଥିଲେ। ଅନ୍ୟାନ୍ୟ ବିଭାଗର କଥା ମନେ ନାହିଁ। ଦୁର୍ଭାଗ୍ୟ ବଶତଃ କଲେଜର କାର୍ଯ୍ୟରତ ଶ୍ରୀ ଶିତକଣ୍ଠ ନାୟକ ଗାଧୋଇବା ବେଳେ ବୁଡ଼ି ମରି ଯିବାରୁ କଲେଜ ଛୁଟି ହେଲା। ଆମ ଛାତ୍ର ମଧ୍ୟରୁ ଶ୍ରୀ ଜଗଦୀଶ ପଣ୍ଡା ଆଦି କେତେକ ସାହସୀ ଛାତ୍ର ଜଳରୁ ତାଙ୍କ ଶବ ଉଦ୍ଧାର କରିଥିଲେ।

କଲେଜରେ ରୀତିମତ ପାଠ ପଢ଼ା ଚାଲିଲା ଓ ଆମ୍ଭେମାନେ ବହୁ ପଛରେ ନାମ ଲେଖାଇଥିବାରୁ ଆମ ପାଇଁ ଅଧ୍ୟାପକମାନେ ଅଧିକ ସମୟ ପଢ଼ାଇ ପାଠ ଶେଷ କରୁଥିଲେ। ଆମମାନଙ୍କୁ ମଧ୍ୟ ଅଧିକ ପରିଶ୍ରମ କରିବାକୁ ପଡୁଥିଲା।

କଲେଜରେ କଳା (Arts), ବିଜ୍ଞାନ (Science) ଓ ବାଣିଜ୍ୟ (Commerce) ବିଭାଗରେ ପାଠ୍ୟଦାନ କରାଯାଉଥିଲା। କଳା ପଢୁଥିବା ଛାତ୍ରଛାତ୍ରୀମାନେ ପ୍ରାୟ ସକାଳ ୯ଟାରୁ ଗୋଟାଏ ପର୍ଯ୍ୟନ୍ତ, ବାଣିଜ୍ୟ ବିଭାଗର ଛାତ୍ରମାନେ ସକାଳେ ୭ଟାରୁ ୧୦ଟା ମଧ୍ୟରେ ଓ ବିଜ୍ଞାନ ବିଭାଗର ଛାତ୍ରଛାତ୍ରୀମାନେ ପ୍ରାୟ ୮ଟାରୁ ୨ଟା ବା କେବେ କେବେ ୪ଟା ପର୍ଯ୍ୟନ୍ତ ପଢୁଥିଲେ। କାରଣ କଲେଜରେ ଛାତ୍ରଛାତ୍ରୀଙ୍କ ସୁବିଧା ପାଇଁ ଅଧ୍ୟାପକମାନେ ଏପରି ପାଠ୍ୟଦାନ ନିର୍ଘଣ୍ଟର ବ୍ୟବସ୍ଥା କରିଥିଲେ ଯେ ଜଣେ ଛାତ୍ର/ଛାତ୍ରୀ ପ୍ରାୟ ୪/୫ ଘଣ୍ଟାରେ ନିଜ ପାଠ୍ୟ ବିଷୟରେ ନିର୍ଘଣ୍ଟ ଅନୁସାରେ ପାଠ ପଢୁଥିଲେ। କିନ୍ତୁ ବିଜ୍ଞାନ ଛାତ୍ର/ଛାତ୍ରୀମାନେ ଯେପରି ଏକା ଥରକେ ପାଠ ସାରି ଆସି ପାରୁ ନ ଥିଲେ। କାରଣ ବିଜ୍ଞାନ ପାଠ ପାଇଁ ଶ୍ରେଣୀ ଶିକ୍ଷା ବ୍ୟତୀତ ବିଜ୍ଞାନଶାଳାରେ ବ୍ୟବହାରିକ ପ୍ରତ୍ୟକ୍ଷ ଶିକ୍ଷାର (Practical)ର ଆବଶ୍ୟକତା ଥିଲା। ଯାହା ଶ୍ରେଣୀରେ ପଢ଼ାଯାଉଥିଲା ତା'ର ସଠିକ୍ ପ୍ରୟୋଗାତ୍ମକ ଜ୍ଞାନ ପାଇଁ ନିଜେ ପରୀକ୍ଷା ନିରୀକ୍ଷା କରି ଜ୍ଞାନ ଆହରଣର ସୁଯୋଗ ଲାଭ କରୁଥିଲେ। ଏହାକୁ Theory ଓ Practical ଶିକ୍ଷା ବୋଲି କୁହା ଯାଉଥିଲା। ଆବଶ୍ୟକ ସ୍ଥଳେ କଲେଜକୁ ଦୁଇ ଥର

ଯିବାକୁ ପଡୁଥିଲା । କଳା ବିଭାଗୀୟ ପାଠ ପାଇଁ ଏ ସବୁ ବ୍ୟାବହାରିକ ପରୀକ୍ଷା ଆଦିର ଆବଶ୍ୟକତା ନ ଥିବାରୁ କେବଳ ଶ୍ରେଣୀ ଅଧ୍ୟୟନ ଦ୍ୱାରା ହିଁ ଜ୍ଞାନ ଆହରଣ କରାଯାଉଥିଲା । ବାଣିଜ୍ୟ ବିଭାଗୀୟ ପାଠ ପାଇଁ କେତେକ ବିଷୟରେ ଶ୍ରେଣୀ ପାଠ୍ୟଦାନ ଓ ବ୍ୟାବହାରିକ ପ୍ରତ୍ୟକ୍ଷ ଜ୍ଞାନ ଆହରଣର ସୁଯୋଗ ଦିଆ ଯାଉଥିଲା । ଏଥିରେ ଟାଇପ୍ ଶିଖିବା (type writing) ବ୍ୟବହାରିକ ଜ୍ଞାନର ଅଭିଜ୍ଞତା ଉପରେ ଗୁରୁତ୍ୱ ଦିଆ ଯାଉଥିଲା ।

ସମ୍ବଲପୁରରେ ଅଧ୍ୟୟନ କଲାବେଳେ ପୂର୍ବ ବର୍ଷରୁ ପାସ୍ ପରିଥିବା ଛାତ୍ରଙ୍କ ସଙ୍ଗେ ପଢ଼ିବାକୁ ହେଲା । ସେମାନଙ୍କ ମଧ୍ୟରେ ସର୍ବଶ୍ରୀ ସାଲଗ୍ରାମ ପାଢ଼ୀ, ଜୟନାରାୟଣ ନାୟକ, କୈଳାସ ତିଓ୍ୱାରୀ, କୁମର ଚରଣ ବାରିକ, ଲାଲବିହାରୀ ଭୋଇ, ଦୁର୍ଗା ପ୍ରସାଦ ନାଏକ, କୁମାରୀ ସୈରେନ୍ଧ୍ରୀ ପଣ୍ଡା ଆଦି ଅନ୍ୟତମ । ଆମ ସଙ୍ଗରେ ପାସ୍ କରିଥିବା ଜାନକୀନାଥ ଆଗ୍ୱର୍ଯ୍ୟ ଓ ସୂର୍ଯ୍ୟପ୍ରସାଦ ପଣ୍ଡା, ଶଶିଭୂଷଣ ତ୍ରିପାଠୀ ଆଦି ସମସ୍ତେ ପଢୁଥିଲେ । ଆମେ ସମସ୍ତେ ବିଭିନ୍ନ ଘରେ ବା ଛାତ୍ରାବାସରେ ରହି ପଢୁଥିଲୁଁ । ମୁଁ ଦଲାଇ ପଡ଼ାରେ ପୋଲିସ୍ କ୍ଲବ ସମ୍ମୁଖରେ ବାସ କରୁଥିବା ୰ ଭୀଷ୍ମଦେବ ବିଶ୍ୱାଳଙ୍କ ଘରେ ରହି ପଢୁଥିଲି । ଏହା ଠିକ୍ ମହାନଦୀ କୂଳରେ ଅବସ୍ଥିତ । ତେଣୁ ପ୍ରତିଦିନ ସ୍ନାନ କରିବା ପାଇଁ ନଦୀକୁ ଯିବାକୁ ପଡୁଥିଲା । ବର୍ଷାକାଳରେ ନଦୀଧାର ଟିକିଏ ଦୂରକୁ ଗ୍ୱଲି ଗଲେ ନଦୀ ଗର୍ଭଟି ଜଳାବୃତ୍ତ ନ ଥିବାରୁ କେତେକ ଲୋକଙ୍କ ଶୌଗ୍ୱଳୟ ରୂପେ ବ୍ୟବହୃତ ହେଉଥିଲା । ତାକୁ ବନ୍ଦ କରିବା ପାଇଁ ମୁନସିପାଲଟି ତରଫରୁ ଜଗୁଆଳୀ ଥିଲେ । ସେମାନେ କୌଣସି ବ୍ୟକ୍ତିକୁ ଝାଡ଼ା ଫେରିବା ଦେଖିଲେ ତାଙ୍କ ସେହି ଅପ୍ରସ୍ତୁତ ଅବସ୍ଥାରେ ଧରି ନେବାର ଆକ୍ରମଣ ମୂଳକ ପ୍ରତିକ୍ରିୟା ପ୍ରକାଶ କରୁଥିଲେ । ସେଥିରୁ ମୁକ୍ତି ପାଇବା ପାଇଁ ଦୋଷ କରିଥିବା ବ୍ୟକ୍ତି ସେହି ଜଗୁଆଳୀକୁ କିଛି ଦେୟ ଦେବାକୁ ପଡୁଥିଲା । ମୁଁ ଥରେ ସେପରି ଅପଦସ୍ତ ହେବାକୁ ଯାଉଥିବା ବେଳେ ଆମ ଘର ମାଲିକ ବିଶ୍ୱାଳ ବାବୁଙ୍କ ସାନ ପୁଅ ଗୋକୁଳ ବାବୁଙ୍କୁ ଦେଖି ସେ ମୋତେ କିଛି କହିଲେ ନାହିଁ । ନଚେତ୍ ମୋର ଅବସ୍ଥା ଯେ କ'ଣ ହୋଇଥାନ୍ତା ତାହା କଳ୍ପନା ବହିର୍ଭୁତ ଥିଲା ।

ମୋର ସମ୍ବଲପୁର ରହଣୀ କାଳରେ ଆମ ଘରୁ ଗ୍ୱଉଳ, ଡାଲି, କାଠ ଆଣି ନିଜେ ରାନ୍ଧି ଖାଇ ପଢୁଥିଲି । ମୋର ବଡ଼ ପିଉସୀ ଫୁଲଦେବୀ ବିଧବା ହୋଇ ଘରେ ଥିବାରୁ ସେ ଏହି କାର୍ଯ୍ୟରେ ସାହାଯ୍ୟ କରୁଥିଲେ । ସେ ତ ଆଗରୁ ତାଙ୍କ ଦିଅର ଘରକୁ ଯାଇ ଫାଟକରେ ରହୁଥିଲେ । ତେଣୁ ତାଙ୍କ ସମ୍ବଲପୁର ବିଷୟରେ ଆଗରୁ କିଛି ଅଭିଜ୍ଞତା ଥିଲା । କେବେ କେବେ କାର୍ଯ୍ୟବଶତଃ ସେ ଆମ ଗାଁ କୁ ଗ୍ୱଲି

ଆସିଲେ ମୋର ସାନ ଭଉଣୀ ସୁଷମା ସମ୍ବଲପୁର ଯାଇ ରନ୍ଧନ କରୁଥିଲା । ସେ ନିଜେ ନଦୀରୁ ପାଣି ଆଣୁଥିଲା ଓ ଗୋଲବଜାରକୁ ଯାଇ ପନିପରିବା ଆଦି କିଣି ଆଣୁଥିଲା । ଏହା କମ୍ ଆଶ୍ଚର୍ଯ୍ୟର କଥା ନୁହେଁ କି ?

ମୁଁ କଲେଜରେ ପଢୁଥିବା ବେଳେ ମୋର ଜନୈକ Zoology ଅଧ୍ୟାପକ Sri ✓ G. Jhingran ସାହେବ ଦେଖିଲେ ମୋତେ 'How do you do ?' ବୋଲି ପଚାରୁଥିଲେ । ମୁଁ ତା'ର ଉତ୍ତର କ'ଣ ଦେବାକୁ ହେବ ନ ଜାଣି ଚୁପ୍ ରହୁଥିଲି । ଦିନେ ଅକସ୍ମାତ୍ ଦମ୍ଭର ସହିତ ଜିଜ୍ଞାସା ଦୃଷ୍ଟିରେ ତାଙ୍କୁ ତା'ର ଅର୍ଥ କ'ଣ ହେବ ପଚାରିଲି । ସେ ସହାସ୍ୟ ବଦନରେ ତା'ର ପ୍ରକୃତ ଉଦ୍ଦେଶ୍ୟ କଅଣ ଓ ଉତ୍ତରଟି ବୁଝାଇ ଦେଇଥିଲେ । ଅର୍ଥାତ୍ ତା'ର ଅର୍ଥ ହେଲା - ତୁମେ କିପରି ଅଛ ? ପଢ଼ାପଢ଼ି କିପରି ? ସ୍ୱାସ୍ଥ୍ୟ କିପରି ? ତା'ର ଉତ୍ତର ହେବ - I am allright, I am well, I am O.K. ଇତ୍ୟାଦି । ପରବର୍ତ୍ତୀ ସମୟରେ ତାଙ୍କୁ ସଠିକ୍ ଉତ୍ତର ଦେଇ ସନ୍ତୋଷ କରିଥିଲି । ପରେ ୧୯୬୧ ସାଲରେ ମୁଁ ଦିଲ୍ଲୀ ଯିବା ବାଟରେ ଲକ୍ଷ୍ନୌ ଷ୍ଟେସନରେ ତାଙ୍କୁ ଟ୍ରେନ୍‌ରୁ ଓହ୍ଲାଇବା ଦେଖିଥିଲି ଓ ମୁଁ ଯାଇ ତାଙ୍କ ପାଦ ଛୁଇଁବାରୁ ସେ ଆଶ୍ଚର୍ଯ୍ୟ ହୋଇ ମୋର ମୁହଁକୁ ଚାହିଁଲେ । ତା'ପରେ ମୁଁ ହସ ହସ ମୁଖରେ କହିଲି, " Sir, Roll No. 54, S.B. Dash ଏବଂ How do you do ?" ର ଟିପ୍ପଣୀ ଦେବାରୁ ଅତିଶୟ ଆନନ୍ଦିତ ହେଲେ ଓ ମୋତେ କୁଣ୍ଢେଇ ପକାଇଲେ । ସେତେବେଳେ ରେଲଗାଡ଼ି ଛାଡ଼ିବାର ଘଣ୍ଟା ହେବାରୁ ମୁଁ ମୋର ଡବାକୁ ଚାଲି ଆସିଲି । ଏହି ଆକସ୍ମିକ ଗୁରୁଦର୍ଶନର ଅନୁଭୂତି ପାଇଁ ନିଜେ ଗର୍ବିତ, ଆନନ୍ଦିତ ।

ହଁ, ପୁଣି ସମ୍ବଲପୁରର କଥା ଆଲୋଚନା କରାଯାଉ । ମୋର ସମ୍ବଲପୁରରେ ପଢ଼ିବା ବେଳେ ଅଭାବ ଦୃଷ୍ଟିରୁ ମୋର ଫିଜ୍ ମାଫ କରାଯାଇଥିଲା । ମୋର ଆବଶ୍ୟକତା ଅନୁଯାୟୀ କାଠ, ଚାଉଳ ଆଦିର ଅଭାବ ହେଲେ ମୋର ବାପା ଆମ ଗାଡ଼ିହଳରେ ଆମ ଗାଁରୁ ସମ୍ବଲପୁରକୁ ନେଇ ଯୋଗାଉଥିଲେ । ଅନ୍ୟାନ୍ୟ ସାମୟିକ ସାହାଯ୍ୟ ପାଇଁ ମୋର ସାନ କାକା, ଉପେନ୍ଦ୍ର ଦାଶ ସାଇକେଲରେ ଗାଁରୁ ସମ୍ବଲପୁରକୁ ଯାଇ ଟଙ୍କା ବା ଜିନିଷ ନେଇ ଯୋଗାଉଥିଲେ ଓ ପରଦିନ ଗାଁକୁ ପୁଣି ଫେରି ଆସୁଥିଲେ । ଏହା ତାଙ୍କ ବିଦ୍ୟାଳୟ ଛୁଟି ଦିନମାନଙ୍କରେ ସମ୍ଭବ ହେଉଥିଲା । ଏହିପରି ଭାବେ ଥରେ ସେ ସମ୍ବଲପୁର ଯାଇଥିବା ବେଳେ ଅନ୍ୟ କେଇଜଣ ବନ୍ଧୁ ମଧ୍ୟ ଆମ ଘରେ ଅତିଥି କିଛି ଦିନ ପାଇଁ ହୋଇଥିଲେ । ଅବଶ୍ୟ ଏହା ଆମ ପକ୍ଷେ ଘୋର ଅସୁବିଧା ହେଲେ ମଧ୍ୟ ସମ୍ମାନ ଦୃଷ୍ଟିରୁ କିଛି ପ୍ରକାଶ କରି ହେଉ ନ ଥିଲା । କାରଣ ଅତିଥିଙ୍କ ଖାଦ୍ୟପେୟ ଯୋଗାଇ ରହିବା ବସିବା ସବୁ ବିଷୟରେ ଯତ୍ନ ନେବାକୁ

ପଢୁଥିଲା । ତେଣୁ ସବୁ ଅତିଥିଙ୍କ ଗହଣରେ ସେ ନାନା କୌତୁକିଆ କଥା କହି ସମସ୍ତଙ୍କ ମନୋରଞ୍ଜନ କରୁଥିଲେ । ଏହା ଅବଶ୍ୟ ତାଙ୍କ ନିଜସ୍ୱ ଓ ସହଜାତ ପ୍ରବୃତ୍ତି ଥିଲା । ଥରେ ସେ ତଳେ ଶୋଇଥିବା ବେଳେ ଗୋଟିଏ ପିମ୍ପୁଡ଼ି ତାଙ୍କୁ କାମୁଡ଼ିବାରୁ ସେ ତତ୍‌କ୍ଷଣାତ ଛୋଟ ଜୀବଟିକୁ ନିଜ ହସ୍ତରେ ଧରି କହିଲେ, 'ଶଳା ପିମ୍ପୁଡିଟି ମୋତେ ଖୁବୁଛି । ମୁଁ ତାକୁ ଢବା ଉପରୁ ତଳକୁ ଛାଡ଼ି ଦେଉଛି - ତଳେ ପଡ଼ି ତା'ର ମୁଣ୍ଡ ଫାଟିଗଲେ ଠିକ୍ ପାନେ ପାଇବ ।' ଏହା ଶୁଣି ସମସ୍ତେ ହସି ହସି ଗଡ଼ିଯାଇଥିଲେ । କୌଣସି ପରିସ୍ଥିତିରେ ସମ୍ମୁଖୀନ ହେଲେ ସେ ସମୟରେ କଅଣ କହିଲେ ସମସ୍ତେ ଆନନ୍ଦିତ ହେବେ ଏହା ସେ ଭାବିଚିନ୍ତି ମାପିଯୁଖି କହୁଥିଲେ । ସମସ୍ତଙ୍କ ଏକ ନୂଆଁ ନାଆଁ ଦେଇ ଡାକିବା ତାଙ୍କ ଏକ ସବିଶେଷ ଗୁଣ ଥିଲା । ଏପରିକି ମୋତେ ମଧ କୌଣସି କାରଣରୁ "ବୁରରୁ" ବୋଲି ଏକ ବ୍ୟଙ୍ଗ ନାମ ଦେବାରେ କୁଣ୍ଠିତ ନ ଥିଲେ । ଅବଶ୍ୟ ଏହା ତାଙ୍କ ଅତିଶୟ ସ୍ନେହର ଉଦାହରଣ ମାତ୍ର । ମୋର ନାମ ଧରି କେହି ଡାକୁ ନ ଥିଲେ । ସମସ୍ତେ ପ୍ରାୟ 'ବାବୁ' କହିଲେ ମୋତେ ବୁଝୁଥିଲେ ।

ମୋର ସମ୍ବଲପୁର ରହଣୀ ସମୟରେ ମୋତେ ଦେଖିବା ଆଳରେ ମୋର କୁଳଟ୍‌ର ମିତମା, ବଡ଼ ମା, ଗୋପେଇପାଲିର ପିଉସୀ ଆଦି ସମ୍ବଲପୁର ଯାଇ ଦିନେ ଦି ଦିନ ରହି ଫେରି ଆସୁଥିଲେ । ଏହା ମୋର ପ୍ରତି ତାଙ୍କର ପ୍ରଗାଢ଼ ସ୍ନେହର ସୂଚନା ଦିଏ । ଅବଶ୍ୟ ସେମାନେ ମଧ ସମ୍ବଲପୁର ଓ ସମଲେଶ୍ୱରୀ ମନ୍ଦିର ଦର୍ଶନ କରି ଆନନ୍ଦ ଲାଭ କରିଥିଲେ । ମୁଁ ସମ୍ବଲପୁରରେ ଥିବା ବେଳେ ଅର୍ଥାତ୍ ୧୯୪୪-୪୬ ମଧରେ ୨ୟ ବିଶ୍ୱଯୁଦ୍ଧର କୁ-ପ୍ରଭାବରୁ ଜିନିଷ ପତ୍ର ମିଳିବାର କଟକଣା ହେବାରୁ ଯୋଗାଣ ବିଭାଗର ସୃଷ୍ଟି ହୋଇଥିଲା । ତେଣୁ ସହରବାସୀ ସମସ୍ତଙ୍କୁ ତାଙ୍କ ନିତ୍ୟ ବ୍ୟବହାର୍ଯ୍ୟ ବସ୍ତୁ ଯୋଗାଇ ଦେବା ପାଇଁ ଖାଉଟି କାର୍ଡର (Ration card) ପ୍ରଚଳନ ଆରମ୍ଭ ହୋଇଥିଲା । ତେଣୁ ଯେ ହେତୁ ଆମ୍ଭେମାନେ ଅଲଗା ରାନ୍ଧି ଖାଇ ଏକ ସଂପୂର୍ଣ୍ଣ ସ୍ୱତନ୍ତ୍ର ପରିବାର ରୂପେ ଗଣ୍ୟ ହୋଇ ଏକ ଖାଉଟି କାର୍ଡ ପାଇବାର ହକଦାର ଥିଲୁଁ ଓ ବିଶେଷତଃ ପାଠୁଆ ଛାତ୍ର ହିସାବରେ ମୁଁ ତଥା ଅନ୍ୟ ମେସ୍ କରି ରହୁଥିବା ଛାତ୍ରମାନେ ଏପରି card କରାଇ ଦେଇଥିଲେ । ଏହି କାର୍ଡ ଜରିଆରେ ଆମେ ଚିନି, ଗହମ, ସୂଜୀ, କିରାସିନି ବ୍ୟତୀତ ଦୁଷ୍ପ୍ରାପ୍ୟ ବିଦେଶୀ ଅତି ଉଚ୍ଚ ଦରର ପିନ୍ଧା ଲୁଗା ଓ ଜାମିଜ କପଡ଼ା ଆଦି ଜିନିଷ ଠିକ୍ ଦାମରେ ଉପଯୁକ୍ତ ସମୟରେ ପାଉଥିଲୁ । ଥରେ ମୋର ଠିକ୍ ମନେ ଅଛି ସମ୍ବଲପୁରକୁ ବିଲାତି କେଲିକୋ ମିଲ୍‌ର ମର୍ସେରଇଜ୍‌ଡ ଧୋତି ଆସିଥାଏ ଓ ତାହାର ଦାମ୍ ସେତେବେଳେ ୮ ହାତ ଲମ୍ବାର ଯୋଡ଼ାକୁ ଟ୧୬/ ୧୭ଙ୍କାରେ ମିଳୁଥିଲା । ତେଣୁ ମୁଁ ଓ ମୋର ବନ୍ଧୁ ଶ୍ରୀ କୁମର ଚରଣ

ବାରିକ ଯେ କି ଏବେ ଅବସର ପ୍ରାପ୍ତ ଶିକ୍ଷା ବିଭାଗର ୨ୟ ଶ୍ରେଣୀ କର୍ମଚ୍ଚାରୀ ରୂପେ ତାଙ୍କ ଗାଁ ସରକଣ୍ଡାରେ ଅବସ୍ଥାନ କରୁଛନ୍ତି, ତାଙ୍କ ସାଙ୍ଗେ ମିଶି ଏକ ଯୋଡ଼ା ଧୋତି କିଣିଥିଲୁ । ଏହି ଘଟଣାର ବର୍ଣ୍ଣନା କରିବାର ତାତ୍ପର୍ଯ୍ୟ ଏହି ଯେ ଉକ୍ତ ଧୋତିର ସୂତା ଏତେ ସରୁ, ମଜଭୁତ ଓ ଚିକ୍କଣିଆ ଯେ ତାକୁ ଧୋଇ ଦେଇ ଖରାରେ ଶୁଖାଇଲେ ସୂର୍ଯ୍ୟ କିରଣରେ ତାହା ଏତେ ତେଜୀୟାନ ଦେଖାଯାଉଥିଲା ଯେ ଆଖି ତା'ର ଝଲମଲ ପ୍ରଭାବ ସ୍ୱତଃ ମନୋମୁଗ୍ଧକର ଓ ଲୋଭନୀୟ ହେଉଥିଲା । ଏପରି ଖଣ୍ଡେ ଧୋତିର ବ୍ୟବହାର ଜୀବନରେ ଆରମ୍ଭ ଓ ଶେଷ ହୋଇଥିଲା । କାରଣ ତାହା ପରେ ଏ ପର୍ଯ୍ୟନ୍ତ ଜୀବନରେ ସେପରି ବିଦେଶୀ ଲୁଗାର ବଜାରରେ ବିକ୍ରୟ ହେବାର ଦେଖାଯାଇ ନାହିଁ । ତାହା ଇଂଲଣ୍ଡର ମାଞ୍ଚେଷ୍ଟର ତିଆରି, ଯେପରି ୧୦୦୦୦୦ ନମ୍ବର ସାଟନ ଟୁଇଲ୍ କାମିଜ କପଡ଼ା ଦୁର୍ମୂଲ୍ୟ ଓ ଅଭାବ ଘଟିଲା ସେହିପରି U.S.A. ତିଆରି KREMENIZ (Roll Gold) ବୋତାମ ସେତେବେଳେ ପ୍ରାୟ ଟ୧ କିମ୍ବା ଟ୧୫ ରେ ମିଳୁଥିଲା ଓ ତାହା ଜୀବନସାରା ବ୍ୟବହାରର ଉପଯୋଗୀ ଥିଲା । ଦୁର୍ଭାଗ୍ୟର କଥା ମୋର ସେପରି ବୋତାମ ଏକ ସାର ବହୁ ବର୍ଷ ପରେ ପ୍ରାୟ ୧୯୫୦/୫୨ ସାଲରେ ମୋର ସନ୍ତାନମାନଙ୍କ ମଧ୍ୟରୁ କେହି ଜଣେ ମୋର ନିଜର ସାଇକଲ ଫ୍ରେମ୍ ଭିତରେ ପକାଇ ଦେବାରୁ ଆଉ ତାକୁ ବାହାର କରି ହେଲା ନାହିଁ ଓ ଜୀବନରେ ଏକ ବିଶେଷ ଦରକାରୀ ଜିନିଷ ହରାଇ ଥିବାରୁ ଅବଶୋଷ ରହିଗଲା । ଏବେ ସେପରି ବୋତାମ କୌଣସି କୌଣସି ବନ୍ଧୁଙ୍କ ଠାରେ ଦେଖିଲେ କେବଳ ମନରେ କ୍ଷୋଭ ଓ ଅସନ୍ତୋଷ ଭାବର ଉଦ୍ରେକ ହୁଏ ସିନା କିନ୍ତୁ ନିଜକୁ ସଂପୂର୍ଣ୍ଣ ଅସହାୟ ମନେ ହୁଏ ।

ଥରେ ଆମ କଲେଜରେ ବକ୍ତୃତା ପ୍ରତିଯୋଗିତା ଆରମ୍ଭ ହେଲା । ସେଥିରେ ବିଷୟବସ୍ତୁ ଥିଲା "ବିଜ୍ଞାନ ସାହିତ୍ୟ ଠାରୁ ମନୁଷ୍ୟର ବେଶୀ ଉପଯୋଗୀ" । ଏହାର ସପକ୍ଷରେ ମୁଖ୍ୟ ରୂପେ ଶ୍ରୀଯୁକ୍ତ V. G. Jhingran, ଜୀବ ବିଜ୍ଞାନର ଅଧ୍ୟାପକ ଓ ସାହିତ୍ୟ ସପକ୍ଷରେ ମୁଖ୍ୟ ଥିଲେ ଶ୍ରୀଯୁକ୍ତ K.P.A. Pillai, ଇଂରାଜୀ ଅଧ୍ୟାପକ । ଉକ୍ତ ସଭାଟି ସନ୍ଧ୍ୟାରୁ ଆରମ୍ଭ ହୋଇ ରାତି ପ୍ରାୟ [illegible] ଟା ୩୦ ମି. ପର୍ଯ୍ୟନ୍ତ ଚାଲିଲା ଓ ଏହିପରି ଏକ ପ୍ରତିଯୋଗୀ ବକ୍ତୃତାର ନମୁନା ଆମେ ଆଗରୁ କେବେ ଶୁଣି ନ ଥିଲୁଁ । ତେଣୁ ଏହା ଆମକୁ ବିଶେଷ ଆମୋଦ ତଥା ଉତ୍ସାହ ପ୍ରଦାନ କରିଥିଲା । ବକ୍ତୃତା ଶେଷରେ କଲେଜରୁ ଘରକୁ ଫେରିଲା ବେଳେ ପ୍ରାୟ ରାତି ୯ ଟାରୁ ବେଶୀ ହୋଇ ଯାଇଥିଲା । ମୋର ପିଉସୀ ମୋତେ ଅପେକ୍ଷା କରି କ୍ଳାନ୍ତ ହୋଇ ଶୋଇ ପଡ଼ିଥିଲେ । ଫେରିବା ପରେ ଆମେ ମିଳିମିଶି ଖାଇଲୁଁ ।

ସମ୍ବଲପୁରରେ ପଢ଼ିବା ବେଳେ ତତ୍କାଳୀନ Gaiety Talkies ସିନେମା ହଲ୍‌ଟି (ଏକମାତ୍ର) ଥିଲା । ଟିକଟଦର ତଳ ଟ୦। ରୁ ଆରମ୍ଭ ହୋଇ ୧ମ ଶ୍ରେଣୀ ପର୍ଯ୍ୟନ୍ତ ଟ୦୫/ଟ୧ ଥିଲା । କିନ୍ତୁ ଛାତ୍ରମାନଙ୍କ ପାଇଁ ଅଧାଦାମରେ ଦେଖିବାର ସୁଯୋଗ ମିଳୁଥିଲା ଓ ଆମକୁ ଟ୦। ସ୍ଥଳେ ଦୁଇ ଅଣା ଦେଇ ତଳେ ବସି ସିନେମା ଦେଖୁଥିଲୁଁ । ମୁଁ ଯେଉଁ ଘରେ ରହୁଥିଲି ତାଙ୍କର ବଡ଼ ପୁଅ ଶ୍ରୀ ଭୈରବ ବିଶ୍ୱାଳ ପୋଲିସ S.P. ଅଫିସରେ କାମ କରୁଥିଲେ । ପୋଲିସ ଅଫିସ ଏକ ଗୁରୁ ଦାୟିତ୍ୱପୂର୍ଣ୍ଣ ହେତୁ ସେଠାରେ କାର୍ଯ୍ୟରତ କର୍ମଚାରୀମାନଙ୍କୁ ସିନେମା ଦେଖିବାକୁ ମାଗଣା Free Pass ଦିଆଯାଉଥିଲା । ଭୈରବ ବାବୁ କେବେ କେବେ ସେହି Pass ଆଣି ମୋତେ ଅନେକ ଥର ତାଙ୍କ ସଙ୍ଗରେ ମାଗଣାରେ ସିନେମା ଦେଖାଇ ନେଉଥିଲେ । ଏପରିକି ଥରେ ଥରେ ଦିନକୁ ପ୍ରଥମ ଓ ୨ୟ ଖେଳ ଦେଖି ରାତି ୧୨ ଟାରେ ଅଖିଆ ଅପିଆ ଫେରି ବିଳମ୍ବିତ ରାତିରେ ଭୋଜନ କରୁଥିଲୁଁ । ଅବଶ୍ୟ ଏସବୁ ଘରର ମୁରବୀ ଶ୍ରୀଯୁକ୍ତ ଭୀଷ୍ମଦେବ ବିଶ୍ୱାଳ ନ ଥିବା ବେଳେ ସମ୍ଭବ ହେଉଥିଲା । ନଚେତ୍ ଏପରି ଦୁଷ୍କର୍ମ ବା ଦୁଃସାହସ କରିବାର ଅବକାଶ ନ ଥିଲା ।

ଏହିପରି ଭାବେ ଆମର ପ୍ରଥମ ବର୍ଷ କଲେଜ ପାଠର ଶେଷରେ ମୁଁ ୨ୟ ବର୍ଷକୁ ୪ର୍ଥ ଇଚ୍ଛାଧୀନ ବିଷୟ 'Biology' ସହ ଉତ୍ତୀର୍ଣ୍ଣ ହେଲି । ସେତେବେଳେ ଯେଉଁ ଛାତ୍ରମାନେ Biology ସହ I.Sc. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଉଥିଲେ ସେମାନେ ଡାକ୍ତରୀ ପାଠ ପଢ଼ିବା ପାଇଁ ଯୋଗ୍ୟ ବିବେଚିତ ହେଉଥିଲେ । ମୁଁ ମଧ ସେହି ପାଠ ସହ I.Sc. ପାସ୍ କରିଥିଲେ ଅନ୍ତତଃ ଡାକ୍ତରୀ ପଢ଼ିବା ପାଇଁ ଦରଖାସ୍ତ କରିଥାଆନ୍ତି । ସେତେବେଳେ ମୁଁ ଡାକ୍ତରମାନଙ୍କ ଅକ୍ଳାନ୍ତ ପରିଶ୍ରମ ଓ ଦିନରାତି ଜନସେବାରେ କାର୍ଯ୍ୟରତ ଦେଖି ମୋ ମନରେ ଭାବାନ୍ତର ସୃଷ୍ଟି ହେବା ହେତୁ ମୁଁ ଜାଣିଶୁଣି ୪ର୍ଥ ବିଷୟ Biology କୁ ଛାଡ଼ିଦେଇ ଅନ୍ୟ ପାଠମାନଙ୍କ ଉପରେ ମନୋନିବେଶ କଲି ।

୨ୟ ବର୍ଷ ବିଜ୍ଞାନ ପାଠ ପଢ଼ିବା ବେଳେ ମୁଁ ଯାହାଙ୍କ ଘରେ ଦଲାଇ ପଡ଼ାରେ ରହୁଥିଲି ସେହି ମହାଶୟ ତାଙ୍କ ନିଜ ଗାଁଆ କୁଲୁଣ୍ଡାରେ ଏକାଦଶୀ ଉଦ୍‌ଯାପନ ସମାରୋହରେ ଯୋଗ ଦେବା ପାଇଁ ସୂଚନା ଦେଇ ସେମାନେ ମୋର ପିଉସୀଙ୍କ ସହ ଆଗରୁ କୁଲୁଣ୍ଡା ଚାଲି ଯାଇଥିଲେ । ମୁଁ ଓ ଭୈରବ ବାବୁ ଦୁହେଁ ଶନିବାର ଦିନ ଉପର ଓଳି ପ୍ରାୟ ୨ଟା ବେଳେ ସାଇକଲରେ ତାଙ୍କ ଗାଁ କୁ ବାହାରିଲୁଁ । ଶୀତକାଳ, ନଭେମ୍ବର ମାସ ଖରାର ପ୍ରାଦୁର୍ଭାବ ନ ଥିଲା ।

କଅଁଳିଆ ଖରା ବେଶ ଆମୋଦ ଦାୟକ ଥିବାରୁ ବାଟରେ ଗପସପ କରି

ଆଗେଇଲୁ । ବାଟରେ ଝାଉଁ ନଦୀରେ ଘଗୁ ନେଇଥିବା ଜଳଖିଆ ଖାଇ ନଦୀର ପାଣି ପେଟେ ପିଇଲୁଁ ଓ ସନ୍ଧ୍ୟା ଆଗରୁ ଅତାବିରା ବାଟେ ତାଙ୍କ ଗାଁରେ ପହଞ୍ଚିଲୁଁ । ଆମକୁ ଦେଖି ବନ୍ଧୁପ୍ରେମୀ ବିଶ୍ୱାଳ ବାବୁ ବେଶ ଆନନ୍ଦିତ ହେଲେ । ପରଦିନ ଦିବାଲୋକରେ ଉଦ୍‌ଯାପନୀ ଉତ୍ସବ ଶେଷରେ ବ୍ରାହ୍ମଣ ଭୋଜନ ସାରି ଆମେ ପୁଣି ସହଳ ସହଳ ଗାଁରୁ ବାହାରି ସନ୍ଧ୍ୟାରେ ସମ୍ବଲପୁର ପହଞ୍ଚିଲୁଁ । ପରଦିନ ଘରର ସ୍ତ୍ରୀଲୋକେ, ବିଶ୍ୱାଳ ବାବୁ ଓ ମୋର ପିଉସୀ ସମ୍ବଲପୁର ଆସିଥିଲେ ।

ଦ୍ୱିତୀୟ ବର୍ଷ ବିଜ୍ଞାନ ପଢୁଥିବା ବେଳେ ଅର୍ଥାତ୍ ୧୯୪୫ର ଜୁନ୍ ମାସରେ ମୋର ହିତୈଷୀ ବନ୍ଧୁ ଶ୍ରୀଯୁକ୍ତ ବଳିଷ୍ଠ ପ୍ରଧାନ ଓ ଗୋପାଇପାଲିର ସମ୍ବଲପୁରୀ ବସ୍ତ୍ରାଳୟରେ କର୍ମଚାରୀ ଶ୍ରୀ ନିତ୍ୟାନନ୍ଦ ମିଶ୍ରଙ୍କ ଅନୁମୋଦନ କ୍ରମେ ଆମ ଘରକୁ ଏକ ବୈବାହିକ ପ୍ରସଙ୍ଗର ଖବର ଆସିଲା ଯେ ସମ୍ବଲପୁରୀ ବସ୍ତ୍ରାଳୟର ପ୍ରତିଷ୍ଠାତା ଶ୍ରୀ କୃତାର୍ଥ ଆଚାର୍ଯ୍ୟଙ୍କ କନିଷ୍ଠ ଭ୍ରାତା ଶ୍ରୀ ଶିବଶଙ୍କର ଆଚାର୍ଯ୍ୟ ସେତେବେଳେ ତୋରା ଶାଖାର ଦାୟିତ୍ୱରେ ଥିଲେ । ତାଙ୍କ ଜ୍ୟେଷ୍ଠ ଭ୍ରାତା କୃତାର୍ଥ ଆଚାର୍ଯ୍ୟ ସୋନପୁର ମହାରାଜାଙ୍କ ନିମନ୍ତ୍ରଣ କ୍ରମେ ସୋନପୁର ଯାଇ ସେଠାରେ ବୟନ ଶିଳ୍ପର ଉନ୍ନତି ପାଇଁ କାର୍ଯ୍ୟରତ ଥିଲେ । ଶଙ୍କର ବାବୁଙ୍କର ଜ୍ୟେଷ୍ଠା କନ୍ୟା ଯୋଗେଶ୍ୱରୀ ଦେବୀଙ୍କ ବୟସ ପ୍ରାୟ ୧୨/୧୩ ବର୍ଷ ଓ ସେହି ବର୍ଷ ୫ମ ଶ୍ରେଣୀ ପାସ୍ କରି ଗାଁରେ ଉଚ୍ଚ ଶିକ୍ଷାର ସୁବିଧା ନ ଥିବାରୁ ସେ ଘରେ ରହି ଇଂରାଜୀ ଆଦି ଶିକ୍ଷା କରୁଥିଲେ । ତାଙ୍କର ପରିବାରର ଲୋକେ ତତ୍କାଳୀନ ନିୟମାନୁସାରେ ବିବାହ ବୟସ ଆଗତ କଳ୍ପନାରେ ଯୋଗ୍ୟପାତ୍ର ମିଳିଲେ ବିବାହ କରା ଯାଇପାରେ ମନେ କରି ପାତ୍ର ଅନ୍ୱେଷଣରେ ଥିଲେ । ତେଣୁ ଆମେ ଖବର ପାଇ ଗ୍ରୀଷ୍ମାବକାଶ ମଧ୍ୟରେ ବର୍ଷା ମୁଖରିତ ଦିବସର ସକାଳେ ମୁଁ ଓ ମୋର ବଡ଼ ବାପା ଦୁଇଟି ସାଇକଲରେ ଛତା ସହ ତୋରା ପାତ୍ରୀ ଦେଖିବା ପାଇଁ ଗଲୁଁ । ଆମେ ତୋରାରେ ପହଞ୍ଚିଲା ବେଳକୁ ବୋଧ ହୁଏ ଶ୍ରୀ ଶିବଶଙ୍କର ଆଚାର୍ଯ୍ୟ ସ୍ନାନ ପାଇଁ ବାହାରୁଥିଲେ ଓ ଆମ ଆସିବା ଖବର ସଠିକ ଭାବେ ନ ପାଇ ସ୍ନାନ ପାଇଁ ତାଙ୍କ ବଗିଚାରେ ଥିବା ରଙ୍ଗଘରର କୂଅକୁ ଚାଲିଗଲେ ।

ଏପଟେ ଆମ ଆସିବା ଖବର ତାଙ୍କର ବୟନ ଦାୟିତ୍ୱରେ ଥିବା ଜନୈକ ବ୍ୟକ୍ତି ଲୋକନାଥ ବେହେରା ଘରକୁ ଜଣାଇଲେ । ସେତେବେଳେ ଶ୍ରୀମତୀ ଶକୁନ୍ତଳା ଆଚାର୍ଯ୍ୟ, ଶଙ୍କର ବାବୁଙ୍କ ପତ୍ନୀ ଏ ଖବର ଜାଣି ଆମର ଆସିବାର କାରଣ ଓ ଉଦ୍ଦେଶ୍ୟ ଜାଣି ସଙ୍ଗେ ସଙ୍ଗେ ଶଙ୍କର ବାବୁଙ୍କୁ ଏ ଖବର ଜଣାଇଲେ ଓ ରଙ୍ଗଘର ଦାୟିତ୍ୱରେ ଥିବା ଗୌରଚନ୍ଦ୍ର ଦାଶ ସଙ୍ଗେ ସଙ୍ଗେ ଆସି ଆମ ସଙ୍ଗେ ଦେଖା କଲେ । ପରେ ଶଙ୍କର ବାବୁ ଆସି ଆମ ସଙ୍ଗେ ବାର୍ତ୍ତାଲାପ ପରେ ଯଥାଯୋଗ୍ୟ ଅତିଥି

ସହାରର ଆୟୋଜନ ହେଲା । ସେତେବେଳେ ତାଙ୍କ ଏକମାତ୍ର ପୁଅର ବୟସ ୩ ବର୍ଷ ଓ ସେ ଆମକୁ ଖାଇବା ପାଇଁ ଡାକି ଆସି ଆମର ଆନନ୍ଦ ବର୍ଦ୍ଧନ କରିଥିଲେ । ତାପରେ ଝିଅ ଦେଖା ପର୍ବର ଆରମ୍ଭ ହେଲା । ଖାଇବା ବେଳେ ଶ୍ରୀମତୀ ଆଗ୍ରୱର୍ଯ୍ୟ ମୋତେ ଠିକ୍ କରି ଦେଖି ନେଇଥିଲେ । ମୁଁ, ବଡ଼ ବାପା, ଶଙ୍କର ବାବୁ ଓ ଗୌର ବାବୁ ଆଦି ବସିଥିବା ବେଳେ ଉଦ୍ଦିଷ୍ଟ କନ୍ୟା ପାନ କେଇ ଖଣ୍ଡ ଧରି ଆସି ଆମ ପାଖରେ ଉପସ୍ଥିତ ରହି ଯଥାର୍ଥ ଅଭିବାଦନ କଲେ ଓ ବଡ଼ ବାପା ତାଙ୍କୁ ନିଜର ନିକଟରେ ବସାଇ ତାଙ୍କ ହାତ ଦେଖି ପାତ୍ରୀର ସୁଲକ୍ଷଣ ଗୁଡ଼ିକ ଚିନ୍ତା କରୁଥିଲେ । ମୁଁ ତ ଆଗରୁ ମୋର ବିବାହ ପ୍ରସଙ୍ଗ ଭଙ୍ଗ ଓ ଅନ୍ୟ କେତେକ ପାତ୍ରୀଙ୍କ ପ୍ରସ୍ତାବ ଉଲ୍ଲେଖ କରିଥିଲି । ତେଣୁ ମନରେ ସ୍ଥିର କରି ଦେଇଥିଲେ ଯେ ଭାଗ୍ୟାନୁସାରେ ପୂର୍ବାର୍ଜିତ ଫଳାନୁଯାୟୀ ଭାର୍ଯ୍ୟା ନିର୍ଦ୍ଧାରିତ ହୁଏ । ତେଣୁ ମୁଁ ଏହି ବର୍ଣ୍ଣିତ ବାଳିକାଙ୍କ ନୂପୁରଖଞ୍ଜିତ ପାଦଦ୍ୱୟ ଛଡ଼ା ମୁହଁ ବା ଅନ୍ୟ କୌଣସି ଆଡ଼େ ଦୃଷ୍ଟି ଦେଇ ନ ଥିଲି । କାରଣ ଯାହା କପାଳରେ ଥିବ ନିଶ୍ଚୟ ଘଟିବ, ନ୍ୟାୟରେ ଆଉ ପୂର୍ବ ଭଳି ଆଗ୍ରହୀ ହୋଇ ନ ଥିଲି । କିଛି ସମୟରେ ପାତ୍ରୀ ଦେଖା କାମ ସାରି ପ୍ରାୟ ଉପର ଓଳି ୩/୪ ଟାରେ ଘରକୁ ଫେରିଲୁଁ । ବଡ଼ ବାପା ସଙ୍ଗରେ ବାଳିକାଟିର ଟିପ୍ପଣୀ ଧରି ଆସିଥିଲେ । ବାଟରେ ଯାହା କନ୍ୟା ବିଷୟରେ ବାପାଙ୍କ ଠାରୁ ଶୁଣିଲି ସେ ଝିଅଟି ସୁଲକ୍ଷଣା ଓ ସୁନ୍ଦରୀ । ଯଦି ସେମାନେ ପ୍ରସ୍ତାବରେ ରାଜି ହେବେ ଆମେ ଝିଅଟିକୁ ବୋହୂ କରି ଆଣିବା ବୋଲି ସ୍ଥିର ଭାବେ ପ୍ରକାଶ କଲେ । କାରଣ ସାମାନ୍ୟ ଭାବେ ଟିପ୍ପଣୀରୁ ଯାହା ଜଣାଗଲା ଯେ ଉଭୟ ଜାତକ ମେଳକରେ ରାଜଯୋଟକ ପଡ଼ିଛି । ଘରକୁ ଫେରି ଏ ଖବର ସମସ୍ତଙ୍କୁ ଜଣାଇବାରୁ ସମସ୍ତେ ଆନନ୍ଦିତ ହେଲେ । ଅବଶ୍ୟ ତୋରାରୁ ଖବର ପାଇବା ପାଇଁ ସମସ୍ତେ ଚାତକ ପରି ଚାହିଁ ରହିଲେ ।

ଏଣେ ମୋର ଛୁଟି ଶେଷ ହେବାରୁ ମୁଁ ସମ୍ବଲପୁର ଚାଲି ଆସିଲି ଓ ଆସିବା ବେଳେ ଘରେ କହି ଆସିଲି ଯେ ତୋରାରୁ ଖବର ପାଇଲେ ତତ୍‌ପ୍ରତି ଯତ୍ନ ନେଇ ଉତ୍ତରାଦି ପଠାଇବେ । କିଛି ଦିନ ପରେ ଖବର ମିଳିଲା ଯେ ସେମାନେ ସୋନପୁରରୁ ବଡ଼ ଭାଇ (ଶ୍ରୀଯୁକ୍ତ କୃତାର୍ଥ ଆଗ୍ରୱର୍ଯ୍ୟ)ଙ୍କଠାରୁ ଅନୁକୂଳ ମତାମତ ପାଇ ଝିଅ ଦେବାରେ ଆଗ୍ରହୀ ବୋଲି । ସାଧାରଣତଃ ମୋର ଘରୁ ପଢ଼ି ଆସିବା ବେଳେ ମୋର ମା, ଖୁଡ଼ୀ ଓ ଗାଁର ଅନ୍ୟମାନେ ହାତ ଖର୍ଚ୍ଚ ପାଇଁ ଟ୦।, ଟ୦୧ ବା ଟଙ୍କାଟିଏ ପର୍ଯ୍ୟନ୍ତ ଦେଉଥିଲେ । ସେମାନଙ୍କ ମଧ୍ୟରେ ମୋର ମାଆଙ୍କ ଅତି ବିଶ୍ୱାସୀ ସହରାଣୀ, ବିଧବା 'ହଲୁ' ନାମ୍ନୀ ସ୍ତ୍ରୀର ଦାନ ସ୍ମରଣୀୟ । ଆଉ ମଧ୍ୟ ଆମ ଗାଁର ମାନ୍ୟରେ ବନ୍ଧୁ 'ମାଖୁନୁ' ଅନେକ ସମୟରେ ଟ୧ ରୁ ଟ୫ ପର୍ଯ୍ୟନ୍ତ ଦେଇ ପକାଉଥିଲେ । ଅବଶ୍ୟ ମୁଁ ତାଙ୍କୁ

ଗଲେ ମୋର ଶକ୍ତି ଅନୁସାରେ କିଛି ଉପହାର ସେମାନଙ୍କ ପାଇଁ ନେଇ ଯାଉଥିଲି ।

ଦଶହରା ଛୁଟିରେ ଡୋରାଗୁ ଶିବଶଙ୍କର ବାବୁ ତାଙ୍କ ବଡ଼ ଶାଳକ ଶ୍ରୀ ନାକଫୋଡ଼ା ନନ୍ଦ ଓ ଜଣେ ବନ୍ଧୁ ଶିକ୍ଷକଙ୍କ ସହ ଆମ ଘରକୁ ଯାଇ ଆମର ସଠିକ୍ ଉତ୍ତର ଜାଣିବାକୁ ଚାହିଁଲେ । ଆମେ ତାଙ୍କୁ ଅତିଥି ସତ୍କାରରେ ଆପ୍ୟାୟିତ କରି ବନ୍ଧୁ ମର୍ଯ୍ୟାଦା ରକ୍ଷା କରି ଲୁଗାପଟା ଦେବାରୁ ସେମାନେ ତାକୁ ଅଗ୍ରାହ୍ୟ କରି ଫେରାଇ ଦେଲେ । ନାକଫୋଡ଼ା ବାବୁ ମୋତେ ତାଙ୍କ କର୍ମସ୍ଥଳୀ ପାଟଣାଗଡ଼କୁ ଯିବା ପାଇଁ ଆମନ୍ତ୍ରଣ କଲେ । ସେତେବେଳେ ସେ ସେଠାରେ ଜଙ୍ଗଲ ବିଭାଗ ରେଞ୍ଜ ଅଫିସର ଥିଲେ । ଆମ ପରିବାରବର୍ଗଙ୍କ ଅନୁମୋଦନ କ୍ରମେ ନିର୍ଦ୍ଧାରିତ ଦିନ ବରଗଡ଼ରୁ ମୁଁ ନାକଫୋଡ଼ା ବାବୁଙ୍କ ସଙ୍ଗେ ବଲାଙ୍ଗିର ଗଲି ଓ ସେଠାରୁ ରାତ୍ରରେ ଏକ ସ୍ୱତନ୍ତ୍ର କାର ଯୋଗେ ପାଟଣାଗଡ଼ ଗଲୁଁ । ସେଠାରେ ୨ ଦିନ ରହି ବେଶ୍ ଆତିଥ୍ୟ ଗ୍ରହଣ କରିବା ପରେ ବଲାଙ୍ଗିର ଫେରିଲି ଓ ସେଠାରେ ଦିନଟିଏ ରହିଲି । ସେତେବେଳେ ନାକଫୋଡ଼ା ବାବୁଙ୍କ ବାପା ମା ବଲାଙ୍ଗିର ରୁଗୁଡ଼ୀ ପଡ଼ାରେ ରହୁଥିଲେ ଓ ତାଙ୍କ ଭାଇ ନିରଞ୍ଜନ ନନ୍ଦ ସରକାରୀ ଡାକ୍ତରଖାନାରେ କାମ କରୁଥିଲେ ଓ ତାଙ୍କ ଭଉଣୀ ଜୋଇଁ ଶ୍ରୀ ନିରଞ୍ଜନ ମିଶ୍ର ମୁନସଫ୍ କୋର୍ଟରେ ସିରସ୍ତାଦାର ଥିଲେ । ତେଣୁ ଏ ସମସ୍ତଙ୍କ ସଙ୍ଗେ ପରିଚିତ ହୋଇ ବଲାଙ୍ଗିର ତତ୍କାଳୀନ ଦର୍ଶନୀୟ ସ୍ଥାନ ରାଜାଙ୍କ ଉଆସ ଓ ଅନ୍ୟାନ୍ୟ ମନ୍ଦିର ଆଦି ଦର୍ଶନ କରି ପରଦିନ ଘରକୁ ଫେରି ଆସିଲି ।

ଏହାର କିଛି ଦିନ ପରେ ସେମାନେ ସ୍ଥିର କଲେ ଯେ ସେମାନେ ଏ ବିବାହ ପ୍ରସଙ୍ଗରେ ରାଜି । ପରେ ଯେତେବେଳେ ଶଙ୍କର ବାବୁ ସମ୍ବଲପୁର ଯାଇ ମୋ ସଙ୍ଗେ ଦେଖା କଲେ ସେତେବେଳେ ସେ ସଂପୂର୍ଣ୍ଣ ରୂପେ ପ୍ରକାଶ କଲେ ଯେ ସମସ୍ତେ ଏଥିରେ ଏକମତ । ସୁବିଧା ଦେଖି ବିବାହଟି ଶେଷ କଲେ ଭଲ ହୁଅନ୍ତା । କାରଣ ତାଙ୍କର ଆହୁରି ୩/୪ଟି ଝିଅ ଅଛନ୍ତି । କିନ୍ତୁ ମୁଁ ଏତେ ଶୀଘ୍ର ବିବାହର ସପକ୍ଷରେ ନ ଥିବାରୁ ତାଙ୍କୁ ମୋର ମାତାପିତା ଓ ବିଶ୍ୱାଳ ବାବୁଙ୍କ ସଙ୍ଗେ ଆଲୋଚନା କରିବାକୁ ଅନୁରୋଧ କଲି ।

ଉକ୍ତ ବିଶ୍ୱାଳ ମହାଶୟ ଏକ ପୁରୁଣା, ବୟସ୍କ ଓ ସଚ୍ଚୋଟ ସରକାରୀ ଅବସର ପ୍ରାପ୍ତ କିଲ୍ଲା ସାହେବଙ୍କ ପେଷକାର ଥିଲେ । ତାଙ୍କର ସଙ୍ଗେ ଥରେ ସଂସ୍ପର୍ଶରେ ଆସିଲେ ତାଙ୍କ ଅମାୟିକ ଓ ଧର୍ମପ୍ରାଣ ବ୍ୟକ୍ତିତ୍ୱରେ ଏକାନ୍ତ ମୁଗ୍ଧ ହେବାକୁ ହୁଏ । ଏଣୁ ତାଙ୍କ ସଙ୍ଗେ ଆମର ଅନେକ ଥର କଥୋପକଥନ ବେଳେ ବହୁ ଶିକ୍ଷଣୀୟ ବିଷୟ ଜାଣିବାକୁ ହୋଇଥିଲା । ତାଙ୍କ ଓଡ଼ିଆ ଓ ଇଂରାଜୀ ଭାଷାରେ ବେଶ୍ ଦକ୍ଷତା ଥିଲା ଓ ତାଙ୍କ ହସ୍ତାକ୍ଷର ବେଶ ଆକର୍ଷଣୀୟ ଓ ଆଦର୍ଶ ଥିଲା । ଏଣୁ ଜଣାଶୁଣା ଓ ପରିଚିତ

ଗୁଣଗ୍ରାହୀ ବ୍ୟକ୍ତିମାନେ ସେମାନଙ୍କ ଆବଶ୍ୟକ ଅନୁସାରେ ଆସି ତାଙ୍କ ସୁପରାମର୍ଶ ଲୋଡ଼ି ଉପକୃତ ହେଉଥିଲେ ଓ ସମୟ ସମୟରେ ଦରଖାସ୍ତର ଅଭୀପ୍‌ସିତ ଚିଠା କରି ଲୋକଙ୍କୁ ସାହାଯ୍ୟ କରୁଥିଲେ।

ସେ ତାଙ୍କ ଅନୁଭୂତିରୁ କେତେକ କଥା ପ୍ରକାଶ କରି କହି ଥିବାରୁ କିଛିଟା ଶିଖିବାର ସୁବିଧା ମିଳୁଥିଲା। ମଝିରେ ଦ୍ୱିତୀୟ ମହାସମର ବେଳେ ଓଡ଼ିଶା ସେକ୍ରେଟେରିଏଟ୍‌ର କୌଣସି ଆଶୁ ବିପଦ ଆଶଙ୍କା କରି କଟକରୁ ସମ୍ବଲପୁରକୁ କିଛି ସମୟ ପାଇଁ ଉଠି ଆସିଥିଲା। ତେଣୁ ସେହି ଅବସରରେ ହେଉ ବା ବଦଳି ହେତୁ ହେଉ ବିଶ୍ୱାଳ ମହାଶୟଙ୍କୁ କଟକ ବଦଳି ହୋଇ ସେଠାରେ କିଛି ଦିନ ଚାକିରୀ କରିଥିଲେ। ସେତେବେଳେ ସେ କଟକର ଓଡ଼ିଆ ବଜାରର ଜନୈକ ବିଧବା ଗୁଡ଼ିଆଣୀଙ୍କ ବାସଭବନରେ ଭଡ଼ାସୂତ୍ରରେ ରହି ତାଙ୍କ ସହ ମାଉସୀ ସଂପର୍କ ସ୍ଥାପନ କରିଥିଲେ। ଉକ୍ତ ଭଦ୍ର ମହିଳା ପରବର୍ତ୍ତୀ କାଳରେ ସମ୍ବଲପୁର ଆସି ଥିବାର ମୋର ମନେ ଅଛି।

ସେତେବେଳେ ସମ୍ବଲପୁରରୁ କଟକ ଯିବା ପାଇଁ ବସ୍ ଓ ଟ୍ରେନ୍‌ରେ ଯିବାକୁ ହେଉଥିଲା ଓ କଟକ ସହରରେ ଯଦିଓ ରିକ୍ସା ପ୍ରଚଳନ ହେଉଥିଲା ତଥାପି ତାହା ବହୁ ଶସ୍ତାରେ ଯିବା ଆସିବାର ସୁବିଧା ହେଉଥିଲା। ବିଶ୍ୱାଳ ବାବୁ କହନ୍ତି ତାଙ୍କର କଟକରେ ଟ୍ରେନ୍‌ରେ ପହଞ୍ଚିବା ପରେ ଓଡ଼ିଆ ବଜାରକୁ ଯିବା ପାଇଁ ରିକ୍ସାରେ ଟ୦.୬ ବା ଦୁଇ ଅଣା ପଡୁଥିଲା। ତେଣୁ ଜଣେ ସାଥୀ ମିଳିଲେ ତାର ଅଧା ମୂଲ୍ୟ ଦେବାକୁ ପଡୁଥିଲା। ତେଣୁ ସେ ରିକ୍ସାବାଲା ସଙ୍ଗେ କଥାବାର୍ତ୍ତା କରି ନିଜର ବେଗ୍‌ପତ୍ରକୁ ଗୋଟିଏ ପାନ ଦୋକାନ ଠାରେ ଜିମା ଦେଇ ତାଠାରୁ ପଇସାକରେ ୪ ଖଣ୍ଡ ପାନ ଖାଇ କିଛି ସମୟ ଅପେକ୍ଷା କରୁଥିଲେ। ପରେ ଉକ୍ତ ରିକ୍ସାବାଲା ଆଉ ଏକ ସବାରୀ ଯୋଗାଡ଼ କଲେ ସେ ବିଶ୍ୱାଳ ବାବୁଙ୍କୁ ଡାକି ଓଡ଼ିଆ ବଜାରକୁ ପହଞ୍ଚାଇ ଦେଉଥିଲା। ଏପରି ସେ ବଦ୍‌ଖର୍ଚ୍ଚ ନାପସନ୍ଦ କରୁଥିଲେ - ଏଥିରୁ ସ୍ୱତଃ ଜଣାପଡ଼େ।

ଦିନକର ଘଟଣା - ଥରେ ତାଙ୍କ ଉଦାରତାରେ ବିମୁଗ୍ଧ ହେବାକୁ ପଡ଼େ। ତାଙ୍କର ଗାଈଟିଏ ଥିଲା। ସମୟ ସମୟରେ ଗାଈର ଖର୍ଚ୍ଚ ତୁଲାଇବା ପାଇଁ ନିଜର ଖର୍ଚ୍ଚରୁ ଅଧିକ ହେଉଥିବା କ୍ଷୀରକୁ କେହି ଜଣାଶୁଣା ଲୋକ ଚାହିଁଲେ ତାକୁ ବ୍ୟବହାର ପାଇଁ ଯୋଗାଉଥିଲେ। ଉକ୍ତ ବ୍ୟକ୍ତି ତାଙ୍କ ଘରକୁ ଆସି କ୍ଷୀର ନେଉଥିଲେ। ଜଣେ ମୋର ସଂପର୍କୀୟ ଦାଦା ଗଜରାଜ ପଣ୍ଡା ତାଙ୍କ ଠାରୁ କ୍ଷୀର ନେଇ ମାସ ଶେଷରେ ତାର ମୂଲ୍ୟ ଆଣିଦେଲେ। ଉକ୍ତ ମହାଶୟ ସେହି ଦିନ ତାଙ୍କ ପେନ୍‌ସନ୍ ଧରି କଚେରୀରୁ ଆସିଥାନ୍ତି ଓ ସେ ତାଙ୍କ ପୁତ୍ରବଧୂର ଖର୍ଚ୍ଚ ପାଇଁ କିଛି ଖୁଚୁରା ଭଙ୍ଗାଇ

ଆଣିଥିଲେ। ସେତେବେଳେ ପିତଳ ଦୋପଇସିର ପ୍ରଚଳନ ଆରମ୍ଭ ହୋଇ ବହୁଳ ଭାବେ ଟ୍ରେଜେରୀରୁ ମିଳୁଥିଲା। ତେଣୁ ବିଶ୍ୱାଳ ବାବୁ ନିଜ ପକେଟରୁ ଖୁଚୁରା କିଛି ବାହାର କରି କହିଲେ, "ପଣ୍ଡା ବାବୁ! ଆପଣ ଯାହା ଦେବା କଥା ଦିଅନ୍ତୁ ମୁଁ ତାକୁ ଏହି ଖୁଚୁରା ପଇସା ସାଙ୍ଗରେ ମିଶାଇ ଦେଉଛି। ଆପଣ ତ ଦେଉଛନ୍ତି ମୋର ଗଣିବାର କିଛି ଆବଶ୍ୟକ ନାହିଁ। କାରଣ ଆମର ତ କ୍ଷୀର ବିକ୍ରି ବ୍ୟବସାୟ ନୁହେଁ, କେବଳ ତୁମର ଦରକାର ଥିଲା ଓ ଆମର ବଳକା କ୍ଷୀର ନେଉଥିଲେ। ଏଣୁ ତା'ର ମୂଲ୍ୟ ହିସାବ କରିବାର ଅନାବଶ୍ୟକ।" ଏଥିରୁ ତାଙ୍କ ଉଦାରତାର ସ୍ୱଷ୍ଟ ପ୍ରମାଣ ମିଳେ। ଏପରି ତାଙ୍କଠାରୁ ଅନେକ ସଦ୍‌ଗୁଣର ପ୍ରଭାବ ମୋ ଠାରେ ପଡ଼ିଥିବାର ଅନୁଭବ କରେ। ତାଙ୍କ ସଙ୍ଗେ କଥାବାର୍ତ୍ତା ବେଳେ ସେ ଉପଦେଶ ଛଳରେ ପାଠ ପଢ଼ା ପ୍ରତି ଧ୍ୟାନ ଦେବା ପାଇଁ ତାଗିଦ କରୁଥିଲେ ଓ କହୁଥିଲେ, "ଶଶି ବାବୁ! କଲେଜର ପ୍ରଥମ ବର୍ଷ ପଢ଼ାଟି ସାଧାରଣ ଓ ବାର୍ଷିକ ଉନ୍ନତି ପାଇଁ ସେତେ ପରିଶ୍ରମ ନ ହେଲେ ବି ଚଳିବ ଓ ପ୍ରଥମ ବର୍ଷଟି ଗୋଟିଏ ବାଉଁଶ ପକାଇ ତାକୁ ସାଧାରଣ ଭାବେ ଅକ୍ଳେଶରେ 'ଆଡ଼େ' ଅତିକ୍ରମ କରିବା ଯେପରି ସହଜ। ୨ୟ ବର୍ଷର ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ବାଉଁଶକୁ ସିଧା ବା ଠାଡ଼େଁ ଲମ୍ବ ଭାବେ ଅତିକ୍ରମ କରିବାକୁ ହେବ। ଏଣୁ ପ୍ରଗାଢ଼ ଯତ୍ନ ଓ ପରିଶ୍ରମ ଦରକାର।" ଏହି ଉଦାହରଣକୁ ମନେ ରଖି ମୋର ପିଉସୀ ୰ ଫୁଲଦେବୀ ସବୁବେଳେ ସ୍ମରଣ କରାଇ ଦିଅନ୍ତି ଓ ରାତିରେ ପଢ଼ିବା ପାଇଁ ଉଠାଇ ଦିଅନ୍ତି। ଏପରି ଭାବେ ପରିଶ୍ରମ କରି ପଢ଼ିବାକୁ ହେଉଥିଲା ଓ ଶେଷରେ ବୋଧ ହୁଏ ମାର୍ଚ୍ଚ ମାସରେ ୪ ତାରିଖରେ ଆମ I.Sc. ପରୀକ୍ଷା ହେଲା ଓ ସେ ମାସରେ ଶେଷରେ ବା ଅପ୍ରେଲ ମାସର ପ୍ରଥମ ସପ୍ତାହରେ ପରୀକ୍ଷାଦି ଶେଷ ହେଲା।

## ପ୍ରଥମ କଟକ ଯାତ୍ରା :-

ଇତି ମଧ୍ୟରେ କିଛି ଦିନ ପୂର୍ବରୁ ଆମ ଘରର ମାଲିକ ଭୀଷ୍ମଦେବ ବିଶ୍ୱାଳଙ୍କ ଜ୍ୟେଷ୍ଠ ପୁତ୍ର ଭୈରବ ଚନ୍ଦ୍ର ବିଶ୍ୱାଳଙ୍କୁ କଟକ ପୋଲିସ ଅଫିସକୁ ବଦଳି ହୋଇ ଯାଇଥିଲା ଓ ସେ ସେଠାକାର ଓଡ଼ିଆ ବଜାରରେ ଘରଭଡ଼ା ନେଇ ସପରିବାର ରହୁଥିଲେ। ବିଶ୍ୱାଳ ବାବୁ କଟକରେ କାର୍ଯ୍ୟ କଲାବେଳେ ସେହି ଓଡ଼ିଆ ବଜାରର ଏକ ବିଧବା ଗୁଡ଼ିଆଣୀ ଘରେ ଭଡ଼ାରେ ରହୁଥିଲେ ଓ ସେ ମହିଳା ଭୀଷ୍ମଦେବ ବିଶ୍ୱାଳଙ୍କୁ ଧର୍ମପୁତ୍ର ରୂପେ ତାଙ୍କୁ ଅନେକ ସମୟରେ ସହାୟତା ହେଉଥିଲେ। ଏହା ଅବଶ୍ୟ ଏକ କଟକୀ ଚଳଣୀ। ସେମାନେ ସେମାନଙ୍କ ଅମାୟିକ ବ୍ୟବହାର ହେତୁ ସେମାନେ ସେଥିରେ ମୁଗ୍ଧ ହୋଇ ଅନୁରୂପ ବ୍ୟବହାର ଦେଖାଉଥିଲେ। ତେଣୁ ଭୈରବ ବାବୁଙ୍କୁ ବିଶ୍ୱାଳ ବାବୁଙ୍କ ପୁତ୍ର ହିସାବରେ ସ୍ନେହ ବଶତଃ ତାଙ୍କୁ ଭଡ଼ାଘର ଦେଇ ରଖିଥିଲେ।

ତାଙ୍କର କଟକରେ ଅବସ୍ଥାନ ହେତୁ ମୋର ସମ୍ବଲପୁରରେ I.Sc. ପରୀକ୍ଷା ସରିବା ପରେ ଉଚ୍ଚ ଶିକ୍ଷା ପାଇଁ କଟକ ଯାଇ ରେଭେନ୍ସା କଲେଜରେ ପଢ଼ିବାର ଅଭିଳାଷ ଥିବାରୁ ମୁଁ I.Sc. ପରୀକ୍ଷାର ଠିକ୍ ପରବର୍ତ୍ତୀ ସମୟରେ ପତ୍ର କରିଆରେ ଠିକଣା କରି କଟକ ଯାଇ ସେଠାକାର ହାଲଚାଲ ଓ ଖର୍ଚ୍ଚ ପାଇଁ ବିଷୟ ବୁଝାବୁଝି କଲି । ସେହି ଆଳରେ ପୁରୀ ଜଗନ୍ନାଥ ଦର୍ଶନ କରିବାର ଉଦ୍ଦେଶ୍ୟ ରଖିଥିଲି । ତେଣୁ ପରୀକ୍ଷା ପରେ ଏକ ସୁବିଧା ଦିନ ଦେଖି ଓ ପିତାମାତାଙ୍କ ଅନୁମତି କ୍ରମେ କିଛି ପଇସା ପତ୍ର ଯୋଗାଡ଼ କରି କଟକ ଅଭିମୁଖେ କଛି ମୋଟର ଟ୍ରାନ୍ସପୋର୍ଟ କରିଆରେ ପୂର୍ବ ଦିନ ସ୍ଥାନ ସଂରକ୍ଷଣ ପୂର୍ବକ ସକାଳ ୭ଟା ପୂର୍ବରୁ ମୋଟର ଷ୍ଟେଣ୍ଡରେ ହାଜର ହେଲି । ଏଥି ପାଇଁ ଆଗରୁ ଯିବା ଦିନ ପାଇଁ ସ୍ଥାନ ସଂରକ୍ଷଣ ସକାଶେ ନିଜର ନାମ ଲେଖା ଯାଉଥିଲା ଓ ପ୍ରାୟ ୨୫/୩୦ ଜଣ ଯାତ୍ରୀ ଗୋଟିଏ ବସ୍‌ରେ ଯାଉଥିଲେ । ଆବଶ୍ୟକ ହେଲେ ପର୍ବପର୍ବାଣୀରେ ଚାହିଦା ଅନୁଯାୟୀ ଆଉ ଏକ ବସ୍‌ର ବନ୍ଦୋବସ୍ତ କରାଯାଉଥିଲା । ଅର୍ଥାତ୍ ଦିନକୁ ଗୋଟିଏ ବସ୍ ଯାଏ ଓ ସେ ଦିଗରୁ ଆଉ ଗୋଟିଏ ବସ୍ ଫେରି ଆସେ । ଗାଡ଼ି ଭଡ଼ା ଅଢ଼େଇ ଟଙ୍କା । ଏଣୁ ସେହି ହିସାବରେ ମୁଁ ମୋର ଯାତାୟତ ଖର୍ଚ୍ଚ ଓ ରହଣୀ ପାଇଁ ଶହେ ଟଙ୍କାରୁ କମ୍ ଧରି କଟକ ଯିବାର ପ୍ରୟାସ ଓ ସାହସ କରିଥିଲି ଓ ତାହା ମୋର ନିଜ ମାସିକ ଖର୍ଚ୍ଚରୁ ବଳାଇ ରଖିଥିଲି । ପ୍ରାୟ ୭ଟା ବେଳେ ଗାଡ଼ି ଛାଡ଼ିଲା ଓ ତତ୍କାଳୀନ ସମ୍ବଲପୁର ମେରାମଣ୍ଡଳୀ ରାସ୍ତା ଏବେ ଭଳି ସିଧା ସଳଖ ନ ଥିଲା । ତଥାପି ତତ୍କାଳୀନ ମଟର ଚାଳକ ୰ କୃଷ୍ଣଚନ୍ଦ୍ର ମିଶ୍ର ଓ ୰ ପଙ୍କଜ ବାବୁଙ୍କ ଗାଡ଼ି ଚଳାଇବା ଦକ୍ଷତା ଦେଖି ଆମେ ହତବାକ୍ ହୋଇ ପଡ଼ିଥିଲୁଁ । ସମ୍ବଲପୁରରୁ ମେରାମଣ୍ଡଳୀ ୧୧୫ ମାଇଲ ବା ୧୮୫ କି.ମି. । ସମ୍ବଲପୁରରୁ ବାଟରେ ରେଢ଼ାଖୋଲ, ବଇଣ୍ଡା, ହଣ୍ଡପା ଦେଇ ଅନୁଗୁଳରେ ପହଞ୍ଚିଲା ବେଳକୁ ପ୍ରାୟ ଦିନ ୨ଟା । ବାଟରେ ସେତେବେଳର ମିଳୁଥିବା ଖାଦ୍ୟପଦାର୍ଥ ଓ ଫଳମୂଳ ଦେଖି ଆନନ୍ଦ ଲାଗୁଥିଲା ଓ ପରବର୍ତ୍ତୀ ଦିନରେ ଫେରିବା ବେଳେ କିଛି ବଳକା ପଇସା ହେଲେ ସେସବୁ କିଣି ଘରକୁ ଆଣିବାର ପ୍ରୟାସ ରଖି ନିଜର ଉତ୍କଣ୍ଠାକୁ ଚାପି ରଖିଲି ।

ଅନୁଗୁଳରେ ପହଞ୍ଚି ସେଠାରେ ସେ କାଳର ଝୁପୁଡ଼ି ଘରେ ତଥାକଥିତ ଖାଦ୍ୟ ଯୋଗାଣଶାଳା ହୋଟେଲରେ ଦୁଇ ଅଣା ପଇସା ଦେଇ ଉଦର ପରିପୂର୍ଣ୍ଣ କରି ବସ୍‌କୁ ଯିବାକୁ ହେଲା । ବସରେ ଗଲାବେଳେ ଜଣେ ସହଯାତ୍ରୀ ମୋର ଘନିଷ୍ଠ ବନ୍ଧୁ ଧ୍ରୁବଚରଣ ତ୍ରିପାଠୀଙ୍କ ନିଜ ଅଗ୍ରଜ । ସେ ସେତେବେଳେ କଟକରେ ସରକାରୀ କର୍ମଚାରୀ ଥିଲେ । ସେଦିନ ତାଙ୍କ ଗାଁ (ତାଳଶିରିଗିଡ଼ା)ରୁ କଟକ ଫେରୁଥିଲେ । ମୋର ସଙ୍ଗେ କଥା ପ୍ରସଙ୍ଗ ପରେ ତାଙ୍କ ସଙ୍ଗରେ କଟକରେ ରହିବାକୁ ମତ ଦେଲେ ଓ ତାଙ୍କ ଘରେ ରହି ମୋର ଅନ୍ୟ ବନ୍ଧୁ ଭୈରବଚନ୍ଦ୍ର ବିଶ୍ୱାଳଙ୍କ ଘର

ଅନୁସନ୍ଧାନ ପାଇଁ ପ୍ରସ୍ତାବ ଦେଲେ । ଆମେ ଅନୁଗୁଳରେ ପହଞ୍ଚି ସେଠାରୁ ମେରାମଣ୍ଡଳୀ ଗଲୁଁ ଓ ରେଲଗାଡ଼ି ପାଇଁ ଅପେକ୍ଷା କଲୁଁ । ବସରେ ଲମ୍ବା ଯାତ୍ରା ଓ ନୂଆଁ ରେଲଯାତ୍ରା ହେତୁ ନୂତନ ଅନୁଭୂତି ଜାତ ହେଲା । ଟ୍ରେନ ଆସିଲା ଓ ଆମ୍ଭେ ଗୋଟିଏ ଡ଼ବାରେ ବସି କଟକରେ ନିର୍ଘଣ୍ଟି ହୋଇ ସାଢ଼େ ୭ ଘଣ୍ଟାରେ ପହଞ୍ଚିଲୁଁ । ମହାନଦୀ ପୋଲ ଦେଇ ଗାଡ଼ି ଗଲାବେଳେ ଯେଉଁ ଶବ୍ଦ ହେଲା ତାର ଅନୁଭୂତି ଅବର୍ଣ୍ଣନୀୟ । କଟକ ଷ୍ଟେସନର ଆଲୋକ ଦୂରରୁ ଦେଖି ଆମ୍ଭହରା ହୋଇଥିଲି । କଟକ ଷ୍ଟେସନରେ ତ୍ରିପାଠୀ ଦାଦା ମୋତେ ହଲାଇ ଉଠିବାକୁ କହି ନ ଥିଲେ ମୁଁ ଭାବବିହ୍ବଳ ହୋଇ ଓହ୍ଲାଇ ପାରି ନ ଥାନ୍ତି ।

ଟ୍ରେନ୍‌ରୁ ଓହ୍ଲାଇ ଜିନିଷପତ୍ର ଠିକ୍ ଭାବେ ଦେଖି ନେଲୁ କାରଣ ଶ୍ରୀଯୁକ୍ତ ଭାଷ୍କୁଦେବ ବିଶ୍ୱାଳ ତାଙ୍କ ପୁଅ ପାଇଁ ଘରୁ କିଛି ଚାଉଳ ଓ ଅନ୍ୟ ଆବଶ୍ୟକୀୟ କିଛି ବସ୍ତୁ ପଠାଇ ଥାଆନ୍ତି । କଟକରେ ସେତେବେଳେ ଭଲ ଉଷୁନା ଖାଇବା ଚାଉଳ ମିଳୁ ନ ଥିଲା । କିଛି ସମୟ ଅପେକ୍ଷା କଲା ପରେ ଭୈରବ ବାବୁ ଖୋଜି ଖୋଜି ଆସି ଆମ ପାଖେ ପହଞ୍ଚିଲେ ଓ ଆମକୁ ଖୋଜି ହଇରାଣ ହୋଇ ସାରିଥିଲେ ବୋଲି କହିଲେ । ତାଙ୍କ ସହ ଦେଖା ହେବା ପରେ ସମ୍ବଲପୁରରୁ ନେଇଥିବା ଜିନିଷ ସବୁ ତ୍ରିପାଠୀ ଦାଦାଙ୍କ ହାତରେ ତାଙ୍କ ବଙ୍ଗାଳୀ ସାହି ଭଡ଼ା ଘରକୁ ପଠାଗଲା ଓ ଆମେ ଦୁହେଁ ରାଣିହାଟରେ ତାଙ୍କ ବଡ଼ ଭାଇ ଘରକୁ ଗଲୁଁ କାରଣ ତାଙ୍କ ପିଲାମାନେ ତାଙ୍କ ଦାଦା ଘରକୁ ବୁଲିବା ପାଇଁ ଆସିଥିଲେ । ଆମେ ପରଦିନ ସକାଳୁ ଦାଦାଙ୍କ ଘରକୁ ଯାଇ ଉକ୍ତ ଜିନିଷ ସବୁ ସଂଗ୍ରହ କରିବାର ପ୍ରସ୍ତାବ ଦେଲୁଁ ।

ଆମେ ସବୁ ରାଣୀହାଟରେ ତାଙ୍କ ଦାଦାଙ୍କ ଘରେ ଖିଆପିଆ ସାରି ରାତି ୧୦ଟାରେ ରିକ୍ସାରେ ଓଡ଼ିଆ ବଜାରସ୍ଥ ବିଶ୍ୱାଳ ବାବୁଙ୍କ ଭଡ଼ା ଘରକୁ ଗଲୁଁ ଓ ରାତିଟା ପାଇଁ ବିଶ୍ରାମ ନେଲୁଁ ।

ପରଦିନ ସକାଳୁ ଉଠି ନିତ୍ୟକର୍ମ ସାରିବା ପରେ ମୁଁ ଓ ଭୈରବ ବାବୁ ଦୁହେଁ ବଙ୍ଗାଳୀ ସାହିର ତ୍ରିପାଠୀ ଦାଦାଙ୍କ ଘରକୁ ଖୋଜି ଖୋଜି ଗଲୁଁ । ତ୍ରିପାଠୀ ଦାଦା ଓ ତାଙ୍କ ସ୍ତ୍ରୀ ଆମକୁ ଜଳଖିଆ ଯାଚିବାରୁ ମନା କଲୁଁ କାରଣ ଭୈରବ ବାବୁ ଶୀଘ୍ର ଘରକୁ ଫେରି ଅଫିସ୍‌କୁ ଯିବାର ଥିଲା । ସେମାନେ ପରେ ତାଙ୍କ ଘରେ ରହିବାକୁ କହିଲେ । ମୁଁ ହଁ କରି ଚାଲି ଆସିଲି ।

ସେ ଦିନଟି ଭୈରବ ବାବୁଙ୍କ ବସାରେ କଟାଇ ତା' ପରଦିନ ସକାଳ ଜଳଖିଆ ସାରି ତ୍ରିପାଠୀ ଦାଦାଙ୍କ ବସାକୁ ଗଲି ଓ ପ୍ରାୟ ୧୦ଟା ପୂର୍ବରୁ ଯାଇ ତାଙ୍କ ବସାରେ ପହଞ୍ଚିଲି । ଦାଦା ତାଙ୍କ ଅଫିସ୍ ଯିବା ପାଇଁ ପ୍ରସ୍ତୁତ ହେଉଥାଆନ୍ତି । ରନ୍ଧାବଢ଼ା

ସରିବା ପରେ ଖାଇ ସେ ଅଫିସ୍‌କୁ ବାହାରିଲେ ଓ କହି ଗଲେ ସେ ଦିନଟି ତାଙ୍କ ଘରେ ରହିବା ପାଇଁ । କାରଣ ସେ ଫେରିଲେ ସମସ୍ତେ ମିଶି ସିନେମା ଦେଖିଯିବା - ସେ ଦିନ ପ୍ରଭାତ ସିନେମାରେ 'ଅଦ୍ଭୁତ୍ କନ୍ୟା' ନୂଆଁ ଚଳଚ୍ଚିତ୍ର ଲାଗିଥାଏ । ମୁଁ 'ହଁ' କି 'ନା' କହିବା ପୂର୍ବରୁ ସେ ସାଇକେଲରେ ଅଫିସ୍ ଚ୍ଛଲିଗଲେ । ଘରେ ମୁଁ ଓ ଭାଉଜ ଏକା ରହିଲୁ ।

କିଛି ସମୟ ପରେ ଭାଉଜ ମୋ ପାଇଁ ଆଉ କିଛି ଖାଇବାର ବନ୍ଦୋବସ୍ତ କରିବାକୁ ବସୁଥିଲେ କିନ୍ତୁ ମୁଁ ତାଙ୍କୁ ସେଥିରୁ ବାରଣ କଲି ଓ ଯାହା ହେଇଛି ସେଥିରେ ଚଳିଯିବ ବୋଲି କହି ଆମେ ଉଭୟେ ଖିଆପିଆ ସାରି ବିଶ୍ରାମ କଲୁଁ । ମଧ୍ୟାହ୍ନଟି ଭାଉଜଙ୍କ ସଙ୍ଗେ ଅନେକ ଖୁସି ଗପରେ କଟିଗଲା କାରଣ ସେ ଆମର ସମ୍ବଲପୁରୀ ଝିଅ ଥିଲେ ଓ ଆମ ପାଖରୁ ଅନେକ କଥା ବୁଝିବାକୁ ଚ୍ଛହୁଁଥିଲେ । ଉଭୟେ ଅଜଣା ଥିଲେ ମଧ ତାଙ୍କ ବ୍ୟବହାରରେ ବେଶ୍ ନୂତନତା ଓ ଆମୋଦ ଭରି ରହିଥିଲା । ଅପରାହ୍ଣ ୪ଟା ପରେ ତ୍ରିପାଠୀ ଦାଦା ଅଫିସ୍‌ରୁ ଫେରିଲେ ଓ ପୂର୍ବ ଯୋଜନାନୁସାରେ ଭାଉଜ ଜଳଖିଆ ଆଦି ପ୍ରସ୍ତୁତ କରି ରାତ୍ର ଭୋଜନର କିଛିଟା କାମ ସାରି ଦେଇଥିଲେ । ଦାଦା ମଧ ଅଫିସ୍‌ରୁ ଫେରିବା ବେଳେ ଆମ ପାଇଁ ସିନେମା ଟିକଟ କିଣି ଆଣିଥିଲେ । ଜଳଖିଆ କରିବା ପରେ ଆମେ ତିନିହେଁ ପ୍ରଭାତ ସିନେମା ଦେଖିବାକୁ ବାହାରିଲୁଁ । ଗୋଟିଏ ରିକ୍ସା ଡକାଗଲା, ମୁଁ ଓ ଭାଉଜ ଏକ ନିବୁଜ ରିକ୍ସାରେ ବସିଲୁ ଓ ଦାଦା ସାଇକେଲରେ ବସି ଆମ ରିକ୍ସା ପଛେ ପଛେ ଚ୍ଛଲିଥାଆନ୍ତି । ସିନେମା ଆରମ୍ଭ ପୂର୍ବରୁ ଆମେ ସିନେମା ହଲରେ ପହଞ୍ଚିଲୁ । ଭାଉଜ ମହିଳା ଶ୍ରେଣୀରେ ଓ ଆମେ ପୁରୁଷ ଶ୍ରେଣୀରେ ବସି ସିନେମା ଦେଖିଲୁଁ । ସିନେମାରେ ବିଶିଷ୍ଟ ଅଭିନେତା ଭୂମିକାରେ ଅଶୋକ କୁମାର ଓ ଅଭିନେତ୍ରୀ ଭୂମିକାରେ ଦେବୀକା ରାନୀ ଅଭିନୟ କରୁଥିଲେ । କଟକରେ ତେତ୍କାଳୀନ ସିନେମା ହଲ୍ ମଧରେ ସର୍ବୋତ୍କୃଷ୍ଟ ପ୍ରେକ୍ଷାଳୟ ପ୍ରଭାତ ଓ ଆଉ ଅନ୍ୟ ଗୋଟିଏ 'କେପିଟେଲ୍' ବସିବା ସୁବିଧା ଘର ଓ ଯନ୍ତ୍ରପାତି ଦୃଷ୍ଟିରୁ ବେଶ୍ ଲୋଭନୀୟ ଥିଲା । ମୁଁ ସମ୍ବଲପୁରରୁ ପ୍ରଥମ ହୋଇ କଟକ ଯାଇଥିବାରୁ ସମ୍ବଲପୁର 'ଗେଟି ଟକିଜ୍' ସଙ୍ଗେ ତୁଳନାତ୍ମକ ଚିନ୍ତାଧାରାରେ 'ପ୍ରଭାତ' ସିନେମା ଅତି ଉଚ୍ଚ କୋଟୀର ମନେ ହେଲା । ଶବ୍ଦଚିତ୍ରାଦି ମନୋମୁଗ୍ଧକର ମନେ ହେଲା । ୮ଧଟାରେ ସିନେମା ଶେଷ ହେଲା । ମୁଁ, ଭାଉଜ ରିକ୍ସାରେ ଓ ଦାଦା ସାଇକେଲରେ ବସାକୁ ଫେରିଲୁ । ଭାଉଜ ରନ୍ଧନ ପର୍ବର ପରବର୍ତ୍ତୀ ପର୍ଯ୍ୟାୟରେ ହସ୍ତ ଦେଲେ । ଭୋଜନ କରି ଖୁସି ଗପରେ ରାତ୍ରି କଟାଇ ଶେଷରେ ଶୟନ କଲୁଁ । ଦିନଟି ବେଶ

ମଉଜ ମଜଲିସରେ କଟିଗଲା। ପରଦିନ ସକାଳୁ ଓଡ଼ିଆ ବଜାରକୁ ଯିବା ପାଇଁ ଇଚ୍ଛା ହେବାରୁ ଦାଦା ଓ ଭାଉଜ ମନା କରି ବସିଲେ, ହେଲେହେଁ ମୁଁ ତାଙ୍କୁ ଅନୁରୋଧ କରି ଓଡ଼ିଆ ବଜାର ଉଦ୍ଦେଶ୍ୟରେ ବାହାରିଲି। ବାହାରିବା ପୂର୍ବରୁ ଆଗଦିନର ସିନେମା ଟିକଟ ଖର୍ଚ୍ଚ ଓ ରିକ୍ସା ଖର୍ଚ୍ଚ ବିଷୟରେ ପଚାରିବାରୁ 'ଦାଦା' ସେ ବିଷୟରେ ମୋତେ ଚିନ୍ତା କରିବାର ଉଚିତ ନୁହେଁ କହି କଥାଟାକୁ ଉଡ଼ାଇ ଦେଲେ ଓ ଭାଇ ପ୍ରତି ତାଙ୍କର କର୍ତ୍ତବ୍ୟ ବିଷୟରେ ମୋତେ ଉପଦେଶ ଦେଇ ଗଲେ। ହେଲେହେଁ କର୍ତ୍ତବ୍ୟ ଦୃଷ୍ଟିରୁ ମୁଁ ଅନ୍ତତଃ ସିନେମା ଟିକଟ ଖର୍ଚ୍ଚ ଦେବାକୁ ଜିଦ୍ କରିବାରୁ ଅଦେଖା ପ୍ରାୟ ହୋଇ କେବଳ ଟିକଟ ଖର୍ଚ୍ଚ ବାବଦକୁ ସମସ୍ତଙ୍କ ପାଇଁ ଟ.୧ (ଦଶ ଅଣା ଦରରେ) ଅତି କଷ୍ଟରେ ଗ୍ରହଣ କଲେ, କିନ୍ତୁ ସନ୍ତୋଷରେ ନୁହେଁ। ପୁଣି ତାଗିଦ କରି କହିଲେ ଶୀଘ୍ର ତାଙ୍କ ଘରକୁ ଆସିବା ପାଇଁ। ସେତେବେଳେ ଅନ୍ନପୂର୍ଣ୍ଣା ଥିଏଟର ଦେଖିବାକୁ ଯିବା ପାଇଁ ଆକଟ କରି କହିଲେ। ମୁଁ ଆସି ଓଡ଼ିଆ ବଜାରରେ ପହଞ୍ଚିଲା ବେଳକୁ ସମସ୍ତେ ମୋ ଉପରେ ଖପା। କାରଣ ମୁଁ ନ କହି ସେଠାରେ ଦିନ ଓ ରାତିସାରା ରହିଗଲି। ମୋର ଟୀକା, ଟିପ୍ପଣୀ କୈଫତ ସବୁ ପାଣି ଫାଟିଲା। ମୋର ଦୋଷ ମାନି ନେଲି ଓ ଏପରି ଭୁଲ୍ ନ କରିବା ପାଇଁ କାନ ଧରିବା ଅଭିନୟ କରିବାରୁ ସମସ୍ତେ ଆନନ୍ଦରେ ହସି ପକାଇଲେ।

ସେଦିନ ଅଫିସ୍ ଯିବା ସମୟ ଆସିଥିଲା। ତେଣୁ ଭୈରବ ବାବୁ ପ୍ରସ୍ତୁତ ହେଉଥାନ୍ତି ଅଫିସ୍ ଉଦ୍ଦେଶ୍ୟରେ। ସେ ଖିଆପିଆ ସାରି ଅଫିସ୍ ଗଲେ। ଆମେ ଘରେ ରହିଲୁଁ। ଗଲା ବେଳେ କହିଗଲେ, "ମୁଁ ଆସିଲା ପରେ କିପରି କଟକ ସହର ଦେଖା ହେବ ଆଉ ଏକ କାର୍ଯ୍ୟକ୍ରମ କରାଯିବ।" ମୁଁ ତାଙ୍କୁ ମୁଣ୍ଡ ଟୁଙ୍ଗାରି ଗ୍ରହଣ କଲି। ଖିଆପିଆ ଶେଷ କରି ମଧ୍ୟାହ୍ନରେ ବିଶ୍ରାମ ନେଲୁଁ ଓ ଗୁଡ଼ିଆଣୀ ବୁଢ଼ୀ ଓ ତାଙ୍କ ପରିବାର ବର୍ଗଙ୍କ ସହ କଥାବାର୍ତ୍ତା ଆଦି କରି ଭୈରବ ବାବୁଙ୍କ ଫେରିବା ବାଟକୁ ଚାହିଁ ରହିଲୁ।

ଭୈରବ ବାବୁ ଅଫିସ୍‌ରୁ ଫେରିବା ପରେ ସମସ୍ତେ ମିଶି ଜଳଯୋଗ କଲୁଁ। ତାଙ୍କର ପରିବାର ମଧ୍ୟରେ ସେମାନେ ଦୁଇଟି ପ୍ରାଣୀ ଓ ତାଙ୍କ ୨ଟି ପୁଅ - ହରିପ୍ରସାଦ ଓ ଶିବପ୍ରସାଦ। ସେମାନଙ୍କ ଅତିଥି ଭାବେ ମୁଁ ମିଶି ୫ ଜଣ। ଜଳଖିଆ ସରିବା ପରେ ଭୈରବ ବାବୁ, ତାଙ୍କ ସ୍ତ୍ରୀ ଓ ମୁଁ ବସି କଟକ ବୁଲିବା ତଥା ଅନ୍ୟାନ୍ୟ ସ୍ଥାନ ବୁଲିବା ବିଷୟରେ ଆଲୋଚନା ଚାଲିଲା। ଭୈରବ ବାବୁ କଥା ପ୍ରସଙ୍ଗରେ ଆରମ୍ଭ କଲେ - "ବାବନ ବଜାର ତେପନ ଗଳି - ତେବେ ଯିବୁ କଟକ ବୁଲି।" ଏହା ସେ ସମୟର ପ୍ରଚଳିତ ଢଗ। ଏବେ ତ କଟକ ଆଉ ୧୯୪୬ର ପରି ହୋଇନାହିଁ।

୧୯୯୫ରେ ବୃହତ୍ତର କଟକ, ଜଗତପୁର ଓ ଭୁବନେଶ୍ୱର ସଙ୍ଗେ ସମ୍ବନ୍ଧିତ ହୋଇ ମହାନଗରୀରେ ପରିଣତ ହେଲାଣି। କଟକ କହିଲେ ରେଲୱେ ଷ୍ଟେସନ, ରେଭେନ୍ସା କଲେଜ, ଛତରା ବଜାର, ଯୋବ୍ରା ଆନିକଟ, ରାଣୀହାଟ, ମଙ୍ଗଳା ବାଗ, ମଣି ସାହୁ ଛକ, ବକ୍ସି ବଜାର, ଚୌଧୁରୀ ବଜାର, ବାଲୁ ବଜାର, ନିମ ଚୌଡ଼ୀ, ହାଇ କୋର୍ଟ, ଖ୍ରୀଷ୍ଟଧର୍ମ ମନ୍ଦିର... ଚଉକ, ଡଗର ପଡ଼ା ଅର୍ଥାତ୍ ମହାନଦୀର କାଠଯୋଡ଼ୀ ମଧ୍ୟବର୍ତ୍ତୀ ଅଂଚଳ, ଏ ମଧ୍ୟରେ ଶଙ୍କରପୁର, ଦୋଳମୁଣ୍ଡେଇ, ବକ୍ସବଜାର, ପିଠାପୁର, ଝାଂଜିରି ମଙ୍ଗଳା, ତେଲେଙ୍ଗା ବଜାର ଆଦି କେତେ ଅଞ୍ଚଳର ଉଲ୍ଲେଖନୀୟ ସ୍ଥିତି ଥିଲା। ଆଉ ମଧ୍ୟ ଶେଖ ବଜାର, ମହମ୍ମଦିଆ ବଜାର, ଓଡ଼ିଆ ବଜାର, ଗଙ୍ଗା ମନ୍ଦିର ଆଦି ମଧ୍ୟ କୁହାଯାଉଥିଲା। ତୁଳସୀପୁର, କନିକା କୋଠୀ, କାଫଲା ବଜାର, ବିଡ଼ାନସୀ କେବଳ ଅଗମ୍ୟ ଅଂଚଳ ରୂପେ ବିବେଚିତ ହେଉଥିଲା। ଏବେତ ବିଦ୍ୟାଧରପୁର, ଗୁଉଳିଆ ଗଞ୍ଜ, କଲ୍ୟାଣ ନଗର, ନୂଆଁ ବଜାର, ମଧୁପାଟଣା, ବାଦାମବାଡ଼ି ଏକ ବିରାଟ ବସ୍ତି ଅଞ୍ଚଳରେ ପରିଣତ ହୋଇ ଏକ ଏକ ବିଭାଗର ଅଞ୍ଚଳ ରୂପେ ଘୋଷିତ ହେଉଛି। ସେତେବେଳେ ରେଲୱେ ଷ୍ଟେସନ ଛଡ଼ା ଆଉ କେଉଁଠାରେ ରିକ୍ସାର ପ୍ରଚଳନ ନ ଥିଲା। ଅବଶ୍ୟ ତାଳଚେର ଗାଡ଼ି ବା ରାତ୍ରିରେ ଆସୁଥିବା କେଉଁ ଗୋଟିଏ ଅଧେ ଗାଡ଼ିରୁ ସହରକୁ ଯାତ୍ରୀମାନେ ରାତ୍ରିରେ ଯିବାର ପ୍ରଚଳନ ନ ଥିଲା। ସେମାନେ ରାତିରେ ଗାଡିରୁ ଓହ୍ଲାଇ ଷ୍ଟେସନରେ ରାତ୍ରିଯାପନ କରି ସକାଳୁ ନିଜ ନିଜ ଗନ୍ତବ୍ୟ ସ୍ଥଳକୁ ଯାଉଥିଲେ। ନଚେତ୍ ଆଗରୁ ଖବର ପାଇ ନିଜର ପରିଚିତ ବନ୍ଧୁ ବା ଘରୋଇ ସମ୍ପର୍କୀୟ ଲୋକ ଆସି ଷ୍ଟେସନରେ ଘୋଡ଼ାଗାଡ଼ି ବା ରିକ୍ସା ଧରି ଆସି ଆଗନ୍ତୁକ ମାନଙ୍କୁ ଅପେକ୍ଷା କରୁଥିଲେ।

ଭୈରବ ବାବୁଙ୍କ ପ୍ରସ୍ତାବ ଅନୁସାରେ କଟକର ମୁଖ୍ୟ ଦର୍ଶନୀୟ ସ୍ଥାନ ମଧ୍ୟରେ ସେତେବେଳେ ଥିଲା - ରେଭେନ୍ସା କଲେଜ, କଟକ ଚଣ୍ଡୀ ମନ୍ଦିର, କଟକ କାଳୀ ମନ୍ଦିର, କାଠଯୋଡ଼ୀ ବନ୍ଧ, ଯୋବ୍ରା ଆନିକେଟ, ପ୍ରଭାତ ଓ କେପିଟାଲ ସିନେମା ହଲ୍, ବାରବାଟୀ ଦୁର୍ଗ, ସେକ୍ରେଟେରିଏଟ୍, କେଣ୍ଟନମେଣ୍ଟ ରୋଡ, 'ସମାଜ' ପ୍ରେସ ଅଫିସ୍, ଇତ୍ୟାଦି। ଏହାପରେ ଭୁବନେଶ୍ୱର ଓ ସୁବିଧା ହେଲେ ପୁରୀ ଯାଇ ଜଗନ୍ନାଥ ଦର୍ଶନ ତଥା ସମୁଦ୍ର ଦେଖିବାର ପ୍ରସ୍ତାବ କରାଗଲା।

କଟକରେ ବୁଲିବା ପାଇଁ ଟାଉନ୍ ବସ୍, ରିକ୍ସା ବା ଗ୍ଭଲି କରି ବୁଲିବାକୁ ଭୈରବ ବାବୁ ସୂଚନା ଦେଲେ। କାରଣ ସେ ଅଫିସ୍‌କୁ କାମ କରିବାକୁ ଯିବାକୁ ପଡ଼ିବାରୁ ସେ ନିଜେ ମୋ ପାଇଁ ସମୟ ଦେଇପାରିବା ସମ୍ଭବ ହେଲା ନାହିଁ। ତେଣୁ

ପରଦିନ ମୁଁ ୧୦ଟା ପୂର୍ବରୁ ଖିଆପିଆ ସାରି ପ୍ରଥମ ଥର ପାଇଁ ଏକାକୀ ଟାଉନ୍ ବସ୍‌ରେ ରେଭେନ୍ସା କଲେଜ ଛକରେ ଓହ୍ଲାଇଲି । ବସ୍ ଟିକଟ ପ୍ରାୟ ୬ପାହୁଲା ଥିଲା । ମୁଁ ବସ୍‌ରୁ ଓହ୍ଲାଇଲା ବେଳେ ଆମ ବରଗଡ଼ ଅଞ୍ଚଳର ପ୍ରଖ୍ୟାତନାମା କୃଷକ ବନ୍ଧୁ ଲେଖକ କୃଷି ନିର୍ଦ୍ଦେଶକ ୰ ମଦନମୋହନ ପ୍ରଧାନଙ୍କ କନିଷ୍ଠ ପୁତ୍ର ସାଧୁଚରଣ ପ୍ରଧାନଙ୍କୁ ଭେଟିଲି । ସେ ମୋତେ ଦେଖି ଆଶ୍ଚର୍ଯ୍ୟ ଓ ଖୁସି ହୋଇଥିଲେ । ସେ ମୋର କଟକ ଭ୍ରମଣ ଉଦ୍ଦେଶ୍ୟ ଜାଣି ମୋତେ କେତେକ ଉପଦେଶ ଦେବା ପାଇଁ ତତ୍କାଳୀନ ପ୍ରସିଦ୍ଧ ମାଡ୍ରାସୀ ହୋଟେଲ୍‌କୁ ଡାକି ନେଇ ଆଳୁଚପ ଓ ଆଉ କିଛି ଜଳଖିଆ ଖୁଆଇଲେ । ସେତେବେଳେ ସେ ପ୍ରସ୍ତାବ ଦେଲେ ଯେ ଆମର ପୂର୍ବ ପ୍ରସ୍ତାବିତ ଦର୍ଶନୀୟ ସ୍ଥାନ ସବୁ ଠିକ୍ ଅଛି । କିନ୍ତୁ ଅନ୍ୟାନ୍ୟ ଉଚ୍ଚ ଶିକ୍ଷାନୟ ମଧରେ ରେଭେନ୍ସା କଲେଜିଏଟ୍ ସ୍କୁଲ, ପ୍ୟାରୀମୋହନ ଏକାଡେମୀ, ଗୌରୀଶଙ୍କର ପାର୍କ ନିକଟରେ ଥିବା ବାଳିକା ଉଚ୍ଚ ବିଦ୍ୟାଳୟ ତଥା କଟକର ବାଲୁ ବଜାରରେ ଥିବା ବହି ଦୋକାନ ଗୁଡ଼ିକ ଦେଖି ନେବା ଉଚିତ ହେବ । କାରଣ ପଢ଼ିବା ବେଳେ ପତ୍ର ଲିଖନ ବା ଖବର କାଗଜରୁ ସେଗୁଡ଼ିକର କେବଳ ନାମ ମାତ୍ର ଜାଣିଥିଲୁଁ । ସେଗୁଡ଼ିକ ହେଲା କଟକ ଟ୍ରେଡିଂ କମ୍ପାନୀ, କଟକ ଷ୍ଟୁଡେଣ୍ଟ ଷ୍ଟୋର, କଟକ ପବ୍ଲିସିଙ୍ଗ ହାଉସ୍ ଆଦି । ତା'ପରେ ହାଇକୋର୍ଟ, ଚାନ୍ଦନୀ ଚୌକ, ଆଦି ମଧ ଦର୍ଶନୀୟ ଯୋଗ୍ୟ ଥିଲା ।

ସାଧୁ ବାବୁ ମୋତେ ରେଭେନ୍ସା କଲେଜ କନିକା ଲାଇବ୍ରେରୀ ଓ ଉଭୟ ଛାତ୍ରାବାସ (ପୂର୍ବ ଓ ପଶ୍ଚିମ) ବୁଲାଇ ଆଣି ଛକରେ ଟାଉନ୍ ବସ୍‌ରେ ବସାଇ ଦେଇ ପରେ ତାଙ୍କ ରାଣୀହାଟ ଭଡ଼ାଘରକୁ ଆସିବାକୁ ଆମନ୍ତ୍ରଣ ଜଣାଇଲେ । ମୁଁ ଓଡ଼ିଆ ବଜାର ବସାକୁ ଯାଇ ମୋର ଦିନକର ଅନୁଭୂତି ଭୈରବ ବାବୁଙ୍କୁ ଜଣାଇବାରୁ ସେ ଆନନ୍ଦିତ ହେଲେ ।

ପରଦିନ ପୁଣି ମୁଁ ମୋର ନିତ୍ୟକର୍ମ ସାରି କଟକର ଅନ୍ୟାନ୍ୟ ପୂର୍ବ ପ୍ରସ୍ତାବିତ ସ୍ଥାନ ଗୁଡ଼ିକ ଭ୍ରମଣ କରିବାକୁ ପ୍ରାୟ ୨/୩ ଦିନ ଲାଗିଲା । ତାପରେ ଜଣାଗଲା ଯେ ଭୁବନେଶ୍ୱର ଲିଙ୍ଗରାଜ ମହାପ୍ରଭୁଙ୍କ ରଥଯାତ୍ରା ଚୈତ୍ର ଶୁକ୍ଳ ଅଷ୍ଟମୀରେ ହେବା କଥା । ଅଶୋକାଷ୍ଟମୀ ଦିନ ସନ୍ଧ୍ୟାରେ ଭୈରବ ବାବୁଙ୍କ ସଙ୍ଗେ ବସି ଭୁବନେଶ୍ୱରର ଦର୍ଶନୀୟ ସ୍ଥାନ ବିଷୟରେ ଆଲୋଚନା ବେଳେ ଜଣାଗଲା ଯେ, ଭୁବନେଶ୍ୱର ଯିବାକୁ ହେଲେ ଟ୍ରେନ୍‌ରେ ଯାଇ ଟ୍ରେନ୍‌ରେ ଫେରିବାକୁ ହେବ । କାରଣ ସେତେବେଳେ କାଠଯୋଡ଼ୀ ବା ମହାନଦୀ ପାର ହେବାକୁ ମଟର ଯିବା ପାଇଁ ପୋଲ ତିଆରି ହୋଇ ନ ଥିଲା । ତେଣୁ ଖରା ଦିନିଆ ଅସ୍ଥାୟୀ ରାସ୍ତାର

ବ୍ୟବହାର କରାଯାଉଥିଲା ଓ ଏତେ ମଟର ଗାଡ଼ିର ପ୍ରଚଳନ ନ ଥିଲା । ନିର୍ଦ୍ଧାରିତ ଦିନ ସକାଳୁ ମୁଁ ଟ୍ରେନ୍‌ରେ ଯାଇ ଭୁବନେଶ୍ୱରରେ ଓହ୍ଲାଇ ଗ୍ରଲି କରି ଅନ୍ୟ ଯାତ୍ରୀଙ୍କ ସଙ୍ଗେ ଚଲା ପଥରେ ଭୁବନେଶ୍ୱର ସହର ଆଡ଼େ ଗଲି । ସେଠାରେ ଦର୍ଶନୀୟ ସ୍ଥାନ ମଧ୍ୟରେ ଲିଙ୍ଗରାଜ ମନ୍ଦିର, କେଦାର ଗୌରୀ, ବିନ୍ଦୁସାଗର, ରାଜାରାଣୀ ମନ୍ଦିର, ଖଣ୍ଡଗିରି, ଉଦୟଗିରି ଓ ଲଳିତଗିରିର ଭଗ୍ନାବଶେଷ ପଥର ଗୁମ୍ଫାଦି ଅନ୍ୟତମ ।

ଭୁବନେଶ୍ୱର ପ୍ରାଚୀନତମ ନାମ ଏକାମ୍ରନଗରୀ । କାରଣ ଏହା ଏକାମ୍ରକାନନ ନାମରେ ନାମିତ ଥିଲା । ଏହାର ଅନ୍ୟ ନାମ ହେଲା ମନ୍ଦିର ମାଳିନୀ ଭୁବନେଶ୍ୱର । ଏହାର ଅବଲମ୍ବନରେ ସ୍ୱାଧୀନ ଭାରତରେ ସ୍ୱନାମଧନ୍ୟ କଳିଙ୍ଗ-କେଶରୀ ଡ. ମହତାବ ତାଙ୍କ ସ୍ୱନିବାସକୁ ଏକାମ୍ର ନିବାସ ନାମରେ ନାମିତ କରିଥିଲେ । ସେଠାରେ ରହି ତାଙ୍କ କର୍ମକ୍ଷେତ୍ର କଟକର ପ୍ରଜାତନ୍ତ୍ର ଭବନକୁ ଯିବା ଆସିବା କରୁଥିଲେ । ଏହାର ଯେଉଁ ଆଡ଼େ ଦେଖିବ ସାନ ବଡ଼, ସମ୍ପୂର୍ଣ୍ଣ ଅସମ୍ପୂର୍ଣ୍ଣ ମନ୍ଦିରମାନଙ୍କର ଭଗ୍ନାବଶେଷ । ହେଲେହେଁ ସୁପରିଚିତ ଲିଙ୍ଗରାଜ ମନ୍ଦିର ବେଢ଼ାର ଆୟତନ ପ୍ରାୟ ୧୦ ଏକରରୁ ଅଧିକ ହେବ ଓ ସେ ମଧ୍ୟରେ ଅନ୍ୟାନ୍ୟ ପାର୍ଶ୍ୱ ଦେବଦେବୀ ମନ୍ଦିର ମଧ୍ୟରେ ପାର୍ବତୀଙ୍କ ମନ୍ଦିର ଶିବଲିଙ୍ଗର ସାମନାରେ ଏକ ବିରାଟ ପଥର ନିର୍ମିତ ବୃଷଭ ଓ ଅନ୍ୟାନ୍ୟ ପାର୍ଶ୍ୱସ୍ଥ ଛୋଟ ବଡ଼ ମନ୍ଦିର ରହିଛି । ଏସବୁ ମନ୍ଦିରରେ ନୀତିନିୟମ ଅନୁସାରେ କାଳବେଳ ଦେଖି ଭୋଗ ଲାଗେ ଓ ଅପରାହ୍ନରେ ଭୋଗ ପ୍ରସାଦ ଆକାରରେ ବିକ୍ରି ହୁଏ । ମନ୍ଦିର ମଧ୍ୟରେ ଏକ କୂଅଁ ଅଛି । ତହିଁରେ ଜଳରେ ଠାକୁରଙ୍କ ସ୍ନାନ ମାଜଣା ସହ ଭୋଗାଦି ରନ୍ଧନ କାର୍ଯ୍ୟରେ ବ୍ୟବହୃତ ହୁଏ । ମନ୍ଦିର ଭିତରକୁ ପ୍ରବେଶ କଲେ ପ୍ରଥମରେ ବାମ ପାର୍ଶ୍ୱରେ ଏକ ମନ୍ଦିରରେ ବିଭିନ୍ନ ପଣ୍ଡା ପଢ଼ିଆରୀମାନେ ବସି ଥାଆନ୍ତି । ସେମାନଙ୍କ ପାଇଁ ଭାରତ ତଥା ଓଡ଼ିଶାର ବିଭିନ୍ନାଞ୍ଚଳ ଯାତ୍ରୀମାନଙ୍କ ଦାୟିତ୍ୱ ଦିଆଯାଇଛି । ସେମାନେ ଷ୍ଟେସନରୁ ହେଉ ବା ମନ୍ଦିର ବାହାରୁ ହେଉ ତାଙ୍କ ବାସସ୍ଥାନ ନାମମାତ୍ର ଜାଣି ସେହି ପଣ୍ଡାଙ୍କ ଜିମା ଦେଇ ଦିଅନ୍ତି । ସେ ପଣ୍ଡା ଏକ ବିରାଟ ପୋଥି ବାହାର କରି ସେହି ଗ୍ରାମର ପୂର୍ବ ଲେଖାରୁ ଉକ୍ତ ଯାତ୍ରୀର ପୂର୍ବପୁରୁଷଙ୍କ ନାମ ଆଦି ସେମାନେ ଦେଖାଇ ନୂତନ ଯାତ୍ରୀଙ୍କ ବଂଶୋଦ୍ଭବ ନୂଆଁ ବ୍ୟକ୍ତିମାନଙ୍କ ନାମ ତହିଁରେ ଉଲ୍ଲେଖ କରନ୍ତି ଓ ତାଙ୍କୁ ଭୁବନେଶ୍ୱରର ବିଭିନ୍ନ ଦର୍ଶନୀୟ ସ୍ଥାନ ବୁଲାଇବା ବ୍ୟବସ୍ଥା କରି ଶେଷରେ ତାଙ୍କର ପ୍ରାପ୍ୟ ଦକ୍ଷିଣା ଭାବେ ଯାତ୍ରୀଙ୍କୁ ବୁଝାଇ ସୁଝାଇ ପାଇଥାନ୍ତି ।

ବିନ୍ଦୁସାଗର ଏକ ବିରାଟ ପୁଷ୍କରିଣୀ ଲିଙ୍ଗରାଜ ମନ୍ଦିର ନିକଟରେ ଓ ଏହା

ସବୁ ତୀର୍ଥମାନଙ୍କରୁ ଜଳ ସଂଗ୍ରହ କରି ଏହାର ଖନନ ପରେ ସେଥିରେ ପକାଯାଇଥିବାରୁ ବିନ୍ଦୁ ବିନ୍ଦୁ ଜଳର ସଂଗ୍ରହରେ ଏହାର ଉତ୍ପନ୍ନ ହେବାର କଳ୍ପନା କରାଯାଇଥିବାରୁ ଏହାର ନାମ ବିନ୍ଦୁସାଗର ରଖାଯାଇଛି । ଏଥିରେ ସବୁ ତୀର୍ଥ ଜଳ ମିଶ୍ରିତ ହୋଇଥିବାରୁ ଏଥିରେ ସ୍ନାନ କରି ପିଣ୍ଡ ପ୍ରଦାନ କଲେ ଅଶେଷ ତୀର୍ଥ ଦର୍ଶନ ଓ ଭ୍ରମଣର ସୁଫଳ ମିଳେ ବୋଲି ପ୍ରବାଦ ଅଛି ।

କେଦାରନାଥ ମନ୍ଦିରରେ ପ୍ରଧାନତଃ ଦୁଇଟି ମନ୍ଦିର କେଦାର ଓ ଗୌରୀ ନାମରେ ରହିଛି । ଏହି ମନ୍ଦିର ଦୁଇଟିର ବିଶେଷତ୍ୱ ଏକ ପ୍ରାଚୀନ କିମ୍ବଦନ୍ତୀ ଉପରେ ଆଧାରିତ । ତା ନିକଟରେ ଏକ କୂଅଁ ଅଛି ଯହିଁରୁ ପାଣି ନେଇ ପାନ କଲେ ପେଟ ବେମାରୀ ଦୂର ହୁଏ । ତେଣୁ ବହୁ ଲୋକ ବିଭିନ୍ନ ପାତ୍ରରେ ସେହି ଜଳ ସାଙ୍ଗରେ ନେଇ ଥାଆନ୍ତି । କେଦାର ଓ ଗୌରୀ ନାମରେ ଦୁଇଟି ଜଳକୁଣ୍ଡ ଅଛି ଓ ତହିଁରେ କେଉଁ ଅଜଣା ସ୍ଥାନରୁ ଜଳ ଆସି କୁଣ୍ଡମାନଙ୍କରେ ପଡ଼ି ପୁଣି ବହିଯାଉଛି । ତେଣୁ ସେଥିରେ ଗାଧୋଇବା ପାଇଁ ବେଶ ଆରାମ ଦାୟକ ଓ ସ୍ୱାସ୍ଥ୍ୟକର ମନେ ହୁଏ ।

ରାଜାରାଣୀ ମନ୍ଦିରର କାରୁକାର୍ଯ୍ୟ ଓଡ଼ିଶାର ଅନ୍ୟାନ୍ୟ ମନ୍ଦିରମାନଙ୍କ ତୁଳନାରେ ଅତି ସୂକ୍ଷ୍ମ ଓ ମନୋହର ଅର୍ଥାତ୍ ଲିଙ୍ଗରାଜ ମନ୍ଦିର, ଜଗନ୍ନାଥ ମନ୍ଦିର ତଥା କୋଣାର୍କର କାରୁକାର୍ଯ୍ୟ ସଙ୍ଗେ ଅଭିନ୍ନ ଓ ସମତୁଲ ଅଟେ ।

ଏତଦ୍ ବ୍ୟତୀତ ଖଣ୍ଡଗିରି, ଉଦୟଗିରି ଓ ଲଳିତଗିରି ପାହାଡ଼ରେ ପୁରାତନ ପ୍ରସ୍ତର ଗୁମ୍ଫାର ଭଗ୍ନାବଶେଷ ଆଦି ଅଛି । ଉଦୟଗିରିର ଏକ ଜୈନ ମନ୍ଦିରରେ ପୂର୍ଣ୍ଣାଙ୍ଗ ଅବୟବର ତୀର୍ଥଙ୍କର ଜୈନ ମୂର୍ତ୍ତି କଳା ମୁଗୁନି ପଥରରେ ସ୍ଥାପିତ ହୋଇ ଆକର୍ଷଣୀୟ ସ୍ଥାନ ରୂପେ ପରିଗଣିତ । ଧଉଳଗିରି ସ୍ଥାପନ ବହୁ ବର୍ଷ ପରେ ହୋଇଛି ଓ ତା'ର ମହତ୍ତ୍ୱ କଳିଙ୍ଗ ଯୁଦ୍ଧ ସଙ୍ଗେ ସଂପୃକ୍ତ । ଏବେ ସେଠାରେ ଏକ ବୁଦ୍ଧ ମୂର୍ତ୍ତି ଓ ମନ୍ଦିର ସ୍ଥାପିତ ହୋଇ ଜାପାନୀ ସନ୍ୟାସୀଙ୍କ ଦ୍ୱାରା ପୂଜା ଆରାଧନା ଚାଲିଛି । ଦେଖିବା ଦୃଷ୍ଟିରୁ ଯଦିଓ ସେତେ ଆବଶ୍ୟକ ନାହିଁ ତଥାପି ସମ୍ୟକ ଧାରଣା ଦେବା ହେଉଛି ଲେଖକର ଏକମାତ୍ର ଉଦ୍ଦେଶ୍ୟ ।

ମୁଁ ଭୁବନେଶ୍ୱର ଯିବାର ପର୍ବ ଥିଲା ଅଶୋକାଷ୍ଟମୀ । ଏଥିରେ ଏକ ୧୭ ସ୍ତରୀୟ ନାୟିକା ବିଶିଷ୍ଟ ଏକ ସୁସଜ୍ଜିତ ରଥରେ ଲିଙ୍ଗରାଜ ପ୍ରଭୁଙ୍କୁ ବିରାଜମାନ କରାଇ ରଥ ଟଣାଯାଏ । ସେ ଦିନ ବା ପରଦିନ ନିଜ ମନ୍ଦିରକୁ ଫେରି ଆସନ୍ତି । ସେଦିନ ବହୁ ଜନସମାଗମର ହେତୁ ପ୍ରବଳ ଭିଡ଼ ଥିଲା ଓ ମୁଁ ରଥରେ ଠାକୁରଙ୍କ ବିଜେ ହେବା ପରେ ରଥ ଟଣା ଆରମ୍ଭ ହେବାରୁ, ପରବର୍ତ୍ତୀ ଟ୍ରେନ୍ ଧରି କଟକ ଫେରି ଆସିଲି । ଆସିବା ପରେ ମୋର ଆଣିଥିବା ଭୋଗାଦି ସମସ୍ତଙ୍କୁ ବିତରଣ

କରି ମୋର ଅନୁଭୂତି ବର୍ଣ୍ଣନା କଲି । ଭୈରବ ବାବୁ ମଧ ପୂର୍ବରୁ ଏହି ରଥ ଦେଖିବାର ସୁବିଧାରୁ ବଞ୍ଚିତ ଥିବାର ପ୍ରକାଶ କରିଥିଲେ । ସେଠାରେ ଅନେକ ଦିନ ଧରି ରହିବା ପରେ ଭୈରବ ବାବୁଙ୍କ ପ୍ରସ୍ତାବ କ୍ରମେ ପୁରୀ ଯିବାର ବିଚାର କରାଗଲା । ସେ ତାଙ୍କର ବିଭାଗୀୟ କୌଣସି ପୋଲିସ ରେଲୱେ କର୍ମଚାରୀ ସଙ୍ଗେ ପୁରୀ ପଠାଇବାର ଯୋଗାଡ଼ରେ ରହି ଏହି ସୂଚନା ଦେଲେ ଯେ ତାଙ୍କର ପୁରୀର ପୋଲିସ ଅଫିସରେ ଆମ ସମ୍ବଲପୁର/ ବରଗଡ଼ ଅଞ୍ଚଳର ଜଣେ ବ୍ୟକ୍ତି ଶ୍ରୀ ରଣଜିତ ଦେହେରୀ କାମ କରୁଛନ୍ତି । ତେଣୁ ତାଙ୍କ ଘରର ଠିକଣା ଯୋଗାଡ଼ କରି ମୋତେ ତାଙ୍କ ଘରକୁ ଯାଇ ତାଙ୍କ ସାହାଯ୍ୟରେ ପୁରୀ ଦେଖାର ସୁବିଧା ପାଇଁ ମନ୍ତବ୍ୟ ଦେଲେ ।

ପ୍ରାୟ ଦିନକ ପରେ ଭୈରବ ବାବୁ ଆସି ପ୍ରକାଶ କଲେ ଯେ ତାଙ୍କ ଅଫିସର ଜନୈକ ପୋଲିସ ଇନ୍ସପେକ୍ଟର ପର ଦିନ ତାଲଚେର ଗାଡ଼ିରେ ପୁରୀ ଯିବେ । ତେଣୁ ତାଙ୍କ ସଙ୍ଗେ ଯିବାର ସୁବିଧା ହେବାର ସୂଚନା ଦେଇ ପରଦିନ ଠିକ୍ ସମୟରେ ଯାଇ ରେଲୱେ ଷ୍ଟେସନରେ ଅର୍ଥାତ୍ ୭ଟା ବେଳେ ଭୈରବ ବାବୁ ଓ ମୁଁ ପହଞ୍ଚିଲୁଁ । ଉକ୍ତ ମହାଶୟ ମଧ ଆମ ଆଗରୁ ଯାଇ ଷ୍ଟେସନରେ ଯାଇ ପହଞ୍ଚି ଥାଆନ୍ତି । ତାଙ୍କ ସହ ମୋର ପରିଚୟ କରାଇ ଦେଲେ । ଟ୍ରେନ୍ ଆସିବା ସଂପର୍କରେ ମୋତେ ତାଙ୍କ ସଙ୍ଗେ ଚେତାଇ ଦେଲେ ଯେ ପୁରୀରେ ପଣ୍ଡାମାନଙ୍କ ଦୌରାତ୍ମ୍ୟ ବେଶୀ ଓ ସେଥି ପ୍ରତି ସାବଧାନ ରହିବାକୁ । ପୁଣି ପ୍ରକାଶ କଲେ ଯେ ଯେହେତୁ ଦେହେରୀ ବାବୁ ସାଙ୍ଗରେ ଥିବେ ତେଣୁ ବିଶେଷ ବ୍ୟସ୍ତ ହେବାର କିଛି ନାହିଁ ।

ଟ୍ରେନ୍‌ରେ ବସିବା ବେଳେ ସାମାନ୍ୟ ବାକ୍ୟାଳାପ ପରେ ଉକ୍ତ ମହାଶୟ ଶୋଇଗଲେ ଓ ମୁଁ ମଧ କୌଣସି ପରିଚିତ ବ୍ୟକ୍ତିଙ୍କ ଅଭାବରୁ ମଝିରେ ମୋତେ ନିଦ୍ରା ଆସିଗଲା । ଅବଶ୍ୟ ବାଟରେ ମଞ୍ଚେଶ୍ୱର, ଭୁବନେଶ୍ୱର, ଖୋର୍ଦ୍ଧା ଜଂକସନ୍, ଡେଲାଙ୍ଗ, ସାକ୍ଷୀଗୋପାଳ, ଜନକାଦେଈପୁର ପରେ ପୁରୀ ଆସିବାରୁ ସମସ୍ତେ ଓହ୍ଲାଇବା ପାଇଁ ପ୍ରସ୍ତୁତ ଓ ବ୍ୟସ୍ତ ହୋଇ ପଡ଼ିଲେ । ଏ ମଧରେ ଉକ୍ତ ପୋଲିସ ଅଫିସରଙ୍କ ମଧ ନିଦ ଭାଙ୍ଗିଗଲା । ମୁଁ ତାଙ୍କ ସହ ଟ୍ରେନ୍‌ରୁ ଓହ୍ଲାଇ ତାଙ୍କ ସଙ୍ଗେ ଗେଟକୁ ଯାଇ ଷ୍ଟେସନ ବାହାରକୁ ଚାଲି ଆସିଲି । ସେ ମହାଶୟ ରେଲୱେ କର୍ମଚାରୀ ହୋଇଥିବାରୁ ଓ ମୁଁ ତାଙ୍କ ସହ ଯାଇଥିବାରୁ ମୋତେ ଟ୍ରେନ୍‌ର ଟିକଟ ଖର୍ଚ୍ଚ ପଡ଼ି ନ ଥିଲା । ଯଦିଓ ସେତେବେଳେ ଟ୍ରେନ୍ ଟିକଟର ଦାମ ୧ ଟଙ୍କା ୧୨ ପଇସା ଥିଲା । ହେଲେହେଁ ଏବେକାର ଏହି ସ୍ୱଳ୍ପ ପରିମାଣର ମୁଦ୍ରା ହୁଏତ ସେତେବେଳେ ବହୁତ ଯଥେଷ୍ଟ ବୋଲି ପରିଗଣିତ ହେଉଥିଲା । ଉକ୍ତ ପୋଲିସ ଅଫିସର ଦୋରା

ବାବୁ ମୋର ଗନ୍ତବ୍ୟ ସ୍ଥଳ ପଚ୍ଚରି ଏକ ରିକ୍ସାକୁ ବରାଦ କରି ଭଡ଼ା ଛିଣ୍ଡାଇ ଉକ୍ତ ସ୍ଥାନକୁ ନେଇ ଯିବା ପାଇଁ ନିର୍ଦ୍ଦେଶ ଦେଲେ। ଉକ୍ତ ମହାଶୟ ତାଙ୍କ ବିଭାଗୀୟ ବିଶ୍ରାମ ସ୍ଥଳ - ପୋଲିସ କ୍ଲବକୁ ଗମନ କଲେ। ସେତେବେଳେ ରାତ୍ର ପ୍ରାୟ ୯ଟା ୩୦ମି. ରୁ କିଛି ବେଶୀ।

ମୋର ଗନ୍ତବ୍ୟ ସ୍ଥଳ ଥିଲା ରଣଜୀତ ଦେହେରୀଙ୍କ ବସା ଓ ତାହା ଜଗନ୍ନାଥ ମନ୍ଦିରର ସାମନା ଗଳିରେ ଥିବା ଏକ ମଣ୍ଡପ ନିକଟରେ, ତେଣୁ ମୁଁ ଜଗନ୍ନାଥ ମନ୍ଦିର ସାମନା ବାଟେ ସେହି ମଣ୍ଡପ ଆଡ଼େ ଯାଇ ସେଠାରେ ଦେଖିଲି ଯେ ପ୍ରକୃତରେ ଏକ ମଣ୍ଡପ ଓ ତା' ପାଖରେ ଏକ ଲାଇଟ ଖୁମ୍ବରେ ଏକ ବତୀ ଜଳୁଛି। ମୁଁ ସେଦିନ ରାତ୍ରରେ ଆଉ ଜଗନ୍ନାଥ ଦର୍ଶନ ନ କରି ନିକଟସ୍ଥ ଏକ ଜଳଖିଆ ଦୋକାନରୁ ସାମାନ୍ୟ ଜଳଖିଆ କରି ଯାଇ ମଣ୍ଡପରେ ବସିଲି। କିଛି ସମୟ ଅପେକ୍ଷା କଲି କାଳେ କିଏ ସେ ପାଖରୁ କୌଣସି ଠାରୁ ବାହାରିଲେ ରଣଜୀତ ଦେହେରୀଙ୍କ ଘର ବିଷୟରେ ପଚ୍ଚରିବି। କିନ୍ତୁ ରାତ୍ର ବେଶୀ ହୋଇଥିବାରୁ କାହାକୁ ନ ପାଇ ସେହି ମଣ୍ଡପରେ ବିଜୁଳି ଆଲୁଅରେ ବସି ରାତ୍ରି କଟାଇବାକୁ ସ୍ଥିର କଲି। ମୁଁ ଆଗରୁ ପ୍ରସ୍ତୁତ ହୋଇ ନିଜ ପାଖରେ କେତେ ପୋଷ୍ଟକାର୍ଡ ବିଭିନ୍ନ ସ୍ଥାନରୁ ଭ୍ରମଣ ସଂକ୍ରାନ୍ତରେ ପତ୍ର ଦେବା ପାଇଁ ରଖିଥିଲି। ସେଗୁଡ଼ିକ କାଢ଼ି ମୋର ସମସ୍ତଙ୍କ ପରିଚିତ ଜ୍ଞାତି କୁଟୁମ୍ବଙ୍କ ନିକଟକୁ ଅଧ ଡଜନରୁ ଅଧିକ କାର୍ଡ ଲେଖି ସମୟ କଟାଇବାକୁ ଚେଷ୍ଟା କଲି। ମାତ୍ର ରାତ୍ରିର ଶେଷ ପ୍ରହରର କୌଣସି ସୂଚନା ନ ମିଳିବାରୁ ମୋର ଦୈନନ୍ଦିନୀ କଟକ ଆସିବା ଦିନ ଠାରୁ ପୁରୀ ପହଞ୍ଚିବା ପର୍ଯ୍ୟନ୍ତ ଲେଖି ବସିଲି। ତାହା ପ୍ରାୟ ଶେଷ ହେବା ପୂର୍ବରୁ ସିନ୍ଦୁରା ଫାଟିବାର ଲକ୍ଷ୍ୟ କରିବା ସହ ଶ୍ରୀମନ୍ଦିରର ପ୍ରାତଃକାଳୀନ ପୂଜାଦି ସକାଶେ ଅବକାଶ ଓ ସକାଳ ଧୂପ ପାଇଁ ଘଣ୍ଟ ଶଙ୍ଖର ଶବ୍ଦ ବାଜି ଉଠିଲା। ନିଜ ଲେଖା ଅସମାପ୍ତ ଥିବାରୁ ସେ ସବୁ ମୋର ଶ୍ରୁତିଗୋଚର ହୋଇଥିବାର ମନେ ହେଲା ନାହିଁ। ଧୀରେ ଧୀରେ ସକାଳ ହେବାକୁ ବସିଲା ଓ ନିକଟସ୍ଥ ଘରମାନଙ୍କରୁ ଲୋକମାନଙ୍କର ଗମନାଗମନର ଅୟମାରମ୍ଭର ସୂତ୍ରପାତ ହେଲା। ହେଲେହେଁ କାହାକୁ ପରିଚିତ ନ ଦେଖିବାରୁ କିଛି ପଚ୍ଚରିବାର ସତ୍‌ସାହସ ହେଉ ନ ଥିଲା। କିଛି ସମୟ ଗଲା ପରେ ସେ ବାଟେ ଏକ ଛୋଟ ବାକ୍ସ ଧରି ଯାଉଥିବା ଜନୈକ ଭଦ୍ର ବ୍ୟକ୍ତିଙ୍କୁ ଦେଖି ସାହସ କରି ସମ୍ବଲପୁରିଆ ରଣଜୀତ ଦେହେରୀଙ୍କ ବିଷୟରେ ପଚ୍ଚରିବାରୁ ସେ ଅତି ଆନନ୍ଦର ସହ ମୋତେ ତାଙ୍କର ନିଜ ସେବକ ଓ ତାଙ୍କୁ ଭଲ ଭାବେ ଜାଣିଛି ବୋଲି କହି ସେହି ମଣ୍ଡପର ଅତି ନିକଟରେ ଥିବା ଗୋଟିଏ ଘରକୁ ନେଇ ସେମାନଙ୍କୁ ଜଣେ

ସମ୍ବଲପୁରିଆ ଅତିଥି ଆସିଥିବାର ଜଣାଇଲେ। ଶ୍ରୀଯୁକ୍ତ ଦେହେରୀ ବାବୁ ଓ ତାଙ୍କ ପତ୍ନୀ ମୋତେ ଦେଖି ନିଜର କରିଦେଲେ। କାରଣ ସେମାନଙ୍କର ଘର ମୋର ଶାଶୁଘର ଦପ୍‌କାପାଲି ନିକଟସ୍ଥ ମାନପୁର ନିବାସୀ। ତାଙ୍କ ସଙ୍ଗେ କଥା ପ୍ରସଙ୍ଗରେ କହି ପକାଇଲି ଯେ ରାତି ୯ଟାରୁ ଆସି ତାଙ୍କ ଘର ନିକଟସ୍ଥ ମଣ୍ଡପରେ ମୁଁ ସାରା ରାତି ଅନିଦ୍ର ଭାବେ କଟାଇଛି। ସେମାନେ ଦୁଃଖ ପ୍ରକାଶ କରିଥିଲେ। ପୁଣି ଅତି ସନ୍ତର୍ପଣରେ ସେମାନେ ପ୍ରକାଶ କଲେ ଯେ କିଛି ଦିନ ତଳେ ସେହି ମଣ୍ଡପ ନିକଟରେ କୌଣସି ସ୍ଥାନରେ ଏକ ବଡ଼ ଧରଣର ମାଡ଼ପିଟ ଓ ହଣାକଟା ହୋଇଥିଲା। ସେଥି ଯୋଗୁ ସେମାନେ ଅତିଶୟ ଅନୁଶୋଚନା କରିଥିଲେ ଅର୍ଥାତ୍ ଫଳ କିଛି ହେବାର ନ ଥିଲା। ମୁଁ ସେପରି ଭୟଭୀତିର ଚିହ୍ନ ଉପଲବ୍ଧ କରି ନାହିଁ। କାରଣ ମୁଁ ପରମ କାରୁଣିକ ଜଗତର ନାଥ ଜଗନ୍ନାଥଙ୍କ ଦର୍ଶନ ପାଇଁ ସୁଦୂର ସମ୍ବଲପୁର - ବେହେରା ଗ୍ରାମରୁ ଆସି ଏକନିଷ୍ଠ ଭାବେ ତାଙ୍କ ଶରଣାଗତ। ମୋର କେହିବା କିଛି କରିପାରନ୍ତେ କିପରି ? ଯାହା ହେଉ ଏ ସବୁ କଥାବାର୍ତ୍ତା ପରେ ମୋର ନିତ୍ୟକର୍ମ ଶେଷ କରିବାକୁ ରଣଜିତ ଦାଦା ନିର୍ଦ୍ଦେଶ ଦେଲେ। ଦେହେରୀ ଦାଦା ବଜାରରୁ ଆସିବା ମଧ୍ୟରେ ମୁଁ ମୋର ନିତ୍ୟକର୍ମ ଶେଷ କଲି। ମୁଁ ସୁନା ପିଲାଟି ପରି ତାଙ୍କ ନିର୍ଦ୍ଦେଶାନୁସାରେ କାମ ସାରି ଦାଦାଙ୍କ ଆସିବା ପଥକୁ ଗ୍ଚହିଁ ରହିଲି। ଦାଦା ବଜାରରୁ ଆସି ସ୍ନାନାଦି କର୍ମ ସମାପନ ପୂର୍ବକ ଭୋଜନ ସାରି ଅଫିସ ଉଦ୍ଦେଶ୍ୟରେ ବାହାରିବା ବେଳେ ସୂଚନା ଦେଇ ଗଲେ ଯେ ମୋତେ ରାତ୍ରି ଅନିଦ୍ରା ହେତୁ ବିଶ୍ରାମ ଦରକାର।

ଦାଦା ଅଫିସ ଗଲା ପରେ ଭାଉଜ, ମୁଁ ଓ ତାଙ୍କ ସଙ୍ଗେ ରହୁଥିବା ଦାଦାଙ୍କ ଭଉଣୀ ଅଯୋଧ୍ୟା ସଙ୍ଗେ ବେଶ ଖୁସିଗପ ଗ୍ଚଲିଲା ଓ ଆମ ପରିବାର ବିଷୟରେ କଥାବାର୍ତ୍ତା ବେଳେ ଅଯୋଧ୍ୟା ବୟସର ସୁଷମା ନାମ୍ନୀ ମୋର ଗୋଟିଏ ଭଉଣୀ ଥିବାର ଜାଣି ଅଯୋଧ୍ୟା ସ୍ୱତଃ ପ୍ରବୃତ୍ତ ହୋଇ ସୁଷମା ସଙ୍ଗେ ମକର ହେବାର ପ୍ରସ୍ତାବ ବାଢ଼ିଲା। ଭାଉଜଙ୍କ ମନକୁ କ'ଣ ଆସିଲା କେଜାଣି, ଦାଦା ଅଫିସରୁ ଫେରିବା ପରେ ଏ ପ୍ରସ୍ତାବଟି ପ୍ରଥମେ ପକାଇ ତାଙ୍କର ସ୍ୱୀକୃତି ହାସଲ କରି ଆମ ଉଭୟ ପରିବାରର ସାମାଜିକ ସଂପର୍କର ରଜ୍ଜୁ ଦୃଢ଼ୀଭୂତ ହେବାର ଅୟମାରମ୍ଭ ହେଲା। ସେମାନେ ଜାତିରେ ପଣ୍ଡରା ଓ ଆମେ ବ୍ରାହ୍ମଣ। ମୁଁ ଅଯାଚିତ ଭାବେ ଏ ପ୍ରସ୍ତାବକୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ କଲି। ତାଙ୍କ ଗ୍ରାମକୁ ଯିବା ବେଳେ ଦାଦାଙ୍କୁ ଅଯୋଧ୍ୟା ଓ ଭାଉଜଙ୍କୁ ଆମ ଘରକୁ ପଠାଇବାକୁ ଅନୁରୋଧ କରିବାକୁ ପଛେଇ ନ ଥିଲି।

ଅପରାହ୍ନ ୪ଟା ପରେ ଦାଦା ତାଙ୍କ ଅଫିସ କାମ ସାରି ବସାକୁ ଫେରିଲେ।

ମୁଁ ତାଙ୍କ ଆସିବା ପଥକୁ ଅନାଇ ବସିଥିଲି । ସେ ନିଜର ନିତ୍ୟକର୍ମ ଶେଷ କରି ପୁରୀ ବୁଲିବା ପାଇଁ ପ୍ରସ୍ତାବର ଆଲୋଚନା ଆରମ୍ଭ ହେଲା । ଇତି ମଧ୍ୟରେ ଭାଉଜ କଥା ପ୍ରସଙ୍ଗରେ ଅଯୋଧ୍ୟା ଓ ସୁଷମାର ମକର ପ୍ରସ୍ତାବଟା ଆନନ୍ଦରେ ଉତ୍‌ଥାପନ କରିବାରୁ ଦାଦା ତାକୁ ଅତି ଆଗ୍ରହ ସହକାରେ ରାଜି ହେଲେ । ଜଳଖିଆ ପରେ ସମସ୍ତେ ମିଶି ପୁରୀର ବିଭିନ୍ନ ଦର୍ଶନୀୟ ସ୍ଥାନ ବିଷୟରେ ଆଲୋଚନା କଲୁଁ । ଶେଷରେ ଏହି ସିଦ୍ଧାନ୍ତ ହେଲା ଯେ ପୁରୀର ଦର୍ଶନୀୟ ସ୍ଥାନ ମଧ୍ୟରେ ପ୍ରଧାନତଃ ଶ୍ରୀମନ୍ଦିର ଓ ସମୁଦ୍ର । ଏହା ପରେ ଆଉ ଯାହା କିଛି, ସେ ଗୁଡ଼ିକ ହେଲା - ଲୋକନାଥ ମନ୍ଦିର, ମାର୍କଣ୍ଡେଶ୍ୱର, ଚନ୍ଦନ ପୋଖରୀ (ଯହିଁରେ ଚନ୍ଦନ ଯାତ୍ରା ହୁଏ), ଗୁଣ୍ଡିଚ୍ଚା ମନ୍ଦିର, ଇନ୍ଦ୍ରଦ୍ୟୁମ୍ନ, ସୁନାର ଗୌରାଙ୍ଗ ଓ ଚକ୍ରତୀର୍ଥ ନିକଟସ୍ଥ ବେଡ଼ି ହନୁମାନାଦି । ଏତଦ୍‌ଭିନ୍ନ ଆଉ ଅନେକ ଦେଖିବାର ସ୍ଥାନ ଥିଲେ ବି ଉପରୋକ୍ତ କେତୋଟି ସ୍ଥାନ ପ୍ରଧାନ । ପୁରୀ ରାଜଉଆସ, B.N. Rly ହୋଟେଲ (S.E. Rlyକୁ ଆଗେ ବେଙ୍ଗଲ ନାଗପୁର ରେଲୱେ କୁହାଯାଉଥିଲା), ପୁରୀ ଜିଲ୍ଲା ସ୍କୁଲ, ଏମାର ମଠ, ଶଙ୍କରାଚାର୍ଯ୍ୟ ମଠ ଆଦି ଆଉ କେତେ । ଦାଦା ସଙ୍ଗେ ସଙ୍ଗେ କହି ପକାଇଲେ ପରଦିନ ରହିବାକୁ । ତେଣୁ ସେ ମୋତେ ପୁରୀର କେତେକ ବିଶିଷ୍ଟ ସ୍ଥାନ ସାଇକେଲରେ ବୁଲାଇ ପାରିବେ ଓ ଯାହା ବାକି ରହିବ ବାଟରେ ଉପଦେଶ ଛଳରେ ସୂଚନା ଦେଲେ ମୁଁ ସେଠାକୁ ନିଜେ ଦେଖିଯିବି । ପ୍ରଥମେ ଯାଇ ଶ୍ରୀମନ୍ଦିରର ଠାକୁର ଜଗତର ନାଥ ଜଗନ୍ନାଥଙ୍କୁ ଦର୍ଶନ କରି ବେଢ଼ାଟି ବିଷୟରେ ଏକ ଧାରଣା କରି ଦେବା ପାଇଁ ସୂଚନା ଦେଲେ । ଯଦି ଗ୍ୱହିଁବେ ଭାଉଜ ଓ ଅଯୋଧ୍ୟା ମଧ୍ୟ ଆମ ସଙ୍ଗରେ ଯାଇ ପାରନ୍ତି ।ଯେଣୁ ଶୀଘ୍ର ପ୍ରସ୍ତୁତ ହେବାକୁ ପଡ଼ିବ, ସେମାନେ ପ୍ରସ୍ତାବରେ ଅମଙ୍ଗ ହେବାରୁ ଆମେ ଦୁହେଁ ମନ୍ଦିର ଦର୍ଶନ ଉଦ୍ଦେଶ୍ୟରେ ବାହାରି ପଡ଼ିଲୁ । ଅବଶ୍ୟ ମୁଁ ନିଜେ ଯାଇ ଶ୍ରୀମନ୍ଦିର ବେଢ଼ା ଆଦି ବୁଲି ଆସିଥିଲି କିନ୍ତୁ ଠାକୁରଙ୍କ ପହଡ଼ ସମୟ ହୋଇ ଯାଇଥିବାରୁ ଦର୍ଶନ ହୋଇ ପାରିଲା ନାହିଁ । କେବଳ ଚନ୍ଦନ ଅର୍ଗଳୀ ଠାରୁ କବାଟ ବନ୍ଦ ଅବସ୍ଥାରେ ମୋର ପ୍ରଣତି ଜଣାଇ ପରବର୍ତ୍ତୀ ସମୟରେ ଦର୍ଶନ ଅଭିଳାଷ ରଖି ଫେରି ଆସିଥିଲି । ପ୍ରାୟ ୫ଟାବେ ଆମେ ମନ୍ଦିରକୁ ଯାଇ ପତିତପାବନ, ବାଇଶ ପାହାଚ ଓ ଅନ୍ୟ ପାର୍ଶ୍ୱ ମନ୍ଦିରକୁ କେବଳ ବାହାରୁ ଦେଖାଇ ପୁଣି ଭିତର ଆଡ଼କୁ ଗଲା ବେଳେ ଦ୍ୱାର ଖୋଲା ଥିବାରୁ ତିନି ଠାକୁର ବଳଭଦ୍ର, ସୁଭଦ୍ରା ଓ କାଳିଆଙ୍କୁ ଦର୍ଶନ କରି ନୟନ ପବିତ୍ର କଲୁ । ଶ୍ରୀ ଜଗନ୍ନାଥ ମନ୍ଦିରର ବିଶେଷତ୍ୱ କେବଳ ଶୁଣିଥିଲି ମାତ୍ର । ଏବେ ତାହା ଅଙ୍ଗାଙ୍ଗୀ ଭାବେ ଅନୁଭବ କରି ଅଭିଭୂତ ହେଲି । ଦାଦା ଏମଧ୍ୟରେ ଦର୍ଶନ କରି ମୋତେ ହଲାଇ ଦେବାରୁ ମୁଁ

ପ୍ରକୃତିସ୍ଥ ହେଲି । ତା'ପରେ ସେ କହିଲେ ଯେ ସନ୍ଧ୍ୟା ଆଗତ ପ୍ରାୟ, ସେତେବେଳେ ସମୁଦ୍ରକୂଳ ଭ୍ରମଣ ଏକ ଆମୋଦଦାୟକ ଅନୁଭୂତି । ତେଣୁ ସେ ଆଡ଼କୁ ଯାଇ ଥରେ ବୁଲି ଆସିବା ପ୍ରାଥମିକ କର୍ତ୍ତବ୍ୟ ହେବ । ଶ୍ରୀମନ୍ଦିରରୁ ବାହାରିବା ପାଇଁ ଇଚ୍ଛା ହେଉ ନ ଥିବା ସତ୍ତ୍ୱେ ସେଠାରୁ ସିଧା ସଳଖ ସମୁଦ୍ରକୂଳକୁ ଗଲୁଁ । ସେତେବେଳେ ପ୍ରାୟ ସୂର୍ଯ୍ୟ ପଶ୍ଚିମାଂଚଳକୁ ଗତିଶୀଳ ଓ ତାଙ୍କ ସୁନେଲି କିରଣ ଆସି ସମୁଦ୍ର ଉପରେ ପଡୁ ନ ଥିଲା । ଆଗରୁ ସମୁଦ୍ର କେବେ ଦେଖି ନ ଥିଲି । ତେଣୁ ବାଟରେ ଗଲାବେଳେ ଦାଦା ସେଆଡ଼େ ହାତ ମାରି ସେଇଟା କ'ଣ ବୋଲି ଆଗରୁ ଇଙ୍ଗିତ ଦେଇଥିଲେ । ଦୃଶ୍ୟାନୁଭୂତି ପୂର୍ବରୁ କେବେ ନ ଥିବାରୁ କିଛି କହିପାରି ନ ଥିଲି । କାରଣ ଠିକ୍ କଚେରୀ ଠାରୁ ଯଦିଓ ସମୁଦ୍ର ସୁଦୃଶ୍ୟମାନ, ତଥାପି ସୁଦୂରରେ ଦିଗବଳୟ ଓ ସମୁଦ୍ର ଜଳରାଶିର ମିଶ୍ରଣର ଦୃଶ୍ୟ ଅଭୁତପୂର୍ବ, ଅନିର୍ବଚନୀୟ । ତାହା ଏକ ଦୂରବର୍ତ୍ତୀ ପାହାଡ଼ ପରି ମନେ ହେଲା ଓ ପରେ ପାଖକୁ ଗଲା ପରେ କୂଳକୁ ଆସିଥିବା ଲହରୀପୁଞ୍ଜ ଦେଖି ଜାଣିପାରିଲି । ଏହି ବହୁକଳ୍ପିତ ଚିନ୍ତା ଓ ଅନୁଭୂତି ବହିର୍ଭୂତ ସୁଦୂରସ୍ଥ ନଭଶ୍ଚୁମ୍ବୀ ଦିଗ୍‌ବଳୟ-ବ୍ୟାପୀ ଅତଳ, ଅଗାଧ ଓ ଅମାପ ସମୁଦ୍ର ଯାହାଙ୍କ କୂଳସ୍ଥ ସୈକତରେ ପାଦ ନ ଦେବା ପର୍ଯ୍ୟନ୍ତ ଅନୁଭୂତି ବା ଚିନ୍ତାର ପରିସରକୁ ମଧ୍ୟ ସ୍ପର୍ଶ କରିପାରେ ନାହିଁ । ରତ୍ନାକରଙ୍କ ଶୋଭାରାଶି ପାଇଁ ନମସ୍କାର କଲି । ପୁରୀକୁ ଆସି ସ୍ୱଚକ୍ଷୁରେ ନ ଦେଖିବା ପର୍ଯ୍ୟନ୍ତ ବଡ଼ଦାଣ୍ଡ, ବଡ଼ଠାକୁର, ଶ୍ରୀମନ୍ଦିର ତଥା ମହୋଦଧି ସମ୍ପର୍କରେ ଯେତେ ପ୍ରକାର ଉଦାହରଣ, ଟୀକାଟିପ୍ପଣୀ ଦେଲେ ମଧ୍ୟ ଅପୂର୍ଣ୍ଣ ରହିଯିବ । ଏ ପ୍ରସଙ୍ଗରେ ଗୋଟିଏ ଉଦାହରଣ ନ ଦେଲେ କଥାଟା ବୋଧ ହୁଏ ସମ୍ପୂର୍ଣ୍ଣ ଭାବେ ଅବୁଝା ରହିଯିବ । ଆମେ ଜୀବନରେ ନିଜ ନିଜ ଅଞ୍ଚଳରେ ଯେତେ ସବୁ ମନ୍ଦିର, ଜଳାଶୟ, ରାସ୍ତାଘାଟ ଦେଖିଛୁଁ ସେ ସବୁର ଉଦାହରଣ ପୁରୀର କୌଣସି ଜିନିଷ ସଙ୍ଗେ ସମତୁଳ ନୁହେଁ । ଆମ୍ଭର ଦେଖିଥିବା ଗ୍ରାମ୍ୟ ଦେବାଳୟ, ପୁଷ୍କରିଣୀ, ଗ୍ରାମ ଦାଣ୍ଡାଦି, ଶ୍ରୀମନ୍ଦିର, ନରେନ୍ଦ୍ର ପୁଷ୍କରିଣୀ ଓ ବଡ଼ଦାଣ୍ଡ ତୁଳନାରେ କେଡ଼େ କ୍ଷୁଦ୍ର ସତେ । ସୂର୍ଯ୍ୟ ନିକଟରେ ଦିହୁଡ଼ି ପ୍ରଜ୍ୱଳନ କଲା ପରି । ଧାଙ୍ଗ ସାଥିମାନଙ୍କ ସଙ୍ଗେ ଆଲୋଚନା କଲାବେଳେ ଯେଉଁ ସବୁ ଉଦାହରଣ ଦିଆଯାଏ ଏଗୁଡ଼ିକର ଆବଶ୍ୟକତା ପଡ଼େ ଅତିରିକ୍ତ ଗଣିତ ପଠନରେ ଅସୀମ (Infinity)ର ଧାରଣା ପ୍ରଦାନ ବେଳେ । ଅର୍ଥାତ୍ ଅସୀମ ବା Infinity ହେଉଛି ଯାହା ବି କଳନା ବା କଳ୍ପନା କରାଯାଇ ପାରେ ତାଠାରୁ ଅଧିକ - ମାପ, ଦୂରତା, ଓଜନ, ଗଭୀରତା ବା ଆକୃତି ଦୃଷ୍ଟିରୁ ଅର୍ଥାତ୍ ଆମ ଚିନ୍ତାର ବାହାରେ । ଏଠାରେ ଉଦାହରଣ ଦେବାକୁ ଗଲେ ଶ୍ରୀମନ୍ଦିର, ବଡ଼ଦାଣ୍ଡ, ସମୁଦ୍ର ସମସ୍ତଙ୍କ ମାପର

ପରିମାଣ ଅଛି । କିନ୍ତୁ ଆଗରୁ ଏତେ ବିରାଟ ଜିନିଷ ଦେଖି ନ ଥିବାରୁ ତାର ସମ୍ୟକ୍ ଧାରଣା କରିହୁଏ ନାହିଁ, ନିଜେ ସ୍ୱଚକ୍ଷୁରେ ନ ଦେଖିବା ପର୍ଯ୍ୟନ୍ତ । ଆମର ଶୈଶବ ଅବସ୍ଥାରେ ଆଲୋଚନା କଲାବେଳେ ଆଧିକ୍ୟ ପ୍ରକାଶ ପାଇଁ କଥା ଚଳରେ ମେଣ୍ଢାଲୋମ, ମଣିଷର କେଶ, ନଦୀର ବାଲି, ଆକାଶର ଅଗଣିତ ତାରା ଓ ପରିଶେଷରେ ଭଗବାନଙ୍କ ପଇତା ଗଣି କହି ଆମେ ଆମର ସେହି ଅସୀମତାକୁ ସୀମିତ କରୁଁ । ଏସବୁ କହିଲା ବେଳେ ପିଲାଙ୍କ ମଧ୍ୟରୁ କେହି କେହି ସ୍ୱହସ୍ତ ଦ୍ୱୟ ପ୍ରସାର କରି ପଛକୁ ଯେତେ ଦୂର ପର୍ଯ୍ୟନ୍ତ ନିଆଯାଇ ପାରେ ତାକୁ ଦେଖାଇ ଥକି ଗଲେ ଶେଷରେ ଏହାର ଯବନିକା ପଡ଼େ । 'ଏହି ବାକ୍ୟ ଦ୍ୱାରା ଏଡ଼ିକି ଲାଉ ଏଡ଼ିକି ହେଉ , ଯେଝା ଘରକୁ ସେ ସେ ଯାଉ ।' ତାପରେ ସମସ୍ତେ ନିଜ ନିଜ ଘରକୁ ଯାଆନ୍ତି । ଧନ୍ୟ ଶିଶୁମନ ଓ ସେମାନଙ୍କ ଚିନ୍ତାଧାରା - କି ତାଙ୍କର ସରଳ ବିଶ୍ୱାସ ସତେ ! ତେଣୁ ଶ୍ରୀମନ୍ଦିର ପରେ ସମୁଦ୍ର ଦର୍ଶନ କରି ପିଲାକାଳର କଥା ମନେ ପକାଇ ହସି ଦେଲି । ଦାଦା କୌତୁହଳୀ ହୋଇ କାରଣ ପଚ୍ଚାରିବାରୁ ତାକୁ ପ୍ରକାଶ କରିବାରେ ନିଜେ ମଧ୍ୟ ଆନନ୍ଦିତ ହେଲି ।

ଆମ୍ଭେମାନେ ସମୁଦ୍ରକୂଳରେ ଘଣ୍ଟାଏ କାଳ ବସି ସମୁଦ୍ରର ଅବର୍ଣ୍ଣନୀୟ, ଆକର୍ଷଣୀୟ ଦୃଶ୍ୟ ଓ ଭଗବାନଙ୍କ ସୃଷ୍ଟିର ବୈଚିତ୍ର୍ୟ ବିଷୟ ଚିନ୍ତା କରି ପ୍ରକୃତିସ୍ଥ ହେଲା ପରେ ଦାଦାଙ୍କ ନିର୍ଦ୍ଦେଶ କ୍ରମେ ତାଙ୍କ ବସାକୁ ପ୍ରତ୍ୟାବର୍ତ୍ତନ କଲୁଁ ଓ ପରଦିନ କାର୍ଯ୍ୟକ୍ରମ ନିର୍ଦ୍ଧାରଣ କରି ରାତ୍ର ଭୋଜନ ପରେ ବିଶ୍ରାମ ନେଲୁଁ ।

ପରଦିନ ସକାଳୁ ନିତ୍ୟକର୍ମ ସମାପନ ପରେ ଶ୍ରୀମନ୍ଦିର ଦର୍ଶନ ପାଇଁ (କିଛି ନ ଖାଇ) ବାହାରି ପଡ଼ିଲୁଁ । ଜଗନ୍ନାଥ ଦର୍ଶନରେ ଏକ ତାତ୍ପର୍ଯ୍ୟ ଅଛି ଯେ ପୁରୀରେ ପହଞ୍ଚି ଧୂଳିଆ ଗୋଡ଼ରେ ଅର୍ଥାତ୍ ଗୋଡ଼ ନ ଧୋଇ ଜଗନ୍ନାଥ ଦର୍ଶନ କଲେ ବିଶେଷ ଫଳ ମିଳେ । କିଛି ନ ହେଲେ ସିଂହଦ୍ୱାର ବାହାରୁ ପତିତପାବନଙ୍କ ଦର୍ଶନର ମଧ୍ୟ ଅଦ୍ଭୁତ ଫଳ ପ୍ରାପ୍ତିର ନଜିର ଦାସିଆ ବାଉରୀ, ସାଲବେଗ ପ୍ରଭୃତି ଭକ୍ତଙ୍କ ପ୍ରବେଶ ମନା ଥିବାରୁ ଏପରି ବ୍ୟବସ୍ଥା କରାଯାଇଛି ବୋଲି ପ୍ରବାଦ ଅଛି । ଉପରୋକ୍ତ ଭକ୍ତଦ୍ୱୟ ଜଗନ୍ନାଥଙ୍କ ପ୍ରତି ପ୍ରଗାଢ଼ ଭକ୍ତିର ତୁଳନା କୁତ୍ରାପି ଦେଖାଯାଏ ନାହିଁ । ଦାସିଆ ବାଉରୀର ପ୍ରଦତ୍ତ ନଡ଼ିଆ ଠାକୁରଙ୍କ ଲମ୍ବ ହସ୍ତରେ ବଡ଼ଦାଣ୍ଡରୁ ଗ୍ରହଣ କରିବା ଓ ସାଲବେଗର ଭକ୍ତିରେ ଜଗନ୍ନାଥଙ୍କ ପରମ ସନ୍ତୋଷର ବର୍ଣ୍ଣନା ଦୃଷ୍ଟାନ୍ତ ଅନେକ ରହିଛି । ଆମେ ସିଂହଦ୍ୱାରରେ ପହଞ୍ଚି ସିଧାସଳଖ ପତିତପାବନଙ୍କ ଦର୍ଶନ କଲୁଁ । ପତିତପାବନ ଦର୍ଶନ ପରେ ଶିବ ମନ୍ଦିର, ତା'ପରେ ମନ୍ଦିରର ଡାହାଣ ପଟେ ଅର୍ଥାତ୍ କଳ୍ପବଟ ପୂର୍ବରୁ ସତ୍ୟନାରାୟଣ ମନ୍ଦିର, ବଟଗଣେଶ, କଳ୍ପବଟ

ନିକଟରେ ସମଲାଇଙ୍କ ଆସ୍ଥାନ ରହିଛି । ମୁକ୍ତି ମଣ୍ଡପର ପୂର୍ବରୁ ଉତ୍ତରଦ୍ୱାର ପଟକୁ ଯିବାକୁ ପଡ଼େ । ସେଠାରେ ରାଧାକୃଷ୍ଣ ମନ୍ଦିର, ରାମ ଲକ୍ଷ୍ମଣ ସୀତା ହନୁମାନ ମନ୍ଦିର ଓ ଦ୍ୱାରମୁହଁରେ ଦୁଇଟି ବିରାଟକାୟ କାଠର ମୂର୍ତ୍ତି - ଭୀମ, ଦୁଃଶାସନ ଶୋଭା ପାଉଛନ୍ତି । ଏଠାରୁ ରୋଷେଇ ଗୃହ ଓ ଅମୃତ କୂଅଁକୁ ରାସ୍ତା ଯାଇଛି । ସେଠାରୁ ଫେରି ଆସି ମୁକ୍ତି ମଣ୍ଡପ ସଭାସ୍ଥଳ ଓ ସମ୍ମୁଖରେ ଜଗନ୍ନାଥଙ୍କ ପ୍ରଧାନ ମନ୍ଦିରକୁ ରାସ୍ତା ଅର୍ଥାତ୍ ଚନ୍ଦନ ଅର୍ଗଳୀ ନିକଟକୁ ସିଧାସଳଖ ଗଲେ ଆଗରେ ଚକ୍ରତୀର୍ଥ, କାକଭୂଷଣ୍ଡି କୁଣ୍ଡ, ତାପରେ ପଶ୍ଚିମ ଦ୍ୱାରକୁ ବାଟ ଓ ଜଗନ୍ନାଥଙ୍କ ଫୁଲ ବଗିଚାକୁ ରାସ୍ତା ଏବଂ ଅନ୍ୟାନ୍ୟ ଯାବତୀୟ ମୂର୍ତ୍ତି ସଂଗ୍ରହାଳୟ ଏବେ ଏକ ବିଜୁଳି ଖଚିତ ଦର୍ଶନାଳୟରେ (Museum) କଳାକୁଞ୍ଜରେ ପରିଣତ ହୋଇ, ଦର୍ଶକମାନଙ୍କଠାରୁ କିଛି ଶୁଳ୍କ ନେଇ ଦର୍ଶନର ସୁଯୋଗ ଦିଆଯାଉଛି । ସେଠାରୁ ଫେରି ମନ୍ଦିରର ଦକ୍ଷିଣ ପାର୍ଶ୍ୱକୁ ନୀଳମାଧବ ମନ୍ଦିର, ସୂର୍ଯ୍ୟ ମନ୍ଦିର, ପାତାଳପୁରୀ ଓ ଦକ୍ଷିଣ ଦ୍ୱାରକୁ ଯିବା ପୂର୍ବରୁ କୋଇଲି ବୈକୁଣ୍ଠ, ଜଗନ୍ନାଥଙ୍କ ନବକଳେବର ସମୟର ପୁରୁଣା ଦାରୁବିଗ୍ରହ କବର ସ୍ଥାନ ଓ ଅବଢ଼ା ଖଳା (ନିର୍ମାଲ୍ୟ ତିଆରି) ଉଦ୍ଦିଷ୍ଟ । ସେଠାରୁ ଫେରି ଦକ୍ଷିଣ ଦ୍ୱାରକୁ ଗଲେ ବାଁ ପଟରେ ଦକ୍ଷିଣ କାଳୀ/ ଚଣ୍ଡୀଙ୍କ ସୁନା ମୁହଁ କୂଅଁ ଦେଖାଯାଏ । ଏହି କୂଅଁରୁ ବର୍ଷକୁ ଥରେ ଜଗନ୍ନାଥଙ୍କ ସ୍ନାହାନ ପୂର୍ଣ୍ଣମୀ ଦିନ (ଜ୍ୟେଷ୍ଠ ପୂର୍ଣ୍ଣିମା) ଦେବସ୍ନାନ ପାଇଁ ୧୦୮ଟି କଳସରେ ପାଣି ଅଣାଯାଇ ଠାକୁରଙ୍କୁ ସ୍ନାନ କରାଯାଏ । ଦେବସ୍ନାନ ପୂର୍ଣ୍ଣମୀ ପରେ ଠାକୁର ଅଣସର ଗୃହକୁ ବିଜେ ହୁଅନ୍ତି କାରଣ ସ୍ନାନ ଜନିତ ଶ୍ଳେଷ୍ମା ଓ ଜ୍ୱରରେ ଆକ୍ରାନ୍ତ ହୋଇ ଔଷଧ ସେବନ କରି ୧୫ ଦିନ ବିଶ୍ରାମ ନିଅନ୍ତି ଓ ଏ ସମୟରେ ଆଉ ଏ ଠାକୁରଙ୍କୁ ଦର୍ଶନ ହୁଏ ନାହିଁ ବା ମହାପ୍ରସାଦ ଭୋଗ ମିଳେ ନାହିଁ । କାରଣ ଠାକୁରଙ୍କ ପାଇଁ ଅନ୍ନ ଭୋଜନ ବି ନିଷେଧ ଓ ସେ ପଥ୍ୟରେ ରହନ୍ତି । ପନ୍ଦର ଦିନ ପରେ ପୁଣି ତାଙ୍କ ଆରୋଗ୍ୟ ଲାଭ ପରେ ନବଯୌବନ ବେଶ ଓ ଶ୍ରୀଗୁଣ୍ଡିଚା ରଥଯାତ୍ରା ପାଇଁ ପ୍ରସ୍ତୁତି ହୁଏ । ପ୍ରଭୁ ରଥାରୂଢ଼ ହୋଇ ଗମନ କରନ୍ତି । ଦକ୍ଷିଣ ଦ୍ୱାରରୁ ଫେରି ଆନନ୍ଦ ବଜାର ଯିବାକୁ ହେଲେ ବାଟରେ ଈଶାନେଶ୍ୱରଙ୍କ ମନ୍ଦିର ପଡ଼େ । ଏହା ଉପରୁ କେତେ ଗୁଡ଼ିଏ ପାବଚ୍ଛତଳକୁ ଯିବାକୁ ହୁଏ ଓ ସେଠାରେ ଈଶାନେଶ୍ୱର ମହାଦେବଙ୍କ ଆସ୍ଥାନ । ସେଠାରୁ ଫେରି ଆନନ୍ଦ ବଜାରକୁ ଗଲେ ଜଗନ୍ନାଥଙ୍କ ଛପନ ଭୋଗ, ରନ୍ଧା ଅନ୍ନ, ଡାଲି, ମସୁର, ମୁଗ, ଅଟା ଆଦି ଯାତ୍ରୀଙ୍କ ପାଇଁ ଭୋଗ ପରେ ବିକ୍ରି ପାଇଁ ମହଜୁଦ ଥାଏ । ଏତଦ୍ ଭିନ୍ନ ଗଜା, ସରପୁଳି, କାକରା ପିଠା, ମାଳପୁଆ, ମଣ୍ଡା ଆଦି ଜଗନ୍ନାଥଙ୍କ ପାଇଁ ବିଭିନ୍ନ ଧୂପରେ ଭୋଗ ପାଇଁ ଲାଗୁଥିବା ସବୁ

ବଜାରରେ ବିକ୍ରି ହେଉଥାଏ । ଏସବୁକୁ ବିକ୍ରି କରି ତହିଁରୁ ଝଡ଼ି ପଡୁଥିବା ସମସ୍ତ ଜିନିଷ ମିଶାଇ "ଚଢ଼େଇଲେଦା" ନାମରେ ଏକ ମିଶ୍ରିତ ଭୋଗ ମଧ ବିକ୍ରି ହୁଏ । ଆଉ ମଧ ମୁଖ୍ୟ ଭୋଗ ରୂପେ ଖଜା, ମଗଜଲଡୁ, ଜଗନ୍ନାଥ ବଲ୍ଲଭ, ଫେଣୀ ଆଦି ସାଧାରଣ ଭୋଗ ଓ ମିଠା ରୂପେ ମଧ କିଣିବାକୁ ମିଳେ । ଏସବୁକୁ ଯାତ୍ରୀମାନେ ପୁରୀରୁ ଫେରିବା ବେଳେ ନିଜ ନିଜ ଘରକୁ ନେଇଥାଆନ୍ତି ସଙ୍ଗେ କିଛି ନିର୍ମାଲ୍ୟ ଓ ଶିରକାପଡ଼ା ସହ ତିଳକ, ନଡ଼ିଆ କୋରା ପ୍ରଭୃତି ପୂଜା ସାମଗ୍ରୀ ।

ଏସବୁ ହେଲା ବଡ଼ ଦେଉଳର ବେଢ଼ା ଚାରିପଟର ଛୋଟ ଛୋଟ ମନ୍ଦିର ସବୁ । ଏଥର ବଡ଼ ଦେଉଳର ବିଷୟରେ କହିବାକୁ ଗଲେ ପ୍ରଥମେ ଜଗମୋହନ ବା ଭୋଗମଣ୍ଡପ, ଗରୁଡ଼ସ୍ତମ୍ଭରୁ ପ୍ରଥମ ଚନ୍ଦନ ଅର୍ଗଳୀ ପର୍ଯ୍ୟନ୍ତ ଅଂଶ ଓ ତା'ପରେ ଦ୍ୱିତୀୟ ଚନ୍ଦନ ଅର୍ଗଳୀ ଓ ପରେ ଠାକୁରଙ୍କ ପ୍ରଧାନ ସିଂହାସନ ଥାଇ ଗମ୍ଭୀରା । ଏହିଠାରୁ ଗମ୍ଭୀରାକୁ ଯିବାକୁ ହେଲେ ପ୍ରାୟ ଚନ୍ଦନ ଅର୍ଗଳୀ ପାର ହେବାକୁ ପଡ଼େ । ଠାକୁରଙ୍କ ବସିବା ଆସ୍ଥାନକୁ ରତ୍ନସିଂହାସନ କୁହାଯାଏ ଓ ଏହା ୧ ଲକ୍ଷ ଶାଳଗ୍ରାମ ମୂର୍ତ୍ତିରେ ତିଆରି । ଏହା ଉପରେ ତିନି ଠାକୁର ଓ ସୁଦର୍ଶନ ବିଜେ କରନ୍ତି । ତାଙ୍କ ସାମନାରେ ତିନି ଜଣ ପୂଜାପଣ୍ଡା ବସି ତିନି ଠାକୁରଙ୍କ ପୂଜା ଅର୍ଚ୍ଚନା କରିଥାଆନ୍ତି । ସେହି ପୂଜା ଓ ନୈବେଦ୍ୟ ବେଳେ ପଣ୍ଡିତମାନେ ଚକ୍ଷୁ ମୁଦ୍ରିତ କରି ହସ୍ତରେ ଜଳ ରଖି ଅର୍ପଣ କରନ୍ତି । ମନରେ ଠାକୁରଙ୍କ ମନଲୋଭା ଛବିର ଦୃଶ୍ୟ ନ ହେଲେ ପୂଜାରେ ବିଭ୍ରାଟ ହେଲା ବୋଲି ବିବେଚନା କରାଯାଏ ଓ ସେଥିପାଇଁ ଶୌଚ ପ୍ରକରଣର ବ୍ୟବସ୍ଥା ରହିଛି । ରତ୍ନସିଂହାସନ ଆଗରେ କିଛି ସ୍ଥାନ ଅଛି ଓ ସେଠାରେ ଭକ୍ତମାନେ ଠିଆ ହୋଇ ବା ସିଂହାସନ ଚତୁର୍ଦ୍ଦିଗରେ ପରିଭ୍ରମଣ କରି ଠାକୁରଙ୍କୁ ଦର୍ଶନ କରନ୍ତି । ସ୍ନାହାନ ମେଳା ଅର୍ଥାତ୍ ସମସ୍ତଙ୍କ ପାଇଁ ଅବାଧ ଅନ୍ତଃଦର୍ଶନ ଉପଯୋଗୀ ସମୟ । ବାକୀ ସମୟରେ ଠାକୁରଙ୍କ ଦର୍ଶନ ପ୍ରଥମ ଚନ୍ଦନ ଅର୍ଗଳୀ ଠାରୁ ବା ୨ୟ ଚନ୍ଦନ ଅର୍ଗଳୀ ନିକଟରେ ଥାଇ ଦର୍ଶନ କରିଥାଆନ୍ତି । ୨ୟ ଚନ୍ଦନ ଅର୍ଗଳୀର ଡାହାଣ ପଟରେ କେବଳ ଦ୍ୱାର ବନ୍ଦ କୋଠରୀ ଅଛି । ସେଥିରେ ଠାକୁରଙ୍କ ବିଭିନ୍ନ ମୂଲ୍ୟବାନ ଆଭୂଷଣ ଓ ଅନ୍ୟାନ୍ୟ ସଂଗୃହୀତ ହୀରା, ନୀଳା, ମୋତି, ମାଣିକ ଗଚ୍ଛିତ ଥିବାର କୁହାଯାଏ । ପ୍ରଥମ ଚନ୍ଦନ ଅର୍ଗଳୀ ଥିବାର ଅଂଶଟି ଏକ ପ୍ରଶସ୍ତ ସ୍ଥାନ ଯହିଁରେ ଭକ୍ତମାନେ ବସି ନାନା ପ୍ରକାର ସ୍ତୋତ୍ର ପାଠ, ପୁରାଣ ପାଠ ଶ୍ରବଣାଦି କରୁଥାଆନ୍ତି । ଉପରି ଛାତରେ ଲୀଳାମୟ ପ୍ରଭୁଙ୍କ ବିଭିନ୍ନ ଅବତାର, ଅନନ୍ତ ଶୟନ, ରାମରାବଣ ଯୁଦ୍ଧ, କୃଷ୍ଣଙ୍କ ବିଭିନ୍ନ ଲୀଳା ସଂକ୍ରାନ୍ତୀୟ ସୁନ୍ଦର ଚିତ୍ରମାନ ସୁଦୃଶ୍ୟ ଅଟେ । ଜଗନ୍ନାଥ ମନ୍ଦିରରେ ହୁଣ୍ଡି ବ୍ୟବସ୍ଥା ପ୍ରଥମ କରି ଦେଖିବାର ଅନୁଭୂତି

ପାଇଁ ଖୁସି ହେଲି । ସେଠାରେ ଶୃଙ୍ଖଳା ବ୍ୟବସ୍ଥା ପାଇଁ Temple Police ନିଯୁକ୍ତ ହୋଇଥାନ୍ତି ।

ପ୍ରଧାନ ମନ୍ଦିରର ଚତୁର୍ଦ୍ଦିଗରେ କାରୁକାର୍ଯ୍ୟ ଖଚିତ ପଥରରେ ନିର୍ମିତ ଓ ତହିଁରେ ନାନା ପ୍ରକାର ମୂର୍ତ୍ତି ସ୍ଥାନ ପାଇଛି । ଏହାର ତିନି ପାର୍ଶ୍ୱରେ ବରାହ, ନୃସିଂହ ଓ ଗଣେଶଙ୍କ ମୂର୍ତ୍ତି ଅଛନ୍ତି । ବଡ଼ ମନ୍ଦିରର ପଛକୁ ଉତ୍ତର ପଟେ ଛୋଟ ଏକାଦଶୀ ମନ୍ଦିରଟିଏ ଦେଖାଯାଏ । ଏହି ମନ୍ଦିର ନିକଟରେ ବ୍ରତୀମାନେ ଏକାଦଶୀ ଦିନ ପୂଜା, ଅର୍ଚ୍ଚନା ଓ ପାରଣା କରନ୍ତି । ଏ ସବୁର ବର୍ଣ୍ଣନା କେତେକ ପାଠକଙ୍କୁ ଅନାବଶ୍ୟକ ମନେ ହୋଇପାରେ, କିନ୍ତୁ ଯେଉଁମାନେ ପୁରୀ ଦେଖି ନାହାନ୍ତି ଓ ମନ୍ଦିର ସମ୍ପର୍କରେ ଅନଭିଜ୍ଞ, ମୋର ଆଶା ଏହା ପାଠ କରି ସେମାନେ ଯତ୍‌କିଞ୍ଚିତ ସୂଚନା ଓ ସମ୍ୟକ ଧାରଣା ପାଇପାରିବେ ।

ଦାଦାଙ୍କ ସଙ୍ଗରେ ଉପରୋକ୍ତ ସମସ୍ତ ମନ୍ଦିରର ଦର୍ଶନ କଲୁ । ମନ୍ଦିର ସାମନାରେ ଅନ୍ତତଃ କିଛି ମୁହୂର୍ତ୍ତ ପାଇଁ ନ ବସି ଚାଲି ଆସିବା ଅବିଧେୟ । ଆଉ ଏକ କଥା ଦାଦା ସୂଚାଇ ଦେଲେ ଯେ ଲକ୍ଷ୍ମୀ ମନ୍ଦିରକୁ ସିଧାସଳଖ ସମୁଦ୍ରରୁ ମୁକ୍ତ ପବନ ପ୍ରବାହିତ ହୁଏ । ତେଣୁ ସବୁ ଆଡୁ ବୁଲାବୁଲି କରି କ୍ଳାନ୍ତ ହେଲା ପରେ ଏ ମନ୍ଦିର ସାମନାରେ କିଛି ସମୟ କଟାଇଲେ ମୁକ୍ତ ଅବାଧ ବାୟୁ ପ୍ରବାହର ସ୍ପର୍ଶ ହେତୁ କ୍ଳାନ୍ତି ମୋଚନ ହେଲା । ବଡ଼ ମନ୍ଦିରର ବେଢ଼ା ଭିତରେ ଉତ୍ତର ପଶ୍ଚିମ କୋଣକୁ ଲକ୍ଷ୍ମୀ ମନ୍ଦିର ଠିକ୍ ସମ୍ମୁଖରେ ଏପରି ଏକ ସ୍ଥାନ ଅଛି ଯେଉଁଠାରୁ ଦେଖିଲେ ସତ୍ୟନାରାୟଣ ମନ୍ଦିରର ସତ୍ୟନାରାୟଣ ମୂର୍ତ୍ତି, ଲକ୍ଷ୍ମୀଙ୍କ ମୂର୍ତ୍ତି ଓ ନୀଳଚକ୍ର ସମ୍ପୂର୍ଣ୍ଣ ରୂପେ ଦୃଷ୍ଟିଗୋଚର ହୁଏ । ଏହି ସ୍ଥାନକୁ ଏହି ତିନି ପ୍ରଧାନ ଦର୍ଶନୀୟ ସ୍ଥାନର କେନ୍ଦ୍ରବିନ୍ଦୁ ବୋଲି କହନ୍ତି । ନୀଳଚକ୍ର ଦର୍ଶନ କରିବାକୁ ହେଲେ ମୁଣ୍ଡ ଏତେ ଟେକିବାକୁ ପଡ଼େ ଯେ ଲୋକେ କହନ୍ତି ମନ୍ଦିର ବେଢ଼ାରୁ ମଧ ନୀଳଚକ୍ର ଦେଖିବାକୁ ଚାହିଁଲେ ମୁଣ୍ଡର ଠେକା ପଗଡ଼ି ଖସି ପଡ଼େ । ନେତ ବନ୍ଧା ବେଳେ ଦକ୍ଷିଣା ସ୍ୱରୁପ ଭକ୍ତମାନେ ଅର୍ଥଦାନ କରନ୍ତି ।

ଦାଦାଙ୍କ ସଙ୍ଗେ ଠାକୁର ଦର୍ଶନ ସାରି ଘରକୁ ଫେରି ଜଳଖିଆ ସାରିଲା ବେଳକୁ ପ୍ରାୟ ୯ଟା ୩୦ମି. । ସାଇକେଲ ବାହାର କରି ଦାଦା ମହାଶୟ ଶ୍ରୀ ଲୋକନାଥ ମନ୍ଦିର, ମାର୍କଣ୍ଡେଶ୍ୱର ମନ୍ଦିର ତଥା ବଡ଼ ଦାଣ୍ଡର ଏମାର ମଠ ଓ ଅନ୍ୟ ମଠ ଆଦି ଦର୍ଶନ କରି ଘରକୁ ଫେରିବା ବେଳେ ଦିନ ୧୨ଟା ପ୍ରାୟ । ଶ୍ରୀ ଲୋକନାଥ ମନ୍ଦିରର ବିଶେଷତ୍ୱ ଏହି ଯେ ଏହା ଏକ ଶିବ ମନ୍ଦିର ଓ ଏହାର ଜଳମଗ୍ନ ଦିଅଁଙ୍କ କେବଳ ଶିବ ଚତୁର୍ଦ୍ଦଶୀ ଦିନ ଜଳ କଢ଼ାଯାଇ ସମସ୍ତଙ୍କୁ ଦର୍ଶନ ଦିଅନ୍ତି । ମାର୍କଣ୍ଡେଶ୍ୱର

ଅନ୍ୟ ଏକ ଶିବ ମନ୍ଦିର - ଏଠାରେ ଚଣ୍ଡୀ ଭଉଣୀ ନାମରେ ସାତ ଭଉଣୀଙ୍କ ମୂର୍ତ୍ତି ରହି ଅଛି । ଏଠାରେ ଶିଶୁମାନଙ୍କର ଚୂଡ଼ାକରଣ ଆଦି କାର୍ଯ୍ୟ କରାଯାଇଥାଏ । କିଛି ସମୟ ବସିବା ପରେ ମଧ୍ୟାହ୍ନ ଭୋଜନ ଓ ବିଶ୍ରାମ ପରେ ୩ଟାରେ ପୁଣି ବାହାରି ପଡ଼ିଲୁଁ । ଚନ୍ଦନ ପୋଖରୀ, ଶ୍ରୀଗୁଣ୍ଡିଚ୍ଚ ମନ୍ଦିର, ଇନ୍ଦ୍ରଦ୍ୟୁମ୍ନ ଓ ସୁନାର ଗୌରାଙ୍ଗ ଦର୍ଶନରେ । ଏପରି ଦେଖିବାକୁ ଗଲେ, ଜଗନ୍ନାଥଙ୍କ ବାର ମାସରେ ତେର ଯାତ୍ରା ଓ ଅନେକ ପର୍ବପର୍ବାଣୀ ମାଦଳା ପାଞ୍ଜିରେ ଉଲ୍ଲିଖିତ ହୋଇଛି । ସେ ସବୁ ମଧ୍ୟରେ ଠାକୁରଙ୍କ ରଥଯାତ୍ରା ପୃଥିବୀ ପ୍ରସିଦ୍ଧ । ବହୁ ଜନସମାଗମ ଓ ମନୋମୁଗ୍ଧକର । ଅନ୍ୟାନ୍ୟ ପର୍ବପର୍ବାଣୀରେ ଜଗନ୍ନାଥଙ୍କ ଚଳନ୍ତି ପ୍ରତିମା ରୂପେ ପୁରୀ ଗଜପତି ମହାରାଜ ନବକୋଟି କର୍ଣ୍ଣାଟୋତ୍କଳ ବୀରାଧିବୀରବର ଉପାଧିରେ ଭୂଷିତ । ତାଙ୍କର ଦୈନିକ କାର୍ଯ୍ୟକ୍ରମ ପ୍ରଭୁ ଜଗନ୍ନାଥଙ୍କ ଦୈନନ୍ଦିନ ପୂଜା ଅବକାଶ ସଙ୍ଗେ ପ୍ରାୟ ସମାନ ରୂପେ ପାଳିତ ହୁଏ ।

ଚନ୍ଦନ ପୋଖରୀ ଯିବା ବାଟରେ ଦୁଧୱାଲା ଧର୍ମଶାଳା, ରାଜନଅର, ମାଉସୀ ମା ମନ୍ଦିର ଆଦି ପଡ଼େ, ତାପରେ ଆଗକୁ ଯାତ୍ରୀ ନିବାସ, ଅନ୍ନପୂର୍ଣ୍ଣା ଥିଏଟର - ପ୍ରେକ୍ଷାଳୟ, ବଡ଼ ଠାକୁରଶାଳା ଓ ଶ୍ରୀଗୁଣ୍ଡିଚ୍ଚ ମନ୍ଦିର ପଡ଼େ । ଶ୍ରୀଗୁଣ୍ଡିଚ୍ଚ ମନ୍ଦିର ବଡ଼ ମନ୍ଦିରର ଅନୁରୂପ କିନ୍ତୁ ଆକାରରେ କିଛି ସାନ । ସେଠାରେ ମଧ୍ୟ ଠାକୁରଙ୍କ ସିଂହାସନ, ଜଗମୋହନ, ରୋଷଶାଳା ଆଦି ରହିଛି କାରଣ ଆଷାଢ଼ ଶୁକ୍ଳ ୨ଯା ରଥଯାତ୍ରା ଠାରୁ ଦଶମୀ ପର୍ଯ୍ୟନ୍ତ ଠାକୁର ଏଠାରେ ଅବସ୍ଥାନ କରନ୍ତି । ଏ ସମୟରେ ଠାକୁରଙ୍କ ଶ୍ରୀମନ୍ଦିରର ନୀତିନିୟମ ସବୁ ଏଠାରେ ଠିକ୍ ରୂପେ ପାଳିତ ହୁଏ । ପୁଣି ଦଶମୀରେ ରଥ ଚଢ଼ି ଠାକୁର ଶ୍ରୀମନ୍ଦିରକୁ ବିଜେ କରିଥାଆନ୍ତି । ଏହା ହେଉଛି ପୁରୀର କାହିଁକି, ପୃଥିବୀର ସର୍ବଶ୍ରେଷ୍ଠ ପର୍ବ । ଅଣସର ଗୃହରେ ରହିଲା ବେଳେ ସେହି ପନ୍ଦର ଦିନ ଯାକ ଦଇତାପତିମାନେ ଭୋଗରାଗ କରନ୍ତି ଓ ତାହା ନିସଂକୁଡ଼ି ଭୋଗ । ପ୍ରତିପଦା ଦିନ ଠାକୁରଙ୍କ ନବଯୌବନ ବେଶ ପରେ ପୁଣି ପଣ୍ଡା ପଢ଼ିହାରୀଙ୍କ ଦାୟିତ୍ୱ । ସଂଖୁଡ଼ି ଭୋଗ ଅନ୍ନ ରନ୍ଧାବଢ଼ାର ଉପକ୍ରମ ଚାଲେ । କଥିତ ଅଛି ଯେ ପ୍ରତିଦିନ ଜଗନ୍ନାଥଙ୍କ ନାମରେ ୬୪ ପଉଟୀ ଭୋଗ ଲାଗେ ଓ ଯାତ୍ରା ଭିଡ଼ ଦେଖି ଏହାର ପରିମାଣ ବୃଦ୍ଧି କରାଯାଏ । ତେଣୁ ଆନନ୍ଦ ବଜାରକୁ ପୃଥିବୀର ସର୍ବଶ୍ରେଷ୍ଠ ବୃହତ୍ତମ ଅନ୍ନଛତ୍ର ବୋଲି କହନ୍ତି । ପୁରୁଷୋତ୍ତମ କ୍ଷେତ୍ର ପୁରୀ ଓ ଅନ୍ନପୂର୍ଣ୍ଣା କ୍ଷେତ୍ର କାଶୀରେ କେହି ଭୋକରେ ରହନ୍ତି ନାହିଁ । କାରଣ ଜଗନ୍ନାଥ କ୍ଷେତ୍ରରେ ବା ସ୍ୱୟଂ ଅନ୍ନପୂର୍ଣ୍ଣା କ୍ଷେତ୍ରରେ ତାଙ୍କ ପ୍ରତ୍ୟକ୍ଷ କରୁଣା ହେତୁ ମା ଲକ୍ଷ୍ମୀଙ୍କ ଓ ଅନ୍ନପୂର୍ଣ୍ଣାଙ୍କ ଅନ୍ନଦାନ ବ୍ୟବସ୍ଥା ଯୋଗୁ କେହି ଅଖିଆ ରହିଲେ ତାଙ୍କ ସୁନାମ ଓ ଗୌରବରେ

ଆଞ୍ଚ ଆସିବା ଭୟରେ ଏହି ପ୍ରକାର ପ୍ରବାଦ ଓ ପ୍ରମାଣ ରହିଛି ।

ଆମେ ଗୁଣ୍ଡିଚ୍ଚା ମନ୍ଦିରରେ ବୁଲି, ଇନ୍ଦ୍ରଦ୍ୟୁମ୍ନ ପୋଖରୀ ଦେଖି ସୁନାର ଗୌରାଙ୍ଗ, ବେଡ଼ୀ ହନୁମାନ ଓ ଚକ୍ରତୀର୍ଥ ଆଡ଼େ ସାଇକେଲରେ ଗଲୁଁ । ସୁନାର ଗୌରାଙ୍ଗ ମନ୍ଦିର ସକାଳ ୭ଟାରୁ ୧୨ଟା ଓ ଉପର ଓଳି ୪ଟାରୁ ୭ଟା ପର୍ଯ୍ୟନ୍ତ ଦର୍ଶନ ଲାଗି ଖୋଲା ରହେ । ଏଠାରେ ଗୌରାଙ୍ଗ ଠାକୁରଙ୍କ ସୁବର୍ଣ୍ଣ ବିଗ୍ରହ ପ୍ରତିଷ୍ଠା କରାଯାଇ ଏକ ଅପୂର୍ବ ଦୃଶ୍ୟାନୁଭୂତି ପ୍ରଦାନ କରେ । ଏହା ଏକ ବଙ୍ଗୀୟ ସଂସ୍ଥା ରୂପେ ପରିଚିତ । ଏତଦ୍‌ଭିନ୍ନ ଚକ୍ରତୀର୍ଥ ଓ ବେଡ଼ୀ ହନୁମାନ ଦର୍ଶନ କରି ପୁଣି ସନ୍ଧ୍ୟା ପୂର୍ବରୁ ବତୀଘର ନିକଟସ୍ଥ ସମୁଦ୍ରକୂଳ ବାଟେ ସ୍ୱର୍ଗଦ୍ୱାର ପର୍ଯ୍ୟନ୍ତ ଗଲୁଁ ଓ ସମୁଦ୍ର - କୂଳିଆ ପବନ ଓ ଭ୍ରମଣରତ ପୁରୁଷରମଣୀ, ଶିଶୁ ତଥା ଆବାଳ ବୃଦ୍ଧ ବନିତାଙ୍କ ଆନନ୍ଦରେ କଥୋପକଥନ ଓ ସମୁଦ୍ର ଦର୍ଶନରେ ଆତ୍ମ ବିଭୋର ଦୃଶ୍ୟ ଦେଖି ନିଜକୁ ମଧ୍ୟ ଭୁଲି ଯିବାକୁ ହୁଏ । ବତୀଘରରେ ଏକ ଉଜ୍ଜ୍ୱଳ ଆଲୋକ ବିଶିଷ୍ଟ ଉଚ୍ଚସ୍ତମ୍ଭ ରହିଛି, ଯାହା ରାତ୍ରିରେ ଯାତାୟାତ ନୌକା ବା ଜାହାଜ ଆଦିକୁ ସତର୍କ ସୂଚନା ପ୍ରଦାନ କରେ । ସ୍ୱର୍ଗଦ୍ୱାର ଏକ ଶବଦାହର ସ୍ଥାନ - ମଶାଣି - ଏଠାରେ ଓଡ଼ିଶାର ବିଶିଷ୍ଟ ନାଗରିକମାନଙ୍କ ଅନ୍ତିମ ସଂସ୍କାର କରାଯାଇଥାଏ । ସମୁଦ୍ରରେ ନୋଳିଆ, ଶିଶୁ ଓ ବୟସ୍କଙ୍କର ସମୁଦ୍ର ସ୍ନାନ ପାଇଁ ସାହାଯ୍ୟ ଦେଖି ବହୁତ କୌତୁହଳ ଜାତ ହୁଏ । ମୁଁ ସମୁଦ୍ର ସ୍ନାନ କରି ନ ଥିବାରୁ ପରଦିନ ସକାଳେ ଦାଦାଙ୍କ ସଙ୍ଗେ ଆସି ସମୁଦ୍ର ସ୍ନାନ କରିବାର ଉଦ୍ଦେଶ୍ୟ ରଖି ବସାକୁ ପ୍ରତ୍ୟାବର୍ତ୍ତନ କଲୁଁ । ରାତ୍ରଭୋଜନ ସାରି ଦିନଯାକର ପୁରୀ ଭ୍ରମଣ ସଂକ୍ରାନ୍ତରେ ଆଲୋଚନା କରି ବିଶ୍ରାମ ନେଲୁଁ । ଦିନଯାକ ବୁଲିବା ଦ୍ୱାରା ହାଲିଆ ହୋଇ ପଡ଼ିଥିବାରୁ ଶୀଘ୍ର ନିଦ ହୋଇଯାଇଥିଲା ।

ପରଦିନ ବଡ଼ି ସକାଳୁ ପ୍ରାୟ ୬ଟା ପୂର୍ବରୁ ଦାଦା ମୋତେ ସାଙ୍ଗରେ ନେଇ ସମୁଦ୍ରକୁ ଗଲେ । ସେଠାରେ ତାଙ୍କ ପରିଚିତ ଏକ ନୋଳିଆକୁ ମୋତେ ସ୍ନାନ କରାଇବାକୁ ନିର୍ଦ୍ଦେଶ ଦେଇ ନିଜେ କୂଳରେ ବସି ରହିଲେ । ପ୍ରାୟ ୧୦/୧୫ ମିନିଟ ପରେ ନୋଳିଆ ମୋତେ ସ୍ନାନ କରାଇବା ପରେ ଆମେ କୂଳକୁ ଆସି ସମୁଦ୍ର କୂଳସ୍ଥ ଏକ ଟେପ୍‌ରେ ଭଲ ଭାବେ ଗାଧୋଇ ଓ ପୋଛାପୋଛି ହେବା ପରେ ଘରକୁ ଫେରିଆସି ଜଳଖିଆ କଲୁଁ । ଦାଦା ଅନ୍ୟାନ୍ୟ ଘରୋଇ କାମ କରିବା ପରେ ଅଫିସକୁ ଯିବାର ପ୍ରସ୍ତୁତିରେ ରହିଲେ ଓ ମୋତେ ନିଜର ଇଚ୍ଛାନୁସାରେ ସେଦିନଟି ବୁଲିବାକୁ କହିଲେ । ମୁଁ ଏକାକୀ ଶ୍ରୀମନ୍ଦିରକୁ ଯାଇ ନିଜକୁ ପଣ୍ଡାଙ୍କ କବଳରୁ ରକ୍ଷା କରି ମନ୍ଦିର ବେଢ଼ା ଓ ଚନ୍ଦନ ଅର୍ଗଳୀରୁ ଠାକୁରଙ୍କୁ ଦର୍ଶନ କଲି । ଦାଦା ପଣ୍ଡାଙ୍କ ଭୁଲାଇବା ଚତୁରୀକୁ ସାବଧାନ କରି ଦେଇଥିଲେ । ବଡ଼ଦାଣ୍ଡର ବିଭିନ୍ନ ଦୋକାନ ଓ ବିଭିନ୍ନ

ଜିନିଷ ଦେଖି ଦରଦାମ ବୁଝି ନେଲି କାରଣ ଘରକୁ କେଉଁ ଜିନିଷ ନିଆଯାଇ ପାରିବ ମୋର ସୀମିତ ସମ୍ବଳ ମଧ୍ୟରେ ତାର ଏକ ତାଲିକା ମନେ ମନେ କରି ପକାଇଲି। ପରେ ଦାଦାଙ୍କ ସଙ୍ଗେ ଆସି ସେ ସବୁ ଜିନିଷ କିଣିବାର ପ୍ରୟାସ ରଖି ବସାକୁ ଫେରି ଆସିଲି। ଦିନେ ଦାଦା ଅଫିସର ଅନ୍ୟାନ୍ୟ କର୍ମୀଙ୍କ ସଙ୍ଗେ ମୋତେ ପରିଚିତ କରାଇ ଦେଲେ। ଟେବୁଲରେ ଏକ ଟାଇପ୍ ମେସିନ ଥିଲା ଓ ସେ ଦିନ ଟାଇପିଷ୍ଟ ଛୁଟିରେ ଥିଲେ। ତେଣୁ ମେସିନର ଅବ୍ୟବହୃତ ଅବସ୍ଥା ଦେଖି ଦାଦାଙ୍କ ଅନୁମତି କ୍ରମେ ମୁଁ ତାକୁ ଚଳାଇବାର ଉପକ୍ରମରେ ମୋର କଟକ ଓ ପୁରୀ ଭ୍ରମଣ ଅଭିଜ୍ଞତା ବିଷୟରେ ଟାଇପ କରିବାର ଦୁଃସାହସ କଲି। ପ୍ରଥମେ ପ୍ରଥମେ କିଛି ଭୁଲ ହେଲା, କିଛି ସମୟ ଅଭ୍ୟାସ ପରେ ପ୍ରାୟ ୨ ପୃଷ୍ଠା ପର୍ଯ୍ୟନ୍ତ ମୋର ଅନୁଭୂତି ଟାଇପ୍ କରି ଦାଦାଙ୍କୁ ଦେଖାଇବାରୁ ସେ ଅତିଶୟ ପ୍ରୀତ ହେଲେ। ଅଫିସ୍ ଛୁଟି ହେବାରୁ ୪ଟାରେ ବସାକୁ ପହଞ୍ଚିଲୁଁ। ଦାଦା ଓ ମୁଁ ଶ୍ରୀମନ୍ଦିର ଓ ଅନ୍ୟାନ୍ୟ ସ୍ଥାନକୁ ଯାଇ ଜଗନ୍ନାଥଙ୍କୁ ଶେଷ ଦର୍ଶନ କଲୁ। ଭୋଗ କିଣା ଓ ଜିନିଷପତ୍ର ମଧ୍ୟରେ ଜଗନ୍ନାଥଙ୍କ କିଛି ଫଟୋ ରଙ୍ଗୀନ ବାଡ଼ି, ଶିର କାପଡ଼ା ଓ ଶୁଖା ଅବଢ଼ା/ନିର୍ମାଲ୍ୟ କିଣିଲୁଁ। ପରଦିନ ସକାଳେ ମୋର କଟକ ଫେରି ଯିବାର ଥିଲା। ଏ ମଧ୍ୟରେ ମୋର ସମ୍ବଲପୁରରୁ ଆସିବାର ପ୍ରାୟ ୮/୧୦ ଦିନ ହୋଇ ସାରିଥିଲା। ତେଣୁ ସନ୍ଧ୍ୟାରେ ଘରକୁ ଫେରି କିଣିଥିବା ଜିନିଷର ବନ୍ଧାବନ୍ଧି କରି ପରଦିନ କଟକ ଫେରିବା ପାଇଁ ପ୍ରସ୍ତୁତି ଚାଲିଲା। ପରଦିନ ରାତି ପାହାନ୍ତାରୁ ଉଠି ପ୍ରାତଃ ୪ଟା ୩୦ ମି. ବା ୫ଟାରେ ଟ୍ରେନ୍ ଧରିବାର ଥିଲା।

ପରଦିନ ରାତିରୁ ଉଠି ନିତ୍ୟକର୍ମ ସାରି ଷ୍ଟେସନ ଯିବାକୁ ପ୍ରସ୍ତୁତ ହେବା ପୂର୍ବରୁ ଭାଉଜ ଜଳଖିଆ କରି ସାରିଥିଲେ ଓ ଦାଦା ରିକ୍ସାବାଲାଟାକୁ ଆଗ ରାତିରେ ବରାଦ କରିଥିବାରୁ ସେ ଠିକ୍ ସମୟରେ ଆମ ଦୁଆର ମୁଁହରେ ହାଜିର ହେଲା। ଆମେ ଦୁହେଁ ରିକ୍ସାରେ ବସିବା ପୂର୍ବରୁ ମୁଁ ଭାଉଜ ଓ ଅଯୋଧ୍ୟାକୁ ଧନ୍ୟବାଦ ଜଣାଇ ଛୁଟିରେ ଆମ ଗାଁକୁ ଯିବାକୁ ଅନୁରୋଧ କରି ବିଦାୟ ନେଲି। ଦାଦାଙ୍କ ସଙ୍ଗରେ ରେଲୱେ ଷ୍ଟେସନକୁ ଆସିବା ବେଳେ ପ୍ରାୟ ଟ୍ରେନ୍ ଛାଡ଼ିବା ସମୟ ନିକଟ ହୋଇଯାଇଥିଲା। ମୋତେ ଦାଦା ଟ୍ରେନ୍‌ରେ ବସାଇ ଦେଇ ନିଜ ଜିନିଷପତ୍ରକୁ ଜାଗ୍ରତରେ ଧ୍ୟାନ ଦେବାକୁ ପରାମର୍ଶ ଦେଲେ। ଏହା ଥିଲା ମୋ ପକ୍ଷରେ ଟ୍ରେନ୍‌ରେ ଏକାକୀ ଭାବେ ଯାତ୍ରା କରିବା। ଟ୍ରେନ୍ ଟିକଟ କିଏ କାଟିଲା ମୋର ମନେ ନାହିଁ ତଥାପି ମୋର ପୁରୀ ରହଣୀ ଯେ ମନୋରମ ଓ ସ୍ମରଣୀୟ ଥିଲା ଏହା ପ୍ରକାଶ କରିଥିଲି ଦାଦାଙ୍କ ସମ୍ମୁଖରେ। ସେ ମଧ୍ୟ ଅତି ସ୍ନେହର ସହ ବିଦାୟ ନେଇ ବସାକୁ

ବାହୁଡ଼ିଲେ ଓ ପ୍ରକାଶ କଲେ ଯେ ସେ ଜିନିଷମାନଙ୍କୁ ଧରି ନିଶ୍ଚୟ ଆମ ଅଫିସ୍ ଯିବେ।

ଟ୍ରେନ୍‌ଟା ଠିକ୍ ସମୟରେ ପୁରୀ ଛାଡ଼ିଲା ଓ ମୁଁ ଦୂରରୁ ଶ୍ରୀମନ୍ଦିର ଉଦ୍ଦେଶ୍ୟରେ ଜଗନ୍ନାଥଙ୍କୁ ଧ୍ୟାନ କରି ହାତ ଯୋଡ଼ିଲି। ପୁରୀ ଆସିବାର ସୁଯୋଗ ପୁନଃ ମିଳିବାର କାମନା କଲି। ଟ୍ରେନ୍‌ଟି ପୁରୀ, ଖୋର୍ଦ୍ଧା, ଭୁବନେଶ୍ୱର ଛାଡ଼ି ଆସି କଟକରେ ପହଞ୍ଚିଲା ବେଳକୁ ପ୍ରାୟ ୭ଟା ୩୦ମି. ସମୟ ପାର ହୋଇଥାଏ। ମୁଁ ସାବଧାନତାର ସହ ଟ୍ରେନ୍‌ରୁ ଓହ୍ଲାଇ ଷ୍ଟେସନରୁ ବାହାରି ଏକ ରିକ୍ସା ଧରି ଓଡ଼ିଆ ବଜାର ଉଦ୍ଦେଶ୍ୟରେ ଗମନ କଲି। ବସାରେ ପହଞ୍ଚିଲା ବେଳକୁ ପ୍ରାୟ ୮ଟା ୩୦ମି.। ଭୈରବ ବାବୁ ଓ ତାଙ୍କ ସ୍ତ୍ରୀ ଯେ କି ଆମ ଗାଁର, ମୋତେ ଦେଖି ଖୁସି ହୋଇ ଜଗନ୍ନାଥ ଦର୍ଶନ ପାଇଁ ଶୁଭେଚ୍ଛା ଜଣାଇ ଏକ ଗାମୁଛା ପ୍ରଦାନ କଲେ। ଆମ ଅଞ୍ଚଳର ଚଳଣୀ ଅନୁସାରେ କୌଣସି ବ୍ୟକ୍ତି ପୁରୀ, ଏଲାହାବାଦ୍, ବାରାଣସୀ, ବଦ୍ରିନାଥ ବା କୌଣସି ତୀର୍ଥସ୍ଥାନ ଭ୍ରମଣ କରି ଫେରିଲେ ତାଙ୍କୁ ଶୁଭେଚ୍ଛା ଜଣାଇ ଲୁଗା, ନଡ଼ିଆ ଆଦି ପ୍ରଦାନ କରନ୍ତି। ଏହାକୁ ସାଧାରଣତଃ "ଗୋଡ଼ଧୁଆ" ବୋଲି କୁହାଯାଏ। ମୁଁ ମଧ ଭୈରବ ବାବୁଙ୍କ ପୁଅ ପାଇଁ କିଛି ଖେଳନା ଆଣି ଦେଇଥିଲି।

କଥା ପ୍ରସଙ୍ଗରେ ମୁଁ ଭୈରବ ବାବୁଙ୍କୁ କହିଲି ଯେ ମୋର ଆସିବାର ଅନେକ ଦିନ ହୋଇ ଯାଇଥିବାରୁ ଆମ ଗାଁରେ ବ୍ୟସ୍ତ ହେଉଥିବେ। କାରଣ ମୁଁ କେବେ ଆଗରୁ ଏକାକୀ ଏତେ ଦୂରକୁ ଯାଇ ନ ଥିଲି ବା ଏତେ ଦିନ କଟାଇ ନ ଥିଲି। ଏହା ଶୁଣି ମୋ ପ୍ରସ୍ତାବରେ ରାଜି ହୋଇ ପରଦିନ ସମ୍ବଲପୁର ଫେରି ଯିବାରେ ଏକମତ ହେଲୁଁ। ସେ ଦିନରେ ଅଫିସ୍‌ରୁ ଫେରି ସନ୍ଧ୍ୟାରେ କଟକରୁ ଯାହା କିଣିବା କଥା ତାହା କିଣି ନେବା ପାଇଁ ପରାମର୍ଶ ଦେଲେ। କହିଲେ କଟକରେ ଶିଙ୍ଗର ପାନିଆ, ଫାରୁଆ ଆଦି ଆମ ଆଡ଼େ ଆଦୃତ ହେବ ଓ କଟକରେ ମିଳୁଥିବା ପାଟ୍‌କପୁରୀ ଚମ୍ପା କଦଳୀ ବେଶ ଶସ୍ତା ଓ ତାକୁ କିଛି ନେଲେ ଭଲ ହେବ। ଏଣୁ ସନ୍ଧ୍ୟାରେ ଆମେ ମଙ୍ଗଳାବାଗ ଯାଇ କିଛି ଶିଙ୍ଗ ଜିନିଷ ଓ ଛତରା ବଜାର ଯାଇ କଦଳୀ କାନ୍ଦିଏ କିଣି ଆଣିଲୁଁ। ପ୍ରକାଶ ଥାଉ କି ଆମ ଯିବା ଆସିବା ଖର୍ଚ୍ଚ ଓ ଏସବୁ ଜିନିଷ କିଣିବାରେ ପ୍ରାୟ ପାଞ୍ଚ ଟଙ୍କା ମଧ ଖର୍ଚ୍ଚ ହୋଇ ନ ଥିଲା।

ପରଦିନ ସକାଳେ ନିତ୍ୟକର୍ମ ସାରିଲା ବେଳକୁ ଆଗରୁ ବରାଦ ଦିଆ ଯାଇଥିବା ରିକ୍ସାବାଲା ଆସି ଦାଣ୍ଡ ମୁହଁରେ ହାଜର। ଆମେ ତେଣୁ ଶୀଘ୍ର ଜଳଖିଆ ସାରି ସାମାନପତ୍ର ଧରି ରିକ୍ସାରେ ମୁଁ ଓ ଭୈରବ ବାବୁ ରେଳୱେ-ଷ୍ଟେସନ ମୁହଁେ ବାହାରିଲୁ। ଟ୍ରେନ୍ ଆସିବା ସମୟ ୭ଟା ୩୦ ମି. ଥିବାରୁ ଆମକୁ ଅପେକ୍ଷା କରିବାକୁ

ହେଲା । ସେ ଦିନ ଟ୍ରେନ୍‌ଟି ୧୦ ମିନିଟ୍ ବିଳମ୍ବ ଥିବାରୁ ୭.୪୦ରେ ପହଞ୍ଚିଲା । ମୋତେ ଠିକ୍ ଭାବେ ଗୋଟିଏ ସ୍ଥାନରେ ବସାଇ ଜିନିଷ ପ୍ରତି ସତର୍କ ଦୃଷ୍ଟି ରଖିବାକୁ କହିଲେ । ମେରାମଣ୍ଡଳୀ ଷ୍ଟେସନରେ ଓହ୍ଲାଇବାକୁ ପରାମର୍ଶ ଦେଲେ । ସୌଭାଗ୍ୟକୁ କଥାବାର୍ତ୍ତା ଛଳରେ ସେହି ଡବାରେ ଆଉ ଜଣେ ସମ୍ବଲପୁରର ଯାତ୍ରୀ ମିଳିଯିବାରୁ ବାଟରେ କିଛି ଅସୁବିଧା ହେଲା ନାହିଁ । ୧୧ଟା ବେଳେ ମେରାମଣ୍ଡଳୀ ପହଞ୍ଚି ସେଠାରୁ ମଧ୍ୟ ବସ୍‌ରେ ସୁବିଧାରେ ଟିକଟ୍ ପାଇ ସମ୍ବଲପୁର ଅଭିମୁଖେ ଯାତ୍ରା କଲୁଁ । ବାଟରେ ଅନୁଗୁଳରେ ମଧ୍ୟାହ୍ନ ଭୋଜନ ପାର୍ଶ୍ୱବର୍ତ୍ତୀ ଏକ ଝୁମ୍ପୁଡ଼ୀ ଘରେ ସାରି ଦେଲୁ । ବସ୍‌ଟି ସମ୍ବଲପୁର ଦିଗରେ ଆଗେଇଲା । ବାଟରେ ଅନୁଗୁଳ ଓ ବଇଣ୍ଡାରେ କିଛି ଫଳମୂଳ ଅମୃତଭଣ୍ଡାଦି ତଥା ଚିତ୍ରିତ କେତୋଟି ବାଡ଼ି କିଣିଲି । ରେଢ଼ାଖୋଲ ପାର ହୋଇ ସମ୍ବଲପୁର ପହଞ୍ଚିବା ବେଳକୁ ପ୍ରାୟ ୫ଟା ପର । ଦିବାଯାତ୍ରାରେ ଓ ତତ୍କାଳୀନ ରାସ୍ତାଘାଟର ଅନୁନ୍ନତ ଅବସ୍ଥା ହେତୁ ଧୂଳିମୟ ହେବାକୁ ପଡୁଥିଲା । ତେଣୁ ସମ୍ବଲପୁରରେ ପହଞ୍ଚି ଦଲାଇପଡ଼ା ବସାକୁ ପହଞ୍ଚି ରାସ୍ତାର କ୍ଳାନ୍ତି ଅପନୋଦନ ପାଇଁ ମହାନଦୀକୁ ସ୍ନାନାର୍ଥେ ଯିବାକୁ ଉଦ୍ୟତ ହେବା ବେଳେ ଘର ମାଲିକ ଭୀଷ୍ମଦେବ ବିଶ୍ୱାଳ ଘରେ ପହଞ୍ଚି ତାଙ୍କ ପୁଅ ବୋହୂଙ୍କର କୁଶଳ ସମାଚାର ଓ ପତ୍ରାଦି ଦେଇଛନ୍ତି କି ବୋଲି ପଚାରିବାରୁ ମୁଁ ପତ୍ରାଦି ଆଣି ନାହିଁ ବୋଲି କହିଥିଲି । ପରେ ସେମାନଙ୍କ କୁଶଳ ସମାଚାର ଶୁଣି ଆଶ୍ୱସ୍ତ ହେଲେ । ତା'ପରେ ମୁଁ ସ୍ନାନାଦି ସାରି ନିତ୍ୟକର୍ମ ପରେ ବିଶ୍ୱାଳ ବାବୁଙ୍କ ସଙ୍ଗେ ଆଲୋଚନା ପରେ କିଛି ମହାପ୍ରସାଦ, ଫଳମୂଳ, ଫଟୋ ଆଦି ଦେବାରୁ ଆନନ୍ଦିତ ହେଲେ । ରାତ୍ର ଭୋଜନ ପରେ ବିଶ୍ରାମ ନେଲି ।

ଦଲାଇପଡ଼ାରେ ଥାଇ ସମ୍ବଲପୁରରେ ଅଧ୍ୟୟନ ବେଳେ କଲେଜର ପଢ଼ାସାଥୀମାନଙ୍କ ବ୍ୟତୀତ ପଡ଼ାର କେତେକ ବ୍ୟବସାୟୀ ବନ୍ଧୁଙ୍କ ସହ ଆନ୍ତରିକତା ବଢ଼ି ଯାଇଥିଲା । ସେମାନେ ହେଲେ ସମ୍ବଲପୁର ଜିଲ୍ଲା ତଥା ଦଲାଇପଡ଼ାର ପ୍ରସିଦ୍ଧ ଆତସବାଜି କାରୀଗର ଅନନ୍ତରାମ ବେରିହା ଓ ତାଙ୍କ ପୁତ୍ର ବ୍ରଜବିହାରୀ ବେରିହା । ସେଠାକାର ସୁପରିଚିତ ପୋଷାକ ତିଆରି କାରୀଗର ବନମାଳୀ ସାହୁ ଆଦି ପ୍ରଧାନ ଥିଲେ । ସେମାନଙ୍କ ସହ ଶେଷ ସାକ୍ଷାତ କରି ପରଦିନ ସକାଳୁ ମୋର ଆବଶ୍ୟକୀୟ ଜିନିଷପତ୍ର ଧରି ଗାଁକୁ ଫେରିବା ଉଦ୍ଦେଶ୍ୟରେ ବରଗଡ଼ ଯାତ୍ରା କଲି । ପୂଜନୀୟ ବିଶ୍ୱାଳ ବାବୁଙ୍କ ଠାରୁ ବିଦାୟ ନେଲି । ସେ ଅତି ଆନନ୍ଦରେ ବିଦାୟ ଦେଇ ମୋତେ କହିଲେ, "ଶଶିବାବୁ ! ତୁମକୁ ପୁଣି ଆଗକୁ ବଢ଼ିବାକୁ ହେବ - ପ୍ରସ୍ତୁତ ହୁଅ ।" ଏଥିରେ ଉଚ୍ଚ ଶିକ୍ଷା ପାଇଁ ସେ ଇଙ୍ଗିତ କରିଥିଲେ ।

ସମ୍ବଲପୁର ରହଣୀ ସମୟର ଆଉ ଏକ ଘଟଣା ବର୍ଣ୍ଣନା କରିବା ପ୍ରାସଙ୍ଗିକ ମନେ କରି ତହିଁର ସୂଚନା ଦିଆଯାଉଛି । ଥରେ ଜଣେ ପରଦେଶୀ ଭଦ୍ର ଲୋକ ଚିତା ଚୈତନ୍ୟଧାରୀ ଆମ ଦଲାଇପଡ଼ା ବାସଭବନରେ ପହଞ୍ଚି ବିଶ୍ୱାଳ ବାବୁଙ୍କ ସହ ତାଙ୍କ ଦାଣ୍ଡ ପିଣ୍ଡାରେ ଆଲୋଚନାରତ ଥିଲେ । ମୁଁ ଉଦ୍ଧଣ୍ଟାର ସହ ସେହି ସ୍ଥଳକୁ ଯାଇ କିଛି କ୍ଷଣ ଛିଡ଼ା ହେବା ପରେ ଉକ୍ତ ଆଗନ୍ତୁକ ମୋ ଆଡ଼େ ଦୃଷ୍ଟି ନିକ୍ଷେପ କରି କଅଣ ଦେଖିଲେ କେଜାଣି ହଠାତ୍ କହି ପକାଇଲେ, "ୟେ ଲଡ଼କା, ବହୁତ ପାଠ ପଢ଼େଗା ଔର ଭାଗ୍ୟଶାଳୀ ହୋଗା, ଇସ୍‌କା ଗାଡ଼ି ଘୋଡ଼ା ସେ କାରବାର୍ ଚଲେଗା ।" ମୁଁ ଏ ସବୁ ଭକୁଆ ଭଳି ଠିଆ ହୋଇ ଶୁଣୁଥିଲି । ବିଶ୍ୱାଳ ବାବୁ ଯୋଗ ଦେଇ କହିଲେ, "ଶଶିବାବୁ ! ତୁମର ଭବିଷ୍ୟତ ଉଜ୍ଜ୍ୱଳ ହେବାର ଲକ୍ଷଣ କଥା ସେ କହୁଛନ୍ତି ।" ପୁଣି ସେ ଭଦ୍ରଲୋକ ଦୋହରାଇ କହିଲେ, "ଇସ୍‌କା ଶିର୍ ପର୍ ଯୋ ରେଖା ହେ ୟେ ସ୍ପଷ୍ଟ ସୂଚିତ କରତା ହୈ କି ୟେ ଏକ୍ ବଡ଼ା ଆଦ୍‌ମି ବନେଗା ।" ଏହା ଶୁଣି ମୁଁ କେବଳ ମନେ ମନେ ହସୁଥିଲି ମାତ୍ର ।

ସମ୍ବଲପୁରରୁ ପନ୍‌ଟୁନ ବ୍ରିଜ୍ ପାର ହୋଇ ଗାଡ଼ି ଧରି ବରଗଡ଼ରେ ପ୍ରାୟ ୧୧ଟାରେ ପହଞ୍ଚିଲି । ମୁଁ କଟକ ଓ ପୁରୀ ଯାତ୍ରା ଫେରିଥିବାରୁ ଘରେ ମୋର ବାପା, ବଡ଼ ବାପା, କାକା, ମାଆ, ଖୁଡ଼ୀ ଓ ବଡ଼ ମା ଆଦି ବିଶେଷ ଆନନ୍ଦିତ ହେଲେ । ତାଙ୍କ ସଙ୍ଗେ ଗାଁର ଅନ୍ୟମାନେ ଯେଉଁମାନେ ମୋତେ ଭଲ ପାଉଥିଲେ ସେମାନେ ବି ଖୁସି ହେଲେ । ମୋର ମାଆ ପୁରୀରୁ ଆଣିଥିବା ମହାପ୍ରସାଦ, କଦଳୀ ଆଦି ଗାଁର ଅନେକଙ୍କୁ ଦେଇ ନିଜର ପୁଅର ଓ ତାଙ୍କ ନିଜର ବଡ଼ିମା ଦେଖାଇଥିଲେ । ପରେ ଗୋପେଇପାଲିର ମିତ୍ରସୀ, କୁଲଟ୍ ଓ ବରପାଲିର ମିତବାପା ହେରିକା ଖବର ପାଇ ଆସି ମୋର ଗୋଡ଼ ଧୋଇବା ପାଇଁ ଲୁଗା ଆଦି ପ୍ରଦାନ କରିଥିଲେ । ଗାଁବାସୀ କିଏ ଗାମୁଛା ତ କିଏ ନଡ଼ିଆ ଆଦି ଦେଇ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ପ୍ରଣତି ଜଣାଇଲେ । ଏହା ଆମ ଅଞ୍ଚଳର ଏକ ବିଶେଷ ଚଳଣୀ । ଯେ କୌଣସି ଲୋକ ଏହ୍ଲାବାଦ ବା ଓଡ଼ିଶା (ପୁରୀ) ଗଲେ ତାଙ୍କୁ ଲୁଗା ନଡ଼ିଆ ଦେଇ ସତ୍କାର କରନ୍ତି । ମୋର ଯାହା ମନେ ହୁଏ ନିକଟ ଅତୀତରେ ଆମ ଗାଁର କେହି ଏପରି ତୀର୍ଥ ସ୍ଥାନୀୟ ଦୂର ସ୍ଥାନକୁ ଗମନ କରି ଫେରି ଥିବାର ଅନ୍ତତଃ ମୋର ମନେ ନାହିଁ ବା ଶୁଣି ନ ଥିଲି ମଧ । ତେଣୁ ଏହା ଆମ ଗାଁ ଓ ବନ୍ଧୁବାନ୍ଧବମାନଙ୍କ ପକ୍ଷରେ ଏକ ଗୌରବମୟ ଘଟଣା ବୋଲି ମନେ ହେଲା । ଗାଁରେ କିଛି ଦିନ ରହଣୀ ପରେ ମୁଁ କୁଲଟ୍, ବରପାଲି, ଗୋପେଇପାଲି ଓ ସୋହେଲା ଆଦି ଗ୍ରାମମାନଙ୍କୁ ଯାଇ ବନ୍ଧୁ ଓ ଗୁରୁଜନମାନଙ୍କୁ ଦର୍ଶନ କରି ମୋର ପୁରୀ, କଟକ ଭ୍ରମଣ ବାର୍ତ୍ତା ଜଣାଇଲି । ସମସ୍ତେ

ମୋର ପୁରୀରୁ ପଠାଇଥିବା ଚିଠି ଗୁଡ଼ିକ ପାଇ ବେଶ ସନ୍ତୋଷ ଲାଭ କରିଥିଲେ।

## I.Sc. ପାସ୍ ଓ ପରବର୍ତ୍ତୀ ଯୋଜନା :-

ଏପରି ଭାବେ ଗ୍ରାମରେ ପ୍ରାୟ ଗ୍ରୀଷ୍ମ ଋତୁଟି କଟାଇବା ପରେ ପ୍ରାୟ ମଇ ମାସର ମଧ୍ୟ ଭାଗରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ I.Sc. ଫଳ ପ୍ରକାଶ ପାଇଲା। ମୁଁ ପରୀକ୍ଷାରେ ୩ୟ ଶ୍ରେଣୀରେ ପାସ୍ କଲି ଓ ଉଚ୍ଚ ଶିକ୍ଷା ପାଇଁ ବିଭିନ୍ନ କଲେଜକୁ ଦରଖାସ୍ତ ଫର୍ମ ପଠାଇଲି। ମୋର ଏକାନ୍ତ ଇଚ୍ଛା ଥାଏ ମୁଁ କଟକ ରେଭେନ୍ସା କଲେଜରେ ପଢ଼ିବି ଓ ଫିଜିକ୍ସରେ ଅନର୍ସ ନେବି। ଦରଖାସ୍ତ ଫର୍ମ ଓ ପ୍ରସ୍‌ପେକ୍‌ଟସ୍, କଲେଜ ବିବରଣୀ, ଖର୍ଚ୍ଚାଦିର ତାଲିକା ସହ ଆସିଲା। ଉପଯୁକ୍ତ ସମୟରେ ସମସ୍ତ କାଗଜ ସହ ଦରଖାସ୍ତ ଫର୍ମ ପଠାଇଲି। ଜୁନ ମାସର ଶେଷ ଭାଗରେ ରେଭେନ୍ସା କଲେଜରୁ ଖବର ଆସିଲା ଯେ ଜୁଲାଇ ପ୍ରଥମ ସପ୍ତାହର ଏକ ନିର୍ଦ୍ଦିଷ୍ଟ ତାରିଖରେ ନାମ ଲେଖାଯିବ। କଟକ ଯିବାର ଖର୍ଚ୍ଚ, ମାସିକ ଖର୍ଚ୍ଚ ଓ ଅନ୍ୟାନ୍ୟ ବିଷୟରେ ଭାଲେଣି ପଡ଼ିଲା। ବହୁ ବିଚାର ବିମର୍ଷ ପରେ ଶେଷକୁ ସ୍ଥିର ହେଲା ଯେ ଜୁଲଟ୍‌ର ମିତବାପା, ବରପାଲି ମିତବାପା ଓ ମୋର ଭାବୀ ଶ୍ୱଶୁର ଶିବଶଙ୍କ ଆଚାର୍ଯ୍ୟ ମାସିକ ତାଙ୍କ ଯଥାନୁରୂପ ସାହାଯ୍ୟ ଦେବେ। ହେଲେହେଁ ମାସକୁ ପ୍ରାୟ ଅତି କମ୍‌ରେ ଟ୩୫/୪୦ଙ୍କା ନ ହେଲେ ଚଳିବା ସମ୍ଭବ ନୁହେଁ। ତେଣୁ ଘରେ ସମସ୍ତଙ୍କର ଚିନ୍ତା ଏତେ ଟଙ୍କା ପ୍ରତି ମାସରେ କେଉଁଠୁ ଆସିବ। ମୋର ବାପା କିଛି ଟଙ୍କା ମୂଳଧନରେ ଚାଉଳ, ଚିନାବାଦାମ ଓ ଛଣପଟ ବ୍ୟବସାୟ କରୁଥିଲେ ଓ ହାତରେ କିଛି ପଇସା ହୁଏ ତ ଥାଇପାରେ, କିନ୍ତୁ ମୁଁ ସେ ବିଷୟରେ ଅଜ୍ଞ ଥିଲି। ତଥାପି ଆମର ଅନ୍ୟାନ୍ୟ ହିତୈଷୀ ବନ୍ଧୁମାନଙ୍କ ସହ ଆଲୋଚନା କରି ଏହା ସିଦ୍ଧାନ୍ତ ହେଲା ଯେ କୌଣସି ପ୍ରକାରେ ଉଚ୍ଚ ଶିକ୍ଷା ପାଇଁ କଟକ ଯିବାକୁ ହେବ ଓ ସୁବିଧା ଅସୁବିଧାରେ ବରପାଲି ମିତବାପା ସ୍ୱର୍ଗତ ବଦାନ୍ୟ ବିହାରୀ ମେହେର ମୋର ପଢ଼ାର ପୃଷ୍ଠପୋଷକତା କରିବେ। ତାଙ୍କ ନିଜ ସନ୍ତାନ ସନ୍ତତି ନ ଥିବାରୁ ମୋତେ ପୁତ୍ରବତ୍ ସ୍ନେହ କରୁଥିଲେ ଓ ତାଙ୍କ ଧନସମ୍ପତ୍ତି ପର୍ଯ୍ୟାପ୍ତ ଥିବାରୁ ଗୋଟିଏ ବ୍ରାହ୍ମଣ ଛାତ୍ରକୁ ପଢ଼ାଇଲେ ଧର୍ମ ହେବ ଭାବିଲେ। ବନ୍ଧୁତା ସୂତ୍ରରେ ଆବଦ୍ଧ ଥିବାରୁ ତାହାର ସୁଦୃଢ଼ ହେବ। ଜୁଲଟ୍ ମିତବାପା ୰ ନାରାୟଣ ସାହୁ ଏକ ଉଚ୍ଚ କୋଟୀର ବ୍ୟକ୍ତିତ୍ୱ, ସହାନୁଭୂତିଶୀଳ ଥିଲେ। ମାତ୍ର ତାଙ୍କ ହାତରେ ସବୁ ବେଳେ ପଇସା ନ ଥାଏ କାରଣ ସେ ଚାଷୀ। ହାତରେ କିଛି ପାଣ୍ଠି ହେଲେ ବାପାଙ୍କୁ ଡକାଇ ମୋର ପଢ଼ା ଖର୍ଚ୍ଚ ପାଇଁ କିଛି ଦେଇ ପକାନ୍ତି। ମିତମା ମଧ୍ୟ ଭାରୀ ସ୍ନେହଶୀଳା ଓ ମୋର ସାମାନ୍ୟ ଦରକାରୀ

ବସ୍ତୁ ଯଥା ଛତା, ଯୋତା ବା ଆଉ କିଛି ଖର୍ଚ୍ଚ ପାଇଁ ମିତବାପାଙ୍କ ଅଜାଣତରେ ଦେଇ ପକାନ୍ତି। ତେଣୁ ଏମାନଙ୍କ ଅଯାଚିତ ବଦାନ୍ୟତା ଓ ସମୟୋପଯୋଗୀ ସାହାଯ୍ୟ ସର୍ବଦା ଅବିସ୍ମରଣୀୟ ହୋଇ ରହିବ। ଛୁଟି ଶେଷରେ ଯେତେବେଳେ ମୋର କଟକ ଯିବାର ସମୟ ଆସିଲା, ମୋର ଭାବୀ ଶ୍ୱଶୁର ମଧ ମାସକୁ ଅନ୍ତତଃ ଟ.୧୫ ଲେଖାଏଁ ଦେବାର ପ୍ରତିଶୃତି ଦେଲେ। ଏହା ଯେପରି ଏକ ଅଜଣା ଆଶାଦୀପଶିଖା ରୂପେ ସ୍ପଷ୍ଟ ହେଲା।

## କଟକରେ ପଢ଼ିବା ପାଇଁ ପ୍ରସ୍ତୁତି ଓ ଯାତ୍ରା :-

କୌଣସି ପ୍ରକାରେ ବାପା ପ୍ରାୟ ତିନି ଶହ ଟଙ୍କା ଯୋଗାଡ଼ କରି କହିଲେ କି କିଛି ଟଙ୍କା ଯୋଗାଡ଼ ହୋଇପାରିଛି। ଏଣୁ ଦିନ ଦେଖି କଟକ ଯିବାକୁ ମତ ଦେଲେ। ବଡ଼ ବାପା ପାଞ୍ଜି ଦେଖି ଦିନବାର ଠିକ୍ କରି ଜୁଲାଇ ପ୍ରଥମ ସପ୍ତାହରେ ଶୁଭ ଲଗ୍ନ ଦେଖି ଦିନ ଓ ସମୟ ନିର୍ଦ୍ଧାରିତ ହେଲା। ସେତେବେଳେ ଦୂର ସ୍ଥାନକୁ ଯିବାକୁ ହେଲେ ସେମିତି କୌଣସି ଉପଯୁକ୍ତ ବାକ୍ସଟିଏ ଆମ ଘରେ ନ ଥିଲା। ବରଗଡ଼ ଓ ସମ୍ବଲପୁର ରହଣୀ ପର୍ଯ୍ୟନ୍ତ କାଠ ବାକ୍ସରେ କାମ ଚଳିଗଲା। ଏବେତ ଉଚ୍ଚ ଶିକ୍ଷା ପାଇଁ କଟକ ଯିବାକୁ ହେବ ଓ ଏଣୁ ଏକ ଲୁହା ବାକ୍ସ/ ଟ୍ରଙ୍କଟିଏ ଦରକାର। ତାପରେ ବିଛଣା, ଚଦର ଆଦି ଓ ନିତ୍ୟ ବ୍ୟବହାର୍ଯ୍ୟ ଲୁଗାପଟା ଇତ୍ୟାଦି। ମୋର ସାନ କାକା ତାଙ୍କ ଇ.ଟି. ପରୀକ୍ଷା ଦେବା ପାଇଁ ସମ୍ବଲପୁର ଯାଇଥିଲେ। ସେଠାରୁ ଫେରିଲା ବେଳେ ବୋଧ ହୁଏ ଟ୧ ବା ଟ୨ ରେ ଏକ ସୁଟ୍‌କେଶ - ତା ଉପରେ ଠିଆ ହେଲେ ମଧ ତାହା ଲେପି (ବଙ୍କା) ଯାଉ ନ ଥିଲା। ଏହି ସୁଟ୍‌କେଶଟି କାକାଙ୍କ ଘରେ ରହୁଥିବା ଦୃଷ୍ଟିରୁ ସେତେ ବ୍ୟବହାରରେ ଆସୁ ନ ଥିଲା ଓ ତାଙ୍କ ଲୁଗାପଟାଦି ଅନ୍ୟ ବାକ୍ସରେ ରଖିଲେ ଚଳୁଥିଲା। ସେ ସେହି ସୁଟ୍‌କେଶଟିକୁ ଦେବାକୁ ରାଜି ହେବାରୁ ସେଥିରେ ଲାଗିଥିବା କବ୍‌ଜା ଓ ତାଲା ଆଦି କିଛି ଅସଜ ଥିବାରୁ ତାକୁ ଠିକ୍ କରାଗଲା ଓ ମୁଁ ତାକୁ ଧରି କଟକ ଯିବାକୁ ସ୍ଥିର ହେଲା। ଅବଶ୍ୟ ମୁଁ କଟକରେ ସେଥିରେ ଭଲ ଚଳୁଥିବା ତାଲା ଓ ଚାବିଟିଏ ଯୋଗାଡ଼ କରିଥିଲି, ଅବଶ୍ୟ ଅତି କମ୍ ଦାମରେ। ସଙ୍ଗରେ ରେଜେଇ, ତକିଆ, ଚଦର ଆଦି ଓ ପିନ୍ଧାପିନ୍ଧି ପାଇଁ ଧୋତି, କାମିଜ ଓ ଖଣ୍ଡେ ହାପ୍‌ପେଣ୍ଟ ଯାହାକୁ କି ମୁଁ ସମ୍ବଲପୁରରେ ପଢ଼ିବା ବେଳେ ବିଜ୍ଞାନ ପରୀକ୍ଷାଗାରରେ ବ୍ୟବହାରିକ ଜ୍ଞାନ ଆହରଣ ବେଳେ (Practical class)ରେ ବ୍ୟବହାର ପାଇଁ ତିଆରି କରିଥିଲି, ସେ ସବୁ ସେହି ସୁଟ୍‌କେଶରେ ଯାହା ଧରିବା ସମ୍ଭବ ହେଲା, ତା' ବ୍ୟତୀତ ଅନ୍ୟ ବସ୍ତୁ [illegible] ବଣ୍ଡଲି କରିବାକୁ

ହେଲା । ଆମର ଘରେ ସେତେବେଳେ Bedding coverର ପ୍ରଚଳନ ନ ଥିବା ଦୃଷ୍ଟିରୁ ଏକ ମୋଟା କପଡ଼ା ଓ ପାଲରେ ଗୁଡ଼ାଇ ରସିରେ ବନ୍ଧାଗଲା । ଆମ ଘରେ ସେତେବେଳେ କୌଣସି ଦରି ବା ମୋଟା ଜିନିଷର ବ୍ୟବହାର ହୋଇ ନ ଥିଲା । ଏସବୁ ଆଧୁନିକତାର ନିଦର୍ଶନ । ଆମ ଘରୁ କେହି ବାହାରକୁ ଚାକିରୀ ବା ପଢ଼ିବା ଉଦ୍ଦେଶ୍ୟରେ ଏତେ ଦୂରକୁ ଆଗରୁ ଯାଇ ନ ଥିଲେ । ଏ ମଧ୍ୟରେ ମୋର ଗୋଟିଏ ଭଉଣୀ ବିନ୍ଦୁ ଓ କାକାଙ୍କ ଝିଅ ମେଚ ଜନ୍ମ ନେଇ ସାରିଥିଲେ ।

ବଡ଼ ବାପା ପାଞ୍ଜି ଦେଖି ଦିନ ସ୍ଥିର କଲେ ଓ ସେଦିନ ସମ୍ବଲପୁର ଯାଇ ରାତିଟି କଟାଇ ସକାଳେ କଟକ ଯିବାର ପ୍ରସ୍ତାବ ଦେଲେ । ତେଣୁ ନିର୍ଦ୍ଧାରିତ ଦିନ ମୋର ସଙ୍ଗେ ଜଣେ ଭାରୁଆ ବାକ୍ସ ଓ ବେଡିଙ୍ଗ ଧରି ବରଗଡ଼ ପର୍ଯ୍ୟନ୍ତ ଆସିଲେ ଓ ବାପା ମଧ୍ୟ । ଆଉ ଏକ ବିଷୟ ଏଠାରେ ସୂଚନା ଦେବା ଆବଶ୍ୟକ । ଆମ ଗାଁରେ ଗୌନ୍ତିଆ ଘର ଏକ ସମ୍ଭ୍ରାନ୍ତ ପରିବାର ଓ କୁଲତା ଜାତିର । ତେଣୁ ସେମାନଙ୍କ ସଙ୍ଗରେ ଆମ ପରିବାରର ଘନିଷ୍ଠ ସମ୍ପର୍କ ଥାଏ । ଗାଁର ଗୌନ୍ତିଆ ୰ ଜିତେନ୍ଦ୍ରିୟ ସାହୁ ଓ ମୋର ପିତାଙ୍କ ବହୁତ ମେଳ ଥିଲା । ତେଣୁ ଏସବୁ ବିଷୟରେ ସେ ମୋର ବାପାଙ୍କୁ ବହୁତ ଉତ୍ସାହ ଦେଇ ସାହାଯ୍ୟ କରୁଥିଲେ । ତାଙ୍କ ସ୍ତ୍ରୀ ଗୌନ୍ତିଆଣି ୰ ବୃନ୍ଦାବତୀ ଦେବୀ ମୋତେ ବହୁତ ସ୍ନେହ କରୁଥିଲେ । ତାଙ୍କ ବଂଶର ଅନ୍ୟ ପରିବାର ସଙ୍ଗେ ସେପରି ସମ୍ପର୍କ ନିବିଡ଼ ନ ଥିଲା । ହେଲେହେଁ ତାଙ୍କ ବଂଶର ଚୈତନ୍ୟ ସାହୁଙ୍କ ପୁତ୍ର ଗଙ୍ଗାଧର ସାହୁ ଆମ ଗାଁର ପ୍ରାଥମିକ ବିଦ୍ୟାଳୟର ହେଡ୍ ପଣ୍ଡିତ ଥିଲେ ଓ ତାଙ୍କ ସାନ ଭାଇ ମାଖୁନୁ ସାହୁଙ୍କୁ ଗ୍ରାମୀଣ ସାମାଜିକ ସମ୍ପର୍କରେ ମୋର କାକା ହେବେ, ମୋ ସଙ୍ଗେ ବେଶ ଆନ୍ତରିକତା ଥିଲା । ମୁଁ ତାଙ୍କ 'ବଦୁ' ଅର୍ଥାତ୍ କାକାଙ୍କର ଘନିଷ୍ଠତମ ଡାକ ରୂପେ ବ୍ୟବହୃତ ହେଉଥିଲା । ସେହିପରି ମୋର ଜଣେ 'ଶଙ୍ଖୁ' ଥିଲେ - ଅର୍ଜୁନ ଦାଶ - ବ୍ରାହ୍ମଣ ଓ ମୋର ସହପାଠୀ । ମୋର ତ ସେତେବେଳେ ବିବାହ ହୋଇ ନ ଥାଏ, କିନ୍ତୁ ଏ ସମ୍ବନ୍ଧ ହେଲା କିପରି ? ଏହା ମଧ୍ୟ ଏକ ଆନ୍ତରିକତାର ଚିହ୍ନ । ଏସବୁର ତାତ୍ପର୍ଯ୍ୟ ହେଲା ଯେ ଏମାନେ ତଥା ଆମ ଗାଁର ଆଉ କେତେକ ସ୍ତ୍ରୀଲୋକ ଯେ କି ମା'ଙ୍କ ଅନୁରକ୍ତା, ସେମାନେ ସମସ୍ତେ ମୋ ଉଚ୍ଚ ଶିକ୍ଷା ପାଇଁ ବେଶ ଦରଦୀ ଓ ସହାନୁଭୂତିଶୀଳା ଥିଲେ । ଏମାନେ ସମସ୍ତେ ତାଙ୍କ ଶକ୍ତି ମୁତାବକ ଦୁଇ ଅଣା ରୁ ଆରମ୍ଭ କରି ଚାରି ଅଣା ବା ଆଠ ଅଣା ଏପରିକି ଟଙ୍କେ, ଦୁଇ ଟଙ୍କା ପର୍ଯ୍ୟନ୍ତ ମୋର କଟକ ଯିବା ବେଳେ ଆସି ମୋ'ଠାରେ ଦେଇ ଗଲେ ଓ ମୋ ସଙ୍ଗେ ବରଗଡ଼ ପର୍ଯ୍ୟନ୍ତ ମୋର 'ବଦୁ' ଆସିଥିଲେ । ବାଟରେ ଆସିଲା ବେଳେ ତାଙ୍କ ମୁଣାରେ କେତେ ଖୁଚୁରା ପଇସା ଥିଲା ଓ ସେ ବାଟରେ

କହି ପକାଇଲେ 'ବଢୁ' ଏସବୁ ମୋତେ ବେଶୀ ଓଜନ ହେଉଛି । ତେଣୁ 'ତାକୁ ତୁମେ ନିଅ, ବାଟରେ କିଛି କାମରେ ଆସିବ' କହି ତାଙ୍କ ମୁଣାକୁ ପୂରା ଶୂନ୍ୟ କରି ସବୁ ମୋ ହାତରେ ଅକାଡ଼ି ଦେଲେ । ମୁଁ ଆସି ଦେଖିଲା ବେଳେ ତାହା ପ୍ରାୟ ଦୁଇ ବା ତିନି ସୁକାରୁ କମ୍ ନ ଥିଲା । ଅବଶ୍ୟ ଗାଁରୁ ବାହାରିବା ବେଳେ ମୋତେ ବୋଧ ହୁଏ ୨/୩ ଟଙ୍କା ପର୍ଯ୍ୟନ୍ତ ଦେଇ ସାରିଥିଲେ । ଅର୍ଥାତ୍ ମୋର ପଢ଼ିବା ପାଇଁ ଗ୍ରାମବାସୀ ବନ୍ଧୁବାନ୍ଧବ ଓ ଶୁଭେଚ୍ଛୁ ଓ ହିତୈଷୀମାନଙ୍କ ଯେ ଅଯାଚିତ ସାହାଯ୍ୟ ସହାନୁଭୂତି ଥିଲା ଏଥିରୁ ସ୍ପଷ୍ଟ ସୂଚନା ମିଳେ । ସେତେବେଳେ ମୁଁ ଘରେ କହି ଆସିଥିଲି ଯେ ଯଦି ତୋରାରୁ ପ୍ରସଙ୍ଗ ଆସେ ତେବେ ତାହାକୁ ସୁଚିନ୍ତିତ ଭାବେ ବିଗ୍ଭର କରି ମତ ଦେବେ ।

ଆମେ ବରଗଡ଼ ଆସି ସମ୍ବଲପୁର ଯାଉଥିବା ଗାଡ଼ି ଧରି ସମ୍ବଲପୁରରେ ପହଞ୍ଚିବା ବେଳକୁ ପ୍ରାୟ ଦିନ ୨ଟା ଗଡ଼ି ଯାଇଥାଏ । ମୁଁ ମୋର ଜିନିଷପତ୍ର ବିଶ୍ୱାଳ ବାବୁଙ୍କ ଘରେ ରଖିଦେଇ ସିଧା ଗ୍ଭଲିଲି ବସ୍ ଷ୍ଟେଣ୍ଡ ଅଭିମୁଖେ । ସଂପୃକ୍ତ କର୍ମଗ୍ଭରୀଙ୍କୁ ଦେଖା କରି ପରଦିନ ବସ୍‌ରେ ମେରାମଣ୍ଡଳୀ ଯିବା ପାଇଁ ମୋର ନାମକୁ ପଞ୍ଜିକରଣ କରିବାକୁ ଅନୁରୋଧ କଲି । ସେ ମହାଶୟ ତତ୍‌କ୍ଷଣାତ୍ ସଂପୃକ୍ତ ଖାତାରେ ଉପଯୁକ୍ତ ସ୍ଥାନରେ ନିର୍ଦ୍ଦିଷ୍ଟ ତାଲିକାରେ ନାମ ଲେଖିଲେ ଓ ଅତି ଭଦ୍ରତାର ସହ ପରଦିନ ସକାଳ ୭ଟା ପୂର୍ବରୁ ବସ୍ ଷ୍ଟେଣ୍ଡକୁ ଆସିବାକୁ ପରାମର୍ଶ ଦେଇ କହିଲେ ଯେ ଠିକ୍ ୭ଟା ବେଳେ ବସ୍ ଛାଡ଼ିବ । ଏଣୁ ଆଗରୁ ଆସି ନିଜ ସ୍ଥାନ ରଖି ଜିନିଷପତ୍ର ନିଜ ଦାୟିତ୍ୱରେ ବସ୍‌ରେ ଚଢ଼ାଇ ଦେବେ । ମୁଁ ଆଶ୍ୱସ୍ତ ହୋଇ ସେଠାରୁ ଫେରିଲି ଓ ଆସିବା ବାଟରେ ମୋର ଦୂର ସମ୍ପର୍କୀୟ ଦାଦା ଶିବ ଦାଶ ପଟ୍ଟନାୟକ ପଡ଼ା ଘର ବାଟେ ଆସିଥିଲି । ଶିବ ଦାଦା ସେତେବେଳେ ପଦ୍ମପୁର ଜମିଦାରଙ୍କ ଏକ କର୍ମଗ୍ଭରୀ ରୂପେ ସମ୍ବଲପୁରରେ କେଇ ବର୍ଷ ପୂର୍ବରୁ ରହୁଥିଲେ । ସେ ପଟ୍ଟନାୟକ ପଡ଼ାରେ ନିଜର ଏକ ଘରଟିଏ କିଣି ସାରିଥିଲେ । ସେ ହେଉଛନ୍ତି ମୋର ଆଈଙ୍କର କଟାପାଲିର ଜଣେ ଭଉଣୀଙ୍କ ପୁଅ ଓ ସମ୍ପର୍କରେ ନାତି ହେବେ । ତେଣୁ ଆମେ ପରସ୍ପର ଦାଦାଭାଇ ରୂପେ ସମ୍ବନ୍ଧିତ ଥିଲୁଁ । ତାଙ୍କ ସ୍ତ୍ରୀ ଅର୍ଥାତ୍ ମୋ ଭାଉଜ ଏକ ସ୍ନେହମୟୀ ମହିଳା ଓ ମୁଁ ସମ୍ବଲପୁରରେ ପଢ଼ିବା ସମୟରେ ତାଙ୍କ ଘରକୁ ଯିବା ଆସିବା ବେଳେ ମୋର ଖାଦ୍ୟପେୟର ବେଶ ଯତ୍ନ ନେଉଥିଲେ । ତାଙ୍କ ପୁଅ ଝିଅମାନେ ମଧ୍ୟ ମୋତେ କାକା ହିସାବରେ ସମ୍ମାନ ଦେଉଥିଲେ । ସେମାନେ ମୋର କଟକ ଉଚ୍ଚ ଶିକ୍ଷା ପାଇଁ ଯାତ୍ରା ଶୁଣି ସମସ୍ତେ ବେଶ ଆନନ୍ଦିତ ହେଲେ । ତାପରେ ମୁଁ ମୋର ବିଶ୍ରାମ ସ୍ଥଳକୁ ଯାଇ ସନ୍ଧ୍ୟା ଭୋଜନ ପରେ ଶାନ୍ତିରେ ଶୋଇ ପଡ଼ିଲି ।

ପ୍ରାତଃରୁ ଉଠି ବସ୍ ଷ୍ଟେଣ୍ଡ ଉଦ୍ଦେଶ୍ୟରେ ବାହାରି ପଡ଼ିଲି । ସେତେବେଳେ ହାତଟଣା ରିକ୍ସାର ପ୍ରଚଳନ ଥିଲା । ଭଡ଼ା ମଧ୍ୟ ସେତେ ନ ଥିଲା । ବସ୍ ଷ୍ଟେଣ୍ଡରେ ପହଞ୍ଚି ମୋର ବିସ୍ତରାପତ୍ର ଓ ବାକ୍ସକୁ ବସ୍ ଉପରକୁ ଉଠାଇ ବସିବା ପାଇଁ ସଂପୃକ୍ତ କଣ୍ଡକ୍ଟରଙ୍କୁ ଜଣାଇବାରୁ ସେ ମୋତେ ଏକ ନିର୍ଦ୍ଦିଷ୍ଟ ସ୍ଥାନକୁ (ବସ୍‌ର ଦ୍ୱିତୀୟ କୋଠରୀ) ଦେଖାଇଲେ । ବସ୍‌ରେ ଆଗ ଡ୍ରାଇଭର୍ ସିଟ୍‌କୁ ଏକ ସ୍ୱତନ୍ତ୍ର କୋଠରୀ କରି ତାର ପରବର୍ତ୍ତୀ ସ୍ଥାନକୁ ଗୋଟିଏ ବା ୨ଟି କୋଠରୀରେ ବିଭକ୍ତ କରାଯାଇ ପଛଟିକୁ ଏକ ଲମ୍ୱାଳିଆ କୋଠରୀ ରୂପେ ତିଆରି କରାଯାଉଥିଲା ଓ ଲୋକଙ୍କ ସ୍ଥାନ ସଂରକ୍ଷଣ ଓ ପଦବୀ (Status) ଦୃଷ୍ଟିରୁ ଆଗପଛ ସ୍ଥାନ ଦିଆ ଯାଉଥିଲା । ଏହି ପ୍ରଣାଳୀ ପରିବହନ ସଂସ୍ଥା ସରକାରୀ ଥିବା ପର୍ଯ୍ୟନ୍ତ ଚ୍ଛଲିଥିଲା ଓ ବସ୍‌ରେ ଉଚ୍ଚ ଶ୍ରେଣୀ ଓ ନିମ୍ନ ଶ୍ରେଣୀ ବୋଲି ବିଭାଜନ ଓ ଭଡ଼ାର କିଛି ତାରତମ୍ୟ ମଧ୍ୟ ଥିଲା । କିନ୍ତୁ କଛି ମୋଟର ସଂସ୍ଥାରେ ସେ ସବୁ ନିୟମ ନ ଥିଲା ଓ କଛି ମୋଟର ସଂସ୍ଥାର କର୍ମଚ୍ଚାରୀଗଣ ତାଙ୍କ ମାଲିକ ୰ ନର୍ବେରାମ ଯୋଶୀଙ୍କ ଇଙ୍ଗିତରେ ବେଶ ସୁବ୍ୟବହାର ପ୍ରଦର୍ଶନ ପୂର୍ବକ ସୁରୁଖୁରୁରେ ଗାଡ଼ି ଚଳାଉଥିଲେ । ତେଣୁ ଏହି କଛି କମ୍ପାନୀର ବସ୍‌ଗୁଡ଼ିକ ସରକାର ଦାୟିତ୍ୱ ନେବା ପର୍ଯ୍ୟନ୍ତ ସୁବ୍ୟବସ୍ଥା ଓ ଲାଭଦାୟକ ସଂସ୍ଥା ରୂପେ ପରିଗଣିତ ହୋଇଥିଲା । ସେତେବେଳେ ଏହା ଏକ କମ୍ପାନୀ ହୋଇଥିବାରୁ ଏହାର ଅନେକ ସଦସ୍ୟ ଥିଲେ । ସେମାନେ କମ୍ପାନୀର ଅଂଶଧନ କିଣି ସେଥିରୁ ଲାଭାଂଶ ପରିମାଣ ଏପରିକି କେଉଁ କେଉଁ ବର୍ଷ - ଲାଭର ପରିମାଣ ପୂର୍ଣ୍ଣ ଅଂଶଧନ ସଙ୍ଗେ ସମାନ ଥିଲା ଓ ଏହା କେବେ କ୍ଷତିରେ ଚଲୁ ନ ଥିଲା । ତେଣୁ କମ୍ପାନୀର ମାଲିକ ୰ ନର୍ବେରାମ ଯୋଶୀଙ୍କ ସୁପରିଚ୍ଚଳନାର ବେଶ୍ ପ୍ରସିଦ୍ଧି ଓ ସୁନାମ ଥିଲା । ତେଣୁ ସେ କମ୍ପାନୀର ଅଂଶଧନ କିଣିବାକୁ ଲୋକେ ଆଗ୍ରହୀ ଥିଲେ । ଉକ୍ତ ମହାଶୟଙ୍କ ସମୟରେ ପ୍ରାୟ ୫୦ଟାରୁ ଅଧିକ ବସ୍ କମ୍ପାନୀର ଅଧୀନରେ ଚଳପ୍ରଚଳନ କରୁଥିଲା ଓ ତାର ମୁଖ୍ୟ କାର୍ଯ୍ୟାଳୟ ବରଗଡ଼ରେ ଥିଲା । ସେ ମହାଶୟ ପ୍ରାତଃ ୩ଟାରୁ ଉଠି ପ୍ରାୟ ୪ଟା ବା ସାଢ଼େ ୪ଟା ସମୟରେ ବସ୍ ଷ୍ଟେଣ୍ଡରେ ହାଜର ହୋଇ ଯାଉଥିଲେ । ବସ୍ ଷ୍ଟେଣ୍ଡଟି ସେତେବେଳେ ଜେଲ୍ ପଡ଼ିଆରେ ଥିଲା ଓ ପରେ ପୋଲିସ ଥାନା ନିକଟରେ ଷ୍ଟେଣ୍ଡ ଥିଲା ଓ ଶେଷରେ ସରକାରୀ ହେବା ପରେ ମଧ୍ୟ ସେଠାରେ ବସ୍‌ଗୁଡ଼ିକ ରହୁଥିଲା । ଏବେ ଟ୍ରେନିଂ ସ୍କୁଲ ନିକଟରେ ସରକାରୀ ବସ୍ ନିଜ ଷ୍ଟେଣ୍ଡରେ ରହି ଯାତାୟାତ କରୁଛି ।

ଇତି ମଧ୍ୟରେ ଗାଡ଼ି ଛାଡ଼ିବା ସମୟ ହୋଇ ଯାଇଥିଲା ଓ ଯିବାକୁ ଥିବା ଯାତ୍ରୀମାନେ ପ୍ରାୟ ସମସ୍ତେ ପହଞ୍ଚି ନିଜ ନିଜ ସ୍ଥାନ ଅଧିକାର କରି ବସିଥିଲେ ।

ମୋର ନିର୍ଦ୍ଦିଷ୍ଟ କୋଠରୀର ମୋର ସ୍ଥାନକୁ ଯିବାକୁ ଉଦ୍ୟତ ହେବା ବେଳେ ସେହି କୋଠରୀରେ ଆଉ ୩/୪ ଜଣ ବସିଥିଲେ । ମୁଁ ସେଠାରେ ବସିବାକୁ ଜଣାଇବାରୁ ସେମାନେ ମୋତେ ଗୋଟିଏ ବସିବା ସ୍ଥାନ ଦେଇ ଅନ୍ୟମାନେ ବାକୀ ସ୍ଥାନକୁ ଅଧିକାର କରିଦେଲେ । ମୋର ନିକଟରେ ଏକ ସୁନ୍ଦର ସ୍ୱାସ୍ଥ୍ୟବାନ ଓ ଆଧୁନିକ ରୁଚିସମ୍ପନ୍ନ ପୋଷାକ ପରିଧାନ କରିଥିବା ଏକ ଗୋରା ବର୍ଣ୍ଣର ଯୁବକ ବସିଥିଲେ । ତାଙ୍କ ବୟସ ଅନ୍ଦାଜ ୨୦/୨୨ ହେବ । ଗାଡ଼ି ଚ୍ଛଳିବା ପୂର୍ବରୁ ବସ୍‌ର କଣ୍ଡକ୍ଟର ଯଥାଯଥ ପରୀକ୍ଷା ନିରୀକ୍ଷା କରି ଗାଡ଼ି ଚ୍ଛଳିବା ପାଇଁ ନିର୍ଦ୍ଦେଶ ଦେଲେ । ଡ୍ରାଇଭର ଗାଡ଼ି ଚଳାଇବା ଆରମ୍ଭ କରି କଟକ ମୁଖେ ଗାଡ଼ି ଚ୍ଛଳିଲା । କଚେରୀ, ଜେଲ୍ ରୋଡ ଓ ଧନୁପାଲି ପାର ହୋଇ ସମ୍ବଲପୁର କଟକ ରାସ୍ତାରେ ଧାଇଁଲା । ଏତେବେଳେ ସକାଳ ପ୍ରାୟ ୭ଟା ପାର ହୋଇଛି । ଡ୍ରାଇଭର ବୋଧ ହୁଏ କୃତ୍ତଚନ୍ଦ୍ର ମିଶ୍ର, ଏକ ଅଭିଜ୍ଞ ଡ୍ରାଇଭର ଓ ଏପଟ ରାସ୍ତା ଉପରେ ବେଶ ପରିଚିତ ଓ ଅଭ୍ୟସ୍ତ ମଧ୍ୟ । ତେଣୁ ଗାଡ଼ି ଚଳାଇବାର ଗତି ଓ ନୂତନ ରାସ୍ତାର ଦର୍ଶନରେ ମୁଁ ନିଜକୁ ହଜାଇ ଦେଇ ପାର୍ଶ୍ୱ ଦୃଶ୍ୟ ଦେଖି ଅଭିଭୂତ ହେଲି । ମଝିରେ ମୁଣ୍ଡେର ପାର ହୋଇ ଘନ ଜଙ୍ଗଲି ବାଟରେ ଗାଡ଼ି ତାର ଗନ୍ତବ୍ୟ ପଥରେ ଆଗେଇଲା । ମୁଁ କଥା ପ୍ରସଙ୍ଗରେ ଉପରୋକ୍ତ ନୂତନ ବନ୍ଧୁଙ୍କ ସଙ୍ଗେ ବାକ୍ୟାଳାପରୁ ସଂଗ୍ରହ କଲି ଯେ ସେମାନେ ମଧ୍ୟ କଟକ ଯାତ୍ରୀ ଓ ସେ ନିଜେ ଓଡ଼ିଶା ବାହାରେ ଏମ୍.ଏ. ଓ ଏଲ୍.ଏଲ୍.ବି. ପଢୁଛନ୍ତି । ସେ ହେଉଛନ୍ତି ସ୍ୱନାମଧନ୍ୟ ସ୍ୱାଧୀନତା ସଂଗ୍ରାମୀ ଓ ଗୋପବନ୍ଧୁଙ୍କ ଆଦର୍ଶାନୁପ୍ରାଣିତ ତତ୍କାଳୀନ ଉଚ୍ଚ ଶିକ୍ଷିତ ପ୍ରଖ୍ୟାତନାମା ଗୋଦାବରୀଶ ମିଶ୍ରଙ୍କ କନିଷ୍ଠ ପୁତ୍ର ରଙ୍ଗନାଥ ମିଶ୍ର । ସେତେବେଳେ କିଏ ଜାଣିଥିଲା ଯେ ସେହି ଦିନର ଏହି ଅକିଞ୍ଚନର ସହଯାତ୍ରୀ ଦିନେ ଓଡ଼ିଶା ତଥା ଭାରତର ଶ୍ରେଷ୍ଠତମ ନ୍ୟାୟାଧୀଶ ରୂପେ ପ୍ରତିଷ୍ଠିତ ହୋଇ ସାରା ପୃଥିବୀ ପ୍ରସିଦ୍ଧ ମାନବ ଅଧିକାର କମିଶନର ସଭାପତି ରୂପେ କାର୍ଯ୍ୟ କରିବେ । ଏବେ ସେ ରାଜ୍ୟସଭା ସଦସ୍ୟ ଅଛନ୍ତି ।

ଯିବା ବାଟରେ ମୋତେ ତାଙ୍କ ସାଙ୍ଗରେ ଏକାଧିକବାର ଅନୁରୋଧ କରି ତାଙ୍କ ଖାଇବା ଜିନିଷରୁ ଭାଗ ଦେଇଛନ୍ତି ଓ ଖାଇବା ଉଦ୍ଦେଶ୍ୟରେ କଦଳୀ ଦେଖାଇ 'Have one' ବୋଲି କହିବାରୁ ମୁଁ ତାର ଉଦ୍ଦେଶ୍ୟ ବୁଝି ନ ପାରି ତୁନି ରହିବାରୁ ଜୋର କରି ମୋତେ ଗୋଟିଏ କଦଳୀ ବଢ଼ାଇ ଦେଇ ନିଜେ କଦଳୀଟିଏ ଖାଇବାକୁ ଲାଗିଲେ । ତା'ପରେ ମୁଁ ଟିକିଏ ଅପେକ୍ଷା କରି 'ଖାଆନ୍ତୁ' କହିଲା ପରେ କଦଳୀଟି ଖାଇଲି । ତା'ପରେ ବୁଝିପାରିଲି 'Have one'ର ଅର୍ଥ କ'ଣ ? ତା'ପରେ ବାଟରେ  ଅନେକ କଥାବାର୍ତ୍ତା ହେଲା ଓ ଜାଣିଲି ଯେ ଉଚ୍ଚ ଶିକ୍ଷା, ବଡ଼ ଲୋକର

ପୁଅ ହୋଇ ମଧ୍ୟ ତାଙ୍କ ବ୍ୟବହାର କେତେ ଭଦ୍ରଶୀଳ ଓ ସେ କେତେ ସଦ୍‌ଗୁଣର ଅଧିକାରୀ । ଏସବୁରୁ ତାଙ୍କ ଉଜ୍ଜ୍ୱଳ ଭବିଷ୍ୟତର ସୂଚନା ଦେଉଥିଲା । ଦିନ ୧୨ଟା ପରେ ବସ୍ ବାଟରେ ରେଢ଼ାଖୋଲ, ବାମୁର, ଛେଣ୍ଡିପଦା ପାର ହୋଇ ଅନୁଗୁଳରେ ପହଞ୍ଚିଲା । ସେଠାରେ କଣ୍ଡକ୍ଟର ଜଣାଇଲେ ଯେ ବସ୍‌ଟି କିଛି ସମୟ ରହିବ ଓ ଯାତ୍ରୀମାନେ ନିଜ ନିଜର ଭୋଜନ/ଜଳଖିଆ ଆଦି ସାରି ଦିଅନ୍ତୁ । ପରେ ଗାଡ଼ି ଛାଡ଼ିବ । ସେତେବେଳର ଅନୁଗୁଳ ଓ ଆଜିର ଅନୁଗୁଳ ମଧ୍ୟରେ ଅନେକ ପ୍ରଭେଦ । ବସ୍ ଷ୍ଟେଣ୍ଡରେ କେତେକ ଝୁପୁଡ଼ି ଥାଏ ଓ ସେଠାରେ ଖାଦ୍ୟପେୟ ଯୋଗାଇ ତତ୍କାଳୀନ ହୋଟେଲ ବୋଲି ପରିଚିତ । ମୋର ସହଯାତ୍ରୀ ଦଳ ବୋଧ ହୁଏ ସାଙ୍ଗରେ ନେଇଥିବା ଜଳଖିଆ ଖାଇଲେ ଓ ମୋତେ ଯାଚିବାରୁ ମୁଁ ଅତି ସନ୍ତର୍ପଣରେ ଖସିଯାଇ ହୋଟେଲରୁ ଭୋଜନ କରି ଦୁଇ ଅଣା ବା ଦୁଇ ଅଣା ଛଅ ପାହୁଲା ଦେବାକୁ ପଡ଼ିଥିଲା । ସମସ୍ତ ଯାତ୍ରୀ ଖାଇସାରି ବସ୍‌ରେ ବସିବାରୁ ଗାଡ଼ି ପ୍ରାୟ ୨ଟାରେ ମେରାମଣ୍ଡଳୀ ଅଭିମୁଖେ ଗତି କରିବାକୁ ଲାଗିଲା । ଆମେ ପ୍ରାୟ ୩ଟା ବେଳେ ମେରାମଣ୍ଡଳୀରେ ପହଞ୍ଚିଲୁଁ । ଏହା ସେବେଳର ଏକ ପ୍ରସିଦ୍ଧ ରେଳ ଷ୍ଟେସନ ଓ ଜଙ୍କସନ । କାରଣ କଟକ, ଭୁବନେଶ୍ୱରକୁ ଯିବାକୁ ହେଲେ ଏହି ଷ୍ଟେସନ୍‌ଠାରୁ ହିଁ ଟ୍ରେନ୍ ଧରିବାକୁ ପଡୁଥିଲା ଓ ଏହି ଟ୍ରେନ୍‌ଟି ଦିନରେ ଥରେ ଆସେ ପୁରୀରୁ ଓ ତାଳଚେର ପର୍ଯ୍ୟନ୍ତ ଯାଏ, ପୁଣି ଅପରାହ୍ଣରେ ସେଠାରୁ ପୁଣି ପୁରୀ ଅଭିମୁଖେ ଯାଏ । ସେ ଗାଡ଼ିଟି ମେରାମଣ୍ଡଳୀରେ ପ୍ରାୟ ସାଢ଼େ ୩ରୁ ୪ଟା ମଧ୍ୟରେ ପହଞ୍ଚେ ଓ ସେଠାରୁ ଯାତ୍ରୀ ନେଇ ପୁରୀ ଅଭିମୁଖେ ଗମନ କରେ । ମୁଁ ମିଶ୍ର ପରିବାର ସଙ୍ଗେ ସହଯାତ୍ରୀ ଥିବାରୁ ଉକ୍ତ ମିଶ୍ର ମହାଶୟ ମୋ ପାଇଁ ଟିକଟ କରି ଗାଡ଼ି ଆସିଲା ପରେ କୁଲି ଲଗାଇ ବାକ୍ସ ବିଛଣାଦି ସବୁ ଟ୍ରେନ୍‌କୁ ଉଠାଇ ସ୍ଥାନ ସଂରକ୍ଷଣ କରି ମୋତେ ଡାକି ମୋର ବସିବା ସ୍ଥାନଟିକୁ ଦେଖାଇ ଦେଲେ । ଟ୍ରେନ୍‌ରେ ବସିବା ପରେ ଗାଡ଼ିଟି ଗନ୍ତବ୍ୟ ପଥରେ ଗତି କରି ବାଟରେ ବିଭିନ୍ନ ଷ୍ଟେସନ୍‌ରେ ରହି ରହି ଗଲା-ଓ ସନ୍ଧ୍ୟା ହେଲା ଗଡ଼ ଢେଙ୍କାନାଳ ଷ୍ଟେସନ୍‌ରେ । ଏ ଷ୍ଟେସନ୍‌ର ବିଶେଷତ୍ୱ ହେଲା ଏଠାରେ ସ୍ୱର୍ଣ୍ଣଚମ୍ପା ଓ ବଉଳ ଫୁଲର ମାଳାଦି ସୁଲଭ ମୂଲ୍ୟରେ ବିକ୍ରି ହେଉଥାଏ । ତତ୍ ସଙ୍ଗେ ବସିବା ପାଇଁ ହନୁମାନ ଚଉକି (ମୋଡ଼ା) ଓ ବାଉଁଶ ପଙ୍ଖା ମଧ୍ୟ ମିଳେ । ଯାତ୍ରୀମାନେ ନିଜ ନିଜର ସଉକ ଅନୁସାରେ କିଣନ୍ତି । ସେଠାରେ ଟ୍ରେନ ଇଂଜିନରେ ପାଣି ଭର୍ତ୍ତି କରିବାରୁ କିଛି ସମୟ ପାଇଁ ଅଟକି ଯାଏ । ସେତେବେଳେ ଯାତ୍ରୀମାନେ ନିଜର ରୁଚି ଅନୁଯାୟୀ ଜଳଖିଆଦି କରନ୍ତି । ଏଠାକାର ବିରିବରା ଓଡ଼ିଶା ବିଖ୍ୟାତ ଓ ଆକାରରେ ବଡ଼ ବଡ଼ । ତେଣୁ ପ୍ରଥମ ହୋଇ ତାକୁ

ବଡ଼ା ଦେଖିଲେ ଲୋଭ ସମ୍ଭରଣ କରି ହୁଏ ନାହିଁ ଓ ଉଦରସ୍ଥ କରିବା ପାଇଁ ଅତି ଆଗ୍ରହ କଲେ । ଆମେ ସମସ୍ତେ କିଛି ଜଳଖିଆ କରି ପୁଣି ଗାଡ଼ିରେ ବସିଲୁ । ବାଟରେ ଅନ୍ୟାନ୍ୟ ଷ୍ଟେସନ ଅତିକ୍ରମ କରି ନିର୍ଗୁଣ୍ଡି ଷ୍ଟେସନରେ ଗାଡ଼ିଟି ଅଟକି ଗଲା । କାରଣ ଏହା ଏକ ଭିଡ଼ ଜଙ୍କ୍‌ସନ୍ ଓ ଏହି ବାଟେ ଦକ୍ଷିଣରୁ ଉତ୍ତରକୁ ଅର୍ଥାତ୍ କଲିକତା ଯିବା ପାଇଁ ପୁରୀ ଓ ମାନ୍ଦ୍ରାଜ ଅଞ୍ଚଳରୁ ଅନେକ ଦ୍ରୁତଗାମୀ ଗାଡ଼ିକୁ ବାଟ ଦେବାକୁ ହୁଏ । ତେଣୁ ସେ ଗାଡ଼ି ଗୁଡ଼ିକ ସେ ବାଟେ ଅତିକ୍ରମ କଲା ପରେ ଏ ଗାଡ଼ିକୁ ଯିବାକୁ ସୂଚନା ମିଳେ । କାରଣ ଏହା ଏକ ଯାତ୍ରୀବାହୀ ଗାଡ଼ି । ଆମେ ମଧ୍ୟ ପ୍ରାୟ ୧୫/ ୨୦ ମିନିଟ୍ ଅପେକ୍ଷା କଲା ପରେ ଗାଡ଼ି ଯିବାର ସଙ୍କେତ ମିଳିଲା ଓ କଟକ ଅଭିମୁଖେ ଚାଲିଲା । ବାଟରେ ଜଗତପୁର ଆଜିକାର କେନ୍ଦ୍ରାପଡ଼ା ରୋଡ ରେଳ ଷ୍ଟେସନ ପାର ହୋଇଲେ ମହାନଦୀର ଏକ ଦୀର୍ଘତମ ପୋଲ ଅତିକ୍ରମ କଲେ କଟକ ଷ୍ଟେସନ ପଡ଼ିବ । ସେଠାରୁ କଟକର ସୁଉଚ୍ଚ ଆଲୋକ ସ୍ତମ୍ଭ ସ୍ପଷ୍ଟ ପରିଦୃଷ୍ଟ ହୋଇ କଟକ ଆଗମନୀର ପୂର୍ବାଭାସ ଜଣାଇ ଦିଏ । ତେଣୁ ଆମ ଗାଡ଼ି ମଧ୍ୟ କଟକ ଷ୍ଟେସନରେ ପହଞ୍ଚିଲା ବେଳକୁ ପ୍ରାୟ ଘ ୭/ ୧୫ ହୋଇ ଯାଇଥାଏ । ଆଗରୁ ଖବର ପାଇ ମିଶ୍ର ପରିବାରର ଆଗନ୍ତୁକମାନଙ୍କୁ ନେବା ପାଇଁ ତାଙ୍କ ନିଜ ଗାଡ଼ିମାନ ଆସିବା କଥା । କିନ୍ତୁ ଷ୍ଟେସନରେ ପହଞ୍ଚିଲା ପରେ ତାଙ୍କ ଗାଡ଼ିଚାଳକ ପହଞ୍ଚି ଜଣାଇଲେ ଯେ ଗାଡ଼ିର କ'ଣ ଅସୁବିଧା ହେତୁ ଗାଡ଼ି ଆସି ନାହିଁ । ଏଣୁ ରିକ୍ସା ବା ଘୋଡ଼ାଗାଡ଼ିରେ ଯିବାକୁ ହେବ । ଏଣୁ ଜିନିଷପତ୍ରାଦି ଷ୍ଟେସନରୁ ନେବା ପାଇଁ କୁଲି ଓ ସେ ଗାଡ଼ିଚାଳକ ମହାଶୟଙ୍କ ସହାୟତାରେ ପ୍ଲେଟ୍‌ଫାର୍ମ ବାହାରକୁ ଆସି ଏକ ଘୋଡ଼ାଗାଡ଼ି ଯୋଗାଡ଼ କରାଗଲା । ମୁଁ କୌଣସି ଏକ ରିକ୍ସାରେ ରେଭେନ୍ସା କଲେଜ ହଷ୍ଟେଲ୍‌କୁ ଚାଲି ଯିବାର ଉଦ୍ଦେଶ୍ୟ ଜଣାଇବାରୁ ମିଶ୍ର ମହାଶୟ ସ୍ୱତଃ ପ୍ରବୃତ୍ତ ହୋଇ ମୋତେ ଘୋଡ଼ାଗାଡ଼ିରେ ନେଇ ଇଷ୍ଟ ହଷ୍ଟେଲ୍ ଗେଟ୍‌ରେ ଛାଡ଼ି ଦେଲେ । ସେଠାରୁ ମୁଁ ବିଦାୟ ନେବା ବେଳେ କୃତଜ୍ଞତା ଜଣାଇ ମୋର ପିଛାରେ କେତେ ଖର୍ଚ୍ଚ ହୋଇଛି ବୋଲି ପଚାରିବାରୁ ସେ ପ୍ରଥମେ ଅମଙ୍ଗ ହୋଇ କିଛି ପ୍ରକାଶ କରିବାକୁ କୁଣ୍ଠାବୋଧ କରୁଥିଲେ । କିନ୍ତୁ ମୁଁ ଅତି ବାଧ କରିବାରୁ କେବଳ ଟ୍ରେନ୍ ଭଡ଼ାଟା ଟ୧ ଦୁଇ ଅଣା ମାତ୍ର ଦେବାର ସୂଚନା ଦେଲେ, କିନ୍ତୁ ମୁଁ ଆଉ କିଛି ଦେବାକୁ ଚାହିଁବାରୁ ସେ ଆଦୌ ରାଜି ହେଲେ ନାହିଁ । ଆହା ! କି ମହାନ୍ ବ୍ୟକ୍ତିତ୍ୱ ସତେ ! 'ତୁଳସୀ ଦୁଇ ପତ୍ରରୁ ବାସେ' ଭଳି ତାଙ୍କ ଉଦାରତା ତଥା ବଦାନ୍ୟତା ସେତେବେଳରୁ ହିଁ ଜଣା ପଡୁଥିଲା ।

ସେମାନେ ଗଲା ପରେ ମୁଁ ହଷ୍ଟେଲ୍ ଭିତରକୁ ଯାଇ ବାଟ କୋଠରୀରେ ଅଟକି କେଉଁଠାରେ ରହିବି, କିପରି ରହିବି ଭାବୁଛି, ଠିକ୍ ଏତିକିବେଳେ ଆମ

ସମ୍ବଲପୁରରୁ ପାସ୍ କରି ଆସିଥିବା ଜଣେ ଚିହ୍ନା ବ୍ୟକ୍ତି, ଅଭିରାମ ପଟ୍ଟନାୟକଙ୍କୁ ଦେଖି ସାହସ କରି ପଚାରିଲି, 'ଆଜ୍ଞା ! ଆପଣ କେଉଁଠି ରହୁଛନ୍ତି ?' ସେ କହିଲେ, "ମୁଁ Single Roomରେ ରହେ। ଆପଣ ଯେ କୌଣସି ଖାଲି ଥିବା କୋଠରୀରେ ରହି ଯାଆନ୍ତୁ, ପରେ ସୁବିଧା କରି ଅନ୍ୟତ୍ର ଚାଲିଯିବେ।"ତେଣୁ ମୁଁ Common Roomର ଉତ୍ତର ଭାଗକୁ ଥିବା ୨୪ ନମ୍ବର କୋଠରୀଟି ଖାଲିଥିବା ଦେଖି ସେଠି ରହିବାର ମନସ୍ଥ କରି ସେଠାରେ ରହିଲି। ପରେ ଗାଧୁଆ ପାଧୁଆ କରି ବୋଧ ହୁଏ ହଷ୍ଟେଲ୍ ବାହାରେ ମାଡ୍ରାସୀ ହୋଟେଲରୁ ଖାଇ ଆସି ଶୋଇଲି। ସେଦିନ ରାତିରେ ହଷ୍ଟେଲ୍ ମେସ୍‌ର ମେନେଜର ଓ ପୂଝାରୀ ଆସି ପରଦିନ ମେସ୍‌ରେ ଖାଇବା ପାଇଁ ବନ୍ଦୋବସ୍ତ ହେବାର ସୂଚନା ଦେଇ ନାମ ଓ ଠିକଣା ଓ କେଉଁ ବର୍ଷର ଛାତ୍ର ରୂପେ ସବୁ ଟିପି ନେଲେ। ସେଦିନ ରାତ୍ରି ବିଶ୍ରାମ କରି ସକାଳୁ ଉଠି ନିତ୍ୟକର୍ମ ଶେଷ କରି ଜଳଖିଆ ପାଇଁ ବାହାରକୁ ଗଲି ଓ ଶୀଘ୍ର ଫେରି ଆସିଲି। ହଷ୍ଟେଲ୍‌ରେ ଏପଟ ସେପଟ ହେବା ଅବସରରେ ଆମ ସମ୍ବଲପୁରର କେତେକ ଉଚ୍ଚ ଶ୍ରେଣୀର ପରିଚିତ ବନ୍ଧୁ ଯଥା ତ୍ରିଲୋଚନ ମେହେର ୪ର୍ଥ ବାର୍ଷିକ କଳା ଛାତ୍ର ଥିଲେ ଓ ତାଙ୍କ ସହ ଦେଖା ହେଲା। ପୁଣି ୩ୟ ବର୍ଷ ଛାତ୍ର ହିସାବରେ ଯୋଗ ଦେବା ପାଇଁ ପୂର୍ବ ପରିଚିତ ପଠନ ସାଥୀ ସୂର୍ଯ୍ୟ ପ୍ରସାଦ ପଣ୍ଡା, ଶାଳଗ୍ରାମ ପାଢ଼ୀ, ଗୋବିନ୍ଦ ମିଶ୍ର, ଭାବଗ୍ରାହୀ ମହାପାତ୍ର, ସଚ୍ଚିଦାନନ୍ଦ ବେହେରା ଆଦିଙ୍କ ସଙ୍ଗେ ସାକ୍ଷାତ ହେଲା। ସମସ୍ତେ ଠିକ୍ ସମୟରେ ଖାଦ୍ୟପେୟ ସାରି କଲେଜ ଅଭିମୁଖେ ଚାଲିଲୁଁ। ଏମାନଙ୍କ ମଧ୍ୟରୁ କେତେକ ତାଙ୍କ ଇଚ୍ଛାନୁଯାୟୀ ଅନର୍ସ ସହ ନାମ ଲେଖାଇବାର ଅନୁମତି ପାଇଥିଲେ। କିନ୍ତୁ ମୋତେ କେବଳ ପାସ୍ B.Sc.ରେ ନାମ ଲେଖାଇବା ପାଇଁ ନିର୍ଦ୍ଦେଶ ଥିଲା। ଯାହା ହେଉ କୌଣସି ରକମରେ ଏକ ସ୍ଥାନ ମିଳିଛି, ଏଣୁ ନାମ ଲେଖାଇବା ପାଇଁ ସମସ୍ତେ ପରାମର୍ଶ ଦେଲେ। କିନ୍ତୁ ଆଉ ଏକ ଅସୁବିଧା ଥିଲା ଯେ ମୁଁ ହଷ୍ଟେଲ୍‌ରେ ରହିବା ପାଇଁ ଆଦେଶ ପାଇ ନାହିଁ। ପରବର୍ତ୍ତୀ ସମୟରେ ହୁଏତ ହଷ୍ଟେଲ୍‌ରେ ଜାଗା ମିଳିବ ଏହି ଆଶା ନେଇ ନାମ ଲେଖାଇବାକୁ ହେଲା। ପରେ ପ୍ରିନ୍ସିପାଲଙ୍କୁ ଦେଖା କରି ହଷ୍ଟେଲ୍‌ରେ ସ୍ଥାନଟିଏ ଦେବା ପାଇଁ ଅନୁରୋଧ ଜଣାଇବାର ଉତ୍ସାହ ମିଳିଲା। ନାମ ଲେଖା ବେଳେ ବିଜ୍ଞାନ ଛାତ୍ର ହିସାବରେ ପଦାର୍ଥ ବିଜ୍ଞାନ ଓ ରସାୟନ ବିଜ୍ଞାନ ପାଇଁ କିଛି ମୁଦ୍ରା (Caution Money) ଜମା କରିବାକୁ ପଡୁଥିଲା ଓ ପରେ ତାହା ଫେରସ୍ତ ମିଳୁଥିଲା। ସେତେବେଳେ ସମ୍ବଲପୁରର ଆଉ ଏକ ସହପାଠୀ, ବିଷ୍ଣୁ ପ୍ରସାଦ ମିଶ୍ର ଯାଇ ନାମ ଲେଖାଇଲେ। ତାଙ୍କ ପିତା ସ୍ୱନାମଧନ୍ୟ ଅବସରପ୍ରାପ୍ତ ଡେପୁଟୀ

କଲେଜ୍‌ର ୰ ଭାରତ ଚନ୍ଦ୍ର ନାଏକ ମଧ ତାଙ୍କ ସଙ୍ଗେ ଯାଇଥିଲେ। ଆମ୍ଭେମାନେ ସମସ୍ତେ ମିଶି ତାଙ୍କୁ ଅନୁରୋଧ କଲାରୁ ସେ ଯାଇ ତତ୍କାଳୀନ ପ୍ରିନ୍ସିପାଲ ଶ୍ରୀଯୁକ୍ତ ଏସ୍. ରାଏଙ୍କୁ ଦେଖା କରି ସମ୍ବଲପୁର ପିଲାଙ୍କୁ ହଷ୍ଟେଲ୍‌ରେ ଜାଗା ଦେବା ପାଇଁ ଅନୁରୋଧ ଜଣାଇଲେ। କାରଣ ସମ୍ବଲପୁରିଆ ଛାତ୍ରମାନେ ଦୂରରୁ ଆସି ବାହାରେ ମେସ୍ କରି ବା ଭଡ଼ା ଦେଇ ଖର୍ଚ୍ଚାନ୍ତ ହେଲେ ଉଚ୍ଚ ଶିକ୍ଷାରେ ବ୍ୟାଘାତ ହେବ। ତେଣୁ ତାଙ୍କ ପ୍ରତି ସ୍ୱତନ୍ତ୍ର ଦୃଷ୍ଟି ଦେଇ ବିଚାର କରିବାକୁ ସବିଶେଷ ଅନୁରୋଧ କରିଥିଲେ। ଫଳରେ ପରବର୍ତ୍ତୀ ସମୟରେ ମୁଁ ଶେଷ ମୁହୂର୍ତ୍ତରେ ପଶ୍ଚିମ ଛାତ୍ରାବାସ West Hostelରେ ଏକ ସ୍ଥାନ ପାଇବାର ଆଦେଶ ମିଳିଲା। ଭାଗ୍ୟକୁ ସେତେବେଳେ ଆଗରୁ ଆମ ଅଞ୍ଚଳରୁ ଆସିଥିବା ଜନୈକ ବନ୍ଧୁ କୈଳାସ ନାରାୟଣ ତିଓ୍ୟାରୀ West Hostelରେ ରହୁଥିଲେ। କିନ୍ତୁ ତାଙ୍କୁ East Hostelରେ ଜାଗା ମିଳିବାର ଆଦେଶନାମା ବାହାରିଲା। ସେ ସେହି West Hostelରେ ରହିବାର ଇଚ୍ଛୁକ ଥିବାରୁ ଓ ମୁଁ East Hostel ଆଗରୁ ଆସି ରହିଥିବାରୁ ଆମେ ଉଭୟେ ଛାତ୍ରାବାସ ପରିବର୍ତ୍ତନ ପାଇଁ ଦରଖାସ୍ତ କଲୁ। ତାହା ଅକ୍ଳେଶରେ ମଞ୍ଜୁରି ପାଇଲା ଓ ଆମେ ଯେ ଯାହାର ସ୍ଥାନରେ ରହିବାକୁ ରହିବାକୁ ସୁବିଧା ପାଇଲୁଁ।

ଛାତ୍ରମାନଙ୍କ ନାମଲେଖା ସରିବା ପରେ ଏକ ନିର୍ଦ୍ଧାରିତ ଦିନରୁ ବୋଧ ହୁଏ ୨ୟ ସପ୍ତାହ ପରେ ନିୟମିତ ଶ୍ରେଣୀ ଆରମ୍ଭ ହେବାର ଆଦେଶନାମା ଓ Routine ବାହାରିଲା। ତେଣୁ ସେ ଦିନ ପର୍ଯ୍ୟନ୍ତ କେବଳ ଆମେ ହଷ୍ଟେଲ୍‌ରେ ରହି ଖାଇବା ଓ ଶୋଇବା ଛଡ଼ା ବାକୀ ସମୟ ବୁଲାଚଲା, ଖେଳରେ, ଖବରକାଗଜ ପଢ଼ାରେ ବ୍ୟୟିତ ହେଉଥିଲା। ତେଣୁ ଏଠାରେ କଲେଜ ଛାତ୍ରାବାସ, ଅବସ୍ଥାନ ପାଠପଢ଼ା ଜୀବନଯାପନ ଓ ନିୟମାବଳୀ ସମ୍ବନ୍ଧରେ ସୂଚନା ଦେବା ଆବଶ୍ୟକ ମନେ ହୁଏ।

ବିହାର ଓଡ଼ିଶା ପ୍ରଦେଶର ତତ୍କାଳୀନ କମିଶନର ରେଭେନ୍ସା ସାହେବଙ୍କ ଦ୍ୱାରା ପ୍ରତିଷ୍ଠିତ ରେଭେନ୍ସା କଲେଜ ସେବେଳର କଲେଜମାନଙ୍କ ମଧ୍ୟରେ ଓଡ଼ିଶା କାହିଁକି ସାରା ଭାରତର ସୁଖ୍ୟାତି ଅର୍ଜନ କରିଥିଲା। କାରଣ ତା'ର ଛାତ୍ର, ଶିକ୍ଷକ ଓ ଅଧ୍ୟକ୍ଷ ଭାବରେ ପ୍ରସିଦ୍ଧି ଲାଭ କରିଥିବା ଶିକ୍ଷାବିତ୍, ବୈଜ୍ଞାନିକମାନଙ୍କ ମଧ୍ୟରେ ଡା. ପ୍ରାଣକୃଷ୍ଣ ପରିଜା, ଡା. ପର୍ଶୁରାମ ମିଶ୍ର, ଡା. ତ୍ରିବିକ୍ରମ ପତି, ଶ୍ରୀ ଘନଶ୍ୟାମ ଦାଶ, ଶ୍ରୀ ଗୋଲକ ବିହାରୀ ବେନେର୍ଜି ଓ ଶ୍ରୀ ଶ୍ୟାମ ଚରଣ ତ୍ରିପାଠୀ ଆଦି ଅନ୍ୟତମ। ତେଣୁ ସେହି କଲେଜ ଛାତ୍ରାବାସରେ ରହି କଲେଜରେ ଅଧ୍ୟୟନ କରିବା ଏକ ପରମ ସୌଭାଗ୍ୟ ବୋଲି ମନେ ହୁଏ।

କଲେଜରେ ପାଠପଢ଼ା ସକାଳ ୭ଟାରୁ ଆରମ୍ଭ ହୋଇ ସନ୍ଧ୍ୟା ସାଢ଼େ ୪ଟା ପର୍ଯ୍ୟନ୍ତ ଚାଲୁଥିଲା । ଏବେ ନୈଶ ମହାବିଦ୍ୟାଳୟର ସୂତ୍ରପାତ ହେବା ପରେ ରାତ୍ର ୯ଟା ପର୍ଯ୍ୟନ୍ତ ମଧ ଶ୍ରେଣୀ ପଢ଼ା ଚାଲିଛି । ଏହି ସମୟ ମଧରେ କଳା ଓ ବିଜ୍ଞାନ ଶ୍ରେଣୀ ଗୁଡ଼ିକ ପ୍ରଥମ ବର୍ଷର ଆରମ୍ଭ ହୋଇ ୬ଷ୍ଠ ବର୍ଷୀୟ ପଢ଼ା ପର୍ଯ୍ୟନ୍ତ କାର୍ଯ୍ୟ ନିର୍ଘଣ୍ଟ ଚାଲେ । ତେଣୁ ଅନ୍ୟ ଭାଷାରେ କହିବାକୁ ଗଲେ ଦିବାଲୋକରୁ ଦୀପାଲୋକ ପର୍ଯ୍ୟନ୍ତ କଲେଜ ସର୍ବଦା ଜନଗହଳ ଓ ମୁଖରିତ ହୋଇ ଛାତ୍ରଛାତ୍ରୀ ଓ ଅଧାପକଗଣ ବାଣୀ ସାଧନାରେ ବ୍ରତୀ ହୋଇ, ନବନବ ଛାତ୍ରଛାତ୍ରୀ ଉତ୍ପାଦନ ସକାଶେ ମଣିଷ ଉତ୍ପାଦନ କେନ୍ଦ୍ରକୁ ସଦାବେଳେ ମୁଖରିତ କରିଥାଆନ୍ତି । ବିଜ୍ଞାନର କାହାର ବ୍ୟାବହାରିକ ଶିକ୍ଷା (Practical) ଶିକ୍ଷା ତ କାହାର ସାଧାରଣ ଶିକ୍ଷାଦାନ ଘଣ୍ଟା ଓ ମିନିଟ - କଣ୍ଟାର ଗତିର ତାଳେ ତାଳେ ଚାଲିଥାଏ । ତେଣୁ ଛାତ୍ରଛାତ୍ରୀମାନେ ଛାତ୍ରାବାସରୁ ବା ନିଜ ଘରୁ ଯଥା ସମୟରେ ଆସି ଠିକ୍ ଠିକ୍ ଶ୍ରେଣୀରେ ନିଜ ନିଜ ପାଠ ଆହରଣ କରି ଚାଲି ଯାଆନ୍ତି । ବିଶେଷ କରି ଦିନ ୧୦ଟା ରୁ ୧୧ଟା ଭିତରେ ସହରରେ ପାଠୁଆ ଛାତ୍ରମାନଙ୍କ ଆଗମନ ପାଇଁ ସାଇକଲର ଭିଡ଼ ଏତେ ପ୍ରବଳ ଥାଏ ଯେ ଅଭିଭାବକମାନେ ନିଜ ନିଜର ଛୋଟ ଶିଶୁମାନଙ୍କୁ ରାସ୍ତାକୁ ଛାଡ଼ିବାକୁ ପ୍ରମାଦ ଗଣନ୍ତି ଓ ବହୁ ଆକଟରେ ତଥା ସଜାଗରେ ରଖିଥାଆନ୍ତି । ଆମ ସମୟରେ କଲେଜ ଅଧକ୍ଷ ଶ୍ରୀଯୁକ୍ତ ଏସ୍. ରାୟ, ଗଣିତ ଅଧାପକ, ପ୍ରଫେସର ବାମାଚରଣ ଦାସ, ପଦାର୍ଥ ବିଜ୍ଞାନରେ, ପ୍ରଫେସର ନାରାୟଣ ମିଶ୍ର - ରସାୟନ ବିଦ୍ୟାରେ, ଡା. ବଳଭଦ୍ର ପ୍ରସାଦ - ଇଂରାଜୀରେ, P. S. Sundaram, V. V. John, ସଂସ୍କୃତରେ ରତ୍ନାକର ପତି, କୁଞ୍ଜବିହାରୀ ତ୍ରିପାଠୀ ଆଦି ମୁଖ୍ୟ ଓ ଅନ୍ୟମାନେ ଅନେକ ବିଭିନ୍ନ କକ୍ଷରେ ଶିକ୍ଷାଦାନରେ ରତ ଥିଲେ ।

ଏହି ମହାବିଦ୍ୟାଳୟର ଉଭୟ ପାର୍ଶ୍ୱରେ ପୂର୍ବ ଦିଗରେ ପୂର୍ବ ଛାତ୍ରାବାସ ଓ ପଶ୍ଚିମରେ ପଶ୍ଚିମ ଛାତ୍ରାବାସ ଦୁଇଟି ଥିଲା । ମଝିରେ ଏକ ବିରାଟ ସବୁଜ ଘାସ ପଡ଼ିଆ ଓ ମଝିରେ ସିମେଣ୍ଟ ତିଆରି ରାସ୍ତାରେ ଉଭୟ ଛାତ୍ରାବାସ ସଂଯୁକ୍ତ । ମହାବିଦ୍ୟାଳୟର ସମ୍ମୁଖରେ ଶ୍ରେଣୀଗୃହ, ଅଫିସ ଗୃହ, ଅଧକ୍ଷଙ୍କ କୋଠରୀ, ଅଧାପକଙ୍କ ବିଶ୍ରାମ ଗୃହ, ମହିଳା ଛାତ୍ରୀମାନଙ୍କ ବିଶ୍ରାମ ଗୃହ, ଅନ୍ୟ ପଟେ ଏକ ବିରାଟ କୋଠରୀ (Hall) ଯାହାକି ପ୍ରଥମେ ନୂତନ ପ୍ରଦେଶ ଗଠନ ହେବା ଦିନ ଠାରୁ ବିଧାନସଭା କକ୍ଷ ରୂପେ କାର୍ଯ୍ୟ କରୁଥିଲା । ପୂର୍ବ ଛାତ୍ରାବାସର ଉପର ମହଲା କେତେ କୋଠରୀ ସାମୟିକ ରୂପେ ଲ' କଲେଜ ଛାତ୍ରାବାସ ରୂପେ ବ୍ୟବହୃତ ହେଉଥିଲା । ସବୁଜ ପଡ଼ିଆର ଅପର ପ୍ରାନ୍ତରେ ଓଡ଼ିଶାର ସର୍ବବୃହତ ତତ୍କାଳୀନ

କନିକା ପାଠାଗାର, ମଝିରେ ଓ ଉଭୟ ପଟରେ ପଶ୍ଚିମ ଭାଗର ରସାୟନ ବିଜ୍ଞାନ ଶ୍ରେଣୀଗୃହ ପରୀକ୍ଷାଗାର ଓ ଅନ୍ୟ ପଟେ ପୂର୍ବ ଭାଗରେ ପଦାର୍ଥ ବିଜ୍ଞାନ ଶ୍ରେଣୀଗୃହ ଓ ପରୀକ୍ଷାଗାର ଅବସ୍ଥିତ । ରସାୟନ ବିଜ୍ଞାନ ଶ୍ରେଣୀଗୃହର ପଛ ପଟେ ଉଦ୍ଭିଦ ଓ ପ୍ରାଣୀ ବିଜ୍ଞାନ ଉଦ୍ୟାନ ଓ ଶ୍ରେଣୀଗୃହାଦି ସ୍ଥାନ ପାଇଥିଲା । ତା'ର ପଶ୍ଚିମକୁ ଖେଳପଡ଼ିଆ ଓ ତା'ର ଏକ ପାଖରେ ଅଧ୍ୟକ୍ଷଙ୍କ ନିବାସ ଥିଲା । ଏହା ଛଡ଼ା କଲେଜ ହତା ମଧ୍ୟରେ ଅନେକ ଅଧ୍ୟାପକଙ୍କ ନିବାସ ଓ ପୂର୍ବ ପଟରେ ଥିବା କୋଠା NCC ପାଇଁ କାର୍ଯ୍ୟାଳୟ ଓ ଅଫିସରଙ୍କ ନିବାସସ୍ଥଳୀ ପାଇଁ ଉଦ୍ଦିଷ୍ଟ ଥିଲା ।

ପଶ୍ଚିମ ପଟରେ ଅଫିସର ଘର ନିକଟରେ ବେତାର ଶିକ୍ଷା ପାଇଁ ଏକ ବିଜ୍ଞାନାଗାର ମଧ୍ୟ ଥିଲା । ମୋଟ ଉପରେ ଏହି କଲେଜରେ କଳା, ବିଜ୍ଞାନ ଓ ବ୍ୟାବହାରିକ ଶିକ୍ଷାଦାନ ପାଇଁ ପ୍ରଥମ ବର୍ଷରୁ ୬ଷ୍ଠ ବର୍ଷ ପର୍ଯ୍ୟନ୍ତ ଓ ପ୍ରାରମ୍ଭିକ ବେତାର ପ୍ରେରଣ ଶିକ୍ଷାଦାନ ପ୍ରଚଳିତ ଥିଲା । ଅବଶ୍ୟ ପରବର୍ତ୍ତୀ କାଳରେ ମାଷ୍ଟର ଡିଗ୍ରୀ ପରେ ଗବେଷଣା କରିବା ସୁବିଧା ମଧ୍ୟ ଏବେ ମିଳି ପାରୁଛି ।

ଛାତ୍ରାବାସରେ ରହି ଚଳିବା ପାଇଁ ଏକ ସୁଚିନ୍ତିତ ନିୟମ ପ୍ରଚଳିତ ଥିଲା । ପ୍ରତି କୋଠରୀରେ ପ୍ରଥମେ ଦୁଇ ଜଣ ଲେଖାଏଁ ରହୁଥିବାର ଶୁଣିଲୁଁ । ତାହା ପରେ ବୃଦ୍ଧି ପାଇ ୪ ଜଣ ପର୍ଯ୍ୟନ୍ତ ଯାଇଥିଲା । ଆମ ବର୍ଷ ଠାରୁ ଅର୍ଥାତ୍ ୧୯୪୬-୪୭ରୁ ପ୍ରତି କୋଠରୀରେ ୫ ଜଣ ରହିବାର ନିୟମ ହେଲା । କାରଣ ସେ ବର୍ଷ ଛାତ୍ରାବାସରେ ରହିବା ପାଇଁ ଚାହିଦା ବଢ଼ିବାକୁ ଲାଗିଲା । ଛୋଟ କୋଠରୀମାନଙ୍କରେ ଜଣେ ଲେଖାଏଁ ମେଧାବୀ ଛାତ୍ର ୨ୟ ଓ ୪ର୍ଥ ବାର୍ଷିକ ଛାତ୍ରମାନଙ୍କୁ ବାଛି ସୁବିଧା ଦିଆଯାଉଥିଲା ରହିବା ପାଇଁ ଓ ନିର୍ବିଘ୍ନରେ ପଢ଼ିବା ପାଇଁ । କେଡ଼େ ସୁଚିନ୍ତିତ ଯୋଜନା ନୁହେଁ କି ? ପ୍ରତି କୋଠରୀରେ ପ୍ରତି ଅନ୍ତେବାସୀଙ୍କ ପାଇଁ ଖଣ୍ଡେ ଖଟ, ଗୋଟିଏ ଲେଖାଏଁ ରେକ୍, ଟେବୁଲ ଓ ଚୌକି ଯୋଗାଇ ଦିଆଯାଉଥିଲା । କୋଠରୀଗୁଡ଼ିକରେ ବିଜୁଳି ଆଲୋକ ସଂଯୋଗ କରାଯାଇଥିଲା ! ଗାଧୋଇବା ପାଇଁ ପାଣି ପାଇପ୍ ଓ ପାଇଖାନାରେ ମଧ୍ୟ ପାଣିର ବ୍ୟବସ୍ଥା ଥିଲା । ଠିକ୍ ସକାଳ ୬ଟା ବେଳେ ପାଣି ଆସେ ଓ ପ୍ରାୟ ୧୦ଟା ବେଳକୁ ପାଣି ବନ୍ଦ ହୋଇଯାଏ । ପୁଣି ୪ଟା ବେଳେ ପାଣି ଆସି ସନ୍ଧ୍ୟା ୭ଟା ବେଳକୁ ପାଣି ବନ୍ଦ ହୁଏ । ଏଥିପାଇଁ କଲେଜ ତରଫରୁ ସ୍ୱତନ୍ତ୍ର ପାଣି ଟାଙ୍କି ଓ ବିଜୁଳି ଯୋଗାଣ ବ୍ୟବସ୍ଥା ଥିଲା । ବିଜୁଳି ୬ଟାରୁ ଆସି ୯ଟାରେ ଖିଆପିଆ ସରିବା ପରେ ପ୍ରାୟ ୧୧ଟାରେ ଆଲୁଅ ଯୋଗାଣ ବନ୍ଦ ହେଉଥିଲା । ଅବଶ୍ୟ ବାରଣ୍ଡା ଓ ପାଇଖାନା ତଥା ବାହାରେ ଆଲୁଅ ଥିବାରୁ କିଛି ଅସୁବିଧା ହେଉ ନ ଥିଲା ।

ପ୍ରତି ଛାତ୍ରାବାସର ଅନ୍ତେବାସୀଙ୍କ ପାଇଁ ପ୍ରାୟ ୪ଟି ମେସ୍‌ର ବନ୍ଦୋବସ୍ତ କରାଯାଇଥିଲା ଓ ତାଙ୍କୁ ଚଳାଇବା ପାଇଁ ଜଣେ ମେନେଜର ରହୁଥିଲେ। ଅବଶ୍ୟ ତାଙ୍କ କାର୍ଯ୍ୟ ସୁଗମ କରିବା ପାଇଁ ଏକ ମେସ୍ କମିଟି ଓ ମେସ୍ ସମ୍ପାଦକ ପିଲାଙ୍କ ମଧ୍ୟରୁ ବଛାଯାଉଥିଲେ।

ଛାତ୍ରାବାସର ସୁପରିଚାଳନା ପାଇଁ ୨ ଜଣ ଓ୍ୟାଡେନ୍/ସୁପରିନ୍ଟେଣ୍ଡେଣ୍ଟ ରହୁଥିଲେ। ତାଙ୍କ ଦ୍ୱାରା ଜଣେ ମନିଟର ବଛା ହେଉଥିଲେ। ସେ ଛାତ୍ରମାନଙ୍କ ସାମୟିକ ଅନୁପସ୍ଥିତି ପାଇଁ ଜିମା ରହୁଥିଲେ। ଛାତ୍ରାବାସ ଛାଡ଼ି ବାହାରେ ବୁଲିବାକୁ ହେଲେ ଓ୍ୟାଡେନ୍‌ଙ୍କ ଆଦେଶ ନେବାକୁ ପଡୁଥିଲା। ସେତେବେଳେ ମେସ୍ ଖର୍ଚ୍ଚ ମାସକୁ ୧୬/୧୭ ଟଙ୍କା ଓ ଜଳଖିଆ ପାଇଁ ଟ୪ ଏପରି ମୋଟରେ ୨୦/୨୧ ଟଙ୍କା ପର୍ଯ୍ୟନ୍ତ ଦେବାକୁ ପଡୁଥିଲା। ଅବଶ୍ୟ ନାମ ଲେଖାଇବା ବେଳେ ମେସ୍ କସନ ମନି (Caution Money) ଓ ଅନ୍ୟାନ୍ୟ ଖର୍ଚ୍ଚ ପାଇଁ ଅଗ୍ରିମ ଟ୨୦/୨୫ ଦେବାକୁ ପଡୁଥିଲା ଓ ହଷ୍ଟେଲ୍ ପୁରାପୁରି ପରିତ୍ୟାଗ କରିଗଲେ ତାକୁ ଫେରସ୍ତ ମିଳୁଥିଲା। ମେସ୍‌ର ଖାଦ୍ୟପେୟ ବିଷୟରେ ନ କହିଲେ ଅସମ୍ପୂର୍ଣ୍ଣ ରହିବ ଭାବି ସେ ବିଷୟରେ କିଛି ସୂଚନା ଦିଆଗଲା। ଉଭୟ ଓଳି ଖାଇବା ପାଇଁ ଅନ୍ନ, ଡାଲି, ଖଟା/ଭଜା, ଶାଗ ଆଦି ପରିବେଷିତ ହେଉଥିଲା। ଏତଦ୍‌ବ୍ୟତୀତ ସପ୍ତାହରେ ଥରେ ମାଛ/ମାଂସ ଅନ୍ତତଃ ଶନିବାର ଦିନ ଦିଆଯାଉଥିଲା। ମାସକୁ ଥରେ ବା ବିଶେଷ ଦିନରେ ଅର୍ଥାତ୍ ପୂଜା ପାର୍ବଣ ବା ଗାନ୍ଧୀ ଜୟନ୍ତୀ ବା ବିଶିଷ୍ଟ ଦିବସରେ ଏକ ବିଶେଷ ଭୋଜୀର ଆୟୋଜନ ହେଉଥିଲା। ସେ ଦିନର ଜଳଖିଆ ୪ଟା ବେଳେ ବନ୍ଦ ହୋଇ ଭୋଜୀ ସଙ୍ଗେ ସେ ପରିମାଣ ମିଶୁଥିଲା। ନଚେତ୍ ପ୍ରତିଦିନ ୪ଟା ବେଳେ ପୁରୀ/ରୁଟି, ଖେଚଡ଼ୀ ବା ଖରା ମାସରେ (ଅପ୍ରେଲ) ପଖାଳ ଓ ଭଜାର ବ୍ୟବସ୍ଥା ଥିଲା। ମାସିକ ଭୋଜୀରେ ବିଶେଷତଃ କନିକା, ମାଂସ, ତରକାରୀ, ଖିରୀ ଓ ମିଠାଦିର ବ୍ୟବସ୍ଥା କରାଯାଉଥିଲା। ଏପରି ଭାବେ ଖାଦ୍ୟପେୟ ଓ ମେସ୍ ବ୍ୟବସ୍ଥା ଥିଲା ଓ ମାସରେ ଏକ ନିର୍ଦ୍ଧାରିତ ଦିନ ମେସ୍‌ର ଦେୟ ପୈଠ କରାଯାଉଥିଲା ହଷ୍ଟେଲ୍ ଅଫିସ୍ ଜରିଆରେ। ଖାଇବା ପାଇଁ ବାସନ ଆଦି ମେସ୍‌ରୁ ଯୋଗାଣ ହେଉଥିଲା। ତେଣୁ ଏହି କଲେଜର ମେସ୍ ବ୍ୟବସ୍ଥା ଏକ ଆଦର୍ଶଗତ ନମୁନା ରୂପେ ଗଣ୍ୟ ହେଉଥିଲା। ପରେ ସମ୍ବଲପୁର କଲେଜରେ ଡ. ମାନସିଂହଙ୍କ ଅଧକ୍ଷତା ସମୟରେ ସେହି ଢାଞ୍ଚାରେ ମେସ୍‌ଗୁଡ଼ିକ ପ୍ରଚଳନ କରାଗଲା। ଏପରିକି କଲେଜରେ ଗୋପାଳନରୁ ଛାତ୍ରମାନଙ୍କୁ କ୍ଷୀର ଓ ବଗିଚାରୁ ପରିବା ଯୋଗାଣ ଓ ସମବାୟ ଦୋକାନ ଜରିଆରେ ଛାତ୍ରମାନଙ୍କୁ ସୁଲଭ ମୂଲ୍ୟରେ

ତାଙ୍କ ନିଜର ବ୍ୟବହାର୍ଯ୍ୟ ସାମଗ୍ରୀ ଯୋଗାଇବାର ବ୍ୟବସ୍ଥା ସର୍ବତ୍ର ପ୍ରଶଂସିତ ହୋଇଥିଲା ।

ଆମ ହଷ୍ଟେଲ୍‌କୁ କମନ୍ ରୁମ୍ ଜରିଆରେ ବିଭିନ୍ନ ଓଡ଼ିଆ, ଇଂରାଜୀ ଦୈନିକ ପତ୍ରିକା, ମାସିକ ପତ୍ରିକା ନିୟମିତ ଆସୁଥିଲା ଓ ତାକୁ ଛାତ୍ରମାନେ ସେମାନଙ୍କ ଅବସର ସମୟରେ ପଠନ କରୁଥିଲେ । କମନ୍ ରୁମ୍‌ରେ ବିଜୁଳି ପଙ୍ଖାର ବ୍ୟବସ୍ଥା ଥାଇ ଛାତ୍ରମାନଙ୍କ କ୍ଲାନ୍ତି ଦୂର କରିବାରେ ସାହାଯ୍ୟ କରୁଥିଲା । ଏତଦ୍‌ଭିନ୍ନ ଛାତ୍ରମାନଙ୍କ ସ୍ୱାସ୍ଥ୍ୟର ଉନ୍ନତି ପାଇଁ କଲେଜ ବ୍ୟତୀତ ହଷ୍ଟେଲ୍‌ରେ ମଧ୍ୟ ଖେଳ ସାମଗ୍ରୀ ଯୋଗାଇ ଦିଆଯାଉଥିଲା ଓ ସେସବୁ ଅଭ୍ୟାସ କରି ଖେଳ ପ୍ରତିଯୋଗିତା ବେଳେ ଅଂଶ ଗ୍ରହଣ କରି କୃତିତ୍ୱ ପ୍ରଦର୍ଶନ କରି ପାରୁଥିଲେ । ଏହି ପ୍ରତିଯୋଗିତା କଲେଜ ଓ ହଷ୍ଟେଲ୍ ଉଭୟ ସ୍ତରରେ ଆୟୋଜିତ ହେଉଥିଲା ।

କଲେଜରେ ଛାତ୍ରମାନଙ୍କୁ ନେତୃତ୍ୱ ଦେବା ଉଦ୍ଦେଶ୍ୟରେ ଛାତ୍ର ସଂଘ ଜରିଆରେ ବିଭିନ୍ନ କାର୍ଯ୍ୟକ୍ରମ ଆୟୋଜନ ପାଇଁ ନିର୍ବାଚନ କରାଯାଇ ଛାତ୍ର ପ୍ରତିନିଧିମାନଙ୍କୁ କଲେଜର ବିଭିନ୍ନ ଦାୟିତ୍ୱ ପ୍ରଦାନ କରାଯାଉଥିଲା । ଅବଶ୍ୟ ପ୍ରତ୍ୟେକ କାର୍ଯ୍ୟ ପାଇଁ ଜଣେ ଜଣେ ଅଧ୍ୟାପକ ଉପଦେଷ୍ଟା ରୂପେ ସହଯୋଗ କରୁଥିଲେ । ତେଣୁ କଲେଜରେ ପୂଜା, ଖେଳ ବା ବିଭିନ୍ନ ଦିବସ ପାଳନାଦି ଛାତ୍ରମାନଙ୍କ ଦ୍ୱାରା ଆୟୋଜିତ ହେଉଥିଲା । ଭବିଷ୍ୟତ ନାଗରିକ ଗଠନର ପଥକୁ ସୁଗମ କରିବାର ଥିଲା ଏହାର ମୁଖ୍ୟ ଉଦ୍ଦେଶ୍ୟ । ମେସ୍ ପାଇଁ ଛାତ୍ର ପ୍ରତିନିଧିମାନେ ନିର୍ବାଚିତ ହୋଇ ବିଭିନ୍ନ କାର୍ଯ୍ୟର ସୁପରିଚାଳନା ପାଇଁ ସହଯୋଗ କରୁଥିଲେ । ଦରିଦ୍ର ଓ ଅଭାବଗ୍ରସ୍ତ ଛାତ୍ରମାନଙ୍କୁ ମେସ୍‌ରୁ ମଧ୍ୟ ଅର୍ଦ୍ଧେକ ବା ଏକ ଚତୁର୍ଥାଂଶ ବା ପୁରାପୁରି ସାହାଯ୍ୟ କରାଯାଉଥିଲା । ମୁଁ ମଧ୍ୟ ପ୍ରଥମ ବର୍ଷଟି ମେସ୍‌ରୁ ଅର୍ଦ୍ଧେକ ଖର୍ଚ୍ଚଦେୟରୁ ରିହାତି ପାଇଥିଲି । କଲେଜରୁ ମଧ୍ୟ ସେ ବର୍ଷ ମୋର ମାସିକ ଫିଜ୍ ଦେବା ପାଇଁ 'Social Service Guild' ଜରିଆରେ ମାସକୁ ଟ୬ ଲେଖାଏଁ ସାହାଯ୍ୟ ମିଳୁଥିଲା । ଏବେ ମଧ୍ୟ ରେଭେନ୍ସା କଲେଜ ଜୀବନକୁ ମନେ କଲେ ପୁଣି ମନରେ ସ୍ୱତଃ ଏକ ଉନ୍ମାଦନା ଓ ଉତ୍ସାହ ଜାତ ହୁଏ । ଏପରିକି ପୁଣି ସେହି ଅନୁଷ୍ଠାନର ଛାତ୍ର ହୁଅନ୍ତି କି ବୋଲି ଭାବନା ଆସେ । ଏବେ ସ୍ୱୟଂ ଶାସିତ ଅନୁଷ୍ଠାନ ହୋଇ ମଧ୍ୟ ସେ କାଳର ଅବସ୍ଥା ସ୍ମରଣରେ କ୍ଷୋଭ ଜାତ ହୁଏ ।

ବିଜ୍ଞାନ ପଢୁଆ ଛାତ୍ରମାନଙ୍କ ପାଇଁ ଛାତ୍ରାବାସ ତଥା କଲେଜ ଲାଇବ୍ରେରୀରୁ କିଛି ଅଂଶଧନ ଜମା ଦେଇ ଧାର ରୂପେ ପୁସ୍ତକ ଦିଆ ଯାଇଥାଏ ଓ ତାକୁ ପଢ଼ି ସାରିବା ପରେ ଫେରସ୍ତ ଦିଆଯାଏ । ଏହାକୁ Lending Library

ଜୁହାଯାଏ । ଏଣୁ ଏହି ସୁବିଧା ଦରିଦ୍ର ଓ ମେଧାବୀ ଛାତ୍ରମାନଙ୍କ ପ୍ରତି ଏକ ଆଶୀର୍ବାଦ ଭଳି ମନେ ହୁଏ । ଏତଦ୍‌ବ୍ୟତୀତ ବଡ଼ ଲାଇବ୍ରେରୀରୁ ଅନ୍ୟାନ୍ୟ ଜ୍ଞାନ ବୃଦ୍ଧି ପାଇଁ ମଧ୍ୟ ପୁସ୍ତକ ଯୋଗାଇ ଥାଏ ଓ ସେଥି ପାଇଁ ଏକ ଲାଇବ୍ରେରୀ କାର୍ଡ (Library Card) ମିଳେ । ତାକୁ ଦେଖାଇ ପୁସ୍ତକ ଅଣାଯାଏ ଓ ନିର୍ଦ୍ଦିଷ୍ଟ ତାରିଖରେ ତାକୁ ଫେରାଇ ଦିଆଯାଏ ଓ ଆବଶ୍ୟକ ସ୍ଥଳେ ପୁଣି ତାକୁ ଯାଇ ନବୀକରଣ କରାଯାଇ ଦୀର୍ଘତର ସମୟ ପାଇଁ ରଖାଯାଇ ପାରେ । ସେ ସମୟରେ ନାତିଉଚ୍ଚ କ୍ଷୀଣକାୟ ଏକ ପ୍ରୌଢ଼ ଶ୍ରୀଯୁକ୍ତ ମିଶ୍ର ଲାଇବ୍ରେରୀ ରକ୍ଷକ ରୂପେ କାର୍ଯ୍ୟରତ ଥିଲେ । ତାଙ୍କ ଦୀର୍ଘ ଦିନର ଅନୁଭୂତି ହେତୁ ସେ ସାରା ଲାଇବ୍ରେରୀଭୁକ୍ତ ପ୍ରତ୍ୟେକ ପୁସ୍ତକର ସ୍ଥାନ ଓ କ୍ରମିକ ସଂଖ୍ୟାଦି ସମ୍ପୂର୍ଣ୍ଣ ରୂପେ ସ୍ମରଣ ରଖିଥିଲେ । ତେଣୁ ଯେ କୌଣସି ପୁସ୍ତକର ଆବଶ୍ୟକତା ଦେଖାଇଲେ ସେ ତଞ୍ଚଳ ସେ ପୁସ୍ତକର ଉପଯୁକ୍ତ ସ୍ଥାନର ସୂଚନା ଦେଇ କହି ପକାଉଥିଲେ ଯେ ତାହା କେହି ନେଇଛନ୍ତି ବା ଅମୁକ ଜାଗାରେ ଅଛି । କି ଆଶ୍ଚର୍ଯ୍ୟଜନକ ସ୍ମରଣ ଶକ୍ତି ଓ ଅନୁଭୂତି ତାଙ୍କର ସତେ ! ଆଜିର ନବଉଦ୍ଭାବିତ କମ୍ପ୍ୟୁଟର ଭଳି ସେ ମନେ ହୁଅନ୍ତି ଅର୍ଥାତ୍ ସେ କନିକା ଲାଇବ୍ରେରୀର ନିଜେ ଏକ ଜୀବନ୍ତ Catalogue ଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ ।

କଲେଜରେ ନାମଲେଖା ଶେଷ ହେଲେ କଲେଜର ଛାତ୍ରସଂଘ ପାଇଁ ନିର୍ବାଚନ ହୁଏ । ସେଥିରେ ଉଚ୍ଚ ଶ୍ରେଣୀର ଛାତ୍ରମାନେ ବିଶେଷ କରି ଛାତ୍ରସମାଜର ସଭାପତି/ଉପସଭାପତି ତଥା ଅନ୍ୟାନ୍ୟ କର୍ମକର୍ତ୍ତା ପାଇଁ ନିର୍ବାଚନ ଲଢ଼ନ୍ତି ଓ ସଂସଦର ସମ୍ପାଦକ ପଦଟି କେବଳ ପ୍ରଥମ ବାର୍ଷିକ ଛାତ୍ରମାନଙ୍କ ମଧ୍ୟରୁ ନିର୍ବାଚିତ ହୁଅନ୍ତି । ଏଥିରୁ ଜଣାଯାଏ ଯେ ସେ ହେଉଛନ୍ତି ପରବର୍ତ୍ତୀ ବର୍ଷମାନଙ୍କ ପାଇଁ ଭାବୀ ସଭାପତି/ଉପସଭାପତି ପଦ ପାଇଁ ସ୍ୱୀକୃତିପ୍ରାପ୍ତ ଛାତ୍ର ପ୍ରତିନିଧି । ଏହି ନିର୍ବାଚନ ସମୟରେ ଦେଶରେ ସାଧାରଣ ନିର୍ବାଚନ ଭଳି ବିଭିନ୍ନ ଦଳରୁ ଛାତ୍ର ପ୍ରତିନିଧିମାନେ ପ୍ରତିଦ୍ୱନ୍ଦ୍ୱିତା କରନ୍ତି । ସରକାର ଓ ରାଜନୈତିକ ଦଳବିଶେଷଙ୍କ ପ୍ରଚ୍ଛନ୍ନ ହାତ ଥାଏ । ସେମାନେ ସେମାନଙ୍କ ସପକ୍ଷରେ ରଖିବା ପାଇଁ ବିଭିନ୍ନ ଶ୍ରେଣୀର ବା ସମୂହ ଛାତ୍ରଗୋଷ୍ଠୀ ସମ୍ମୁଖରେ ନିଜର ପ୍ରାଧାନ୍ୟ ଜାହିର କରି ବକ୍ତୃତାମାନ ପ୍ରଦାନ କରି ଛାତ୍ରମାନଙ୍କ ମନୋଭାବକୁ ନିଜ ପ୍ରତି ଆକୃଷ୍ଟ କରିଥାନ୍ତି । ବିଶେଷ ସ୍ଥଳରେ ଛାପା ପ୍ରଚାରପତ୍ର ଜରିଆରେ ମଧ୍ୟ ଏ ପ୍ରଚାର ଅବ୍ୟାହତ ରହେ । ନିର୍ବାଚନ ଶେଷରେ ସଂଘର ଏକ ପ୍ରାରମ୍ଭିକ ସଭା ହୁଏ । ସେଥିରେ ନୂତନ ବର୍ଷର ଛାତ୍ରମାନଙ୍କୁ ସ୍ୱାଗତ କରାଯାଏ । ସେପରି ଏକ ସଭା ଛାତ୍ରାବାସରେ ମଧ୍ୟ ନବାଗତ ଛାତ୍ରମାନଙ୍କୁ ସ୍ୱାଗତ କରାଯାଏ ଓ ରାତିରେ ଏକ ନୈଶଭୋଜି ମେସ୍‌ରେ ଆୟୋଜିତ ହୁଏ । ଏହା କି

ଜଣେ ଶିକ୍ଷକ...

ଅଭିନବ ପରିକଳ୍ପନା ସତେ !

ବିଶିଷ୍ଟ ଦିନମାନଙ୍କରେ ଅର୍ଥାତ୍ ଗଣେଶ ପୂଜା ବା ସରସ୍ୱତୀ ପୂଜା ଉପଲକ୍ଷେ ଉଭୟ ଛାତ୍ରାବାସରେ ଏକ ଏକ ଉତ୍ସବର ଆୟୋଜନ କରାଯାଏ ଓ ତହିଁରେ ଛାତ୍ରାବାସର ଅନ୍ତେବାସୀଗଣ ସାଂସ୍କୃତିକ କାର୍ଯ୍ୟକ୍ରମର ଆୟୋଜନ କରନ୍ତି । ବର୍ଷ ଶେଷରେ ବିଭିନ୍ନ ଖେଳ ଓ ସାଂସ୍କୃତିକ ପ୍ରତିଯୋଗିତା ଆୟୋଜିତ ହୋଇ ଛାତ୍ରାବାସ ବାର୍ଷିକ ଉତ୍ସବ ପାଳନ କରି ବିଶିଷ୍ଟ ଅତିଥିମାନଙ୍କୁ ନିମନ୍ତ୍ରଣ କରି ଯୋଗ୍ୟ ଓ କୃତୀ ଛାତ୍ରମାନଙ୍କୁ ପୁରସ୍କାର ବିତରଣ କରାଯାଏ । ତଦନୁରୂପ ଆୟୋଜନ କଲେଜ ସ୍ତରରେ ବିଦ୍ୟାଧାୟୀ ଛାତ୍ରଛାତ୍ରୀଙ୍କ ପାଇଁ ମଧ୍ୟ ବିଭିନ୍ନ ପ୍ରତିଯୋଗିତାର ଆୟୋଜନ କରା ହୁଏ । ଅବଶ୍ୟ ଅନ୍ତେବାସୀଗଣ ଇଚ୍ଛୁକ ହେଲେ ସେଥିରେ ମଧ୍ୟ ଅଂଶ ଗ୍ରହଣ କରନ୍ତି । ଏହାର ଏକମାତ୍ର ଉଦ୍ଦେଶ୍ୟ ହେଲା ଯେ ପଢ଼ିବା ସ୍ତରରୁ ଭବିଷ୍ୟତ ନାଗରିକ, ଖେଳାଳୀ, ରାଜନୈତିକ ନେତୃତ୍ୱ ନେବାର ଓ ନୈତିକ ଆଦର୍ଶ ଜୀବନଯାପନରେ ଅଙ୍କୁରୋଦ୍ଗମ ହୋଇ ଥାଏ । ଆଉ ମଧ୍ୟ ବିଶିଷ୍ଟ ଦିନମାନଙ୍କରେ ପାଳିତ ବିଭିନ୍ନ କାର୍ଯ୍ୟକ୍ରମ ମାଧମରେ ନାଟକାଭିନୟାଦି ପ୍ରଦର୍ଶିତ ହେଉଥିଲା । ଗଣେଶ ପୂଜା ଉତ୍ସବରେ ଅଭିନୀତ ନାଟକରେ ଏହି ଲେଖକ ଅଭିନୟ କରି ଦର୍ଶକମାନଙ୍କ ମନକୁ ମୁଗ୍ଧ କରିଥିଲା ।

ମଝିରେ ମଝିରେ ବିଭିନ୍ନ ବିଶିଷ୍ଟ ବକ୍ତାଙ୍କୁ ରାଜ୍ୟରୁ ବା ରାଜ୍ୟ ବାହାରୁ ଏପରିକି ଆନ୍ତର୍ଜାତୀୟ କ୍ଷେତ୍ରରେ ପ୍ରସିଦ୍ଧି ଲାଭ କରିଥିବା ବକ୍ତା, ବୈଜ୍ଞାନିକ ଓ ଶିକ୍ଷାବିତ୍‌ମାନଙ୍କୁ ଆମନ୍ତ୍ରଣ କରାଯାଇ Extra mural lectureର ଆୟୋଜନ କରାଯାଏ । ମୋର ଯାହା ମନେ ଅଛି ଏହି କଲେଜରେ ଅଧ୍ୟୟନ କଲା ବେଳେ ବିଦେଶାଗତ Dr. Merlay Curte, ଡ. ମେଘନାଦ ସାହା, ବିଜ୍ଞାନ କଂଗ୍ରେସର ଉଦ୍ୟୋକ୍ତା Sir C.V.Raman, Sri Jha ଆଦି ବିଶିଷ୍ଟ ଜନନାୟକଙ୍କ ଦର୍ଶନ ଓ ଅମୃତବାଣୀ ଶୁଣିବାର ସୌଭାଗ୍ୟ ମିଳିଥିଲା । ଏପରି ଭାବେ ପାଠପଢ଼ା ଆରମ୍ଭ ହୋଇ ଏତେ ବ୍ୟସ୍ତ ହେବାକୁ ପଡ଼େ ଯେ ଅନ୍ୟ ସବୁ କଥା ଏପରିକି ଘର କଥା ମଧ୍ୟ ଭୁଲି ଯିବାକୁ ହୋଇଥାଏ । ଅବଶ୍ୟ ମଝିରେ ମଝିରେ ପତ୍ରାଳାପ କରିଆରେ ପରିବାର ତଥା ବନ୍ଧୁ ପରିଜନଙ୍କ ଖବର ମିଳୁଥାଏ ।

ସାଧାରଣତଃ B.Sc. Classର ବ୍ୟାବହାରିକ ଜ୍ଞାନ ପାଇଁ Practical class ଗୁଡ଼ିକ ସକାଳ ୭ଟାରୁ ୧୦ଟା ଓ ଅପରାହ୍ଣ ୨ଟାରୁ ୫ଟା ପର୍ଯ୍ୟନ୍ତ ହୁଏ ଓ ଶ୍ରେଣୀ ଶିକ୍ଷା ପାଇଁ ୧୧ଟାରୁ ୩ଟା ମଧ୍ୟରେ ବା କେବେ କେବେ ୨ଟାରୁ ୪ଟା ଭିତରେ ସୀମିତ ରହେ । ଦୈନିକ ପାଠ୍ୟ ଗ୍ରହଣ ପରେ ପ୍ରାୟ ୪ଟାରୁ ୬ଟା ପର୍ଯ୍ୟନ୍ତ

ସାମୟିକ ବା ଖେଳକସରତରେ କଟି ଯାଏ । ଭ୍ରମଣ କହିଲେ Rly. Stn., ଯୋବ୍ରା ଆନିକଟ ଆଡ଼େ ବା ଛୁଟି ଦିନମାନଙ୍କରେ ରେଳଲାଇନ୍ ଧାରର କଡ଼ରେ ଜଗତପୁର ଆଧୁନିକ କେନ୍ଦ୍ରାପଡ଼ା ରୋଡ଼ ପର୍ଯ୍ୟନ୍ତ ଚାଲି ଚାଲି ଯାଇ ଫେରିବା ବେଳେ ଟ୍ରେନ୍ ସମୟ ଥିଲେ ଟ୍ରେନ୍‌ରେ କଟକ ଫେରି ଆସୁଁ ।

କେବେ କେବେ ଛୁଟି ଦିନମାନଙ୍କରେ ଭାରପ୍ରାପ୍ତ କର୍ମଚାରୀଙ୍କ ଅନୁମତି ନେଇ ସିନେମା ମଧ୍ୟ ଦେଖିବାକୁ ହୁଏ । ଅବଶ୍ୟ ଶନିବାର, ରବିବାର ବା ଅନ୍ୟ ଛୁଟି ଦିନ ପାଇଁ ସକାଳ ୬ଟାରୁ ୯ଟା ବେଳ ପାଇଁ ଆଦେଶ ଦରକାର ପଡ଼େ ନାହିଁ । କିନ୍ତୁ ୯ଟାରୁ ୧୨ଟା ପାଇଁ ସର୍ବଦା ଆଦେଶ ନେଇ ଯିବାକୁ ହୁଏ । କାରଣ ଛାତ୍ରାବାସ ଫାଟକ ବନ୍ଦ ରହେ ଓ ଖାଇବା ମଧ୍ୟ ୯ଟା ପରେ ମିଳୁଥିବାରୁ ତାକୁ ପୂଝାରୀ ଆଣି ନିଜ ନିଜ ଖଟ ତଳେ ବା ଟେବୁଲରେ ରଖି ଦେଇ ଯାଇ ଥାଆନ୍ତି ।

ସେତେବେଳେ କଟକରେ ‘ପ୍ରଭାତ’ ଓ ‘କେପିଟେଲ’ ଦୁଇଟା ସିନେମା ହଲ୍ ଓ ଅନ୍ନପୂର୍ଣ୍ଣା ‘B’ ଗ୍ରୁପ୍ ରଙ୍ଗମଞ୍ଚ ଓ ଶେଷ ବର୍ଷରେ ‘ଜନତା’ ରଙ୍ଗମଞ୍ଚରେ ନିୟମିତ ଭାବେ ଖେଳ ଚାଲୁଥିଲା । ତେଣୁ ଆୟ ଦେଖି ଅର୍ଥାତ୍ ନିଜର ପାଣ୍ଠି ଅନୁସାରେ ମନୋରଞ୍ଜନ କାର୍ଯ୍ୟକ୍ରମ ରୂପରେଖ ପ୍ରସ୍ତୁତ କରାଯାଉଥିଲା ।

ସିନେମା ହଲ୍‌କୁ ଛାଡ଼ି ସେତେବେଳେ କଟକରେ ଅନ୍ନପୂର୍ଣ୍ଣା ‘B’ ଗ୍ରୁପରେ ପ୍ରତିଦିନ ପ୍ରାୟ ନାଟକ ଅଭିନୀତ ହୋଇ ଗୋଟିଏ ନାଟକ ପ୍ରାୟ ୪/୫ ମାସ ପର୍ଯ୍ୟନ୍ତ ଚାଲୁଥିଲା । ଏହା ପ୍ରାୟ ୭ଟାରୁ ଆରମ୍ଭ ହୋଇ ୯ଟାରେ ଶେଷ ହେଉଥିଲା । କଟକରେ ପଢ଼ିବା ବେଳେ ଅନ୍ନପୂର୍ଣ୍ଣା ‘B’ ଗ୍ରୁପର ଖେଳମାନଙ୍କ ମଧ୍ୟରେ ‘ବୈରାଗୀର ସଂସାର, ‘ବେନାମୀ’, ‘ଜହର’ ଇତ୍ୟାଦି ମାସ ମାସ ଧରି ଅଭିନୀତ ହେଉଥିଲା ।

ଏହି ସମୟର ଆଉ ଗୋଟିଏ ଦୁଇଟି ଘଟଣାର ସୂଚନା ଦେବାର ସମୀଚିନ ମନେ ହୁଏ । ୧୯୪୭ ମସିହାର ପ୍ରାରମ୍ଭରେ ଅର୍ଥାତ୍ ଜାନୁୟାରୀରେ କଲେଜ ଖୋଲିବା ପରେ ଆମୋଦ ପ୍ରମୋଦ ଦିଗରେ ସରସ୍ୱତୀ ପୂଜା ପାଳନ ଓ ତତ୍କାଳୀନ ‘ପ୍ରଭାତ’ ସିନେମାରେ ଅଭିନୀତ ‘ଝୁଲା’ ଚିତ୍ର ବେଶ ଚିତ୍ତାକର୍ଷକ ଥିଲା । ଏପରିକି ଏହି ଖେଳକୁ ଏକାଧିକ ବାର ଦର୍ଶନ କରି ମଧ୍ୟ ବାର ବାର ଦେଖିବା ପାଇଁ ପ୍ରବଳ ଇଚ୍ଛା ହେଉଥିଲା । ସେତେବେଳର ଫିଲ୍ମ ଜଗତର ସ୍ୱନାମଧନ୍ୟ ଅଭିନେତା ଅଶୋକ କୁମାର ଅଭିନେତ୍ରୀ ଲୀଲା ଚିଟ୍‌ନିସ୍‌ଙ୍କ ଅଭିନୟ ବେଶ ଚିତ୍ତାକର୍ଷକ ଥିଲା ।

ସେ ସମୟର କଲେଜର ଘଟି ଥିବା ପୂର୍ବ ଘଟଣା ଅନୁଯାୟୀ ଦଳେ ଛାତ୍ରଙ୍କୁ ତାଙ୍କ ଗର୍ହିତ କାର୍ଯ୍ୟ ପାଇଁ ଅଧ୍ୟକ୍ଷ କରିବାନା ନୋଟିସ ଦେଇଥିଲେ ।

ଯେହେତୁ ସେମାନେ ସେ ବର୍ଷର ଖେଳ ଉତ୍ସବରେ ଉଡୁଥିବା ଇଂରେଜ ପତାକା ୟୁନିଅନ୍ ଜେକ୍‌କୁ ଟାଣି ଫୋପାଡ଼ି ଦେଇଥିଲେ । ଅର୍ଥାତ୍ ସେତେବେଳେ ଛାତ୍ରମାନଙ୍କ ମଧରେ ଦେଶପ୍ରେମର ସାହସିକ ଓ ନିର୍ଭୀକ ଚେତନା ଜାଗରୁକ ହୋଇଥିଲା । ସେ ଛାତ୍ରମାନଙ୍କ ମଧରେ ଥିଲେ ତତ୍କାଳୀନ କମ୍ୟୁନିଷ୍ଟ ଛାତ୍ରନେତା ଶ୍ରୀ ମନମୋହନ ମିଶ୍ର, ତାଙ୍କର ଗାମ୍ଭୀର୍ଯ୍ୟପୂର୍ଣ୍ଣ ଓଜସ୍ୱିନୀ ଭାଷଣ ତଥା ସ୍ୱରଚିତ ଦେଶପ୍ରେମୀ କବିତା ଶ୍ରୋତାମାନଙ୍କୁ ଅଶେଷ ଉତ୍ସାହ ପ୍ରଦାନ କରୁଥିଲା । ଏହି ଆଦେଶନାମା ପାଇଁ କଲେଜର ଧର୍ମଘଟ ଆରମ୍ଭ ହୋଇ ଅନେକ ଦିନ ପର୍ଯ୍ୟନ୍ତ ଅଶାନ୍ତ ବାତାବରଣ ଲାଗି ରହିଲା ଓ ଶ୍ରେଣୀ ଯିବା ବନ୍ଦ ହେଲା । ସେହି ସମୟ ମଧରେ ତା. ୨୭.୧.୪୭ ଦିନ ସରସ୍ୱତୀ ପୂଜା ପାଇଁ କଲେଜ ବନ୍ଦ ହୋଇ ଧର୍ମଘଟ ପାଇଁ ମଧ କଲେଜ ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ବନ୍ଦ ରହିବା ଆଦେଶନାମା ଘୋଷିତ ହେଲା । ଏହି ଅବସରରେ କଲେଜରେ ପାଠପଢ଼ାର ଅବ୍ୟବସ୍ଥା ଦୃଷ୍ଟିରୁ ଆମର ସମ୍ବଲପୁର ଅଞ୍ଚଳର କେତେକ ବନ୍ଧୁ ମିଳିତ ହୋଇ ମାଘ ସପ୍ତମୀରେ କୋଣାର୍କ, ଚନ୍ଦ୍ରଭାଗା ଦର୍ଶନ ପାଇଁ ମନସ୍ଥ କଲୁ । ସରସ୍ୱତୀ ପୂଜା ଉତ୍ସବ ପରେ ମୁଁ, ସୂର୍ଯ୍ୟପ୍ରସାଦ ପଣ୍ଡା, ଗୋବିନ୍ଦ ମିଶ୍ର ଓ ଆମର ଗ୍ରାମ ନିକଟସ୍ଥ ତ୍ରିଲୋଚନ ମେହେରଙ୍କ ଜ୍ୟେଷ୍ଠ ଭ୍ରାତା ବୈଲୋଚନ ମେହେର ଏକା ସଙ୍ଗେ ସନ୍ଧ୍ୟା ସାଢ଼େ ୭ରେ ତାଳଚେର ଟ୍ରେନ୍ ଯୋଗେ ପୁରୀ ଯାତ୍ରା କଲୁଁ । ସେଠାରେ ପହଞ୍ଚି ରେଲୱେ ଷ୍ଟେସନରେ ରାତ୍ରି ଯାପନ କରି ପରଦିନ ସକାଳରୁ ସମୁଦ୍ର ସ୍ନାନ ଓ ଜଗନ୍ନାଥ ଦର୍ଶନ ପରେ ଭୋଜନାଦି ସାରି କୋଣାର୍କ ଯିବା ପାଇଁ ଯାନବାହନର ବ୍ୟବସ୍ଥା କରିବା ପାଇଁ ବାହାରିଲୁଁ । ସେତେବେଳେ ଆଜିକାଲି ପରି ଯାତାୟାତର ରାସ୍ତା ଓ ଯାନବାହନର ସୁବିଧା ନ ଥିବାରୁ କେବଳ ବଳଦଗାଡ଼ିରେହିଁ ଯିବାର ବ୍ୟବସ୍ଥା ଥିଲା । ବଡ଼ଦାଣ୍ଡକୁ ଯାଇ ଦେଖିଲୁଁ ଯେ ବହୁ ସଂଖ୍ୟକ ବଳଦଗାଡ଼ି ସେଠାରେ ଏକତ୍ର ହୋଇ ଯାତ୍ରୀମାନଙ୍କୁ ଅପେକ୍ଷା କରି ରହିଛନ୍ତି । ସେମାନଙ୍କ ସହ ଆଲୋଚନା ପରେ ଗୋଟିଏ ଗାଡ଼ିବାଲା ଟ୨୦ଙ୍କାରେ କୋଣାର୍କ ନେବା ଆଣିବା ପାଇଁ ରାଜି ହେଲା । ତେଣୁ ଦିନ ପ୍ରାୟ ୧୨ଟା ବେଳେ ସେହି ଗାଡ଼ିରେ ଆମେ ଚାରି ଜଣ ବନ୍ଧୁ କୋଣାର୍କ ଅଭିମୁଖେ ଯାତ୍ରା ଆରମ୍ଭ କଲୁଁ । ସନ୍ଧ୍ୟା ସାଢ଼େ ୮ଟାରେ କୋଣାର୍କ/ଚନ୍ଦ୍ରଭାଗାରେ ପହଞ୍ଚିଲୁ ଓ କିଛି ଜଳଖିଆ ଖାଇ ସମୁଦ୍ରକୂଳରେ ରାତ୍ରି ବିଶ୍ରାମ କଲୁଁ ।

ପରଦିନ ସକାଳରୁ ଉଠି ନିତ୍ୟକର୍ମ ସାରି ଚନ୍ଦ୍ରଭାଗା ନିକଟକୁ ଯାଇ ଦେଖିବାକୁ ମିଳିଲା ଯେ ସହସ୍ରାଧିକ ନରନାରୀ ସେଠାରେ ଥିବା ପ୍ରାୟ ୨/୩ ଇଞ୍ଚର ଜଳ ଏକତ୍ର ହୋଇ ନିଜର ସ୍ନାନ କର୍ମରେ ବ୍ୟସ୍ତ ଥିଲେ ଓ ଅଦ୍ଭୁତପୂର୍ବ ଦୃଶ୍ୟ ଆଗରୁ

କÁ□ନା ମଧ କରି ନ ଥିଲୁଁ। ଫଳରେ ସେଠାକାର ସ୍ନାନ କାର୍ଯ୍ୟକୁ ବାତିଲ କରି ସମୁଦ୍ର କୂଳ ଆଡ଼େ ଆସି ଦେଖିଲୁଁ ସମୁଦ୍ର କୂଳରେ ଅସଂଖ୍ୟ ନରନାରୀ ସୂର୍ଯ୍ୟୋଦୟର ଅପୂର୍ବ ଶୋଭା ସୌନ୍ଦର୍ଯ୍ୟର ଅବଲୋକନ ଓ ଉପଲବ୍ଧି ପାଇଁ ଉତ୍କଣ୍ଠିତ ହୃଦୟରେ ଅପେକ୍ଷାରତ। ସମସ୍ତେ ସୂର୍ଯ୍ୟଙ୍କର ଉଦୟନକୁ ନିବିଷ୍ଟ ନୟନରେ ଚାହିଁ ରହିଲୁ। ସୂର୍ଯ୍ୟ ବଳୟ ଉପରକୁ ଲମ୍ଫ ପ୍ରଦାନ କରିବା ହେତୁ ବେଶ ଆନନ୍ଦରେ ସମସ୍ତେ ଅବଲୋକନ କଲେ। ଧୀରେ ଧୀରେ ସୂର୍ଯ୍ୟଙ୍କର ଉର୍ଦ୍ଧ୍ୱ ଗମନ ହେତୁ ସେ ଦୃଶ୍ୟ ଉପଶମ ହେଲା। ଏପରି ଅନୁଭୂତି ଓ ଆନନ୍ଦ ସ୍ୱୟଂ ନିଜେ ଦର୍ଶନ ଓ ଅନୁଭବ କରି ନ ଥିଲେ ତାହା ଭାଷାରେ ପ୍ରକାଶ କରିବା ଅସମ୍ଭବ ଓ ଅବିଶ୍ୱାସଜନକ ମନେ ହୁଏ। ଏହି ଦିନ ସମୁଦ୍ର ଉପକୂଳସ୍ଥ ଅନ୍ୟାନ୍ୟ ସହର ଓ ଗ୍ରାମମାନଙ୍କରେ ମଧ ଅର୍ଥାତ୍ ପୁରୀ, ଗୋପାଳପୁରରେ ମଧ ତଦନୁରୂପ ଦୃଶ୍ୟ ଉପଲବ୍ଧ ହୋଇଥିବ। କିନ୍ତୁ ଚନ୍ଦ୍ରଭାଗା ସମୁଦ୍ର କୂଳର ସୂର୍ଯ୍ୟୋଦୟ ଦର୍ଶନର ଯେ ଏକ ବିଶେଷତ୍ୱ ରହିଛି ତାକୁ କେହି ଅସ୍ୱୀକାର କରିବେ ନାହିଁ। ଏହା ପରେ ସେଠାରେ ଗହଳି କ୍ରମେ ପତଳା ହେବାକୁ ଲାଗିଲା ଓ ସମସ୍ତେ ସୂର୍ଯ୍ୟ ମନ୍ଦିର କୋଣାର୍କ ଆଡ଼େ ଅଗ୍ରସର ହେଲେ। ଆମେ ମଧ ଯାଇ ସୂର୍ଯ୍ୟ ମନ୍ଦିରର ଭଗ୍ନାବଶେଷ ଓ ମୁଖଶାଳାର କାରୁକାର୍ଯ୍ୟ ସନ୍ଦର୍ଶନ କରି ନିଜକୁ ଧନ୍ୟ ମନେ କଲୁଁ। ସେତେବେଳେ ମନରେ ସ୍ୱତଃ ଏକ ଅଭୁତପୂର୍ବ ମନୋଭାବ ଜାଗ୍ରତ ହେଲା ଯେ ଏହି ଓଡ଼ିଶାର ପୂର୍ବ କାରୀଗରକୂଳ ଏପରି ଏକ ପୃଥିବୀଶ୍ରେଷ୍ଠ ଭାସ୍କର୍ଯ୍ୟପୂର୍ଣ୍ଣ ମନ୍ଦିର ନିର୍ମାଣ କରି ଅମର ହୋଇ ଯାଇଛନ୍ତି। ସେଥିରେ ସବୁଠାରୁ ସ୍ମରଣୀୟ ହୋଇ ରହିଛି - ବାର ବର୍ଷର ଧରମା- ଯେ କି ନିଜେ ଏହି ମନ୍ଦିରର ଦଧି ନଉତିକୁ ବସାଇ ନିଜକୁ ଆତ୍ମୋତ୍ସର୍ଗ କରିଥିଲା, ଜାତିଭାଇ ପାଇଁ। କି ଆଶ୍ଚର୍ଯ୍ୟ ସେହି ମହାନ ଭାବନା ଓ ବଳୀଦାନ ସତେ ! ଏସବୁ ଚିନ୍ତା କଲେ ମନଟା ବହୁତ ଆନନ୍ଦ ଓ ଗର୍ବରେ ଫୁଲିଯାଏ ଓ ଆମେ ସେହି ଶିଳ୍ପ□ୀ ଓଡ଼ିଆ ଜାତିର ବଂଶଧର। ଆଜି ଗଲେ ସେଠାକୁ ମନ ଆନନ୍ଦରେ ଭରି ଯାଏ ଓ ମସ୍ତକ ଆପେ ଆପେ ନଇଁ ଯାଏ। ସେଠାରୁ ବୁଲାବୁଲି ପରେ ଖବର ନେବାରୁ ଜଣାଗଲା ଯେ ଏବେ ପୁରୀ ମନ୍ଦିରର ସମ୍ମୁଖସ୍ଥ ଅରୁଣ ସ୍ତମ୍ଭ ସେହି କୋଣାର୍କରୁ ଅଣାଯାଇ ସେଠାରେ ରଖା ଯାଇଛି। ଆଉ କେବଳ ଗୋଟିଏ ମୁଗୁନି ପଥରରେ ନିର୍ମିତ ନବଗ୍ରହ ମୂର୍ତ୍ତି ସେଠାରେ ସଂଗ୍ରହାଳୟରେ ସଂରକ୍ଷିତ ଥାଇ ଏବେ ମଧ ପୂଜା ପାଉଛନ୍ତି। ସେ ଅଞ୍ଚଳରେ ସେତେବେଳେ ପଇଡ଼ ଓ ନଡ଼ିଆ ପ୍ରଚୁର ପରିମାଣରେ ମିଳୁଥିଲା ଓ ତାର ଦାମ ସେବେଳର ଏକ ବା ଦୁଇ ପଇସା ମାତ୍ର।

ଏସବୁ ଦେଖାଦେଖି ସାରିବା ପରେ ସମୟ ପ୍ରାୟ ୧୧ଟା ଓ ସେଠାରେ

ଯେଉଁ ଅସ୍ଥାୟୀ ହୋଟେଲର ବ୍ୟବସ୍ଥା ଥିଲା ସେହି ହୋଟେଲରେ ବୋଧ ହୁଏ ୮୦/୬ ଟା ୮୦୮ ଲେଖାଏଁ ଦେଇ ଭାତ ଓ ମାଛ ଝୋଳ ଖାଇଲୁଁ। ପ୍ରାୟ ୧୨ଟା ବେଳେ ସେହି ଗାଡ଼ିରେ ଯାଇଥିବା ବାଟେ ଫେରି ରାତ୍ରି ସାଢ଼େ ୮ଟାରେ ପୁରୀ ପହଞ୍ଚିଲୁଁ। ଗାଡ଼ିବାଲାର ଭଡ଼ା ଛିଣ୍ଡିଥିଲା। ପରେ ଆମେ ସବୁ ଯାଇ ନବୋହଳ ହୋଟେଲରେ ରାତ୍ରି ବିଶ୍ରାମ ଓ ଭୋଜନ କଲୁଁ। ପରଦିନ ପୁଣି ସମୁଦ୍ର ସ୍ନାନ, ଲୋକନାଥ ମନ୍ଦିର ଦର୍ଶନ ଓ ଶ୍ରୀମନ୍ଦିର ଦର୍ଶନ ସାରି ଟ୍ରେନ୍ ଯୋଗେ ସାଢ଼େ ୮ଟାରେ କଟକ ପହଞ୍ଚିଲୁ। କଟକ ଆସି ଶୁଣିଲୁ ଯେ ଅନେକ ଛାତ୍ର ଜେଲ୍‌ରେ ଓ ଧର୍ମଘଟ ଚାଲିଥିଲା। ଛାତ୍ରାବାସର ଛାତ୍ରମାନେ ଘରକୁ ଯିବା ପାଇଁ ଆଦେଶ ହୋଇଥିଲା ଓ ଆମେ ମଧ୍ୟ ଘରକୁ ଯିବାର ବିଚାର କରିଥିଲୁଁ। କିନ୍ତୁ ପରଦିନର ଖବର ଅନୁସାରେ ଘରକୁ ଯିବାରୁ ବିରତ ହେଲୁ ଓ ନିଜ ପଢ଼ାରେ ଲାଗିଲୁଁ। ୫.୨.୧୯୪୭ରେ ଧର୍ମଘଟର ଅବସାନ ଓ ଛାତ୍ରମାନଙ୍କ ଦାବୀ ପୂରଣ ହେତୁ ସମସ୍ତେ ଆଶ୍ୱସ୍ତ ହୋଇ ହଷ୍ଟେଲ୍‌ରେ ଏକ ଭୋଜୀର ଆୟୋଜନ କରାଯାଇଥିଲା।

## ମୋର ବିବାହ :-

୩ୟ ବର୍ଷ ବିଜ୍ଞାନ ପଠନ ସମୟରେ ଅର୍ଥାତ୍ ୧୯୪୭ ମସିହା ପ୍ରଥମ ଭାଗରେ ବାର୍ଷିକ ପରୀକ୍ଷା ହେବା ପରେ ମୋର ଜୀବନର ଏକ ବିଶେଷ ଘଟଣା ଘଟିଲା। ଏ ମଧ୍ୟରେ ମୋର ଗୁରୁଜନ ଓ ତୋରାର ମୋର ଶାଶୁ ଘରେ ପ୍ରସ୍ତାବ କରି ବିବାହ ଦିନ ସ୍ଥିର କରି ସାରିଥିଲେ। ସେଥିପାଇଁ ନିମନ୍ତ୍ରଣ ପତ୍ରାଦି ଆଗରୁ ଛାପା କରାଯାଇ ସାରିଥିଲା ଓ ଦିନ ଥିଲା ୨୯.୪.୪୭ ମଙ୍ଗଳବାର। ନିମନ୍ତ୍ରଣ ପତ୍ର ଛାପା - ଏଥିରେ ସହଯୋଗ କରିଥିଲେ ଶ୍ରୀ ଧ୍ରୁବଚରଣ ତ୍ରିପାଠୀ ଓ ଶ୍ରୀ ଚିରଞ୍ଜନ ଗୌନ୍ତିଆ। ସେମାନେ ସମ୍ବଲପୁରରେ ଥାଇ ତାଙ୍କୁ ବନ୍ଧୁ ଉପେନ୍ଦ୍ର ପୁରୋହିତଙ୍କ ହସ୍ତରେ ମୋ ପାଖକୁ ପଠାଇଥିଲେ। ମୁଁ ସେଠାରେ ମୋର ବନ୍ଧୁମାନଙ୍କୁ ତାହା ବିତରଣ କରିଥିଲି।

୨୩.୪.୪୭ ଦିନ ମୋର ୩ୟ ବାର୍ଷିକ ପରୀକ୍ଷାର ଶେଷ ବିଷୟ ପରୀକ୍ଷା ସରିବା ପରେ ମୁଁ ୨୪.୪.୪୭ ଦିନ ଘରକୁ ସମ୍ବଲପୁର ବାଟେ ଫେରିଲି। ବାଟରେ ଗାଡ଼ି ଅସୁବିଧା ହେତୁ ଶେଷରେ ଏକ ସ୍ୱତନ୍ତ୍ର କାର ଯୋଗେ ସମ୍ବଲପୁର ଆସି ଜଣେ ବନ୍ଧୁଙ୍କ ବସାରେ ରାତ୍ରିଟି କଟାଇ ଆର ଦିନ ସାଢ଼େ ୧୨ଟାରେ ବରଗଡ଼ ପହଞ୍ଚିଲି। ଘରୁ ବାପା ଓ ହଳିଆ ଆସି ମୋତେ ଅପେକ୍ଷା କରିଥିଲେ। ତାଙ୍କ

ହସ୍ତରେ ମୋର ଜିନିଷପତ୍ର ପଠାଇ ଦେଲି ଓ ମୁଁ ଚଲା ବାଟରେ ଯିବା ବେଳେ ବାଲିଟିକ୍ରାର ମିତବାପାଙ୍କ ଝିଅ "ଗୁଲା"ର ବିବାହ ଭୋଜିରେ ଯୋଗ ଦେଇ ଘରକୁ ସନ୍ଧ୍ୟାରେ ପହଞ୍ଚିଲି।

ପୂର୍ବରୁ ସ୍ଥିର ହୋଇଥିବା କାର୍ଯ୍ୟକ୍ରମ ଅନୁସାରେ ଘରେ ବିବାହର ପ୍ରାରମ୍ଭିକ ଆନୁଷ୍ଠାନିକ ଓ ବୈଧାନିକ କର୍ମ ମାଟିପକା ପର୍ବ ସମାହିତ ହେଲା - ଘରର ବୟସ୍କା ମହିଳାମାନଙ୍କ ଦ୍ୱାରା। ସେମାନଙ୍କ ମଧ୍ୟରେ ବଡ଼ ପିଉସୀ ଫୁଲ ଓ ଅନ୍ୟତମା ପିଉସୀ ସୂର୍ଯ୍ୟଙ୍କ ବିଶିଷ୍ଟ ଅଂଶ ଥିଲା। ପରଦିନ ବରଗଡ଼ ଯାଇ କିଛି ଜିନିଷପତ୍ର କିଣାକିଣି କରି ଗାଁକୁ ଫେରି ବିବାହର ପ୍ରାରମ୍ଭିକ ଆୟୋଜନ ପାଇଁ ସମସ୍ତେ ବ୍ୟସ୍ତ ରହିଥିଲେ। ବହୁ ଆଗରୁ ବଡ଼ ବାପା ବରାତ ପାଇଁ ରଙ୍ଗୀନ କାଗଜରେ ଅନେକ ଫୁଲ ତିଆରି କରି ୧୦/୨୦ ଗଛ କାଗଜ ଫୁଲ ତିଆରି କରାଇ ଥିଲେ। ଆଗରୁ ବଡ଼ ବାପା ସମ୍ବଲପୁର ଯାଇ ସେଠାକାର ବିଶିଷ୍ଟ ଆତସବାଜି କାରିଗର ୰ ଅନନ୍ତରାମ ବେରିହାଙ୍କ ଠାରୁ ବାଣ, ଫଟକା, କୁପୀ ଓ ବର୍ଷାତି ଆଦି ଆଣି ରଖିଥିଲେ। ନିକଟସ୍ଥ ସରସରା ଗ୍ରାମର ଗୌନ୍ତିଆଙ୍କଠାରୁ ଧଳା ରଙ୍ଗର ବେଶ ହୃଷ୍ଟପୁଷ୍ଟ ଘୋଡ଼ା ମୋର ବରାତି ପାଇଁ ଆୟୋଜିତ ହୋଇଥିଲା।

୨୮/୪/୪୭ ଅପରାହ୍ନରୁ ଆମ ଘରେ ବରାନୁଗମନକାରୀଙ୍କୁ ଭୋଜନ ଦିଆଯାଇ ସନ୍ଧ୍ୟାରେ ସେଥି ପାଇଁ ପ୍ରସ୍ତୁତ ରହିବାକୁ ଅନୁରୋଧ କରାଯାଇଥିଲା। ନିକଟସ୍ଥ ବାଲିଯୋରୀ ଗ୍ରାମରୁ ତତ୍କାଳୀନ ସ୍ୱନାମଧନ୍ୟ ବାଦ୍ୟକାର ଢପଡ଼ା ବାଲା ଓ ତାଙ୍କ ସାଥିମାନଙ୍କୁ ଆମ ସଙ୍ଗେ ଯିବା ସ୍ଥିର ହୋଇଥିଲା। ଗାଁରୁ ଏକ ନାଟ୍ୟ ଦଳ, କୁଲଟର ଦୁଇଟା ଘୋଡ଼ା ନାଚକାରୀବାଲା ଆମ ବରାନୁଗମନର ମୁଖ୍ୟ ଆକର୍ଷଣ ଥିଲେ। ଆମ ବରାନୁଗମନରେ ଯୋଗ ଦେବା ପାଇଁ ଆମର ବନ୍ଧୁବାନ୍ଧବ, ବରପାଲି ମିତବାପା ଓ ବଡ଼ ବାପା ତଥା ବାପାଙ୍କ ଅନ୍ୟ ବନ୍ଧୁମାନେ ଓ ଗାଁର ବିଶିଷ୍ଟ ବ୍ୟକ୍ତିଗଣ ଗୌନ୍ତିଆଙ୍କୁ ମିଶାଇ ପ୍ରାୟ ଶତାଧିକ ଲୋକ ଓ ୮/୧୦ଟା ବଳଦଗାଡ଼ି ସେଥିରେ ଅନ୍ତର୍ଭୁକ୍ତ ଥିଲେ। ବାଟରେ ଗଲା ବେଳେ ଖୁଣ୍ଟପାଲି ଗ୍ରାମ ଓ ରୁହୁଣିଆ ଗ୍ରାମ ମଧ ଦେଇ ବରାତର ଶୋଭାଯାତ୍ରା କରା ଗଲା ଓ ବାଟରେ ଥିବା ଅନ୍ୟାନ୍ୟ ଗ୍ରାମମାନଙ୍କର ଜଣାଶୁଣା ଲୋକମାନେ ବରାତରେ ସାମିଲ ହୋଇ ପଡ଼ିଲେ - ଏପରିକି ବିନା ନିମନ୍ତ୍ରଣରେ। ତୋରା ନିକଟରେ ପହଞ୍ଚିଲା ବେଳକୁ ବଳଦଗାଡ଼ି। / ୧୦, ସାଇକଲ ୫୦/୬୦ ଓ ଲୋକସଂଖ୍ୟା ପ୍ରାୟ ୩୦୦/୪୦୦ରୁ ଅଧିକ ମନେ ହେଲା। ପ୍ରକାଶ ଥାଉ କି ମୁଁ ଶୋଭାଯାତ୍ରା ସମୟ ବ୍ୟତୀତ ଅନ୍ୟ ସମୟରେ ବଳଦଗାଡ଼ିରେ ବସିଥିଲି ଓ ବାଟରେ ମୋର ସାନ କାକା ୰ ଉପେନ୍ଦ୍ରଦାଶ ଘୋଡ଼ାରେ

ବସି ତାକୁ ଆୟତ୍ତ କରି ନେଉଥିଲେ । ତୋରା ଦୁଙ୍ଗୁରୀ ନିକଟରେ ପହଞ୍ଚିଲା ବେଳକୁ ପ୍ରାୟ ରାତି ୧.୩୦ ରୁ ୨ଟା । ସେଠାରୁ ଠିକ୍ ଶୋଭାଯାତ୍ରାର ଆରମ୍ଭ - ବାଜା, ନାଚ ଓ ଘୋଡ଼ାନାଚ ଆଦିର ପଟୁଆର ଚାଲିଲା । ତତ୍କାଳୀନ ପେଟ୍ରୋମେକ୍ସ ଆଲୋକରେ ଓ ଦୁଙ୍ଗୁରୀରୁ ତୋରା ବସ୍ତ୍ରାଳୟ କଲୋନୀକୁ ପହଞ୍ଚିଲା ବେଳକୁ ପ୍ରାୟ ପ୍ରାତଃ ୫ଟା । ବାଟରେ ଆତସବାଜୀର ଆୟୋଜନ ଓ ତାଙ୍କର ବସ୍ତ୍ରାଳୟ କଲୋନୀ ନିକଟରେ ଏକ ବିଶେଷ ଧରଣର 'ବର୍ଷାତି' ବାଣର ପ୍ରଦର୍ଶନ ସମସ୍ତଙ୍କୁ ଚକିତ କରିଥିଲା । ସେତେବେଳେ କେହି କେହି ମନେ କରୁଥିଲେ ଯେ ଏହା ଯେହେତୁ ଅତି ଉଚ୍ଚ ଧରଣର ଆତସବାଜି ତାହା ଝିଅ ଦଳର ହୋଇଥିବ । କାରଣ ସେମାନେ ଆମ ଠାରୁ ଉନ୍ନତ ଓ ଉଚ୍ଚ ଶ୍ରେଣୀର ମନେ ହେଉଥିଲେ । କିନ୍ତୁ ସେମାନଙ୍କ ପ୍ରକୃତରେ ଏସବୁ ଆୟୋଜନ କିଛି ହୋଇ ନ ଥିଲା । ବରାତ୍ ପହଞ୍ଚିବା ପରେ ସମସ୍ତଙ୍କୁ ଜଳଖିଆ ଦେବା ପରେ ସକାଳ ହେଲା ଓ ସମସ୍ତେ ନିତ୍ୟକର୍ମ ପାଇଁ ଚାରି ଆଡ଼େ ଚାଲି ଗଲେ । ଆମକୁ ସ୍ଥାନୀୟ ପ୍ରାଥମିକ ବିଦ୍ୟାଳୟରେ ରହିବା ଜାଗାର ବନ୍ଦୋବସ୍ତ କରା ଯାଇଥିଲା । ଜନ ସମାଗମର ଆଧିକ୍ୟ ଦୃଷ୍ଟିରୁ ସେମାନଙ୍କ ଆୟୋଜନର ଅସୁବିଧା ହେବା ସ୍ୱାଭାବିକ । ଯାହା ହେଉ ସନ୍ଧ୍ୟାରେ ପୁଣି ପ୍ରକୃତ ବିବାହର କାର୍ଯ୍ୟକ୍ରମ ଆରମ୍ଭ ହୋଇ ଯଥା ସମୟରେ ବିବାହ ସମ୍ପନ୍ନ ଓ ଭୋଜି ଭାତ ପରେ ରାତିରେ ଆମେ ନିଜ ଗ୍ରାମକୁ ଫେରି ଆସିଲୁଁ ଓ ୩୦.୪.୪୭ ସକାଳେ ପହଞ୍ଚିଲୁଁ । ଘରର ସମସ୍ତେ ଆମର ପହଞ୍ଚିବା ପରେ ବିବାହ ସମ୍ପର୍କରେ ବରାତରେ ଯାଇଥିବା ବନ୍ଧୁବାନ୍ଧବମାନେ ସେଠାରୁ ଫେରି ନିଜ ନିଜ ଗ୍ରାମକୁ ଚାଲି ଗଲେ । ଘରେ ରହିଲେ କେବଳ ଆମର ନିକଟ ସମ୍ପର୍କୀୟ ଓ ବରପାଲି ଓ କୁଳଟର ସ୍ତ୍ରୀଲୋକମାନେ - କେବଳ ନବବଧୂ ଆଗମନ ଓ ଦର୍ଶନ ପାଇଁ । ସେଦିନ ପ୍ରାୟ ୧୨ଟା ବେଳେ ତୋରାରୁ ବହୁ ସଂଖ୍ୟକ ବଳଦଗାଡ଼ି ଓ ପ୍ରାୟ ୧୦୦ ପର୍ଯ୍ୟନ୍ତ ଲୋକଙ୍କ ସଙ୍ଗେ ନବବଧୂ ଆଗମନ କଲେ ଓ ଗ୍ରୀଷ୍ମ ଋତୁ ପାଇଁ ତାଙ୍କର ତୃଷା ନିବାରଣ ସକାଶେ ସେମାନଙ୍କ ପହଞ୍ଚିବା ଆଗରୁ ଆମ ଗ୍ରାମର ଖମାରୀଟିକ୍ରା ଆମ୍ବତୋଟାରେ ସରବତ୍ ଯୋଗାଇବାର ବନ୍ଦୋବସ୍ତ କରା ଯାଇଥିଲା । ସେମାନେ ଘରେ ପହଞ୍ଚି ଭୋଜି ଭାତ ପରେ ସନ୍ଧ୍ୟାରେ ସମସ୍ତେ ସ୍ୱଗ୍ରାମକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ସେତେବେଳକୁ ହିସାବ କରି ଝିଅ ହିସାବରେ ବହୁ କିଛି ସାମଗ୍ରୀ ଆଣି ଥିବାର ମନେ ହେଲା । ସୁନା ପ୍ରାୟ ୫/୬ ଭରି, ପଲଙ୍ଗ, ଘଡ଼ି ଆଦି । ଆଜିକାଲି ଭଳି T.V., Cooler, Freezeର ପ୍ରଚଳନ ହୋଇ ନ ଥିଲା ବା ମୋର ଶାଶୁ ଘର ଲୋକେ ତାଙ୍କ ୪ଟି ଝିଅ ମଧ୍ୟରୁ କୌଣସି ଝିଅକୁ ସେ ସବୁ ଦେଇ ନ ଥିଲେ । ୨.୫.୪୭ ଦିନ ଚଉଠି କର୍ମ ଓ ବନ୍ଧାପଣା ସମାହିତ ହୋଇ ଭୋଜୀ ପରେ

ମଧୁରାତିର ଉପକ୍ରମ, ନୂଆଁ ଦୁଇ ଅଜଣା ଜୀବନର ଗତି ନୂତନ ଭାବେ ଆରମ୍ଭ ହେଲା । କି ସାମାଜିକ ନୀତି ଓ ନବଦମ୍ପତିଙ୍କ ଅନୁଭୂତି ସତେ ! ବିଗ୍ଭର କଲେ ମନଟା ଏକ ବିଶେଷ ଭାବଧାରାରେ ପୂରି ଯାଏ । ପ୍ରକୃତରେ ମୋର ବିବାହଟି ତତ୍କାଳୀନ ଏକ ବିଶିଷ୍ଟ ଉତ୍ସବ ରୂପେ ଜନମତରେ ଚର୍ଚ୍ଚିତ ହେଲା ।

ଏହିପରି ଭାବେ କିଛି ଦିନ କଟି ଗଲା । ୭ ଦିନ ପରେ ତୋରାରୁ ଏକ ସତ୍ୟନାରାୟଣ ପୂଜା ପାଇଁ ଆମ ଶ୍ରୀମତୀଙ୍କୁ ଡକରା ଆସିଲା ଓ ସେଥି ପାଇଁ ସେ ସେଠାକୁ ଯାଇ ୭ ଦିନ ପରେ ଫେରିଲେ । ଏହି ସମୟ ନବବିବାହିତ ଜୀବନର କ୍ଷଣିକ ଅନ୍ତର ମଧ ବିଶେଷ ଭାବନାପ୍ରଦ ହେଲା । ଏପରି ଜୁନ୍ ମାସଟି ବେହେରାରେ କଟିବା ବେଳେ ଗାଁରେ ରଥଯାତ୍ରା ଉତ୍ସବ ପାଳନ ବଡ଼ ସମାରୋହରେ ପାଳିତ ହେବା ଅବସରରେ ଦୀର୍ଘ ୧୦/୧୨ ଦିନ ଧରି ସାରା ଗାଁଟି ବିଭିନ୍ନ ଗ୍ରାମୀଣ ଉତ୍ସବ ଓ ପରମ୍ପରା ମାଧମରେ ବିଶେଷତଃ ବାହକମାନଙ୍କ ବାଦ୍ୟ ସହ ନୃତ୍ୟ ବେଶ ମନୋରମ ଓ ଚିତ୍ତାକର୍ଷକ ଥିଲା । ତତ୍କାଳୀନ ସ୍ୱନାମଧନ୍ୟ ବାହକମାନଙ୍କ ମଧରେ ଭାଟ, ବିପିନ, ଦୁର୍ଲଭ ଦାସ ଆଦି ବିଶେଷ ଉଲ୍ଲେଖନୀୟ । ଏପରି ଭାବେ ସାରା ଗ୍ରୀଷ୍ମାବକାଶ ବିଭିନ୍ନ ପର୍ବପର୍ବାଣି ଓ ଉତ୍ସବ ସମାରୋହରେ ନୂତନ ବୈବାହିକ ଜୀବନର ଅୟମାରମ୍ଭ ଓ ତାର ଅନୁଭୂତି ବେଶ ଆମୋଦ ଓ ଉନ୍ମାଦନା ସୃଷ୍ଟି କରିଥିଲା ।

**କଟକ ଯାତ୍ରା :-**

ଜୁଲାଇ ୭ ତାରିଖ ସୋମବାର ଦିନ କଲେଜ ଖୋଲିବାକୁ ଥିବାରୁ ମୁଁ ୪.୭.୪୭ ଶୁକ୍ରବାର ଦିନ ଘରୁ ସମସ୍ତଙ୍କ ଠାରୁ ବିଦାୟ ନେଇ ସମ୍ବଲପୁର ଅଭିମୁଖେ ଯାତ୍ରା ଆରମ୍ଭ ବେଳେ ଗ୍ରାମର ମୋର ଶୁଭାକାଂକ୍ଷୀ ବନ୍ଧୁଗଣ ମୋତେ ଗ୍ରାମ ଶେଷ ଭାଗ ପର୍ଯ୍ୟନ୍ତ ପାଛୋଟି ଆଣିଥିଲେ । ସେମାନଙ୍କ ଶକ୍ତି ମୁତାବକ ପୂର୍ବ ଭଳି ଟ୦। (୨୫ ପ.) ଆରମ୍ଭ କରି ଏକାଧିକ ଟଙ୍କା ପର୍ଯ୍ୟନ୍ତ ହାତ ଖର୍ଚ୍ଚ ପାଇଁ ଅଯାଚିତ ଭାବେ ଦାନ କରୁଥିଲେ । ମୁଁ ସେମାନଙ୍କ ପାଇଁ କଟକରୁ ଫେରିବା ବେଳେ କିଛି ବ୍ୟବହାର୍ଯ୍ୟ ଜିନିଷ ବା ଅନ୍ୟ କିଛି ଆଣି ପ୍ରତିଦାନ ରୂପେ ଦେବାକୁ ପଡୁଥିଲା ।

ବରଗଡ଼ରୁ ସମ୍ବଲପୁର ଯାଇ ବନ୍ଧୁ ଧ୍ରୁବଚରଣ ତ୍ରିପାଠୀଙ୍କ ବସାରେ ରାତ୍ର ଯାପନ କରି ତାର ପରଦିନ ସକାଳୁ ତାଙ୍କ ବସାରେ ପ୍ରାତଃ ଭୋଜନ ପରେ ପୂର୍ବ ପ୍ରଥାନୁସାରେ କଛି ମୋଟର ସର୍ଭିସ ଯୋଗେ ମେରାମଣ୍ଡଳୀ ପହଞ୍ଚିଲୁ । ବାଟରେ ବସ୍‌ଟି ଯାନ୍ତ୍ରିକ ତ୍ରୁଟି ପାଇଁ ବିଳମ୍ବିତ ସମୟରେ ମେରାମଣ୍ଡଳୀ ପହଞ୍ଚିଲା ଓ ତାଳଚେର

ଟ୍ରେନ୍ ଧରି ୭.୩୦ ମିନିଟ୍‌ରେ କଟକ ପହଞ୍ଚିଲୁ । ସ୍ନାନ କର୍ମ ସମାପନ ପରେ ମେସ୍‌ରେ ହଷ୍ଟେଲ୍‌କୁ ଫେରି ବିଶ୍ରାମ ନେଲୁଁ । ପର ଦିନ ସକାଳେ ମଧ୍ୟ ମେସ୍ ଚାଲି ନ ଥିବାରୁ ବାହାରେ ମାଡ୍ରାସୀ ହୋଟେଲରେ ଖାଇବାକୁ ହେଲା । ଅବଶ୍ୟ ରାତ୍ରରେ ମେସ୍ ଚାଲିଲା । କଲେଜରେ ମଧ୍ୟ ପାଠ ପଢ଼ା ଆରମ୍ଭ ହେଲା । ୪ର୍ଥ ବର୍ଷ ପାଇଁ ମୋତେ ଉପର ମହଲା ରୁମ୍ ନମ୍ବର ୩୭ରେ ସ୍ଥାନ ମିଳିଥିଲା ଓ ତେଣୁ ସେଠି ଯାଇ ରହିଲି । ଅନ୍ୟ ବନ୍ଧୁମାନେ ମଧ୍ୟ ଧୀରେ ଧୀରେ ଆସି ପହଞ୍ଚିବାରେ ଲାଗିଲେ ।

ଏ ମଧ୍ୟରେ ତୋରାରୁ ଚିଠି ପାଇ ଜାଣିଲି ଯେ ମୋ ସ୍ତ୍ରୀ ତୋରାକୁ ଚାଲି ଯାଇ ଅଛନ୍ତି । ଏପରି ଭାବେ ପତ୍ରର ଆଦାନ ପ୍ରଦାନ କରିଆରେ ଗାଁର ଓ ଅନ୍ୟମାନଙ୍କ ଖବର ମିଳୁ ଥାଏ । ମଝିରେ ମଝିରେ ଆମ ଅଞ୍ଚଳର କୌଣସି ସମ୍ପର୍କୀୟ ବ୍ୟକ୍ତିଙ୍କ କାର୍ଯ୍ୟ କଟକରେ ଥିଲେ ସେ ସବୁ ବିଷୟରେ ବୁଝାବୁଝି କରି ଖବର ଦେବାକୁ ପଡୁଥିଲା । କାରଣ ଏପଟର ଲୋକେ ସାଧାରଣତଃ ସେପଟକୁ ଯାଇ କୌଣସି କାମ କରିବା ତାଙ୍କ ପକ୍ଷେ ସମ୍ଭବ ନ ଥିଲା । ସେ ବର୍ଷର ୨୩.୭ ଦିନ ଏକ ବିଶେଷ ଘଟଣା ଘଟିଲା । ତାହା ଏକ ହଷ୍ଟେଲ୍‌ର ଏକ ହରିଜନ ଛାତ୍ରଙ୍କର ବାସନ ଧୋଇବାକୁ ନେଇ । ମେସ୍‌ର ଚାକର ମାନେ ତାଙ୍କ ଖାଇବା ବାସନ ଧୋଇବାକୁ ମନା କରି ଧର୍ମଘଟ ଆରମ୍ଭ କରିବାରୁ ମେସ୍ କାର୍ଯ୍ୟ ପ୍ରାୟ ତିନି ଦିନ ଧରି ଅଚଳ ହୋଇ ପଡ଼ିଲା ଓ ଆମକୁ ପତ୍ରରେ ଖାଇବାକୁ ପଡ଼ିଲା ଓ ନିଜ ନିଜର ପତ୍ର ଉଠାଇ ସଫା କରିବାକୁ ପଡ଼ିଲା । ସେତେବେଳେ ହଷ୍ଟେଲ୍ ସୁପରିଟେଣ୍ଡେଣ୍ଟ ଥିଲେ ଶ୍ରୀଯୁକ୍ତ P.S. Sundaram, Prof. of English । ଶେଷରେ ତାଙ୍କର ନିଷ୍ପତ୍ତି କ୍ରମେ ସେ ନିଜେ ସେହି ଜନୈକ ହରିଜନ ଛାତ୍ରଙ୍କର ବାସନ ଧୋଇଲେ ଓ ତାର ଏକ ସମାଧାନ ପନ୍ଥା ବାହାର କରିବାରୁ ମେସ୍ କାମ ପୂର୍ବ ଭଳି ଚାଲିଲା ।

## ଭାରତ ସ୍ୱାଧୀନ ହେଲା :-

ବର୍ଣ୍ଣିତ ବର୍ଷଟି ଭାରତ ଇତିହାସରେ ଏକ ଯୁଗାନ୍ତକାରୀ ବର୍ଷ । କାରଣ ଏ ବର୍ଷ ଭାରତ ବିଦେଶୀ ଶାସନର ଶିଙ୍କୁଳିରୁ ମୁକ୍ତ ହେବାର ସୂତ୍ରପାତ ଆଗରୁ ଜଣା ଥିଲା । ଏହି ବର୍ଷ ଅଗଷ୍ଟ ୧୪ ତାରିଖ ମଧ୍ୟ ରାତ୍ରିରୁ ଅର୍ଥାତ୍ ୧୯୪୭ ଅଗଷ୍ଟ ୧୫ ତାରିଖରୁ ଭାରତର ଶାସନ ଭାର ତତ୍କାଳୀନ ବ୍ରିଟିଶ୍ ଭାଇସ୍‌ରାୟ ମାଉଣ୍ଟ ବେଟେନ୍ ଭାରତର ଜନପ୍ରିୟ ସର୍ବଜନ ସମର୍ଥିତ ଯୋଗ୍ୟତମ ସନ୍ତାନ ପଣ୍ଡିତ ଜବାହରଲାଲ ନେହେରୁଙ୍କୁ ଭାରତର ପ୍ରଧାନମନ୍ତ୍ରୀ ଭାବେ ହସ୍ତାନ୍ତର କରିଥିଲେ । ସେହି ଦିନ ବ୍ରିଟିଶ୍ ପତାକା ଇଉନିଅନ୍ ଜେକ୍‌କୁ ଖସାଇ ଭାରତର ଜାତୀୟ ପତାକା (ତ୍ରିରଙ୍ଗ ଶୋଭିତ

ଅଶୋକ ଚକ୍ର ଚିହ୍ନିତ) ଦିଲ୍ଲୀର ଲାଲ କିଲ୍ଲା ଉପରେ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କ ଦ୍ୱାରା ଉତ୍ତୋଳନ କରାଗଲା । ଏସବୁ ଖବର ଆକାଶବାଣୀ କରିଆରେ ପ୍ରଚ୍ଚରିତ ଓ ପ୍ରସାରିତ ହେଉ ଥାଏ । ଭାରତର ସର୍ବତ୍ର ପୁରପଲ୍ଲୀମାନଙ୍କରେ ମଧ୍ୟ ଏହି ଉପଲକ୍ଷେ ନାଚ ଗୀତ, ଭୋଜି ଭାତ ଓ ସରକାରୀ ବେସରକାରୀ କୋଠାବାଡ଼ି ଆଲୋକ ମାଳାରେ ବିଭୂଷିତ ଓ ସଜ୍ଜିତ ହୋଇ ଜନମନ ହରଣ କରୁଥିଲା । ତେବେ ଆମ ରେଭେନ୍ସା କଲେଜ ବା ସେଥିରୁ ବାଦ୍ ଯାଆନ୍ତା କିପରି ? ସେହି ରାତ୍ରିରେ ଆମ କଲେଜଟି ରଙ୍ଗ ବେରଙ୍ଗ ବିଜୁଳି ଆଲୋକରେ ସୁସଜ୍ଜିତ ହୋଇ ଆମ୍ଭମାନଙ୍କ ମନୋହରଣ କରିଥିଲା । ଆମ ମେସ୍‌ରେ ମଧ୍ୟ ଭୋଜି ଭାତର ଏକ ବିଶେଷ ଆୟୋଜନ କରାଯାଇଥିଲା । ପ୍ରକୃତରେ ସେ ଦିନର ଅନୁଭୂତି ମନେ ପଡ଼ିଲେ ଏବେ ମଧ୍ୟ ସେହି ସୁଦୃଶ୍ୟ ଆୟୋଜନ ଓ ବସ୍ତୁବର୍ଗ ଖାଦ୍ୟ ସମ୍ବଳିତ ଭୋଜି ଭାତର ଆୟୋଜନ ମନରେ ଅପାର ଆନନ୍ଦ ତଥା ଆଲୋଡ଼ନ ସୃଷ୍ଟି କରେ । ଭାରତର ଦୀର୍ଘ ୨୫୦ ବର୍ଷର ପରାଧୀନତା ଦୂରୀଭୂତ ହୋଇ ଦୁର୍ଦ୍ଦାନ୍ତ, ବର୍ବର, ଏକଛତ୍ରବାଦୀ ଇଂରେଜ ରାଜତ୍ୱ ଭାରତରୁ ସମୂଳେ ମୂଳୋତ୍ପାଟନ ହେଲା ସତ୍ୟ । ମାତ୍ର ପୂଜ୍ୟ ବାପୁଜୀଙ୍କ ଅଖଣ୍ଡ ଭାରତର ସ୍ୱାଧୀନତା ପ୍ରାପ୍ତି ତତ୍କାଳୀନ ରାଜନୀତିର ତୁଙ୍ଗ ନେତାଙ୍କ ସ୍ୱୀକାରୋକ୍ତି ହିସାବରେ ଭାରତ ଓ ପାକିସ୍ତାନ ଦ୍ୱିଖଣ୍ଡିତ ବିଭାଜିତ ହେଲା । ବାପୁଜୀଙ୍କ ସୁପରିକଳ୍ପିତ ସ୍ୱାଧୀନ ଭାରତ ଓ ରାମରାଜ୍ୟର ସୃଷ୍ଟି ଅପସରି ଗଲା । ଠିକ୍ ସେ ଦିନ ପୂଜ୍ୟ ବାପୁଜୀ, ସ୍ୱାଧୀନତାର ଦାୟିତ୍ୱ ନେବା ବେଳେ, ଦିଲ୍ଲୀ ବାହାରେ ନୂଆଁଖାଲିରେ ହିନ୍ଦୁ ମୁସଲମାନ ଦଙ୍ଗା ସମାଧାନରେ ବ୍ୟସ୍ତ ରହିଲେ । ଏପରିକି ତାଙ୍କ ନିର୍ଦ୍ଦେଶ ଓ ଉପଦେଶ ଅନୁସାରେ କଂଗ୍ରେସ ନେତାମାନେ ପରିଚ୍ଚାଳିତ ନ ହେବାରୁ ସେ କଂଗ୍ରେସର ପ୍ରାଥମିକ ସଦସ୍ୟ ପଦ ପରିତ୍ୟାଗ କରି ସାରି ଥିଲେ । ପ୍ରକାଶ ଥାଉ କି ଯେଉଁ ମହାତ୍ମା ସ୍ୱାର୍ଥ ତ୍ୟାଗୀ ସଙ୍ଗଠକ ଓ ଜାତିର ପିତାଙ୍କ ଆପ୍ରାଣ ଉଦ୍ୟମରେ ଭାରତ ତା'ର ସ୍ୱାଧୀନତା ଲାଭ କଲା, ତାହାର ଐତିହାସିକ ଭିତ୍ତି ଆଲୋଚନା କଲେ ଅଭିଭୂତ ହେବାକୁ ହୁଏ । ଏହି ସ୍ୱାର୍ଥତ୍ୟାଗୀ ଦେଶପ୍ରେମୀ, ଅର୍ଦ୍ଧ ଲଙ୍ଗଳା ଫକୀର ଯାହାଙ୍କ ଇଙ୍ଗିତରେ ସାରା ବିଶ୍ୱ ଟଳମଳ ଓ ଥରହର ହେଉ ଥିଲା ସେ ଥିଲେ ସତ୍ୟ ଓ ଅହିଂସାର ଉପାସକ । ତାଙ୍କ ନିର୍ଦ୍ଦେଶରେ ଭାରତ ଛାଡ଼ ଆନ୍ଦୋଳନର ପ୍ରବଳାଗ୍ନି ହୁ ହୁ ହୋଇ ଜଳୁଥିଲା ଓ ବିଦେଶୀ ଜିନିଷ ବ୍ୟବହାର ବର୍ଜନ, ସ୍ୱଦେଶୀ ଜିନିଷ ପ୍ରତି ଆଦର (ବିଦେଶୀ ଲୁଗା ଓ ଯାବତୀୟ ବ୍ୟବହାର୍ଯ୍ୟଜିନିଷର ବଏକଟ୍), ସାରା ଭାରତର ଆବାଳ ବୃଦ୍ଧ ବନିତା, ସରକାରୀ, ବେସରକାରୀ ନେତା, କମ୍ୟୁନିଷ୍ଟ ଛାତ୍ରଛାତ୍ରୀଗଣ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ କେତେ ଯେ କାରାବରଣ

କରିଛନ୍ତି ଓ ବିଦେଶୀ ଶାସକଙ୍କ ନିର୍ଯ୍ୟାତନା ପାଇଛନ୍ତି ତାର ଇୟତ୍ତା ନାହିଁ। ସେ ସବୁ ବର୍ଣ୍ଣନା କରି ବସିଲେ ଏହାର କଲେବର ବୃଦ୍ଧି ହେବ। କିନ୍ତୁ ଏତିକି ସମସ୍ତଙ୍କୁ ମନେ ରଖିବାକୁ ହେବ ଯେ ଆଗାମୀ ଭବିଷ୍ୟତ ବଂଶଧରମାନେ ଯେତେବେଳେ ଇତିହାସ ପୃଷ୍ଠାରୁ ପଢ଼ିବାକୁ ପାଇବେ ଯେ ଜଣେ ମାତ୍ର ଭାରତୀୟ ଗରିବ ଦେଶବାସୀଙ୍କ ପାଇଁ ଆଣ୍ଠୁ ନ ଲୁଚିବା ଭଳି ଖଦୀ ଖଣ୍ଡେ ଓ ଚଦର ଖଣ୍ଡେ ନିଜର ପୋଷାକ ବୋଲି ଗ୍ରହଣ କରିଥିଲେ ସେହି ଦୂରଦର୍ଶୀ, ଈଶ୍ୱର ବିଶ୍ୱାସୀ, ସତ୍ୟନିଷ୍ଠ, ଅହିଂସାର ପୂଜାରୀ ବାପୁଜୀଙ୍କ କେବଳ 'ଭାରତ ଛାଡ଼' ଏହି ଦୁଇଟି ଶବ୍ଦର ମ୍ୟାଜିକରେ ସାରା ବିଶ୍ୱ ସ୍ତମ୍ଭୀଭୂତ ହେଲା। ମହାତ୍ମା ଗାନ୍ଧିଙ୍କ ଏପରି ଏକ ଅହିଂସା ଓ ନିଷ୍ପାପର ଆନ୍ଦୋଳନ ଯୋଗୁଁ ଇଂରେଜମାନଙ୍କ ପରି ଏକ ଶକ୍ତିଶାଳୀ ଜାତିର ପଳାୟନ ଅବିଶ୍ୱାସନୀୟ।

ଇତିହାସ ପୃଷ୍ଠାରୁ ଓ ପୁରାଣମାନଙ୍କରୁ ମହାବୀର ଆଲେକ୍‌ଜାଣ୍ଡାର, ଝାନ୍ସୀ ରାଣୀ, ଅଶୋକ, ଖାରବେଳ, ମୁକୁନ୍ଦ ଦେବ ତଥା ମୋଗଲମାନଙ୍କ ସାମ୍ରାଜ୍ୟ ବିସ୍ତାର ଓ ପତନ ତଥା ରାବଣ, କଂସର ଦିଗବିଜୟର ଘଟଣାବଳୀ ପାଠ କଲେ ଏପରି ଏକ ଅଭିନବ ଘଟଣା ହୁଏତ ଅଳୀକ ବା କପୋଳକଳ୍ପିତ ମନେ ହୋଇପାରେ। ଯେତେବେଳେ ଭାରତର ପୌରାଣିକ ଇତିହାସରୁ ରାମଚନ୍ଦ୍ର, ଯୁଧିଷ୍ଠିର, କୃଷ୍ଣ, ଭୀମ, ଦ୍ରୋଣ, ଏକଲବ୍ୟ, ଧରମା, ବାଜି ରାଉତ ଆଦିଙ୍କ ବିଷୟରେ ଅନୁଧ୍ୟାନ କରିବେ ସେତେବେଳେ ସେମାନଙ୍କ ମନରେ ଗଭୀର ରେଖାପାତ କରି ପ୍ରତୀୟମାନ ହେବ ଯେ ଏହି ପବିତ୍ର ପୁଣ୍ୟତୋୟା ଗଙ୍ଗା ନଦୀ ପ୍ରବାହିତ ଭାରତରେ ସବୁ କିଛି ସମ୍ଭବ। "ଯାହା ନାହିଁ ଭାରତେ, ତାହା ନାହିଁ ଜଗତେ।" 'India is the Epitome of the world' - ଭାରତ ପୃଥିବୀର ଏକ କ୍ଷୁଦ୍ର ଅନୁରୂପ।

ଭାରତର ସ୍ୱାଧୀନତା ପ୍ରାପ୍ତିର ଅବ୍ୟବହିତ ପୂର୍ବରୁ ମୋର ସ୍ମରଣ ଶକ୍ତିର ପରିସରଭୁକ୍ତ ଘଟଣା ମଧ୍ୟରେ ମୋର କେତେକ ବଦଅଭ୍ୟାସ ମଧ୍ୟରୁ ଧୂମପାନ ଯଦିଓ ମୋର ଅଭ୍ୟାସଗତ ନ ଥିଲା, ତଥାପି କୁସଙ୍ଗ ମେଳରେ ପଡ଼ି ମୁଁ ଏକାଧିକ ବାର ଦଶ ପର୍ଯ୍ୟନ୍ତ ବିଡ଼ି ବା ସିଗାରେଟ୍ ସେବନ କରିଥିଲି। ସେହି ସ୍ୱାଧୀନତା ପ୍ରାପ୍ତିର ଶୁଭ ଅବସରରେ ମୁଁ ଏହି ସିଦ୍ଧାନ୍ତରେ ଉପନୀତ ହେଲି ଯେ ଆଉ ଜୀବନରେ ଏ କୁଅଭ୍ୟାସର ବଶବର୍ତ୍ତୀ ହେବି ନାହିଁ। ଭଗବତ୍ କୃପାରୁ ଏ ପର୍ଯ୍ୟନ୍ତ ମୁଁ ମୋର ସିଦ୍ଧାନ୍ତରେ ଅଟଳ ରହିଛି। ସେଥି ପ୍ରତି ଭଗବାନଙ୍କର ଅଶେଷ କରୁଣା ବୋଲି ମନେ ହୁଏ। ମୁଁ ବାଲ୍ୟକାଳରୁ ଅଦ୍ୟାବଧି କୁକୁଡ଼ା ମାଂସ ବା ଅଣ୍ଡା ଖାଇବାର

କୁବାସନାରୁ ନିଜକୁ ଉର୍ଦ୍ଧ୍ୱରେ ରଖି ପାରିଥିବାରୁ ଭାଗ୍ୟବାନ ବୋଲି ନିଜକୁ ମନେ କରେ, ଯାହାକି ବର୍ତ୍ତମାନ ସଭ୍ୟତାର ବହୁ ଲୋଭନୀୟ ଓ ଅତ୍ୟନ୍ତ ଦରକାରୀ ଖାଦ୍ୟ ରୂପେ ଗୃହୀତ। ମଦ, ମାଂସ, ମତ୍ସ୍ୟାଦି ଦ୍ରବ୍ୟ ଉତ୍ତେଜକ ଓ ହିଂସା ପ୍ରଣୋଦିତକାରୀ ଅଟେ।

ସ୍ୱାଧୀନତା ପ୍ରାପ୍ତିର ବହୁ ଆଡ଼ମ୍ବର ଓ ସମାରୋହର ଠିକ୍ ପରେ ପରେ ଭାରତରେ କଂଗ୍ରେସ ସରକାର ପ୍ରତିଷ୍ଠିତ ହେଲା ଓ ତତ୍କାଳୀନ ସ୍ୱାଧୀନ ଭାରତରେ ଶେଷ ଭାଇସ୍‌ରାୟଙ୍କ ପରେ ଚକ୍ରବର୍ତ୍ତୀ ରାଜଗୋପାଲାଚ୍ଚାରୀ ଓ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ ନେତୃତ୍ୱରେ ଗଠିତ ମନ୍ତ୍ରୀମଣ୍ଡଳ ଦିଲ୍ଲୀରେ ଚ୍ଚଳିଲା। ଏହି ମନ୍ତ୍ରୀମଣ୍ଡଳରେ ଉପ ପ୍ରଧାନମନ୍ତ୍ରୀ ଭାବେ ଲୌହ ମାନବ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଓ ଅନ୍ୟମାନଙ୍କ ମଧ୍ୟରେ ଅବୁଲ କଲାମ୍ ଆଜାଦ, ଗୋବିନ୍ଦ ବଲ୍ଲଭ ପନ୍ଥ, ଜଗଜୀବନ ରାମ ଅଗ୍ରଗଣ୍ୟ ଥିଲେ। ବିଭିନ୍ନ ପ୍ରାଦେଶିକ ଶାସନ ଦାୟିତ୍ୱ ପାଇଁ ମନ୍ତ୍ରୀମଣ୍ଡଳ ତଥା ରାଜ୍ୟପାଳଗଣ ମଧ୍ୟ ନିଯୁକ୍ତି ପାଇଲେ। ଓଡ଼ିଶାରେ ପ୍ରଥମ ପ୍ରଧାନମନ୍ତ୍ରୀ ରୂପେ କଳିଙ୍ଗ କେଶରୀ ତଥା ବିରାଟ ଉତ୍କଳର ନିର୍ମାତା ହରେକୃଷ୍ଣ ମହତାବ ଓ ତାଙ୍କ ମନ୍ତ୍ରୀମଣ୍ଡଳ କାର୍ଯ୍ୟଭାର ଗ୍ରହଣ କଲେ। ସେତେବେଳେ ପ୍ରାଦେଶିକ ସ୍ତରରେ ମଧ୍ୟ ଶାସନ ଦଳର ନେତାଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଉ ଥିଲା। କାଳକ୍ରମେ ତାର ସଂଶୋଧନ ଓ ପରିବର୍ତ୍ତନ କରାଯାଇ ଏବେ ମୁଖ୍ୟମନ୍ତ୍ରୀ ରୂପେ କଥିତ। ଆମର ପ୍ରଦେଶରେ ତତ୍କାଳୀନ ସ୍ୱାଧୀନତାର ପ୍ରଥମ ରାଜ୍ୟପାଳ ରୂପେ ଡ. କୈଳାସ ନାଥ କାଟଜୁ କାର୍ଯ୍ୟଭାର ଗ୍ରହଣ କରିଥିଲେ।

ତତ୍କାଳୀନ ଅନ୍ୟ ଏକ ଉଲ୍ଲେଖନୀୟ ଘଟଣାର ସୂଚନା ନ ଦେଇ ଏହାର ଯଥାର୍ଥ ପ୍ରାସଙ୍ଗିକତାର ଅଭାବ ରହିଯିବ ବୋଲି ମନେ ହୁଏ। ଭାରତ ସ୍ୱାଧୀନତା ପ୍ରାପ୍ତିର ସମାନ ସ୍ତରରେ ଏହି ବିଖଣ୍ଡିତ ଭାରତର ଅନ୍ୟ ଏକ ଭାଗ ପଶ୍ଚିମରେ ପଞ୍ଜାବ, ସିନ୍ଧୁ ପ୍ରଦେଶ ଓ ପୂର୍ବରେ ପୂର୍ବ ବଙ୍ଗକୁ ନେଇ ନୂତନ ଭାବେ ଗଠିତ ପାକିସ୍ଥାନ ମଧ୍ୟ ସ୍ୱାଧୀନତା ଲାଭ କଲା ଏକ ମୁସଲମାନ ଅଧ୍ୟୁଷିତ ଦେଶ ହିସାବରେ। ତା'ର ପ୍ରଧାନମନ୍ତ୍ରୀ ହେଲେ ମହମ୍ମଦ ଅଲ୍ଲି ଜିନ୍ନା। ଜାମ୍ମୁ କାଶ୍ମୀର ରାଜ୍ୟ ଭାରତର ଅଂଶ ବିଶେଷ ଥାଇ ମଧ୍ୟ କୌଣସି ଦେଶଭୁକ୍ତ ହୋଇ ରହିଲା ନାହିଁ। କାରଣ ସେଠାରେ ମୁସଲମାନ ଅଧିବାସୀଙ୍କ ବହୁଳତା ଦୃଷ୍ଟିରୁ ହେଉ ବା ଅନ୍ୟ କୌଣସି ରାଜନୈତିକ କାରଣରୁ ହେଉ ତା'ର ଶାସନ ଅନ୍ୟ ଭାବରେ ପରିଚ୍ଚଳିତ ହେଲା ଓ ତାହାର ଏ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ରୂପେ ସମାଧାନ ହୋଇ ପାରି ନାହିଁ।

ସ୍ୱାଧୀନତା ପ୍ରାପ୍ତି ପୂର୍ବରୁ ଭାରତ ତଥା ପ୍ରଦେଶମାନଙ୍କୁ ଇଂରେଜମାନେ ଶାସନ କରୁଥିଲେ ଓ ତାଙ୍କ ଶାସନର ସୁବିଧା ପାଇଁ କେବଳ ଅଫିସ ଗୃହ, କୋଠାବାଡ଼ି ଆଦି ତିଆରି କରିଥିଲେ । ସେତେବେଳେ ଓଡ଼ିଶାକୁ ଶାସନ କରିବା ପାଇଁ କେଣ୍ଟନମେଣ୍ଟ ରୋଡ଼ରେ ସ୍ଥିତ କେତେକ ବଡ଼ କର୍ମଚାରୀଙ୍କ ବାସଗୃହ ଓ କେତେକ ଅସ୍ଥାୟୀ ଗୃହ ଭଳି ଅଫିସ ଘର ନିର୍ମାଣ କରା ଯାଇଥିଲା । ସେ ସବୁ ଗୃହଗୁଡ଼ିକ ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ ଯେ କିପରି ଭାବେ ଇଂରେଜ କର୍ମଚାରୀଗଣ ସେପରି ଗୃହରେ ଅବସ୍ଥାନ କରୁଥିଲେ । କାରଣ ସେ ଘରଗୁଡ଼ିକର ଛାତ ଗୁଡ଼ିକ ମୋଟା ଖଡ଼ ମୋଟା ଛଣ ଓ ପୁଆଳରେ ପ୍ରାୟ ୧ ଫୁଟରୁ ବେଶୀ ବହଳରେ ଛପର କରା ଯାଉଥିଲା । ଅବଶ୍ୟ ତା'ର ଚଟାଣ ଆଦି ସିମେଣ୍ଟ କରାଯାଇ ଅନ୍ୟାନ୍ୟ ବାସୋପଯୋଗୀ ଉପକରଣର ସୁବିଧା କରା ଯାଇଥିଲା । ସେହି ରାସ୍ତାରେ ଗଲେ ଅନ୍ୟାନ୍ୟ ଆଧୁନିକ ଧରଣର ସୁଉଚ୍ଚ ଅଟ୍ଟାଳିକାମାନ ତିଆରି ହୋଇଥିଲେ ହେଁ ପୂର୍ବର ସେହି କୁଟାଛପର ସରକାରୀ ଗୃହଗୁଡ଼ିକ ଅକ୍ଷତ ଅବସ୍ଥାରେ ରହିଛି । ଅବଶ୍ୟ ଏହା ସ୍ୱାସ୍ଥ୍ୟ ଦୃଷ୍ଟିରୁ ହିତକର ଓ ବାସୋପଯୋଗୀ ।

ଓଡ଼ିଶାର ନୂତନ ପ୍ରଦେଶ ଗଠନ ୧.୪.୧୯୩୬ରୁ ହୋଇଥିଲେ ମଧ୍ୟ ନିଜର ଶାସନ ସୁବିଧା ସକାଶେ ଉପଯୋଗୀ କୋଠା ଆଦି ତିଆରି ହୋଇ ନ ଥିଲା । ଆଗରୁ ପ୍ରଦେଶକୁ ସ୍ୱାୟତ୍ତ ଶାସନ ଅଧିକାର ଦିଆ ଯାଇଥିଲା । ତଥାପି ଭାରତ ସରକାରଙ୍କ ପୂର୍ଣ୍ଣ କର୍ତ୍ତୃତ୍ୱ ପ୍ରାଦେଶିକ ସରକାର ଉପରେ ଜାହିର କରା ଯାଉଥିଲା । ପ୍ରଥମ କରି ଓଡ଼ିଶାର ତତ୍କାଳୀନ ପ୍ରଧାନମନ୍ତ୍ରୀ ଭାବେ ପାରଳାଖେମୁଣ୍ଡି ମହାରାଜ, ନିତ୍ୟାନନ୍ଦ କାନୁନ୍‌ଗୋ, ବିଶିଷ୍ଟ କବି ଗୋଦାବରୀଶ ମିଶ୍ର, ସମ୍ବଲପୁରରୁ ବୋଧରାମ ଦୁବେ ପ୍ରଭୃତି ମନ୍ତ୍ରୀମଣ୍ଡଳରେ ସାମିଲ ହୋଇ ଥିଲେ । ହେଲେ ହେଁ ଓଡ଼ିଶାର ପ୍ରଭୂତ ଉନ୍ନତି ବିଧାନ ପାଇଁ ବିଶେଷ କିଛି ଆଖିଦୃଶିଆ କାମ କରାଯାଇ ଥିବାର ନଜିର ନ ଥିଲା । ସ୍ୱାଧୀନତା ପ୍ରାପ୍ତି ପରେ ଯେତେବେଳେ ଓଡ଼ିଶା ବିଧାନସଭା କାମ ଆରମ୍ଭ କରାଗଲା ତାହା ତତ୍କାଳୀନ ରେଭେନ୍ସା କଲେଜର ହଲ୍‌ରେ ପ୍ରଥମ କେତେ ବର୍ଷ ପାଇଁ ବିଧାନସଭା ବୈଠକ ବସି ଥିଲା ଓ ଆମେ ସେଥିରେ ଯୋଗ ଦେଇ ବିଧାନସଭା ସମ୍ପର୍କରେ ସମ୍ୟକ୍ ଧାରଣା କରିବାର ସୁଯୋଗ ଲାଭ କରି ପାରିଥିଲୁଁ ।

ସ୍ୱାଧୀନତା ପ୍ରାପ୍ତିର ଉଦ୍ଦେଶ୍ୟରେ ଅନୁଷ୍ଠିତ ମହୋତ୍ସବ ପରେ ଆମର କଲେଜରେ ରୀତିମତ ପାଠ୍ୟଦାନ ଓ ଦୈନନ୍ଦିନ କାର୍ଯ୍ୟକ୍ରମ ସୁରୁଖୁରୁରେ ଚାଲିଲା ଓ ପ୍ରାୟ ୨ ମାସ ପରେ ଅର୍ଥାତ୍ ଅକ୍ଟୋବର ମାସରେ ଦଶହରା ଛୁଟି ହେତୁ ମୁଁ

ଘରକୁ ଗଲି । ପ୍ରାୟ ମାସେ କାଳ ମଉଜ ମଜଲିସରେ ଦିନ କାଟିବା ପରେ ଦଶହରା ଛୁଟି ପରେ ପୁଣି ମନକୁ ସାନ୍ତ୍ୱନା ଦେଇ କଟକ ଚ୍ଲି ଆସିଲି । ପରେ ପରିସ୍ଥିତିର ମୁକାବିଲା କରି ଚତୁର୍ଥ ବର୍ଷ ବିଜ୍ଞାନ ପାଠର ତାତ୍ପର୍ଯ୍ୟରେ ସେ ବର୍ଷଟି କଟାଇ ଡିଗ୍ରୀ ହାସଲ କରିବାକୁ ହେବ ଏ ଦୃଢ଼ତା ରଖି ପାଠ ପଢ଼ାରେ ମନୋନିବିଷ୍ଟ ସହକାରେ ଅଧ୍ୟୟନରତ ହେଲି । ସମୟ ମିଳିଲେ ସାଙ୍ଗ ସାଥୀ ମେଳେ କେବେ କିପରି ସିନେମା ବା ଥିଏଟର ଉପଭୋଗ କରିବାକୁ ପଡୁଥିଲା । ଏପରି ଭାବେ ନଭେମ୍ବର ଓ ଡିସେମ୍ବର ମାସଦ୍ୱୟ ଅତିବାହିତ ହେଲା । ୧୯୪୮ ଜାନୁୟାରୀ ୧ ତାରିଖରେ କଟକର ୩ୟ ସିନେମା ହଲ୍ 'ହିନ୍ଦ' ଉଦ୍‌ଘାଟିତ ହେଲା ଓ ପ୍ରଥମ କରି 'ସିନ୍ଦୁର' ଅଭିନୀତ ହୋଇଥିଲା । କିଶୋର କୁମାର ମୁଖ୍ୟ ଅଭିନେତା - ବିଧବା ବିବାହ ପ୍ରଚଳନ ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ।

ସ୍ୱାଧୀନତା ପ୍ରାପ୍ତି ପରେ ଜାତୀୟ ନେତାମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଲୌହମାନବ ତଥା ଉପ ପ୍ରଧାନମନ୍ତ୍ରୀ ସର୍ଦ୍ଦାର ପଟେଲଙ୍କ ଦୂରଦର୍ଶୀ ଯୋଜନାର ପ୍ରଥମ ପଦକ୍ଷେପ ହେଲା ଭାରତରେ ଥିବା ବିଭିନ୍ନ ସ୍ୱୟଂ ଶାସିତ ଗଡ଼ଜାତମାନଙ୍କ ମିଶ୍ରଣ । ଭାରତ ମାତାର କଳେବର ବୃଦ୍ଧି ତଥା ଏକତ୍ରୀକରଣର କର୍ମପନ୍ଥା ନିର୍ଦ୍ଧାରଣ ହେଲା । ବିଶାଳ ଉତ୍କଳ ଗଠନର ପ୍ରୟାସରେ ଉଚ୍ଚ ଆକାଂକ୍ଷା ପୋଷଣ ପୂର୍ବକ କର୍ମପନ୍ଥା ନିର୍ଦ୍ଧାରଣ କରା ଗଲା । ସୁଯୋଗ ନେଇ ଓଡ଼ିଶାର ୨୬ଟି ଗଡ଼ଜାତକୁ ଓଡ଼ିଶାରେ ମିଶାଇବାର ଉଦ୍ଦେଶ୍ୟରେ ବୃହତ୍ତର ଭାରତ ନିର୍ମାଣର ପରିକଳ୍ପନା କରି ସର୍ଦ୍ଦାର ପଟେଲଙ୍କୁ ଓଡ଼ିଶା ଆଗମନର ନିମନ୍ତ୍ରଣ କରି ୩୧.୧୨.୪୭ ଇ. ଦିନ ବା ୧୯୪୭ ଶେଷ ଭାଗରେ ଓଡ଼ିଶାର ସମସ୍ତ ଗଡ଼ଜାତର ରାଜା ତଥା ତାଙ୍କ ପ୍ରତିନିଧିମାନଙ୍କର ଏକ ସଭା ଆହ୍ୱାନ କରିଥିଲେ । ଉକ୍ତ ସଭାରେ ଓଡ଼ିଶାର ମୟୂରଭଞ୍ଜ ଗଡ଼ଜାତ ବ୍ୟତୀତ ବାକୀ ସମସ୍ତେ ଯୋଗ ଦେଇଥିଲେ । ଉକ୍ତ ସଭାରେ ପଟେଲଙ୍କ ପ୍ରସ୍ତାବ ଓ ଆହ୍ୱାନ କ୍ରମେ ସମସ୍ତେ ବିନା ଆପତ୍ତିରେ ଅବଶ୍ୟ ଅତି ଦୁଃଖରେ ଓଡ଼ିଶାରେ ମିଶି ଯିବାର ଚୁକ୍ତିପତ୍ରରେ ସ୍ୱାକ୍ଷର କରିଥିଲେ । ସେହି ଚୁକ୍ତି ଅନୁସାରେ ୧.୧.୪୮ ଇ. ଦିନ ଓଡ଼ିଶାର ସମସ୍ତ ଗଡ଼ଜାତ ଓଡ଼ିଶାରେ ମିଶି ଯାଇ ନୂତନ ଭାବେ ୬ଟି ଜିଲ୍ଲା ପରିବର୍ତ୍ତେ ୧୪ଟି ଜିଲ୍ଲାର ସୃଷ୍ଟି ହେଲା । ସେଗୁଡ଼ିକ ହେଲା - ୧. କଟକ, ୨. ପୁରୀ, ୩. ବାଲେଶ୍ୱର, ୪. ଗଞ୍ଜାମ, ୫. କୋରାପୁଟ, ୬. ସମ୍ବଲପୁର ଓ ତତ୍‌ସଙ୍ଗେ ନୂତନ ଭାବେ ଜିଲ୍ଲା ଗୁଡ଼ିକ ହେଲା - ୭. ବଲାଙ୍ଗିର, ୮. ସୁନ୍ଦରଗଡ଼, ୯. କେନ୍ଦୁଝର, ୧୦. ଢେଙ୍କାନାଳ, ୧୧. ବଉଦ-ଫୁଲବାଣୀ, ୧୨. କଳାହାଣ୍ଡି, ୧୩. ଷଢ଼େଇକେଲା ଓ ୧୪. ଖରସୁଆଁ । ପରବର୍ତ୍ତୀ ବର୍ଷରେ

ମୟୂରଭଞ୍ଜ ମଧ ଓଡ଼ିଶାଭୁକ୍ତ ହେଲା । କିନ୍ତୁ ରାଜନୈତିକ କାରଣ ହେଉ ବା କୌଣସି ଦୂରଭିସନ୍ଧି ମୂଳକ ପରିସ୍ଥିତି ହେତୁ ଭୀଷଣ ଗଣ୍ଡଗୋଳ ହୋଇ ଷଢ଼େଇକେଲା ଖରସୁଆଁ ଓଡ଼ିଶାରୁ ଯାଇ ବିହାରରେ ମିଶି ଯିବାରୁ ଓଡ଼ିଶାର ଉତ୍ତରରେ ମୁକୁଟ ଭଳି ଶୋଭା ପାଉଥିବା ଷଢ଼େଇକେଲା ଓ ଖରସୁଆଁ ମୁକୁଟ ବିହୀନ ଭଳି ମାନଚିତ୍ରରେ ସ୍ଥାନ ପାଇଲା । ଷଢ଼େଇକେଲା ଖରସୁଆଁର ଅର୍ଦ୍ଧାଧିକ ଓଡ଼ିଆ ଭାଷା ଓ ଓଡ଼ିଆ ସଂସ୍କୃତି ସମ୍ପନ୍ନ ଥିଲା । ଏହାକୁ ରାଜନୀତିର ବିଚିତ୍ର ବିଡମ୍ବନା ଛଡ଼ା ଆଉ କ'ଣ କୁହା ଯାଇପାରେ ? ଓଡ଼ିଶାର ରାଜ୍ୟ ସୀମାର ପ୍ରକୃତ ସମୀକ୍ଷା କରା ଗଲେ ବାଲେଶ୍ୱର ସଂଲଗ୍ନ - ମେଦିନୀପୁର ଅଞ୍ଚଳ, ସମ୍ବଲପୁର କଳାହାଣ୍ଡି ଲାଗି ଥିବା ସରେଇପାଲି, ବସ୍ତର ଅଞ୍ଚଳ, ଦକ୍ଷିଣରେ ଗଞ୍ଜାମ, କୋରାପୁଟକୁ ଲାଗି ଥିବା ଆନ୍ଧ୍ର ପ୍ରଦେଶର ସିରକାକୁଲମ୍ ତଥା ଦଣ୍ଡକାରଣ୍ୟ ନିକଟସ୍ଥ ଅନେକ ଗ୍ରାମମାନଙ୍କରେ ସମ୍ପୂର୍ଣ୍ଣ ଓଡ଼ିଆ ଭାଷାଭାଷୀ, ଓଡ଼ିଆ ସଂସ୍କୃତି ସମ୍ପନ୍ନ ଅଧିବାସୀମାନେ ବସବାସ କରନ୍ତି । ଓଡ଼ିଶାରେ ମିଶିବାର ତାଙ୍କର ଏକାନ୍ତ ଇଚ୍ଛା ଥାଇ ମଧ ବିଭିନ୍ନ ପରିସ୍ଥିତିର ଚ୍ୱପରେ ହେଉ ବା ସରକାରଙ୍କ ନିଷ୍କ୍ରିୟତା ଭାବରୁ ହେଉ, ଓଡ଼ିଶାର ସୀମାକୁ ଲାଗି ଥିବା ଓଡ଼ିଆମାନେ ଓଡ଼ିଶାର ଅଂଶବିଶେଷ ହୋଇ ଅଧିବାସୀ ହେବାର ସୌଭାଗ୍ୟରୁ ବଞ୍ଚିତ । ଏ ସମ୍ପର୍କରେ (ସ୍ୱାଧୀନତା ପ୍ରାପ୍ତି ପରେ) ପ୍ରଦେଶ ପୁନର୍ଗଠନ ସମୟରେ ତତ୍କାଳୀନ ନେତାମାନେ ସାମୟିକ ସ୍ୱର ଉତ୍ତୋଳନ କରିଥିଲେହେଁ ସେହି ସ୍ୱରର କ୍ଷୀଣତା ଓ ଚେଷ୍ଟାର ଶିଥିଳତା ହେତୁ ସେ ଅଞ୍ଚଳ ଗୁଡ଼ିକ ଓଡ଼ିଶାରୁ ଏବେ ସୁଦ୍ଧା ବିଚ୍ଛିନ୍ନ ହୋଇ ରହିଛି । ସେମାନେ ଅସନ୍ତୋଷ ଓ ଦୁର୍ଦ୍ଦଶାରେ ଥାଇ ଦୁଃଖରେ କାଳାତିପାତ କରୁଛନ୍ତି । ଦେଖା ଯାଉ କେବେ ସେ ସୁଦିନ ଆସିବ ଯେବେ ସୁଦୂରଦର୍ଶୀ ନେତାର ଅଭ୍ୟୁଦୟ ହୋଇ ବିକଳାଙ୍ଗ ଉତ୍କଳ ଜନନୀର ପୂର୍ଣ୍ଣାଙ୍ଗ ରୂପ ଦେଇ ପାରିବେ, ସବୁ ଭବିଷ୍ୟତ ହିଁ ତାର ସମାଧାନ କରିବ । ସବୁ ହରି ଇଚ୍ଛା - ଜୟ ଓଡ଼ିଶା ।

ଇତି ମଧ୍ୟରେ ଭାରତ ଓ ପାକିସ୍ଥାନ ବିଭକ୍ତ ହେତୁ ଦେଶଟି ବିଖଣ୍ଡିତ ହେଲା । ହେଲେ ହେଁ ବିଭାଜନ ସମୟର ଚୁକ୍ତି ମୁତାବକ ପାକିସ୍ଥାନର ପ୍ରାପ୍ୟ ସେ କାଳର ୫୫ କୋଟି ଟଙ୍କା ପାଇ ନ ଥିବାରୁ ସେମାନେ ଥରକୁ ଥର ଉକ୍ତ ପାଣ୍ଠିର ପ୍ରାପ୍ତି ସକାଶେ ଚ୍ୱପ ପ୍ରୟୋଗ କରୁଥିଲେ ଓ ତାହା ଆକାଶବାଣୀରେ ପ୍ରକାଶ ପାଇ ଥିଲା । କିନ୍ତୁ ସେ ବିଷୟରେ ଭାରତ ସରକାର ବିଶେଷ ଗୁରୁତ୍ୱ ନ ଦେଇ ସମୟ ଟାଳିବାରେ ଲାଗିଲେ । ଫଳରେ ପାକିସ୍ଥାନରେ ଅର୍ଥ ସଂକଟୀୟ ପରିସ୍ଥିତି ଜଟିଳ ହେତୁ ତାହା ଖବରକାଗଜରେ ବାହାରି ସର୍ବତ୍ର ଦେଶ ବିଦେଶରେ ଚର୍ଚ୍ଚା ହେବାକୁ

ଲାଗିଲା । ଶେଷରେ·ଏ ପରିସ୍ଥିତିର ଗୁରୁତ୍ୱ ସମାଧାନ ସକାଶେ ଖବର ଯାଇ ବାପୁଜୀଙ୍କ ପାଖରେ ପହଞ୍ଚିଲା । ସେ ବିଷୟରେ ପାକିସ୍ଥାନର ପ୍ରାପ୍ୟର ପରିମାଣ ତୁରନ୍ତ ଦେବାକୁ ଗାନ୍ଧୀଜୀ ଦୃଢ଼ମତ ପ୍ରକାଶ କଲେ । ଏଥିରେ ମଧ କିଛି ଫଳ ନ ଘଟିବାରୁ ଶେଷରେ ତାଙ୍କ ଅମୋଘ ଅସ୍ତ୍ର ସତ୍ୟାଗ୍ରହ ଜନିତ ଆମରଣ ଅନଶନ ଆରମ୍ଭ କରି ଅଡ଼ି ବସିଲେ ପ୍ରାପ୍ୟ ପଇଠ ନ ହେବା ପର୍ଯ୍ୟନ୍ତ । ଶେଷରେ ଅନନ୍ୟୋପାୟ ହୋଇ ଭାରତ ସରକାର ବାଧତାର ସହ ପାକିସ୍ଥାନର ପ୍ରାପ୍ୟ ପ୍ରଦାନ କଲା ପରେ ବାପୁଜୀ ତାଙ୍କର ଅନଶନ ଭଙ୍ଗ କଲେ । ଏହା ଭାରତର ସ୍ୱାଧୀନତା ପ୍ରାପ୍ତି ଜନିତ ବିଭାଜନ ଓ ପାକିସ୍ଥାନର ସୃଷ୍ଟି ଓ ସ୍ଥିତି ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ଓ ସ୍ମରଣୀୟ ଘଟଣା । ସେତେବେଳେ ପାକିସ୍ଥାନ ତାର ପ୍ରାପ୍ୟ ପାଇ ନ ଥିଲେ ତାର ସ୍ଥିତି ପ୍ରଗତି ଯେ କେତେ ଦୂର ସମ୍ଭବ ହୋଇଥାନ୍ତା ତାହା କେବଳ ପ୍ରଣିଧାନର ଯୋଗ୍ୟ ।

ହିନ୍ଦୁ ଓ ମୁସଲମାନ ମଧରେ ମତ ପାର୍ଥକ୍ୟ ଓ ମୁସଲମାନମାନଙ୍କ ପ୍ରତି ଗାନ୍ଧିଜୀଙ୍କ ଅଗାଧ ପ୍ରୀତି ଓ ବିଖଣ୍ଡିତ ଭାରତର ସ୍ୱାଧୀନତା ପ୍ରାପ୍ତି ସର୍ବୋପରି ପାକିସ୍ଥାନର ପ୍ରାପ୍ୟ ଦେବାରେ ବିଳମ୍ବ ହେତୁ ମହାତ୍ମା ଗାନ୍ଧୀଙ୍କ ଅନଶନ ଓ ବାଧବାଧକତାର ସହ ପାଣ୍ଠି ପ୍ରଦାନ, ଭାରତର ତୁଙ୍ଗ ନେତାଙ୍କ ମନରେ ଗଭୀର ଆଲୋଡ଼ନ ସୃଷ୍ଟି ହୋଇ ଏହି ଘୋର ସମସ୍ୟାର କିପରି ସମାଧାନ ହେବ ? ସେ ସେଥିରେ ଚିନ୍ତିତ ହୋଇ ସମାଧାନର ପନ୍ଥା ଅନ୍ୱେଷଣରେ ବ୍ୟସ୍ତ ରହିଲେ । ଏପଟେ ନୂତନ ସ୍ୱାଧୀନତା ପ୍ରାପ୍ତି, ଦେଶର ସୁସଂଗଠନ ଓ ତା'ର ପ୍ରଗତିର ରୂପରେଖାର ଯୋଜନା, ବିଖଣ୍ଡିତ ଭାରତ ହେତୁ ପାକିସ୍ଥାନବାସୀ ହିନ୍ଦୁମାନଙ୍କର ଭାରତ ପ୍ରତ୍ୟାବର୍ତ୍ତନ ଓ ହିନ୍ଦୁ ମୁସଲମାନଙ୍କ ମଧରେ ଅସୂୟାଭାବାଦି ନାନା ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ପରିସ୍ଥିତି ଦେଖା ଗଲା । ହିନ୍ଦୁ ମନୋଭାବାପନ୍ନ ଭାରତୀୟ ଯୁବ ସମାଜ ବ୍ୟତିବ୍ୟସ୍ତ ହୋଇ ପଡ଼ିଲେ । ସେମାନଙ୍କ ଆଭ୍ୟନ୍ତରୀଣ ହିନ୍ଦୁ ସଂଗଠନର ପ୍ରାବଲ୍ୟରେ ଏକ କଠୋର ଅମାନବୀୟ ଓ ପ୍ରତ୍ୟକ୍ଷ କାର୍ଯ୍ୟକ୍ରମର ସୂଚୀ ପ୍ରସ୍ତୁତ ହେଲା । ସେହି ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ସେହିପରି ଦେଶପ୍ରେମୀ, ସଚ୍ଚୋଟ ଓ ଉଗ୍ରପନ୍ଥୀ ମନୋଭାବାପନ୍ନ, କ୍ରୁର ଓ ଦୃଢ଼ ମନୋବଳ ବିଶିଷ୍ଟ, ପ୍ରତିଜ୍ଞାବଦ୍ଧ ଜନୈକ କାର୍ଯ୍ୟକାରୀ ହିନ୍ଦୁ ଯୁବ କର୍ମୀର ସନ୍ଧାନ କରାଗଲା । ଏହା ଥିଲା କେତେକ ପ୍ରକୃତ ହିନ୍ଦୁ ସଂସ୍ଥାର ଯୋଜନା । କାରଣ ଏହି ଭାବରେ ଚୁନି ରହିଲେ ହିନ୍ଦୁମାନଙ୍କର ଦୁର୍ଗତି ସଙ୍ଗେ ସଙ୍ଗେ ମୁସଲମାନମାନଙ୍କ ଦୌରାତ୍ମ୍ୟ ବଢ଼ିବ । ତେଣୁ ଏହାର ଏକ ଆଶୁ ସମାଧାନ ଆବଶ୍ୟକ । ଏହି ସମାଧାନର ପନ୍ଥା କେବଳ

ବାପୁଜୀଙ୍କ ମୁସଲମାନମାନଙ୍କୁ ସହାନୁଭୂତି ପ୍ରଦର୍ଶନର ଏକାନ୍ତ ପ୍ରତିରୋଧ। କିନ୍ତୁ ପ୍ରତିରୋଧ କରାଯିବ କେମିତି ? କିଏ ଯାଇ ବାପୁଜୀଙ୍କୁ ଏ ବିଷୟରେ ପ୍ରସ୍ତାବ ଦେବ ଓ ଏଥିରୁ ଓହରି ଯିବା ପାଇଁ ଅନୁରୋଧ କରିବ ? ତୁଙ୍ଗ ନେତାମାନଙ୍କର ତ ସେ ସତ୍ ସାହସ ନ ଥିଲା।

ସେତେବେଳେ ବାପୁଜୀ ଦିଲ୍ଲୀ ବିରଳା ଭବନରେ ରହୁଥାନ୍ତି। ତାଙ୍କ ନିତ୍ୟ ନୈତିକ କର୍ମ ଭିତରେ ସୂତାକଟା, ଗୀତା ପାଠ, ଦରକାର ହେଲେ 'ହରିଜନ' ବା ଅନ୍ୟ ସେପରି ପତ୍ରପତ୍ରିକାରେ ଲେଖା ଦେବା ଓ କେହି କୌଣସି ବିଷୟରେ ଚର୍ଚ୍ଚା କରିବାକୁ ଆସିଲେ ଠିକ୍ ସମୟରେ ସାକ୍ଷାତ ଦେଇ ଆଲୋଚନାରେ ଭାଗ ନେବା, ଏତଦ୍‌ବ୍ୟତୀତ ସନ୍ଧ୍ୟା ସମୟରେ ପ୍ରତି ଦିନ ଜନସାଧାରଣଙ୍କୁ ଉପଦେଶ ଦେବା ଆଳରେ ଦର୍ଶନ ଦେଇ ସାମାଜିକ, ରାଜନୈତିକ, ଅର୍ଥନୈତିକ ତଥା ଆଧ୍ୟାତ୍ମିକ ଆଲୋଚନା ପାଇଁ ପ୍ରାର୍ଥନା ସଭାରେ ଯୋଗ ଦେବା। ପ୍ରାର୍ଥନା ସଭାରେ ଯୋଗ ଦେବା ପାଇଁ ସମସ୍ତଙ୍କୁ ଅବାଧରେ ପ୍ରବେଶ କରିବାର ସୁବିଧା ଥିଲା। ତେଣୁ ଏହି ସମୟଟି ତାଙ୍କ ସାନ୍ନିଧ ଲାଭ ବା ନିକଟରେ ହେବା ଏକମାତ୍ର ପ୍ରକୃଷ୍ଟ ପନ୍ଥା। ସବୁ ଦିନ ଭଳି ତାଙ୍କ ଉଭୟ ନାତୁଣୀ (ଆଭା ଓ ମାନୁ)ଙ୍କ କାନ୍ଧ ଉପରେ ହାତ ଦେଇ ପ୍ରାର୍ଥନା ସଭା ସ୍ଥଳକୁ ଗମନ ସମୟରେ ହଠାତ୍ ସମ୍ମୁଖରେ ଜନମାନବ ଗହଣରୁ ଏକ ସୁସ୍ଥ, ସୌଷ୍ଠବ,ଯୁବକ ବାପୁଜୀଙ୍କ ସମ୍ମୁଖରେ ଛିଡ଼ା ହୋଇ ପାଦ ଧୂଳି ନେଇ ଆଶୀର୍ବାଦ ଲାଭର ଅପେକ୍ଷାରତ ଅଭିନୟ କଲା। ସେ ପିସ୍ତଲରୁ ୨ଟି ଗୁଳି ବାପୁଜୀଙ୍କ ଛାତି ଉପରକୁ ଚଳାଇଲା। ଫଳରେ ବାପୁଜୀ 'ହା ରାମ' କହି ସେଠାରେ ଟଳି ପଡ଼ିଲେ। ସେଠାରେ ତାଙ୍କ ପ୍ରାଣବାୟୁ ଉଡ଼ିଗଲା। ଦୀପଟି ଚିର ଦିନ ପାଇଁ ଲିଭିଗଲା। ଉପସ୍ଥିତ ଜନତା ସେହି ଉଗ୍ର, ବିଭ୍ରାନ୍ତ ଓ ବିପଥଗାମୀ ଆତତାୟୀକୁ ଧରି ପରେ ପୋଲିସକୁ ଜିମା ଦେଇଥିଲେ। ଏହି ଦୁଃସମ୍ବାଦ ବିଜୁଳି ଭଳି ସାରା ଦିଲ୍ଲୀ କାହିଁକି ସମଗ୍ର ଭାରତରେ ଓ ସାରା ବିଶ୍ୱରେ ଆକାଶବାଣୀ ଯୋଗେ ପ୍ରସାରିତ ହେଲା। ସେ ଦିନଟି ଥିଲା ୧୯୪୮ ମସିହା ଜାନୁୟାରୀ ମାସ ୩୦ ତାରିଖ ଶୁକ୍ରବାର ସନ୍ଧ୍ୟା ୫ଟାର ପାଖାପାଖି ସମୟ। ସଙ୍ଗେ ସଙ୍ଗେ ସାରା ଦିଲ୍ଲୀର ଦୋକାନ ବଜାର ଓ ବ୍ୟବସାୟୀ ସଂସ୍ଥା ବନ୍ଦ ହୋଇଗଲା। ବିଶେଷ କରି ମୁସଲମାନମାନେ ଆତଙ୍କିତ ହୋଇ ସ୍ୱ ସ୍ୱ ଗୃହରେ କବାଟ ଦେଇ ମଧ୍ୟ ନିରାପଦ ମଣି ପାରିଲେ ନାହିଁ। କାରଣ ତାଙ୍କ ଏକମାତ୍ର ଭୟ ଥିଲା ଯେ ଏହା ଏକ ଉଦ୍‌ଭ୍ରାନ୍ତ, ଦୁର୍ବଳ ମତି, ହୀନ ପ୍ରକୃତିର ମୁସଲମାନ ଯୁବକର ବର୍ବର କାଣ୍ଡ। ପରେ ସଠିକ୍ ଘଟଣା ଜଣା ପଡ଼ିଲା ଯେ ସେ ହେଉଛି ଜଣେ ହିନ୍ଦୁ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର

ସଦସ୍ୟ ଓ ଜଣେ ହିନ୍ଦୁ ଯୁବକ - ନାମ ଥିଲା ନାଥୁରାମ ବିନାୟକ ଗଡ଼ସେ । ତା'ପରେ ଯାଇ ମୁସଲମାନମାନେ ଆଶ୍ୱସ୍ତ ହେଲେ । ହିନ୍ଦୁମାନେ ଏହି ବର୍ବରୋଚିତ ବ୍ୟବହାର ପାଇଁ ନିଜକୁ ହୀନମନ୍ୟ ଓ ଘୃଣା କରିବାକୁ ଲାଗିଲେ । ସହସା ଏ ଦୁଃଖ ଖବର ଦିଲ୍ଲୀ ସହରରେ ପ୍ରସାରିତ ହେବା କ୍ଷଣି ସରକାରୀ ବେସରକାରୀ ବ୍ୟକ୍ତି ସମସ୍ତେ ବିରଳା ଭବନକୁ ଦୌଡ଼ିଲେ ବାପୁଜୀଙ୍କ ଶେଷ ଦର୍ଶନ ପାଇଁ । ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ବେତାର ଭାଷଣରେ କହି ପକାଇଲେ - "The light has gone out" ।

ଉକ୍ତ ସନ୍ଧ୍ୟାରେ ଆମ ଛାତ୍ରାବାସର ପାଠାଗାରର ବେତାର ଯନ୍ତ୍ରର ଏ ଦୁଃସମ୍ବାଦ ପ୍ରସାରିତ ହେବା ସଙ୍ଗେ ସଙ୍ଗେ ସମସ୍ତେ ମର୍ମାହତ ହେଲେ । ଉକ୍ତ ସନ୍ଧ୍ୟାର ମେସ୍‌ର ରନ୍ଧନ କାର୍ଯ୍ୟ ଆରମ୍ଭ ହୋଇଥିଲେ ହେଁ ବହୁ ଛାତ୍ର ଶୋକାଭିଭୂତ ହୋଇ ଭୋଜନରୁ ବିରତ ହୋଇଥିଲେ । ପରବର୍ତ୍ତୀ ଦିନରେ ମଧ୍ୟ ମେସ୍ ରେ ରନ୍ଧା ବନ୍ଦ କରାଯାଇ ସମସ୍ତେ ଉପବାସ ପାଳନ କରି ସନ୍ଧ୍ୟାରେ ସମସ୍ତଙ୍କ ପାଇଁ ମେସ୍‌ରେ ସାତ୍ତ୍ୱିକ ଭୋଜନ ପ୍ରସ୍ତୁତ କରା ଯାଇଥିଲା । ଅବଶ୍ୟ ବାପୁଜୀଙ୍କ ଶବ ସଂସ୍କାର ପର ଦିନ ଅର୍ଥାତ୍ ରବିବାର ଦିନ ରାଜଘାଟଠାରେ ସମ୍ପୂର୍ଣ୍ଣ ଜାତୀୟ ମର୍ଯ୍ୟାଦା ସହ ଶେଷ କୃତ୍ୟ ସମ୍ପନ୍ନ କରା ଯାଇଥିଲା । ଶବଯାତ୍ରା ବେଳେ ପଥର ଉଭୟ ପାର୍ଶ୍ୱରେ ଶୋକାକୁଳ ନୟନରେ ତାଙ୍କର ପୂଜ୍ୟ ସ୍ୱର୍ଗତ ନେତାଙ୍କ ଅନ୍ତିମ ଦର୍ଶନ କରିବାର ଦୃଶ୍ୟର ଫଟୋଚିତ୍ର ପରେ ପ୍ରକାଶିତ ହେଲା । ସେତେବେଳେ ଦୂରଦର୍ଶନ ନ ଥିଲା ।

୧୯୪୭ ସାଲର ଶେଷ ଭାଗରେ ଅନୁଷ୍ଠିତ ହୋଇଥିବା ଆଉ ଏକ ଘଟଣାର ବର୍ଣ୍ଣନା ଅପ୍ରାସଙ୍ଗିକ ହେବ ନାହିଁ। ସେହି ବର୍ଷ ସର୍ବଭାରତୀୟ ବିଜ୍ଞାନ କଂଗ୍ରେସର ବାର୍ଷିକ ଅଧିବେଶନ ଡିସେମ୍ବର ମାସର ଶେଷ ଭାଗରେ ରେଭେନ୍ସା କଲେଜରେ ଅନୁଷ୍ଠିତ ହୋଇଥିଲା । ସେଥିରେ Sir C.V. Raman ତଥା ଭାରତର ଅନ୍ୟାନ୍ୟ ବୈଜ୍ଞାନିକଗଣ ଯୋଗ ଦେଇଥିଲେ । ସେଥିରେ ବିଜ୍ଞାନ ଛାତ୍ର ଭାବେ ସ୍ୱେଚ୍ଛାସେବକ ରୂପରେ ମୋତେ ଯୋଗ ଦେବାର ସୁବିଧା ମିଳିଥିଲା । ତାହା ୨/୩ ଦିନ ଧରି ଚାଲିଲା ଓ ତହିଁରେ ବିଜ୍ଞାନର ଅନେକ ତାତ୍ତ୍ୱିକ ତଥ୍ୟ ଓ ଗବେଷଣାମୂଳକ ସନ୍ଦର୍ଭାଦି ପଠିତ ହୋଇ ଆଲୋଚିତ, ସମାଲୋଚିତ ହେଲା । Sir C.V. Ramanଙ୍କ ଭଳି ପୃଥିବୀ ବିଖ୍ୟାତ ବୈଜ୍ଞାନିକ ତଥା ଭାରତର ଅନେକ ବୈଜ୍ଞାନିକଗଣ, ଆମ କଲେଜରୁ Prof. B. Prasad, Dr. M.K. Rout ଆଦି ବୈଜ୍ଞାନିକ ଓ ଗବେଷକଗଣ ଭାଗ ନେଇଥିଲେ । ସେମାନଙ୍କ ମଧ୍ୟରେ Sir C.V. Ramanଙ୍କ ଆମୋଦଦାୟକ ଭାଷଣ ଯେ ନ ଶୁଣିଛି, ସେ ବିଷୟ ବର୍ଣ୍ଣନା

କରି ପ୍ରକାଶ କରିବା ବା ଅନ୍ୟକୁ ବୁଝାଇବା ଧୃଷ୍ଟତା ମାତ୍ର । ମୋଟ ଉପରେ ଉକ୍ତ ଉତ୍ସବରେ ଯୋଗଦାନ ଏକ ସୌଭାଗ୍ୟ-ଜନକ ଓ ସ୍ମରଣୀୟ ଘଟଣା ମଧ୍ୟରେ ଅନ୍ୟତମ ।

ପୁଣି ସେହି କଲେଜରେ ଅଧ୍ୟୟନ ସମୟରେ ସର୍ବଭାରତୀୟ ଜାତୀୟ କଂଗ୍ରେସର ଏକ କାର୍ଯ୍ୟକାରୀ କମିଟି ବୈଠକ କଟକଠାରେ ଅନୁଷ୍ଠିତ ହୋଇଥିଲା । ସେଥିରେ ଭାରତର ତତ୍କାଳୀନ କଂଗ୍ରେସର ତୁଙ୍ଗ ନେତାମାନଙ୍କ ମଧ୍ୟରେ ପଣ୍ଡିତ ଜବାହରଲାଲ ନେହେରୁ ତଥା ଜାତୀୟ ସ୍ତରର ନେତାମାନେ ଓ ଆମ ପ୍ରଦେଶରୁ ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ ଆଦି ବିଶିଷ୍ଟ କଂଗ୍ରେସକର୍ମୀମାନେ ଆୟୋଜନ କରିଥିଲେ । ଉକ୍ତ ସଂସ୍ଥାରେ ସ୍ୱେଚ୍ଛାସେବକ ରୂପେ ଆମେ ଯୋଗ ଦେଇ ତତ୍କାଳୀନ ତୁଙ୍ଗ ନେତାମାନଙ୍କ ସାନ୍ନିଧ ପାଇ ବ୍ୟକ୍ତିଗତ କାର୍ଯ୍ୟ ସମ୍ପାଦନରେ ଅଂଶୀଦାର ହେବାର ସୌଭାଗ୍ୟ ମିଳିଥିଲା । ଏପରିକି ପଣ୍ଡିତଜୀଙ୍କ ଅତି ନିକଟରେ ଥାଇ ସଭାସ୍ଥଳରେ ତଥା ଅନ୍ୟ ସମୟରେ ତାଙ୍କର ସାନ୍ନିଧ ଲାଭ କରି ନିଜକୁ କୃତଜ୍ଞ ମଣୁ ଥିଲୁଁ ।

ଏ ଘଟଣାର ଠିକ୍ ପରଦିନ ରାତିରେ ମୋର ଶାରୀରିକ ଅବସାଦ ହେତୁ ସାମାନ୍ୟ ତାପ ଶରୀରରେ ଅନୁଭବ କଲି । ସକାଳରୁ ଉଠି ଅନିଚ୍ଛାକୃତ ଭାବେ ନିତ୍ୟକର୍ମ ସମାପନ ପୂର୍ବକ ସ୍ନାନ ଭୋଜନ ସାରି କଲେଜକୁ ପଠନ ଉଦ୍ଦେଶ୍ୟରେ ଗମନ କଲି । ଉପର ଓଳି କଲେଜରୁ ଫେରି ଶରୀର ଉଷ୍ଣତା ନ କମି ବରଂ ମୁଣ୍ଡବ୍ୟଥା ଆରମ୍ଭ ହେଲା ଓ ଗଣ୍ଠି ଓ ଆଣ୍ଠୁରେ ପୀଡ଼ା ଅନୁଭବ କଲି । ରାତିରେ ଭୋଜନ ପରେ ସୁପ୍ତାବସ୍ଥାରେ ଶରୀରର କିଅଦଂଶରେ ଗୋଟିଏ ଦୁଇଟା ଫୋଟକା ଜନିତ ସାମାନ୍ୟ ଅବର୍ଣ୍ଣନୀୟ ଅନୁଭୂତି ଓ କୁଣ୍ଡାଇବା ପ୍ରବୃତ୍ତି ଜାଗ୍ରତ ହେଲା । ଅଜାଣତରେ କୁଣ୍ଡାଇ ଦେଇଥିବା ହେତୁ ପରଦିନ ସକାଳେ ଦେଖିଲା ବେଳକୁ ସେ ସବୁ ବଡ଼ ବଡ଼ ଫୋଟକାରେ ପରିଣତ ହୋଇଛି ଓ ଦେହର ଅନ୍ୟାନ୍ୟ ସ୍ଥାନରେ ଲାଲ ଲାଲ ଛୋଟ ଫୋଟକା ଉଠିବାର ଉପକ୍ରମ ଦେଖା ଯାଉଛି । ପରେ ଅନ୍ୟାନ୍ୟ କେତେ ନିଜ ବନ୍ଧୁଙ୍କୁ ଏ ବିଷୟରେ ଜଣାଇବାରୁ ସେମାନେ ଆମ ହଷ୍ଟେଲ୍ ସୁପରିଟେଣ୍ଡେଣ୍ଟ ଓ କଲେଜ ଡ଼ାକ୍ତରଙ୍କ ଦୃଷ୍ଟି ଆକର୍ଷଣ କରିବାରେ ସେମାନେ ଜଣାଇଲେ ଯେ ଏହା ‘Chicken pox’ର ଲକ୍ଷଣ ଓ ବସନ୍ତ ଗଦୁର ପ୍ରାରମ୍ଭରେ ନିଃସହାୟ ଅବସ୍ଥାରେ poxର ନାମ ଶୁଣି ଅସହାୟ ମନେ କଲି ଓ ପ୍ରଭୁଙ୍କୁ ସ୍ମରଣ କଲି । ପରିସ୍ଥିତିର ମୁକାବିଲା

କରିବା ପାଇଁ ପ୍ରସ୍ତୁତ ହେଲି । ଡ଼ାକ୍ତରଙ୍କ ପରାମର୍ଶକ୍ରମେ ଅନ୍ୟମାନଙ୍କ ମଙ୍ଗଳାର୍ଥେ ତା' ପରଦିନ ଅର୍ଥାତ୍ ୧.୨.୪୮ ଦିନ ମୋତେ ଶ୍ରୀରାମଚନ୍ଦ୍ରଭଞ୍ଜ ମେଡିକାଲ କଲେଜର ସଂକ୍ରାମକ ରୋଗ ବିଭାଗକୁ ପଠାଗଲା । ମୋର ଉପସ୍ଥିତି ଅନ୍ୟମାନଙ୍କୁ ସଂକ୍ରମିତ ହୋଇ ପ୍ରସାର ଲାଭ କରି ପାରେ - ଏଣୁ ସେଠାରେ ପ୍ରଥମେ ମୋର ଲୁଗାପଟା ଓ ଅନ୍ୟ ବ୍ୟବହାର୍ଯ୍ୟ ବସ୍ତୁକୁ ଅଲଗା ରଖାଗଲା ଓ ମୋତେ ଡ଼ାକ୍ତରଖାନା ତରଫରୁ ଏକ ନୂଆଁ ଧୋତି ପିନ୍ଧିବାକୁ ଦିଆଗଲା ଓ ମୋ ପାଇଁ ଏକ ସ୍ୱତନ୍ତ୍ର ଶଯ୍ୟାର ବନ୍ଦୋବସ୍ତ କରାଗଲା । ଅବଶ୍ୟ ସେହି କୋଠରୀରେ ଅନ୍ୟମାନେ ଥିଲେ କି ନା ମୋର ମନେ ନାହିଁ; ହେଲେ ହେଁ ପରେ ଆମ କୋଠରୀକୁ ଆଉ ଜଣେ ଦି' ଜଣ ମୋ ଭଳି ରୋଗୀ ଆସି ରହିଲେ । ଆମ ୱାର୍ଡ ପାଇଁ ଯେଉଁ ନର୍ସଟି କାମ କରୁଥିଲେ, ତାଙ୍କ ନାମ ଥିଲା ମଲ୍ଲି । ଆମେ ତାଙ୍କୁ ମଲ୍ଲି ଦିଦି ବୋଲି ଡାକୁଥିଲୁଁ । ସେ ଆମର ସେବା, ଖାଦ୍ୟପେୟ ଓ ଔଷଧାଦି ପ୍ରୟୋଗର ଠିକ୍ ସମୟରେ ବ୍ୟବସ୍ଥା କରୁଥିଲେ । ସେଠାରେ ମୋର ରହିବାର ଦିନକ ପରେ ମୋର ଶରୀରର ଗ୍ଚରି ଆଡ଼େ ଓ ମୁଖମଣ୍ଡଳରେ ସମାନ ଭାବେ 'chicken pox' ଫୋଟକା ବାହାରିପଡ଼ିଲା ଓ ଜ୍ୱର ମଧ ଉପଶମ ହୋଇ ନ ଥାଏ । କାରଣ ଫୋଟକା ବାହାରୁ ଥିବା ପର୍ଯ୍ୟନ୍ତ ଦେହର ଉଷ୍ଣତା କମିବ ନାହିଁ ବୋଲି ଡ଼ାକ୍ତର କହି ଗଲେ । ୨/୩ ଦିନ ପରେ ସାରା ଦେହରେ ଫୋଟକା ଭର୍ତ୍ତି ହେଲା । ସେଥି ମଧ୍ୟରୁ କେତେକ ଓହରି ଯାଇ ସୁଖି ଯାଇଥିଲେ ଓ କେତେକ ପାଣି ପୂଜ ଭରି ଧଳା ଦେଖା ଯାଉଥିଲେ ଓ ଆଉ କେତେ ନୂତନ ଭାବେ ବାହାରି ଲାଲ ଦେଖା ଯାଉଥିଲେ । ମୋଟାମୋଟି ଭାବେ ସେତେବେଳେ ଯେ ଦେଖିଛି ଅତି ଭୟାନକ ଦୃଶ୍ୟ ବୋଲି ପରେ ସେମାନେ ପ୍ରକାଶ କରିଥିଲେ । ଆମ ହଷ୍ଟେଲ୍‌ରୁ ଆମର ପାଠୁଆ ସାଥୀମାନେ ନିୟମିତ ଯାଇ ମୋର ଅବସ୍ଥା ଓ ସୁବିଧା ଅସୁବିଧା ବୁଝି ସାନ୍ତ୍ୱନା ଦେଉଥିଲେ । ସେତେବେଳେ ମୋର ଅନ୍ୟତମ ବନ୍ଧୁ ଶ୍ରୀ ଯୋଗେଶ ଚନ୍ଦ୍ର ପାଢ଼ୀ 2nd MBBSର ଛାତ୍ର ଥିଲେ । ସେ ମଧ ମୋର ଏତାଦୃଶ ଖବର ପାଇ ମଝିରେ ଆସି ଦେଖି ଯାଉଥିବାରୁ ଆଶ୍ୱସ୍ତି ବୋଧ ହେଉଥିଲା । ପ୍ରକାଶ ଥାଉ କି ମୁଁ ଡ଼ାକ୍ତରଖାନାକୁ ଗଲା ବେଳେ ମୋ ହାତରେ ଏକ ସୁନା ମୁଦି ପିନ୍ଧି ଯାଇଥିଲି । ମୋର ଅନ୍ୟତମ ବନ୍ଧୁ ସୂର୍ଯ୍ୟପ୍ରସାଦ ପଣ୍ଡା ଓ ଲାଲବିହାରୀ ଭୋଇ ମୋତେ ଦେଖି ଯାଇଥିବା ବେଳେ ମୋର କଣ ମନେ ହେଲା କେଜାଣି ମୁଁ ନିଜ ହାତରେ ସେ ମୁଦିଟି କାଢ଼ି ସୂର୍ଯ୍ୟପ୍ରସାଦ ପଣ୍ଡାଙ୍କୁ ବଢ଼ାଇ ଦେଇଥିଲି ବୋଧ ହୁଏ ଭବିଷ୍ୟତର କୌଣସି ଅଘଟଣର ଆଶଙ୍କାରେ । ପରେ ଲାଲବିହାରୀ ଭୋଇ ମୋର ଏତାଦୃଶ ବ୍ୟବହାର ଓ ମାନସିକ ଅବସ୍ଥା ଓ ମନୋଭାବ ସନ୍ଦର୍ଶନର

ବର୍ଣ୍ଣନା କରି ଅତି ଭାବବିହ୍ୱଳିତ ହୋଇ କହିଥିଲେ ଯେ ମୋର ମୁଖମଣ୍ଡଳର ମାନସିକ ଅବସ୍ଥାର ଦର୍ଶନକାରୀ ଦୁଃଖପୂର୍ଣ୍ଣ ସହାନୁଭୂତିଶୀଳ ମନୋଭାବ ପ୍ରଦର୍ଶନ ବ୍ୟତୀତ ଆଉ କ'ଣ କରିପାରେ।

ଏବେ ମେଡ଼ିକାଲ କଲେଜର ରୋଗୀ ହିସାବରେ ମୋର ରହଣୀର ବ୍ୟବସ୍ଥା ସମ୍ପର୍କରେ ବର୍ଣ୍ଣନା ନ କଲେ ଅସମ୍ପୂର୍ଣ୍ଣ ରହିଯିବ। ଏବେ ତ ମୁଁ ରୋଗୀ ଓ ବିଶେଷତଃ ରେଭେନ୍ସା କଲେଜର ଜନୈକ ଛାତ୍ର। ପୁଣି ପ୍ରତିଦିନ ଦଳ ଦଳ ହୋଇ କଲେଜରୁ ଓ ହଷ୍ଟେଲ୍‌ରୁ ଛାତ୍ର ବନ୍ଧୁମାନେ ଯାଇ ଆଶ୍ୱାସନା ଦେଇ ଫେରୁଛନ୍ତି। ତେଣୁ ମେଡ଼ିକାଲ କଲେଜର ଡ଼ାକ୍ତର, ନର୍ସ ତଥା ଅନ୍ୟମାନଙ୍କ ମୋ ପ୍ରତି ଏକ ସବିଶେଷ ସହାନୁଭୂତିଶୀଳ ସୁଦୃଷ୍ଟି, ବ୍ୟବହାର ପ୍ରଦର୍ଶନ କରା ଯାଇଥିଲା। ସେତେବେଳେ ଡ଼ାକ୍ତରଖାନା ତରଫରୁ ରୋଗୀମାନଙ୍କ ବ୍ୟବସ୍ଥା ଓ ରୋଗ ଅନୁସାରେ ଔଷଧ, ପଥ୍ୟ ଓ ଖାଦ୍ୟପେୟର ଅତି ସୁବ୍ୟବସ୍ଥା ଥିଲା। ସେ ସୁବିଧା ଘରେ ଥାଇ ମଧ ଯେ କରାଯାଇ ପାରିଥାନ୍ତା, ତାହା ଅସମ୍ଭବ ମନେ ହୁଏ। ରୋଗୀଙ୍କୁ ଖାଦ୍ୟ ଦେବାରେ ଆମ୍ଭେମାନେ (Revensaw Students) ଅନ୍ୟ ରୋଗୀଙ୍କଠାରୁ ୨ ଗୁଣ ପାଉଥିଲୁଁ। ମୁଁ ଅଣ୍ଡା ବ୍ୟବହାର କରୁ ନ ଥିବାରୁ ମୋ ପାଇଁ ତା ବଦଳରେ କ୍ଷୀର ଦେବାର ବ୍ୟବସ୍ଥା ଥିଲା। ମୁଁ ସକାଳେ ଖାଇବା ପରେ ଓ ସନ୍ଧ୍ୟାରେ ଖାଇବା ପରେ ଗିଲାସେ ଲେଖାଏଁ କ୍ଷୀର ପାନ କରିବାର ସୁଯୋଗ ପାଇଥିଲି। ଏପରି ନିୟମିତ ସୁଷମ ଆହାର ଓ ପାନୀୟ ସେବନ କରି ମୁଁ ଯେତେବେଳେ ୨୦ ଦିନ ପରେ ହଷ୍ଟେଲ୍‌କୁ ଫେରିଲି ମୋର ସ୍ୱାସ୍ଥ୍ୟର ଉନ୍ନତି ଘଟିଥିବାର ମନେ ହେଲା। ରୋଗୀମାନଙ୍କ ସେବା ଯତ୍ନ ନେବାରେ ସେତେବେଳର ନର୍ସ ଓ ସ୍ୱାସ୍ଥ୍ୟ କର୍ମଚାରୀଗଣଙ୍କ ଯେଉଁ ସେବା ମନୋଭାବ ପ୍ରଦର୍ଶନ କରୁଥିଲେ ଏବେ ଡ଼ାକ୍ତରଖାନାମାନଙ୍କର କର୍ମଚାରୀଗଣଙ୍କ ବିଷୟରେ ଯାହା ସବୁ ଖବରକାଗଜରେ ପ୍ରକାଶିତ ହେଉଛି, ତାହା ପଢ଼ିଲେ ନିରାଶ ହେବାକୁ ପଡ଼େ। ଅବଶ୍ୟ ସମୟ ଓ ଅବସ୍ଥାର ଘୋର ପରିବର୍ତ୍ତନ ଘଟିଛି। ମଣିଷ ତା'ର ସଙ୍ଗେ ତାଳ ଦେଇ ଚାଲିବା ଉଚିତ। ହେଲେହେଁ ସେବା କରିବା ପାଇଁ ନିଯୁକ୍ତ କର୍ମଚାରୀ, ନର୍ସ, ଡ଼ାକ୍ତର ବା ପାଠ୍ୟଦାନ ପାଇଁ ନିଯୁକ୍ତ ଶିକ୍ଷକ ତଥା ଅନ୍ୟାନ୍ୟ କର୍ମଚାରୀଗଣ ଆଦର୍ଶରୁ ବିପଥଗାମୀ ହେବା ଦେଶ ପକ୍ଷେ ଅହିତକର। ସେ କାଳର ନର୍ସ ଭଉଣୀ ମଲ୍ଲୀଙ୍କ ସେବା ମନୋଭାବ ଏବେ ମଧ ତାଙ୍କ ପ୍ରତି କୃତଜ୍ଞତା ସହ ମୁଣ୍ଡ ନଇଁ ଯାଏ। ମୋର ଯେତେବେଳେ ରୋଗର ପ୍ରାୟ ୭/୮ ଦିନ ହୋଇ ଗଲା ସେତେବେଳେ ମୋର ଦେହର ଫୋଟକା ଗୁଡ଼ିକରେ ଘିଅ ଭରି ଢଳିବାକୁ ଲାଗିଲେ। ଅର୍ଥାତ୍

ଫୁଟଗୁଡ଼ିକ ଶୁଖିଯାଇ ଫୋଟକାରେ ଖୋଳପା ବସିବାର ଆରମ୍ଭ ହେଲା । ସକାଳେ ୯/୧୦ଟା ବେଳେ ଆମକୁ ଗରମ ପାଣିରେ ପଟାସ୍ ପରମାଙ୍ଗାନେଟ୍ ପକାଇ ତୁଳା ସାହାଯ୍ୟରେ ସେହି ଔଷଧୀୟ ଉଷୁମ ଜଳକୁ ଫୋଟକା ଉପରେ ସେକିବା ପାଇଁ ଦିଆଯାଏ । ନିଜେ ଯାହା ପାରିବାର କରିବା ପରେ ଯେଉଁ ସ୍ଥାନକୁ ହାତ ପାଇବ ନାହିଁ ଅର୍ଥାତ୍ ପିଠିପଟ ବା ଦେଖି ନ ପାରିବା ଭଳି ଜାଗାକୁ ସେକିବା ପାଇଁ ଦିଦି ମଲ୍ଲୀଙ୍କର ଅକୁଣ୍ଠ ସାହାଯ୍ୟ ଏବେ ମଧ୍ୟ ସ୍ପଷ୍ଟ ମନେ ପଡ଼େ । ସତେ ଯେପରି ସେ ଶୁଶ୍ରୂଣ, ଦୁଃସ୍ଥ ଓ ନିରାଶ୍ରୟ ରୋଗୀଙ୍କ ସେବା ପାଇଁ ଜନନୀ ଭାବେ ଜନ୍ମ ନେଇଛନ୍ତି ବୋଧ ହୁଏ । ସେତେବେଳେ ତାଙ୍କ ସ୍ନେହ ମିଶ୍ରିତ ମୁଖର ଭାଷା ଓ ସେବା ମନୋଭାବ ଦେଖି ବିହ୍ୱଳିତ ହେବାକୁ ପଡ଼େ । ନିଜେ ରୋଗୀମାନଙ୍କ ଖାଦ୍ୟ ପରିବେଷଣ, ଔଷଧ ପ୍ରଦାନ ଓ ଅନ୍ୟାନ୍ୟ ସୁବିଧା ଅସୁବିଧା ବୁଝିବାରେ କେବେ ହେଳା କରି ନ ଥିଲେ । ଏହିପରି ସେବା ମନୋଭାବାପନ୍ନ କର୍ମଚାରୀ ଓ ନର୍ସ ସ୍ୱାସ୍ଥ୍ୟ ବିଭାଗର ଆଦର୍ଶ ଓ ଗୌରବ ଅଟନ୍ତି ।

ଇତି ମଧ୍ୟରେ ମୋର ଅସୁସ୍ଥତା ନେଇ ଆମ ଘରକୁ ଚିଠି ପଠା ଯାଇଥାଏ । ତାର ଯୋଗେ ଜଣାଇଲେ ଅବସ୍ଥାର ଗୁରୁତ୍ୱ ଦୃଷ୍ଟିରୁ ଘରେ ଅସ୍ଥିର ହେବେ । ଚିଠି ପହଞ୍ଚିଲା ବେଳକୁ ପ୍ରାୟ ୮/୧୦ ଦିନ ଗତ ପ୍ରାୟ । ଘରେ ସମସ୍ତେ ବ୍ୟସ୍ତ ହୋଇ ମୋର ବାପାଙ୍କୁ ସଙ୍ଗେ ସଙ୍ଗେ କଟକ ପଠାଇଲେ । ବାପା ଘର ଛାଡ଼ି ସମ୍ବଲପୁର ତେଇଁ ନ ଥିଲେ । ତେଣୁ ସେ ରେଳଯାତ୍ରା ଓ ଦୂର ବସ୍ ଯାତ୍ରା ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ । ତଥାପି ମୋର ଅସୁସ୍ଥତା - ପୁଣି ମେଡ଼ିକାଲରେ ଭର୍ତ୍ତି ହେବା ଶୁଣି ସଙ୍ଗେ ସଙ୍ଗେ କଟକ ଆସିଲେ । ସନ୍ଧ୍ୟାରେ ହଷ୍ଟେଲ୍‌କୁ ଯାଇ ମୋର ଖବର ପାଇ ଟିକିଏ ଆଶ୍ୱସ୍ତ ହେଲେ ଓ ସଙ୍ଗେ ସଙ୍ଗେ ମେଡ଼ିକାଲକୁ ଯାଇ ମୋତେ ଦେଖିଲେ । ସେଠାରୁ ଫେରି ରାତିରେ ହଷ୍ଟେଲ୍‌ରେ ବିଶ୍ରାମ ନେଇ ପୁଣି ପରଦିନ ସକାଳେ ଯାଇ ମୋ ସଙ୍ଗରେ ଘଣ୍ଟାଧିକ କାଳ କଥାବାର୍ତ୍ତା ପରେ ମୋର ସ୍ୱାସ୍ଥ୍ୟର ସଠିକ୍ ଅବସ୍ଥା ଜାଣି ପରମ ସନ୍ତୋଷ ଲାଭ କଲେ । ହେଲେହେଁ ଆଜିକାଲି ଭଳି ଦୂରଭାଷାର ବହୁଳ ବ୍ୟବହାର ନ ଥିବାରୁ ସଙ୍ଗେ ସଙ୍ଗେ ଘରକୁ ଖବର ଦିଆଯାଇ ପାରିଲା ନାହିଁ । ଆମର ପରବର୍ତ୍ତୀ ଆଲୋଚନା ପରେ ବାପାଙ୍କୁ ମୁଁ, ପୁରୀ ଯାଇ ଜଗନ୍ନାଥ ଦର୍ଶନ କରିବାକୁ ପ୍ରସ୍ତାବ ଦେବାରୁ, ସେ ପରଦିନ ସକାଳରୁ ପୁରୀ ଯାଇ ଜଗନ୍ନାଥ ଦର୍ଶନ ଓ ସମୁଦ୍ର ସ୍ନାନ ପରେ ସନ୍ଧ୍ୟାରେ କଟକ ଫେରି ଆସି ମୋ ଠାରେ ଭେଟ ହେଲେ । ପରଦିନ ଘରକୁ ଫେରିବାର ପ୍ରସ୍ତାବ କଲୁଁ । ଏ ସବୁଥିରେ ମୋର ଜନୈକ ବନ୍ଧୁ ସୂର୍ଯ୍ୟ ପ୍ରସାଦ ପଣ୍ଡା ବାପାଙ୍କୁ ସମୟୋପଯୋଗୀ ସାହାଯ୍ୟ କରିଥିଲେ । ପରଦିନ

ଜଣେ ଶିକ୍ଷକ...

ସକାଳେ ବାପା ତାଳଚେର ରେଳଗାଡ଼ିରେ ମେରାମଣ୍ଡଳୀ ବାଟେ ସମ୍ବଲପୁର ଫେରି, ଗାଁରେ ପହଞ୍ଚି ମୋର ଆରୋଗ୍ୟର ଖବରଟା ଦେଲା ପରେ ଆମ ପରିବାର ତଥା ଗ୍ରାମବାସୀ ଓ ଅନ୍ୟ ବନ୍ଧୁବାନ୍ଧବ ମାନେ ଆଶ୍ୱସ୍ତ ହେଲେ । ମେଡ଼ିକାଲ କଲେଜ ଆଡ଼େ ଗଲେ ମଲ୍ଲୀ ଦିଦିଙ୍କୁ ଭେଟିବାର ସୁଯୋଗ ସର୍ବଦା ନେଇଛି ଓ ତାଙ୍କ ମମତାପୂର୍ଣ୍ଣ କଥାବାର୍ତ୍ତାରୁ ବହୁତ ଆନନ୍ଦ ଲାଭ କରିଛି ।

ମେଡ଼ିକାଲ କଲେଜରୁ ହଷ୍ଟେଲ୍‌କୁ ଆସିବା ପରେ ବି.ଏସ୍.ସି.ର ବାର୍ଷିକ ପରୀକ୍ଷା ମୋଟେ ୩ ସପ୍ତାହରୁ କମ୍ ଥାଏ । ମେଡ଼ିକାଲରେ ରୁଗ୍ଣ ଅବସ୍ଥାରେ ଥାଇ ଯେତେ ପାଠ ବା ପରୀକ୍ଷା ସମ୍ପର୍କରେ ଚିନ୍ତା କଲେ ମଧ୍ୟ ନିରର୍ଥକ ମନେ ହେଉଥିଲା । ତେଣୁ ହଷ୍ଟେଲ୍‌କୁ ଆସିଲା ପରେ ପରୀକ୍ଷାର ଚିନ୍ତା ବିଷମ ହୋଇ ପଡ଼ିଲା । ରୋଗଗ୍ରସ୍ତ ହେତୁ ସ୍ୱାସ୍ଥ୍ୟ ପୂର୍ବ ଭଳି ଫେରି ନ ଥାଏ । ବିଶେଷ ପରିଶ୍ରମ ଶରୀର ପକ୍ଷେ ଅସମ୍ଭବ ହେଲା । ହେଲେ ଭାଗ୍ୟକୁ ମୋର ପୀଡ଼ିତ ହେବା ପୂର୍ବରୁ ଅଧିକାଂଶ ଭାଗ revision ହୋଇଥିଲା । ହଲ୍‌କୁ ଯିବା ପର୍ଯ୍ୟନ୍ତ ପାଠାଭ୍ୟାସ ଓ ଅଧ୍ୟୟନ ଏକାନ୍ତ ଆବଶ୍ୟକ । ସବୁ ଦୃଷ୍ଟିରୁ ମୋର ସ୍ୱାସ୍ଥ୍ୟକୁ ଆଗରେ ରଖି ଯତ୍‌କିଞ୍ଚିତ ପରୀକ୍ଷା ପ୍ରସ୍ତୁତିରେ ଲାଗିଲି ଓ ପରବର୍ତ୍ତୀ ମାସ ମାର୍ଚ୍ଚ ୧୭ ତାରିଖରେ ପରୀକ୍ଷା ଆରମ୍ଭ ପାଇଁ ପ୍ରସ୍ତୁତ ହେଲି । ପରୀକ୍ଷା ମାସାଧିକ କାଳ ଚ୍ଲିଲା ଓ ଅପ୍ରେଲ ୨ୟ ସପ୍ତାହ ବେଳକୁ ପରୀକ୍ଷାର ଲେଖା ଓ ପ୍ରାକ୍ଟିକାଲ୍ ପ୍ରାୟ ଶେଷ ହେଲା । ମୋଟାମୋଟି ଭାବରେ ମୋର ଶାରୀରିକ ଅବସ୍ଥା ଦୃଷ୍ଟିରୁ ପରୀକ୍ଷାଟି ଏକ ରକମର ଭଲ ହୋଇଥିଲା । ଅସୁବିଧା ହେତୁ ସମ୍ମାନ ସହ ପାସ୍ କରିବାର ଆଶା କ୍ଷୀଣ ହେଲା ।

ପାଠ ପଢ଼ା ସମୟର ଆଉ ଏକ ବିଷୟର ସୂଚନା ଦେଲେ ଅବାନ୍ତର ହେବ ନାହିଁ । ମୋର ପଢ଼ିବା ପାଇଁ ମୋ' ପାଖକୁ ଆସୁଥିବା ଟଙ୍କାର ମିତବ୍ୟୟିତା ହେତୁ ମୋ ଠାରେ ମାସକୁ କିଛି ଉଦ୍‌ବୃତ୍ତ ଟଙ୍କା ଥିଲା । ଡ଼ାକ୍ତରଖାନାରେ ପଡ଼ିଥିବା ବେଳେ ମୋର ବାକ୍ସରେ ଶତାଧିକ ଟଙ୍କା ଥାଏ । ତାହା ବାପା କଟକ ଆସିବା ବେଳେ ଦେଖି ପାରି ସନ୍ତୋଷ ପ୍ରକାଶ କରିଥିଲେ । ଅବଶ୍ୟ ମୁଁ ଯାହା ଆବଶ୍ୟକ ତାକୁ ଜଗି ଚଳି ମୋ ଠାରେ ଥିବା ବଳକା ଟଙ୍କା ମୋଠାରୁ ଅନେକ ଗୁଣରେ ଧନୀ ଘରର ଛାତ୍ରବନ୍ଧୁମାନେ ସମୟ ବିଶେଷରେ ଧାର ନେଇ ପରିଶୋଧ କରି ଦେଉଥିଲେ । ଅବଶ୍ୟ ମୋର ଏହି ସାହାଯ୍ୟ ପାଇଁ ଅନେକେ କୃତଜ୍ଞତା ଓ ସାଧୁ ମନୋଭାବ ପୋଷଣ କରୁଥିଲେ । ଆଉ ମଧ୍ୟ ମୁଁ ଅବସ୍ଥାରେ ସ୍ୱଚ୍ଛଳ ନ ଥିଲେ ହେଁ ମୋର ଏକ ବିଳାସୀ ଓ ସୌଖୀନ ମନୋଭାବ ଥିବାରୁ ମୁଁ କେତେକ ଦୁଷ୍ପ୍ରାପ୍ୟ ଓ ନୂଆଁ ଜିନିଷ

ସାଇତି କରି ରଖିଥିଲି । ସେଥି ମଧ୍ୟରେ ବିଭିନ୍ନ ପ୍ରକାର ରୁମାଲ ସଂଗ୍ରହ ଓ ତହିଁରେ ବାସନା କାର୍ଡ ବା ସୁଗନ୍ଧି ଲେପନ ମୋର ଏକ ବିଶେଷ ସଉକ ଥିଲା । ମୋଠାରେ ପ୍ରାୟ ସେତେବେଳେ ୧୦/୨୦ ଖଣ୍ଡରୁ ଅଧିକ ପ୍ରକାର ରୁମାଲ ମହଜୁଦ ଥିଲା । ତନ୍ମଧ୍ୟରେ ଏକ ଜାପାନୀ ରୁମାଲ ଅନ୍ୟତମ ।

ବନ୍ଧୁମାନେ ଚାକିରୀ ପାଇଁ interviewକୁ ଗଲେ ମୋଠାରୁ ସେଗୁଡ଼ିକ ସାମୟିକ ଭାବେ ନେଇ ତାଙ୍କ କାର୍ଯ୍ୟ ସରିବା ପରେ ଫେରସ୍ତ କରୁଥିଲେ । ଏହା ମୋର ବଡାଣି ବା ଦେଖାଣିଆ ପାଇଁ ପ୍ରକାଶ କରି ନାହିଁ । କେବଳ ମୋର ସଂଗ୍ରହଜନିତ ସହଜାତ ପ୍ରବୃତ୍ତିର ଏକ ନମୁନା ମାତ୍ର ।

ବି.ଏସ୍‌ସି. ପରୀକ୍ଷା ଶେଷ ହେଲା । କଳା ଶ୍ରେଣୀର ଛାତ୍ରମାନେ ଆଗରୁ ପରୀକ୍ଷା ସାରି ନିଜ ନିଜ ଗ୍ରାମକୁ ଯାଇ ସାରିଥିଲେ । ଆଉ କେତେଜଣ ନା ନା ଆଶାରେ ହଷ୍ଟେଲ୍‌ରେ ରହିଥାନ୍ତି । ମୋର ପରୀକ୍ଷା ଶେଷ ହେବା ପରେ କଟକର ଅଧିଷ୍ଠାତ୍ରୀ କଟକଚଣ୍ଡୀଙ୍କ ନିକଟକୁ ଯାଇ ଶେଷ ଦର୍ଶନ ଓ ପରୀକ୍ଷାର ସୁଫଳ ପାଇଁ ପ୍ରାର୍ଥନା ଜଣାଇ ଫେରିବା ବାଟରେ ଚୌଧୁରୀ ବଜାରରୁ ଟ୯ ରେ ଏକ ବଡ଼ ଟ୍ରଙ୍କ କିଣିଲି କାରଣ ନିଜର କରି ଟ୍ରଙ୍କଟିଏ ନ ଥିଲା । ସାନ କାକାଙ୍କ ସୁଟକେଶଟି ପଢ଼ିବା ବେଳେ ଆଣିଥିବାରୁ ତାକୁ କାକାଙ୍କୁ ଯାଇ ଫେରାଇବାକୁ ହେବ । ଅବଶ୍ୟ ଫେରାଇବାଟା ଏପରି ଜରୁରୀ ନ ଥିଲା କିନ୍ତୁ ନୈତିକତା ଓ ଶିଷ୍ଟାଚାରର ଦୃଷ୍ଟିରୁ ଏହା ଆବଶ୍ୟକ ଭାବି ଘରକୁ ଯାଇ ତାଙ୍କୁ ତାଙ୍କର ସୁଟକେଶ ଫେରାଇ ଦେଇଥିଲି ।

ପୁଣି ମୋର ଶକ୍ତି ମୁତାବକ ମୋର ପରିଚିତ ଓ ଆତ୍ମୀୟଜନଙ୍କ ପାଇଁ ଯାହା ପାଇଁ ଯାହା ଭାବିଲି ବାଟରେ କିଣିଲି - ସେଥି ମଧ୍ୟରେ ଶିଙ୍ଘ ପାନିଆ, କଠଉର ଚୂଳୀ, ଟର୍କିସ୍ ଟାଉଏଲ୍ ଓ ଖେଳିବା ପାଇଁ ତାସ ମୁଠାଏ (Bonus made in U.S.A.) ଏକ ଟର୍ଚ୍ଚଲାଇଟ୍ ଓ କିଛି ଖିଅର ହେବାର 7 o' clock U.S.A. ତିଆରି ବ୍ଲେଡ୍ ଆଦି କିଣିଲି । ସେତେବେଳେ Bonus ତାସର ଦାମ୍ ଟ୧, ଲାଇଟ୍ (U.S.A. ତିଆରି) ଟ୩ ଓ ବ୍ଲେଡ୍ ୧୦ଟାକୁ ପ୍ରାୟ ଆଠ ଅଣା ବା ୬୨ ପଇସା ଥିଲା । ପରେ ହଷ୍ଟେଲ୍‌କୁ ଆସି ଛତରା ବଜାରକୁ ଯାଇ କଦଳି କାନ୍ଦିଟିଏ କିଣି ଏକ ଝୁଡ଼ିରେ ଭର୍ତ୍ତି କରି ଘରକୁ ନେବାର ବ୍ୟବସ୍ଥା କଲି । ସନ୍ଧ୍ୟାରେ ମେସ୍ ମେନେଜରଙ୍କଠାକୁ ଯାଇ ମୋର ସର୍ବମୋଟ ଦେୟ ପୈଠ କରି ଫେରିବା ବାଟରେ ହଷ୍ଟେଲ୍ ରେ ଥିବା ବନ୍ଧୁମାନଙ୍କୁ ବିଦାୟ ମାଗି ନିଜ କୋଠରୀକୁ ଫେରିଲା ବେଳକୁ ୯ଟା । ମେସ୍‌କୁ ଖାଇବାକୁ ଗଲି ଓ ମେସ୍‌ର ପୁଝାରୀ, ଚାକର ଓ ହଷ୍ଟେଲ୍ ଅନ୍ୟ ଚାକରଙ୍କୁ ମୋର ଶକ୍ତି ମୁତାବକ ବକ୍ସିସ ଦେଇ ବିଦାୟ ନେଲି ।

ଆମେ ସବୁ ସମ୍ବଲପୁରବାସୀ ହୋଇଥିବାରୁ ସେମାନେ ଆମଠାରୁ ସମ୍ବଲପୁରୀ ଗାମୁଛା ଆଦି ପାଇବାର ଆଶା ରଖିଥାନ୍ତି । ଏଥର ପାଇଁ ବହୁତ ଦିନ ହେଲା ଘରକୁ ଯାଇ ନ ଥିବାରୁ (ପ୍ରାୟ ୫/୬ ମାସ ହେଲା) ସେପରି କିଛି ଉପହାର ଦେବାର ଜିନିଷ ନ ଥିଲା । ହେଲେ ବି କାହାକୁ ପୁରୁଣା ଗାମୁଛା ବା କାମିଜ ଦେଇ ସନ୍ତୋଷ କରିବାକୁ ହେଲା । ନିଜ କୋଠରୀକୁ ଯାଇ କଟକରେ ଶେଷ ରାତ୍ର କଟାଇବାର ଆୟୋଜନ ଓ ବଡ଼ି ଭୋରରୁ ଉଠି ପ୍ରସ୍ତୁତି ପାଇଁ ସତର୍କତା ସହ ଶୋଇଲି । କାରଣ ପରଦିନ ସକାଳୁ ତାଳଚେର ଟ୍ରେନ୍‌ରେ ଘରକୁ ବାହୁଡ଼ିବାର ବ୍ୟଗ୍ରତା । ବନ୍ଧୁ, ପିତାମାତାଙ୍କ ଦର୍ଶନ ତଥା ବହୁ ଦିନ ପରେ ନିଜର ବିରହ ଭୋଗୁଥିବା ପତ୍ନୀଙ୍କୁ ଦେଖିବାର ପ୍ରୟାସର ଭାବନାରେ କେତେବେଳେ ଯେ ନିଦ ହୋଇ ଯାଇଛି ଜାଣି ପାରିଲି ନାହିଁ ।

ପ୍ରାତଃରୁ ନିଦ ଭାଙ୍ଗିଲା ବେଳକୁ ପ୍ରାୟ ୫ଟା । ଶୀଘ୍ର ପ୍ରାତଃ କର୍ମ ସମାପନ ପୂର୍ବକ ନିଜର ଜିନିଷପତ୍ର ସଜାଡ଼ି ପ୍ରସ୍ତୁତ ହେବାକୁ ଯାଉଥିଲି - ଶୁଣିଲି ସମ୍ବଲପୁରକୁ ଫେରୁଥିବା ଅନ୍ୟ ସହପାଠୀମାନେ ମଧ ମୋର ପ୍ରସ୍ତୁତିର ଖବର ନେଇ ରିକ୍ସା ଆଣିବାକୁ ରଡ଼ି ଛାଡ଼ିଲେ । ରାତିରେ ତ ମୋର ବାକ୍ସ ଆଦି ସବୁ ସଜଡ଼ା ସରିଥିଲା, କେବଳ ବେଡିଙ୍ଗଟି ସଜାଡ଼ି ବାନ୍ଧୁଥିଲି ଓ ମୋ ପାଇଁ ମଧ ରିକ୍ସାଟିଏ ଆଣିବାକୁ ଅନୁରୋଧ କଲି । ରିକ୍ସା ଆସିଲା ପରେ ରିକ୍ସାବାଲା ମୋର କୋଠରୀକୁ ଆସି ଜିନିଷପତ୍ର ନେଇ ଯିବାର ଉପକ୍ରମ ପାଇଁ ଅନୁମତି ମାଗିଲା । ଜିନିଷସବୁ କୋଠରୀରୁ ଗଲା ପରେ କୋଠରୀର ଅନ୍ୟମାନେ ଆଗରୁ ଚାଲି ଯାଇଥିବାରୁ କୋଠରୀଟି ପୁରା ଖାଲି ହୋଇଗଲା । କୋଠରୀରୁ ବିଦାୟ ନେଇ ବାହାରି ଆସି ଆଗରୁ କୋଠରୀ ଉଦ୍ଦେଶ୍ୟରେ ଓ କଟକ ଚଣ୍ଡୀଙ୍କ ଉଦ୍ଦେଶ୍ୟରେ ପ୍ରଣତି ଜଣାଇ କୋଠରୀ ସହ ବର୍ଷକର ଓ କଟକ ସହ ୨ ବର୍ଷର ସମ୍ବନ୍ଧ ତୁଟାଇ କବାଟ ବନ୍ଦ କରି ତଳକୁ ଓହ୍ଲାଇଲି । ବାଟରେ ହଷ୍ଟେଲ୍ ଦରୁଆନଙ୍କୁ ଦେଖି କୋଠରୀ ଖାଲି ହେଲା ଓ ତାକୁ ତାଲା ଦେଇ ବନ୍ଦ କରିବା ପାଇଁ ସୂଚନା ଦେଇ ରିକ୍ସା ପାଖରେ ପହଞ୍ଚିଲା ବେଳକୁ ଅନ୍ୟାନ୍ୟ ବନ୍ଧୁମାନେ ପ୍ରାୟ ପ୍ରସ୍ତୁତ ହୋଇଥିଲେ ଷ୍ଟେସନକୁ ଯିବା ପାଇଁ । ସମସ୍ତେ ହଷ୍ଟେଲ୍ ଓ କଲେଜ ଛାଡ଼ି ରେଲୱେଷ୍ଟେସନ ମୁଖେ ରିକ୍ସାରେ ଚାଲିଲୁଁ । ବାଟରେ ମଦନା ଦୋକାନରେ କିଛି ମିଠା କିଣିଲୁଁ । ରେଭେନ୍ସା କଲେଜ ସହ ଦୁଇ ବର୍ଷର ନିବିଡ଼ ସମ୍ପର୍କର ଶେଷ ମୁହୂର୍ତ୍ତରେ ମନରେ ଦୁଃଖ ଜାତ ହେଉଥିଲେ ମଧ ଗୃହକୁ ପ୍ରତ୍ୟାବର୍ତ୍ତନର ଆନନ୍ଦ ତାକୁ ଚପାଇ ଦେଉଥିଲା । ରେଳଷ୍ଟେସନରେ ପହଞ୍ଚିଲା ବେଳକୁ ପ୍ରାୟ ୭ଟା । ପ୍ଲାଟଫର୍ମଟି ଯାତ୍ରୀମାନଙ୍କ ଭିଡ଼ରେ ଭରପୂର ଓ

କୋଳାହଳମୟ । ଷ୍ଟେସନକୁ ପହଞ୍ଚି ଓ ପ୍ଲାଟଫର୍ମରେ ଜିନିଷପତ୍ରକୁ ଏକତ୍ର କରି ଆମ ମଧ୍ୟରୁ ଜଣେ ପ୍ଲାଟଫର୍ମର ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ବିକ୍ରି ହେଉଥିବା ସମ୍ବଲପୁର ବସ୍ କାଉଣ୍ଟରରୁ ଆମ ପାଇଁ ୩ଟି ଟିକଟ କିଣିଥିଲୁଁ । ଇତି ମଧ୍ୟରେ ଏହା ଏକ ସୁବିଧାଜନକ ବ୍ୟବସ୍ଥାର ପ୍ରଚଳନ । କାରଣ ମେରାମଣ୍ଡଳୀକୁ ଯାଇ ସେଠାରେ ଟ୍ରେନ୍‌ରୁ ଓହ୍ଲାଇ ଆଉ ବସ୍ ଟିକଟ୍ ପାଇଁ ବ୍ୟସ୍ତ ନ ହୋଇ ସିଧାସଳଖ ବସ୍‌ରେ ଯାଇ ବସିବାକୁ ହେଲା । ସମୟର ଗତି ଅନୁସାରେ କାଳକ୍ରମେ ସମୟକୁ ଖାପ ଖୁଆଇଲା ଭଳି ବ୍ୟବସ୍ଥା ଆପେ ଆପେ କିପରି ପରିବର୍ତ୍ତିତ ହୋଇ ନ ଯାଉଛି ସତେ । ଅବଶ୍ୟ ଏସବୁ ବିଷୟର କଳ୍ପନା ଆଧୁନିକ ଯୁବ ସମାଜର ଚିନ୍ତାଧାରାର ପରିସରର ସମ୍ପୂର୍ଣ୍ଣ ବହିର୍ଭୂତ, ବିଶ୍ୱାସ କରିବା ପାଇଁ ସେମାନେ ସମ୍ପୂର୍ଣ୍ଣ ରୂପେ ନାରାଜ । ଯେହେତୁ ଆଜିକାଲି ନିଜ ଘର ଗାଁର ବସ୍ ଷ୍ଟେଣ୍ଡରୁ ସିଧାସଳଖ ବସ୍‌ରେ ବସି କଟକ, ପୁରୀ, ବାଲେଶ୍ୱର, କେନ୍ଦୁଝର, ରାଉରକେଲା ତଥା ଦୂରଦୂରାନ୍ତ ସ୍ଥାନକୁ ସୁବିଧାରେ ପହଞ୍ଚି ହେଉଛି ବା ଟ୍ରେନ୍ ଓ ପ୍ଲେନ୍ ମଧ୍ୟ ସୁବିଧାରେ ମିଳି ପାରୁଛି । ପ୍ରକୃତରେ ସମୟ କେଡ଼େ ବଳବାନ୍ ।

ଠିକ୍ ସମୟରେ ଟ୍ରେନ୍ ଆସିଯିବାରୁ ସମସ୍ତେ ତତ୍ପରତା ଓ ସତର୍କତା ସହ ଜିନିଷସବୁ ଟ୍ରେନ୍‌କୁ ନେଇ ଯଥାଯଥ ଭାବେ ସଜାଡ଼ି ନିଜ ନିଜ ଆସନ ଜମାଇ ବସିଲୁ । କିଛି ସମୟ ପରେ ଟ୍ରେନ୍ ଛାଡ଼ିବାର ଘଣ୍ଟି ଓ ଗାର୍ଡ ସାହେବଙ୍କ ହୁଇସିଲ୍ ଓ ସବୁଜ ପତାକା ପ୍ରଦର୍ଶନ ପରେ ପ୍ଲେଟଫାର୍ମରେ ଆମକୁ ବିଦାୟ ଦେଇ ଆସିଥିବା ବନ୍ଧୁଙ୍କଠାରୁ ବିଦାୟ ନେଇ ଟ୍ରେନ୍‌କୁ ଉଠିଲୁଁ । କଟକ ସହର ପ୍ରାୟ ପଛରେ ରହିଗଲା ଓ ପରେ ଯେ କେବେ କଟକ ଆସିବାକୁ ହେବ ଓ କଟକରେ ରହଣୀ ଆଦି ବିଭିନ୍ନ ଚିନ୍ତା କରୁଥିବା ବେଳେ ଟ୍ରେନ୍‌ରୁ କଟକ ସହର, ରେଭେନ୍ସା କଲେଜ ଓ କଟକଚଣ୍ଡୀ ଉଦ୍ଦେଶ୍ୟରେ ଶେଷ ପ୍ରଣାମ ଜଣାଇଲି ।

ବର୍ତ୍ତମାନ କଟକ ଓ ସମ୍ବଲପୁର ମଧ୍ୟରେ ରେଲରାସ୍ତା ସମ୍ପୂର୍ଣ୍ଣ ହୋଇ ଯାତାୟାତ ଆରମ୍ଭ ହେଲାଣି । ଏହା ସତ୍ତ୍ୱେ ଓଡ଼ିଶାରେ ଅନ୍ୟ ରାଜ୍ୟ ଅପେକ୍ଷା ଖୁବ୍ କମ ରେଲରାସ୍ତା ଅଛି । ତେଣୁ ଆଉ ଅନେକ ଯୋଜନାର ସର୍ଭେ କାର୍ଯ୍ୟ ଆରମ୍ଭ ହୋଇଛି । କିନ୍ତୁ ଅଗ୍ରଗତି ସନ୍ତୋଷଜନକ ନ ହେବାର କାରଣ ଦୃଢ଼ ଇଚ୍ଛାଶକ୍ତି ଓ ରାଜନୈତିକ ଶକ୍ତିର ଅଭାବ ବୋଲି ମନେ ହୁଏ ।

ଦିନ ୧୦ଟା ୩୦ ମି. ବେଳେ ରେଳଗାଡ଼ି ମେରାମଣ୍ଡଳୀରେ ପହଞ୍ଚିଲା ଓ ଆମେ ସବୁ ନିଜର ଜିନିଷପତ୍ର ସହ ସମ୍ବଲପୁର ବସ୍ ନିକଟକୁ ଧାଇଁଲୁଁ । ଆମେ ପହଞ୍ଚିଲା ବେଳକୁ କେତେକ ଯାତ୍ରୀ ବସ୍‌ରେ ବସି ସାରିଥିଲେ । ତଥାପି

ଆମ ପାଇଁ ସିଟ୍‌ର ଅଭାବ ନ ଥିଲା । ଆମେ ନିଜ ନିଜର ଆସନ ସଂରକ୍ଷଣ କରି ଜିନିଷପତ୍ର ବସ୍ ଉପରକୁ ଉଠାଇଲୁ । ଅନୁଗୁଳରୁ ସର୍ଗିପାଲି ପାର ହେଲେ ବଇଣ୍ଡା ଓ ତାପରେ ରେଢ଼ାଖୋଲ । ସେତେବେଳର ଅନୁଗୁଳ ଓ ସର୍ଗିପାଲି ଏବଂ ବଇଣ୍ଡା ସମ୍ପର୍କରେ ଦି' ପଦ ନ ଲେଖିଲେ ସେ କାଳର ଅବସ୍ଥା ବିଷୟରେ ଅବଧାରଣା କରିବା ଅସମ୍ଭବ । ସେତେବେଳେ ଅନୁଗୁଳ ନିକଟସ୍ଥ ଏକ ବଗିଚାରେ କମଳା ଲେମ୍ବୁ ପ୍ରଚୁର ଉତ୍ପାଦିତ ହୋଇ ବିକ୍ରି ପାଇଁ ଅନୁଗୁଳ ଆସୁଥିଲା । ଆଜିକାଲିର ଅନୁଗୁଳ ନାଲକୋ, ବଅଁରପାଲ ତଥା ତାଳଚେର ସାର ଓ ତାପଜ ବିଦ୍ୟୁତ କାରଖାନାର ଅବସ୍ଥିତିକୁ ଆଖିରେ ଦେଖି ସେତେବେଳର ଅବସ୍ଥାକୁ ବିଚାର କଲେ ଅନୁଗୁଳ ଏକ ବଡ଼ ଗ୍ରାମ ଭଳି ଥାଇ ନିତାନ୍ତ ଅନୁନ୍ନତ ଥିଲା ଓ ଖାଦ୍ୟପେୟର ମୂଲ୍ୟ ଅତିଶୟ ନଗଣ୍ୟ ଥିଲା । କାରଣ ଖାଦ୍ୟ ଯୋଗାଇବା ନିମ୍ନ ମାନର ହୋଟେଲରେ ଜଣକର ଖାଇବା ପାଇଁ ୧୨ ପଇସା ବା ୧୫ ପଇସା ଦେବାକୁ ହେଉଥିଲା । ସେହି ଅନୁସାରେ ଅନ୍ୟାନ୍ୟ ଜିନିଷପତ୍ରର ଦରକାରୀ ତଦନୁପାତ ହେବା ସ୍ୱାଭାବିକ । ସର୍ଗିପାଲିରେ ପ୍ରଚୁର ଲିଚୁ, ସପୁରୀ ଓ ବଇଣ୍ଡାରେ କାକୁଡ଼ି, ଅମୃତଭଣ୍ଡା ଓ ଅନ୍ୟାନ୍ୟ ଋତୁ ଜାତ ଫଳ, ଆତ, ପଣସ ଆଦି ଶସ୍ତାରେ ମିଳୁଥିଲା । ଏପରିକି ମୁଁ ଥରେ ଅନୁଗୁଳ ବାଟେ ଘରକୁ ଯିବା ବେଳେ କମଳା ଟ୧ରେ ପ୍ରାୟ ୩୦/୩୨ଟି କିଣି ନେଇଥିଲି । ଅବଶ୍ୟ ଆଜିକାଲି ଟଙ୍କା କିମ୍ବା ଫଳ ପରି, ପଣସ, ସପୁରୀ, କଦଳୀ ସେପରି ଟ୦ା।ରୁ ଆରମ୍ଭ କରି ଟ୧ ପର୍ଯ୍ୟନ୍ତ ଆକାର ଅନୁସାରେ ମିଳୁଥିଲା । ଲିଚୁ ମଧ୍ୟ ଟ୧ରେ ୪୦ରୁ ୫୦ଟା ପର୍ଯ୍ୟନ୍ତ ଅକ୍ଲେଶରେ ମିଳୁଥିଲା । ପାଚିଲା ଅମୃତଭଣ୍ଡା ଟ୦/ ରୁ ଆରମ୍ଭ କରି ଟ୦।, ଟ୦୲ ଓ ଟଙ୍କାଏ ପର୍ଯ୍ୟନ୍ତ ଛୋଟରୁ ବଡ଼ ଅର୍ଥାତ୍ ଏକ ସେରରୁ ଆରମ୍ଭ କରି ୪/୫ ସେର ପର୍ଯ୍ୟନ୍ତ ମିଳୁଥିଲା । ଆଜିକାଲି ଭଳି ସେତେବେଳେ ଓଜନରେ ବିକ୍ରି ହୋଇ ଗୋଟା ବିକ୍ରି ହେଉଥିଲା । ସେପରି ଆତଫଳ ଟୋକେଇ ହିସାବରେ ମୂଲ୍ୟାୟନ କରାଯାଉଥିଲା । ବଇଣ୍ଡାରେ ଛୋଟ ପିଲାଙ୍କ ଖେଳିବା ପାଇଁ ଓ ବଡ଼ମାନଙ୍କ ଧରିବା ପାଇଁ କାଠ, ବାଉଁଶ ଓ ବେତ ବାଡ଼ି ଚିତ୍ରିତ ହୋଇ ସୁଲଭରେ ମିଳୁଥିବାରୁ ଲୋକେ ସଉକରେ ତାହା କିଣି ଘରକୁ ନେଉଥିଲେ । ମୁଁ ଏକାଧିକବାର ସେ ସବୁ ନେଇ ବହୁ ଲୋକଙ୍କୁ ଉପହାର ଦେଇ ଖୁସି କରାଇ ପାରିଥିଲି । ଏଥର ମଧ୍ୟ ବାଟରେ କିଛି ଫଳ ଓ ବାଡ଼ି କିଣି ଘରକୁ ନେଇଥିଲି । ଏବେ ବେତ ବାଡ଼ି ପୁରୀ ସହରରେ ମାତ୍ର ୩୦/୪୦ ଟଙ୍କାରେ (ଗୋଟିଏ) ବିକ୍ରି ହେଉଛି ।

ପ୍ରାୟ ସନ୍ଧ୍ୟା ସାଢ଼େ ୬ରେ ସମ୍ବଲପୁର ପହଞ୍ଚିଲୁ । ଆମର ସାଙ୍ଗ ସାଥୀମାନଙ୍କ ଠାରୁ ବିଦାୟ ନେଇ ମୁଁ ବାଲିବନ୍ଧାରେ ରହୁଥିବା କର୍ମଚାରୀ ବନ୍ଧୁ ୰

ଉପେନ୍ଦ୍ର ପୁରୋହିତଙ୍କ ବସାକୁ ଗଲି । ସେଠାରେ ରାତିଟି କଟାଇ ଓ ଅନ୍ୟାନ୍ୟ ପରିଚିତ ବନ୍ଧୁଙ୍କ ସଙ୍ଗେ ଦେଖା କରି ପରଦିନ ସକାଳେ ପ୍ରାୟ ୮ଟାରେ ବସ୍ ଷ୍ଟେଣ୍ଡକୁ ଯାଇ ବରଗଡ଼ ବସ୍ ଧରିଲି । ଖରା ଦିନ ହୋଇଥିବାରୁ ମହାନଦୀରେ ପାଣି କମ୍ ଥିବାରୁ ପନଟୁନ୍ (pontoon) ପୋଲ ଉପରେ ଗାଡ଼ି ଯାଇ ପାରୁଥିଲା । ପ୍ରାୟ ଦିନ ୧୨ଟାରେ ଯାଇ ବରଗଡ଼ ପହଞ୍ଚିଲି । ପହଞ୍ଚିଲା ବେଳକୁ ଗାଁରୁ ଗ୍ରାମର ହଳିଆଟିଏ, ସାନ କାକା ଓ ବାପା ବରଗଡ଼ ପହଞ୍ଚି ସାରି ମୋତେ ଅପେକ୍ଷା କରିଥିଲେ । ମୋତେ ସେମାନେ ଦେଖି ଖୁସି ହେଲେ ଓ ମୋର ଜିନିଷପତ୍ରକୁ ହଳିଆ ବୋହି ନେଲା ଚାଲିଲା ବାଟରେ । ମୁଁ, ବାପା ଓ କାକା ସାଇକଲରେ ସଡ଼କ ବାଟରେ ଗଲୁଁ । ଘରେ ପହଞ୍ଚିଲା ବେଳକୁ ବେଳ ଟଳି ଅପରାହ୍ନ । ଘରରେ ପହଞ୍ଚି ଧୁଆଧୋଇ ହେବା ପରେ ଖାଇବା ବେଳେ ସମସ୍ତେ ମୋର ସ୍ୱାସ୍ଥ୍ୟ, ପରୀକ୍ଷା ଓ ବାଟରେ ସୁବିଧା ଅସୁବିଧା ପଚାରି ବୁଝୁଥିଲେ । ଘରର ପ୍ରାୟ ସମସ୍ତେ ମୋର ଆସିବାକୁ ଅପେକ୍ଷା କରି ଅଖିଆ ଥିଲେ । ତେଣୁ ଖାଇବା ବେଳେ ସବୁ ଥର ପରି ସମସ୍ତଙ୍କ ଘରର ତରକାରୀପତ୍ର ଆସି ଜମା ହୋଇ ଭୁରି ଭୋଜନରେ ପରିଣତ ହେଲା । ସାଧାରଣତଃ ମୁଁ ଘରକୁ ଆସିଲେ ମୋର ବଡ଼ ବାପା, କାକା ଆଦି ସମସ୍ତଙ୍କ ଘରୁ ମୋତେ ସ୍ନେହରେ ତରକାରୀପତ୍ର ଦିଅନ୍ତି ଓ ଅଧିକାଂଶ ସମୟ ତାଙ୍କ ଘରମାନଙ୍କରେ ମଧ ଖାଇବାକୁ ପଡ଼େ । ଜଳଖିଆ କଥା ତ ଛାଡ଼ । ଏସବୁ ସମସ୍ତଙ୍କ ମୋ' ପ୍ରତି ପ୍ରଗାଢ଼ ସ୍ନେହର ନମୁନା ନୁହେଁ କି ? ମୁଁ ମଧ ତାର ବଦଳରେ ସମସ୍ତଙ୍କୁ ସ୍ନେହ ଓ ଭକ୍ତିରେ ଆନନ୍ଦ ପ୍ରଦାନ ଦେଇ ଥାଏଁ । ମୋର ସ୍ତ୍ରୀ ଆସିବା ପରେ ସେ ମଧ ମୋର ବ୍ୟବହାର ଅନୁସରଣରେ ସମସ୍ତଙ୍କୁ ସମୁଚିତ ଆଦର, ଭକ୍ତି କରି ବେଶ୍ ପ୍ରଶଂସନୀୟା ହୋଇଥିଲେ ।

ସନ୍ଧ୍ୟାରେ ମୁଁ ଗାଁ ଦାଣ୍ଡକୁ ବାହାରି ସମସ୍ତଙ୍କ ସଙ୍ଗେ ଦେଖା କଲା ବେଳେ ସେମାନେ ମୋର ରୋଗଗ୍ରସ୍ତ କଥା ଓ ପରୀକ୍ଷା କଥା ପଚାରି ଥିଲେ । ମୁଁ ସମସ୍ତଙ୍କୁ ଉତ୍ତର ଦେଇ ସନ୍ତୋଷ କରିଥିଲି । ଯାହା ପାଇଁ ଯାହା ଜିନିଷ ଆସିଥିଲା, ସେ ସବୁ ଦେବା କାମ ସରିଗଲା । ଏଣେ ମୋର ମାଆ କଟକରୁ ଆଣିଥିବା ଫଳମୂଳ ଓ ମିଠାଦି ବିଷୟରେ ତାର ପରିଚିତ ଓ ମୋର ହିତାକାଂକ୍ଷୀମାନଙ୍କୁ ବଣ୍ଟନ କରି ଆନନ୍ଦ ଲାଭ କରୁଥିଲେ ।

ଏପରି ଭାବେ କିଛି ଦିନ ଅତିବାହିତ ହେବା ପରେ ମୁଁ ଓ ମୋର ସ୍ତ୍ରୀ ତଥା ଘରର ଅନ୍ୟମାନେ ମୋର ବାପା ଓ ବୁଆମାନେ ମୋର କୁଲଟର ମିତବାପାଙ୍କ ଜ୍ୟେଷ୍ଠା କନ୍ୟା ଜିଲବିର ବିବାହ ପାଇଁ କୁଲଟ ଯାଇ ଏକ ରାତ୍ରି ଯାପନ

କରି ଆନନ୍ଦରେ ପରଦିନ ଗାଁକୁ ଫେରି ଆସିଲୁଁ। ମୋର ସୁବିଧା ଅନୁସାରେ ମୋର ବନ୍ଧୁବାନ୍ଧବ ଘରକୁ ତଥା ଶାଶୁଘରକୁ ଯାଇ ବୁଲି ଆସିଲି। ଗାଁରେ ରହି ଅପ୍ରେଲରୁ ଜୁନ ପର୍ଯ୍ୟନ୍ତ ଘର ଓ ଗାଁର ବାତାବରଣରେ କଟାଇବାକୁ ହେଲା। ବୋଧ ହୁଏ ଜୁନ୍‌ର ମଧ ଭାଗରେ ଆମର ବି.ଏସ୍‌ସି. ଫଳ ପ୍ରକାଶିତ ହେଲା। ସେତେବେଳେ ଛାତ୍ରସଂଖ୍ୟା କମ୍ ଥିବାରୁ ଖବର କାଗଜରେ ନାମ ବା ରୋ. ନମ୍ବର ପ୍ରକାଶିତ ହେଉଥିଲା। କଥିତ ବର୍ଷରେ ନାମ ନ ବାହାରି କେବଳ ରୋ.ନ. ଗୁଡ଼ିକ ପ୍ରକାଶିତ ହୋଇଥିଲା। ଫଳ ପ୍ରକାଶିତ ହେବାର ପରଦିନ ବଡ଼ ବାପା ବରମ୍‌ଲି ଯାଇଥିଲେ ଓ ଖବର କାଗଜରେ ବାହାରି ଥିବାର କାଗଜ ଖଣ୍ଡିକ ଧରି ଘରକୁ ଫେରିଲେ। ମୋର ସଠିକ୍ ରୋ.ନ. ସେ ଜାଣି ନ ଥିବାରୁ ମୋର ପାସ୍ ବା ଫେଲ ଖବର ବିଷୟରେ ଅଜ୍ଞ ରହିଲେ। ତେଣୁ ସଙ୍ଗେ ସଙ୍ଗେ ସେ ମୋର ରୋ.ନ. ପଚ୍ଚରିବାରୁ ମୋର ରୋ.ନ. ୪୧ ବୋଲି କହିବାରୁ ସେ ସଙ୍ଗେ ସଙ୍ଗେ କହି ପକାଇଲେ, ଶୀଘ୍ର ଯାଇ ମହାପ୍ରଭୁ ଖଟୁଲି ସମ୍ମୁଖରେ ମୁଣ୍ଡିଆ ମାରିବାକୁ ନିର୍ଦ୍ଦେଶ ଦେବାରୁ ମୁଁ ତାଙ୍କୁ ପ୍ରଥମେ ମୁଣ୍ଡିଆ ମାରି ଆର୍ଶୀବାଦ ନେଲି ଓ ପରେ ଯାଇ ଭଗବାନଙ୍କୁ ପ୍ରଣାମ କଲି। ତାପରେ ବଡ଼ ବାପା ମୋ ହାତକୁ ଖବର କାଗଜଟି ବଢ଼ାଇ ଦେବାରୁ ମୁଁ ତାକୁ ନିଜ ଚକ୍ଷୁରେ ଖବର କାଗଜରୁ ପଢ଼ି ଓ ଦେଖି ମନ ଶାନ୍ତ କଲି। ତା' ପରେ ଏହି ଖବର ଘରେ, ବାହାରେ, ଗାଁରେ ଶୀଘ୍ର ବିଜୁଳି ବେଗରେ ପ୍ରସାରିତ ହେଲା। ଯେ ଶୁଣିଲେ ସମସ୍ତେ ଆସି ମୋତେ ଶୁଭେଚ୍ଛା ଜଣାଇଲେ। ସେ ଦିନଟି ଗାଁ ସାରା ଏ ବିଷୟରେ ଚର୍ଚ୍ଚା ହେବାକୁ ଲାଗିଲା। କାରଣ ଆମ ଘର, ଗାଁ ତଥା ନିକଟବର୍ତ୍ତୀ ଗାଁମାନଙ୍କରେ ମଧ କେହି ସ୍ନାତକଧାରୀ ବ୍ୟକ୍ତି ନ ଥିଲେ। ଏପରିକି ଆମ ବଂଶରେ, ଘରେ, ଗାଁରେ ଓ ଅଞ୍ଚଳରେ ପ୍ରଥମ ଡିଗ୍ରୀଧାରୀ ପୁଣି ବିଜ୍ଞାନରେ ସର୍ବପ୍ରଥମ ବୋଲି କହିଲେ ଚଳେ। ଅବଶ୍ୟ କିଛି ବର୍ଷ ଆଗରୁ ଆମ ଉପଖଣ୍ଡରେ - ସବ୍‌ଡିଭିଜନରେ ବରପାଲି ନିକଟସ୍ଥ ତୁଲଣ୍ଡୀ ଗ୍ରାମରୁ ସ୍ୱନାମଧନ୍ୟ ବିଲାତ ଫେରନ୍ତା ପ୍ରଫେସର ଡା. ପର୍ଶୁରାମ ମିଶ୍ର ଉଭିଦ ବିଜ୍ଞାନରେ କୃତିତ୍ୱ ସହ ଉତ୍ତୀର୍ଣ୍ଣ ହୋଇ ତତ୍କାଳୀନ ରେଭେନ୍ସା କଲେଜରେ ଉଭିଦ ବିଭାଗୀୟ ମୁଖ୍ୟ ଅଧାପକ ହେଲେ। ସେପରି ଐତିହାସିକ ଘନଶ୍ୟାମ ଦାଶ ମଧ ବରପାଲି ନିକଟସ୍ଥ କଟାପାଲିରୁ ବାହାରି ବିଲାତରୁ ଶିକ୍ଷା କରି ଇତିହାସ ବିଭାଗର ମୁଖ୍ୟ ଅଧାପକ ହୋଇଥିଲେ। ଏମାନେ ପରେ ବିଭିନ୍ନ ଉଚ୍ଚତମ ପଦବୀ ଅଧିକାର କରି ଆମ ଅଞ୍ଚଳର ମାନବର୍ଦ୍ଧନ କରିଥିଲେ। ଏପରି ଭାବେ ମୋର ପାଠପଢ଼ା ପର୍ବର ଏକ ପ୍ରକାର ସମାପ୍ତି ଘଟିଲା। କାରଣ ଉଚ୍ଚକୁ ପଢ଼ିବା ପାଇଁ ଘରର ଆର୍ଥିକ ସମ୍ବଳ ନ ଥିଲା। ଅବଶ୍ୟ ମୋର ପାଠପଢ଼ା ଚ୍ଚଲିଥିଲେ

ମୋତେ ସାହାଯ୍ୟକାରୀ ସମସ୍ତ ବଦାନ୍ୟ ବ୍ୟକ୍ତିମାନେ ସାହାଯ୍ୟ ଦେବାରେ ବୋଧ ହୁଏ କୁଣ୍ଠା ପ୍ରକାଶ କରି ନ ଥାନ୍ତେ ବୋଲି ମନେ ହୁଏ। କିନ୍ତୁ ସବୁ ତ କାଳ ଓ ପରିସ୍ଥିତିର ଅଧୀନ। ଈଶ୍ୱରଙ୍କ ଇଚ୍ଛା ନ ହେଲେ ପତ୍ରଟିଏ ମଧ ହଲେ ନାହିଁ।

ଠିକ୍ ଛୁଟି ମଧରେ ମୋର ସ୍ତ୍ରୀଙ୍କ ଅବସ୍ଥାରେ କିଛି ପରିବର୍ତ୍ତନ ଦେଖା ଦେବାରୁ ଓ ଅରୁଚି ଓ ବାନ୍ତି ହେତୁ ଅଭିଜ୍ଞ ସ୍ତ୍ରୀମାନଙ୍କ ମଧରେ ଗୁଞ୍ଜରଣ ହେଲା ଯେ ମୋ ସ୍ତ୍ରୀ ଗର୍ଭାଧାନ ହେତୁ ଏ ସବୁ ଲକ୍ଷଣ ଦେଖାଯାଇଛି। ଯାହା ବି ହେଉ ପ୍ରାୟ ମାସାଧିକ କାଳ ଅସୁସ୍ଥତା ଓ ସ୍ୱାସ୍ଥ୍ୟହାନି ପରେ ନାନା ଔଷଧ ସେବନ କରାଯାଇ ଟିକିଏ ସୁସ୍ଥ ହେଲେ। ଏଥିରେ ପତିଦେବଙ୍କ କିଛି କର୍ତ୍ତବ୍ୟ ନ ଥିବା ଜାଣି ଚୁପ୍ ହେବା ଛଡ଼ା ଆଉ ଅନ୍ୟ ଉପାୟ ନ ଥିଲା।

## ଚାକିରୀ ଜୀବନର ଆରମ୍ଭ:-

ଯେତେବେଳେ ପାଠପଢ଼ା ସାରି ଘରକୁ ଫେରିଲି ସେତେବେଳେ ନିଜର ଉଦ୍‌ବୃତ୍ତ ପାଣ୍ଠି ହିସାବରେ କିଛି ଗଚ୍ଛିତ ନ ଥିଲା। ଯାହା ଥିଲା ବୋଧ ହୁଏ ଟ୪୦/୫୦ ରୁ ବେଶୀ ନୁହେଁ। ତେଣୁ ମୋର ପାସ୍ ଖବର ପ୍ରକାଶିତ ହେବା ପରେ ଉଚ୍ଚ ଶ୍ରେଣୀ ଅଧୟନ ଚିନ୍ତା ପରିତ୍ୟାଗ ପୂର୍ବକ ଚାକିରୀ ଚିନ୍ତା ମନରେ ପ୍ରବେଶ କଲା। ସେତେବେଳେ ଉଚ୍ଚ ବିଦ୍ୟାଳୟମାନଙ୍କରେ ନୂତନ ପାଠ ହିସାବରେ ବିଜ୍ଞାନ ଶିକ୍ଷା ବାଧତାମୂଳକ ହେବାରୁ ବିଜ୍ଞାନ ପଢ଼ାଇବା ପାଇଁ ବିଜ୍ଞାନ ଶିକ୍ଷକର ଯଥେଷ୍ଟ ଆବଶ୍ୟକତା ଥିଲା। ବିଜ୍ଞାନ ଶିକ୍ଷାଦାନ ପାଇଁ I.Sc. ପାସ୍ କରିଥିବା ବା I.Sc. ପାସ୍ କରି B.A. ପାସ୍ କରିଥିବା ଶିକ୍ଷକମାନେ କାମଚଳା ହିସାବରେ ବିଜ୍ଞାନ ପାଠ ପଢ଼ାଉଥିଲେ। ତେଣୁ ମୋର ସେତେବେଳେ ଏକମାତ୍ର B.Sc. ପାସ୍ କରିଥିବା ଯୁବକଙ୍କ ଶିକ୍ଷକତା ପାଇଁ ଚାହିଦା ବଢ଼ି ଯାଇଥିଲା। ଅନ୍ୟାନ୍ୟ ଯେଉଁମାନେ B.Sc. ପାସ୍ କଲେ ସେମାନେ ଉଚ୍ଚ ଶିକ୍ଷା ପାଇଁ ଚାଲିଯିବାରୁ ବିଜ୍ଞାନ ଶିକ୍ଷକ ପାଇଁ ଯୋଗ୍ୟ ଶିକ୍ଷକର ଦୁର୍ଲଭ ଥିଲା। ଆମ ଗାଁ ନିକଟସ୍ଥ ବରଗଡ଼ ଜର୍ଜ ହାଇସ୍କୁଲ ଓ ବରପାଲି ହାଇସ୍କୁଲରେ ଶିକ୍ଷକତା ପାଇଁ ଡକରା ଆସିଲା। ବରଗଡ଼ରୁ ଶୀଘ୍ର ଖବର ନ ଆସିବାରୁ ବରପାଲି ହାଇସ୍କୁଲର ତତ୍କାଳୀନ ସମ୍ପାଦକ ଓ ମି.ଇ. ସ୍କୁଲର ପ୍ରଧାନ ଶିକ୍ଷକ ଗଣନାଥ ଗଡ଼ତିଆ ଓ M.A. ପଢୁଥିବା ଆମର ଭୂତପୂର୍ବ ଶିକ୍ଷକ ନବୀନ କୁମାର ସାହୁଙ୍କ ବିଚାରରେ ମୋତେ ଡକାଇ ନିଯୁକ୍ତି ପ୍ରଦାନ କରିଥିଲେ। ସେତେବେଳେ ମୋର ମାସିକ ଦରମା ଟ ୧୦୦ ଦେବାକୁ କହିବାରୁ ମୁଁ ଟ ୧୦୦ +ଟ ୧୦ = ଟ ୧୧୦ ଦେବାକୁ ଅନୁରୋଧ କରିବାରୁ ସେମାନେ

ରାଜି ହୋଇ ଗଲେ । ୧୦.୭.୪୮ ଇ. ଦିନ ବରପାଲି ଉଚ୍ଚ ବିଦ୍ୟାଳୟର ସହକାରୀ ପ୍ରଧାନ ଶିକ୍ଷକ ରୂପେ ଯୋଗଦାନ କଲି । କର୍ମାରମ୍ଭର ଶ୍ରୀଗଣେଷ କରାଗଲା । ସେହି ଦିନ ବରପାଲି ହାଇସ୍କୁଲର ପୂର୍ବତନ ପ୍ରଧାନ ଶିକ୍ଷକ ସ୍ୱନାମଧନ୍ୟ ଦେବାର୍ଚ୍ଚନ ଭୋଇ ଉଚ୍ଚ ଶିକ୍ଷା ପାଇଁ ଅନ୍ୟତ୍ର ଚାଲି ଯିବାରୁ ସେଦିନରେ ଶ୍ରୀଯୁକ୍ତ ଗଣନାଥ ଗଡ଼ତିଆ ବି.ଏ.ଡି.ଇଡି. ପ୍ରଧାନ ଶିକ୍ଷକ ରୂପେ ମଧ୍ୟ ଯୋଗଦାନ କରିଥିଲେ ।

ମୋର ବରପାଲି ହାଇସ୍କୁଲରେ ଶିକ୍ଷକତା ପାଇଁ ଯୋଗଦାନ ଯାହା ହେଉନା କାହିଁକି ହିତାକାଂକ୍ଷୀ ମିତବାପା ଓ ତାଙ୍କ ପରିବାର ସମସ୍ତେ ବହୁତ ଆନନ୍ଦିତ ହୋଇଥିଲେ । ସ୍କୁଲରେ ଯୋଗଦାନ କଲା ପରେ ତାଙ୍କ ସଙ୍ଗେ ଦେଖା କରିବାକୁ ଗଲି ଓ ସେମାନେ ଏଥିରେ ସନ୍ତୋଷ ପ୍ରକାଶ କଲେ । ସୁବିଧା ପାଇ ତାଙ୍କୁ ଦେଖା କରିବାକୁ ଗଲେ ଜଳଖିଆ ଆଦି ଦେଇ ଆନନ୍ଦିତ ହେଉଥିଲେ । ଖାଇବା ପାଇଁ ମନା କଲେ ମିତବାପାଙ୍କ ବାପା ମୋର ମାନ୍ୟରେ ଅଜା ହେବେ କହୁଥିଲେ ଦାଦା ! ଯାଚିଲା ଖାଦ୍ୟ ମନା କରିବା ଅବିଧେୟ ଓ ବିଶେଷ କରି କାହାକୁ ଅତିଥି ବ୍ରାହ୍ମଣ ସେବାରୁ ବଞ୍ଚିତ ହେବାକୁ ଦେବା ମଧ୍ୟ ଅସମୀଚିନ । କଥାରେ ଅଛି, "ହେଉ ନ ହେଉ ବରଷୁ ଥାଉ । ଥାଉ ବା ନ ଥାଉ ବ୍ରାହ୍ମଣ ଖାଉ ।" ଏହାର ତାତ୍ପର୍ଯ୍ୟ ହେଲା ଶସ୍ୟ ଅବସ୍ଥା ଯାହା ହେଉ ନା କାହିଁକି ବର୍ଷା ହେଲେ ଚାଷୀ ପକ୍ଷେ ଭଲ । ଘରେ ଯାହା ଥାଉ ନା କାହିଁକି ଅତିଥି ବ୍ରାହ୍ମଣ ସେବା ବରଣୀୟ । ତେଣୁ ମୁଁ ନିରୁତ୍ତର ହୋଇ ପ୍ରତି ଦିନ ତାଙ୍କ ଘରକୁ ଗଲେ ମଧ୍ୟ ଜଳଖିଆ ଗ୍ରହଣ କରିବାକୁ ବାଧ୍ୟ ହେଉଥିଲି । ଖାଇବା ଓ ଖୁଆଇବାରେ କେତେ ଲୋକ ଖୁସି ହୋଇଥାନ୍ତି । ଏହା ଏକ ଭଲ ଗୁଣ ।

### ଶ୍ରୀବସ୍ତ ଦାଶଙ୍କ ପାଠପଢ଼ା :-

ବରପାଲି ହାଇସ୍କୁଲରେ କାର୍ଯ୍ୟ କରୁଥିବା ସମୟରେ ଦିନେ ଛୁଟିରେ ସକାଳେ ଗାଁର ମନ୍ଦିର ପିଣ୍ଡାରେ ବସିଛି, ଦେଖିଲି ମୋର ଶଙ୍କୁ ଅର୍ଜୁନ ଦାଶଙ୍କ ସାନ ଭାଇ ଅର୍ଥାତ୍ ଅନନ୍ତ ଦାଶଙ୍କ ପୁଅ ସକାଳରୁ ତାଙ୍କ ଗାଇ ବଳଦଙ୍କୁ ନେଇ ବିଲକୁ ଯାଇଛି । ତାକୁ ପଚାରିବାରେ ଜାଣିଲି ଯେ ସେ ୭ମ ଶ୍ରେଣୀ ଖୁଣ୍ଟପାଲିରେ ଭଲ ଭାବରେ ପାସ୍ କରିଛି । ତାଙ୍କର ଘରୋଇ ଅସୁବିଧା ହେତୁ ଉଚ୍ଚ ଶିକ୍ଷାରୁ ସେ ବଞ୍ଚିତ । ତେଣୁ ମୁଁ ସେ ଦିନ ଅନନ୍ତ ଦାଶଙ୍କୁ ଡକାଇ, ତାଙ୍କୁ ପଚାରି ଶ୍ରୀବସ୍ତର ପଢ଼ା ବିଷୟରେ ବୁଝିଲି । ସେମାନେ ପଢ଼ା ଖର୍ଚ୍ଚ ଯୋଗାଇ ପାରିବେ ନାହିଁ । ତେଣୁ ହଠାତ୍ ମୋ ମନରେ ଏକ ଚିନ୍ତା ଜାଗି ଉଠିଲା । ଯଦି ପିଲାକୁ କିଛି ସାହାଯ୍ୟ ଦିଆ ଯାଆନ୍ତା ତେବେ ଘରୁ କିଛି ଖର୍ଚ୍ଚ ଯୋଗାଡ଼ କରି ସେ ହୁଏତ ପାଠ

ପଢ଼ି ପାରେ । ଏଣୁ ଅନନ୍ତ ଦାଶଙ୍କୁ ପ୍ରସ୍ତାବ ଦେଲି ଯେ ଶ୍ରୀବତ୍ସର ଖାଦ୍ୟ ଖର୍ଚ୍ଚ ବାବଦରେ ଯାହା ଘରେ ଖର୍ଚ୍ଚ ହେଉଛି ତାଙ୍କୁ ପଢ଼ିବା ପାଇଁ ଦିଆଯାଇ ପାରିଲେ କେମିତି ହୁଅନ୍ତା । ଏଣୁ ଚିନ୍ତା କରି ଶେଷରେ କହିଲେ ଯେ ତାର ଖାଇବା ଖର୍ଚ୍ଚ ବାବଦକୁ ସେ କିଛି ଦେଇ ପାରିବେ । ତେଣୁ ଶ୍ରୀବତ୍ସକୁ ଡକାଇ ଏସବୁ ପରିସ୍ଥିତିରେ ତାର ଉଚ୍ଚ ଶିକ୍ଷା ପାଇଁ ତାର ମତ ଜାଣିବାକୁ ଚାହିଁଲି । ସେ ଏଥିରେ ଆନନ୍ଦିତ ହୋଇ ଦୁଃଖ କଷ୍ଟ ସହି ପଢ଼ିବାକୁ ରାଜି ହେଲା । ତେଣୁ ତାକୁ ଖୁଣ୍ଟପାଲି ଯାଇ ୭ମ ପାସ୍ ସାର୍ଟିଫିକେଟ୍ ଆଣି ମୋ ସଙ୍ଗେ ବରପାଲି ଯିବାର ପ୍ରସ୍ତାବ ଦେବାରୁ ତାର ବାପା ମଧ୍ୟ ସେଥିରେ ରାଜି ହେଲେ । ଦିନେ ଦି' ଦିନ ପରେ ଉଭୟ ବାପ ଓ ପୁଅ ସାର୍ଟିଫିକେଟ୍ ଓ କିଛି ଟଙ୍କା ଧରି ବରପାଲିରେ ମୋତେ ଦେଖା କଲେ । ତା'ପରେ ତା'ର ମାର୍କ ଆଦି ଦେଖାଇ ହେ.ମା.ଙ୍କୁ ସବୁ କଥା କହିଲି । ସେ ମଧ୍ୟ ତା'ର ଉପରେ ସହାନୁଭୂତି ପ୍ରକାଶ କରି ସ୍କୁଲରୁ ଯାହା ସୁବିଧା କରାଯାଇ ପାରିବ କରିବାକୁ ସଦୟ ସ୍ୱୀକୃତି ପ୍ରଦାନ କଲେ । ଫଳରେ ନାମ ଲେଖାଇବା ପାଇଁ ନିର୍ଦ୍ଧାରିତ ଫର୍ମ ପୂରଣ କରି ଓ ଯେତେ ଟଙ୍କା ନିହାତି ପକ୍ଷେ ଦରକାର ସେତିକି ମାତ୍ର ଜମା କରି ନାମ ଲେଖା ହେଲା । ମୋଟରେ ଟ୧୨/୧୩ ଖର୍ଚ୍ଚ ହେଲା । ହଷ୍ଟେଲ୍‌ରେ ମଧ୍ୟ ରହିବା ଓ ଖାଇବା ପାଇଁ ବନ୍ଦୋବସ୍ତ କରାଗଲା । ସେମାନେ ନାମ ଲେଖାଇ ଗାଁକୁ ଫେରିଲେ ଓ ୨/୩ ଦିନ ପରେ ତାର ବାକ୍ସ, ଖଟ ଓ ଅନ୍ୟ ବ୍ୟବହାର୍ଯ୍ୟ ଜିନିଷ ଓ ମେସ୍ ପାଇଁ କିଛି ଚାଉଳ ଯୋଗାଡ଼ କରି ମୋ ପାଖେ ଯାଇ ପହଞ୍ଚିଲେ । ମୁଁ ତାର ରହିବା ଓ ଖାଇବାର ବ୍ୟବସ୍ଥା କରି ପଢ଼ାପଢ଼ି ପାଇଁ ବହିପତ୍ର ଓ ଖାତା ଆଦି ଯୋଗାଡ଼ କରି ଦେଲି । ସେ ହଷ୍ଟେଲ୍‌ରେ ମେସ୍‌ରେ ଖାଇ ପଢ଼ିବାକୁ ଲାଗିଲେ । ପରେ ଧୀରେ ଧୀରେ ତା'ର ସ୍କୁଲ ଫିଜ୍ ମାଫ କରାଗଲା ଓ ମେସ୍‌ର ଖର୍ଚ୍ଚ ବାବଦରେ ଅଳ୍ପ କିଛି ଦେବାକୁ ହେଲା । ଅର୍ଥାତ୍ ଜଣେ ଉଚ୍ଚ ଶିକ୍ଷାର ଆଶା ନ ରଖିଥିବା ବ୍ୟକ୍ତି ଟିକିଏ ସାହାଯ୍ୟ ସହାନୁଭୂତି ଦେଲେ ହୁଏତ ପରେ ଭଲ ମଣିଷଟିଏ ହୋଇ ପାରେ । ଏହା ଶ୍ରୀବତ୍ସର ଜୀବନରେ ଘଟିଥିଲା । ପରବର୍ତ୍ତୀ ବର୍ଷମାନଙ୍କରେ ଶ୍ରେଣୀରେ ଭଲ ଫଳ କରିବାରୁ ତାର ଫିଜ୍ ଓ ଖାଦ୍ୟପେୟ ସବୁ ମାଫ କରାଗଲା । ୧୯୫୨ ମସିହାର ସ୍କୁଲରୁ ମାଟ୍ରିକ୍ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ସମସ୍ତଙ୍କ ମାନ ରଖିଲା । ପରବର୍ତ୍ତୀ ସମୟରେ ସେ ଆମ ପାଖେ ରହି ପାଢ଼ୀ ବାବୁଙ୍କ କ୍ଲିନିକ୍‌ରେ ସହାୟକ ଭାବେ ଯୋଗ ଦେଇ ନିଷ୍ଠାପର କାର୍ଯ୍ୟ ହେତୁ ସେ ସରକାରୀ ପୋଷ୍ଟେଲ ସୁପରିଟେଣ୍ଡେଣ୍ଟ ହିସାବରେ ଅବସର ନେଇଥିଲେ । ନିଜର ପିଲାମାନଙ୍କୁ ମଣିଷ କରି ଏବେ ସମ୍ବଲପୁରରେ ଜଗନ୍ନାଥ କଲୋନୀରେ ନିଜର ଘରଦ୍ୱାର କରି ବେଶ

ସୁଖରେ ଅଛନ୍ତି । ଯଦି ସେ ପଢ଼ିବା ପାଇଁ ଏତିକି ଟିକିଏ ବି ଉତ୍ସାହ ପାଇ ନ ଥାନ୍ତା ତେବେ ବଣମଲ୍ଲୀ ବଣରେ ଶୁଖି ନଷ୍ଟ ହୋଇ ଯାଇଥାନ୍ତା ସିନା । ଏପରି କେତେକ ବଣମଲ୍ଲୀ ଯେ ବଣରେ ଫୁଟି ଅବହେଳିତ ଭାବେ ଝାଉଁଳି ଯାଉଥିବେ ତା'ର ହିସାବ କିଏ ବା ରଖୁଛି ? ବିଶ୍ୱନିୟନ୍ତାଙ୍କ ଇଚ୍ଛାରେ ସଦା ମଣିଷ ପରିଚ୍ଳଳିତ ହୁଏ । ମୁଁ ଓ ଆମ୍ଭେମାନେ ନିମିତ୍ତ ମାତ୍ର ।

ସମୟ କ୍ରମେ ଗଡ଼ି ଚ୍ଳଳିଲା ଓ ମୁଁ ଓ ହେ.ମା. ଗଡ଼ତିଆ ବାବୁ ବସ୍ତ୍ରାଳୟର ପଛ ପଟେ ହେ.ମା.ଙ୍କ ପାଇଁ ଉଦ୍ଦିଷ୍ଟ କ୍ୱାର୍ଟର୍ସରେ ମିଶି ଏକାଠି ରହିଲୁ ଓ ଚପରାଶି ଦ୍ୱାରା ରନ୍ଧାଇ ଖାଇ ଚଳିଲୁ । କିଛି କାଳ ଅତିବାହିତ ହେବା ପରେ ହେ.ମା. ତାଙ୍କ ପରିବାର ଆଣିବାର ପ୍ରସ୍ତାବ ଦେବାରୁ ମୁଁ ଅନ୍ୟତ୍ର ରହି ମେସ୍‌ରେ ଖାଇବାର ସୁବିଧା କରିଥିଲି । ଏ ମଧ୍ୟରେ ମେଟ୍ରିକ କ୍ଲାସର ସପ୍ଲିମେଣ୍ଟାରୀ ପରୀକ୍ଷା ସମ୍ବଲପୁର ଜିଲ୍ଲା ସ୍କୁଲରେ ହେଉଥିବାରୁ ଓ ଛାତ୍ରମାନଙ୍କ ଦାୟିତ୍ୱ ନେଇ ସମ୍ବଲପୁର ଗଲି ଓ ପରୀକ୍ଷା ପରିଚ୍ଳଳନାରେ ନିରୀକ୍ଷକ ଭାବେ ନିଯୁକ୍ତି ପାଇ ନୂଆଁ ଅନୁଭୂତିର ସ୍ୱାଦ ଚ୍ଖିଲି ।

ଇତି ମଧ୍ୟରେ ସ୍କୁଲରେ Pretest, Test ପରୀକ୍ଷା ଚ୍ଳଳିଲା ଓ ତାର ମୂଳ ଦାୟିତ୍ୱ ମୋ ଉପରେ ନିର୍ଭର ଥିଲା । Test ପରୀକ୍ଷା ଶେଷ ହେବା ପରେ ଡିସେମ୍ବର ମାସରେ ବୋଧ ହୁଏ ମୋର ଶରୀର ଅସୁସ୍ଥ ହେବାରୁ କିଛି ଦିନ ଅବସର ନେଇ ଘରେ ରହିଲି । ସେତେବେଳେ ଶୀତ ମାସ ଆଗତ ଓ ମୋର କୌଣସି ଶୀତ ଲୁଗା ନ ଥିବାରୁ ଖଣ୍ଡିଏ ଗୁଡ଼ି (ମୋଟା ମଠା ସୂତାରେ ତିଆରି) କିଣିଲି । ସେତେବେଳେ ତା'ର ଦାମ ଥିଲା ଟ୨୧ ଓ ତାହା ଏତେ ମୋଟା ଥିଲା ଯେ ତାକୁ ଘୋଡ଼ାଇ ହୋଇ ଭୀଷଣ ଶୀତ ରାତିରେ ମୁକ୍ତ ଆକାଶ ତଳେ ଶୋଇଲେ ମଧ୍ୟ ଥଣ୍ଡା କବଳରୁ ରକ୍ଷା ମିଳିବ । ଆଜିକାଲି ଆଉ ସେ ମାନର ଜିନିଷ ପ୍ରସ୍ତୁତ କରାଯାଉ ନାହିଁ । ବହୁ ବର୍ଷ ପରେ ବରପାଲିରୁ ଅନ୍ୟ ଏକ ଦୋକାନରୁ ଖଣ୍ଡିଏ ଛୋଟ ଗୁଡ଼ି ଚଦର ପ୍ରାୟ ଟ୧୪୫ରେ କିଣିଥିଲି । ଏହା ସୁଦୃଶ୍ୟ, ନରମ ଓ ବ୍ୟବହାର ଉପଯୋଗୀ ଥିଲା । ସେଦିନର ଗୁଡ଼ିର ଆକାର, ପ୍ରକାର ଓ ବୁଣା ବିଷୟ ଚିନ୍ତା କଲେ ପ୍ରକୃତ ବ୍ୟବହାରିକ ଦୃଷ୍ଟିରୁ ନିରାଶ ହେବାକୁ ହୁଏ । ଡିସେମ୍ବର ମାସରେ X'mas ଛୁଟି ପରେ ବିଦ୍ୟାଳୟ ଖୋଲିଲା ଓ ମୁଁ ବିଦ୍ୟାଳୟକୁ ଯାଇ ଯୋଗଦାନ କଲି । ନୂତନ ବର୍ଷକୁ ସ୍ୱାଗତ କରି ପାଠପଢ଼ା ଆରମ୍ଭ ହେଲା । ଏପଟେ ଘରେ ମୋର ସ୍ତ୍ରୀ ଆସନ୍ନ ପ୍ରସବା । ତେଣୁ ଘର ପ୍ରତି ଏକ ସଜାଗ ଦୃଷ୍ଟି ଥାଏ । ୨ୟ ଶନିବାର ଦିନ ଅର୍ଥାତ୍ ୮.୧.୪୯ରେ ଘରକୁ ପହଞ୍ଚିଲି । ରାତ୍ର ପ୍ରାୟ ୧୨ଟା ପରେ ମୋର ସ୍ତ୍ରୀ ମୋତେ କହିଲେ ଯେ ସେ ଏକ ଅସ୍ୱାଭାବିକ ଯନ୍ତ୍ରଣା

ଅନୁଭବ କରୁଛନ୍ତି। ତେଣୁ ମା'ଙ୍କୁ ଓ ବଡ଼ ଝିଅଙ୍କୁ ଜଣାଇ ଦେଲେ ଭଲ ହେବ। ମୁଁ ନାନା ପ୍ରକାରରେ ତାଙ୍କୁ ବୁଝାଇଲା ପରେ ମଧ ସେ ଅସୁସ୍ଥତା ଅନୁଭବ କରୁ ଥିବାରୁ ମୋର ବଡ଼ ଝିଅ (ପିଉସୀ) ଏ ସବୁ ବିଷୟରେ ପୋଖତ ଓ ଅଭିଜ୍ଞ ଥିବାରୁ ଏ ଖବର ଜଣାଇ ଦେଲି। ସେମାନେ ସଙ୍ଗେ ସଙ୍ଗେ ପ୍ରସବର ପୂର୍ବାଭାସ ଓ ଲକ୍ଷଣ ଜାଣି ଆମର ଶୟନକକ୍ଷକୁ ସଫା ସୁତୁରା କରି ଉପଯୁକ୍ତ ସମୟକୁ ଚାକି ବସିଲେ। ଏପରି ଭାବେ ସାରା ରାତି ପାହି ସକାଳ ହେଲା। ଘରର ଅନ୍ୟ ସମସ୍ତେ ବ୍ୟଗ୍ରତାର ସହ ଉତ୍ସୁକ ରହିଛନ୍ତି। ଶୁଭ ବେଳା ଆସିଲା। ୯.୧.୪୯ ରବିବାର ସକାଳ ପ୍ରାୟ ସାଢ଼େ ୭ଟା ବେଳେ ପୌଷ ନବମୀରେ ଏକ ଶିଶୁ ଜନ୍ମ ନେଲା। କୁଆଁ କୁଆଁ ରୋଦନ କଲା। ଶିଶୁଟି ବାଳିକା। ଅତି ସୁରୁଖୁରୁରେ ବିନା ଡ଼ାକ୍ତର/ନର୍ସ ସାହାଯ୍ୟରେ ଶିଶୁର ଜନ୍ମ ହୋଇଥିବାରୁ ସମସ୍ତେ ଭଗବାନଙ୍କୁ ଅଶେଷ ଧନ୍ୟବାଦ ଜଣାଇଲେ। ମୋର ମାଆ ଆଗରୁ ଘରର ଇଷ୍ଟଦେବୀ ମା ମଙ୍ଗଳାଙ୍କ ପାଖରେ ଅଖଣ୍ଡ ଦୀପ ଜାଳି ନିର୍ବିଘ୍ନରେ ପ୍ରସବ ପାଇଁ ପ୍ରାର୍ଥନା କରୁଥିଲେ। ଘରେ ଓ ବାହାରେ ଯେ ଶୁଣିଲେ ଆନନ୍ଦିତ ହେଲେ। ନବଜାତ ଶିଶୁ ଓ ମାର ଅବସ୍ଥା ଜାଣିବା ପାଇଁ ଆମର ଜଣା ଅଜଣା ଶୁଭାକାଂକ୍ଷୀଙ୍କର ସୁଅ ଛୁଟିଲା। ସେତେବେଳେ ମୋର ବାପା ପୁଅ ନ ହୋଇ ଝିଅଟିଏ ହେଲା ବୋଲି ମନ ଦୁଃଖରେ ଅନ୍ୟତ୍ର ଯାଇ ବସି ଶୋଚନା କରୁଥିଲେ। ବଡ଼ ବାପା ଏହା ଜାଣି ତାଙ୍କୁ ଡକାଇ ଗୁଡ଼ାଏ ଶୋଧିଲେ। ପୁତ୍ର ହେଉ ବା କନ୍ୟା ଈଶ୍ୱରଙ୍କ ଇଚ୍ଛା ଉପରେ ନିର୍ଭର କରେ। ପୁଣି ପ୍ରଥମ ଗର୍ଭରେ ଝିଅ ହେଲେ ପିତା ମାତାଙ୍କ ଭାଗ୍ୟୋଦୟ ହୁଏ। ଏଣୁ ଏଥିରେ ଦୁଃଖିତ ହେବାର କିଛି ନାହିଁ। ବାପାଙ୍କୁ ଜଣେ ଭଣ୍ଡାରୀ ବା ପତ୍ରବାହକ ଯୋଗାଡ଼ କରି ଏ ସୁଖବର ମୋର ଶାଶୁଘର ତୋରାକୁ ଖବର ଦେବାକୁ ପ୍ରେରଣା ଦେଲେ।

ବାପାଙ୍କ ନିର୍ଦ୍ଦେଶ ପାଇ ଜଣେ ନିଜର ଲୋକ ସାଇକଲରେ ତୋରା ଅଭିମୁଖେ ଗଲେ ଓ ପରେ ଭଣ୍ଡାରୀ ମଧ ଯାଇ ତାର ଉପହାର ଓ ବକ୍‌ସିସ୍ ଧରି ଆସିଲେ। ଏ ଖବର ପାଇ ମୋର ଶାଶୁ ଶ୍ୱଶୁରଙ୍କ ବନ୍ଦୋବସ୍ତକୁ ଅପେକ୍ଷା ନ କରି ତୋରାରୁ ଆମ ଗାଁ ବାଟେ ଅନ୍ୟ ଗାଁକୁ ଯାଉଥିବା ଏକ ବଳଦଗାଡ଼ିରେ ବିଳମ୍ବିତ ଅପରାହ୍ନରେ ପହଞ୍ଚି ନାତୁଣୀ ମୁଖ ଅବଲୋକନରେ ପରମ ଶାନ୍ତି ଓ ତୃପ୍ତିର ଦୀର୍ଘ ନିଶ୍ୱାସ ପୂର୍ବକ ଆପ୍ୟାୟିତ ହେଲେ। ଏଣେ ଘରେ ଗାଁର ଲୋକଙ୍କୁ ଜାଣିବା ପାଇଁ ଗୁଡ଼ ଓ ନଡ଼ିଆ ଆଦି ନିଜର ଚିହ୍ନା ପରିଚିତମାନଙ୍କୁ ବା ଶିଶୁ ପ୍ରତି ଦର୍ଶନାକାଂକ୍ଷୀମାନଙ୍କୁ ଦେଇ ଆଶୀର୍ବାଦ ପାଇଁ ନିବେଦନ କଲେ।

ମୁଁ ସେହିଦିନ ଠାରୁ ପିତା, ମୋର ସ୍ତ୍ରୀ ମାତା ରୂପରେ ଗଣ୍ୟ ହୋଇ

ଜଣେ ଶିକ୍ଷକ...

ସାମାଜିକ ମାନବ ସ୍ତରକୁ ଉନ୍ନୀତ ହେଲୁଁ। ତଥାପି ପିତାମାତାର କର୍ତ୍ତବ୍ୟ ଓ ଦାୟିତ୍ୱ ବିଷୟରେ ଅନଭିଜ୍ଞ ଥିଲୁଁ। ସମୟର ଗତି ସଙ୍ଗେ ପୁତ୍ର କନ୍ୟାମାନଙ୍କ ଉଦ୍ଭବ ଓ ବୃଦ୍ଧି ସଙ୍ଗେ ସଙ୍ଗେ ନିଜର କର୍ତ୍ତବ୍ୟ ଓ ଦାୟିତ୍ୱ ସମ୍ପାଦନରେ ବ୍ୟସ୍ତ ରହି ସଂସାର ଜଞ୍ଜାଳର ସମ୍ମୁଖୀନ ହୋଇ ଆଗେଇବାକୁ ହେଲା - "ବେକରେ ପଡ଼ିଲେ ବଜାଇ ଶିଖନ୍ତି" - ନ୍ୟାୟରେ ଆମ୍ଭେ ଦମ୍ପତ୍ତି ପରିଚାଳିତ ହେଲୁ।

ପରଦିନ ମୋର କର୍ମକ୍ଷେତ୍ର ବରପାଲିକୁ ଗଲି। ସେଠାରେ ମୋର ନବଜାତ ଶିଶୁର ଶୁଭକାମନା କରି ତାଙ୍କ ମୁଁହ ମିଠା କରାଯିବାର ପ୍ରସ୍ତାବ ଦେବାରୁ ଅଗତ୍ୟା ସେଥିରେ ମୁଁ ରାଜି ହେଲି। ବିଶେଷତଃ ଏ ଖବର ମୋର ମିତବାପା ଓ ତାଙ୍କ ପାଖ ପଡ଼ୋଶୀ ଶୁଣି ଆନନ୍ଦିତ ହେଲେ। ଆଉ ମଧ୍ୟ ଆମର ବନ୍ଧୁବାନ୍ଧବମାନଙ୍କୁ ଖବର ଗଲା। ଏପରି ଭାବେ ଷଷ୍ଠୀ, ଏଗାର ଦିନ ଯାଇ ସଫାସୁତୁରା ହୋଇ ଏକୋଇଶ ଦିନ ସତ୍ୟନାରାୟଣ ପୂଜା କରାଯାଇ ନାମକରଣ ଉତ୍ସବର ଆୟୋଜନ କରାଗଲା। ସେଥିରେ ତୋରାରୁ ମୋର ଶ୍ୱଶୁର, ସମ୍ବଲପୁରୀ ଲୁଗାର ଯୁଗ ପ୍ରବର୍ତ୍ତନକାରୀ ଯୁଗଜନ୍ମା ପୃଥିବୀ ବିଖ୍ୟାତ ପଦ୍ମଶ୍ରୀ କୃତାର୍ଥ ଆଚାର୍ଯ୍ୟ ଓ ଅନ୍ୟ ବନ୍ଧୁବାନ୍ଧବମାନେ ଯୋଗ ଦେଇଥିଲେ। ପୂଜା ପରେ କୃତାର୍ଥ ଆଚାର୍ଯ୍ୟ କୋଳରେ ଶିଶୁକନ୍ୟାକୁ ଧରି ନାମ ଦେଲେ 'ମାଧୁରୀ' ଓ ଜାତକ ନାମ ଲଳିତା ହେଲା। ଉକ୍ତ ଉତ୍ସବରେ ପୂଜା, ପ୍ରସାଦ, ଭୋଜିଭାତ ସହ ତତ୍କାଳୀନ ସର୍ବଜନ ଆଦୃତ ଗ୍ରାମୋଫୋନ ଅଣାଯାଇ ବିଭିନ୍ନ ଭଜନ ଓ ସଙ୍ଗୀତ ପରିବେଷଣ କରାଯାଇ ଥିଲା। ଏହା ଗ୍ରାମର ଲୋକମାନଙ୍କୁ ସେତେବେଳେ ବେଶ ଆମୋଦପ୍ରଦ ଆୟୋଜନ ହୋଇଥିଲା। ଏପରି ଭାବରେ ଶିଶୁଟିକୁ ୧ ମାସ ହେଲାରୁ ଘରେ ସମସ୍ତଙ୍କ ମତରେ ସ୍ଥିର ହେଲା ଯେ ମୋର ପରିବାର ଅର୍ଥାତ୍ ସ୍ତ୍ରୀ ଓ କନ୍ୟା ସହ ତା'ର ଯତ୍ନ ନେବା ପାଇଁ ବଡ଼ ପିଉସୀ ସଙ୍ଗରେ ଯାଇ ବରପାଲିରେ ଏକ ଭଡ଼ାଘର ନେଇ ରହିବୁ। ତେଣୁ ବାପାଙ୍କ ଜନୈକ ବନ୍ଧୁ ଶ୍ରୀ ବୈଷ୍ଣବ ମେହେରଙ୍କ ଖାଲିଥିବା ଗୋଟିଏ ଘର ଠିକଣା କରି ଫେବୃୟାରୀ ପ୍ରଥମ ସପ୍ତାହରେ ଆମେ ସବୁ ବରପାଲିରେ ଯାଇ ରହିଲୁ। ବଡ଼ ପିଉସୀ ସଙ୍ଗରେ ରହି ଶିଶୁକନ୍ୟାର ଲାଳନ ପାଳନ ଭାର ନେଲେ ଓ ମୋ ସ୍ତ୍ରୀ ଘରର ଅନ୍ୟାନ୍ୟ ରନ୍ଧନ କାର୍ଯ୍ୟାଦି ବୁଝିଲେ। ଶିଶୁ ଅବସ୍ଥାରେ ଝିଅଟି କ୍ରନ୍ଦନଶୀଳା ଥିବାରୁ ପାଖ ପଡ଼ିଶା ସମସ୍ତେ ସହାନୁଭୂତି ସମ୍ପନ୍ନ ହୋଇ କ୍ରନ୍ଦନର କାରଣ ପଚାରିବାକୁ ଲାଗିଲେ। କିନ୍ତୁ ପ୍ରକୃତରେ ତାର କୌଣସି ସବିଶେଷ କାରଣ ନ ଥିଲା। ଆମ ଘର ମାଲିକଙ୍କ ଏକ ଛୋଟ ଝିଅ ଆସି ଶିଶୁଟିକୁ ସାନ୍ତ୍ୱନା ଦେବା ଛଳରେ ବେଶ୍ କୌତୁକିଆ କଥା କହୁଥିଲା - 'ହଏରେ

କାନ୍ଦରି ବୁଇ କାଣା ହେଲା ଯେ କାନ୍ଦୁଛୁ ? କାଣା ଦୁଲ୍ ପିନ୍ଧିବୁ କି ଶୁନ୍‌ଚି ପିନ୍ଧିବୁ ?' ତା'ର ଅର୍ଥ ହେଲା - ଯେକୌଣସି ଅଳଙ୍କାର ପାଇଁ କି ସେ କାନ୍ଦୁଛି କି ? ଏହା ଶୁଣିଲା ବେଳେ ବେଶ୍ ମଜା ଲାଗେ । ବହୁ ସମୟରେ ମୋର ମିତବାପାଙ୍କ ମା - ଆଈ ଆସି ତାକୁ ଧରି ନିଜ ଘରକୁ ନେଇ ଯାଉଥିଲେ ଓ କିଛି ସମୟ ପରେ ପୁଣି ପିଉସୀ ଯାଇ ଆଣୁ ଥିବାରୁ ଓ ତାଙ୍କ ଘରକୁ ଯାଉଥିବାରୁ ମିତବାପା ଘରୁ ସୁନାର ଗୋଟିଏ ମାଳୀ, ବଡ଼ ବାପା ଘରୁ ୨ ପଟ ସୁନା ଚୁଡ଼ୀ, ମାମୁଁ ଘରୁ ଏକ ସୁନାର ପଦକ ଖୁସିରେ ପ୍ରଦାନ କରିଥିଲେ । ଏପରିକି ଘରର ମାଲିକ ମଧ ରୂପାର ଏକ ଚେନ୍ ଅଣ୍ଟା ପାଇଁ ପ୍ରଦାନ କରିଥିଲେ । ଶିଶୁଟି ସମସ୍ତଙ୍କ ସ୍ନେହଶ୍ରଦ୍ଧାରେ ସେଠାରେ ବଢ଼ିବାକୁ ଲାଗିଲା । ମଝିରେ ମଝିରେ ମୋର ଭଉଣୀ ସୁଷମା ମଧ ଆମ ସଙ୍ଗେ ଯାଇ ରହୁଥିଲା ।

ପ୍ରାୟ ମାସେ ଦେଢ଼ ମାସ ପରେ ଏକ ଅପ୍ରତ୍ୟାଶିତ ଘଟଣା ଘଟିଲା । ଗୋପେଇପାଲିର ମୋର ପିଉସୀର ବଡ଼ ଝିଅର ମୃତ୍ୟୁ ହେଲା । ସେତେବେଳେ ତାଙ୍କ ୧ ମାସର ଶିଶୁ କନ୍ୟାଟିଏ ଥିଲା । ତାର ଅକାଳ ବିୟୋଗରେ ଆମେ ସମସ୍ତେ ପ୍ରାୟ ଅସ୍ଥିର ହୋଇ ଗଲୁଁ । ସେତେବେଳେ ମୃତ ନାନୀର ସ୍ୱାମୀ କାର୍ତ୍ତିକ ବାବୁ କୃଷି ବିଭାଗରେ ଓଭରସିଅର୍ ଭାବେ କାର୍ଯ୍ୟରତ ଥିଲେ । ତେଣୁ ସେହି ଶିଶୁଟିର ଲାଳନ ପାଳନ ଭାର ପିଉସୀଙ୍କ ଓ ତାଙ୍କ ଅନ୍ୟ ସାନ ଝିଅଙ୍କ ଉପରେ ପଡ଼ିଲା । ପିଉସୀଙ୍କ ବଡ଼ ଝିଅର ମୃତ୍ୟୁ ପରେ ତାଙ୍କ ଜ୍ୱାଇଁ କାର୍ତ୍ତିକ ବାବୁଙ୍କ ଯୁବାବସ୍ଥା ହେତୁ ଅନ୍ୟ ଏକ ବିବାହ କରିବାକୁ ମନସ୍ଥ କଲେ । ଶେଷରେ ନିଜ ଭଉଣୀ ସୁଷମାକୁ ସୋହେଲା ପିଉସୀ ପିଉସାଙ୍କ ଜରିଆରେ ଦାନକନ୍ୟା ଦେଇ ବିବାହ କରାଗଲା । ତେଣୁ କାର୍ତ୍ତିକ ବାବୁ ମୋର ଗଇଁ ନ ହୋଇ ଭଉଣୀ ଜ୍ୱାଇଁ ହେଲେ ଓ ଆମ ସମ୍ପର୍କ କ୍ରମେ ଦୃଢ଼ୀଭୂତ ହେଲା ।

ଇତି ମଧରେ ମୋର ଅବସର ସମୟରେ ପାଠ ପଢ଼ିବା ପାଇଁ ୪/୫ ଜଣ ଛାତ୍ର ଘରକୁ ଆସିବାକୁ ଅନୁରୋଧ କରିବାରୁ ସେଥିରେ ଅସମ୍ମତ ହୋଇ ପାରିଲି ନାହିଁ । ଅବଶ୍ୟ ସେମାନେ ଗ୍ରହିଁ ତାଙ୍କ ଶକ୍ତି ମୁତାବକ ପାରିତୋଷିକ ପ୍ରଦାନ କରୁଥିଲେ ।

୧୯୪୮ର ଶେଷ ଭାଗରେ ବରପାଲିକୁ ଅନ୍ନପୂର୍ଣ୍ଣା 'B' ଗ୍ରୁପ୍ ଅଭିନୟ ପ୍ରଦର୍ଶନ କରିବାକୁ ଆସିଥିଲେ ଓ ସେମାନେ ସେଠାରେ ୩/୪ ସପ୍ତାହ ଧରି ଅଭିନୟ ପ୍ରଦର୍ଶନ କରି ଲୋକଙ୍କୁ ଆମୋଦ ପ୍ରଦାନ କରିଥିଲେ । ସେତେବେଳେ ଆମ ବରପାଲି ଉଚ୍ଚ ବିଦ୍ୟାଳୟଟି ଘରୋଇ ସାହାଯ୍ୟ ପ୍ରାପ୍ତ ବିଦ୍ୟାଳୟ ଥିବାରୁ ତା'ର

ସମୁଚିତ ଉନ୍ନତି ପାଇଁ ଘରୋଇ ଉଦ୍ୟୋଗର ସାହାଯ୍ୟ ପରିମାଣ ପର୍ଯ୍ୟାପ୍ତ ହେଉ ନ ଥିବାରୁ ବିଦ୍ୟାଳୟର ପାଠାଗାରର ଉନ୍ନତି ପାଇଁ କିଛି ପାଣ୍ଠି ସଂଗ୍ରହର ଆଳରେ ସ୍କୁଲର ଶିକ୍ଷକ ଓ ଛାତ୍ରମାନଙ୍କ ତରଫରୁ ଏକ ସାମାଜିକ ନାଟକ 'ବେନାମୀ' ମଞ୍ଚସ୍ଥ ହେଲା । ସେତେବେଳେ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚଟିରେ ଅଭିନୟ ଚାଲୁ ଥିବାର ଦୃଷ୍ଟିରୁ ତାଙ୍କ ରଙ୍ଗମଞ୍ଚଟି ଦିନକ ପାଇଁ ବ୍ୟବହାର ସକାଶେ ଅନୁରୋଧ କରିବାରୁ ସେମାନେ ସେଥିରେ ରାଜି ହେଲେ । ଉକ୍ତ ଅଭିନୟ ରଜନୀର ପ୍ରାପ୍ତ ଧନରୁ ତାଙ୍କ ରଙ୍ଗମଞ୍ଚ ଖର୍ଚ୍ଚ ବାଦ ଯାଇ ବେଶ ପରିମାଣ ଉପଲବ୍ଧ ହୋଇ ସଂପୃକ୍ତ ପାଣ୍ଠିର ଉନ୍ନତି କରାଯାଇ ଥିଲା । ଉକ୍ତ ନାଟକଟିରେ ମୋତେ ଏକ ବିଶେଷ ଭୂମିକାରେ ଅଭିନୟ କରିବାର ସୁଯୋଗ ମିଳିଥିଲା - 'ସୀତାନାଥ ବାବୁ' । ସେଥି ପାଇଁ ଉଚ୍ଛ୍ୱସିତ ପ୍ରଶଂସା ଓ ସମ୍ବର୍ଦ୍ଧନା ମିଳିଥିଲା ।

ଏହାର କିଛି ଦିନ ପରେ ୧୯୪୯ ଫେବୃୟାରୀ ମାସରେ ମେଟ୍ରିକ ପରୀକ୍ଷାର୍ଥୀଙ୍କ ସହ ସମ୍ବଲପୁର ଯାଇ ପରୀକ୍ଷା ସମୟରେ ଯଥାସାଧ୍ୟ ସାହାଯ୍ୟ କରି ଛାତ୍ରମାନଙ୍କ ପ୍ରଶଂସାଭାଜନ ହୋଇଥିଲି । ଏପରି ଭାବେ ବରପାଲିରେ କାର୍ଯ୍ୟ କରୁଥିବା ବେଳେ ମାର୍ଚ୍ଚ ମାସରେ ପ୍ରଥମ ସପ୍ତାହରେ ବଡ଼ ବାପା ବରଗଡ଼ ଜର୍ଜ ହାଇସ୍କୁଲର ବିଜ୍ଞାନ ଶିକ୍ଷକ ରୂପେ ଏକ ନିଯୁକ୍ତି ପତ୍ର ଧରି ହଠାତ୍ ବରପାଲିରେ ପହଞ୍ଚିଲେ । ତେଣୁ ସେ ବିଷୟରେ ନିଷ୍ପତ୍ତି ନେବା ପାଇଁ ଗାଁକୁ ଯାଇ ବାପା, ବଡ଼ ବାପା, କାକାମାନଙ୍କ ସହ ଆଲୋଚନା କରି ସ୍ଥିର ହେଲା ଯେ ଜର୍ଜ ହାଇସ୍କୁଲର ଖ୍ୟାତି ଓ ବରଗଡ଼ ସହରର ବିଶେଷତ୍ୱ ଦୃଷ୍ଟିରୁ ବରପାଲି ଅପେକ୍ଷା ବରଗଡ଼ ଜର୍ଜ ହାଇସ୍କୁଲରେ ଶିକ୍ଷକତା କରିବା ଶ୍ରେୟସ୍କର ହେବ ଭାବି ବରଗଡ଼ ଉପଖଣ୍ଡର ସଦର ମହକମା ଦୃଷ୍ଟିରୁ ବରପାଲିରୁ ଅବ୍ୟାହତି ନେଇ ବରଗଡ଼ରେ ଚାକିରୀ କରିବାକୁ ସିଦ୍ଧାନ୍ତ ନେଲି । ପରଦିନ ବରପାଲି ସ୍କୁଲରୁ ମୋର ଅବ୍ୟାହତି ଓ କାର୍ଯ୍ୟମୁକ୍ତି ପାଇଁ ଆବେଦନ ପତ୍ର ଦାଖଲ କଲି । ପ୍ରଧାନ ଶିକ୍ଷକ ଏ ଆବେଦନ ପତ୍ର ପାଇ ଓ ତାକୁ ପାଠ କରି ପ୍ରଥମେ ଆଶ୍ଚର୍ଯ୍ୟ ହେଲେ । କିଛି ସମୟ ପରେ ମୋତେ ବରପାଲି ବିଦ୍ୟାଳୟ ପରିତ୍ୟାଗର କାରଣ ପଚାରନ୍ତେ ମୁଁ ବରଗଡ଼ ଜର୍ଜ ହାଇସ୍କୁଲର ନିଯୁକ୍ତି ପାଇ ଥିବା କଥା ପ୍ରକାଶ କରିବାରୁ ସେ ହର୍ଷବିଷାଦର ଭାବ ପ୍ରକାଶ କରି ଏହି ମତ ଦେଲେ ଯେ ସ୍କୁଲର ସ୍ଥିତି, ବୟସ ଓ ପାହ୍ୟା ଦୃଷ୍ଟିରୁ ବରଗଡ଼ ଜର୍ଜ ହାଇସ୍କୁଲର ମାନ ନିଶ୍ଚିତ ଭାବେ ଉନ୍ନତ । ତେଣୁ ଏ ସୁବିଧାକୁ ଉପେକ୍ଷା କରିବା ଅବାଞ୍ଛନୀୟ । ହେଲେହେଁ ବରପାଲି ସ୍କୁଲର ବାଲ୍ୟାବସ୍ଥା ଦୃଷ୍ଟିରୁ କିଛି ଦିନ ମୋର ରହିବାର ଉଚିତ ହୋଇଥାନ୍ତା । ନିଜର ଭବିଷ୍ୟତ ଚିନ୍ତା କରି ନିଜର ସୁଚିନ୍ତିତ ପଥ ସ୍ଥିର କରିବା

ଉଚିତ। ବରପାଲିରେ ମୋର ରହଣୀର ଆବଶ୍ୟକତାର ଯଥାର୍ଥତା ଥିଲେ ହେଁ ପୁରାପୁରି ଭାବେ ମୋତେ ବରଗଡ଼ ନ ଯିବାକୁ ବାରଣ କରିବାର ମତେ ସତ୍‌ସାହସର ସହ କେହି ପ୍ରଦାନ କରି ନ ପାରି କେବଳ ମୌନ ରହିଲେ।

## ବରପାଲି ହାଇସ୍କୁଲରୁ ବରଗଡ଼ ହାଇସ୍କୁଲ:-

ମୋର ସ୍କୁଲରୁ ଅବ୍ୟାହତି ହେବା କଥା ଶୀଘ୍ର ସାରା ବିଦ୍ୟାଳୟରେ, ବରପାଲି ସହରରେ ତଥା ନିକଟବର୍ତ୍ତୀ ଅଞ୍ଚଳରେ ପ୍ରସାରି ଗଲା। କ୍ରମେ ମୋର ହିତୈଷୀ ତଥା ମୋର କାର୍ଯ୍ୟରେ ସନ୍ତୋଷ ଥିବାର ଗଣ୍ୟମାନ୍ୟ ବ୍ୟକ୍ତି, ବନ୍ଧୁଗଣ ଏହାର ସତ୍ୟାସତ୍ୟର ଅବଗତି ନିମନ୍ତେ ମୋର ଘରେ ଭିଡ଼ ଜମାଇଲେ। ମୋର ସ୍କୁଲରୁ ଯିବା ନିଶ୍ଚିତ ଜାଣି ଛାତ୍ର ଓ ଶିକ୍ଷକମାନେ ଦୁଃଖିତ ହେଲେ। ବିଦାୟ ଦେବାର ଉପକ୍ରମ ପାଇଁ ୧୯.୩.୪୯ ସନ୍ଧ୍ୟାରେ ଏକ ବିଦାୟକାଳୀନ ସଭାର ଆୟୋଜନ କଣ୍ଠି ମୋଷା ସ୍ୱବ   ରହଣୀର ଉପାଦେୟତା ସମ୍ପର୍କରେ ବକ୍ତାମାନେ ତାର ସୂଚନା ପ୍ରଦାନ କରି ବିଦାୟକାଳୀନ ଏକ ଭୋଜିର ଆୟୋଜନ କରିଥିଲେ।

ଦୁଇ ଦିନ ପରେ ବରଗଡ଼ ଯାଇ ସ୍କୁଲରେ ଯୋଗ ଦେବା ପାଇଁ ହେ.ମା.ଙ୍କ ସଙ୍ଗେ ସାକ୍ଷାତ କଲି। ବିଜ୍ଞାନ ଶିକ୍ଷକ ହିସାବରେ ବିଦ୍ୟାଳୟରେ ମୋର ଯଥେଷ୍ଟ ଆବଶ୍ୟକତା ଥିବା ଦୃଷ୍ଟିରୁ ପୂର୍ବରୁ ମୁଁ କାର୍ଯ୍ୟରେ ଯୋଗ ଦେଲା ପରେ ଅସ୍ଥାୟୀ ଶିକ୍ଷକଙ୍କୁ କାର୍ଯ୍ୟମୁକ୍ତ କରାଗଲା। ଏପରିକି ସେ ଆସି ଶିକ୍ଷକ ହାଜିରାରେ ଦସ୍ତଖତ ଦେଇ ସାରିବା ପରେ ତାଙ୍କୁ ନିଜ ଦସ୍ତଖତକୁ କାଟି ଦେବା ପାଇଁ ପ୍ରଧାନ ଶିକ୍ଷକ ନିର୍ଦ୍ଦେଶ ଦେବାରୁ ସ୍କୁଲର ବାତାବରଣ ସରଗରମ ହୋଇ ଉଠିଲା। ତାଙ୍କ ଜାଗାରେ ମୋତେ ଦସ୍ତଖତ ଦେବା ପାଇଁ ପ୍ରଧାନ ଶିକ୍ଷକ ନିର୍ଦ୍ଦେଶ ଦେଇଥିଲେ। ମୋତେ ମଧ୍ୟ ପରିସ୍ଥିତିଟି ଅସମୀଚିନ ବୋଧ ହେଲା। ମୋର ଯୋଗ ଦେବା ହେତୁ ଜଣକର ଚାକିରୀ ହରାଇବାରେ ମୁଁ ସନ୍ତୁଷ୍ଟ ନ ଥିଲି। ଆଉ ମଧ୍ୟ ଶିକ୍ଷା ବର୍ଷ ପ୍ରାୟ ଶେଷ ହେଲା ବେଳକୁ ଏ ନିଯୁକ୍ତିକୁ ବିଳମ୍ବ କରାଯାଇ ପାରିଥାନ୍ତା ବୋଲି ମତ ଦେଲେ। ତେଣୁ ଉକ୍ତ ଶିକ୍ଷକ ସ୍ଥାନୀୟ ଲୋକପ୍ରିୟ ଓ ସମାଜର ପ୍ରତିଷ୍ଠିତ ବ୍ୟକ୍ତିଙ୍କ ପରିଚିତ ଥିବା ହେତୁ ତାଙ୍କର ମୂଳ ଟାଣ ଥିଲା। ହେଲେହେଁ ପ୍ରତ୍ୟକ୍ଷରେ ଜଣେ ଉଚ୍ଚ ଡିଗ୍ରୀଧାରୀ ଶିକ୍ଷକ ନିଯୁକ୍ତି ପାଇଁ ଏକ ନିମ୍ନ ଶିକ୍ଷାପ୍ରାପ୍ତ ଶିକ୍ଷକଙ୍କୁ ଚାକିରୀରୁ ବାହାର କରିବାକୁ ବାଧା ଦେଇ ପାରିଲେ ନାହିଁ। ତତ୍କାଳୀନ ସ୍କୁଲ ସେକ୍ରେଟାରୀ ସ୍ୱର୍ଗତ ବାଲୁଙ୍କେଶ୍ୱର ମିଶ୍ରଙ୍କ ନିଷ୍ପତ୍ତିକୁ କେହି ଦମ୍ଭର ସହ ମୁକାବିଲା କରି ନ ପାରି ପ୍ରଧାନ ଶିକ୍ଷକଙ୍କ ହେତୁ ସମ୍ପାଦକ ଏହି କର୍ମ କରିଛନ୍ତି ଜାଣିଲେ ଉକ୍ତ ଶିକ୍ଷକଙ୍କ

ସହାନୁଭୂତିଶୀଳ ଛାତ୍ର ଓ ପ୍ରତିଷ୍ଠିତ ବ୍ୟକ୍ତିଗଣ ହେ.ମା.ଙ୍କ ଦୋଷ ଦୁର୍ବଳତା ଖୋଜି ହରତାଳ କରିବାରେ ବ୍ୟାପୃତ ରହିଲେ। ଫଳରେ ସ୍କୁଲର ଓ ବରଗଡ଼ ସାରା ଅଶାନ୍ତିର ବାତାବରଣ ସୃଷ୍ଟି ହେଲା ଓ ହେ.ମା.ଙ୍କ ବିପକ୍ଷ ଦଳ ଏ ସୁଯୋଗର ସୁବିଧା ନେଲେ। ତେଣୁ ମୋର ଜର୍ଜ ହାଇସ୍କୁଲରେ ଶିକ୍ଷକ ରୂପେ ଯୋଗଦାନ ଏକ ସ୍ମରଣୀୟ ଐତିହାସିକ ଦିବସ ହେଲା।

ପରେ ଏହା ଛାତ୍ର ଆନ୍ଦୋଳନର ରୂପ ନେଇ ବହୁ ଦିନ ଧରି ଛାତ୍ରମାନେ ବିଦ୍ୟାଳୟରେ ଅନୁପସ୍ଥିତ ରହିଲେ। ହେ.ମା.ଙ୍କର ବିଭିନ୍ନ ମନମୁଖୀ କାର୍ଯ୍ୟକଳାପ ଓ ଅନେକ ଦୁର୍ନୀତି ପଦାରେ ପଡ଼ିଲା। ଶେଷରେ ବାଧ ହୋଇ ହେ.ମା.ଙ୍କୁ ଇସ୍ତଫା ଦେବାକୁ ପଡ଼ିଲା ଓ ସେ ସ୍କୁଲ ଛାଡ଼ି ଅନ୍ୟତ୍ର ଚାଲି ଯିବାରୁ ତାଙ୍କ ସ୍ଥାନରେ ସହକାରୀ ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ଉଦୟନାଥ ସାମଲ ତାଙ୍କ ଦାୟିତ୍ୱରେ ରହି କାମ ଚଳାଇଲେ। ପ୍ରଥମେ ମୁଁ ସ୍କୁଲରେ ଆସି ଯୋଗ ଦେଲା ପରେ ସ୍କୁଲର ବିଦାୟୀ ଶିକ୍ଷକ ଲଳିତ ମେହେରଙ୍କ ପଢ଼ାଉଥିବା ବିଷୟ ପଢ଼ାଇବାକୁ ହେଲା। ଅବଶ୍ୟ ତା'ର ସଙ୍ଗେ କେତେକ ଶ୍ରେଣୀର ବିଜ୍ଞାନ ପଢ଼ାଇବା ଦାୟିତ୍ୱ ଦିଆଗଲା ଓ ସ୍କୁଲ ବାତାବରଣ ପୂର୍ବ ଭଳି ଚାଲିଲା। ପୂର୍ବତନ ହେ.ମା. ଚାଲି ଯିବାରୁ ପୁଣି ଲଳିତ ମୋହନ ମେହେର ଆସି କାର୍ଯ୍ୟରେ ଯୋଗ ଦେଲେ।

ମୋର ବନ୍ଧୁ ଶ୍ରୀ ତ୍ରିଲୋଚନ ମେହେରଙ୍କ ସଙ୍ଗେ ଇ.ଏମ୍. ହଷ୍ଟେଲ୍‌ର ଏକ କୋଠରୀରେ ରହିଲୁ ଓ ମେସ୍‌ରେ ଖାଇଲୁ। କିଛି ଦିନ ପରେ ନୂତନ ଭାବେ ତିଆରି ହୋଇଥିବା ବିଶି ବିଭାରଙ୍କ ହାଇସ୍କୁଲ ପଡ଼ିଆ କଡ଼ରେ ଥିବା ଏକ କ୍ୱାର୍ଟରରେ ମାସକୁ ଟ୨୫ ହିସାବରେ ଭଡ଼ା ଦେଇ ରହିଲୁଁ। ସଙ୍ଗରେ ବଡ଼ ପିଉସୀ ଆସି ରହିଲେ। ସେତେବେଳେ ମୋର ରେଙ୍ଗାଲପାଲି ମାମୁଁ ଘର ଅଜା ଲୋକନାଥ ମହାପାତ୍ର ଜୀବିତ ଥିଲେ ଓ ତାଙ୍କ ଘରେ କ୍ଷୀର ହେଉଥିବାରୁ କ୍ଷୀର ଧରି ଆମ ଘରକୁ ଆସି ଦିନେ ଓଳିଏ ରହି ଯାଉଥିଲେ। ସେ ଆସିଲେ ମୋର ନବଜାତ ଝିଅ ମାଧୁରୀଙ୍କୁ ଧରି ଗୀତ ଗାଇ ବୁଲାଉଥିଲେ। ଏପରି ଭାବେ କିଛି ଦିନ ଗଲା ପରେ ଗ୍ରୀଷ୍ମାବକାଶ ହେତୁ ଘରକୁ ଯିବାକୁ ହେଲା ଓ ଆମେ ଭଡ଼ା ଘରକୁ ଛାଡ଼ି ଦେଲୁଁ। ଛୁଟି ପରେ ଆସି ସ୍କୁଲର ଟିକ୍ରା ହଷ୍ଟେଲ୍‌ର ସୁପରିନ୍ଟେଣ୍ଡେଣ୍ଟ କ୍ୱାଟର୍ସକୁ ମରାମତି କରି ରହିଲୁଁ। ଏଠାରେ ୧୯୪୯ରୁ ୧୯୫୪ ମସିହା ପର୍ଯ୍ୟନ୍ତ ରହିବାକୁ ହୋଇଥିଲା। ସେତେବେଳେ ସରକାରଙ୍କ ନୂତନ ଶିକ୍ଷାନୀତି ପ୍ରଚଳନ ହେଲା। ରାଜ୍ୟରେ ପ୍ରାଥମିକ ସ୍କୁଲ ସଂଖ୍ୟା ବୃଦ୍ଧି ହେତୁ ସ୍କୁଲ ପରିଦର୍ଶନ ପାଇଁ D.Ed. ବା ଡିଗ୍ରୀଧାରୀ ଯୋଗ୍ୟ ବ୍ୟକ୍ତିଙ୍କ ଅଭାବରେ ହାଇସ୍କୁଲର C.T. ଡିଗ୍ରୀଧାରୀ ଶିକ୍ଷକମାନଙ୍କୁ ସ୍କୁଲ

S.I. ରୂପେ ନିଯୁକ୍ତ କରାଗଲା । ଆମ ସ୍କୁଲରୁ ଶ୍ରୀ ନଟବର ଦାଶ ଓ ଶ୍ରୀଯୁକ୍ତ ଶୁକଦେବ ବିଶ୍ୱାଳ ବିଦାୟ ନେଇ ସେଥିରେ ଯୋଗ ଦେଇ ସୁନାମ ଅର୍ଜନ କରିଥିଲେ । ଶେଷରେ ଏପରି ହେଲା S.I. ମାନଙ୍କୁ ସାହାଯ୍ୟ ପାଇଁ A.S.I. ପୋଷ୍ଟରେ ଅଭିଜ୍ଞ ପ୍ରାଥମିକ V.M. ବା M.V., E.T. ମାନଙ୍କୁ ନିଯୁକ୍ତି ଦିଆଗଲା । ସେମାନଙ୍କ ମଧ୍ୟରେ ଏ ଅଞ୍ଚଳର ଦୀନବନ୍ଧୁ କର ଓ ବୀରମଣି ପଣ୍ଡା ଅନ୍ୟତମ ।

ଏହି ସମୟ ମଧ୍ୟରେ ୧୯୫୦ ସାଲରେ ସ୍କୁଲ ତରଫରୁ ଏକ ସାମାଜିକ ନାଟକ 'ବେନାମୀ' ଅଭିନୀତ ହୋଇଥିଲା ଓ ସେଥିରେ ଘରୋଇ ରଙ୍ଗମଞ୍ଚରେ ପ୍ରଥମ କରି ବିଜୁଳି ଲାଗି ନାଟକ ମଞ୍ଚସ୍ଥ କରା ଯାଇଥିଲା । ଏଥିରେ ଯାହା ଉଦ୍‌ବୃତ୍ତ ପାଣ୍ଠି ସଂଗୃହୀତ ହୋଇଥିଲା ତାହା 'Poor Boys Fund'କୁ ଦିଆ ଯାଇଥିଲା । ଏହି ନାଟକ ମଞ୍ଚସ୍ଥ ହେବାର ପରଦିନ ମୋର ଗୋଟିଏ ପୁତ୍ର ଜନ୍ମ ହେଲା । ଏହି ବର୍ଷ ପ୍ରଥମ କରି ବିଜ୍ଞାନ ଶିକ୍ଷକ ରୂପେ ବୋର୍ଡର ପରୀକ୍ଷକ ରୂପେ ନିଯୁକ୍ତି ପାଇଲି । କାରଣ ସେତେବେଳେ ଡିଗ୍ରୀଧାରୀ ଦକ୍ଷ ଶିକ୍ଷକଙ୍କ ସଂଖ୍ୟା ଅତି ନ୍ୟୂନ ଥିଲା । ୧୯୫୦ ମସିହାର ଶେଷ ଭାଗରେ ଶ୍ରୀଯୁକ୍ତ ଦେବାର୍ଚ୍ଚନ ଭୋଇ ଏମ୍.ଏ. ପଢ଼ି ସାରି ସ୍କୁଲର ହେ.ମା. ଭାବେ ଯୋଗ ଦେଲେ । ଶ୍ରୀଯୁକ୍ତ ସାମଲ ବାବୁ ଏ ସ୍କୁଲରୁ ବିଦାୟ ନେଇ ପଦ୍ମପୁର ହାଇସ୍କୁଲରେ ଯାଇ ପ୍ରଧାନ ଶିକ୍ଷକ ରୂପେ ଯୋଗ ଦେଲେ । ସେ ମହାଶୟ ଏଠାରୁ ଚାଲି ଯିବାରୁ ମୋ ଉପରେ ଉପର ଚାରି ଶ୍ରେଣୀର ବିଜ୍ଞାନ ଶିକ୍ଷା ଭାର ନ୍ୟସ୍ତ ହେଲା ଓ ତା'ରି ସଙ୍ଗେ ଗଣିତ ଓ ଇଂରାଜୀ ଶିକ୍ଷାଦାନ କରିବାକୁ ହେଲା । ଆଗରୁ ଜର୍ଜ ହାଇସ୍କୁଲରେ ଶୁକ୍ରବାର ବଜାର ଓ ଶନିବାର ଦିନ ସକାଳରେ ପଢ଼ା ଯାଉଥିଲା । କିନ୍ତୁ ସେତେବେଳେ ଶ୍ରୀଯୁକ୍ତ ଗୋପାଳ ସିନ୍‌ହା ପରିଦର୍ଶକ ରୂପେ ଆସି ସେହି ପୁରୁଣା ପ୍ରଥାକୁ ବନ୍ଦ କରିଦେଲେ । କେବଳ ଶନିବାର ଦିନ ସକାଳେ ସ୍କୁଲ କରିବାକୁ ପ୍ରସ୍ତାବ ଦେବାରୁ ଏକ ପୁରାତନ ପ୍ରଥାକୁ ଲୋପ କରି ଦିଆଗଲା । ଏ ମଧ୍ୟରେ ଏଠାକାର ବିଶିଷ୍ଟ ଯୁବକ ବ୍ୟବସାୟୀ ବନ୍ଧୁ କୃଷ୍ଣଚନ୍ଦ୍ର ସାହୁଙ୍କ ସଙ୍ଗରେ ବନ୍ଧୁତା ବଢ଼ି ଯାଇଥିଲା । ତେଣୁ ୧୯୫୧ ସାଲର ଦଶହରା ଛୁଟିରେ କୃଷ୍ଣବାବୁଙ୍କ ସଙ୍ଗେ କଲିକତା ଯାଇ ସେଠାରେ ୨/୩ ଦିନ ରହିଲି । କଲିକତା ସହର, ହାଓଡ଼ା ପୋଲ, ଭିକ୍ଟୋରିଆ ହଲ୍, ଆଲିପୁର ଚିଡ଼ିଆଖାନା, ଟ୍ରାମ ଚଢ଼ା, ବିଖ୍ୟାତ ଉଦ୍ଭିଦ ବଗିଚା ବିଷୟରେ ସମ୍ୟକ୍ ଜ୍ଞାନ ଆହରଣ କରି ଫେରିଲୁ । ସେଠାରେ ବର୍ତ୍ତମାନର ଗାନ୍ଧୀ ମହାତ୍ମା ହୋଟେଲ ଅବା ବାଙ୍ଗର ବିଲ୍ଡିଂରେ ଗଣେଷରାମ ଗୋପୀରାମଙ୍କ ଗଦିରେ ରହିଲୁ । ଏହା ଏକ ପାଞ୍ଚ ତଳ କୋଠା ଓ ସେଠାରେ ବହୁ ବ୍ୟବସାୟୀମାନଙ୍କର ଗଦି ରହିଛି । ସବା ଉପର ମହଲାରେ ଖାଇବା ଘର ବାସା

ରହିଛି । ପ୍ରାୟ ଦିନ ବେଳେ ବ୍ୟବସାୟୀମାନେ ବଜାରକୁ ଯାଇ ସଉଦା କଲାପରେ ସନ୍ଧ୍ୟାରେ ଫେରି ଆସି ରାତ୍ରିରେ ବିଶ୍ରାମ କରନ୍ତି । ମୁଁ କୃଷ୍ଣବାବୁଙ୍କ ସଙ୍ଗରେ ଯାଇ ମୋର ମତାନୁସାରେ କେତେକ ଆବଶ୍ୟକୀୟ ବସ୍ତୁ କିଣିବା ଦ୍ୱାରା ଲାଭବାନ ହୋଇଥିଲେ ।

୧୯୫୧ ସାଲର ମଧ୍ୟ ଭାଗରେ ପୁଅକୁ ୧୦ ମାସ ପରେ ତା'ର ଭାତଖିଆ ଓ ସତ୍ୟନାରାୟଣ ପୂଜା, ପୂର୍ବ ବାଞ୍ଛିତ ଅଷ୍ଟୋତ୍ତରଶତ ବ୍ରାହ୍ମଣ ଭୋଜନ ଆୟୋଜନ କରି ରାତ୍ରରେ ନାଟକ ପ୍ରଦର୍ଶନ ଆୟୋଜନ କରା ଯାଇଥିଲା । ଆମ ପରିବାରରେ ବ୍ରାହ୍ମଣ ଭୋଜନ ମୋର ପାଇଁ ପୂର୍ବରୁ ଉଦ୍ଦିଷ୍ଟ ଥିଲା । ସେଥିରୁ ଯାହା ହେଉ ଉଦ୍ଧାର ମିଳିଲା । ପରବର୍ଷ ୧୯୫୧ରେ କୃଷ୍ଣ ସାହୁ ମୋତେ ତାଙ୍କର ନୂଆ ଭାବେ ଆରମ୍ଭ କରିଥିବା ବ୍ୟବସାୟ 'କଳାକୁଞ୍ଜ' ବିଭାଗର ଦାୟିତ୍ୱ ଦେଇ ଦେଖାରେଖା କରିବା ପାଇଁ ବିହାରର ସୋନପୁରର ପ୍ରସିଦ୍ଧ ହରିହର ଛାତ୍ରମେଳାକୁ ପଠାଇ ଥିଲେ । ସେଠାକୁ ତାଙ୍କର ଅନ୍ୟ ଏକ ସହକର୍ମୀ ବନମାଳୀ ସାହୁ ଆଗରୁ ଯାଇ କାମ ଆରମ୍ଭ କରିଥିଲେ ।

ହରିହର ଛାତ୍ରମେଳା ପୃଥିବୀ ବିଖ୍ୟାତ ଏକ ବିରାଟ ଓ ଦୀର୍ଘ ଦିନ ଧରି ବସୁଥିବା ମେଳା । ଏହା ବିହାରର ଛାପଡ଼ା ଜିଲ୍ଲାର ସୋନପୁରଠାରେ ପ୍ରାୟ ଏକ ମାସ ଧରି ବସେ । କାର୍ତ୍ତିକ ପୂର୍ଣ୍ଣିମା ଠାରୁ ଏହା ଆରମ୍ଭ ହୁଏ । ଏଠାରେ ଛୁଞ୍ଚିସୂତା ଭଙ୍ଗି ଅଳ୍ପ   ଦାମିକା ଜିନିଷଠାରୁ ଘୋଡ଼ା ହାତୀ ପର୍ଯ୍ୟନ୍ତ କିଣାବିକା କାମ ଚ୍ଲେ । ଦେଶବିଦେଶରୁ ଶତସହାସ୍ରାଧିକ ଦର୍ଶକ, ବଣିକ ତଥା ବିଭିନ୍ନ ପ୍ରକାରର ଲୋକ ସେଠାରେ ସମବେତ ହୁଅନ୍ତି । ଏସବୁକୁ ଶୃଙ୍ଖଳିତ ଭାବେ ପ୍ରଚଳନ ସକାଶେ ବିହାର ସରକାର ଯତ୍ନ ନେଉଥିଲେ । ସୋନପୁର ଗଙ୍ଗା ନଦୀ କୂଳର ପାଟନାର ଅପର କୂଳରେ ଅବସ୍ଥିତ । ସେଠାକୁ ଯିବାକୁ ହେଲେ ପାଟନାରୁ ଷ୍ଟିମର ଯୋଗେ ଯିବାକୁ ହେଉଥିଲା । କାରଣ ସେତେବେଳେ ଗଙ୍ଗା ନଦୀରେ ପୋଲ ହୋଇ ନ ଥିଲା । ସୋନପୁର ଭାରତର ଏକ ବୃହତ୍ତମ ରେଳୱେ ପ୍ଲାଟଫର୍ମ । ଏଠାରେ ପ୍ରାୟ ୮ଟା ରେଳଗାଡ଼ି ଏକ ସଙ୍ଗେ ଅଟକି ଯିବା ଆସିବା କରି ପାରନ୍ତି । ସେଠାରେ କିଛି ଦିନ ରହି କଳାକୁଞ୍ଜକୁ ଉଦ୍‌ଘାଟନ କରାଇ ଆରମ୍ଭ ହେଲା ପରେ ମୁଁ ଫେରିବା କଥା । ସେଠାରେ ଥିବା ବେଳେ ମୁଁ ଜନୈକ ବିହାରୀ ବନ୍ଧୁଙ୍କ ସଙ୍ଗେ କଥାବାର୍ତ୍ତା ବେଳେ ହିନ୍ଦିରେ କହି ପକାଇଲି 'ତୁମ୍' ବୋଲି । ଏହା ଶୁଣି ଭଦ୍ର ଲୋକ ମୋତେ ନାଲି ଆଖି ଦେଖାଇ କ୍ରୋଧାନ୍ୱିତ ହେବାରୁ ମୁଁ ତାର ଅର୍ଥ ବୁଝି ନ ଜାଣି ଶଙ୍କିତ ହେଲି । ସଙ୍ଗେ ସଙ୍ଗେ ଅବସ୍ଥାକୁ ସମ୍ଭାଳି ନେଇ ତାଙ୍କୁ କ୍ଷମା ମାଗି ନେଲି । ପରେ ବୁଝିଲି ଯେ

'ତୁମ୍' ଜାଗାରେ 'ଆପ୍' କହିବାର ଥିଲା । କାରଣ 'ତୁମ୍'ର ଅର୍ଥ 'ତୁ' ଓ 'ଆପ୍'ର ଅର୍ଥ 'ଆପଣ' । ପରେ ସତର୍କତାର ସହ କଥାବାର୍ତ୍ତା କରିଥିଲି । ସେଠାରେ ୧୦/୧୨ ଦିନ କଟାଇବା ପରେ ଆମ ସ୍କୁଲରୁ ଲଳିତ ମୋହନ ମେହେର ତାଙ୍କ ନାନୀ ଘରକୁ ପାଟନା ଯାଉଥିଲେ ଓ ସେଠାରୁ ସେ ସୋନପୁର ଯାଇ ମୋ ସଙ୍ଗେ ଭେଟ ହେବାରୁ ମୁଁ ତାଙ୍କ ସଙ୍ଗେ ଫେରି ଆସିଲି ।

ବରଗଡ଼ ଫେରି ସ୍କୁଲରେ ଯୋଗ ଦେବା ବେଳେ ମୋର ଦୀର୍ଘକାଳ ଅନୁପସ୍ଥିତି ହେତୁ ହେ.ମା. ଓ କର୍ତ୍ତୃପକ୍ଷ କ୍ଷୁବ୍ଧ ହୋଇଥିଲେ । କାରଣ ମୁଁ କେବଳ କେକୁଏଲ୍ ଛୁଟି ନେଇ ଅନେକ ଦିନ ଅନୁପସ୍ଥିତ ହେବାରୁ ସେମାନେ ବିରକ୍ତି ପ୍ରକାଶ କଲେ । ପ୍ରକାଶ ଥାଉ କି ମୁଁ କେଉଁଠାକୁ ଯାଉଛି ତାର ସଠିକ କାରଣ ଓ ସ୍ଥାନ ବିଷୟରେ କାହାକୁ ଜଣାଇ ନ ଥିଲି । ଆଉ ମଧ କୃଷ୍ଣବାବୁଙ୍କ ସଙ୍ଗେ ମୋର ବନ୍ଧୁତା ଅନ୍ୟମାନଙ୍କୁ ଅସୂୟା ବୋଧ ହେଉଥିଲା । ତେଣୁ ଏହାକୁ ଗୋପନୀୟ ରଖା ଯାଇଥିଲା । ମୋର ଯୋଗ ଦେବା ପରେ ମୋତେ ଅନେକ ଆଇନ ଶୃଙ୍ଖଳାଗତ ତ୍ରୁଟି ଦେଖାଇ ଧମକାଇ ଭୟଭୀତ କରିଥିଲେ । ମୁଁ ସେସବୁ ବିନା ଆପତ୍ତିରେ ସହି ଯିବାରୁ ସମସ୍ୟାଟି ସମାଧାନ ହୋଇଗଲା । ଏପରି ଭାବେ କାର୍ଯ୍ୟରତ ଥିବା ଅବସ୍ଥାରେ ସମସ୍ତଙ୍କ ଭଳି ମୁଁ ଅନ୍ୟ ଚାକିରୀରେ ନିଯୁକ୍ତି ପାଇଁ ଏକାଧିକ ବାର ଆବେଦନ କରି ପରୀକ୍ଷା ମଧ ଦେଇଥିଲି । ୧୯୪୯-୫୦ରେ ପ୍ରଥମ କରି ସବ୍ ଡେପୁଟୀ ଚାକିରୀ ପାଇଁ ଆବେଦନ ଓ ପରୀକ୍ଷା ଦେଇ ଇଣ୍ଟରଭିଉ ଦେଇଥିଲି । ୧୯୪୯ ସାଲରେ ଥରେ କଟକ ଯିବା ଅବସରରେ ପୁରାତନ ସେକ୍ରେଟାରିଏଟ୍‌ରେ ଶିକ୍ଷା ବିଭାଗର ଡେପୁଟୀ ସେକ୍ରେଟାରୀ ଥିଲେ ସ୍ୱର୍ଗୀୟ ମୁରାରୀ ପ୍ରସାଦ ନନ୍ଦ । ସେ ମୋର ଦୂର ସମ୍ପର୍କୀୟ ମାମୁଁଶ୍ୱଶୁର । ତାଙ୍କ ସହ ସାକ୍ଷାତ କରିବା ଅବସରରେ କଥା ପ୍ରସଙ୍ଗରେ ଜଣାଗଲା ଯେ ଓଡ଼ିଶାରୁ କେହି ଛାତ୍ର ଇଂଜିନିୟରିଂ ପଢ଼ିବା ପାଇଁ ସେ ବର୍ଷ ନ ଯିବାରୁ ମୋର ସାକ୍ଷାତ କରିବାର ପୂର୍ବ ଦିନ ପାଟନାକୁ ଟେଲିଗ୍ରାମ ଦ୍ୱାରା ଜଣାଇ ଦେଇଥିଲେ ଯେ ତାଙ୍କର କୌଣସି ପ୍ରାର୍ଥୀ ଓଡ଼ିଶାରୁ ନାହିଁ । ସେ ମୋର B.Sc ଯୋଗ୍ୟତା ଶୁଣି ଦୁଃଖିତ ହେଲେ ଯେ ଦିନକର ଆଗରୁ ଆସିଥିଲେ ହୁଏ ତ ମୁଁ ପାଟନା ଇଂଜିନିୟରିଂ କଲେଜରେ ପଢ଼ିବାର ସୂଚନା ପଠାଇ ପାରିଥାଆନ୍ତି । କିନ୍ତୁ ମୋର ତ ଶିକ୍ଷକତା କରିବାର ଅଛି ମୁଁ ଆଉ ଅନ୍ୟ ବିଭାଗକୁ ଯାଆନ୍ତି କିପରି ? ଏହାକୁ କୁହାଯାଏ ବିଧିର ବିଡ଼ମ୍ବନା । ମୁଁ Sales Tax Inspector ପାଇଁ ପରୀକ୍ଷା ଦେଇ ମଧ ଅକୃତକାର୍ଯ୍ୟ ହୋଇଥିଲି । ଏ ମଧରେ ୧୯୫୨ ସାଲରେ ମୋର ଆଉ ଏକ କନ୍ୟା ଜାତ ହେଲା । ଏପରି ଭାବେ

ସରକାରୀ ଚାକିରୀ ପାଇଁ ଉଦ୍ଦିଷ୍ଟ ବୟସ ସୀମା ଅତିକ୍ରାନ୍ତ ହେବାରୁ ୧୯୫୪ ସାଲରେ D.Ed. ପ୍ରଶିକ୍ଷଣ ପାଇଁ ଦରଖାସ୍ତ କଲି । ସେହି ବର୍ଷ ପ୍ରଥମ ଥର ପାଇଁ D.Ed.ରେ ନାମ ଲେଖାଇବା ପାଇଁ ପ୍ରତିଯୋଗିତା ପରୀକ୍ଷା ହେଉଥିବାରୁ ମୁଁ ସେଥିରେ ଯୋଗ ଦେଇ ୩ୟ ସ୍ଥାନ ଅଧିକାର କରି D.Ed.ରେ ନାମ ଲେଖାଇବାର ସୁଯୋଗ ହାସଲ କରିଥିଲି । ଫଳ ପ୍ରକାଶନ ପରେ ମୁଁ ରାଧାନାଥ ଟ୍ରେନିଂ କଲେଜରେ ମୋର ନାମ ଲେଖାଇ ବରଗଡ଼ ଚାଲି ଆସିଲି ।

## ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ଯୋଗଦାନ:-

ବରଗଡ଼ ଆସି ସ୍କୁଲରୁ ଅବ୍ୟାହତି ନେବା ପାଇଁ ପଢ଼ା ଅବକାଶ (Study leave) ମଞ୍ଜୁରି ପାଇଁ ଦରଖାସ୍ତ କଲି । ଯଥା ସମୟରେ କାର୍ଯ୍ୟମୁକ୍ତ ହୋଇ ସ୍କୁଲରୁ ବିଦାୟ ନେଲି । ସ୍କୁଲରୁ ସାମୟିକ ଅନୁପସ୍ଥିତି ପାଇଁ ଖଜୁରଟିକ୍ରା କ୍ୱାଟର୍ସ ଛାଡ଼ିବାକୁ ପଡ଼ିଲା ଓ ପିଲାମାନେ ଯାଇ ଗାଁରେ ବେହେରାରେ ରହିଲେ । ସେତେବେଳେ ମୋର ସ୍ତ୍ରୀ ଅନ୍ତଃସତ୍ତ୍ୱା । ତେଣୁ ଘରେ ପିଲାମାନେ ଝିଅ ଦୁଇଟି ଓ ପୁଅଟିଏ ଓ ସ୍ତ୍ରୀ ଗାଁରେ ରହିଲେ ଓ ମୁଁ ଯାଇ କଟକରେ ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ମାସକୁ ଟ୪୦ ବୃତ୍ତି ପାଇ ହଷ୍ଟେଲ୍‌ରେ ଉପର ମହଲା ୩ ନମ୍ବର କୋଠରୀରେ ରହିବା ପାଇଁ ନିର୍ଦ୍ଦେଶ ମିଳିଲା । ଯେ ହେତୁ ମୁଁ ନିର୍ବାଚନୀ ପରୀକ୍ଷାରେ ୩ୟ ସ୍ଥାନ ଅଧିକାର କରିଥିଲି । କ୍ରମେ କ୍ରମେ ପାଠ ପଢ଼ା ଆରମ୍ଭ ହୋଇ ଜୁଲାଇ ମାସ ଶେଷ ହେଲା । ଅଗଷ୍ଟ ପ୍ରଥମ ସପ୍ତାହରେ ଆଦର୍ଶ ଶିକ୍ଷାଦାନ ଅଧ୍ୟାପକମାନେ ପ୍ରଦାନ କରି ଆମକୁ ମଧ୍ୟ ସମାଲୋଚନା ମୂଳକ ପାଠଦାନ ପାଇଁ ନିର୍ଦ୍ଦେଶ ଦେଲେ । ମୁଁ ବିଜ୍ଞାନରେ ସଜୀବ ଓ ନିର୍ଜୀବ ବିଷୟରେ ସମାଲୋଚନା ପାଠ୍ୟଦାନ ଦେଇ ବିଶେଷ ଭାବରେ ସମାଲୋଚନାର ସମ୍ମୁଖୀନ ହେବାକୁ ପଡ଼ି ନ ଥିଲା । ଏ ମଧ୍ୟରେ ଆମ ହଷ୍ଟେଲ୍‌ର ମନିଟର ବା Prefect ରୂପେ ଶ୍ରୀ ମିଶ୍ର ନିର୍ବାଚିତ ହୋଇ ହଷ୍ଟେଲ୍‌ର ସୁବିଧା ଅସୁବିଧା ଚଳାଇଲେ । ଅଗଷ୍ଟ ୧୫ ତାରିଖ ପାଖେଇ ଆସିଲା । ମୁଁ Students' Common Roomର ସମ୍ପାଦକ ରୂପେ ମନୋନୀତ ହେଲି । ତେଣୁ ଅଗଷ୍ଟ ୧୫ ତାରିଖରେ କଅଣ କରିବାକୁ ହେବ ସେ ବିଷୟରେ ଯୋଜନା ଚାଲିଲା । ସ୍ୱାଧୀନତା ଦିବସ ଉପଲକ୍ଷେ ଏକ ବିଚିତ୍ରା (Variety show)ର ଆୟୋଜନ କରାଗଲା । ଇତି ମଧ୍ୟରେ ମୋର ରେଭେନ୍ସା କଲେଜର ପୂର୍ବ ସହପାଠୀ ପଦ୍ମଚରଣ ବିହାରୀ, ସୋମନାଥ ମିଶ୍ର, ରାମଚନ୍ଦ୍ର ରଥ, ଦିବାକର ଶତପଥୀ ଆଦିଙ୍କ ସଙ୍ଗେ ବନ୍ଧୁତା ବେଶ୍ ଜମି ଯାଇଥାଏ । ତେଣୁ ଆମେ ସମସ୍ତେ ମିଶି ଏକ କାର୍ଯ୍ୟକ୍ରମର

ରୂପରେଖ ପ୍ରସ୍ତୁତ କଲୁଁ ଓ ପ୍ରିନ୍ସିପାଲଙ୍କୁ ଜଣାଇଲୁଁ। ରାତ୍ରିରେ ଏକ ଭୋଜିର ମଧ ଆୟୋଜନ କରା ଯିବାର ସ୍ଥିର ହେଲା। ୧୪.୮.୫୪ ଇ. ଦିନ ପ୍ରିନ୍ସିପାଲ ଏକ ସୂଚନା ଦେଇ ଘୋଷଣା କଲେ ଯେ ୧୫ ତାରିଖ ସକାଳ ୮ଟା ବେଳେ କଲେଜର ଛାତ୍ର ଓ କଲେଜର ଅଧୀନରେ ଥିବା C.T. ପିଲାମାନଙ୍କର ମିଳିତ ଭାବେ ପତାକା ଉତ୍ତୋଳନ କରାଯିବ। ସେଥିରେ Prefect ଶ୍ରୀ ମିଶ୍ର ପତାକା ଉତ୍ତୋଳନ କରିବେ ଓ ଅଧ୍ୟାପକ, ଶିକ୍ଷକ ଓ ସମସ୍ତ ଛାତ୍ର ତହିଁରେ ଯୋଗ ଦେବେ। ଏ ମଧ୍ୟରେ ମୁଁ ଅନୁରୋଧ କରି ଆମ ଅଞ୍ଚଳର କଟକରେ ରହୁଥିବା ପ୍ରଣବାନନ୍ଦ ତ୍ରିପାଠୀଙ୍କୁ ଏକ ହାସ୍ୟରସାତ୍ମକ parodyଟିଏ କଟକ ସହର ଓ ଆମ କଲେଜର ବିଭିନ୍ନ ଅଧ୍ୟାପକଙ୍କ ସମ୍ପର୍କରେ ଲେଖାଇ ଥିଲି। ତେଣୁ ସେ ସବୁ ଆୟୋଜନ କରିବାକୁ ଆମେ ଏକ ଦଳ ବାହାରିଥିଲୁଁ। ପୁଣି ‘ଅମର ବିଳାସ’ ଗୀତିନାଟ୍ୟର ଏକ ଦୃଶ୍ୟାଭିନୟ ମୁଖ୍ୟାଂଶ ରୂପେ ପ୍ରଦର୍ଶନ କରିବା ପାଇଁ ସ୍ଥିର କଲୁଁ। ସେଥିରେ ରାଜା, ମନ୍ତ୍ରୀ ଓ ଦୂତର ଅଭିନୟ ପାଇଁ ବ୍ୟବସ୍ଥା କରାଯାଇଥିଲା। ଏହି ଉଭୟରେ ମୋର ଏକ ବିଶେଷ ଅଭିନୟ କରିବାର ଭୂମିକା ଥିଲା। ଟ୍ରେନିଂ କଲେଜ ଓ କଟକ ସହର ସମ୍ପର୍କୀତ ‘parody’ରେ ମୋତେ ପୁରୋହିତ ଭୂମିକାରେ, ‘ଅମର ବିଳାସ’ରେ ରାଜା ଭୂମିକାରେ ଓ ସୋମନାଥର ସମ୍ବଲପୁରୀ ଗୀତରେ ହଷ୍ଟେଲ୍‌ର ଏକ ଛାତ୍ର ହିସାବରେ ଅଭିନୟ କରିବା ବରାଦ ଥିଲା।

୧୫ ତାରିଖର ସକାଳ ୮ଟା ବେଳେ (ପତାକା ଉତ୍ତୋଳନ ସମୟରେ) ଟ୍ରେନିଂ କଲେଜ ଓ ଟ୍ରେନିଂ ସ୍କୁଲର ଛାତ୍ରମାନଙ୍କ ମିଳିତ ପତାକା ଉତ୍ତୋଳନରେ କଲେଜ ଛାତ୍ରଙ୍କ ସଂଖ୍ୟା ଅପେକ୍ଷାକୃତ କମ୍ ଥିବାରୁ ଟ୍ରେନିଂ ସ୍କୁଲର ପ୍ରଧାନ ଶିକ୍ଷକ ଏକ ମନ୍ତବ୍ୟ ଦେବାରୁ ପ୍ରିନ୍ସିପାଲ ମହୋଦୟଙ୍କୁ ବହୁତ ବାଧିଲା ଓ ସେ କ୍ରୋଧାନ୍ୱିତ ହୋଇ ୧୫ ତାରିଖର ଅନ୍ୟାନ୍ୟ କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରିବାରେ କ୍ଷୋଭ ମନୋଭାବ ଘୋଷଣା କରିଥିଲେ। ଏ ଖବର ହଷ୍ଟେଲ୍‌ରେ ପହଞ୍ଚିବାରୁ ଆମ୍ଭେମାନେ ସମସ୍ତେ ପ୍ରମାଦ ଗଣିଲୁଁ। କାରଣ ପତାକା ଉତ୍ତୋଳନରେ ଯୋଗଦାନ ନ କରିବା ଏକ ଏତେ ଧର୍ତ୍ତବ୍ୟ ଅପରାଧ ବୋଲି ମଣି ନ ଥିଲୁ। ତେଣୁ ବିଚିତ୍ରା କାର୍ଯ୍ୟକ୍ରମ ପାଇଁ କଟକରୁ କଳା ବିକାଶ କେନ୍ଦ୍ରରୁ ଆସିଥିବା ବ୍ୟକ୍ତିମାନଙ୍କ ଆଗମନ ପରେ ପ୍ରିନ୍ସିପାଲଙ୍କୁ ପଚାରିବାରୁ ସେ ଉତ୍ୟକ୍ତ ହୋଇ ‘ମୁଁ କିଛି ଜାଣେ ନାହିଁ’ ବୋଲି ଗମ୍ଭୀର ଭାବେ ଉତ୍ତର ଦେଲେ। ତେଣୁ ମୁଁ, ଦିବାକର ଶତପଥୀ, ପଦ୍ମଚରଣ ବିହାରୀ, କାହ୍ନୁ ପ୍ରତିହାରୀ, ସୋମନାଥ ମିଶ୍ର, ରାମଚନ୍ଦ୍ର ରଥ ବସି ଏକ ବିଚାର କରି ସନ୍ଧ୍ୟାରେ ଆୟୋଜିତ ହେବାକୁ ଥିବା ବିଚିତ୍ରା ଓ ଭୋଜୀର ସୁବନ୍ଦୋବସ୍ତ ପାଇଁ ଲାଗି ପଡ଼ିଲୁଁ।

ଭୋଜୀ ପାଇଁ ଅନ୍ୟ ବନ୍ଧୁମାନଙ୍କୁ ଜିମା ଦେଇ ମୁଁ, ଦିବାକର ଓ ସୋମନାଥ, ବୈଷ୍ଣବ ପାଣିଙ୍କ ସୁଆଙ୍ଗ ଓ parodyର କାର୍ଯ୍ୟକ୍ରମ ଓ ଗୀତନାଚ ବିଷୟରେ ପ୍ରାରମ୍ଭିକ ଆଲୋଚନା କରି ତାର ସଫଳତା ପାଇଁ ପ୍ରାଣପଣେ ଚେଷ୍ଟା କଲୁଁ। ସେତେବେଳେ କଲେଜର ଅଧ୍ୟକ୍ଷ ଶ୍ରୀ ବୈଦ୍ୟନାଥ ରଥ ଓ ଡ଼ା. ରାଧାଚରଣ ଦାଶ, ଶ୍ରୀ ସର୍ବେଶ୍ୱର ଦାଶ, ଶ୍ରୀ ଭୋଲାନାଥ ମିଶ୍ର ଓ ଶ୍ରୀ ପ୍ରାଣବନ୍ଧୁ କର ଅଧ୍ୟାପକ ଥିଲେ। ପରେ ଶ୍ରୀ ରାମସ୍ୱାମୀ ସେନାପତି ବିଦେଶରୁ ଫେରି ଅଧ୍ୟାପକ ଭାବେ ଯୋଗ ଦେଇଥିଲେ।

ସନ୍ଧ୍ୟାରେ ବିଚିତ୍ରା କାର୍ଯ୍ୟକ୍ରମ ପାଇଁ କଲେଜର ଜନୈକ ଛାତ୍ରୀ ଶ୍ରୀମତୀ ଶାନ୍ତିପ୍ରିୟା ନନ୍ଦଙ୍କ ଭଉଣୀ ନୃତ୍ୟ ପରିବେଷଣ କରିଥିଲେ। ମୁଁ 'ଅମର ବିଳାସ'ର ଏକ ଦୃଶ୍ୟରେ ରାଜା, ଦିବାକର ମନ୍ତ୍ରୀ ଓ ସୋମନାଥ ଦୂତ ଭୂମିକାରେ ଅଭିନୟ କରି ସମସ୍ତଙ୍କୁ ଆପ୍ୟାୟିତ କରିଥିଲୁଁ। ନୃତ୍ୟ ପାଇଁ ଆନୀତ ଡ୍ରେସକୁ ରାଜା ଓ ମନ୍ତ୍ରୀ ପାଇଁ ବ୍ୟବହାର କରି ଦୂତ ପାଇଁ ସାଧାରଣ ପୋଷାକ ପେଣ୍ଟ ଓ ଗେଞ୍ଜିରେ ଚଳାଇ ନେଲୁଁ। ତାହା ଦେଖି ପ୍ରିନ୍ସିପାଲ ଏପରି ଆନନ୍ଦିତ ହେଲେ ଯେ ସେ ଷ୍ଟେଜକୁ ଆସି ପରବର୍ତ୍ତୀ କାର୍ଯ୍ୟକ୍ରମ ପାଇଁ ଉତ୍ସାହ ପ୍ରଦାନ କରିଥିଲେ। ତେଣୁ ଆମେ ସାମାନ୍ୟ ଭାବେ ଭୟମୁକ୍ତ ହେଲୁ ବୋଲି ଭାବିଲୁଁ। ପରେ parodyରେ କଟକ ସହରର ଖ୍ୟାତନାମା ଜଳଖିଆ ଦୋକାନ ଓ ବିଭିନ୍ନ ଅଧ୍ୟାପକମାନଙ୍କ ଶିକ୍ଷାଦାନ ପଦ୍ଧତି ଉପରେ ବ୍ୟଙ୍ଗ ପ୍ରଦର୍ଶନମାନ ବେଶ ମନୋରମ ହୋଇଥିଲା। ଆଉ ମଧ ସୋମନାଥଙ୍କ ଦ୍ୱାରା ଏକ ସମ୍ବଲପୁରୀ ସଙ୍ଗୀତ ଗାନରେ ମୁଁ ହଠାତ୍ ଏକକ ଅଭିନୟ କରି ସମସ୍ତଙ୍କୁ ଆନନ୍ଦ ପ୍ରଦାନ କରିଥିଲି। ବିଚିତ୍ରାର ଶେଷରେ ଭୋଜୀରେ ଅଧ୍ୟକ୍ଷ ଓ ଅଧ୍ୟାପକମାନେ ଯୋଗ ଦେଇ ବିଚିତ୍ରାରେ ଅଭିନୀତ ଚରିତ୍ରମାନଙ୍କ ଭୁରି ଭୁରି ପ୍ରଶଂସା କରିଥିଲେ। ସମସ୍ତଙ୍କ ଭୋଜନ ପରେ ଅଧ୍ୟାପକମାନଙ୍କୁ ବିଦାୟ ଦେବା ଅବସରରେ ତାମ୍ବୁଳ ପ୍ରଦାନ ବେଳେ ତାଙ୍କ ସମ୍ମାନାର୍ଥେ ନମସ୍କାର କରିବାରୁ ଜନୈକ ଅଧ୍ୟାପକ କୌତୁହଳ ସହ ଓ ଅସାମୟିକ ନମସ୍କାରର କାରଣ ପଚାରିବାରୁ ମୁଁ ଆଶ୍ଚର୍ଯ୍ୟ ହେଲି କିନ୍ତୁ ତତ୍କ୍ଷଣାତ୍ ଆମ ଅଞ୍ଚଳରେ ପ୍ରଚଳିତ ତାମ୍ବୁଳ ବା ଦାନ୍ତକାଠି ବୟସ୍କମାନଙ୍କୁ ପ୍ରଦାନ ବେଳେ ଏହା ଏକ ସମ୍ମାନ ସୂଚକ ରୀତି ବୋଲି କହିବାରୁ ସେ ଆନନ୍ଦିତ ହେଲେ। ବୋଧ ହୁଏ ସେ ଅଞ୍ଚଳରେ ଏ ପ୍ରଥାର ପ୍ରଚଳନ ନ ଥିଲା।

ଏପରି ରାତ୍ରିରେ ଭୋଜୀଭାତ ସାରି ରାତ୍ର ବିଶ୍ରାମ ପରେ ପରଦିନ ସକାଳୁ ଷ୍ଟେଜ୍ ଖୋଲାଖୋଲି କରି ଠିକ୍ ସାଢ଼େ ୧୦ଟା ବେଳେ କଲେଜରେ ଯୋଗ ଦେଲୁଁ। ପ୍ରଥମ ପ୍ରିୟଡରେ ପ୍ରିନ୍ସିପାଲଙ୍କ କ୍ଲାସ ଥିବାରୁ ସେ ଆସି ହାଜର ହେବା ପରେ ପୂର୍ବ ଦିନର କ୍ରୋଧଜନିତ ଘଟଣାର କାରଣ ଜାଣିବା ପାଇଁ ଅତି ଗୁରୁ ଗମ୍ଭୀର ଭାବ

ପ୍ରଦର୍ଶନ କଲେ । ପତାକା ଉତ୍ତୋଳନରେ ଯୋଗ ଦେଇ ନ ଥିବା ଛାତ୍ରଛାତ୍ରୀମାନଙ୍କୁ ଜାଣିବାକୁ ଗ୍ରହିଁବାରୁ ଆମ୍ଭେମାନେ ସମସ୍ତେ ଦୋଷୀ ରୂପେ ସୁନା ପିଲାଟି ଭଳି ଛିଡ଼ା ହୋଇ ନତମସ୍ତକରେ ଅନୁଶୋଚନା ଜନିତ ଭାବରେ ଦୁଃଖରେ ମ୍ରିୟମାଣ ହେଲୁଁ । ଏ କାର୍ଯ୍ୟରେ ଦୋଷ ସ୍ୱୀକାର କରିଥିବା ଅଧିକାଂଶ ଛାତ୍ର ପୂର୍ବ ଦିନ ବିଚିତ୍ରାରେ ଅଭିନୟ କରି ଦର୍ଶକଙ୍କ ମନରେ ଉଲ୍ଲାସ ପ୍ରଦାନ କରିଥିବାରୁ ଅଧକ୍ଷ ମହାଶୟ କେବଳ ଆମ୍ଭମାନଙ୍କୁ ଜାଣିଗଲା ପରେ ଅବଶ୍ୟ ଦୁଃଖରେ ଗମ୍ଭୀର ଭାବେ ବସିବାକୁ ନିର୍ଦ୍ଦେଶ ଦେଇ ପାଠ୍ୟଦାନରେ ବ୍ୟାପୃତ ରହିବାରୁ ଆମ୍ଭମାନଙ୍କ ମନରେ କିଛି ଶାନ୍ତି ଆସିଲା । ଇତି ମଧ୍ୟରେ ସେପ୍ଟେମ୍ବର ମାସରେ ଅର୍ଥାତ୍ ଦଶହରା ଛୁଟି ପୂର୍ବରୁ ଆମ ଘରେ ଏକ କନ୍ୟା ଜନ୍ମ ହେବାର ଥିଲା ଓ ଦଶହରା ଛୁଟିରେ ଯାଇ ତାକୁ ଦେଖି ଆନନ୍ଦିତ ହେଲି । ଏବେ ପୁଅ ଗୋଟିଏ ଓ ଝିଅ ତିନି ହୋଇ ୪ଟି ସନ୍ତାନର ପିତା ହେବାର ସୌଭାଗ୍ୟ ମିଳିଥିଲା । ଏପରି ଭାବେ ପାଠପଢ଼ା, ସାଂସ୍କୃତିକ କାର୍ଯ୍ୟକ୍ରମ ଓ ଅନ୍ୟାନ୍ୟ ବିଷୟର କଲେଜ ଡ୍ରାମା ଆୟୋଜିତ ହେଲା । ଦଶହରା ଛୁଟି ପରେ କଲେଜ ଖୋଲିଲା । ଛାତ୍ରମାନଙ୍କର Criticism Lesson ପାଠଦାନ ପରେ ଆମର ଶ୍ରେଣୀମାନଙ୍କରେ ପ୍ରତ୍ୟକ୍ଷ ପାଠଦାନ ଆରମ୍ଭ କରାଗଲା । ମୋତେ P.M. Academy ଓ Rev. Collegiate Schoolର ଶ୍ରେଣୀରେ ପାଠଦାନ ଦେବାର ସୁଯୋଗ ମିଳିଲା - ଶ୍ରେଣୀ ୬ଷ୍ଠ, ୭ମ ଓ ଅଷ୍ଟମରେ ଇଂରାଜୀ, ବିଜ୍ଞାନ ଓ ଗଣିତ ଶିକ୍ଷାଦାନ ପାଇଁ । ପ୍ରତ୍ୟେକ ବିଷୟରେ ୧୫ଟି ଲେଖାଏଁ ପାଠଦାନ ଉଦ୍ଦିଷ୍ଟ ଥିଲା । ତେଣୁ ମୁଁ ଉପରୋକ୍ତ ଶ୍ରେଣୀମାନଙ୍କରେ ସବୁ ବିଷୟରେ ଶିକ୍ଷାଦାନ କରିବାକୁ ଅଭ୍ୟାସ କରି ଅଧ୍ୟାପକମାନଙ୍କ ଠାରୁ ଭଲ ମନ୍ତବ୍ୟ ପାଇଥିଲି ।

କଲେଜର ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ - ସାଧାରଣତଃ ବିଶିଷ୍ଟ ଦିବସମାନଙ୍କରେ ଆୟୋଜନ କରା ଯାଉଥିଲା । ଅର୍ଥାତ୍ ଗଣେଷ ପୂଜା, ସରସ୍ୱତୀ ପୂଜା ଓ ଜାନୁୟାରୀ ୨୬ ଆଦି । ଏଆଡ଼େ ଶ୍ରେଣୀରେ ପାଠ ପଢ଼ା ଓ ପ୍ରତ୍ୟକ୍ଷ ଭାବେ ଅଭ୍ୟାସ ପାଠଦାନରେ ବ୍ୟସ୍ତ ରହି କିପରି ଭାବେ ୪୫ଟି ପାଠଦାନ ସାରିବାକୁ ହେବ ସେ ବିଷୟରେ ଧ୍ୟାନ ଦେଇ ନିଜର କାର୍ଯ୍ୟକ୍ରମ ଓ ସମୟର ସଦବ୍ୟବହାର ଉପରେ ଦୃଷ୍ଟି ଦେଇ ଦୈନନ୍ଦିନ କର୍ତ୍ତବ୍ୟରେ ସାବଧାନତା ସହ ଦିନ କଟାଇବାକୁ ହେଲା ।

ଦଶହରା ଛୁଟି ପରେ ଖଣ୍ଡଗିରି ଉଦୟଗିରିକୁ ଭ୍ରମଣ, ବଣଭୋଜି ତଥା ପର୍ଯ୍ୟଟକ ଭାବେ କଲେଜର ସମସ୍ତ ଛାତ୍ରଛାତ୍ରୀମାନେ ପ୍ରଥମେ ଟ୍ରେନ୍‌ରେ

ଭୁବନେଶ୍ୱର ଓ ତାପରେ ପାଦବ୍ରଜରେ ଯାଇ ସେ ସବୁ ବୁଲାବୁଲି ପରେ ଖିଆପିଆ କରି ସନ୍ଧ୍ୟାରେ କଟକ ପ୍ରତ୍ୟାବର୍ତ୍ତନ କରିଥିଲୁ। ପୁଣି ଥରେ ବିଭିନ୍ନ କଲେଜର ଛାତ୍ରଛାତ୍ରୀମାନଙ୍କ ସହ ଏକ 'Outing to Naraj' ଷ୍ଟିମର୍ ବା କଳଚାଳିତ ଡଙ୍ଗା ଦ୍ୱାରା ଯାଇ ସେଠାରେ ବୁଲାବୁଲି କଲା ପରେ କଟକର ନାମଜାଦା ହୋଟେଲର ମାଲିକ ପୂର୍ଣ୍ଣ ସାହୁଙ୍କ ଦ୍ୱାରା ଖାଦ୍ୟ ଯୋଗାଣ ହୋଇଥିଲା।

କଲେଜର ବାର୍ଷିକ ନାଟକ - ଫକୀର ମୋହନଙ୍କ 'ଛ ମାଣ ଆଠ ଗୁଣ୍ଠ' ଉପନ୍ୟାସକୁ ନାଟ୍ୟ ରୂପରେ ରଚନା କରିବାରେ ସିଦ୍ଧହସ୍ତ ଆମ ଅଧକ୍ଷ ବୈଦ୍ୟନାଥ ରଥଙ୍କ ଅବଦାନ ଅବିସ୍ମରଣୀୟ। ଉକ୍ତ ନାଟକକୁ ମଞ୍ଚସ୍ଥ କରିବାରେ ସ୍ୱୟଂ ଅଧକ୍ଷ ଦିଗ୍‌ଦର୍ଶନ ଦେଇଥିଲେ। ପରୀକ୍ଷା ପାଖେଇ ଆସୁଥିବାରୁ କେତେକ ଛାତ୍ରଛାତ୍ରୀ ନାଟକରେ ଭାଗ ନେବାକୁ ଅମଙ୍ଗ ହେବାରୁ ଦୃଢ଼ ଭାବରେ ସୂଚନା ଦେଇ କହିଲେ ଯେ କେହି ଟ୍ରେନିଂ କଲେଜରେ ପାଠ ପଢ଼ି ପାସ୍ କରିପାରେ ନାହିଁ। କଲେଜରେ ପଢୁଥିବା ଛାତ୍ରଛାତ୍ରୀମାନଙ୍କୁ ପାସ୍ କରାଇ ଦିଆଯାଏ। ଏହା ପରେ ସମସ୍ତେ ଆଗ୍ରହରେ ନାଟକରେ ଅଭିନୟ କରିବାକୁ ଆଗେଇ ପଡ଼ିଲେ। ଛାତ୍ରୀମାନେ ମଧ ନାଟକରେ ଭାଗ ନେଇ ଉତ୍କୃଷ୍ଟ ଅଭିନୟ କରି ଦର୍ଶକଙ୍କୁ ଆନନ୍ଦ ପ୍ରଦାନ କରିଥିଲେ। ଉକ୍ତ ନାଟକରେ ଗାଁ - ଚଉକିଆ ଗୋବରା ଜେନା ଚରିତ୍ରରେ ଅଭିନୟ କରିବାର ସୌଭାଗ୍ୟ ମୋତେ ମିଳିଥିଲା। ଉକ୍ତ ଚରିତ୍ରର ନିଖୁଣ ଅଭିନୟ କରିଥିବା ହେତୁ ଦର୍ଶକମାନେ ବିଶେଷତଃ ଏକାଙ୍କିକା ଲେଖକ ନାଟ୍ୟକାର ଅଧ୍ୟାପକ ପ୍ରାଣବନ୍ଧୁ କର ଯେଉଁ ଭାବରେ ପ୍ରଶଂସା କରି କହିଲେ ଯେ ତାଙ୍କ ଜୀବନରେ ଏପରି ଉଚ୍ଚ କୋଟୀର ଅଭିନୟ ସନ୍ଦର୍ଶନ କରିବାର ସୁଯୋଗ ସେ ପୂର୍ବରୁ କେବେ ପାଇ ନ ଥିଲେ। ଏପରି ପ୍ରଶଂସା ପାଇବା କମ୍ ଲୋକଙ୍କ ଭାଗ୍ୟରେ ଜୁଟେ। ମୋର ଅଭିନୟରେ ସନ୍ତୁଷ୍ଟ ହେବାର ଉଦାହରଣ ଆଗରୁ ଅଧକ୍ଷ ମହାଶୟ ପାଇ ପରବର୍ତ୍ତୀ ବର୍ଷମାନଙ୍କରେ ସୁଆଙ୍ଗ ଅଭିନୟ କରାଗଲା। ପୂର୍ବରୁ କେବେହେଁ ସୁଆଙ୍ଗ ଆଧୁନିକ ସମାଜରେ ପ୍ରଦର୍ଶିତ ହୋଇ ନ ଥିଲା। ଅଧକ୍ଷ କହୁଥିଲେ ପରା ଯେ 'ଶଶିର ରାଜକୀୟ ଛଟା ଗ୍ଲଲି, ଅଭିନୟ ଯେତେ ଶିଖାଇଲେ ମଧ କେହି ଶିଖି ପାରୁ ନାହାନ୍ତି।' ଏହା ଶୁଣି ମୁଁ ପରେ ସବିଶେଷ ଆନନ୍ଦିତ ହୋଇଥିଲି।

ଏପଟେ ପରୀକ୍ଷା ନିକଟବର୍ତ୍ତୀ ହେବାରୁ ଅଧ୍ୟାପକମାନେ ନିଜ ନିଜ ବିଷୟକୁ ଶେଷ କରିବା ପରେ ଅପରାହ୍ନରେ ନିଜ ନିଜ ବିଷୟର ପୂର୍ବ ବର୍ଷର ପ୍ରଶ୍ନଗୁଡ଼ିକ ସମାଧାନ କରାଇବାକୁ ଲାଗିଲେ। ଏଥିରେ ବହୁତ ଧାନ ଦେଇଥିଲେ ଅଧକ୍ଷ ମହାଶୟ। ଟ୍ରେନିଂ କଲେଜ ପାଠ୍ୟଦାନ ଓ ଶିକ୍ଷା ପାଇବା ବିଷୟରେ ଶ୍ରୀ ରାମଚନ୍ଦ୍ର ମେଡ଼ିକାଲ କଲେଜରୁ ସ୍ୱାସ୍ଥ୍ୟରକ୍ଷା ଓ ଶରୀରତତ୍ତ୍ୱ ପାଠ୍ୟଦାନ ପାଇଁ

ଡ଼ା. ରାଧାଗୋବିନ୍ଦ ପାଣିଗ୍ରାହୀଙ୍କ ପଢ଼ାଇବା କାର୍ଯ୍ୟ ବେଶ ସ୍ମରଣୀୟ । ସେ ମହାଶୟ ମଧ କଲେଜରେ ସବୁ ସାଂସ୍କୃତିକ କାର୍ଯ୍ୟକ୍ରମରେ ଯୋଗ ଦେଇ ଛାତ୍ରମାନଙ୍କ ପ୍ରିୟଭାଜନ ହୋଇ ଥାଆନ୍ତି ଓ ସେ ସେହି ପରୀକ୍ଷା ବାବଦରେ ନିଶ୍ଚିନ୍ତ ରହିବାକୁ ଅଭୟବାଣୀ ପ୍ରଦାନ କରୁଥିଲେ । ମୁଁ ବିଜ୍ଞାନ ଶିକ୍ଷକ ଭାବେ ୫ ବର୍ଷ କାର୍ଯ୍ୟ କରି ଟ୍ରେନିଂ ପାଇଁ ଯାଇଥିବାରୁ ମୋ ପକ୍ଷେ ତାଙ୍କ ବିଷୟ ବୁଝିବାରେ କଷ୍ଟକର ହୋଇ ନ ଥିଲା । ବରଂ ମଝିରେ ମଝିରେ ତାଙ୍କ ପାଠ୍ୟଦାନ ବେଳେ ମୁଁ ଜାଣିଥିବା କେତେକ ଅଗ୍ରିମ ସୂଚନା ଦେବାଟା ତାଙ୍କୁ ବେଶ ସନ୍ତୋଷ ପ୍ରଦାନ କରିଥିଲା । ବିଶେଷତଃ ବିଚିତ୍ରା ଓ ନାଟକର ଅଭିନୟରେ ମୁଗ୍ଧ ହୋଇ ମୋ ପ୍ରତି ତାଙ୍କର ବିଶେଷ ଦୃଷ୍ଟିପାତ ରହୁଥିଲା । ପରେ ଜଣାଗଲା ଯେ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ତାଙ୍କ ବିଷୟରେ ମୁଁ ସେ ବର୍ଷ ସର୍ବାଧିକ ନମ୍ବର ପାଇ ଉତ୍ତୀର୍ଣ୍ଣ ହୋଇଥିଲି । ଆଉ ମଧ ତତ୍କାଳୀନ ଚିତ୍ରାଙ୍କନ ଶିକ୍ଷକ ଶ୍ରୀ ବସନ୍ତ କୁମାର ପଣ୍ଡା ଆମକୁ ଚିତ୍ରାଙ୍କନ ଓ ତା'ର ପାଠଦାନରେ ଉପାଦେୟତା ବିଷୟରେ ୨/୩ଟି ପ୍ରିୟଡରେ ଯାହା ଶିକ୍ଷା ଦେଇଥିଲେ ତାହା ପ୍ରକୃତରେ ଶିକ୍ଷକମାନଙ୍କ ପାଠ୍ୟଦାନ ପାଇଁ ଏକ ଆକର୍ଷଣୀୟ ମାଧମ ରୂପେ ସହାୟକ ହୋଇଥିଲା । ସେ ମହାଶୟ ଚିତ୍ରାଙ୍କନର ଉଦ୍ଭବ ଓ ବ୍ୟବହାର ବିଶେଷତଃ କିପରି କେତେ ମୂଳ ସାଙ୍କେତିକ ଚିହ୍ନ ଉପରେ ନିର୍ଭର କରେ ଓ ତାକୁହିଁ ବ୍ୟବହାର କରି ପୃଥିବୀର ସବୁ ଭାଷାର ଅକ୍ଷର ବା ଯେ କୌଣସି ଚିତ୍ରାଙ୍କନ କରାଯାଇ ପାରେ ବୋଲି ସୂଚନା ଓ ଉଦାହରଣ ମାଧମରେ ଶିକ୍ଷା ଦେଇ ଛାତ୍ରମାନଙ୍କୁ ସବିଶେଷ ସାହାଯ୍ୟ କରିଥିଲେ । ତହିଁରେ କେବଳ ରେଖାଚିତ୍ର ଦ୍ୱାରା ସବୁ ଚିତ୍ର ପରିପ୍ରକାଶ କରାଯିବା ବିଷୟରେ ସମ୍ୟକ ଧାରଣା ଦେଇଥିଲେ । ପ୍ରକାଶ ଥାଉ କି ବସନ୍ତ ବାବୁ ଏକ ଦକ୍ଷ କଳା ଶିକ୍ଷକ ଭାବେ ସୁଖ୍ୟାତି ଅର୍ଜନ କରିଥିଲେ ଓ ତାଙ୍କ ନିର୍ଦ୍ଦେଶରେ ଛାତ୍ରଙ୍କ ସାହାଯ୍ୟରେ କଲେଜ ଓ ସ୍କୁଲ ପାଇଁ କପଡ଼ାରେ Scene scenery ଏକ ସେଟ୍ ତିଆରି କରାଇଥିଲେ । ତାହା ପ୍ରକୃତରେ ବେଶ ମନୋହର ଓ ସୁଦୃଶ୍ୟ, ସୁରୁଚି ସମ୍ପନ୍ନ ହୋଇଥିଲା । ଏଥିରୁ ଅଧାପକଙ୍କ ଗୁଣୀଜନର ଗୁଣର ଆଦର କରିବା ପାଇଁ ବେଶ୍ ସୁଯୋଗ ଦେଉଥିଲା ।

ସେ ବର୍ଷ ହୋଲି ଖେଳ ଦିନ ସ୍ୱୟଂ ଅଧକ୍ଷ ହୋଲି ଖେଳରେ ଭାଗ ନେଇ ସମସ୍ତଙ୍କୁ ମିଶିବାର ସୁଯୋଗ ଦେଇଥିଲେ । ମାର୍ଚ୍ଚ ମାସରେ ପରୀକ୍ଷା ପୂର୍ବରୁ ଥରେ ଶନିବାର ଦିନ ସମସ୍ତ ଛାତ୍ରଛାତ୍ରୀ କଟକରୁ ଯାଇ ମହାନଦୀର ଏକ ପଠାରେ ରନ୍ଧନ କରି ରାତ୍ରିରେ ନୌକା ବିହାର, ସଙ୍ଗୀତ, ପ୍ରତିଯୋଗିତା ଓ ଅନ୍ୟାନ୍ୟ ଖେଳରେ ଭାଗ ନେବା ଆଦି ଆୟୋଜନ କରାଯାଇ ଥିଲା ଓ 'Hiking-cum-

picnic'ର ଦୃଷ୍ଟାନ୍ତ ଓ ଅନୁଭୂତି ପ୍ରଦାନ କରାଇଥିଲେ। ଏ ସବୁଥିରୁ ମନେ ହୁଏ ଯେ ତାଙ୍କର ପ୍ରଶାସନ, ପାଠ୍ୟଦାନ, ସାଂସ୍କୃତିକ କାର୍ଯ୍ୟକ୍ରମର ଆୟୋଜନ କଲେଜର ଶିକ୍ଷାର୍ଥୀମାନଙ୍କୁ ଭବିଷ୍ୟତରେ ସେପରି ଏକ ଦକ୍ଷ ଓ ଯୋଗ୍ୟ ଶିକ୍ଷକ ତଥା ସଂଗଠକ ହେବାକୁ ସବୁ ଓ ସମ୍ପୂର୍ଣ୍ଣ ସୁବିଧା ପ୍ରଦାନ କରୁଥିଲେ। ସେଠାରେ ଆମେ ରାତ୍ର ଯାପନ କରି ପରଦିନ ସକାଳେ ହଷ୍ଟେଲ୍‌କୁ ଫେରି ଆସିଲୁଁ। ପାଠ ପଢ଼ାରେ ଯେପରି ବ୍ୟାଘାତ ନ ହୁଏ ଓ ଛୁଟି ଦିନରେ କିପରି ବାହ୍ୟଜ୍ଞାନ ପାଇଁ Extra Curricular and co-curricular activity ସମାହିତ ହୋଇ ପାରିବ ସେଥି ପ୍ରତି ସଜାଗ ଦୃଷ୍ଟି ଦେଇ ସମସ୍ତଙ୍କ ପ୍ରିୟଭାଜନ ହୋଇଥିଲେ ଅଧକ୍ଷ ମହୋଦୟ।

ଟ୍ରେନିଂ କଲେଜର ବାର୍ଷିକ ବିଶ୍ୱବିଦ୍ୟାଳୟ ପରୀକ୍ଷା ୧୯.୪ ୫୫ରେ ହେବାର ଥିଲା। ତେଣୁ ଦିନରାତ୍ରି ପରିଶ୍ରମ କରି ପଢ଼ିବାକୁ ହେଲା ଓ ସନ୍ଧ୍ୟାରେ ମଧ ଅଧାପକଗଣ ସାଧାରଣ ଶ୍ରେଣୀ ବହିର୍ଭୂତ ସମୟରେ ପାଠଦାନ ଓ ପ୍ରଶ୍ନ ସମାଧାନ କରି ଆମ୍ଭମାନଙ୍କୁ ଦିଗ୍‌ଦର୍ଶନ ଦେଉଥିଲେ। ତେଣୁ ଛାତ୍ର ଓ ଶିକ୍ଷକଙ୍କ ମଧରେ ମଧୁର ସମ୍ପର୍କ ରହୁଥିଲା। ଅବଶ୍ୟ ପ୍ରଶିକ୍ଷଣ କେନ୍ଦ୍ରମାନଙ୍କରେ ଶିକ୍ଷକମାନଙ୍କର ଶୁଭେଚ୍ଛା ଉପରେ ବହୁତ ବିଷୟ ନିର୍ଭର କରେ। କାରଣ ସେମାନେ Practicalର (Internal) ଅନ୍ତଃନିରୀକ୍ଷକ ଭାବେ ଓ ବିଶ୍ୱବିଦ୍ୟାଳୟର ପରୀକ୍ଷକ ଭାବେ ନିଯୁକ୍ତି ପାଇ ଏକ ଉଚ୍ଚସ୍ତରୀୟ ସମ୍ମାନର ହକଦାର ଥିଲେ। ବାର୍ଷିକ ବିଶ୍ୱବିଦ୍ୟାଳୟର ଲେଖା ପରୀକ୍ଷା ପୂର୍ବରୁ practical ପରୀକ୍ଷା ପ୍ରାୟ ଶେଷ ହୋଇଥାଏ। ଏଣୁ ୧୯.୪.୫୫ରୁ ବାର୍ଷିକ ଲେଖା ପରୀକ୍ଷା ଆରମ୍ଭ ହୋଇ ୪/୫ ଦିନରେ ପରୀକ୍ଷା ସରିବା ପରେ ପ୍ରଶିକ୍ଷଣ କେନ୍ଦ୍ରରୁ ଅବ୍ୟାହତି ନେଇ ନିଜ ନିଜ କର୍ମକ୍ଷେତ୍ରକୁ କାର୍ଯ୍ୟରେ ଗୁରୁଶିକ୍ଷକମାନେ ଓ ନୂତନ ଭାବେ ପ୍ରଶିକ୍ଷଣ ପାଉଥିବା ଛାତ୍ରମାନେ ଘରକୁ ପ୍ରତ୍ୟାବର୍ତ୍ତନ କରନ୍ତି। ଏଣୁ ପରୀକ୍ଷା ଶେଷ ପରେ ଭୋଜିଭାତର ପରଦିନ ବାହୁଡ଼ା ଯାତ୍ରା ଆରମ୍ଭ ହେଲା ୨୩.୪.୫୫ ଦିନ। ତେଣୁ ପୂର୍ବ ଦିନରୁ ଅଧାପକ ଓ ଅଧକ୍ଷଙ୍କ ଠାରୁ ବିଦାୟ ନେଇ ଉକ୍ତ ଦିନ ସକାଳୁ ଚିରାଚରିତ ପ୍ରଥାନୁସାରେ ଟ୍ରେନ୍ ଓ ବସ୍ ଯୋଗେ ବରଗଡ଼ ଫେରିଲି ଓ ସ୍କୁଲରେ ଯୋଗ ଦେବା ପାଇଁ ହେ.ମା.ଙ୍କ ନିକଟରେ ଉପସ୍ଥିତ ହେଲି। ହେ.ମା. ଓ ସେକ୍ରେଟରୀଙ୍କ ଅନୁମୋଦନ କ୍ରମେ ସଭାପତିଙ୍କ ଆଦେଶରେ ସ୍କୁଲରେ ଯୋଗ ଦେଲି ଯେହେତୁ ମୁଁ ପ୍ରଶିକ୍ଷଣ ଅଧୟନ ଅବକାଶର ଅନୁମତି ନେଇ ସ୍କୁଲରୁ ପ୍ରଶିକ୍ଷଣ ପାଇଁ ଯାଇଥିଲି। ଅପ୍ରେଲ ଓ ମଇର ପ୍ରଥମ ଭାଗରେ ସ୍କୁଲର ଗ୍ରୀଷ୍ମାବକାଶ ପୂର୍ବର

କାର୍ଯ୍ୟ ସମାପନ ପୂର୍ବକ ସ୍କୁଲ ଗ୍ରୀଷ୍ମାବକାଶ ପାଇଁ ବନ୍ଦ ରହିବାରୁ ମୁଁ ଘରେ ଯାଇ ରହିଲି । ମଝିରେ ସରକାରୀ ବିଦ୍ୟାଳୟମାନଙ୍କ ନିଯୁକ୍ତି ପାଇଁ ଘୋଷଣାନାମା ପ୍ରକାଶିତ ହେବାରୁ ମୁଁ ବଲାଙ୍ଗିର ମଣ୍ଡଳ ଶିକ୍ଷାଧିକ୍ଷକଙ୍କୁ ଆବେଦନ ପତ୍ର ପଠାଇଥିଲି । ସେତେବେଳେ ଓଡ଼ିଶାରେ ୩ଟି ମଣ୍ଡଳ ଥିଲା - କଟକ, ବ୍ରହ୍ମପୁର ଓ ବଲାଙ୍ଗିରରେ । ବଲାଙ୍ଗିର ବିଶେଷ ମଣ୍ଡଳ (Special Circle) ରୂପେ ଗଠିତ ହୋଇଥିଲା ଓ ତା' ଅଧୀନରେ ସମ୍ବଲପୁର, ସୁନ୍ଦରଗଡ଼, ବଲାଙ୍ଗିର, କଳାହାଣ୍ଡି ଓ ଢେଙ୍କାନାଳ ଜିଲ୍ଲାର ଉଚ୍ଚ ବିଦ୍ୟାଳୟ ଗୁଡ଼ିକ ଥିଲା । ସେତେବେଳେ ମଣ୍ଡଳାଧୀଶ ବଦଳି ଯାଇଥିବାରୁ ବଲାଙ୍ଗିର ରାଜେନ୍ଦ୍ର କଲେଜର ଅଧକ୍ଷ ପ୍ରଫେସର ବ୍ରଜବନ୍ଧୁ ମିଶ୍ର ମଣ୍ଡଳ ଦାୟିତ୍ୱରେ ଥିଲେ ।

## D.Ed. Pass ଓ ଜୁନାଗଡ଼ 'B' Type ସ୍କୁଲରେ ନିଯୁକ୍ତି ପ୍ରାପ୍ତି :-

ଆମର ପରୀକ୍ଷାଫଳ ଜୁନ୍‌ର ଶେଷ ଭାଗରେ ପ୍ରକାଶିତ ହେବାରୁ ଜୁଲାଇ ମାସରେ ବିଦ୍ୟାଳୟଗୁଡ଼ିକ ଗ୍ରୀଷ୍ମାବକାଶ ପରେ ଖୋଲିବାରୁ ଖାଲି ଥିବା ଶିକ୍ଷକ ପଦବୀରେ ନୂତନ ଭାବେ ପାସ୍ କରିଥିବା D.Ed. ଛାତ୍ରମାନଙ୍କୁ ବା ସେପରି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ବେସରକାରୀ ସ୍କୁଲର ଶିକ୍ଷକମାନଙ୍କୁ ସରକାରୀ ବିଦ୍ୟାଳୟମାନଙ୍କରେ ନିଯୁକ୍ତି ମିଳିଲା । ମୁଁ ମଧ୍ୟ D.Ed.ରେ Distinctionରେ ପାସ୍ କରିଥିବାରୁ ମୋତେ ମଧ୍ୟ କଳାହାଣ୍ଡି ଜିଲ୍ଲାର ସରକାରୀ 'B' type ଜୁନାଗଡ଼ ହାଇସ୍କୁଲରେ ନିଯୁକ୍ତି ମିଳିଲା । ନିଯୁକ୍ତି ପତ୍ର ପାଇବା ପରେ ମନରେ ନାନା ପ୍ରକାର ବିଚାରଧାରାର ଉତ୍ସ ପ୍ରବାହିତ ହେବାକୁ ଲାଗିଲା । ଶେଷରେ ସରକାରୀ ଚାକିରୀର ପାଇବା ଆଶାରେ ଜର୍କ ହାଇସ୍କୁଲରୁ ଅଗଷ୍ଟ ପ୍ରଥମ ସପ୍ତାହରେ କାର୍ଯ୍ୟମୁକ୍ତ ହୋଇ ଜୁନାଗଡ଼ ସରକାରୀ ସ୍କୁଲରେ ଯୋଗ ଦେବା ପାଇଁ ବାହାରିଲି । ସେତେବେଳେ ମୋର ପରିବାର ସହ ବରଗଡ଼ର ମୋର ଶ୍ୱଶୁରଙ୍କ ଅର୍ଦ୍ଧନିର୍ମିତ ଘରେ ରହୁଥିଲି । ମୋର ଜୁନାଗଡ଼ରେ ଯୋଗ ଦେବା ପରେ ସମସ୍ତେ ଯାଇ ବେହେରାରେ ଗାଁରେ ରହିଲେ । କାରଣ କଥାରେ ଅଛି - 'ଦିଲ୍ଲୀ କା ଲଡୁ ଯୋ ଖାଏଗା ପସ୍ତାଏଗା ଔର୍ ଯୋ ନହିଁ ଭି ଖାଏଗା ଓ ଭି ପସ୍ତାଏଗା' ନୀତିରେ ସରକାରୀ ଚାକିରୀ କରିବା ଉଦ୍ଦେଶ୍ୟରେ ଜର୍କ ହାଇସ୍କୁଲରୁ ଅବ୍ୟାହତି ନେଇ ଜୁନାଗଡ଼ ଉଦ୍ଦେଶ୍ୟରେ ବାହାରିଲି ନିଜର ଅନ୍ୟାନ୍ୟ ଜିନିଷପତ୍ର ବେଡିଙ୍ଗ ଓ ବାକ୍ସଟିଏ ଧରି । ଜର୍କ ହାଇସ୍କୁଲର ଛାତ୍ର ଓ ଶିକ୍ଷକମାନେ ବହୁତ ଦୁଃଖର ସହ ବିଦାୟ ଦେଇଥିଲେ - ଅବଶ୍ୟ ସରକାରୀ ଚାକିରୀରେ ଯୋଗ ଦେବା ପାଇଁ ଯିବାକୁ ହେଲା ।

ସେତେବେଳେ କୁନାଗଡ଼ ଯିବାକୁ ବରଗଡ଼ରୁ ବଲାଙ୍ଗିର ବାଟେ ଟିଟିଲାଗଡ଼ ବସ୍ ଯୋଗେ ଓ ଟିଟିଲାଗଡ଼ରୁ କେସିଙ୍ଗା ଟ୍ରେନ୍ ଯୋଗେ ଯାଇ କେସିଙ୍ଗାରୁ ଭବାନୀପାଟଣା ବାଟେ କୁନାଗଡ଼ ଯିବାକୁ ହେଉଥିଲା । କାରଣ ସେତେବେଳେ ତେଲ ନଦୀରେ ସବୁ ଦିନିଆ ରାସ୍ତା ହୋଇ ନ ଥିଲା । ବହୁ ବାର ଚେଷ୍ଟା କରି ସରକାର ଦୁଇ ଥର ପୋଲ ବାନ୍ଧିବାରେ ଅକୃତକାର୍ଯ୍ୟ ହୋଇ ୩ୟ ଥରରେ ଏବେ ସବୁ ଦିନିଆ ରାସ୍ତା ନିର୍ମାଣ ହୋଇ ଯାତାୟାତର ସୁବିଧା ହୋଇଛି । ନଚେତ୍ ପୂର୍ବରୁ ବର୍ଷାଦିନେ ସବୁବେଳେ ପ୍ରାୟ ଟ୍ରେନ୍ ଯୋଗେ ଓ ଅନ୍ୟ ସମୟରେ ବେଲଗାଁ ବାଟେ ଡଙ୍ଗାରେ ବା ଖରାଦିନିଆ ରାସ୍ତାରେ ପାର ହୋଇ କେସିଙ୍ଗା ଯିବାକୁ ପଡୁଥିଲା । ତେଣୁ ମୁଁ ମଧ ବରଗଡ଼ରୁ ଟିଟିଲାଗଡ଼ ଯାଇ ସେଠାରୁ ଟ୍ରେନ୍‌ରେ କେସିଙ୍ଗା ଓ ସେଠାରୁ ବସ୍ ଯୋଗେ ଭବାନୀପାଟଣା ବାଟେ ଯାଇ କୁନାଗଡ଼ ପହଞ୍ଚିଲା ବେଳକୁ ପ୍ରାୟ ସନ୍ଧ୍ୟା ହୋଇ ଯାଇଥିଲା । ସେତେବେଳେ କୁନାଗଡ଼ ଓ ଆଉ ୨ଟି ସ୍ଥାନରେ ନୂତନ ଭାବେ ଅନୁନ୍ନତ ଆଦିବାସୀ ବହୁଳ ଅଞ୍ଚଳରେ Community Development Project କାର୍ଯ୍ୟ ଆରମ୍ଭ ହୋଇଥିଲା ଓ କିଛି ଦିନ ପୂର୍ବରେ କୁନାଗଡ଼କୁ ଭବାନୀପାଟଣା ସହ ସବୁ ଦିନିଆ ରାସ୍ତାର ସଂଯୋଗ ପାଇଁ ଶଗଡ଼ା ନଦୀରେ ନୂତନ ଭାବେ ପୋଲ ନିର୍ମାଣ କାର୍ଯ୍ୟ ସାରି ଅସ୍ଥାୟୀ ଭାବେ ଯାତାୟାତ ଆରମ୍ଭ ହୋଇଥିଲା । ସେତେବେଳେ ଭବାନୀପାଟଣା ଓ କୁନାଗଡ଼ ରାସ୍ତାରେ ସାଗୁଆନ, ଶିଶୁ, ଶାଳ, ପିଆଶାଳର ନିବିଡ଼ ଜଙ୍ଗଲ ଥାଇ ରାସ୍ତାରେ ବ୍ୟାଘ୍ର ଉପଦ୍ରବର ଆଶଙ୍କା ଥିଲା । ଏପରିକି ବହୁ ଥର ଯାତ୍ରୀମାନେ ଯିବାବେଳେ ବାଘର ସମ୍ମୁଖୀନ ହେଉଥିଲେ । ତେଣୁ ବାଟୋଇମାନେ ଗ୍ଡ଼ଲି କରି ଯିବାବେଳେ ହାତରେ ବାଡ଼ି ବା ଅସ୍ତ୍ରଶସ୍ତ୍ର ସହ ଦଳଗତ ଯାତ୍ରାର ପକ୍ଷପାତୀ ଥିଲେ । ଏବେ ସେ ସବୁ ଜଙ୍ଗଲର ଚିହ୍ନବର୍ଣ୍ଣ ନାହିଁ କହିଲେ ଚଳେ ।

ମୁଁ ସ୍କୁଲରେ ପହଞ୍ଚି ସ୍କୁଲର ଶିକ୍ଷକମାନେ ରହୁଥିବାର ହଷ୍ଟେଲ୍‌ରେ ପହଞ୍ଚିଲି । ସେଠାରେ ସହକାରୀ ପ୍ରଧାନ ଶିକ୍ଷକ ଘୋଷ ବାବୁ, ଆକୁଳ ବାବୁ, ରମାନାଥ ବାବୁ, ସଂସ୍କୃତ ପଣ୍ଡିତେ ଓ ଆଉ କେତେଜଣ ରହୁଥିଲେ । ମୁଁ ସେମାନଙ୍କ ସଙ୍ଗେ ରହିବାର ସ୍ଥିର କରି ଟିକିଏ ଧୁଆଧୋଇ ହୋଇ ପ୍ରଧାନ ଶିକ୍ଷକଙ୍କ ବସାକୁ ଯାଇ ଦେଖା କଲି । ଶ୍ରୀ ଈଶ୍ୱରଚନ୍ଦ୍ର ସାହୁ ପ୍ରଧାନ ଶିକ୍ଷକ ରୂପେ ସେଠାରେ ଅବସ୍ଥାପିତ ଥିଲେ । ତାଙ୍କ ଘର ଦେବଗଡ଼ ଅଞ୍ଚଳରେ । ମୁଁ ବରଗଡ଼ରୁ ଯାଇ ସେଠାରେ ବିଜ୍ଞାନ ଶିକ୍ଷକ ହିସାବରେ ଯୋଗ ଦେବାକୁ ଯାଇଥିବାରୁ ବେଶ ଆନନ୍ଦିତ ହେଲେ । ପର ଦିନ ୮.୭.୫୫ ଇ. ଦିନ ୧୦ଟା ବେଳେ ସ୍କୁଲରେ ଯୋଗଦାନ ପତ୍ର ଦାଖଲ କଲି । ପୂର୍ବ ଦିନ ରାତ୍ରରେ ସମସ୍ତ ଶିକ୍ଷକଙ୍କ ସଙ୍ଗେ

ହଷ୍ଟେଲ୍‌ରେ ଖାଇବାକୁ ହେଲା ଓ ସେଠାରେ ଖାଦ୍ୟପଦାର୍ଥ ଦେଖି ମୋର ଦେହ ଥରିଗଲା ଓ ଘରର ଖାଦ୍ୟକୁ ମନେ କରି ହତୋତ୍ସାହିତ ହେଲି । ଭାତ, ଡାଲି ପାଣି ଓ ନାଲିଚଣା ଓ ଆଳୁ ଝୋଳ ମେସ୍‌ର ଖାଦ୍ୟ । ସେଥିରୁ ଜାଣିଲି ସେ ଅଞ୍ଚଳର ସାମାଜିକ ପରିସ୍ଥିତି ଓ ସଂସ୍କୃତି । ମୋର ବରଗଡ଼ ଛାଡ଼ିବା ଅନୁଚିତ ମନେ କଲି । ଆଗରୁ ଟିକିଏ ଚିନ୍ତା କରି ଜୁନାଗଡ଼ରୁ ବୁଲି ଯାଇଥିଲେ ବୋଧ ହୁଏ ଆଉ ସରକାରୀ ଚାକିରୀ ପାଇଁ ମହାର୍ଘ ଆଶା ପୋଷଣ କରିବାକୁ ହୋଇ ନ ଥାନ୍ତା । ଯେତେବେଳେ ବରଗଡ଼ ଛାଡ଼ିଛି ବାଧ ହୋଇ ସରକାରୀ ଚାକିରୀର ସ୍ୱାଦ ଚାଖିବା ପାଇଁ ଓ ଭବିଷ୍ୟତକୁ ଅପେକ୍ଷା କରିବାକୁ ହେଲା ।

ସ୍କୁଲରେ ଯୋଗଦାନ ପରେ ମୁଁ ପ୍ରଥମେ ଏକାଦଶ ଓ ଦଶମ ଶ୍ରେଣୀକୁ ଯାଇ ତାଙ୍କର ପାଠ ସମ୍ପର୍କରେ ଆଲୋଚନା କରି ମୋର ପରବର୍ତ୍ତୀ କର୍ତ୍ତବ୍ୟ ସ୍ଥିର କରିନେଲି । କାରଣ ମୋତେ ବିଜ୍ଞାନ ଶିକ୍ଷକ ହିସାବରେ ଆଗରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ବିଜ୍ଞାନ, ଭୂଗୋଳ ଓ ଗଣିତ ପାଠ ପଢୁଥିବାର ଦାୟିତ୍ୱ ଦେବା କଥା ପ୍ରଧାନ ଶିକ୍ଷକ ଜଣାଇଲେ । କାରଣ ମୋର ପୂର୍ବରୁ ବିଜ୍ଞାନ ଶିକ୍ଷକ ଶ୍ରୀ ଘନଶ୍ୟାମ ପାଇକରାୟ ସେ ସବୁ ପଢ଼ାଉଥିଲେ । ତାକୁ ପଢ଼ାଇବାକୁ ହେ.ମା. ନିର୍ଦ୍ଦେଶ ଦେଲେ । ମୁଁ ନମ୍ରତାର ସହ ସ୍କୁଲର ହିତ ଦୃଷ୍ଟିରୁ ଓ ଅନ୍ୟମାନଙ୍କ ସୁବିଧା ଦେଖି ମୋତେ ଯେଉଁ ବିଷୟ ଦେଲେ ପଢ଼ାଇବାକୁ ପ୍ରସ୍ତୁତ ବୋଲି ମନୋଭାବ ପ୍ରକାଶ କରିବାରୁ ହେ.ମା. ମହୋଦୟ ପରମ ସନ୍ତୋଷ ଲାଭ କଲେ । ତେଣୁ ହେ.ମା. ଶ୍ରୀ ଆକୁଳ ମିଶ୍ରଙ୍କୁ ମୋର ଯୋଗଦାନ ହେତୁ ଯାହା ସବୁ ସାମାନ୍ୟ ପରିବର୍ତ୍ତନ କରି ରୁଟିନ୍‌କୁ ସଜାଡ଼ିବା ପାଇଁ ଅନୁରୋଧ କରିଥିଲେ । ସ୍କୁଲର କିଛି ଦିନ ହେଲା କାର୍ଯ୍ୟ I.Sc. ଯୋଗ୍ୟତା ହେତୁ ସେ ମହାଶୟ ବିଜ୍ଞାନ ଓ ଅନ୍ୟାନ୍ୟ ବିଷୟ ପଢ଼ାଉଥିଲେ ଓ ରୁଟିନ୍ ତିଆରି ଭାର ତାଙ୍କ ଉପରେ ନ୍ୟସ୍ତ ଥିଲା । ଉକ୍ତ ମହାଶୟ ଦିନେ ଦି ଦିନ ମଧ୍ୟରେ ତାର ବନ୍ଦୋବସ୍ତ କରି ଦେବା ପାଇଁ ପ୍ରତିଶୃତି ଦେଇ ଚାଲିଗଲେ । ସେ ଦିନ ସ୍କୁଲ ବନ୍ଦ ହେବା ପରେ ସହର ବିଷୟରେ କିଛି ଧାରଣା କରିବା ପାଇଁ ବାହାରକୁ ଯିବାକୁ ଉଦ୍ୟତ ହେବା ବେଳେ ମୋର ପୂର୍ବ ପରିଚିତ ବନ୍ଧୁ ଯେ କି ଜୁନାଗଡ଼ project ଦପ୍ତରରେ ସହକାରୀ କିରାନି ରୂପେ କାମ କରୁଥିଲେ, ସେ ହଠାତ୍ ଆସି ଉପସ୍ଥିତ ହୋଇ ମୋତେ ଆଶ୍ଚର୍ଯ୍ୟାନ୍ୱିତ କଲେ । ମୁଁ ଏପରି ଅପୂର୍ବ ମିଳନରେ ଚିନ୍ତା ବା ଭାବନା ଘୁଣାକ୍ଷରେ ମଧ୍ୟ ମନରେ ଉଠି ନ ଥିଲା । ତାଙ୍କଠାରୁ ଶୁଣିଲି ଯେ ତାଙ୍କ ଭାଇଟିଏ ଏକାଦଶ ଶ୍ରେଣୀରେ ଓ ପୁତୁରାଟିଏ ଅଷ୍ଟମ ଶ୍ରେଣୀରେ ସେହି ସ୍କୁଲରେ ପଢୁଥିଲେ । ଉକ୍ତ ମହାଶୟ ସେମାନଙ୍କଠାରୁ

ମୋର ବିଦ୍ୟାଳୟରେ ଯୋଗ ଦେବା ଜାଣି ହଠାତ୍ ଆସି ମୋ ସାଙ୍ଗରେ ଦେଖା କରି ମୋର ସେହି ଅପରିଚିତ ସ୍ଥାନରେ ବନ୍ଧୁଙ୍କର ଆକସ୍ମିକ ଆବିର୍ଭାବ - ଏହା ଭଗବାନଙ୍କ ଅଶେଷ କରୁଣାର ନିଦର୍ଶନ ଭଳି ମନେ ହେଲା । ଅସହାୟର ସହାୟକ, ସର୍ବଶକ୍ତିମାନ୍ ଓ ସର୍ବବିଦ୍ୟମାନ ଭଗବାନଙ୍କ ସତ୍ତାର ଗୁରୁତ୍ୱ ଉପଲବ୍ଧି କଲି ମାତ୍ର । ଏପରି ସବୁର ବ୍ୟବସ୍ଥା ପୂର୍ବରୁ ସେ କରିଥାଆନ୍ତି ନଚେତ୍ ମୋ ଭଳି ଏକ ନବାଗତ ଅକିଞ୍ଚନର ସୁବିଧା ପାଇଁ ଏପରି ବନ୍ଧୁମିଳନ ଘଟି ଥାଆନ୍ତା କିପରି ? ସେ ମହାଶୟଙ୍କ ଅନୁରୋଧ କ୍ରମେ ତାଙ୍କ ପ୍ରୋଜେକ୍ଟ କୋଲୋନିରେ ଥିବା ସରକାରୀ ବାସଗୃହକୁ ଯାଇ ବୁଲି ଆସିବା ପାଇଁ ଏପରିକି ପ୍ରଥମ ଦେଖାରେ ସେ ତାଙ୍କ ଘରେ ରହିବାକୁ ଅନୁରୋଧ କରି ବାଧ କରିଥିଲେ । ତାଙ୍କ ଘରକୁ ଯାଇ ତାଙ୍କ ସ୍ତ୍ରୀ ଓ ପିଲାମାନଙ୍କ ସଙ୍ଗେ ମିଶିଲା ପରେ ଜଣାଗଲା ଯେ ତାଙ୍କର ସ୍ତ୍ରୀ ଶିରିଆ (ଶ୍ରୀୟା) ମୋର ସ୍ତ୍ରୀଙ୍କ ବାଲ୍ୟ ସଙ୍ଗିନୀ ଓ ନିକଟ ସମ୍ପର୍କୀୟା । କଟକରେ ପଢ଼ିବା ବେଳେ ଯିବା ଆସିବା ସମୟରେ ତାଙ୍କ ଭଡ଼ା ଘରେ ସମ୍ବଲପୁରରେ ଏକାଧିକ ବାର ରହିବାର ସୁଯୋଗ ମିଳିଥିଲା । ବିଶେଷତଃ ପୁରୋହିତ ବାବୁ ବରଗଡ଼ ଡେପୁଟି ଇନ୍ସପେକ୍ଟର ଅଫିସରେ ମଧ କାର୍ଯ୍ୟ କରୁଥିବା ବେଳେ, ଉନ୍ନତିର ସୁବିଧା ଆଶାରେ ଏହି project ଚାକିରୀରେ ଯୋଗ ଦେଇଥିଲେ କିଛି ଆଗରୁ । ତାଙ୍କ ଘରକୁ ଯାଇ ତାଙ୍କ ସ୍ତ୍ରୀଙ୍କ ସଙ୍ଗେ କଥାବାର୍ତ୍ତା ବେଳେ ସେମାନଙ୍କ ପ୍ରସ୍ତାବ ହେଲା ଯେ ମୁଁ ଆସି ତାଙ୍କ ସଙ୍ଗରେ ରହିବି ଓ ସେଥିରେ ସେମାନଙ୍କ ଅସୁବିଧା ହେବ ନାହିଁ । ମୁଁ ତାଙ୍କ ଘରେ ରହିଲେ ପିଲାଏ ଡରି କରି ପାଠ ପଢ଼ିବେ ଓ ଅସୁବିଧା ହେଲେ ମୋର ସାହାଯ୍ୟ ନେଇ ପାରିବେ । ଏପରି ପ୍ରସ୍ତାବରେ ମୁଁ ହଠାତ୍ କିଛି ସ୍ଥିର କରି ପାରିଲି ନାହିଁ ଓ ପରେ କହିବି ବୋଲି କହି ବିଦାୟ ନେଲା ବେଳେ ସେମାନେ ରାତ୍ରଭୋଜନ ତାଙ୍କ ଘରେ କରିବାକୁ ବାଧ କରିବାକୁ କୁଣ୍ଠିତ ହେଲେ ନାହିଁ । ତେଣୁ ପୁରୋହିତ ବାବୁଙ୍କ ସଙ୍ଗେ କଥାବାର୍ତ୍ତା ଛଳରେ ସମୟ କଟାଇବାକୁ project colonyର ଅନ୍ୟ ଅଫିସରମାନଙ୍କ ସଙ୍ଗେ ଦେଖା କରିବାକୁ ମୋତେ ନେଇଗଲେ । ସେତେବେଳେ Project Officer ଖାଁ ସାହେବ A.D.M. ସ୍ତରର, ଡାକ୍ତର ରଘୁନନ୍ଦନ ପାଣିଗ୍ରାହୀ, କୃଷି ଅଫିସର ପ୍ରସନ୍ନ ପଟ୍ଟନାୟକ ଓ ଇଂଜିନିଅର, ଓଭରସିଅର ମଧ ପ୍ରସନ୍ନ ପଟ୍ଟନାୟକଙ୍କ ସଙ୍ଗେ ଦେଖା ହେବା ପରେ ସେମାନେ ମୋର ନିଯୁକ୍ତି ଓ ଯୋଗଦାନରେ ଅତ୍ୟନ୍ତ ଖୁସି ହେଲେ । ପରେ ପଶୁ ଡାକ୍ତର ଓ ରେଞ୍ଜର ଆଦି ଅନ୍ୟ ସରକାରୀ କର୍ମଚାରୀଙ୍କ ସଙ୍ଗେ ପରିଚିତ ହୋଇଥିଲା ।

ସେ ଦିନ ସନ୍ଧ୍ୟା ଭୋଜନ ସାରି ପୁରୋହିତ ବାବୁ ମୋତେ ଯାଇ ସ୍କୁଲ

ହଷ୍ଟେଲ୍‌ରେ ଛାଡ଼ି ଆସିଲେ ଓ ଆକଟ କରି କହିଲେ, ପରଦିନ ସକାଳୁ ତାଙ୍କ ଘରକୁ ଯିବାକୁ। ମୁଁ ତାର ଉତ୍ତରରେ 'ଦେଖିବା' କହି ଚୁପ୍ ରହିଲି। ରାତିରେ ଶିକ୍ଷକବନ୍ଧୁମାନଙ୍କ ସଙ୍ଗେ ଆଲୋଚନା ପ୍ରସଙ୍ଗରେ ପୁରୋହିତ ବାବୁଙ୍କ ଏ ପ୍ରସ୍ତାବ ଜଣାଇବାରୁ କେହି କେହି ଭିନ୍ନାଭିନ୍ନ ମତ ଦେଇ ତାଙ୍କର ଦାୟିତ୍ୱ ସମ୍ପନ୍ନ କଲେ। ରାତିରେ ଶୋଇଲା ବେଳେ ମୋର ଦୟନୀୟ ଅବସ୍ଥାର ଏତେ ଶୀଘ୍ର ସମାଧାନ ହୋଇ ଯିବାର କଳ୍ପନା କାହାରି ନ ଥିଲା। ମୋର ଏହି ପରିସ୍ଥିତିର ଉପଲବ୍‌ଧି କରି କରୁଣାମୟ ପରମେଶ୍ୱରଙ୍କ ଅଦୃଶ୍ୟ, ଅଯାଚିତ ସାହାଯ୍ୟ ପାଇଁ ତାଙ୍କୁ କୋଟି କୋଟି ପ୍ରଣାମ ଜଣାଇଲି। ପରଦିନ ସକାଳୁ ଉଠି ନିତ୍ୟକର୍ମ ସାରିଲା ପୂର୍ବରୁ ପୁରୋହିତ ବାବୁ ତାଙ୍କ ଭାଇ ଓ ପୁତୁରାଙ୍କୁ ପଠାଇ ମୋର ଜିନିଷପତ୍ର ସ୍ଥାନାନ୍ତରର ବ୍ୟବସ୍ଥା କରାଇ ସାରିଥିଲେ। ତେଣୁ ଅଗତ୍ୟା ମୋତେ ତାଙ୍କ ଘର 'ମାନ୍ ନା ମାନ୍ ମେ ତେରା ମେହମାନ୍' ରୀତିରେ ବାଧବାଧକତା ଭାବରେ ଆତିଥ୍ୟ ସ୍ୱୀକାର କଲି ଓ ମୁଁ ମନେ ଚୂଡ଼ାନ୍ତ କଲି ଯେ ମୁଁ ତାଙ୍କ ଘରେ ରହି ଖାଦ୍ୟପେୟ ଗ୍ରହଣ କରିବା ଦୃଷ୍ଟିରୁ ମାସକୁ ଯଥୋଚିତ ପରିମାଣ ଅର୍ଥ ଦେବାକୁ ହେବ। ତେଣୁ ସେହି ଦିନ ଠାରୁ ଉଭୟ ଓଳି ଜଳଖିଆ ଓ ଭୋଜନ କରିବାର ସୁବିଧା ପାଇଲି। ଏ ପରିସ୍ଥିତିରେ ଏକ ରକମ ସମାଧାନ ପରେ ଘରକୁ ମୋର ରହଣୀ ଓ ଖାଇବା ପିଇବା ବିଷୟରେ ଚିଠି ଲେଖି ଜଣାଇଲି।

ସରକାରୀ ଚାକିରୀରେ ଯୋଗଦାନ କରିବାକୁ ହେଲେ ପ୍ରଥମ ମାସର ଦରମା ବିଲ୍ ପାଇଁ ସଙ୍ଗରେ ଏକ ବିଶିଷ୍ଟ ଡ଼ାକ୍ତରଙ୍କର ସୁସ୍ଥ ଓ ଯୋଗ୍ୟତା ସାର୍ଟିଫିକେଟ ଦରକାର ପଡ଼ିବାରୁ ପ୍ରସଙ୍ଗ କ୍ରମେ ମୁଁ ପୁରୋହିତ ବାବୁଙ୍କ ସଙ୍ଗେ ଆଲୋଚନା କରିବାରୁ ସେ ଡ଼ା. ରଘୁନନ୍ଦନ ପାଣିଗ୍ରାହୀଙ୍କ ସଙ୍ଗେ କଥାବାର୍ତ୍ତା କରି ଭବାନୀପାଟଣା Civil Surgeonଙ୍କ ଠାରୁ ତାଙ୍କର ଦେଉଥିବା ପ୍ରମାଣପତ୍ରକୁ ସ୍ୱାକ୍ଷର କରାଇ ଦେବାକୁ ମତ ଦେଲେ। ପରଦିନ ସେ ମୋତେ ଧରି ଭବାନୀପାଟଣା ଯିବାକୁ ରାଜି ହେବାରୁ ହେ.ମା.ଙ୍କ ଅନୁମତି କ୍ରମେ ମୋର ସ୍କୁଲ ଛାଡ଼ିବା ଉଚିତ ମନେ କରି ତାଙ୍କୁ ଏ ବିଷୟରେ ଅବଗତ କରିବାରୁ ସେ ତାଙ୍କ ପକ୍ଷରୁ ପ୍ରସ୍ତାବ ଦେଲେ ଯେ ତାଙ୍କ ସ୍କୁଲର ଜୁଲାଇ ମାସର ଦରମା ବିଲ୍ ସେ ପର୍ଯ୍ୟନ୍ତ ଭବାନୀପାଟଣା ଟ୍ରେଜେରୀରୁ ଅଣା ହୋଇ ନ ଥିବାରୁ ସେ ଏ ଦାୟିତ୍ୱ ସମ୍ପାଦନରେ ମୋର ମତାମତ ଲୋଡ଼ିବାରୁ ମୁଁ ପୁରୋହିତ ବାବୁଙ୍କୁ ପଚାରି ସେଥିରେ ରାଜି ହୋଇଗଲି। କାରଣ ପୁରୋହିତ ବାବୁ ମଧ୍ୟ ତାଙ୍କ ଅଫିସ୍‌ର କେତେକ ବିଲ୍ ପାସ୍ କରାଇବା ପାଇଁ ନିଜେ ଭବାନୀପାଟଣା ଯିବାକୁ ବାହାରିଥିଲେ। ତେଣୁ ସେ ଦିନ

ସନ୍ଧ୍ୟାରେ ସ୍କୁଲର ବିଲ୍ ସବୁ, ବିଲ୍ ବହି ଓ ଅଫିସ୍‌ର ଅନ୍ୟାନ୍ୟ କାଗଜ ଧରି ପୁରୋହିତ ବାବୁଙ୍କ ଘରକୁ ଆସିଲି। ଏହା ପୂର୍ବରୁ ଏ କାର୍ଯ୍ୟଟି ସ୍କୁଲର ସଂସ୍କୃତ ପଣ୍ଡିତ ୰ ମହେଶ୍ୱର ମିଶ୍ର କରି ଆସୁଥିଲେ। କାରଣ ସେ ଭବାନୀପାଟଣାବାସୀ ଓ ତାଙ୍କ ଶାରୀରିକ ଅସୁସ୍ଥତା ପାଇଁ ସୁବିଧା ପାଇଲେ ଘରକୁ ଯାଉଥିଲେ। ତାଙ୍କ କାମଟି ମୋତେ ଦିଆ ଯିବାରୁ ତାଙ୍କ ସ୍ୱାର୍ଥରେ ବାଧା ଆସିଲା।

ପରଦିନ ସକାଳୁ ନିତ୍ୟକର୍ମ ସାରି ଜଳଖିଆ ସାରିବା ପରେ ମୁଁ, ପୁରୋହିତ ବାବୁ ଘରୁ ବାହାରିଲା ବେଳକୁ ଡ଼ା. ପାଣିଗ୍ରାହୀ ଖବର ପଠାଇଲେ ଯେ Project ଗାଡ଼ି ପ୍ରସ୍ତୁତ ଓ ଶୀଘ୍ର ଆମେ ଗଲେ ଗାଡ଼ି ଛାଡ଼ିବ। ମୁଁ, ପୁରୋହିତ ବାବୁ, ଡ଼ାକ୍ତର ପାଣିଗ୍ରାହୀ ଓ ଅନ୍ୟ ଜଣେ ଦି ଜଣ କର୍ମଚାରୀ ଅଫିସ କାମ ପାଇଁ ଭବାନୀପାଟଣା ଯିବାକୁ ବାହାରି ଆମ ସଙ୍ଗେ ଗଲେ। ଆମେ ଯଥାସମୟରେ ପହଞ୍ଚି ଟ୍ରେଜେରୀରେ ବିଲ୍ ଦାଖଲ କରିବା ବେଳେ ସେ ଅଫିସ୍‌ରେ ଆମ ସ୍କୁଲ ବନ୍ଧୁ ଦେଗାଁବାସୀ ବନମାଳୀ ପଣ୍ଡାଙ୍କୁ ଭେଟିଲୁ ଓ ଉଭୟେ ପରସ୍ପରକୁ ଦେଖି ବହୁ ଦିନର ବନ୍ଧୁତାର ନବୀକରଣ କଲୁଁ। ବିଲ୍ ଯାଞ୍ଚ ଓ ପାସ୍ କରିବା ପାଇଁ ଆମ ବରଗଡ଼ ସ୍କୁଲର ଭୂତପୂର୍ବ ସଂସ୍କୃତ ଶିକ୍ଷକ ଗଣେଶ୍ୱର ମିଶ୍ରଙ୍କ ସଳା ସେହି ଦାୟିତ୍ୱରେ ଥିବାରୁ ତାଙ୍କ ସହ ପରିଚିତ ହୋଇ ଆମ ବିଲ୍ ପାସ୍ କରାଇବାର ପଥକୁ ସୁଗମ ହେବାର ଆଶା କଲି। ହେଲେହେଁ ପୁରୋହିତ ବାବୁଙ୍କ କଥାନୁସାରେ ସେ ଟ୍ରେଜେରୀରେ ରହିବେ ଓ ବିଲ୍ କଥା ବୁଝିବେ କହି ରହିଲେ। ମୁଁ ଓ ଡ଼ା. ପାଣିଗ୍ରାହୀ Civil Surgeonଙ୍କୁ ଦେଖା କରି ଫିଟ୍‌ନେସ୍ ସାର୍ଟିଫିକେଟ୍ ପାଇଁ ଚାଲି ଗଲୁଁ। ସେତେବେଳେ ଡ଼ା. ଭାସ୍କର ଚନ୍ଦ୍ର ରଥ ଜିଲ୍ଲାର ମୁଖ୍ୟ ଚିକିତ୍ସାଧିକାରୀ ଥିଲେ। ସେ ଆମକୁ ଦେଖିଲା କ୍ଷଣି ଡ଼ା. ପାଣିଗ୍ରାହୀଙ୍କୁ ଆଗମନର କାରଣ ପଚାରିବାରୁ ମୋର ସରକାରୀ କାର୍ଯ୍ୟରେ ଯୋଗଦାନ ସକାଶେ ମୁଖ୍ୟ ଡ଼ାକ୍ତରଙ୍କ ସାର୍ଟିଫିକେଟ୍‌ର ଆବଶ୍ୟକତା ଦୃଷ୍ଟିରୁ ତାଙ୍କର ଏକ ସ୍ୱାକ୍ଷର ଆବଶ୍ୟକ। ତେଣୁ ସଙ୍ଗେ ସଙ୍ଗେ ମୋତେ ତାଙ୍କ ଅଲଗା କୋଠରୀକୁ ନେଇ କେତେକ ଗୁପ୍ତ ବିଷୟରେ ପଚରା ଉଚୁରା ପରେ 'ଠିକ୍ ଅଛି' କହି ତାଙ୍କ ସ୍ଥାନକୁ ଆସି ଡ଼ା. ପାଣିଗ୍ରାହୀ ଦେଇଥିବା ସାର୍ଟିଫିକେଟ୍‌ରେ ନିଜର ସ୍ୱାକ୍ଷର କରି ମୋହର କରାଇ ନେବା ପାଇଁ ନିର୍ଦ୍ଦେଶ ଦେଲେ। ଏହା ପରେ ମୁଁ ସାର୍ଟିଫିକେଟ୍ ପାଇଁ କିଛି ଫିଜ୍ ଦେବାକୁ ପଚାରିବାରୁ ସେ ହସ ହସ ମୁଖରେ କହିଲେ, "ଶିକ୍ଷକମାନଙ୍କ ଠାରୁ ଫିଜ୍ ନେବା ଦୋଷାବହ।" ତେଣୁ ମୁଁ ଯେତେ ଯାଚିଲେ ମଧ ନେଲେ ନାହିଁ। କାରଣ ଡ଼ା. ପାଣିଗ୍ରାହୀ ମୋତେ ଧରି ସାଙ୍ଗରେ ଯାଇଥିଲେ। ଅବଶ୍ୟ ସେତେବେଳେ ଫିଜ୍ ପରିମାଣ ସେତେ ବେଶୀ ନ ଥିଲା - ବୋଧ ହୁଏ ଟ.୧୦/୨୦ ମାତ୍ର। ହେଲେହେଁ ତାଙ୍କ ନ୍ୟାଯ୍ୟ ପ୍ରାପ୍ୟ

ଯାହା ତାହା ସେ ନ ନେଇ ଉଦାରତାର ପରିଚୟ ଦେଲେ ।

ଏହା ପରେ ଟ୍ରେଜେରୀକୁ ଯାଇ ବୁଝିଲୁଁ ଯେ ବିଲ୍‌ଗୁଡ଼ାକ ପାସ୍ ହୋଇ ଯାଇଛି ଓ ତାହା ଟ୍ରେଜେରୀର ସାହେବଙ୍କ ଦସ୍ତଖତ ହେଲେ Try. Cashier ପାଖକୁ ଯିବ ଓ ତାଙ୍କୁ ଟୋକନ୍ ଦେଇ ଟଙ୍କା ଅଣା ଯିବ । କାରଣ ସେତେବେଳେ ସବୁ ଆଡ଼େ Try.ମାନଙ୍କର ବିଲ୍ ପାସ୍ ହୋଇ ବେଙ୍କରୁ ଟଙ୍କା ମିଳିବାର ବ୍ୟବସ୍ଥା ପ୍ରଚଳନ ନ ଥିଲା । କିଛି ସମୟ ଅପେକ୍ଷା କଲା ପରେ ବିଲ୍‌ଗୁଡ଼ିକ Try. Cashier ପାଖକୁ ଆସିବାରୁ ଟୋକନ୍ ଦେଇ ବିଲ୍ ପରିମାଣ ଟଙ୍କା ଆଣିଲୁଁ ମୁଁ ଓ ପୁରୋହିତ ବାବୁ । ତାପରେ ସମସ୍ତେ ମିଶି ହୋଟେଲକୁ ଯାଇ ଖାଇଲୁଁ ଓ ବଜାରରୁ ଯେ ଯାହାର ଆବଶ୍ୟକୀୟ ଜିନିଷ କିଣାକିଣି କରି ଜୁନାଗଡ଼ ଫେରିଲା ବେଳେ ପ୍ରାୟ ସନ୍ଧ୍ୟା ଆଗତ ପ୍ରାୟ । ଆଜିକାଲି ଭଳି ସେତେବେଳେ ଜୁନାଗଡ଼ ବା ଭବାନୀପାଟଣାର ଅବସ୍ଥା ନ ଥିଲା । ହେଲେହେଁ ଭବାନୀପାଟଣା ଜିଲ୍ଲା ସଦର ମହକମା ଦୃଷ୍ଟିରୁ ଜୁନାଗଡ଼ ଅପେକ୍ଷା ଅନେକ ଜିନିଷ ସୁଲଭ ମୂଲ୍ୟରେ ମିଳୁଥିଲା । ପରଦିନ ସ୍କୁଲ ଯିବା ବେଳେ ବିଲ୍ ଟଙ୍କା ଓ ଚମଡ଼ା ବେଗ୍ ହେ.ମା.ଙ୍କୁ ପ୍ରଦାନ କରି ଦାୟିତ୍ୱମୁକ୍ତ ହେଲି - ଅବଶ୍ୟ ଏକ ନୂଆଁ ଅଭିଜ୍ଞତା Try. ଓ Civil Surgeonଙ୍କ ସାକ୍ଷାତ ବିଷୟରେ ମନେ ରହିଲା । ପରେ ପରେ ପ୍ରାୟ ସ୍କୁଲର ନାନା ଦାୟିତ୍ୱ ହେ.ମା. ମୋତେ ଦେବାକୁ ଲାଗିଲେ ଓ ଠିକ୍ ଭାବେ ସେ ସବୁ ସମ୍ପାଦନ କରିବାରୁ ତାଙ୍କର ବିଶ୍ୱାସଭାଜନ ହୋଇ ପାରିଥିଲି ।

**ବୋଧରାମ ସାହୁର ଅଧ୍ୟୟନ :-**

ମୁଁ ଜୁନାଗଡ଼ରୁ ଘରକୁ ଆସି ଥିବା ବେଳେ ଗାଁରେ ଶ୍ରୀ କ୍ଷୀରେଶ୍ୱର ସାହୁଙ୍କ ବଡ଼ ପୁଅ ବୋଧରାମ ଓରଫ ସମାରୁ ଏକାଦଶ ଶ୍ରେଣୀରେ ପଢୁଥାଏ । କିନ୍ତୁ ତା'ର ଘରୋଇ ଅବସ୍ଥା ସ୍ୱଚ୍ଛଳ ନ ଥିବାରୁ ପଢ଼ାପଢ଼ିର ବ୍ୟାଘାତ ଘଟୁଥିଲା । ମୁଁ କଥା ପ୍ରସଙ୍ଗରେ ତାଙ୍କୁ ମୋ ସଙ୍ଗେ ଜୁନାଗଡ଼ ଯିବାକୁ ପ୍ରସ୍ତାବ ଦେବାରୁ ଓ ଆବଶ୍ୟକ ହେଲେ ସେଠାରେ କିଛି ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ଦେବାରୁ ତାର ବାପା ମା ରାଜି ହୋଇ ମୋ ସଙ୍ଗେ ତାକୁ ପଠାଇଲେ । ସେ ମଧ ହଷ୍ଟେଲ୍‌ରେ ରହି ପଢ଼ିବାକୁ ଲାଗିଲା ଓ ଅଭାବ ଅସୁବିଧାର କିଛି କିଛି ସାହାଯ୍ୟ କରୁଥିଲି । ଶେଷରେ ସେ ସ୍କୁଲରୁ ମେଟ୍ରିକ ପରୀକ୍ଷା ଦେଇ ଅକୃତକାର୍ଯ୍ୟ ହେଲା ।

ସମୟ ଗଡ଼ି ଚାଲିଲା । ଅଗଷ୍ଟ ଯାଇ ସେପ୍ଟେମ୍ବର ଆସିଲା । ବିଭିନ୍ନ ପର୍ବପର୍ବାଣୀ ପାଇଁ ବିଦ୍ୟାଳୟ ଛୁଟି ହେଲା । ଘରୁ ଚିଠି ଆସିଲା ଯେ ଗଣେଷ ଚତୁର୍ଥୀ

ପରଦିନ ନୂଆଖାଇ। ଏଣୁ ସୁବିଧା ହେଲେ ତହିଁରେ ଯୋଗ ଦେବାକୁ। ମୁଁ ପ୍ରଥମ କରି ସରକାରୀ ହାରରେ ଦରମା ପାଇଲି ଓ ଖୁସି ହେଲି। ଗଣେଷ ପୂଜା ନିକଟ ହୋଇ ଆସିବାରୁ ଛାତ୍ର ଶିକ୍ଷକମାନଙ୍କ ଏକ ମିଳିତ ସଭା ହୋଇ ସେଠାରେ କିଏ କେତେ ଚାନ୍ଦା ଦେବ ତାର ବିଚାର କରାଗଲା। ସେଠାକାର ପ୍ରଚଳିତ ନିୟମାନୁସାରେ ସ୍କୁଲର ଶ୍ରେଣୀ ହିସାବରେ ଚାନ୍ଦା ସ୍ଥିର କରାଯାଏ ଓ ଶ୍ରେଣୀର ପ୍ରତିନିଧିମାନେ ତାଙ୍କ ଛାତ୍ରମାନଙ୍କ ମଧ୍ୟରେ ଆଲୋଚନା କରି ଶ୍ରେଣୀ ତରଫରୁ ପରିମାଣ ଘୋଷଣା କରାଯାଏ। ଯାହା ପରିମାଣ ଧାର୍ଯ୍ୟ ହୁଏ ତାକୁ ଶ୍ରେଣୀ ପିଲାମାନେ ଭାଗ ବାଣ୍ଟି ଦିଅନ୍ତି। ପ୍ରଥମେ ଚତୁର୍ଥ ଶ୍ରେଣୀରୁ ଆରମ୍ଭ କରାଯାଇ ଶେଷରେ ଏକାଦଶ ଶ୍ରେଣୀର ପାଳି ଆସେ। ପ୍ରକାଶ ଥାଉ କି ଉଚ୍ଚତର ପିଲାମାନେ ତଳ ଶ୍ରେଣୀର ଅପେକ୍ଷାକୃତ ବେଶୀ ଚାନ୍ଦା ଦେଇଥାନ୍ତି। ଶେଷରେ ମୋଟ ଚାନ୍ଦାର ପରିମାଣ ଅଟକଳ କରାଯାଇ ପୂଜା ପାଇଁ ଛାତ୍ର ପ୍ରତିନିଧି ଶ୍ରେଣୀମାନଙ୍କରୁ ବଛା ଯାଆନ୍ତି। ଜଣେ ଉଚ୍ଚ ଶ୍ରେଣୀରୁ ସମ୍ପାଦକ ଓ ଆଉ ଜଣେ ସଭାପତି ବା ଦି ଜଣ ଶିକ୍ଷକଙ୍କ ଉପଦେଶ ନେଇ କାମ କରନ୍ତି। ମୁଖ୍ୟତଃ ସଂସ୍କୃତ ଶିକ୍ଷକ ପୂଜାର ବିଶେଷ ଉପଦେଷ୍ଟା ରହି କାର୍ଯ୍ୟ କରନ୍ତି। ସେପରି ଭାବେ ପ୍ରାରମ୍ଭିକ ସଭାରେ ସବୁ ସ୍ଥିର ହୋଇ ଏକ ନିର୍ଦ୍ଧାରିତ ଦିବସରେ ଅବଶ୍ୟ ପୂଜାର ୪/୫ ଦିନ ପୂର୍ବରୁ ସବୁ ଚାନ୍ଦା ସଂଗ୍ରହ କରାଯାଇ ତାର ବିନିଯୋଗ କରାଯାଏ କମିଟି ଜରିଆରେ। ପୂଜାରେ ମୁଖ୍ୟତଃ ପୂଜା ସାଜସଜ୍ଜା ଓ ପ୍ରସାଦର ଖର୍ଚ୍ଚ ଗୁରୁତ୍ୱ ଭୂମିକା ନେଇଥାଏ। ଆଜିକାଲି ଭଳି ସେତେବେଳେ ବିଦ୍ୟୁତ ଓ ଡାକବାଜି ଯନ୍ତ୍ର ଓ ଭିଡିଓ ଆଦି ନ ଥିବାରୁ ପୂଜା ଓ ସାଜସଜ୍ଜା ସାମାନ୍ୟ ଭାବରେ କରି ବାକି ସବୁ ପ୍ରସାଦ ପାଇଁ ବ୍ୟୟ ହେଉଥିଲା। ଗଣେଷ ପୂଜା ଦିନ ଆସିଲା ଓ ପୂଜା ଓ ପ୍ରସାଦ ସେବନ ପରେ ମୁଁ ହେ.ମା.ଙ୍କ ଠାରୁ ଅନୁମତି ନେଇ ନୂଆଁଖାଇ ପାଇଁ ଛୁଟି ନେଇ ଘରକୁ ବାହାରିଲି। ସମସ୍ତେ ମୋର ଅପେକ୍ଷାରେ ଥିଲେ। ମୋତେ ଦେଖି ସମସ୍ତେ ଆନନ୍ଦ ଓ ଆଶ୍ୱସ୍ତ ହେଲେ। ଯଥା ବିଧିରେ ପୂଜା ଆଦି ସମାପନ ପରେ ନବାନ୍ନ ଭକ୍ଷଣ ଓ ତାପରେ ପ୍ରଚଳିତ ନିୟମାନୁସାରେ କନିଷ୍ଠମାନେ ଜ୍ୟେଷ୍ଠମାନଙ୍କୁ ପ୍ରଣାମ କରି ଆଶୀର୍ବାଦ ନେବେ। ପୁଣି ତଳ ଜାତିର ଲୋକେ ଉଚ୍ଚ ଶ୍ରେଣୀର ଲୋକଙ୍କୁ ଓ ବୟସ୍କଙ୍କୁ ଭେଟି ଆଶୀର୍ବାଦ ନେବାର ଚିରାଚରିତ ପ୍ରଥା କେଉଁ ଆବହମାନ କାଳରୁ ଚାଲି ଆସିଛି। ଆନନ୍ଦ ଉଲ୍ଲାସରେ ସେ ଦିନଟି କଟିଯାଏ। ଉପର ଓଳି ଗାଁର ଯୁବକମାନେ ଖେଳ କସରତ ଓ ରାତିରେ କୀର୍ତ୍ତନ, ନାଟ, ତମାସାରେ ବ୍ୟାପୃତ ରହିନ୍ତି। ଅନେକ ବର୍ଷ ଉପର ଓଳି ମିଳିତ ଭାବେ ଗାଁରେ ବିଶେଷ ଆମୋଦ ପାଇଁ ଛେଳି ବା ମେଣ୍ଢା ମାରି ମାଂସ ଖାଇବାର ଉପକ୍ରମ କରା ଯାଇଥାଏ। ଅର୍ଥାତ୍ ଦିନଯାକ କେବଳ ଖାଇବା ପାଇଁ

ବିଶେଷ ଆୟୋଜନ ଚ୍ଲିଥାଏ । ସକାଳେ ବିଭିନ୍ନ ପ୍ରକାର ପିଠାଖିରୀ ଓ ରାତିରେ ଭାତମାଂସର ଆୟୋଜନ ମୁଖ୍ୟ ସ୍ଥାନ ଗ୍ରହଣ କରେ । ଏ ଉତ୍ସବକୁ ପଶ୍ଚିମ ଓଡ଼ିଶାର ପ୍ରତି ଗାଁରେ କି ଧନୀ ଓ ନିର୍ଦ୍ଧନ ସମସ୍ତେ ମହାସମାରୋହରେ ଖାଦ୍ୟ ଓ ନୂତନ ବସ୍ତ୍ର କିଣି ପାଳନ କରିଥାନ୍ତି । ଦରିଦ୍ରମାନେ ତାଙ୍କ ଅଭାବ ହେଲେ ଧନୀଲୋକଙ୍କ ଠାରୁ ଧାର ଆଣି ପରବର୍ତ୍ତୀ ସମୟରେ ସୁଧ ସହ ପରିଶୋଧ କରନ୍ତି । ପ୍ରକୃତରେ ଦେଖିବାକୁ ଗଲେ ଏହା ଏକ ମୁଖ୍ୟ ପର୍ବ ରୂପେ ପ୍ରଚଳିତ ହୋଇ ଆସୁଅଛି । ଉକ୍ତ ପର୍ବରେ ବିଭିନ୍ନ ପରିବାର ଓ ବନ୍ଧୁଙ୍କ ମଧରେ ପିଠାପଣାର୍ ଆଦାନ ପ୍ରଦାନ ହୁଏ । ଏଥର ମଧ ଦିନଟି ଆନନ୍ଦରେ କଟି ଗଲା । ପରଦିନଟି ଛୁଟି ଥିବାରୁ ଓ ୨ ଦିନ ଛୁଟି ଆଣି ଥିବାରୁ ପ୍ରାୟ ୩ ଦିନ ରହଣୀ ପରେ ପୁଣି ଜୁନାଗଡ଼ ଫେରି କାର୍ଯ୍ୟରେ ଯୋଗ ଦେଲି । ମୋର ଜୁନାଗଡ଼ରେ ଖାଇବା ଓ ରହିବାର ଅସୁବିଧା ହେଉ ନ ଥିବା ଜାଣି ସମସ୍ତେ ଆଶ୍ୱସ୍ତ ହେଲେ ।

ଧୀରେ ଧୀରେ ପ୍ରାୟ ଅନେକଙ୍କ ସଙ୍ଗରେ ଚିହ୍ନା ପରିଚୟ ହୋଇଗଲା । ହେଲେହେଁ ବରଗଡ଼ରୁ ଯାଇ ଜୁନାଗଡ଼ରେ ରହିବା ସେତେ ଆନନ୍ଦଦାୟକ ନ ଥିଲା । କେବଳ ସରକାରୀ ଚ୍କିରୀ ଲୋଭରେ ଓ ପୁରୋହିତ ବାବୁଙ୍କ ସ୍ନେହ ସୌହାଦ୍ର୍ୟପୂର୍ଣ୍ଣ ଆତିଥ୍ୟ ମୋତେ ବାନ୍ଧି ରଖିଥିଲା । ନୂତନ ବନ୍ଧୁ ଭାବେ ସେଠାକାର ନିରଞ୍ଜନ ଘୋଷ ବାବୁ ଆମ ଗହଣରେ ଆସିଲେ ଓ ସେଠାକାର ପରିସ୍ଥିତି ସଙ୍ଗେ ମିଶି ଚଳିବାକୁ ହେଲା । ଜୁନାଗଡ଼ଟି ଛୋଟିଆ ସହର ତ ନୁହେଁ ଗୋଟେ ବଡ଼ ଗାଁ ହୋଇଥିବାରୁ ସେଠାରେ ସପ୍ତାହରେ ଥରେ ରବିବାର ଦିନ ହାଟ ବସୁଥିଲା । ସେହି ଦିନରେ ବଜାରରୁ ଯାହା କିଣିଥିବେ ସେଥିରେ ସପ୍ତାହଯାକ ଚଳିବାକୁ ପଡୁଥିଲା ।

ଇତି ମଧରେ ସ୍ଥିର ହେଲା ଯେ ମୋର ପରିବାର ଜୁନାଗଡ଼ ଯିବେ । ତେଣୁ ଗୋଟିଏ ଭଡ଼ାଘର ଯୋଗାଡ଼ରେ ରହିଲୁଁ । ସ୍କୁଲ ପାଖରେ ଜଣେ ମାରୱାଡ଼ି ଭଦ୍ର ଲୋକ ୩/୪ଟି ନୂତନ ଘର ତିଆରି କରିଥିଲେ - ଭଡ଼ା ଦେବା ଉଦ୍ଦେଶ୍ୟରେ । ଘର କହିଲେ ଇଟା ଓ ଖପରାର ୨/୩ଟି କୋଠରୀ ଉଭୟ ପାଖରେ ପିଣ୍ଡା ଓ ପଛ ପାଖ ପିଣ୍ଡାରେ ଏକ ଅଂଶ ରନ୍ଧାଘର ରୂପେ ବ୍ୟବହାର୍ଯ୍ୟ ପାଇଁ ଉଦ୍ଦିଷ୍ଟ । ହତା ମଧରେ କୂଅଁ ଓ ଅସ୍ଥାୟୀ ବରପାଲି ପାଇଖାନାର ବ୍ୟବସ୍ଥା - ଭଡ଼ା ମାସକୁ ଟ.୨୫ । ସେ ଘର ତିଆରି ସରିବା ଆଗରୁ ଲୋକେ ଉତ୍କଣ୍ଠାର ସହ ଘର ପାଇଁ ଅଗ୍ରିମ ଭଡ଼ା ଦେଇ ସଂରକ୍ଷଣ କରିଥିଲେ । ମୁଁ ଘରମାଲିକଙ୍କୁ କହିବାରୁ ସେ ରାଜି ହେଲେ । କାରଣ ତାଙ୍କ ପିଲାମାନେ ପଢ଼ିବା ଆଳରେ ଆଉ କିଛି ପିଲା ଆସି ମିଶିଲେ ଓ ନିୟମିତ ଟିଉସନ ପଢ଼ା ଚ୍ଲିଲା ।

ଅକ୍ଟୋବର ମାସରେ ଦଶହରା ଛୁଟି । ମୋର ଜୁନାଗଡ଼ ଆସି ପୁରୋହିତ ବାବୁଙ୍କ ଘରେ ରହିବାର ପ୍ରାୟ ୨ ମାସରୁ ଅଧିକ । ମୁଁ ମାସକୁ ଟ.୩୦ ଦରରେ ତାଙ୍କୁ ୨ ମାସରେ ଖର୍ଚ୍ଚ ବାବଦକୁ ଟ.୬୦ ଦେଇଥିଲି । ତାହା ନେବାକୁ ସେମାନେ ଅନିଚ୍ଛା ପ୍ରକାଶ କଲେ । ବାଧ ହୋଇ ସେମାନେ ଶେଷରେ ରଖିଲେ, କାରଣ ମୁଁ ଘର ଛାଡ଼ି ଚାଲି ଯିବାର ପ୍ରସ୍ତାବ ଦେଲି । ଦଶହରା ଛୁଟି ପାଇଁ ଘରକୁ ଯିବା ପୂର୍ବରୁ ସହକାରୀ ପ୍ରୋଜେକ୍ଟ ଅଫିସରଙ୍କୁ ଦେଖା କଲି । ମୋର ପରିବାର ଆଣିବାର ପ୍ରସ୍ତାବ ଦେବାରୁ ସେ ଭାରୀ ଖୁସି ହେଲେ । କେସିଙ୍ଗାରୁ ମୋର ପିଲାମାନଙ୍କୁ ଆଣିବା ପାଇଁ ତାଙ୍କ ଅଫିସ ଗାଡ଼ି ପଠାଇବାର ପ୍ରତିଶୃତି ଦେଲେ । ତେଣୁ ମୁଁ ନିଶ୍ଚିନ୍ତ ହୋଇ ପୁରୋହିତ ବାବୁଙ୍କୁ ଏ ପ୍ରସ୍ତାବରେ କାର୍ଯ୍ୟକାରିତା ପାଇଁ ଓ A.P.O.ଙ୍କୁ ମନେ କରିବା ପାଇଁ ଅନୁରୋଧ କରି ଘରକୁ ଗଲି । ଘରକୁ ଯାଇ ଛୁଟିରେ କିଛି ଦିନ ବୁଲାବୁଲି ଓ ବନ୍ଧୁବାନ୍ଧବଙ୍କ ସଙ୍ଗେ ଦେଖା ସାକ୍ଷାତରେ ବ୍ୟୟିତ ହେଲା । ଛୁଟିର ଶେଷ ଭାଗରେ ଜୁନାଗଡ଼ ପରିବାର ସହ ଯିବାର ଆୟୋଜନ କରାଗଲା । ମୋ' ସଙ୍ଗେ ମୋ ସ୍ତ୍ରୀ, ପିଲା ଛୁଆ ୪ ଜଣ ଓ ବଡ଼ ପିଉସୀ ଯିବାର ସ୍ଥିର ହେଲା । ତେଣୁ ଛୁଟିର ଶେଷ ୨ ଦିନ ଆଗରୁ ବରଗଡ଼ରୁ ବାହାରି ଟିଟିଲାଗଡ଼ରୁ କେସିଙ୍ଗା ପହଞ୍ଚିବା ଦିନ ଓ ସମୟ, ଆଗରୁ ଉପେନ୍ଦ୍ର ବାବୁଙ୍କୁ ଜଣାଇ ଦେଇଥିଲି । ସେ ମହାଶୟ ମଧ୍ୟ ଉକ୍ତ ଦିନ କେସିଙ୍ଗାରେ ଗାଡ଼ି ସହ ଉପସ୍ଥିତ ରହିବାର ସ୍ଥିର ହୋଇଥିଲା । ଯଥା ସମୟରେ କେସିଙ୍ଗାରେ ପହଞ୍ଚିଲା ବେଳକୁ ପୁରୋହିତ ବାବୁଙ୍କ ସଙ୍ଗେ ଦେଖା ହେଲା । ସେ କହିଲେ ଯେ ଅସୁବିଧା ବଶତଃ ଜିପ୍ ଆସି ପାରିଲା ନାହିଁ । ଜିନିଷପତ୍ର ନେବା ପାଇଁ ସେ ଏକ ଟ୍ରକ୍ ଧରି ଆସିଛନ୍ତି । ଏଣୁ ତାଙ୍କ କଥାନୁସାରେ ସବୁ ଜିନିଷପତ୍ର ଟ୍ରକ୍‌ରେ ଗଲା ଓ ଆମ୍ଭେମାନେ ସମସ୍ତେ ବସ୍‌ରେ ଗଲୁଁ । ଭବାନୀପାଟଣାରେ ପଣ୍ଡିତଙ୍କ ଘରେ କିଛି ସମୟ କଟାଇ ପରବର୍ତ୍ତୀ ବସ୍‌ରେ ଜୁନାଗଡ଼ ଯାଇ ପହଞ୍ଚିଲା ବେଳକୁ ପ୍ରାୟ ସନ୍ଧ୍ୟା । ଜିନିଷପତ୍ର ନେଇ ଆମର ଇପ୍ସିତ ଭଡ଼ାଘରେ ରଖା ଯାଇଥିଲା । ଆମେ ବାଟରେ ପ୍ରୋଜେକ୍ଟ କଲୋନୀରେ ଓହ୍ଲାଇ ପୁରୋହିତ ବାବୁଙ୍କ ଘରେ ଚଞ୍ଚଳ ଭୋଜନ ସାରିଲୁ । ଏଥି ପାଇଁ ପୁରୋହିତ ବାବୁଙ୍କ ପତ୍ନୀ ସଜାଗ ଥିଲେ । ଆମେ ଭୋଜନ ସାରି ଆମ ଭଡ଼ା ବାସଗୃହକୁ ଯାଇ ବିଶ୍ରାମ ନେଲୁଁ । ପରଦିନ ସକାଳେ ଜିନିଷପତ୍ର ସଜାଡ଼ି ରାନ୍ଧିବା ଆୟୋଜନ କରାଗଲା । ଆଗରୁ କାଠପତ୍ର କିଣାଯାଇ ରଖା ଯାଇଥିଲା । ତା ପରଦିନ ସ୍କୁଲ ଖୋଲୁ ଥିବାରୁ ସେ ଦିନଟି ଜିନିଷପତ୍ର ସଜଡ଼ା ସଜଡ଼ିରେ ବ୍ୟସ୍ତ ରହିଲୁଁ । ଜୁନାଗଡ଼ରେ ଧୀରେ ଧୀରେ ଆମ ଆସ୍ଥାନ ଜମିବାକୁ ଲାଗିଲା । ସ୍କୁଲ ଖୋଲିବା ପରେ ୧୯୫୫ ଡିସେମ୍ବର ମାସରେ ଟେଷ୍ଟ ପରୀକ୍ଷା

ପାଖେଇ ଆସିବାରୁ କେତେ ଜଣ ଛାତ୍ର ଆସି ଘରୋଇ ଶିକ୍ଷାଦାନ ପାଇଁ ଅନୁରୋଧ କଲେ । ତେଣୁ ଆଗରୁ ପଢୁଥିବା ପିଲାମାନେ ଓ ନୂଆଁ କେତେ ଜଣ ମିଶି ପ୍ରାୟ ୬/୮ ଜଣଙ୍କୁ ପଢ଼ାଇବାକୁ ଲାଗିଲି । ଯାହା ମନେ ହୁଏ ସେତେବେଳେ ପଢୁଥିବା ଛାତ୍ରମାନେ ଏବେ କେତେକ ରାଜ୍ୟ ସରକାରଙ୍କ ଚାକିରୀରେ ପ୍ରତିଷ୍ଠିତ ହୋଇ ଅବସର ନେଲେଣି ବା ଆଉ କେତେ ଜଣ ଅବସର ନେବା ଉପରେ । ସେମାନଙ୍କ ମଧ୍ୟରେ ପୁରୋହିତ ବାବୁଙ୍କ ଭାଇ ଜିଲ୍ଲା ସର୍ବେକ୍ଷଣ ଅଫିସର ରୂପେ ଅବସର ନେଲେଣି । ଅନ୍ୟ ଜଣେ ଛାତ୍ର ତ୍ରୈଲୋକ୍ୟନାଥ ପଣ୍ଡା ବୁର୍ଲା ମେଡ଼ିକାଲ କଲେଜର ଶିଶୁ ଚିକିତ୍ସା ବିଭାଗରେ ମୁଖ୍ୟ ଭାବେ ଅଳ୍ପ ଦିନ ପୂର୍ବରୁ ଅବସର ନେଲେ । କାଳର ଗତି ଅନୁସାରେ ସବୁ ପରିଚାଳିତ । ପ୍ରକୃତରେ ସମୟ କେଡ଼େ ବଳୀୟାନ ।

ବନ୍ଧୁତା ବଢ଼ିବା ମଧ୍ୟରେ ଫରେଷ୍ଟ ରେଞ୍ଜର ଘୋଷ ବାବୁ, ପଶୁ ଡ଼ାକ୍ତର ପଣ୍ଡା ଓ ପଟ୍ଟନାୟକ ବାବୁ ଆଦି ଅନ୍ୟମାନେ ଛୁଟି ଦିନମାନଙ୍କରେ ଉପର ଓଳି ଆସି ଆମ ଘରେ ମିଶିଲେ ତାସ ଖେଳର ଆରମ୍ଭ ହୁଏ । ଖେଳ ମଝିରେ ଘରୁ ଜଳଖିଆ ଆସେ । ଜଳଖିଆ ମୁଖ୍ୟତଃ ମୁଢ଼ିକୁ ଗରମ କରି ତେଲ ପିଆଜରେ ଭଜା ହୋଇଥାଏ । ନଚେତ୍ ଗରମ ମୁଢ଼ିକୁ ବଟା ଲୁଣ ଲଙ୍କା ରସୁଣ ଦେଇ ସୋରିଷ ତେଲରେ ସଜଡ଼ା ହୋଇ ଆସେ । ଏ ସବୁରେ ଖେଳୁଆଳିମାନେ ତୃପ୍ତି ଲାଭ କରନ୍ତି । ବେଳେ ବେଳେ ଏହା ସଙ୍ଗେ ଭଜା ବାଦାମ ବା କଞ୍ଚା ମୂଳାର ଉପଯୋଗରେ ବାତାବରଣ ସରଗରମ ହୋଇ ଉଠେ । ଏବେ ସେ ବନ୍ଧୁମାନଙ୍କ ସଙ୍ଗେ ଭେଟ ହେଲେ ସେ ମୁଢ଼ିଖିଆ ଆଲୋଚନାରେ ହାସ୍ୟରୋଳ ସୃଷ୍ଟି ହୁଏ । ଏପରି ବନ୍ଧୁମାନେ, ଅଫିସରମାନେ ଆମ ଘରକୁ ଆସି ଖାଇ କରି ଆନନ୍ଦ ପାଇବାର ଆମ ନିଜ ଗାଁ ଘରୁ ଚଳି ଆସିଛି ।

ଟେଷ୍ଟ ପରୀକ୍ଷା ପରେ ମେଟ୍ରିକୁଲେସନ୍ ପରୀକ୍ଷା ପାଇଁ ଫର୍ମ ପୂରଣ ଓ ଫିଜ୍ ଆଦି ଦାଖଲ କାମ ଚାଲିଲା । ମେଟ୍ରିକ୍ ପରୀକ୍ଷାର୍ଥୀଙ୍କ ସୁବିଧା ପାଇଁ ଅଧିକା ଶ୍ରେଣୀ ନେଇ ପାଠଦାନର ବ୍ୟବସ୍ଥା କରାଗଲା । ସେଥିରେ ମୋର ଭୂମିକା ମୁଖ୍ୟ ଥିଲା । ସରସ୍ୱତୀ ପୂଜା ମହାସମାରୋହରେ ସମ୍ପନ୍ନ ହେଲା । କୁନାଗଡ଼ ରହଣୀ ଭିତରେ ଦୁଇଟି ବିଶିଷ୍ଟ ଘଟଣା ଉଲ୍ଲେଖନୀୟ । ଏକଦା ହଠାତ୍ ମୋର ବର୍ଷକିଆ ସାନ ଝିଅକୁ ରାତିରେ ଜ୍ୱର ହୋଇ (feats) ମାର୍କ ମାରିଲା । ଆମେ ସେଥିରେ ଅଧୀର ହୋଇ ଆମ ପାଖେ ରହୁଥିବା ଜନୈକ ଶିକ୍ଷକଙ୍କୁ ଜଣାଇବାରୁ ସେ କବାଟ ଖୋଲୁ ନାହିଁ କହି କଥାଟାକୁ ଟାଳି ଦେଲେ । ଶେଷରେ ମୁଁ ଏକାକୀ ଲଣ୍ଠନଟିଏ ଧରି ଦୌଡ଼ି ଦୌଡ଼ି ପ୍ରୋଜେକ୍ଟ କଲୋନୀର ଡ଼ାକ୍ତର ପାଣିଗ୍ରାହୀଙ୍କୁ ଉଠାଇବାରୁ

ସେ ସଙ୍ଗେ ସଙ୍ଗେ ଗାଡ଼ିରେ ମୋ ସଙ୍ଗେ ଘରକୁ ଆସି ସମୟୋପଯୋଗୀ ଚିକିତ୍ସା ଦ୍ୱାରା ଝିଅକୁ ଆରୋଗ୍ୟ କରିଥିଲେ । ଏପରି ଦୁଃଖଦ ବେଳାରେ ପଡ଼ୋଶୀ ଶିକ୍ଷକ ଓ କେତେ ଦୂରରେ ଥିବା ଡ଼ାକ୍ତରଙ୍କ ସମୟୋପଯୋଗୀ ସାହାଯ୍ୟକୁ ତୁଳନା କଲେ ମଣିଷ ମଣିଷ ମଧ୍ୟରେ କେତେ ଯେ ଫାଙ୍କ ତାହା ସହଜରେ ଅନୁମେୟ । ପରଦିନ ସକାଳେ ପୁରୋହିତ ବାବୁ ଓ ଅନ୍ୟ ବନ୍ଧୁମାନେ ଆସି ସହାନୁଭୂତିପୂର୍ଣ୍ଣ ସାନ୍ତ୍ୱନା ଦେଇଗଲେ ।

ମୋର ଜୁନାଗଡ଼ରେ ଯୋଗଦାନ ପରେ ମୋର ଭିଣୋଇ କାର୍ତ୍ତିକ ବାବୁ ଅବସ୍ଥାଚକ୍ରରେ ଜୁନାଗଡ଼ରେ ଟ୍ରାଫିକ୍ ଅଫିସର ରୂପେ ଯୋଗ ଦେଇ ଆମ ପଡ଼ୋଶୀ ହେଲେ । ସଙ୍ଗରେ ମୋର ଅନ୍ୟ ପିଉସୀ ତାଙ୍କ ପୂର୍ବର ଶାଶୁ ସୂର୍ଯ୍ୟ ଝିଅ ସଙ୍ଗରେ ଯାଇ କିଛି ଦିନ ରହି ଫେରିଲେ । ସେଠାରେ ଥିବା ବେଳେ ପ୍ରୋଜେକ୍ଟ କଲୋନୀରେ ଏକ ନାଟକ ମଞ୍ଚସ୍ଥ କରାଗଲା । ସେଥିରେ ମୋତେ ମଧ୍ୟ ଅଭିନୟ ପାଇଁ ଏକ ଚରିତ୍ର ଦିଆଗଲା । ତାକୁ ନିଖୁଣ ଭାବେ ଅଭିନୟ କରି ସମସ୍ତଙ୍କ ପ୍ରଶଂସାର ପାତ୍ର ହୋଇଥିଲି ।

୧୯୫୬ ଫେବୃୟାରୀ ମାସରେ ମେଟ୍ରିକୁଲେସନ ପରୀକ୍ଷା ପରେ ପରୀକ୍ଷାର ଗଣିତ ଖାତା ସଂଶୋଧନ ପାଇଁ ନିଯୁକ୍ତି ଚିଠି ଆସିଲା । ମୁଁ ତ ଆଗରୁ ଏକାଧିକ ବାର ବୋର୍ଡ଼ରେ ପରୀକ୍ଷକ ଭାବେ ଯୋଗ ଦେଇ ସାରିଥିଲି । ସେ ଥର ଭବାନୀପାଟଣାର ଗଣିତ ଶିକ୍ଷକ ଶ୍ରୀ ସତ୍ୟପ୍ରସାଦ ମୁଣ୍ଡ ମଧ୍ୟ ଗଣିତର ପରୀକ୍ଷକ ଭାବେ ନିଯୁକ୍ତି ପାଇଥିଲେ । ସେ ମହାଶୟ ମୋର ନିଯୁକ୍ତି ଜାଣି ଏକା ସଙ୍ଗେ କଟକ ଯିବା ପାଇଁ ଖବର ପଠାଇଲେ କାରଣ ପରୀକ୍ଷକ ଭାବେ ଏହା ତାଙ୍କ ପ୍ରଥମ ନିଯୁକ୍ତି ଓ କଟକ ଯିବା ଆସିବା ବହୁ ଦିନରୁ ବନ୍ଦ କରିଥିବାରୁ ମୋର ସଙ୍ଗ ଲୋଡ଼ିଲେ । ତେଣୁ କଟକ ଯିବାର ଦିନ ସନ୍ଧ୍ୟାରେ ଜୁନାଗଡ଼ରୁ ଯାଉଥିବା ବସ୍‌କୁ ମୋର ଆଗମନକୁ ପ୍ରତୀକ୍ଷା କରିଥିଲେ । ସେଠାରୁ ତାଙ୍କ ଘରକୁ ଯାଇ ତାଙ୍କ ଘରେ ଖିଆପିଆ କରି କେସିଙ୍ଗା ଯାଇ ଟ୍ରେନ୍ ଧରି କଟକ ମୁଖେ ବାହାରିଲୁ । ଆଜିକାଲି ଭଳି ଗୋଟିଏ ରେଳଗାଡ଼ିରେ ଓଡ଼ିଶାର ଉତ୍ତରରୁ ପୂର୍ବକୁ ଯିବା ଭଳି ସୁବିଧା ନ ଥିଲା । ତେଣୁ ଭିଜୟନଗରମ୍‌ରେ ଗାଡ଼ି ପରିବର୍ତ୍ତନ କରି କଟକ ଗାଡ଼ି ଧରିଲୁଁ । ସକାଳେ ବାଟରେ ପଲସାଠାରେ ଭୋଜନ ସମୟ ହେବାରୁ ସେଠାରେ ଯାତ୍ରୀମାନେ ଭୋଜନ କଲେ । ପଲସାଠାରେ ଭୋଜନ କରିବା ଏକ ସ୍ମରଣୀୟ ଅନୁଭୂତି । ଗାଡ଼ିରେ ଥିବା ଯାତ୍ରୀମାନଙ୍କୁ ନିଜର ଉଚିତ ଦାମ୍ ନେଇ ଖାଇବାକୁ ଦିଅନ୍ତି । ସେଠାରେ ଖାଦ୍ୟ ପଦାର୍ଥ ବଢ଼ା ହୋଇ ସଜଡ଼ା ହୋଇଥାଏ । ଯାତ୍ରୀମାନେ

ଦୌଡ଼ି ଯାଇ ଗୋଟିଏ ଯାଗା ଅଧିକାର କରି ବା ପୂର୍ବରୁ ଭୋଜନର ମୂଲ୍ୟ ଦେଇ ଠିକ ସମୟରେ ଭୋଜନ ସାରି ଟ୍ରେନ୍‌କୁ ଫେରି ଆସନ୍ତି। କାହାରି ଆଉ କ'ଣ ଦରକାର ପଗ୍ଡରିବାକୁ ହୋଟେଲ ବାଲାଙ୍କୁ ଅଧିକା ଖାଦ୍ୟ ମାଗିବାକୁ ଯାତ୍ରୀମାନଙ୍କ ଯୋଜନା ବା ସମୟ ନ ଥାଏ। ଅବଶ୍ୟ ଯାହା ବଢ଼ା ହୋଇଥାଏ ତାକୁ ଖାଇଲେ ଉଦର ପରିପୂର୍ଣ୍ଣ ହେଲା ପରି ଜଣାଯାଏ। ଖାଇ ସାରି ପୁଣି ଟ୍ରେନ୍ ପାଇଁ ସମୟ ହୋଇଥାଏ। ଅବଶ୍ୟ କେହି କେହି ବରାଦ କଲେ, କିଛି ଅଧିକ ମୂଲ୍ୟ ଦେଲେ ରେଳଗାଡ଼ିରେ ଖାଦ୍ୟ ଯୋଗାଇ ଦିଆଯାଏ। ଗାଡ଼ି ଯାଇ କଟକରେ ପହଞ୍ଚିଲା ବେଳକୁ ସନ୍ଧ୍ୟା ଆଗତ ପ୍ରାୟ। ଗାଡ଼ିରୁ ଓହ୍ଲାଇ ଆମେ ଯାଇ ଏକ ହୋଟେଲରେ ଆଶ୍ରୟ ନେଇ ରାତ୍ର ଭୋଜନ କରି ବିଶ୍ରାମ ନେଲୁଁ। ପରଦିନ ସକାଳୁ ନିତ୍ୟକର୍ମ ସାରି ଜଳଖିଆ କଲୁ। ବୋର୍ଡ ଅଫିସ୍‌କୁ ଯାଇ ପରୀକ୍ଷକ ସଭାରେ ଯୋଗ ଦେଇ ପରୀକ୍ଷାରେ ପଚରା ଯାଇଥିବା ପ୍ରଶ୍ନଗୁଡ଼ିକର ତନ୍ନ ତନ୍ନ ଆଲୋଚନା କଲୁ ଓ ମୂଲ୍ୟାୟନ କାମ ସାରିଲା ବେଳକୁ ପ୍ରାୟ ୨ଟା ଉପରେ। ଯାତାୟାତ ଖର୍ଚ୍ଚର ବିଲ୍ ଦେଇ ହୋଟେଲକୁ ଫେରି ବିଶ୍ରାମ ନେଲୁଁ। କେତେକ ଆବଶ୍ୟକୀୟ ବସ୍ତୁ କିଣାକିଣି କରି ତାଙ୍କ ପ୍ରାପ୍ୟ ଦେଇ ମୁଣ୍ଡ ବାବୁ ରେଳ ଷ୍ଟେସନ ଗଲେ ଓ ମୁଁ ବସ୍‌ଷ୍ଟେଣ୍ଡକୁ ଗଲି। ମୁଣ୍ଡ ବାବୁ ଟ୍ରେନ୍‌ରେ କେସିଙ୍ଗା ଦେଇ ଭବାନୀପାଟଣା ଫେରିଲେ ଓ ମୁଁ ବସ୍ ଧରି ବରଗଡ଼ରୁ ଗାଁ ବାଟେ ଜୁନାଗଡ଼ ଫେରିଲି। ଫେରିଲା ବେଳେ ମୋର ମାଆ ମୋ ସଙ୍ଗେ ଜୁନାଗଡ଼ ଆସିଲେ। କେସିଙ୍ଗା ନିକଟରେ କସ୍ତୁରପଡ଼ାରେ ତାଙ୍କ କାକାଙ୍କ ଝିଅର ଶାଶୁଘର। ଏଣୁ ଆମେ ଯାଇ ଭବାନୀପାଟଣାରେ ପହଞ୍ଚିଲା ବେଳେ ସନ୍ଧ୍ୟା। ଆଉ କୌଣସି ଯାନବାହନ ଯିବାର ବ୍ୟବସ୍ଥା ନ ଥିବାରୁ ମୁଁ ଜୁନାଗଡ଼ରୁ ଆସିଥିବା କୌଣସି ଅନ୍ୟ ଯାନବାହନ ଅପେକ୍ଷାରେ ଥିଲି। ହଠାତ୍ ପ୍ରୋଜେକ୍ଟ ଗାଡ଼ିକୁ ଦେଖି ଆମର ଜୁନାଗଡ଼ ଯିବା କଥା କହିବାରୁ ସେମାନେ ବିନା ଆପତ୍ତିରେ ଆମକୁ ସଙ୍ଗରେ ନେଇ ଜୁନାଗଡ଼ରେ ଛାଡ଼ି ଦେଲେ। ମା ଜୁନାଗଡ଼ରେ କିଛି ଦିନ ରହିଲା ପରେ ତାଙ୍କୁ କସ୍ତୁରପଡ଼ା ତାଙ୍କ ଭଉଣୀ ଘର ଦେଖାଇ ଆଣି କାର୍ତ୍ତିକ ବାବୁଙ୍କ ସଙ୍ଗେ ଗାଁକୁ ପଠାଇ ଦେଲି।

ଏ ମଧ୍ୟରେ ବୋର୍ଡ ପରୀକ୍ଷା ଖାତା ଆସି ଯାଇଥାଏ। ତେଣୁ ସେଥିରୁ ୫ ଖଣ୍ଡ ସଂଶୋଧନ କରି ମୁଖ୍ୟ ପରୀକ୍ଷକଙ୍କ ପାଖକୁ ପଠାଇ ତାର ଫେରସ୍ତ ଆସିବା ପର୍ଯ୍ୟନ୍ତ ଖାତା ମୂଲ୍ୟାଙ୍କନ ଚ୍ଲିଥାଏ। ସେ ଖାତା ଫେରି ଆସିବାରୁ ସେହି ଖାତାମାନଙ୍କରେ ଯଥାଯଥ ପରିବର୍ତ୍ତନ ଅନୁସାରେ ଅନ୍ୟ ଖାତାଗୁଡ଼ିକୁ ମୂଲ୍ୟାୟନ କରି ଯଥା ସମୟରେ ପଠାଇ ଦେଲି।

ଏହା ପରେ ସ୍କୁଲରେ ୧୯୫୬ର ଶ୍ରେଣୀମାନଙ୍କର ବାର୍ଷିକ ପରୀକ୍ଷା ଓ ଫଳ ପ୍ରକାଶନ କାମ ଚାଲିଲା । ତୋରାରୁ ଖବର ଆସିଲା ଯେ ଗ୍ରୀଷ୍ମାବକାଶରେ ମୋର ଶାଳୀ ସ୍ନେହଲତାର ବିବାହ ସମ୍ପାଦିତ ହେବାକୁ ଥିବାରୁ ମୋର ଶ୍ୱଶୁର ଗାଡ଼ି ଧରି ଗ୍ରୀଷ୍ମବକାଶର ପୂର୍ବ ଦିନ ରାତିରେ କୁନାଗଡ଼ ପହଞ୍ଚିଲେ । ପରଦିନ ସକାଳୁ ସ୍କୁଲର ଫଳ ପ୍ରକାଶନ ପରେ ହେ.ମା.ଙ୍କ ଠାରୁ ଅନୁମତି ନେଇ ଆମେ ଖାଇବା ପରେ ଗାଡ଼ିରେ ବରଗଡ଼ ଫେରିବା ବାଟରେ ଟିଟିଲାଗଡ଼ରେ ମୋର ବନ୍ଧୁ ପ୍ରଫୁଲ୍ଲନନ୍ଦ ସପରିବାର ରହୁଥିବାରୁ ତାଙ୍କ ବସାରେ ଅଟକି ପରଦିନ ସମସ୍ତେ ଗାଡ଼ିରେ ବରଗଡ଼ ଫେରିଲୁଁ । ସେଦିନ ତୋରାରେ ପହଞ୍ଚିଲା ବେଳକୁ ଅପରାହ୍ନ ହୋଇ ଯାଇଥିଲା । ବରଗଡ଼ରୁ ତୋରା ବାଟରେ ନୂତନ ଭାବେ କେନାଲ ଖୋଳା କାମ ଚାଲି ଥିବାରୁ ସେଠାକୁ ଠିକ୍ ଯିବା ପଥର ପରିବର୍ତ୍ତନ ଦେଖି ଅବାକ୍ ଲାଗିଲା । ତୋରାରେ ଦିନେ ରହିବା ପରେ ମୁଁ ଓ ମୋର ପିଉସୀ ଗାଁକୁ ଆସିଲୁଁ । ମୋର ସ୍ତ୍ରୀ ଓ ପିଲାମାନେ ସ୍ନେହର ବିବାହ ପାଇଁ ତୋରାରେ ରହିଲେ ।

ଖରା ଛୁଟିରେ ସ୍ନେହର ବିବାହ ପରେ ଆମର ପିଲାମାନେ ଗାଁକୁ ଗଲେ ଓ ସେଠାରେ ଛୁଟିର ଅବଶିଷ୍ଟ ସମୟ କଟାଇବା ବେଳେ ବଡ଼ ବାପା ବରଗଡ଼ରୁ ଏକ ଖବର ଆଣିଲେ ଯେ ଜର୍ଜ ହାଇସ୍କୁଲରେ ବିଜ୍ଞାନ ଶିକ୍ଷକ ପଦବୀ ଖାଲି ରହିଛି । ସେମାନେ ଯୋଗ୍ୟ ଶିକ୍ଷକର ଅନୁସନ୍ଧାନରେ ଅଛନ୍ତି । ଏଣୁ ବଡ଼ ବାପା ବରଗଡ଼ ଯାଇ ତତ୍କାଳୀନ ସ୍କୁଲ ସେକ୍ରେଟାରୀ ଡ଼ା. ଲଳିତ ଦାଶଙ୍କୁ ଦେଖା କରିବା ପାଇଁ ପରାମର୍ଶ ଦେଲେ । ଏଣୁ ଏ ବିଷୟରେ ଘରେ ପ୍ରବଳ ଆଲୋଚନା ଚାଲିଲା । ପ୍ରସ୍ତାବର ଭଲ ଓ ମନ୍ଦ ଉଭୟ ବିଷୟ ବିଚାର କରିବା ପରେ ସ୍ଥିର ହେଲା ଯେ ସରକାରୀ ଚାକିରୀ କରି ଦୂରରେ ରହିବା ଅପେକ୍ଷା ସେହି ଦରମାରେ ଘର ପାଖେ ରହିଲେ ଭଲ ହେବ । ତେଣୁ ଏ ଦିଗରେ ପ୍ରଚେଷ୍ଟା କଲାରୁ ପ୍ରସ୍ତାବ ଅନୁଯାୟୀ ଡ଼ା ଦାଶଙ୍କ ସହ ସାକ୍ଷାତ କରିବାକୁ ପଡ଼ିଥିଲା । ସେ ଆମ ପ୍ରସ୍ତାବକୁ ସ୍ୱାଗତ କଲେ ଓ ସରକାରୀ ଦରମାର ହାର ସାହାଯ୍ୟ ପ୍ରାପ୍ତ ବିଦ୍ୟାଳୟ ପାଇଁ ସମାନ ନୁହେଁ ତେଣୁ ଏ ବିଷୟ ପ୍ରଣିଧାନ ଯୋଗ୍ୟ ବୋଲି ମତ ଦେଲେ । ତଥାପି ଦରଖାସ୍ତଟି ଦେବାକୁ ପରାମର୍ଶ ଦେଲେ । ତେଣୁ ତାଙ୍କୁ ଏକ ଆବେଦନ ପତ୍ର ଦେଇ ଘରକୁ ଚାଲି ଆସିଲି । ସେ ଦରଖାସ୍ତ ଗ୍ରହଣ କଲେ ।

ପୁଣି ଥରେ ଜୁନ୍ ମାସ ଶେଷରେ ଅର୍ଥାତ୍ ଗ୍ରୀଷ୍ମାବକାଶ ପୂର୍ବରୁ ଯାଇ ଦେଖା କଲି । ସେ ମୋତେ ସବୁ ମିଶି ଟ. ୧୩୫-୧୪୦ ରୁ ବେଶୀ ଦେଇ ହେବ ନାହିଁ ବୋଲି କହିବାରୁ ମୁଁ କେବଳ ଏତିକି କହିଲି ଯେ ମୁଁ ସରକାରୀ ଚାକିରୀ ଛାଡ଼ି

ଆସିବି ଓ ମୋର ସର୍ବଶେଷ ଭାଗ୍ୟନିୟନ୍ତ୍ରଣକାରୀ ଆପଣ ବୋଲି କହିବାରୁ ସେ ଟିକିଏ ଚିନ୍ତାଶୀଳ ହେଲେ ଓ ମୁଁ ଏ ବର୍ଷ ମାସକୁ ଟ. ୧୪୭ ପାଇବି ବୋଲି ଜଣାଇବାରୁ 'ହେଉ ଦେଖିବା' ବୋଲି ତୁନି ରହିଲେ । ପୁଣି ଥରେ ସ୍ପଷ୍ଟ କରି ଜଣାଇ ଦେଲି ଯେ ଆପଣଙ୍କୁ ଭରସା କରି ମୁଁ ସରକାରୀ ଚାକିରୀରୁ ତ୍ୟାଗ ପତ୍ର ନ ଦେଲେ ଅନ୍ତତଃ ୧ ମାସର ଦରମା ଜମା ଦେବାକୁ ହେବ ବା ଏକ ମାସ ପରେ ସେମାନେ ଅବ୍ୟାହତି ଦେବେ । ତେଣୁ ମୁଁ ଶୀଘ୍ର ତ୍ୟାଗ ପତ୍ର ପାଇଁ ଆବେଦନ କରିବା ନିତାନ୍ତ ଜରୁରୀ । ତେଣୁ Secretary ଦୃଢ଼ ଭାବରେ କହିଲେ, "Resign କରି ଚାଲି ଆସ ମୁଁ ସବୁ ଦେଖିବି ।" ଏହା ଶୁଣି ମୁଁ ଆଶ୍ୱସ୍ତ ହୋଇ ସରକାରୀ ଚାକିରୀ ଛାଡ଼ିବାର ପୂର୍ଣ୍ଣ ବିଚାର କଲି । ଘରକୁ ଆସି ସମସ୍ତଙ୍କ ସଙ୍ଗେ ବିଚାର ବିମର୍ଷ ପରେ ଜୁନାଗଡ଼କୁ ସ୍କୁଲ ଛୁଟି ପରେ ମୁଁ ଏକାକୀ ଯିବାର ସ୍ଥିର ହେଲା ।

## ଜୁନାଗଡ଼ରୁ ବରଗଡ଼ :

ସ୍କୁଲ ଖୋଲା ହେବାର ୨ ଦିନ ପୂର୍ବରୁ ମୁଁ ଘରୁ ବାହାରି ପରଦିନ ସନ୍ଧ୍ୟାରେ ଯାଇ ଜୁନାଗଡ଼ରେ ପହଞ୍ଚିଲି । ସ୍କୁଲରେ ଯୋଗଦାନ କରି ମୋର ଚାକିରୀ ତ୍ୟାଗପତ୍ର ହେ.ମା.ଙ୍କ ଜରିଆରେ ମଣ୍ଡଳାଧୀଶଙ୍କୁ ଅନୁରୋଧ କରି ୧ ମାସ ପରେ ମୋତେ ଚାକିରୀରୁ ମୁକ୍ତ କରିବା ପାଇଁ ଆବେଦନ କଲି । ଏଥିପାଇଁ ହେ.ମା. ତଥା ଅନ୍ୟ ଶିକ୍ଷକମାନେ ଦୁଃଖିତ ହେଲେ ଓ 'B' Typeରୁ 'A' Type ସ୍କୁଲକୁ ବଦଳି ହେଲେ 'B' Type ଚାକିରୀର ସମୟ 'A' Typeରେ ନ ମିଶିବାର ଜାଣି ମୋତେ ସରକାରୀ ଚାକିରୀ ପରେ ତ୍ୟାଗ ପାଇଁ ବାଧ କଲେ । ହେ.ମା. ମୋର ଦରଖାସ୍ତକୁ ମଣ୍ଡଳାଧୀଶଙ୍କୁ ପଠାଇ ଦେଇ ଆଦେଶ ଅପେକ୍ଷାରେ ରହିଲୁଁ । ଏ ମଧ୍ୟରେ ମଣ୍ଡଳାଧୀଶ ଶ୍ରୀ ଫଣୀଭୂଷଣ ଦାସ ଜୁନାଗଡ଼ ପରିଦର୍ଶନରେ ଆସିବା ବେଳେ ଭେଟ ହୋଇ ମୋର ତ୍ୟାଗପତ୍ର ଗ୍ରହଣ କରିବାର ଅନୁରୋଧ କଲି । କାଳକ୍ରମେ ଅଗଷ୍ଟ ପ୍ରଥମ ସପ୍ତାହରେ ପ୍ରଥମ ଭାଗରେ ତ୍ୟାଗପତ୍ର ଗ୍ରହଣର ମଞ୍ଜୁରି ଓ ଚାକିରୀର ଅବ୍ୟାହତି ଆଦେଶ ଆସିଲା । ମୋତେ ଅଗତ୍ୟା ହେ.ମା. ୭/୮/୫୬ ରେ ଚାକିରୀମୁକ୍ତ କଲେ । ସ୍କୁଲରେ ବିଦାୟକାଳୀନ ସମ୍ବର୍ଦ୍ଧନା ସଭା ଆୟୋଜନ କରାଗଲା । ମୁଁ ମୋର ଜିନିଷପତ୍ର ଧରି ୮/୮/୫୬ ଦିନ ବରଗଡ଼ରେ ପହଞ୍ଚିଲି । ଜିନିଷପତ୍ର ସବୁ ବଡ଼ ଶ୍ୱଶୁର କୃତାର୍ଥ ଆଚାର୍ଯ୍ୟଙ୍କ ଘରେ ରଖି ଦେଇ ଗାଁକୁ ଗଲି । ପରଦିନ ଅର୍ଥାତ୍ ୯/୮/୫୬ ତାରିଖରେ ଜର୍ଜ ହାଇସ୍କୁଲରେ ବିଜ୍ଞାନ ଶିକ୍ଷକ ରୂପେ ଯୋଗଦାନ କଲି । ସରକାରୀ ଚାକିରୀ ଛାଡ଼ି ବେସରକାରୀ ଚାକିରୀର ପୁଣି

ଥୟମାରମ୍ଭ ହେଲା । ହେ.ମା. ସେତେବେଳେ ପୂର୍ବର ଦେବାର୍ଚ୍ଚନ ଭୋଇ ମହାଶୟ ଥିଲେ । ଭବିଷ୍ୟତ କଣ ହେବାର କହି ହେଉ ନ ଥିଲା ।

ପ୍ରଥମେ କିଛି ଦିନ ଗାଁରୁ ଯିବା ଆସିବା କରିବା ପରେ କପିଳ ଦାସଙ୍କ ଖଲୁରଟିକ୍ରା ରାସ୍ତା କଡ଼ର ସ୍କୁଲ ପଡ଼ିଆ ନିକଟସ୍ଥ ଏକ ଘର ଭଡ଼ାରେ ବନ୍ଦୋବସ୍ତ କରି ରହିଲୁଁ । ଅବଶ୍ୟ ଅତି ଅଳ୍ପ ଦିନ ପରେ ସେହି ରାସ୍ତାର ଉପରେ ସ୍କୁଲର ନିକଟବର୍ତ୍ତୀ ଶଙ୍କର୍ଷଣ ପଟ୍ଟଆରୀଙ୍କ ପୁତ୍ର ଖଗେଶ୍ୱର ଭୋଇଙ୍କ ଏକ ଘର ଖାଲି ହେବାରୁ ସେଠାକୁ ଆସି ରହିଲୁଁ । ସେଠାରେ ଆସି ରହିବା ପରେ ଖଗେଶ୍ୱର ବାବୁଙ୍କ ପୁତ୍ର ରମେଶ ଚନ୍ଦ୍ର ଭୋଇ ସ୍କୁଲର ଜଣେ ଛାତ୍ର ଆସି ମୋ ଠାରେ ଘରୋଇ ଶିକ୍ଷା ପାଇଁ ଅନୁରୋଧ କରିବାରୁ ତାଙ୍କୁ ସମ୍ମତି ପ୍ରଦାନ କଲି । ଏହା ବୋଧ ହୁଏ ଦଶହରା ଅକ୍ଟୋବର ମାସର ଘଟଣା । ଘରଭଡ଼ା ପାଇଁ ଘରମାଲିକଙ୍କୁ ପଚ୍ଚରିବାରୁ ସେ ଘରଭଡ଼ା କଥା ବୁଝା ଯିବ - ରମେଶ ତ ପାଠ ପଢୁଛି ଦେଖିବା କହି କଥାଟାକୁ ଟାଳି ଦେଲେ । ସେତେବେଳେ ଏ ଭଳି ଘରମାନଙ୍କ ଭଡ଼ା ମାସକୁ ଟ. ୧୨/୧୫ ଥିଲା ଓ ଘରୋଇ ପାଠ ପଢ଼ିଥିବା ଛାତ୍ରମାନେ ମଧ ମାସକୁ ପ୍ରାୟ ଟ. ୧୫ ଦେଇ ପଢୁଥିଲେ ।

ଏପରି କିଛି ଦିନ ପରେ ହଠାତ୍ କୃଷ୍ଣ ବାବୁଙ୍କ ଦୋକାନରେ ଜଣେ ବ୍ୟକ୍ତିଙ୍କ ସହ ପରିଚୟ ହେଲା । ସେ ଭଦ୍ରଲୋକ କୃଷ୍ଣ ବାବୁଙ୍କ ସମ୍ପର୍କୀୟ ଚରଣ ଦାସ ଓ ସେ ଜ୍ୟୋତିଷ ଗଣକ ହିସାବରେ ସୁନାମ ଅର୍ଜନ କରିଥିଲେ । ତାଙ୍କୁ ମୋର ଜାତକ କୁଣ୍ଡଳୀ ଦେଇ ମୋର ଭୂତ ଭବିଷ୍ୟତ ବିଷୟରେ ଜାଣିବାକୁ ଅନୁରୋଧ କଲି । ସେ କୁଣ୍ଡଳୀଟି ରଖି ୨/୩ ଦିନ ପରେ ପୁଣି ଦେଖା କରିବାକୁ ବରାଦ କଲେ । ଏପରି ଶୁଣି କିଛି ଦିନ ଚ୍ଚଳିଲା । ହଠାତ୍ ଦିନେ କୃଷ୍ଣ ବାବୁଙ୍କ ଦୋକାନରେ ଦେଖା ହେବାରୁ ସେ ଅତି ଆନନ୍ଦରେ ମୋର ବିଷୟରେ କିଛି ଜଣାଇବାକୁ ଆଗ୍ରହ ପ୍ରକାଶ କଲେ । ଏ ମଧରେ ସ୍କୁଲର ସମ୍ପାଦକ ଡ଼ା. ଦାଶଙ୍କ ବିଦେଶ ଯାତ୍ରା ପାଇଁ ସୁଯୋଗ ମିଳିଥିଲା । ସେ ଆଖିରେ ବିଶେଷ ଜ୍ଞାନ ଆହରଣ ପାଇଁ ଭିଏନା ଯିବାର ସ୍ଥିର ହେଲା । ତେଣୁ ତାଙ୍କ ଆଖି ସମ୍ପର୍କରେ ପୂର୍ଣ୍ଣ ଧାରଣା ପାଇଁ ଆଖିର ଗଠନ ଓ ବିଭିନ୍ନ ଅଂଶ କାର୍ଯ୍ୟ ବିଷୟ ଆଲୋଚନା ପାଇଁ ମୋର ସଙ୍ଗେ ସମ୍ପର୍କ ରଖିଲେ । ସେ ବିଦେଶ ଯିବାରୁ ତାଙ୍କ ସ୍ଥାନରେ ଏଡ଼ଭୋକେଟ କହ୍ନେୟାଲାଲ ସାହୁ ସମ୍ପାଦକ ରୂପେ ମନୋନୀତ ହେଲେ ।

ଗଣକ:-

ମୋର ଅନ୍ୟାନ୍ୟ ବିଷୟ ପ୍ରକାଶ କରିବା ଅବସରରେ ମୋର ୫ମ ସନ୍ତାନ ଏକ ପୁଅ ହେବ ଓ ସେ ପ୍ରାୟ ଗର୍ଭସ୍ଥ ଓ ତାର ଯୋଗୁଁ ମୋର ଭବିଷ୍ୟତ ଉଜ୍ଜ୍ୱଳ ହେବାର ପଥ ସୁଗମ ହେବ। ଅନ୍ୟାନ୍ୟ ବାକୀ ସବୁ ବିଷୟରେ ଶୁଭ ସୂଚନା ଦେଇ ଉତ୍ସାହିତ କଲେ। ଘରକୁ ଆସି ମୋର ସ୍ତ୍ରୀଙ୍କ ସଙ୍ଗେ ଆଲୋଚନା କରିବାରୁ ଜଣାଗଲା ଯେ ତାଙ୍କର ଋତୁକାଳର ବ୍ୟତିକ୍ରମ ହୋଇଛି। ଅର୍ଥାତ୍ ଆଶୁ ଗର୍ଭଧାରଣର ସୂଚନା ମିଳିଲା। କିନ୍ତୁ ଏହାର ଜାଣିବାର ଉଦ୍ଦେଶ୍ୟ କଣ ବୋଲି ମୋ ସ୍ତ୍ରୀ ପଚାରିବାରୁ ମୁଁ କଥାଟାକୁ ବାରେଇ ଦେଲି।

## ଭାଗ୍ୟର ପରିବର୍ତ୍ତନ:

ଏହା ପରେ ନଭେମ୍ବର ମାସ ଯାଇ ଡିସେମ୍ବର ହେଲା। ପ୍ରଧାନ ଶିକ୍ଷକ ସମ୍ପାଦକଙ୍କୁ ଇସ୍ତଫାପତ୍ର ଦେଲେ। ତେଣୁ ତାଙ୍କୁ କାର୍ଯ୍ୟମୁକ୍ତ କରିବା ପାଇଁ ଡିସେମ୍ବର ମାସ ଶେଷ କାର୍ଯ୍ୟକାରୀ ଦିନ ଅର୍ଥାତ୍ ୨୪/୧୨/୫୬ ଦିନ ସ୍କୁଲର ପରିଚାଳନା କମିଟି ବସି ସେ ବିଷୟରେ ବିଚାର ବିମର୍ଶ ଚାଲିଲା। ପ୍ରଧାନ ଶିକ୍ଷକ କାର୍ଯ୍ୟମୁକ୍ତ ହେଲେ ତାଙ୍କର ଦାୟିତ୍ୱକୁ ଅସ୍ଥାୟୀ ରୂପେ ତୁଲାଇବା ପାଇଁ କାହାକୁ ସେ କାମ ଅର୍ପଣ କରାଯିବାର ବିଷୟ ମୁଖ୍ୟ ବିଷୟବସ୍ତୁ ଥିଲା। ସାଧାରଣତଃ ପ୍ରଧାନ ଶିକ୍ଷକ ସ୍କୁଲରୁ ଗଲେ ତାଙ୍କ ଦାୟିତ୍ୱ ତୁଲାଇବା ପାଇଁ ତାଙ୍କ ପରବର୍ତ୍ତୀ ଶିକ୍ଷକ - ସହକାରୀ ପ୍ରଧାନ ଶିକ୍ଷକଙ୍କୁ କାର୍ଯ୍ୟଭାର ଦେବା ଉଚିତ। ଏହା ଗତାନୁଗତିକ ନିୟମ। ତେଣୁ ସେ ଅନୁସାରେ ତାଙ୍କ ପରବର୍ତ୍ତୀ ସହାୟକ ଶିକ୍ଷକ ଶ୍ରୀ ତ୍ରିଲୋଚନ ମେହେରଙ୍କୁ ଦାୟିତ୍ୱ ଦିଆଯାଉ ବୋଲି ପ୍ରଧାନ ଶିକ୍ଷକ ପ୍ରସ୍ତାବ ଆଗତ କଲେ। କିନ୍ତୁ କେଜାଣେ କାହିଁକି ତାଙ୍କ ପ୍ରସ୍ତାବଟି ବହୁ କାର୍ଯକାରୀ ସଦସ୍ୟଙ୍କ ବିରୋଧ ଯୋଗୁଁ କାଟ ଖାଇଲା। ତେଣୁ ତାଙ୍କ ପରବର୍ତ୍ତୀ ଶିକ୍ଷକ ଶ୍ରୀ ବିଶ୍ୱାମିତ୍ର ପ୍ରଧାନଙ୍କ ନାମ ପ୍ରସ୍ତାବରେ ଆସି ବହୁମତରେ ଅଗ୍ରାହ୍ୟ ହେଲା। ତାପରେ ସ୍କୁଲର ଅସ୍ଥାୟୀ ଭାର କାହାକୁ ଦିଆଯିବ ସେ ବିଷୟରେ ଚିନ୍ତା ବଢ଼ିଲା। ସମ୍ପାଦକ ଶ୍ରୀଯୁକ୍ତ କହ୍ନେୟାଲାଲ ସାହୁ ଅନ୍ୟତମ ପୁରୁଣା ଶିକ୍ଷକ ଶ୍ରୀ ମିତ୍ରଭାନୁ ପ୍ରଧାନ, ବି.ଏ.,ଡି.ଇଡି. ଯେ କି ୩/୧୨/୫୬ରେ ସ୍କୁଲରେ ଯୋଗ ଦେଇଥିଲେ - ତାଙ୍କ ନାମକୁ ପ୍ରସ୍ତାବରେ ଆସିଲା। କିନ୍ତୁ ତାହା ପ୍ରଧାନ ଶିକ୍ଷକ ଦେବାର୍ଚ୍ଚନ ଭୋଇଙ୍କ ନୀତିଗତ ଆପତ୍ତି ଦୃଷ୍ଟିରୁ ତାହା ମଧ କାର୍ଯ୍ୟକାରୀ ହେଲା ନାହିଁ। ଶେଷରେ ସମସ୍ତ କମିଟୀ ମେମ୍ବରମାନେ ସ୍ଥିର କଲେ ଯେ ସ୍କୁଲରେ କାମ କରୁଥିବା ବୁଢ଼ା ମାଷ୍ଟ୍ରେ ଶଶିଭୂଷଣ ମିଶ୍ରଙ୍କ ନାମ ପ୍ରସ୍ତାବରେ ଆସିଲା, କିନ୍ତୁ ଅଗ୍ରାହ୍ୟ

ହେବାରୁ ସମସ୍ତଙ୍କ ମୁଣ୍ଡରେ ଚଡ଼କ ପଡ଼ିଲା । ତାପରେ କମିଟୀ ମେମ୍ବରମାନଙ୍କ ମଧ୍ୟରୁ କେହି ଜଣେ ପ୍ରସ୍ତାବ ଦେଲେ ଯେ ବିଦ୍ୟାଳୟରେ ଆଉ କେହି ତାଲିମ ପ୍ରାପ୍ତ ଶିକ୍ଷକ ଥିବା ବିଷୟରେ ଜାଣିବାକୁ ଚାହିଁବାରୁ ହେ.ମା. ଭୋଇ ବାବୁ କହିଲେ ଯେ ଶଶିଭୂଷଣ ଦାଶ, B.Sc., D.Ed. ଅଛନ୍ତି ବୋଲି ଜଣାଇବାରୁ କମିଟୀ ସଦସ୍ୟ ଶ୍ରୀ ଦୟାଲାଲ ଯୋଷୀ ଦୃଢ଼ତାର ସହ ଅନୁମୋଦନ କରି ଜୋର ଦେବାରୁ ଅନ୍ୟ ସମସ୍ତେ ଏ ପ୍ରସ୍ତାବଟି ବହୁମତରେ ଗୃହୀତ ହେଲା । କମିଟୀ ଖାତାରେ ଲେଖା ଯାଇଥିବା ଶଶିଭୂଷଣ ମିଶ୍ର ସ୍ଥାନରେ ମିଶ୍ରକୁ କାଟି ଦେଇ ଦାଶ ଯୋଡ଼ି ଦିଆ ଗଲା । ଅର୍ଥାତ୍ ଅଯାଚିତ ଭାବେ ମୋ ମୁଣ୍ଡରେ ହାତୀ ସୁନା କଳସ ଢାଳିଲା । ଯାହାକି ପରେ ଜଣାଗଲା ଯେ ଏଥିରେ ଭଗବାନଙ୍କ ଆଶୀର୍ବାଦ, ଦୟାଲାଲ ଯୋଷୀଙ୍କ ପ୍ରଚ୍ଛନ୍ନ ଓ ସକ୍ରିୟ ସହଯୋଗ ଥିବାରୁ ସମ୍ଭବ ହେଲା । ମିଟିଙ୍ଗ ଶେଷ ହେବା ପରେ ପୂର୍ବରୁ ଏହା ମଧ୍ୟ ସ୍ଥିର ହେଲା ଯେ, X'ମାସ ଛୁଟିରେ ସ୍କୁଲ ବନ୍ଦ ହେଲେ ତାର ଅସ୍ଥାୟୀ ଦାୟିତ୍ୱ ମଧ୍ୟ ମୋ ଉପରେ ନ୍ୟସ୍ତ ହେଲା । ତେଣୁ ସଭା ଶେଷରେ ହେ.ମା.ଙ୍କ ନିର୍ଦ୍ଦେଶରେ ସ୍କୁଲ ଚତୁର୍ଥ ଶ୍ରେଣୀର କର୍ମଚାରୀ ୰ ବିଶ୍ୱେଶ୍ୱର ରାଉତ ପ୍ରାୟ ୩ଟା ବେଳେ ମୋ ପାଖରେ ପହଞ୍ଚି 'ସ୍କୁଲର ଦାୟିତ୍ୱ ଆପଣଙ୍କୁ କମିଟୀ ଦେଇଛି ଓ ଆପଣ ଏ ଖାତାରେ ଦସ୍ତଖତ କରି ସ୍କୁଲର ଚାବିକାଠି ରଖନ୍ତୁ' କହିଲେ । ମୁଁ ସେତେବେଳେ ଦ୍ୱିପହରରେ ଶୋଇଥିଲି ଓ ନିଦରୁ ଉଠି ଏହା ସ୍ୱପ୍ନ କି ସତ୍ୟ ଜାଣି ନ ପାରି କିଛି ସମୟ ସ୍ତବ୍ଧ ହୋଇଗଲି । ପୁଣି ଥରେ ବିଶ୍ୱେଶ୍ୱର ଏ ବିଷୟ ଜଣାଇ ଦସ୍ତଖତ କରିବାକୁ ଓ ସ୍କୁଲର ଚାବି ରଖିବାକୁ କହିବାରୁ ବାଧ୍ୟ ହୋଇ ଦସ୍ତଖତ କଲି ଓ ଚାବି ରଖିଲି । ସେତେବେଳେ ହେ.ମା. ଖାଇ ସାରି X'mas ଛୁଟି ପାଇଁ ତାଙ୍କ ଗାଁକୁ ଯାଇ ସାରିଥିଲେ । ମୁଁ ଠିକ୍ ଏହି ସମୟରେ ମୋର ପିଲାମାନେ ବରଗଡ଼ରୁ ଦପ୍‌କା ଯାଇଥାନ୍ତି । ତେଣୁ ତାଙ୍କୁ ଏ ଶୁଭ ଖବର ଦେବାରେ ବିଳମ୍ବ ହେଲା । ଜ୍ୟୋତିଷ ଦାଶଙ୍କ ଗଣନାର ସତ୍ୟତାର ପୂର୍ବାଭାସର ସୂଚନା ମିଳିଲା । ସେମାନେ ଛୁଟି ମଧ୍ୟରେ ଦପ୍‌କାରୁ ଫେରି ଆନନ୍ଦିତ ହେଲେ ।

ଅପରାହ୍ନ ୪ଟା ପରେ ଘରୁ ବାହାରି ବନ୍ଧୁ ଓ ଶୁଭାକାଂକ୍ଷୀ ଦୟାଲାଲ ବାବୁଙ୍କ ଠାକୁ ଯାଇ ସବୁ କଥା ବୁଝିଲି । ଭଗବାନଙ୍କ ଅଶେଷ କରୁଣାର ଫଳ ବୋଲି ମନେ କଲି । ମୋର ବିଷୟରେ ଶିକ୍ଷକମାନେ ଖବର ପାଇ ଶୁଭେଚ୍ଛା ଜଣାଇଲେ । ଆଉ କେତେକ ହୁଏତ ଅସନ୍ତୋଷ ହୋଇଥିଲେ ହେଁ ସମ୍ମୁଖରେ ପ୍ରକାଶ କରି ପାରିଲେ ନାହିଁ । ମୁଁ ସେ ଦିନର ସନ୍ଧ୍ୟାରେ ଯାଇ ଗୁରୁଦେବ ଶଶିଭୂଷଣ ମିଶ୍ରଙ୍କ ସଙ୍ଗେ ସାକ୍ଷାତ କରି ତାଙ୍କର ଆଶୀର୍ବାଦ ଲୋଡ଼ିବାରୁ ସେ ଆନନ୍ଦରେ ମୋର ଭବିଷ୍ୟତ ମଙ୍ଗଳ ପାଇଁ କାମନା କରି ମୋତେ ଉତ୍ସାହିତ କରିଥିଲେ । ଏପରି ଭାବେ

ମୋର ବଡ଼ ବାପାଙ୍କର କେତେ ବର୍ଷ ପୂର୍ବର କଥିତ ଦୃଢ଼ୋକ୍ତି ସଫଳ ହେଲା। X'mas ଛୁଟି ସରିଗଲା ଓ ନୂତନ ବର୍ଷ ୧୯୫୭ ପୃଥିବୀରେ ରାଜୁତି ଆରମ୍ଭ କଲା। ୨.୧.୫୭ ଦିନ ହେ.ମା. ଦେବାର୍ଚ୍ଚନ ଭୋଇ ଗାଁରୁ ଫେରି ତାଙ୍କର ହେ.ମା. ଦାୟିତ୍ୱ ହସ୍ତାନ୍ତର କରି କାର୍ଯ୍ୟମୁକ୍ତ ହେଲେ। ତାଙ୍କର ବିଦାୟ କାଳୀନ ସଭାରେ ବୃଦ୍ଧ ଶିକ୍ଷକ ଶଶିଭୂଷଣ ମିଶ୍ର ସଭାପତିତ୍ୱ କରିଥିଲେ। ହେ.ମା.ଙ୍କ ବିଦାୟ ପାଇଁ ଏକ ଟି - ପାର୍ଟିର ଆୟୋଜନ କରା ଯାଇଥିଲା। ରାତ୍ରରେ ଆମ ଘରେ ଭୋଜନ କରିବା ପାଇଁ ତାଙ୍କୁ ନିମନ୍ତ୍ରଣ କରିଥିଲି। ପରଦିନ ସକାଳେ ଭୋଇ ବାବୁ ନିଜର ବିଛଣା଼ପତ୍ର ନେଇ ବରଗଡ଼ ଛାଡ଼ିଲେ। କେତେକ ଶିକ୍ଷକ ଓ ମୁଁ ତାଙ୍କୁ ବସ୍ ଷ୍ଟେଣ୍ଡ ପର୍ଯ୍ୟନ୍ତ ଯାଇ ବିଦାୟ ଦେଇଥିଲୁଁ।

ଏଣିକି ସ୍କୁଲ ଚଳାଇବା ବିଷୟରେ ଏକ ଗୁରୁତର ବୋଝ ମୁଣ୍ଡ ଉପରେ ପଡ଼ିଲା। କାରଣ ଆମ ସ୍କୁଲରେ ଥିବା ଶିକ୍ଷକମାନଙ୍କ ମଧ୍ୟରେ ଅଧିକାଂଶ ମୋତେ ପଢ଼ାଇଥିବା ଶିକ୍ଷକ, କେତେକ ମୋର ସହପାଠୀ ବା ସ୍କୁଲରେ ପଢୁଥିବା ସମୟରେ ଉଚ୍ଚ ଶ୍ରେଣୀର ବ୍ୟକ୍ତି ଓ ଆଉ କେତେକ ମୋର ପଢ଼ାଇଥିବା ଛାତ୍ର ବିଶେଷ। ତେଣୁ ଏ ସମସ୍ତଙ୍କୁ ନେଇ ଚଳିବା ଓ ଚଳାଇବା ମୋ ପକ୍ଷେ ଅତିଶୟ କଷ୍ଟକର ହେଲା। କେଉଁ ପନ୍ଥା ନିର୍ଦ୍ଧାରଣ କଲେ ଏ ସମସ୍ତଙ୍କୁ ଶୃଙ୍ଖଳିତ ଭାବେ ଚଳାଇ ହେବ ଚିନ୍ତା ଘାରିଲା। ଦେଖିଲି ଏ ବିଷୟରେ ଆଗରୁ ଚିନ୍ତା କରି ସିଦ୍ଧାନ୍ତ ନେବା ଅସମ୍ଭବ। ତେଣୁ ପରିସ୍ଥିତି ଅନୁସାରେ ଯାହା ସମିଚୀନ ହେବ, ତାକୁ ଦେଖି ଗ୍ରହି କାର୍ଯ୍ୟ କରାଯିବ। ଇତି ମଧ୍ୟରେ ସ୍କୁଲରୁ ବିଦାୟ ନେଇଥିବା ଜନୈକ ଶିକ୍ଷକ ଶ୍ରୀ ହୀରାଧର ମେହେର ବରଗଡ଼ ବାଣିଜ୍ୟ କର ବିଭାଗରେ ଅଫିସର ରୂପେ ଯୋଗ ଦେଇ କାର୍ଯ୍ୟ କରୁଥିଲେ। ସେ ସ୍କୁଲର ଜଣେ କୃତୀଛାତ୍ର ଓ ଏବେ କ୍ଷମତାସୀନ ସରକାରୀ ଅଫିସର। ତେଣୁ ସେ ବିଦ୍ୟାଳୟର ଉନ୍ନତି କଳ୍ପେ ସଦା ଆଗ୍ରହୀ। ସେ ଆସି ମୋତେ ଦେଖା କରି ସ୍କୁଲର ଭଲ ମନ୍ଦରେ ସମ୍ପୂର୍ଣ୍ଣ ସାହାଯ୍ୟ କରିବେ ବୋଲି ପ୍ରତିଶୃତି ଦେଲେ। ହେ.ମା.ଙ୍କ ସ୍କୁଲରୁ ବିଦାୟ ଓ ଅନ୍ୟ କେତେକ ଶିକ୍ଷକଙ୍କ ଆଗମନ ଓ ପ୍ରତ୍ୟାଗମନ ହେତୁ ବିଭିନ୍ନ ଶ୍ରେଣୀରେ ପାଠ୍ୟଦାନ ପାଇଁ ବିଷୟ ବସ୍ତୁର ପୁନଃବଣ୍ଟନ ଓ ତଦନୁଯାୟୀ ନୂଆଁ ପାଠ୍ୟ ନିର୍ଘଣ୍ଟ (Routine) ତିଆରି ଅପରିହାର୍ଯ୍ୟ। ଶିକ୍ଷକମାନଙ୍କ ମିଳିତ ବୈଠକରେ ତାଙ୍କର ରୁଚି ଓ ଯୋଗ୍ୟତାନୁସାରେ ଶ୍ରେଣୀମାନଙ୍କର କିଏ କେଉଁ ବିଷୟ ଛାତ୍ରମାନଙ୍କ ହିତ ଦୃଷ୍ଟିରୁ ଉପଯୁକ୍ତ ଭାବେ ପଢ଼ାଇ ପାରିବେ, ସେ ବିଷୟରେ ଆଲୋଚନା କରି ପ୍ରିୟତ ଓ ବିଷୟ ଭାଗବଣ୍ଟା ହେଲା। ଏଥିରେ ବୟସ୍କ ଓ ଅଭିଜ୍ଞ ଶିକ୍ଷକମାନଙ୍କ ମତାମତ

ଲୋଡ଼ି କାର୍ଯ୍ୟକ୍ରମ ନିର୍ଦ୍ଧାରଣ କରାଗଲା । ମୋ'ଠାରୁ ବୟସ୍କ ଓ ଅଭିଜ୍ଞ ଶିକ୍ଷକଙ୍କୁ ଉପେକ୍ଷା କରି ସ୍କୁଲର ଦାୟିତ୍ୱ ମୋତେ ଦେଇଥିବାରୁ ସେମାନଙ୍କ ମନରେ କ୍ଷୋଭ ଦୂରୀକରଣ ପାଇଁ ସର୍ବଦା ତାଙ୍କ ମତାମତ ନେବାରେ ହେଳା ପ୍ରଦର୍ଶନ କରୁ ନ ଥିଲି । ଏମାନେ ହେଲେ ବୁଢ଼ା ମାଷ୍ଟ୍ରେ, ତ୍ରିଲୋଚନ ବାବୁ, ବିଶ୍ୱାମିତ୍ର ପ୍ରଧାନ ଓ ମିତ୍ରଭାନୁ ପ୍ରଧାନ । ଏମାନେ ଜଣେ ଜଣେ ବିଶାଳ ଓ ବିରାଟ ବ୍ୟକ୍ତିତ୍ୱ ଓ ନିଜ ନିଜ କର୍ମରେ ବେଶ ସୁନିପୁଣ, କୌଶଳୀ । ଏମାନଙ୍କୁ ଉପେକ୍ଷା କରିବା ସ୍କୁଲ ପକ୍ଷେ ଅହିତକର ହେବ ଭାବି ସର୍ବଦା ତାଙ୍କ ମତାମତ ଲୋଡୁଥିଲି । ତା' ନ ହେଲେ ହୁଏତ କୌଣସି ବିଭ୍ରାଟ ସୃଷ୍ଟି ହୋଇପାରେ । ପୁଣି ମୋର ସମବୟସ୍କ ଶିକ୍ଷକମାନଙ୍କୁ ମଧ ନ୍ୟୂନ ନ ମଣି ତାଙ୍କର ମଧ ମତାମତ ନେଇ ଯେତେ ଦୂର ହୋଇପାରେ ତାକୁ ଗ୍ରହଣ କରିବାକୁ ହେଉଥିଲା ।

ଇତି ମଧରେ ହେ.ମା.ଙ୍କ ରହିଥିବା ସ୍କୁଲ କ୍ୱାଟର୍ସକୁ ସଫା ସୁତୁରା କରି ଚୂନ ଲଗାଇ ଭଲ ଦିନ ଦେଖି ସେଠାରେ ଯାଇ ରହିଲୁଁ । ଶ୍ରୀ ତ୍ରିଲୋଚନ ମେହେର ଇ.ଏମ. ହଷ୍ଟେଲର ତତ୍ତ୍ୱାବଧାରକ ଥିଲେ ଓ ପୂର୍ବ ହେ.ମା. ସମୟରୁ ସହକାରୀ ପ୍ରଧାନ ଶିକ୍ଷକ ରୂପେ ତାଙ୍କ ବେଶ ପ୍ରତିପତ୍ତି ଓ ପ୍ରଭାବ ଥିଲା । ସେ ଆମ ପଡ଼ୋଶୀ ହେଲେ । ସ୍କୁଲରେ ଥିବା ପାଞ୍ଚ ଜଣ ଚପରାସୀ ଘରକୁ ଆସି ଘର କାମରେ ସାହାଯ୍ୟ କଲେ । ଏଇ ସ୍କୁଲରେ ପରିସର ମଧରେ ରହି ମୋ ପିଲାମାନେ ମଧ ଶୃଙ୍ଖଳିତ ବାତାବରଣରେ ଓ ନିୟମରେ ରହିବାକୁ ଲାଗିଲେ ।

ଏ ମଧରେ ଆମ ଅବିଭକ୍ତ ସମ୍ବଲପୁର ଜିଲ୍ଲା ପାଇଁ ଏକ ଶୁଭ ସୁଯୋଗ ଉପସ୍ଥିତ ହେଲା । ହୀରାକୁଦ ଡେମ୍ କାମ ଶେଷ ହେବାରୁ ତାର ଶୁଭ ଉଦ୍‌ଘାଟନ ପାଇଁ ଭାରତର ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ ୧୩/୧/୫୭ ଦିନ ହୀରାକୁଦ ଆସି ଉଦ୍‌ଘାଟନ କଲେ । ଆମେ ବରଗଡ଼ରୁ ଏକ ସ୍ୱତନ୍ତ୍ର ବସ୍‌ରେ ସ୍କୁଲର ଛାତ୍ରଛାତ୍ରୀ ଓ ଶିକ୍ଷକମାନେ ଯାଇ ସେହି ଉତ୍ସବର ସମାରୋହ ଉପଭୋଗ କଲୁ । ଏହି ଦିନ ଠାରୁ ସମ୍ବଲପୁର ଓ ବରଗଡ଼ ଅଞ୍ଚଳରେ ସବୁଜ ବିପ୍ଳବର ସୂତ୍ରପାତ ହେଲା ।

ପୂର୍ବର୍ଣ୍ଣିତ ସୂଚୀତ ଶ୍ରୀ ହୀରାଧର ମେହେର ମହାଶୟ ଆମ ବସାକୁ ଆସି ସ୍କୁଲର ରୁଟିନ ତିଆରି କରିବାରେ ମୋତେ ଯଥେଷ୍ଟ ସାହାଯ୍ୟ କଲେ । ପ୍ରାୟ ୧ ସପ୍ତାହ ମଧରେ ରୁଟିନ୍‌ର ପ୍ରସ୍ତୁତି ସରିଲା । ଏହା ପୂର୍ବରୁ ଅନୁଭୂତି ଅନୁସାରେ ନୂଆଁ ରୁଟିନ୍‌ଟିଏ ତିଆରି ସକାଶେ ମାସାଧିକ କାଳ ବିତି ଯିବାର ଉଦାହରଣ ରହିଛି । ଅବଶ୍ୟ ଏଥର ଆମେ ଦୁହେଁ ପରିଶ୍ରମ କରି ଶୀଘ୍ର ରୁଟିନ୍‌ଟି ପ୍ରକାଶ

କରିଥିବାରୁ ସମସ୍ତଙ୍କ ମନରେ ଆଶ୍ୱାସନା ଓ ଆନନ୍ଦର ଆଭାସ ମିଳିଲା । କ୍ରମେ ସ୍କୁଲ କାର୍ଯ୍ୟ ସୁଚାରୁ ରୂପେ ଚାଲିଲା ଓ ବାର୍ଷିକ ପରୀକ୍ଷାର ଛାତ୍ରମାନଙ୍କର ଫଳ ପ୍ରକାଶନ କରି ବାର୍ଷିକ କାର୍ଯ୍ୟ ସମାପନ ହେଲା ।

## ୧୯୫୭ ସାଲର ପର ଘଟଣା - ପ୍ରଧାନ ଶିକ୍ଷକ ରୂପେ ନିଯୁକ୍ତି:-

ଜର୍ଜ ହାଇସ୍କୁଲ ଦାୟିତ୍ୱ ଗ୍ରହଣ କଲା ପରେ ସ୍କୁଲ ପରିଚାଳନା କମିଟୀ ଏକ ବିଜ୍ଞାପନ କରିଥାରେ ଘୋଷଣା କଲେ ଯେ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ପଦବୀ ଖାଲି ପଡ଼ିଛି, ପୂରଣ ପାଇଁ ଯୋଗ୍ୟ ଓ ଅଭିଜ୍ଞ ଶିକ୍ଷକଙ୍କ ଠାରୁ ଆବେଦନ ପତ୍ର ୩୦/୪/୫୭ ମଧ୍ୟରେ ସମ୍ପାଦକଙ୍କ ନିକଟକୁ ସ୍କୁଲ ଠିକଣାରେ ପହଞ୍ଚିବା ଆବଶ୍ୟକ । ଏହା ଜାନୁୟାରୀ ମାସ ଶେଷ ଭାଗରେ ପ୍ରକାଶ ପାଇଲା । ତାପରେ ୨ ମାସ ବିତିଗଲା । ଅପ୍ରେଲ ମାସର ୧୫ ତାରିଖ ମଧ୍ୟରେ ବି କୌଣସି ଆବେଦନ ପତ୍ର ଆସି ନ ଥିଲା । ମୁଁ ତ ସ୍ୱପ୍ନରେ ସୁଦ୍ଧା କଳ୍ପନା କରି ନ ଥିଲି ଯେ ମୁଁ ଏଥି ପାଇଁ ଆବେଦନ କରିବି ବା ତାହା ବିଚାରକୁ ନିଆଯିବ । ତେଣୁ ନିଜ କାମରେ ବ୍ୟସ୍ତ ବଶତଃ ସେ ବିଷୟରେ ଅବହେଳା ପ୍ରଦର୍ଶନ କରି ନିଶ୍ଚିନ୍ତ ଥିଲି । ମଝିରେ ମଝିରେ ସମ୍ପାଦକ ତଥା ସଦସ୍ୟବୃନ୍ଦ ଆବେଦନ ସମ୍ପର୍କରେ ପଚାରୁଥିଲେ । ଆବେଦନ ପତ୍ର ମିଳି ନ ଥିବାରୁ ମୁଁ ସେ ବିଷୟ ସ୍ପଷ୍ଟ ଜଣାଇ ଦେଲି । ତାପରେ ମୋର ପୂଜ୍ୟ ଗୁରୁଦେବ ବୁଢ଼ା ମାଷ୍ଟରଙ୍କୁ ପଚାରିବାରୁ ସେ ଦରଖାସ୍ତ ପକାଇବା ପାଇଁ ଦୃଢ଼ ମତ ଦେଲେ । ବନ୍ଧୁ ଦୟାଲାଲ ବାବୁ ମତ ଦେଇ ସେ ମଧ୍ୟ ଆବେଦନ ପତ୍ର ଦେବା ପାଇଁ ବାଧ୍ୟ କଲେ । ତେଣୁ ମୁଁ ଏକାନ୍ତ ବାଧ୍ୟ ହୋଇ ୧୬/୪/୫୭ ଦିନ ଏକ ଆବେଦନ ପତ୍ର ସମ୍ପାଦକଙ୍କୁ ନେଇ ଦେବାରୁ ସେ ତାକୁ ସତକ କରି ମୋ ହାତକୁ ବଢ଼ାଇ ଦେଇ ଅନ୍ୟ ଆବେଦନ ପତ୍ର ସଙ୍ଗେ ରଖିବାକୁ ପରାମର୍ଶ ଦେଲେ । ୩୦/୪/୫୭ ମଧ୍ୟରେ ଆଉ ୨ଟି ଆବେଦନ ପତ୍ର ଆସି ପହଞ୍ଚିଲା । ମୋଟରେ ୩୦/୪/୫୭ରେ ତିନୋଟି ଆବେଦନ ପତ୍ର ଆସିଥିଲା । ୩୦/୪/୫୭ ପରେ ମଇ ମାସ ଦ୍ୱିତୀୟ ସପ୍ତାହରେ ପରିଚାଳନା କମିଟୀ ବସିଲା । ସେତେବେଳେ ଶିକ୍ଷକ ପ୍ରତିନିଧି ରୂପେ ଶ୍ରୀ ଲଳିତ ମେହେର ପରିଚାଳନା କମିଟୀ ସଦସ୍ୟ ଥିଲେ । କମିଟୀ ବୈଠକ ଆରମ୍ଭ ହେଲା । ବିଚାର ବିମର୍ଷ ପୂର୍ବରୁ କମିଟୀର ସଭାପତି S.D.O. ଶ୍ରୀଯୁକ୍ତ ନୀଳମଣି ମହାନ୍ତିଙ୍କ ପ୍ରସ୍ତାବ କ୍ରମେ ପ୍ରାର୍ଥୀ କିମ୍ବା ପ୍ରଧାନ ଶିକ୍ଷକଙ୍କ ନିଯୁକ୍ତିକୁ ବିଷୟର ମୁଖ୍ୟ କାର୍ଯ୍ୟକ୍ରମ ହେତୁ ସହକାରୀ ଶିକ୍ଷକ ପ୍ରତିନିଧି ବୈଠକରେ ଉପସ୍ଥିତ ରହି ଆଲୋଚନାରେ ଭାଗ ନେବା ବୈଧତା କି

ନା - ଦୃଷ୍ଟିରୁ ମୁଁ ଓ ଲଳିତ ବାବୁ କମିଟୀ ବୈଠକରୁ ଦୂରେ ରହିଲୁଁ।

ଆବେଦନ ପତ୍ର ଯାଞ୍ଚ, ସେ ବିଷୟରେ ମତାମତ ଆଲୋଚନାକୁ ନେଇ ଦୀର୍ଘ ସମୟ - ଘଣ୍ଟାଧିକ କାଳ ବିଚାର ବିମର୍ଷ ଚାଲିଲା। ସେତେବେଳେ ମୋର କାର୍ଯ୍ୟକାଳ ମଧ୍ୟ ୪ ମାସ ଅତିବାହିତ ହୋଇ ସାରିଥିଲା। ମୋ ବିଷୟରେ ସେମାନଙ୍କ ପ୍ରତ୍ୟକ୍ଷ ଧାରଣାର ଛାପ ପଡ଼ି ସାରିଥିଲା। ତେଣୁ ସମସ୍ତଙ୍କ ମିଳିତ ଓ ଏକମତ ପ୍ରସ୍ତାବରେ ମୋର ନିଯୁକ୍ତିର ଯଥାର୍ଥତା ସପକ୍ଷରେ ଅନୁମୋଦନ କରି ତା. ୧/୫/୫୭ରୁ ମୋର ପ୍ରଧାନ ଶିକ୍ଷକ ରୂପେ ଅସ୍ଥାୟୀ ନିଯୁକ୍ତିକୁ ସର୍ବସମ୍ମତିରେ ଗ୍ରହଣ କଲେ। ଅର୍ଥାତ୍ ମୁଁ ବିଧିବଦ୍ଧ ଭାବେ ଉପରୋକ୍ତ ଦିନରୁ ପ୍ରଧାନ ଶିକ୍ଷକ ପଦବୀର ଅଧିକାରୀ ହେଲି। ୧ ବର୍ଷ ପରେ ତାର ପୁନର୍ବିଚାର କରି ପଦବୀର ସ୍ଥାୟିତ୍ୱକୁ ବିଚାର କରିବେ। ଅର୍ଥାତ୍ ମୁଁ ଉପରୋକ୍ତ ଦିବସରୁ ପ୍ରଧାନ ଶିକ୍ଷକ ଦରମା ପାଇବାକୁ ହକଦାର ହେଲି।

ଉପରୋକ୍ତ ପରିସ୍ଥିତିରୁ ମନେ ହେଲା ସତେ ଯେପରି ଏହି ପଦବୀଟି ମୋ ପାଇଁ ଉଦ୍ଦିଷ୍ଟ ହୋଇ ସଂରକ୍ଷିତ ଥିଲା। ନଚେତ୍ ସାରା ଓଡ଼ିଶାରେ କଅଣ ଆଉ ଯୋଗ୍ୟ ଓ ଅଭିଜ୍ଞ ଶିକ୍ଷକ ନ ଥିଲେ ? କାହିଁକି ଓ କିପରି ଏହି ବିଜ୍ଞାପନଟି ସେମାନଙ୍କ ଦୃଷ୍ଟିରୁ ଅପସରି ଯାଇଥିଲା ? ଏହାକୁ କୁହାଯାଏ ବିଧିର ଉଦ୍ଦେଶ୍ୟ ଓ ଭାଗ୍ୟର ବିଡ଼ମ୍ବନା ! ତେଣୁ ଦାୟିତ୍ୱ ବଢ଼ିଲା ଓ 'ବେକରେ ପଡ଼ିଲେ ବଜାଇ ଶିଖନ୍ତି' ନୀତିରେ ଆଗେଇବାକୁ ହେଲା। ଆପ୍ରାଣ ଉଦ୍ୟମ କରିବାକୁ ପଡ଼ିଲା।

୧୯୫୭ ସାଲଟି ସ୍ୱାଧୀନତା ପ୍ରାପ୍ତିର ୧୦ ବର୍ଷ ପୂର୍ତ୍ତି ଉପଲକ୍ଷେ ସ୍ୱାଧୀନତା ଦିବସକୁ ବିଶେଷ ଭାବରେ ପାଳନ କରିବାକୁ ଉପରୁ ନିର୍ଦ୍ଦେଶ ଥିଲା। ଅନ୍ୟାନ୍ୟ ସର୍ବସାଧାରଣ କାର୍ଯ୍ୟ ବ୍ୟତୀତ ସରକାରୀ ଓ ବେସରକାରୀ କୋଠାଘରମାନଙ୍କୁ ଦୀପମାଳାରେ ସଜାଇବା ଓ ଭଲ ସାଜସଜ୍ଜା ପାଇଁ ପୁରସ୍କାର ଦେବାର ବ୍ୟବସ୍ଥା ଥିଲା। ତେଣୁ ଆମ ସ୍କୁଲ ପିଲାମାନେ ମଧ୍ୟ ସେଥିରେ ଉତ୍ସାହର ସହ ଲାଗି ପଡ଼ିଲେ। ସାରା ସ୍କୁଲ ଘରଟିକୁ ଦୀପମାଳାରେ ସଜାଇବା ପାଇଁ ସହସ୍ରାଧିକ ଦୀପ ଯୋଗାଡ଼ କରି ତହିଁରେ ବ୍ୟବହୃତ ତେଲ ପାଇଁ ଆମ ପଡ଼ୋଶୀ କଛି ଟ୍ରାନ୍ସପୋର୍ଟର ମାଲିକ ଓ ସ୍କୁଲ ପରିଚାଳନା କମିଟୀର ବିଶିଷ୍ଟ ସଭ୍ୟ ଦୟାଲାଲ ଯୋଷୀଙ୍କୁ ଅନୁରୋଧ କରି ପର୍ଯ୍ୟାପ୍ତ ପରିମାଣ ଅଦରକାରୀ, ବ୍ୟବହୃତ ମୋଟର ମୋବିଲ ତେଲ ଅଣାଯାଇ ସାରା ସ୍କୁଲ ଅଟ୍ଟାଳିକାକୁ ୧୫/୮/୫୭ ରାତିରେ ଦୀପମାଳାରେ ସଜାଇ ଅଗ୍ନି ସଂଯୋଗ କରା ଯିବାରୁ ଏକ ଅତୁଳନୀୟ ଶୋଭା ଧାରଣ କରି ଜନମନ ଆକୃଷ୍ଟ ହେଲା। ସେଦିନ ସକାଳେ ସ୍ୱାଧୀନତା ଦିବସ ପାଇଁ ପ୍ରଭାତ ଫେରି,

ପତାକା ଉତ୍ତୋଳନ ତଥା ପେରେଡ଼ ଆଦି ଅନୁଷ୍ଠିତ ହୋଇ ସାରିଥିଲା । ବିଗ୍ଚରକ ମଣ୍ଡଳୀ ଆମ ସ୍କୁଲର ଦୃଶ୍ୟ ଦେଖି ସର୍ବଶ୍ରେଷ୍ଠ ସାଜସଜ୍ଜା ରୂପେ ବିବେଚନା କରି ପ୍ରଥମ ପୁରସ୍କାର ଘୋଷଣା କରିଥିଲେ ।

ତାର ପରଦିନ ୧୬/୮/୫୭ରେ ଆମ ଘରେ ଏକ ପୁତ୍ର ସନ୍ଧ୍ୟାରେ ଜାତ ହେଲା । ୩ଟି ଝିଅ ପରେ ପୁଅଟିଏ ଜନ୍ମ ହେବାରୁ ସମସ୍ତେ ଆନନ୍ଦିତ ହେଲେ । ଉକ୍ତ ପୁତ୍ରର ଜନ୍ମ ଉପଲକ୍ଷେ ସାରା ସ୍କୁଲର ଛାତ୍ରଛାତ୍ରୀମାନଙ୍କୁ ନଡ଼ିଆ ଓ ମିଠାଇ ବଣ୍ଟନ କରା ଯାଇଥିଲା । ଠିକ୍ ସମୟରେ ନାମକରଣ ଅନ୍ନପ୍ରାସନ କରାଯାଇ ତାର ନାମକୁ 'ସୁଦୀପ୍ତ' ରଖାଗଲା । ସେହି ନାମଟିକୁ ସ୍କୁଲର ଭୂତପୂର୍ବ ଶିକ୍ଷକ ତଥା ଏଡ୍‌ଭୋକେଟ୍ ରାମପ୍ରସାଦ ମିଶ୍ର ବଡ଼ ପୁଅ ପ୍ରଦୀପ୍ତର ନାମର ସାମଞ୍ଜସ୍ୟ ନେଇ ପ୍ରସ୍ତାବ ଦେଲେ ଓ ସମସ୍ତେ ତାକୁ ଗ୍ରହଣ କଲେ ।

ମୋର ସ୍କୁଲରେ ସହକାରୀ ଭାବେ ଯୋଗ ଦେବାର କିଛି ଦିନ ପରେ ସ୍କୁଲରେ ଅସ୍ଥାୟୀ ଭାବେ କାର୍ଯ୍ୟ କରୁଥିବା ପ୍ରାଣକୃଷ୍ଣ ମିଶ୍ର ଓ ରାମପ୍ରସାଦ ମିଶ୍ର ସ୍କୁଲରୁ ଅବ୍ୟାହତି ନେଇ ଓକିଲାତି ଆରମ୍ଭ କରିଥିଲେ । ସେମାନେ ମୋର ପ୍ରଧାନ ଶିକ୍ଷକ ନିଯୁକ୍ତିରେ ଆନନ୍ଦିତ ହୋଇ ମୋର ବନ୍ଧୁ ପ୍ରାଣକୃଷ୍ଣ ଆଗ୍ରହ ସହ ପଗ୍ଚରିଲେ ଯେ ମୁଁ ହେ.ମା. ପାଇଁ ଉଦ୍ଦିଷ୍ଟ ଗୋଲ ଚୌକିରେ ବସିଲିଣି କି ନା ? ମୁଁ ତାଙ୍କ ଉତ୍ତରରେ 'ହଁ' କହିବାରୁ ଆନନ୍ଦିତ ହେଲେ ।

୧୯୫୭ ସାଲରେ ବୋଧ ହୁଏ ନଭେମ୍ବର ମାସରେ ପ୍ରାଦେଶିକ ପ୍ରଧାନ ଶିକ୍ଷକ ସେମିନାର ଅନୁଗୁଳରେ ଅନୁଷ୍ଠିତ ହୋଇଥିଲା । ଅନୁଗୁଳ ବେସିକ୍ ପ୍ରଶିକ୍ଷଣ କଲେଜ ଅଧ୍ୟକ୍ଷ ଶିକ୍ଷାବିତ୍ ଶ୍ରୀ ଶତ୍ରୁଘ୍ନନାଥ ସେଥିରେ ନିର୍ଦ୍ଦେଶକ ଥିଲେ । ସେଠାରେ ଯୋଗ ଦେବା ପାଇଁ ମୁଁ ଆଦେଶ ପାଇଥିଲି । ସେଠାକୁ ଯିବାରୁ ନିର୍ଦ୍ଦିଷ୍ଟ ଦିନରେ କାର୍ତ୍ତିକ ବାବୁ, ମୋର ଭଉଣୀ ଜୋଇଁଙ୍କ ସଙ୍ଗେ ଦେଖା ହେଲା । ସେ କଣ୍ଡକ୍ଟରରୁ ଷ୍ଟେସନ ମାଷ୍ଟର ଓ ପରେ ଟ୍ରାଫିକ୍ ଇନ୍ସପେକ୍ଟର ପଦବୀକୁ ଉନ୍ନୀତ ହୋଇଥିଲେ । ସେ ମୋର ଅନୁଗୁଳ ଯିବା ଶୁଣି ମୋର ଜିନିଷପତ୍ର ବସ୍‌ରେ ପଠାଇ ଦେଇ ମୋତେ ତାଙ୍କ ସରକାରୀ ମୋଟର ସାଇକଲରେ ନେଇ ଯିବାକୁ କହିଲେ । ଆମେ ସକାଳୁ ବାହାରି ପ୍ରାୟ ଅପରାହ୍ଣ ୪ଟା ବେଳେ ସେଠାରେ ପହଞ୍ଚି ସେ ବସ୍‌ରେ ଆସୁଥିବା ଜିନିଷକୁ ଅପେକ୍ଷା କରି ରହିଲୁଁ । ସେଠାରୁ ଜିନିଷପତ୍ର ନେଇ ପ୍ରଶିକ୍ଷଣ ମହାବିଦ୍ୟାଳୟରେ ପହଞ୍ଚିଲୁଁ ଓ ଆମ ପାଇଁ ଉଦ୍ଦିଷ୍ଟ ଛାତ୍ରାବାସରେ ବିଶ୍ରାମ କଲୁଁ । ତା'ର ପରଠାରୁ ପ୍ରାୟ ୧୫ ଦିନ ପର୍ଯ୍ୟନ୍ତ ସେମିନାର ଗ୍ଚଲିଲା - ବିଭିନ୍ନ ଶିକ୍ଷା ସମ୍ପର୍କୀୟ ବିଷୟବସ୍ତୁକୁ ନେଇ । ହଷ୍ଟେଲ୍‌ରେ ଆମେ ରହିବା ଖାଇବା ଆଦିର

ସୁବନ୍ଦୋବସ୍ତ କରା ଯାଇଥିଲା ଓ ଅଧକ୍ଷ ନିଜେ ତାର ତତ୍ତ୍ୱ ନେଉଥିଲେ। ଉକ୍ତ ରହଣୀ ସମୟରେ ୨ଟି ସ୍ମରଣୀୟ ଘଟଣା ଉଲ୍ଲେଖନୀୟ - ପ୍ରଥମଟି ହେଲା ଗୋଟିଏ ରବିବାର ଦିନରେ ହୀରାକୁଦ ଡେମ୍ ଭ୍ରମଣ - ରାତିରେ ଅନୁଗୁଳରୁ ବସ୍‌ରେ ବାହାରି ପ୍ରାତଃ ସମୟରେ ସମ୍ବଲପୁରରେ ପହଞ୍ଚି ଗଙ୍ଗାଧର ମେହେର କଲେଜରେ ପ୍ରାତଃ କୃତ୍ୟ ସାରି ହଷ୍ଟେଲ୍‌ରେ ଜଳଖିଆ କରି ହୀରାକୁଦ୍ ଡେମ୍ ଦର୍ଶନରେ ବାହାରିଲୁଁ। ଏସବୁର ଆୟୋଜନ ପାଇଁ ମେହେର କଲେଜ ଅଧକ୍ଷ ଡ଼ା. ପ୍ରହ୍ଲାଦ ପ୍ରଧାନଙ୍କୁ ଦାୟିତ୍ୱ ଦିଆ ଯାଇଥିଲା। ତେଣୁ ସେଥିରେ କୌଣସି ଅସୁବିଧା ହେଲା ନାହିଁ। ଡେମ୍ ଦେଖି ସାରି ଫେରିବା ବାଟରେ ସମଲେଶ୍ୱରୀ ମନ୍ଦିର ଦର୍ଶନ ପରେ ହଷ୍ଟେଲ୍ ମେସ୍‌ରେ ଭୋଜନ ସାରି ପ୍ରତ୍ୟାବର୍ତ୍ତନ ପାଇଁ ପ୍ରସ୍ତୁତ ହେଲା ବେଳକୁ ସନ୍ଧ୍ୟା। ବାଟରେ ବସ୍‌ରେ ଯିବା ବେଳେ ଅଧକ୍ଷଙ୍କ ପରାମର୍ଶ କ୍ରମେ ବୟସ୍କ ଓ ଅଭିଜ୍ଞ ପୁରୁଣା ଶିକ୍ଷକମାନଙ୍କ ସଂଗୀତ ଗାନ ବେଶ୍ ଉପଭୋଗ୍ୟ ହେଲେହେଁ ଅନୁଗୁଳରେ ପହଞ୍ଚିବା ବେଳେ ପ୍ରାୟ ରାତି ୧୦ଟା ପର ଓ ମେସ୍‌ରେ ଆମର ଖାଇବା ବ୍ୟବସ୍ଥା ହୋଇ ଥିବାରୁ ଖାଇପିଇ ବିଶ୍ରାମ ନେଲୁଁ ପରଦିନ ଆଲୋଚନା ସଭାରେ ଯୋଗ ଦେବା ପାଇଁ।

ଆଉ ଥରେ ଶେଷ ରବିବାର ଦିନ ଅନୁଗୁଳ ନିକଟସ୍ଥ ତାଳଚେର ରାଜପ୍ରାସାଦ ଓ କୋଇଲା କାରଖାନା ପରିଦର୍ଶନ ଏକ ସ୍ମରଣୀୟ ଘଟଣା। କାରଖାନା ଭିତରକୁ ଯିବା ପାଇଁ ଆଦେଶ ମିଳିଥିଲା। ତଥାପି କାରଖାନାରେ Liftରେ ତଳକୁ ଓହ୍ଲାଇବା ପୂର୍ବରୁ gateରେ ଥିବା ଏକ ରେଜିଷ୍ଟରରେ ନିଜେ ଦସ୍ତଖତ କରିବାକୁ ହେବ ଯେ କାରଖାନାକୁ ଓହ୍ଲାଇବା ପରେ ସେଠାରେ ବୁଲାବୁଲି କରି ଫେରିବା ପର୍ଯ୍ୟନ୍ତ କୌଣସି ଦୁର୍ଘଟଣା ଘଟିଲେ ନିଜେ ଦାୟୀ ଓ କମ୍ପାନୀ ବା ଅନ୍ୟ କେହି ଦାୟୀ ନୁହନ୍ତି, ତେବେ Liftରେ ବସିବାକୁ ଦେବେ। Liftରେ ଖଣିର ତଳକୁ ଓହ୍ଲାଇବା ଅନୁଭୂତି ସମ୍ପୂର୍ଣ୍ଣ ବିସ୍ମୟକର। କାନ୍ଥ କଡ଼ରୁ ଜଳଧାରା ନିର୍ଗତ ଓ ଉପରୁ ପବନର ପ୍ରବାହ ଅନୁଭବ। ସାରା ତଳଭାଗ ବିଜୁଳି ଆଲୁଅରେ ଉଦ୍ଭାସିତ। ଏପରି ଭାବେ ପ୍ରାୟ ୩୦୦/୪୦୦ ଫୁଟ ତଳକୁ ଓହ୍ଲାଇଲେ ଅଣଓସାରିଆ ଛକ ଦୃଷ୍ଟିରେ ଆସେ। ସେଠାରେ କର୍ମଚ୍ଚାରୀମାନେ ଓ କୁଲିମାନେ କର୍ମରତ। କିଏ ଟ୍ରକ୍‌ରେ କୋଇଲା ବୋଝାଉଛି ତ କିଏ ଖାଲି ସ୍ଥାନରେ ବାଲି ଭରୁଛି। ପୁଣି ସେଠାରୁ ଗୁରିଆଡ଼କୁ ଛୋଟ ଛୋଟ ରେଳ ଲାଇନ ପଡ଼ି ଟ୍ରଲିରେ କୋଇଲା ନେବା ଆଣିବାର ବ୍ୟବସ୍ଥା ଅଛି। ତାକୁ ଦେଖି ଦେଖି କୌତୁହଳ ମନେ ହେଲା। ସେ ଟ୍ରଲିରେ କିଛି ଦୂର ଯାଇ କୋଇଲା ଖନନ କାର୍ଯ୍ୟ ଦେଖିଲୁଁ ଓ କାରଖାନା

ଆଭ୍ୟନ୍ତରୀଣ କାର୍ଯ୍ୟ ସମ୍ପର୍କରେ ଏକ ସମ୍ୟକ୍ ଧାରଣା ହେଲା । ସେଠାରୁ ସଂଗୃହୀତ କୋଇଲା ସବୁ ମଧ୍ୟ ଟ୍ରଲିରେ ଅଣାଯାଇ କାରଖାନା ମୁଖ ବାଟେ ଉପରକୁ ଆସି ଜମା ହୁଏ । ଏସବୁ ଦେଖି ସାରିବା ପରେ ସମସ୍ତଙ୍କୁ ଗଣାଗଣି କରି ଲିଫ୍ଟରେ ଉପରକୁ ଆସି ଶଙ୍କିତ ମନକୁ ଶାନ୍ତ କଲୁଁ । ତାପରେ ରାଜବାଟୀକୁ ଯାଇ ବୁଲାବୁଲି କରି ଫେରି ଅନୁଗୁଳରେ ଭୋଜନ କଲୁଁ ।

ଉଦ୍‌ଯାପନ ଉତ୍ସବରେ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ ଆସିଥିଲେ । ପାଟଣାଗଡ଼ ହେ.ମା. ମନମୋହନ ବାବୁ ସଂଗୀତ ପରିବେଷଣ କରିଥିଲେ । ସେଥି ପାଇଁ ଅଧକ୍ଷ ବହୁତ ସନ୍ତୋଷ ପ୍ରକାଶ କଲେ । ଶେଷ ଦିନ ଆମେ ସବୁ ସେଠାରୁ ଅବ୍ୟାହତି ନେଇ ନିଜ ନିଜ ବିଦ୍ୟାଳୟରେ ଯୋଗ ଦେଲୁଁ । ଅନ୍ୟମାନଙ୍କ ମଧ୍ୟରେ ସମ୍ବଲପୁର ଜିଲ୍ଲା ସ୍କୁଲର ହେ.ମା. ନନ୍ଦକିଶୋର ରଥ, ବରପାଲି ହେ.ମା. ଗଣନାଥ ଗଡ଼ତିଆ  ଓ ଆଉ କେତେ ଡି.ଆଇ., ହେ.ମା. ଯୋଗ ଦେଇ ଥିବାରୁ ପ୍ରକୃତରେ ଏହା ଏକ ଅବିସ୍ମରଣୀୟ ଅନୁଭୂତି ହୋଇ ରହିଲା ।

ଅଯାଚିତ ଭାବେ ଏଡ଼େ ବଡ଼ ସ୍କୁଲର ଦାୟିତ୍ୱ ମିଳି ଥିବାରୁ ସର୍ବଦା ସତର୍କତା ସହ ଚଳିବାକୁ ହେଉଥିଲା, ଯେପରିକି କୌଣସି କ୍ଷେତ୍ରରେ ତ୍ରୁଟି ନ ରହେ । ଶାରୀରିକ ଓ ମାନସିକ ପରିଶ୍ରମ କରିବାକୁ ହେଲା । ଏହା ମୋର ମୁଖ୍ୟ ଉଦ୍ଦେଶ୍ୟ ହେଲା - ସର୍ବାଙ୍ଗ ଉନ୍ନତି ଓ ସୁନାମ ପାଇଁ ଛାତ୍ରମାନଙ୍କ ପଠନ ଓ ପରୀକ୍ଷାଫଳ ଓ ସର୍ବୋପରି ଶୃଙ୍ଖଳା ଓ ଚରିତ୍ର ଗଠନ ଏକାନ୍ତ ଆବଶ୍ୟକ । ସେଥି ସକାଶେ ନିଷ୍ଠା, ତ୍ୟାଗ ଓ ଆଦର୍ଶର ଏକାନ୍ତ ପ୍ରୟୋଜନ । ତେଣୁ ମୋତେ ଏ ସବୁ ପ୍ରତି ଦୃଷ୍ଟି ଦେବାରେ କଠୋର ପରିଶ୍ରମ କରିବାକୁ ହେଲା । ସେତେବେଳେ ମୋର ବୟସ ୩୦ ବର୍ଷରୁ କମ୍ ଓ ସ୍କୁଲର ଦାୟିତ୍ୱ ସୁରୁଖୁରୁ ରୂପେ ଚଳାଇବା ପାଇଁ ଏକ ଚରମ ପରୀକ୍ଷା ତଥା ପରମ ସୌଭାଗ୍ୟ ମନେ କରି ବିଶିଷ୍ଟ ବ୍ୟକ୍ତି, ଗୁରୁଜନଙ୍କର ଆଶୀର୍ବାଦ ଓ ଅନ୍ୟାନ୍ୟମାନଙ୍କ ଶୁଭେଚ୍ଛା କାମନା କରି ମୋର କର୍ତ୍ତବ୍ୟ ପଥରେ ଆଗେଇବାକୁ ହେଲା । ଶ୍ରୀ ବୈକୁଣ୍ଠନାଥ ପଟ୍ଟନାୟକ ଏକ ଲେଖକ, କବି ଓ ଜ୍ଞାନୀ ଶିକ୍ଷାବିତ୍ ଥିଲେ । ସେ ଡାଙ୍କ ସ୍କୁଲ ପରିଦର୍ଶନରେ ଆସି ଆମ ସ୍କୁଲ ପରିଦର୍ଶନ କରି ମଧ୍ୟମ ଧରଣର ମତାମତ ଘୋଷଣା କରିଥିଲେ । କାରଣ ତାଙ୍କର କୌଣସି ବିଷୟ ପ୍ରତି ଏତେ ଆନ୍ତରିକତା ଥିବାର ଦେଖାଗଲା ନାହିଁ ଯଦିଓ ସେ ଏକ ଉଚ୍ଚ ଧରଣର ସବୁଜ ଯୁଗର କବି ଥିଲେ । ତାଙ୍କର ଝିଅ ସୁନନ୍ଦା ପଟ୍ଟନାୟକ ଏକ ଖ୍ୟାତି ସମ୍ପନ୍ନ କଣ୍ଠଶିଳ୍ପୀ ଥିଲେ ଓ ସେ ଚିରକୁମାରୀ ରହିଗଲେ । ସ୍କୁଲ କାମ ଚାଲିଲା, ପରୀକ୍ଷା ହେଲା, ଫଳ ବାହାରିଲା ଇତ୍ୟାଦି ।

ଜଣେ ଶିକ୍ଷକ...

ସେତେବେଳେ ଆମ ବିଦ୍ୟାଳୟ ବଲାଙ୍ଗୀର ମଣ୍ଡଳ ଅଧୀନରେ ଥିଲା। ମଣ୍ଡଳାଧୀଶ ଶ୍ରୀ ଫଣୀଭୂଷଣ ଦାସଙ୍କ ପରେ ଶ୍ରୀ ବୈକୁଣ୍ଠନାଥ ପଟ୍ଟନାୟକ ଓ ତାଙ୍କ ପରେ ଶ୍ରୀ ଦୀନବନ୍ଧୁ ପାଣିଗ୍ରାହୀ ବିଲାତ ଫେରନ୍ତା ଆମ ମଣ୍ଡଳାଧିକାରୀ ରୂପେ ଯୋଗ ଦେଲେ। ସେ ମହାଶୟ ତାଙ୍କର ନିୟମିତ ସ୍କୁଲ ପରିଦର୍ଶନ ପାଇଁ ଆସିଲେ। ମୋର କାର୍ଯ୍ୟକଳାପ ଓ ସ୍କୁଲ ଶ୍ରେଣୀ ତଥା ଅନ୍ୟାନ୍ୟ ପରିସ୍ଥିତି - ସ୍କୁଲ ଘରଦ୍ୱାର, ଅଧୀନସ୍ଥ ଜମି ଖେଳପଡ଼ିଆ ଆଦି ବୁଲି ଦେଖିବା ବେଳେ ସେ ଅତିଶୟ ଉତ୍କଣ୍ଠାରେ କହିଥିଲେ 'ଆଚ୍ଛା' Well Mr. Dash, how could you become Headmaster of such a big school ? ତାଙ୍କର କହିବାର ଉଦ୍ଦେଶ୍ୟ ଥିଲା ଯେ ମୋର ବୟସର ସ୍ୱଳ୍ପତା ଦୃଷ୍ଟିରୁ ଏପରି ଏକ ବିରାଟ ସ୍କୁଲର ଦାୟିତ୍ୱ କିପରି ମୋତେ ମିଳି ପାରିଲା ? ମୁଁ ତାର ଉତ୍ତରରେ କହିଥିଲି, "They made me Headmaster and then I became such, How can I help it Sir ?" ପୁଣି କିଛି ସମୟ ପରେ ସ୍କୁଲ ସବୁ ପଟେ ବୁଲାବୁଲି କରି ପୁଣି ପୂର୍ବ ପ୍ରଶ୍ନ ପଚାରିଥିଲେ ଓ କାରଣ ଜାଣିବାକୁ ଚାହିଁଥିଲେ। ମୁଁ କିନ୍ତୁ ପୂର୍ବ ଭଳି ଉତ୍ତର ଦେଇ ନୀରବ ରହିଲି। ଅବଶ୍ୟ ପରେ ମୋର କର୍ତ୍ତବ୍ୟନିଷ୍ଠା, ଶିକ୍ଷାନୁରାଗ ଓ ସ୍କୁଲ ପରିଚାଳନାରେ ଖୁସି ହୋଇ ଏକ ଯୋଗ୍ୟ ଶିକ୍ଷକ ରୂପେ ବାଛିଥିଲେ।

ସ୍କୁଲ ସମ୍ପାଦକ କହ୍ନେୟାଲାଲ ସାହୁ ମଧ୍ୟ ସ୍କୁଲ କାର୍ଯ୍ୟରେ ସୁଚାରୁ ରୂପେ ପରିଚାଳନା ପାଇଁ ପରାମର୍ଶ ଦେଉଥିଲେ। ସେହି ବର୍ଷର ଶେଷ ଭାଗରେ ଏକ ସରକାରୀ ଚିଠି ଆସିଲା ଯେ ଯେଉଁ ବେସରକାରୀ ବିଦ୍ୟାଳୟଗୁଡ଼ିକର ଘରଦ୍ୱାର, ଜମିବାଡ଼ି ଆଦି ନିଜସ୍ୱ ଓ ଅବସ୍ଥା ସ୍ୱଚ୍ଛଳ ସେପରି ସ୍କୁଲଗୁଡ଼ିକୁ ଆଖି ଆଗରେ ରଖି ଏ ଚିଠିଟି ଲେଖାଥିଲା। କାରଣ ସେତେବେଳେ ବେସରକାରୀ ବିଦ୍ୟାଳୟମାନଙ୍କୁ ସ୍କୁଲର ଯାହା ନ୍ୟାୟୋଚିତ ବିଧିପୂର୍ବକ ଖର୍ଚ୍ଚ ତାଠାରୁ ସ୍କୁଲର ପିଲାମାନଙ୍କ ଫିଜ୍‌ରୁ ଆଦାୟ ପରିମାଣ ବାଦ ଦେଇ ବାକୀ ଅଂଶର ୨/୩ ଅଂଶ ଅନୁଦାନ ରୂପେ ଦିଆ ଯାଉଥିଲା। ତେଣୁ ସେପରି ସ୍ୱଚ୍ଛଳ ଅବସ୍ଥା ସମ୍ପନ୍ନ ବିଦ୍ୟାଳୟଗୁଡ଼ିକୁ ପୂର୍ଣ୍ଣ ନିଅଣ୍ଟ ଘଟୁଥିବା ପରିମାଣ ଅନୁଦାନ ଦିଆଯିବ ବୋଲି ନିଷ୍ପତ୍ତି ଦେଇ - ସରକାରୀ ଚିଠି ଆସିଥିଲା। ସେଥିରେ ସର୍ତ୍ତ ଥିଲା ଯେ ପରିଚାଳନା ସମିତିର ସମସ୍ତ ସଭ୍ୟ ଏକତ୍ରିତ ଭାବେ ସ୍ୱାକ୍ଷର କରି ସ୍କୁଲର ସ୍ଥାବର, ଅସ୍ଥାବର ସବୁ ସମ୍ପତ୍ତିକୁ ସରକାରଙ୍କୁ ହସ୍ତାନ୍ତର କରିବା ପାଇଁ ଇଚ୍ଛୁକ ବୋଲି ଏକ ପ୍ରସ୍ତାବ ଗ୍ରହଣ କରିବେ ଓ ତାର ଏକ ନକଲ ଓ ସ୍କୁଲର ଯାବତୀୟ ସମ୍ପତ୍ତି ତାଲିକା ସରକାରଙ୍କଠାରେ ନିର୍ଦ୍ଦିଷ୍ଟ ତାରିଖ ପୂର୍ବରୁ ମଣ୍ଡଳାଧୀଶଙ୍କ ଜରିଆରେ ଦାଖଲ କଲେ, ସରକାର ସେ ବିଷୟ ବିଚାର

କରି ସ୍ୱୀକୃତିନାମା ଘୋଷଣା କରିବେ । ସେପରି ବିଦ୍ୟାଳୟଗୁଡ଼ିକ "Full Net Deficit" "ସମ୍ପୂର୍ଣ୍ଣ ନିଅଣ୍ଟିଆ ଅନୁଦାନ" ସ୍କୁଲ ରୂପେ ପରିଗଣିତ ହେବ । ଏହା ଥିଲା ତତ୍କାଳୀନ ଶିକ୍ଷା ମନ୍ତ୍ରୀ ଶ୍ରୀଯୁକ୍ତ ଲିଙ୍ଗରାଜ ପାଣିଗ୍ରାହୀଙ୍କ ସୁଚିନ୍ତିତ ଚିନ୍ତାଧାରା । ତାର ଯଥାର୍ଥତା ମନେ କରି ତତ୍କାଳୀନ ମୁଖ୍ୟମନ୍ତ୍ରୀ ଡ଼ା. ମହତାବ ମନ୍ତ୍ରୀମଣ୍ଡଳ ଏହାକୁ ଗ୍ରହଣ କରିଥିଲେ । ଏହା ପ୍ରକୃତରେ ଏକ ଦୂରଦୃଷ୍ଟି ସମ୍ପନ୍ନ ଓ ସଫଳୀକୃତ ପ୍ରସ୍ତାବ । କାରଣ ବଡ଼ ବଡ଼ ସ୍କୁଲମାନଙ୍କ ଘରଦ୍ୱାର, ଡିହ ବାଡ଼ି ଓ ଆୟ ତୁଳନାରେ ସେମାନଙ୍କୁ ନିଅଣ୍ଟ ପରିମାଣର ୨/୩ ଅଂଶ ଦିଆ ଯାଉଥିବା ବଦଳରେ ସମ୍ପୂର୍ଣ୍ଣ ସାହାଯ୍ୟ ଦେଲେ ସରକାରୀ କର୍ତ୍ତୃତ୍ୱ ବଳବତ୍ତର ହେବ ଓ ସ୍କୁଲମାନଙ୍କର ଅବସ୍ଥାର ଉନ୍ନତି ହେବ । ଏହା ଥିଲା ଏହି ପ୍ରସ୍ତାବର ମୂଳ ଉଦ୍ଦେଶ୍ୟ ।

ଏହି ଚିଠିର ବିଚାର ପାଇଁ ଏକ ଜରୁରୀ ବୈଠକ ପରିଚାଳନା କମିଟୀର ଡକା ହେଲା ଓ ସେଥିରେ ଏ ସମ୍ବନ୍ଧୀୟ ପୁଙ୍ଖାନୁପୁଙ୍ଖ ଆଲୋଚନା କରାଗଲା । ସେତେବେଳେ ଜର୍ଜ ହାଇସ୍କୁଲର ଆର୍ଥିକ ପରିସ୍ଥିତି ସେତେ ସ୍ୱଚ୍ଛଳ ନ ଥିଲା । ଏହା ପୂର୍ବରୁ କେତେ ବର୍ଷ ଧରି ସମାଜରେ ବ୍ୟାବହାରିକ ବସ୍ତୁଗୁଡ଼ିକର ଦରଦାମ ବୃଦ୍ଧି ହେତୁ ସ୍ଥାନୀୟ ଜଚ୍ଛି ମୋଟର ଟ୍ରାନ୍ସପୋର୍ଟର କର୍ମକର୍ତ୍ତାଗଣ ସହୃଦୟତା ସହ ତାଙ୍କ ଯାତ୍ରୀମାନଙ୍କଠାରୁ କିଛି କିଛି ଅଧିକା ଅର୍ଥ ଆଦାୟ କରି ସ୍କୁଲକୁ ପ୍ରତି ମାସ ଅନୁଦାନ ଆକାରରେ ଦେଉଥିଲେ । ତାହା "Lorry Contribution" ନାମରେ ମିଳୁଥିଲା । କିନ୍ତୁ ପରିବହନ ବିଭାଗର ଜାତୀୟକରଣ ପରେ ତାହା ବନ୍ଦ ହୋଇଗଲା । ତେଣୁ ଅଭିଭାବକ ସମ୍ମିଳନୀରେ ଗୃହୀତ ପ୍ରସ୍ତାବ ଅନୁସାରେ ପ୍ରତି ମାସରେ ପ୍ରତ୍ୟେକ ଛାତ୍ରଛାତ୍ରୀଙ୍କ ଠାରୁ ୭ମ ଶ୍ରେଣୀ ପର୍ଯ୍ୟନ୍ତ ଟ୦୫ ଓ ୮ମ ରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ଟ୧ ହିସାବରେ ସ୍କୁଲ ଉନ୍ନୟନ ପାଣ୍ଠି School Development Fund ରୂପେ ସଂଗୃହୀତ ହୋଇ ସ୍କୁଲର ଦୂରବସ୍ଥାକୁ ସମ୍ଭାଳିବା ସମ୍ଭବ ହେଲା ।

ତେଣୁ ସରକାରୀ ଚିଠିର ବିଚାର ପାଇଁ ଡକା ଯାଇଥିବା କମିଟୀର ସଦସ୍ୟମାନେ ବହୁ ସମୟ ଧରି ବିଚାର ବିମର୍ଷ କରି ଏହି ସିଦ୍ଧାନ୍ତ ଦେଲେ ଯେ ଉପସ୍ଥିତ ପରିସ୍ଥିତିରେ ସ୍କୁଲର ଭବିଷ୍ୟତକୁ ଆଖି ଆଗରେ ରଖି ସରକାରଙ୍କ ପ୍ରସ୍ତାବରେ ସେମାନେ ସମ୍ପୂର୍ଣ୍ଣ ରାଜି ହୋଇ ଓ ସ୍କୁଲର କୋଠାବାଡ଼ି, ଆସବାବ ଓ ଅନ୍ୟାନ୍ୟ ସ୍ଥାବର ଅସ୍ଥାବର ସମ୍ପତ୍ତିକୁ ସରକାରଙ୍କୁ ଅର୍ପଣ କରିବେ ଓ ନୂତନ ପଟ୍ଟାରେ ଏହି ସ୍କୁଲକୁ ଅନୁଦାନ ଦେବା ପାଇଁ ଅନୁରୋଧ କଲେ । ତେଣୁ ସେ ପ୍ରସ୍ତାବ ଅନୁସାରେ ତାର ଅବିକଳ ନକଲ ମଣ୍ଡଳାଧୀଶଙ୍କ ଠାକୁ ପଠା ଗଲା ଓ ଉପରିସ୍ଥ

ସରକାରୀ ଆଦେଶନାମାକୁ ଅପେକ୍ଷା କରିବାକୁ ହେଲା । ଅବଶ୍ୟ ଏତଦ୍ୱାରା ସ୍ଥାନୀୟ ବ୍ୟକ୍ତିବିଶେଷଙ୍କର ଆଉ ପ୍ରଭୁତ୍ୱ ରହିଲା ନାହିଁ । ଯଦିଓ ସ୍କୁଲର ପରାମର୍ଶଦାତା କମିଟୀ ରୂପେ ଏକ କମିଟୀ ରହିଲା ଓ ସେହି ପରିଚାଳନା କମିଟୀର କେତେକ ବିଶିଷ୍ଟ ସଦସ୍ୟ କମିଟୀରେ ରହିଲେ । ସ୍କୁଲ ପରିଚାଳନା ଓ ଶିକ୍ଷକଙ୍କ ଦରମା ଅର୍ଥ ପ୍ରଦାନ ସେମାନଙ୍କ କର୍ତ୍ତୃତ୍ୱରେ ନ ଥିବାରୁ ତାଙ୍କର ପରିଚାଳନାରେ ସେମାନଙ୍କର ସ୍ୱର କ୍ଷୀଣତର ହେଲା ଓ ମଣ୍ଡଳାଧୀଶ ସ୍କୁଲର ସର୍ବେସର୍ବା ହେଲେ ତଥା ପ୍ରଧାନ ଶିକ୍ଷକ ସମ୍ପାଦକ ରୂପେ ରହିଲେ ।

ଜର୍କ ହାଇସ୍କୁଲ 'Full Net Deficit' ସ୍କୁଲ ରୂପେ ପରିଚାଳିତ ହେବାକୁ କମିଟୀ ପ୍ରସ୍ତାବ ଗ୍ରହଣ କରି ସରକାରଙ୍କୁ ନିଜର ସର୍ବସ୍ୱ ଦାନ କରି ନିଜର ହକ୍‌ରୁ ଓହରିଯିବାର ସର୍ବସମ୍ମତ ପ୍ରସ୍ତାବକୁ ସରକାରଙ୍କ ନିକଟକୁ ପ୍ରେରଣ ଶୁଣି କେତେକ ସହୃଦୟ ଓ ବିଚାରବନ୍ତ ପୁରାତନ ଛାତ୍ର, ଅଭିଭାବକ ତଥା ସମାଜର ପ୍ରତିଷ୍ଠିତ ବ୍ୟକ୍ତିଗଣ ଆଶ୍ୱସ୍ତ ହେଲେ । କିନ୍ତୁ କେତେକ ସ୍ୱାର୍ଥାନ୍ୱେଷୀ ସ୍ୱାଭିମାନୀ କ୍ଷମତାଲିପ୍ସୁ ତଥା ଜାତୀୟବାଦୀ ବ୍ୟକ୍ତି ଏ ପ୍ରସ୍ତାବ ଶୁଣି ନାକ ଟେକିଲେ ଓ ସ୍କୁଲର ଆସବାବ, ଭୂସମ୍ପତ୍ତି, କୋଠାବାଡ଼ି ଆଦି ଲକ୍ଷାଧିକ ଟଙ୍କାର ବେସରକାରୀ ଅମାତା ଅପୁତ୍ରୀ, ସ୍କୁଲର ଭବିଷ୍ୟତ କିଛି ଚିନ୍ତା ନ କରି କେବଳ କୁତ୍ସାରଟନା କରି ବସିଲେ । ହେଲେ ସେତେବେଳକୁ ଆଉ କାହାରି କିଛି କହିବା ଓ ଆପତ୍ତି କରିବାର ଅବକାଶ ନ ଥିଲା । କାରଣ ଏଠାରୁ ସବୁ କାଗଜପତ୍ର ଯାଇ ସରକାରୀ ସ୍କୁଲରେ ପୁଙ୍ଖାନୁପୁଙ୍ଖ ରୂପେ ସର୍ବେକ୍ଷଣ କରାଯାଇ ପ୍ରଦେଶର ଆମ ଭଳି ପ୍ରାୟ ୬୪ଟି ଉପଖଣ୍ଡର ସଦର ମହକୁମା ବା ବିଶିଷ୍ଟ ସ୍ଥିତିବାନ ଓ ସ୍ୱଚ୍ଛଳ ବିଦ୍ୟାଳୟ ଗୁଡ଼ିକ Full Net Deficit ରୂପେ ତା. ୧.୭.୫୮ରୁ ସରକାରୀ ଘୋଷଣାନାମା ଜାରି ହୋଇଗଲା । ତାର ପୂର୍ବବର୍ତ୍ତୀ ପଦକ୍ଷେପ ସକାଶେ ସମ୍ପୃକ୍ତ ମଣ୍ଡଳାଧୀଶମାନଙ୍କୁ ସରକାରୀ ଆଦେଶ ଦିଆଗଲା ଯେ ସେପରି ସରକାରୀ ପୂର୍ଣ୍ଣ ନିଅଣ୍ଟିଆ ଅନୁଦାନ ପାଇବାକୁ ନିର୍ଦ୍ଧାରିତ ବିଦ୍ୟାଳୟମାନଙ୍କର ଜମା, ଖର୍ଚ୍ଚ, ଆୟ, ବ୍ୟୟ ସମୀକ୍ଷା ଓ ତନଖି କରି ବିଦ୍ୟାଳୟର ସୂଚୀମାଛି ପରୀକ୍ଷା କରି ଏକ ସୁବିସ୍ତୃତ ସମ୍ପତ୍ତି ତାଲିକା ଓ ଅବ୍ୟବହୃତ ବେସରକାରୀ, ଘରୋଇ ତଥା ସରକାରୀ ବକେୟା ପାଣ୍ଠିର ଏକ ସମ୍ପୂର୍ଣ୍ଣ ସମୀକ୍ଷା ଫର୍ଦ୍ଦ (Audit Report) ଓ ସମ୍ପତ୍ତି ତାଲିକା (Inventory List) ତଥା Assets ଓ Liabilityର ଏକ ହିସାବ (ମହଜୁଦ ପାଣ୍ଠି, କୋଠାବାଡ଼ି ଓ ଆସବାବସବୁ ଯଦି କିଛି ଧାର ଉଧାର ଓ ବକେୟା ଦେୟ ପୈଠ କରିବାର ଥାଏ) ସରକାରଙ୍କୁ ୩୦.୬.୫୮ ସୁଦ୍ଧା ପଠାଇବାକୁ ଆଦେଶ ଥିଲା । ଏହାର ମୁଖ୍ୟ

ଉଦ୍ଦେଶ୍ୟ ଏହା ଯେ ଯଦି ଦେୟ ଆଦି ପରିଶୋଧ କଲା ପରେ ମଧ୍ୟ ବଳକା ପାଣ୍ଠି ବିଦ୍ୟାଳୟର ଅଛି ତେବେ ସରକାର ତାଙ୍କୁ ଏହି ନୂତନ ଗୋଷ୍ଠୀର ସ୍କୁଲ ରୂପେ ଗ୍ରହଣ କରିବାରେ ଆପତ୍ତି କରିବେ ନାହିଁ। ଆମ ଅଫିସକୁ Auditor ଆସି ସମୀକ୍ଷା କରି ଠିକ୍ ସମୟରେ ସରକାରଙ୍କୁ ରିପୋର୍ଟ ପଠାଇଲେ ଓ ସେହି ସମୟରେ ସ୍କୁଲ ସକାଶେ ସାଇକେଲ ବା ଅନ୍ୟାନ୍ୟ ଯାହା ସବୁ ଆବଶ୍ୟକୀୟ ବସ୍ତୁ କିଣିବାରେ ଓ ତାକୁ ସ୍କୁଲର ସମ୍ପତ୍ତି ତାଲିକାରେ ଭୁକ୍ତ କରିବାକୁ ଇନ୍ସପେକ୍ଟର ଅଫିସରୁ ଅଡ଼ିଟର ଯଥାସମ୍ଭବ ଚେଷ୍ଟା କରି ସ୍କୁଲର ଅନେକ ଅସୁବିଧା ପରିପୂର୍ଣ୍ଣ କରାଗଲା। ଫଳରେ ୧.୭.୫୮ରୁ ଆମ ଜର୍ଜ ହାଇସ୍କୁଲ Full Net Deficit ସରକାରୀ ସ୍କୁଲ ରୂପେ ଧାର୍ଯ୍ୟ ହୋଇ ନିଜକୁ ସାବ୍ୟସ୍ତ କରି ପ୍ରଗତି ପଥରେ ଆଗେଇଲା।

ମୋର ହେ.ମା. ଦାୟିତ୍ୱ ନେଲା ପରେ ତତ୍କାଳୀନ ମଣ୍ଡଳାଧୀଶ ଶ୍ରୀ ଦୀନବନ୍ଧୁ ପାଣିଗ୍ରାହୀ ବିଭିନ୍ନ ସରକାରୀ ଶାସନଭୁକ୍ତ ନୂତନ ବିଦ୍ୟାଳୟର ପ୍ରଧାନ ଶିକ୍ଷକମାନଙ୍କୁ ଡକାଇ ସମସ୍ତ ବିଦ୍ୟାଳୟର ସୁବିଧା ଅସୁବିଧା ବୁଝିବାକୁ ଚେଷ୍ଟା କଲେ। କାରଣ ସ୍କୁଲର ସମୂହ ଦାୟିତ୍ୱ ତାଙ୍କ ଉପରେ ଓ ପ୍ରଧାନ ଶିକ୍ଷକ ତାଙ୍କ ପ୍ରତିନିଧି ରୂପେ ରହିଲେ। ତେଣୁ ପ୍ରଧାନ ଶିକ୍ଷକଙ୍କ ଦାୟିତ୍ୱର ଗୁରୁତ୍ୱ ବଢ଼ିଲା ଓ ତାଙ୍କୁ ମଣ୍ଡଳାଧୀଶ ପୂର୍ଣ୍ଣ ମାତ୍ରାରେ ବିଶ୍ୱାସ କରି ସୁପରାମର୍ଶ ନେଇ କାର୍ଯ୍ୟରେ ଆଗେଇବାକୁ ଉପଦେଶ ଦେଲେ। ତେଣୁ ଖାଲି ପଡ଼ିଥିବା ସ୍ଥାନରେ ଶିକ୍ଷକ ନିଯୁକ୍ତି ବା ସମୟାନୁରୂପ ପଦକ୍ଷେପ ନେବାର ପୂର୍ଣ୍ଣ ଦାୟିତ୍ୱ ହେ.ମା.ଙ୍କୁ ପ୍ରଦାନ କରାଗଲା। ଏଣୁ ଉପଯୁକ୍ତ ଶିକ୍ଷକ ବାଛିବା ସ୍କୁଲ ମରାମତି କାମ ପାଇଁ ନିଜ ଉପରେ ଦାୟିତ୍ୱ ବଢ଼ିଗଲା।

ସେତେବେଳେ ବରଗଡ଼ର S.D.O. ନୂଆ ଆସିଥାନ୍ତି Mr.V.R.Rao. ସେ ମହାଶୟ ସ୍କୁଲର ପରିଚାଳନା କମିଟୀର ସଭାପତି ରୂପେ ଯୋଗ ଦେଲା ପରେ ବିଦ୍ୟାଳୟର ଛାତ୍ର ସଂଖ୍ୟା ଓ କୋଠରୀ ଓ ସ୍କୁଲଘର ଦୃଷ୍ଟିରୁ ପ୍ରଧାନ ସ୍କୁଲଘର, ଗୀତା ହଷ୍ଟେଲ୍‌କୁ ମିଶାଇ ୨୫/୨୬ଟା କୋଠରୀ ଥିଲେ ମଧ୍ୟ ସ୍କୁଲର ସୁପରିଚାଳନା ଦୃଷ୍ଟିରୁ ବିଭିନ୍ନ ଶ୍ରେଣୀ ବିଭାଗ ପାଇଁ ଆବଶ୍ୟକୀୟ କୋଠରୀ ନ ଥିଲା। ତେଣୁ ଉକ୍ତ ମହାଶୟ ଆପ୍ରାଣ ଚେଷ୍ଟା କରି ଆଉ ୪ଟି କୋଠରୀ ତିଆରି କରିବା ପାଇଁ ପାଣ୍ଠି ଯୋଗାଡ଼ କରିବାରେ ଲାଗିଲେ। ଏପରିକି କୌଣସି ସ୍ଥାନୀୟ ବ୍ୟକ୍ତି ତାଙ୍କ ପୁଅ/ଝିଅର ବାହାଘର ପାଇଁ ତାଙ୍କୁ ନିମନ୍ତ୍ରଣ କଲେ ସେ ରୋକଠୋକ ମନା କରି ଦେଉଥିଲେ। କିନ୍ତୁ ଯଦି ତାଙ୍କୁ ବିଶେଷ ଅନୁରୋଧ କରୁଥିଲେ ସେ ସ୍କୁଲଘର ତିଆରି ପାଇଁ ଅନ୍ତତଃ ଏକଶତ ଟଙ୍କା ସାହାଯ୍ୟ ଦେଲେ ହୁଏତ ସେ ନିମନ୍ତ୍ରଣ ରକ୍ଷା

କରିପାରନ୍ତି । ତେଣୁ ବାଧ ହୋଇ ନିମନ୍ତ୍ରଣକାରୀମାନେ ସେଥିରେ ରାଜି ହେଉଥିଲେ । ଅର୍ଥାତ୍ ପାଣ୍ଠି ସଂଗ୍ରହର ଏହା ଏକ ଆଳ ବା ଅଭିନବ ଉପାୟ କହିଲେ ଚଳେ । ଏପରିଭାବେ କୌଣସି ମତେ ଟ.୧୮୦୦୦ର ପାଣ୍ଠି ଯୋଗାଡ଼ କରି ତତ୍କାଳୀନ ଅର୍ଥ/ଶିକ୍ଷାମନ୍ତ୍ରୀ ରାଧାନାଥ ରଥଙ୍କୁ ନିମନ୍ତ୍ରଣ କରି ନୂତନ ସ୍କୁଲଘରର ୪ଟି କୋଠରୀର ଶୁଭ ଦିଆଯାଇ ଥିଲା । ଏଥିରେ ସହଯୋଗ କରିଥିଲେ ତତ୍କାଳୀନ ମୁନିସିପାଲଟି ଚେୟାରମେନ ସ୍ୱର୍ଗତ ସେବାରାମ ଫଂସାରୀ । ଭିତ୍ତିପ୍ରସ୍ତର ସ୍ଥାପନ ପାଇଁ ଆବଶ୍ୟକ ରୂପାର ପାତ୍ର ଓ କରଣୀ ନିଜ ଖର୍ଚ୍ଚରେ ତିଆରି କରାଇ ଆଣିଥିଲେ । ଉତ୍ସବ ପରେ ତାହା ସ୍କୁଲକୁ ଦାନ କରିଥିଲେ । ତାହା ମୋର ସ୍କୁଲ ପରିତ୍ୟାଗ ପର୍ଯ୍ୟନ୍ତ ମହଜୁଦ ଥିଲା । ପରବର୍ତ୍ତୀ ଘଟଣା ବିଷୟରେ ମୋତେ ଜଣା ନାହିଁ । ପରବର୍ତ୍ତୀ ପ୍ରାୟ ୨/୪ ମାସରେ ଘର ତିଆରି ହେଲା ଓ ରୀତିମତ ସେଠାରେ ଶ୍ରେଣୀ ଚାଲିଲା ।

ପରମ ମାନନୀୟ ସ୍କୁଲର କମିଟି ସଂଦସ୍ୟ ସେବାରାମ ଫଂସାରୀଙ୍କଠାରୁ ଖବର ମିଳିଲା ଯେ ଜୁଲାଇ/ଅଗଷ୍ଟ ମାସରେ ମୁଖ୍ୟମନ୍ତ୍ରୀ ମହତାବଙ୍କ ବରଗଡ଼ ଆସିବାର ହେଉଛି ଓ ତାଙ୍କୁ ନାଗରିକ ସମ୍ବର୍ଦ୍ଧନା ଦିଆଯିବ । ସେହି ସମୟରେ ମୁଖ୍ୟମନ୍ତ୍ରୀ ସ୍କୁଲ ପାଇଁ କିଛି ସମୟ ଦେଇ ପାରିବେ କି ବୋଲି ଜଣାଇବାରୁ ଫଂସାରୀଜୀ ଆଗ୍ରହରେ ତାଙ୍କୁ ଅନୁମୋଦନ କରି ସମୟ ନିଶ୍ଚୟ ମିଳିବ ବୋଲି ପ୍ରତିଶୃତି ଦେଲେ । ତେଣୁ ବିଦ୍ୟାଳୟରେ ଏକ ପୁରସ୍କାର ବିତରଣୀ ସଭା ଆୟୋଜନର ପ୍ରସ୍ତୁତି ଚାଲିଲା । ପୁରସ୍କାର ବିତରଣୀ ସଭା ସାଙ୍ଗରେ ବିଜ୍ଞାନ ପ୍ରଦର୍ଶନୀ, ସ୍କୁଲ ସଫା ସୁତୁରା ଓ ପୁରସ୍କାର ପାଇବାର ଛାତ୍ରଛାତ୍ରୀଙ୍କର ତାଲିକା ଆଦି ପ୍ରସ୍ତୁତିରେ ଶିକ୍ଷକମାନେ ଲାଗି ପଡ଼ିଲେ ଓ ଏକ ବିଚିତ୍ରା ପ୍ରଦର୍ଶନ ପାଇଁ ଛାତ୍ର ଓ ଶିକ୍ଷକମାନେ ମଧ ପ୍ରାଣପଣେ ସହଯୋଗ କଲେ । ସେତେବେଳେ ସ୍ଥାନୀୟ S.D.O. ଥାନ୍ତି ରାଧାମୋହନ ମହାନ୍ତି । ସେ ମହାଶୟ ମୁଖ୍ୟମନ୍ତ୍ରୀଙ୍କ କାର୍ଯ୍ୟକ୍ରମ ସ୍ଥିର ହୋଇଯିବାରୁ ସ୍କୁଲକୁ ଆସି ସବୁ ଦେଖି ପରଖି ଗଲେ । ସେଠାରେ ତାଙ୍କ ସଙ୍ଗେ ମୋର ପ୍ରଥମ ଦେଖା । ଅବଶ୍ୟ ତାଙ୍କର ୩ ଜଣ ଝିଅ ଆମ ସ୍କୁଲର ଛାତ୍ରୀ ଥିଲେ । ସମସ୍ତ ବିଷୟ ପ୍ରସ୍ତୁତି ଓ ରୂପରେଖ ପୂରା ଦମରେ ଚାଲିଥିବା ବେଳେ ସରକାରୀ ଖବର ମିଳିଲା ଯେ ମନ୍ତ୍ରୀ ସ୍କୁଲ ପାଇଁ ଅଧ ଘଣ୍ଟାରୁ ଅଧିକ ସମୟ ଦେଇ ପାରିବେ ନାହିଁ । ତାଙ୍କୁ ସୁହାଇଲା ଭଳି କାର୍ଯ୍ୟକ୍ରମ କରିବାକୁ ହେଲେ ବିଚିତ୍ରାରୁ କେତେକ ଅଂଶ ବାଦ ନ ଦେଲେ ଚଳିବ ନାହିଁ । ତେଣୁ କେତେକ କାର୍ଯ୍ୟକ୍ରମକୁ ବାଦ ଦେଇ ଛାତ୍ରଙ୍କୁ ଜଣାଇ ଦେଲୁଁ ଯେ ବିଚିତ୍ରା ପ୍ରଦର୍ଶନ ତାଙ୍କର ହେବ ନାହିଁ ।

କିନ୍ତୁ ତାଙ୍କୁ ପୁରସ୍କାର ଦିଆଯିବ । ଏହା ଶୁଣି ଛାତ୍ରମାନଙ୍କ ମୁଣ୍ଡରେ ଚଡ଼କ ପଡ଼ିଲା ଓ ନିରାଶ ହୋଇ ସ୍ଥିର କଲେ ଯେ ସେମାନେ ମୁଖ୍ୟମନ୍ତ୍ରୀଙ୍କୁ ଭେଟି ତାଙ୍କ ଗୁହାରି ଜଣାଇବେ । ସେମାନେ ଯାଇ ଦରଖାସ୍ତରେ ଉଲ୍ଲେଖ କରି ଜଣାଇଲେ ଯେ ତାଙ୍କ ମାସ ମାସ ଧରି ଶିକ୍ଷା କରିଥିବା ଅଭିନୟ ପ୍ରଦର୍ଶନ କରି ନ ପାରିଲେ ସେମାନଙ୍କ ମନରେ ଘୋର ଦୁଃଖ ହେବ । ଏଣୁ ହେ.ମା.ଙ୍କୁ ନିର୍ଦ୍ଦେଶ ଦିଆଯାଉ ଯେ ସେ ବିଚିତ୍ରା ପ୍ରଦର୍ଶନକୁ କୌଣସି ଅଂଶ ବାଦ ନ ଦିଅନ୍ତୁ । ଏକଥା ମୁଖ୍ୟମନ୍ତ୍ରୀଙ୍କ କାନକୁ ଗଲା କ୍ଷଣି ସେ ଛାତ୍ରମାନଙ୍କ ଆଗ୍ରହ ଦେଖି ଖବର ପଠାଇଲେ ଯେ ଛାତ୍ରମାନଙ୍କ ଶିଖିଥିବା ସବୁତକ ସେ ଦେଖିବେ - ଗୋଟିଏ ହେଲେ ବାଦ ଦିଆଯିବ ନାହିଁ । ଏହାପରେ ଆମେ ପ୍ରଥମେ ପ୍ରଥମେ ଯାହାକୁ ନାପସନ୍ଦ କରି ବାଦ ଦେଇଥିଲୁଁ ସେ ସବୁକୁ ମଧ ପ୍ରଦର୍ଶନ ପାଇଁ ସୁଯୋଗ ଦିଆଗଲା ଓ ସେ ଅନୁସାରେ ଉତ୍ସବର ଆୟୋଜନ କରାଗଲା ।

ପରଦିନ ସକାଳେ ନାଗରିକ ସମ୍ବର୍ଦ୍ଧନା ସଭା ପରେ ମୁଖ୍ୟମନ୍ତ୍ରୀ ଆମ ସ୍କୁଲକୁ ଆସିବାର ଥିଲା ପ୍ରାୟ ୧୦ଟା ବେଳେ । ତେଣୁ ଆମେ ସେଥି ପ୍ରତି ସଜାଗ ପ୍ରସ୍ତୁତ ଥିଲୁଁ ସ୍କୁଲ ସଫାସୁତୁରା, ବିଜ୍ଞାନ ପ୍ରଦର୍ଶନୀ, ବିଚିତ୍ରା ଓ ପୁରସ୍କାର ବିତରଣୀ ପାଇଁ । ନାଗରିକ ସମ୍ବର୍ଦ୍ଧନା ସଭାକୁ ପ୍ରାରମ୍ଭିକ ସଙ୍ଗୀତ ଗାନ ସକାଶେ ଆମ ସ୍କୁଲର ଛାତ୍ରୀ ଓ ସଙ୍ଗୀତ ଶିକ୍ଷା ଦାୟିତ୍ୱରେ ଥିବା ସଙ୍ଗୀତଜ୍ଞ ଶ୍ରୀ ଗୁଣନିଧି ଦାଶ ଏଡଭୋକେଟ ସେଠାକୁ ଯାଇଥିଲେ । ସେମାନେ ସେଠାରୁ ସାରି ଆସି ଆମ କାର୍ଯ୍ୟକ୍ରମରେ ଯୋଗ ଦେଲେ । ମୁଖ୍ୟମନ୍ତ୍ରୀଙ୍କୁ ସ୍କୁଲ ଫାଟକରୁ ପାଛୋଟି ଆଣି ପ୍ରଥମେ ବିଜ୍ଞାନ ପ୍ରଦର୍ଶନୀ ଦେଖାଇବା ପାଇଁ ନେଇ ଯାଉଥିବା ବେଳେ ମୁଖ୍ୟମନ୍ତ୍ରୀ ମୋତେ ଟାଣି ଆଣି ସଭାସ୍ଥଳ ଆଡ଼େ ଚାଲିଲେ । ସଭାସ୍ଥଳଟି ସ୍କୁଲର ପଛ ଭାଗରେ ଥିବା ବିରାଟ ଆମ୍ବ ଗଛ ତଳେ ସୁସଜ୍ଜିତ ହୋଇଥିଲା । ଫଳରେ ବିଜ୍ଞାନ ପ୍ରଦର୍ଶନୀ ଅଦେଖା ରହିଗଲା । ସଭାସ୍ଥଳରେ ପହଞ୍ଚି ନିୟମିତ କାର୍ଯ୍ୟକ୍ରମର ଆରମ୍ଭ କରାଯାଇ ପ୍ରାରମ୍ଭିକ ସଙ୍ଗୀତ ପରେ ହେ.ମା. ବିବରଣୀ ପାଠ ପାଇଁ ପ୍ରଥମ କରି ଏକ ପୁସ୍ତିକାଟିଏ ଛପା ଯାଇଥିଲା । ତାର ପରେ ବିଚିତ୍ରା ଆରମ୍ଭ ଓ ଗୋଟିଏ ପରେ ଗୋଟିଏ ଅଭିନୟ ଦେଖାଇ ସବୁ ଶେଷ ହେଲା ବେଳକୁ ପ୍ରାୟ ୧.୩୦ଟା ସମୟ ଅତିକ୍ରାନ୍ତ । ତେଣୁ ମୁଖ୍ୟମନ୍ତ୍ରୀ ପୁରସ୍କାର ବିତରଣୀ ପାଇଁ ଗୁରୁତ୍ୱ ନ ଦେଇ ତାକୁ ମୋତେ ବାଣ୍ଟିବା ପାଇଁ ନିର୍ଦ୍ଦେଶ ଦେଲେ ଓ ତାଙ୍କ ଭାଷଣରେ ଛାତ୍ରଛାତ୍ରୀଙ୍କ ଅଭିନୟ ଦେଖି ପଶ୍ଚିମାଞ୍ଚଳରେ ମଧ ଏପରି ଉନ୍ନତ ସାଂସ୍କୃତିକ କାର୍ଯ୍ୟକ୍ରମରେ ପ୍ରୀତ ହୋଇ ସଭାରେ ସ୍କୁଲ ପାଇଁ ଏକ ସଙ୍ଗୀତ ଶିକ୍ଷକ ଦେବା ପାଇଁ ପ୍ରତିଶୃତି ଦେଇ

ଗ୍ଭଲିଗଲେ । ଆମେ ପରେ ଉପସ୍ଥିତ ଆମନ୍ତ୍ରିତ ବ୍ୟକ୍ତିମାନଙ୍କ ମଧ୍ୟରୁ ଏଡଭୋକେଟ ଶ୍ରୀ ଭରତଚନ୍ଦ୍ର ହୋତାଙ୍କୁ ଉକ୍ତ ଉତ୍ସବରେ କୃତୀ ଛାତ୍ରଛାତ୍ରୀମାନଙ୍କୁ ପୁରସ୍କାର ବଣ୍ଟନ କରିବାକୁ ଅନୁରୋଧ କରା ଯାଇଥିଲା । ଉକ୍ତ ଉତ୍ସବରେ ହେ.ମା.ଙ୍କ ଦ୍ୱାରା ଉପସ୍ଥାପିତ ସ୍କୁଲ ବିବରଣୀ ଛପା ପୁସ୍ତିକା ଉପସ୍ଥିତ ଭଦ୍ର ବ୍ୟକ୍ତିଙ୍କ ମଧ୍ୟରେ ବଣ୍ଟନ କରା ଯାଇଥିଲା । ବହୁ ବର୍ଷ ଧରି ଏ ଧରଣର ପୁରସ୍କାର ବିତରଣ ଉତ୍ସବ ଆଗରୁ କେବେ ହୋଇ ନ ଥିବାର ଜନମତ ପ୍ରକାଶ ପାଇଥିଲା ।

କିଛି ମାସ ପରେ ସଙ୍ଗୀତ ଶିକ୍ଷକଙ୍କ ନିଯୁକ୍ତି ପାଇଁ ସ୍କୁଲରେ ଏକ ସ୍ଥାୟୀ ପଦବୀ ପାଇଁ ସରକାରୀ ଆଦେଶନାମା ମିଳିଥିଲା । ତଦନୁସାରେ ଶିକ୍ଷା ମଣ୍ଡଳାଧୀଶଙ୍କ ଅନୁମତି କ୍ରମେ ବିଦ୍ୟାଳୟରେ ଏକ ସଙ୍ଗୀତ ଶିକ୍ଷକଙ୍କୁ ନିଯୁକ୍ତି ଦିଆଗଲା । ପ୍ରଥମ କରି ବଲାଙ୍ଗିର ରାଜବଂଶର ବିବୁଧେନ୍ଦ୍ର ସିଂହଦେଓ ସଙ୍ଗୀତ ଶିକ୍ଷକ ରୂପେ ଯୋଗ ଦେଇଥିଲେ । ପରବର୍ତ୍ତୀ କାଳରେ ପଶ୍ଚିମ ଓଡ଼ିଶାର କଣ୍ଠଶିଳ୍ପୀ ଶ୍ରୀ ଫକୀର ପଟ୍ଟନାୟକ ଉକ୍ତ ପଦବୀର ଅଧିକାରୀ ହେଲେ ।

ସେହି ବର୍ଷର ଶେଷ ଭାଗରେ ଓଡ଼ିଶା ସରକାରଙ୍କ ଅଣଛାତ୍ର ଯୁବ କଲ୍ୟାଣ ସଂସ୍ଥାର(Nonstudent Youth Welfare Society, BBSR) ଏକ ସଦସ୍ୟ ରୂପେ ହେ.ମା. ନିର୍ଦ୍ଧାରିତ ହୋଇଥିବାର ଏକ ଚିଠି ଆସିଥିଲା । ବୋଧ ହୁଏ ମୁଖ୍ୟମନ୍ତ୍ରୀ ଆମ ବିଦ୍ୟାଳୟର ସାଂସ୍କୃତିକ ଓ ଅନ୍ୟାନ୍ୟ ପରିସ୍ଥିତିରେ ସନ୍ତୋଷ ପ୍ରକାଶ କରି ହେ.ମା.ଙ୍କୁ ସେହି ସୁଯୋଗ ପ୍ରଦାନ କରିଥିଲେ । ଏପରି ଭାବେ ଧୀରେ ଧୀରେ ବିଦ୍ୟାଳୟର ସୁଖ୍ୟାତି ବଢ଼ିଲା ଓ ବିଦ୍ୟାଳୟଟି ଶିକ୍ଷା କ୍ଷେତ୍ରରେ ରାଜ୍ୟର ଏକ ବିଶିଷ୍ଟ ସ୍ଥାନ ଅଧିକାର କରି ବସିଲା ।

କେତେକ ପୁରାତନ ଶିକ୍ଷକଙ୍କ ଅନ୍ୟତ୍ର ବଦଳି ଓ ନୂତନ ଶିକ୍ଷକଙ୍କ ନିଯୁକ୍ତି ଭିତରେ ସଂସ୍କୃତ ପଣ୍ଡିତ ଗଣେଶ୍ୱର ମିଶ୍ର ସରକାରୀ ଗ୍ଭକିରୀ ପାଇ ଗ୍ଭଲି ଯିବାରୁ ତାଙ୍କ ସ୍ଥାନରେ ରେମଣ୍ଡା ବେସରକାରୀ ଉଚ୍ଚ ବିଦ୍ୟାଳୟର ସଂସ୍କୃତ ଶିକ୍ଷକ ଶ୍ରୀ ବାଳମୁକୁନ୍ଦ ପଣ୍ଡା ଆସି ସ୍କୁଲରେ ଯୋଗ ଦେଲେ । ଏପରି ଭାବେ ଅନେକ ଶିକ୍ଷକ ଓ ୪ର୍ଥ ଶ୍ରେଣୀ କର୍ମଗ୍ଭରୀଙ୍କ ନିଯୁକ୍ତି ନେଇ ମଣ୍ଡଳାଧୀଶଙ୍କ ଅନୁମୋଦନ କରାଯାଇଛି । ସେମାନଙ୍କ ମଧ୍ୟରେ ଶ୍ରୀ ସତ୍ୟନାରାୟଣ ସାହୁ, ଶ୍ରୀ ଜାନକୀରାମ ପଣ୍ଡା ଓ ଶ୍ରୀ ଭଗବାନ ଷଡ଼ଙ୍ଗୀ ଶିକ୍ଷକ ଭାବେ ଯୋଗ ଦେଇଥିଲେ ଓ ସ୍କୁଲରୁ ଧ୍ରୁବ ଧରାଇ ପିଅନ ବୃଦ୍ଧ ହେବାରୁ ତାଙ୍କ ସ୍ଥାନରେ ତାଙ୍କ ପୁଅ ବଙ୍ଗାଲୁ ଧରାଇ ଓ ତାଙ୍କ ପରେ ଉଗ୍ରସେନ ଭୋଇ ତଥା ବଂଶୀ ନାଗଙ୍କୁ କାର୍ଯ୍ୟରେ ନିଯୁକ୍ତି ଦିଆ ଯାଇଥିଲା । ପରିଶେଷରେ ସ୍କୁଲର ଛାତ୍ର ଓ ଶିକ୍ଷକ ସଂଖ୍ୟା ବୃଦ୍ଧି ହେତୁ ଆଉ ଏକ ପିଅନର

ଆବଶ୍ୟକତା ହେତୁ ତାଙ୍କୁ ମଞ୍ଜୁର କରାଇ ସେହି ପୋଷ୍ଟରେ ଆଦି ବିଶିଙ୍କୁ ରଖାଗଲା । ଏପରି ଭାବେ ସ୍କୁଲ ଓ ହଷ୍ଟେଲ୍‌ର ପିଅନ ସଂଖ୍ୟା ୫ ହେଲା । ଏଥିରୁ ଅନେକେ ସମୟବିଶେଷରେ ସ୍କୁଲ କାମ ପରେ ଘରେ ନାନା କାର୍ଯ୍ୟରେ ସାହାଯ୍ୟ କରୁଥିଲେ । ମୋଟ ଉପରେ ଜର୍ଜ ହାଇସ୍କୁଲ ହେ.ମା. ପଦବୀ ଓ ପାହ୍ୟା ଅତି ଉଚ୍ଚ ସ୍ତରୀୟ ହେତୁ ଅନ୍ୟମାନଙ୍କ ଚକ୍ଷୁଶୂଳ ଥିଲା । ପୁଣି ମୋର ବୟସାନୁସାରେ ପଦବୀର ମହତ୍ୱ ଓ ଗୁରୁତ୍ୱ ଦୃଷ୍ଟିରୁ ମୋତେ ଅସ୍ୱାଭାବିକ ଭାବେ ଗମ୍ଭୀର ଓ ହସଶୂନ୍ୟ କଠୋର ବ୍ୟବହାର ବାହାରକୁ ପ୍ରଦର୍ଶନ କରିବାକୁ ପଡୁଥିଲା । ଫଳରେ ମୋର ଅକାଳ ବାର୍ଦ୍ଧକ୍ୟ, ଦୃଢ଼ତା, ରୁକ୍ଷତା ଓ ଅସ୍ୱାଭାବିକ ବ୍ୟବହାରର ଅଭିନୟ ବାଧବାଧକତାରେ ଚଳିବାକୁ ପଡୁଥିଲା । ଅବଶ୍ୟ ତାହା ଧୀରେ ଧୀରେ ଅଭ୍ୟାସରେ ପଡ଼ିଗଲା । ସେଥିପାଇଁ ବହୁତ କଷ୍ଟ ଓ ସତର୍କତାର ଆଶ୍ରୟ ନେବାକୁ ପଡୁଥିଲା ।

## ବରଗଡ଼ରେ କଲେଜ ସ୍ଥାପନର ପୂର୍ବାଭାସ ଓ ପ୍ରତିଷ୍ଠା :-

ଇତି ମଧ୍ୟରେ ବରଗଡ଼ର ବିଭିନ୍ନ ସାଂସ୍କୃତିକ ଓ ସାମାଜିକ ସଂସ୍ଥାରେ ଯୋଗ ଦେବାକୁ ସୁଯୋଗ ମିଳିଲା ଓ ଥରେ ୧୯୫୮ ସାଲରେ ଏକ ସରକାରୀ କର୍ମଚାରୀଙ୍କ ବନ୍ଧୁମିଳନ ସଭା P.W.D. S.D.O.ଙ୍କ ଅଫିସରେ ଅନୁଷ୍ଠିତ ହୋଇଥିଲା । ସେତେବେଳେ ଆଲୋଚନା ପ୍ରସଙ୍ଗରେ ମୁଁ ବରଗଡ଼ରେ ଏକ ମହାବିଦ୍ୟାଳୟ ଆରମ୍ଭ କରାଯିବାର ପ୍ରସ୍ତାବ ଉପସ୍ଥାପନ କରିବାରେ ତତ୍କାଳୀନ ସ୍ୱନାମଧନ୍ୟ ଓକିଲ ତଥା ଭୂତପୂର୍ବ ଉପମନ୍ତ୍ରୀ ସ୍ୱର୍ଗତ ତୀର୍ଥବାସୀ ପ୍ରଧାନ ଏକ ବିଦ୍ରୂପ ତଥା ଅଟ୍ଟହାସରେ ଉଠାଇ ନେବାକୁ ଚାହିଁଲେ । ଫଳରେ ମୋର ପ୍ରସ୍ତାବର ଗୁରୁତ୍ୱ ଅନୁଭବ କରାଗଲା ନାହିଁ । ତେଣୁ ମୁଁ ତୁନି ରହିଲି । କିନ୍ତୁ ମୋର ଏ ପ୍ରସ୍ତାବ ତତ୍କାଳୀନ ଉପଖଣ୍ଡ ଅଧିକାରୀ S.D.O. ଶ୍ରୀ ରାଧାମୋହନ ମହାନ୍ତିଙ୍କୁ ବିଶେଷ ଭାବେ ପ୍ରଭାବିତ କରିଥିଲା । କାରଣ ଏଠାକୁ ଆସିବା ପୂର୍ବରୁ ସେ ସୁନ୍ଦରଗଡ଼ରେ କଲେକ୍ଟରଙ୍କ ଅଧୀନରେ ଥାଇ ସୁନ୍ଦରଗଡ଼ କଲେଜ ତଥା ଅନ୍ୟାନ୍ୟ ଜନହିତକର କାର୍ଯ୍ୟର ଶୁଭାରମ୍ଭରେ ପ୍ରତ୍ୟକ୍ଷ ଭାବେ ଅଂଶ ଗ୍ରହଣ କରିଥିଲେ ଓ ଉଦ୍‌ବୁଦ୍ଧ ହୋଇଥିଲେ । ତେଣୁ ସେପରି ଏକ ବେସରକାରୀ ମହାବିଦ୍ୟାଳୟ ବରଗଡ଼ରେ କରା ଯାଇପାରିବାର ଭବିଷ୍ୟତ୍ ଉଜ୍ଜ୍ୱଳମୟ ବିଚାର କରି ମୋର ପ୍ରସ୍ତାବର ରୂପରେଖ ଦେବା ପାଇଁ ସ୍ୱତଃପ୍ରବୃତ୍ତ ହୋଇ ଏକ କଲେଜ କାର୍ଯ୍ୟକାରୀ କମିଟି ଆହ୍ୱାନ କରିବା ପାଇଁ ତାଙ୍କର ନିକଟ ସହକର୍ମୀ Second Officer ମୋର ବନ୍ଧୁ ଶ୍ରୀ ପ୍ରଫୁଲ୍ଲ ମହାନ୍ତିଙ୍କୁ ବେସରକାରୀ ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ଏକ ପ୍ରାରମ୍ଭିକ ଆଲୋଚନା ସଭା ଡକାଇବାକୁ ନିର୍ଦ୍ଦେଶ

ଦେଇଥିଲେ । ଫଳରେ ତତ୍କାଳୀନ ବରଗଡ଼ର ପ୍ରତିଷ୍ଠିତ ସ୍ୱନାମଧନ୍ୟ ସ୍ୱର୍ଗତ କୃତାର୍ଥ ଆଚାର୍ଯ୍ୟ, ତୀର୍ଥବାସୀ ପ୍ରଧାନ, ଭରତଚନ୍ଦ୍ର ହୋତା, ଡ. ଲଳିତ ମୋହନ ଦାଶ ତଥା ଅନ୍ୟାନ୍ୟ ଯୁବକ ବନ୍ଧୁମାନଙ୍କୁ ନିମନ୍ତ୍ରଣ କରା ଯାଇଥିଲା । ସଭାରେ ଏହା ସର୍ବସମ୍ମତିକ୍ରମେ ସିଦ୍ଧାନ୍ତ ନିଆଗଲା ଯେ ୧ ବର୍ଷ ପରେ ଅର୍ଥାତ୍ ୧୯୬୦ ଶିକ୍ଷାବର୍ଷରୁ ଏକ ଘରୋଇ କଲେଜ ବରଗଡ଼ରେ ଆରମ୍ଭ କରାଯିବ । ସେଥିପାଇଁ ଏକ କାର୍ଯ୍ୟକାରୀ କମିଟି ଗଢ଼ା ଗଲା । ତହିଁରେ ସଭାପତି କୃତାର୍ଥ ଆଚାର୍ଯ୍ୟ, ଉପସଭାପତି ତୀର୍ଥବାସୀ ପ୍ରଧାନ, ସଦସ୍ୟ ଭରତଚନ୍ଦ୍ର ହୋତା, ଡ. ଲଳିତ ମୋହନ ଦାଶ ଓ ସ୍ୱନାମଧନ୍ୟ କଣ୍ଟ୍ରାକ୍ଟର ନଟବର ମହାନ୍ତି ରହିଲେ । ଶେଷରେ S.D.O.ଙ୍କ ପରାମର୍ଶ କ୍ରମେ ମୋତେ ଉକ୍ତ କମିଟିରେ ସଂପାଦକ ଓ କୋଷାଧ୍ୟକ୍ଷ ଭାବରେ ମନୋନୀତ କରାଗଲା ।

ସେହି ଦିନଠାରୁ ଦିନ ରାତି ଅବିରାମ ଭାବେ କିପରି କଲେଜ ପାଇଁ ପାଣ୍ଠି ସଂଗ୍ରହ କରାଯିବ ଓ ତାର ହିସାବ ରଖାଯିବ ତାର ବ୍ୟବସ୍ଥା ପାଇଁ ଏକ କିରାନୀ ରଖାଯିବାର ସ୍ଥିର ହେଲା । ତତ୍କାଳୀନ ନୂତନ ଭାବେ ମେଟ୍ରିକ ପାସ୍ କରିଥିବା ଘେଁସର ଜନୈକ ଛାତ୍ର ଶ୍ରୀ ଚିତ୍ତରଞ୍ଜନ ଦେବତା ଯେ କି ବର୍ତ୍ତମାନର ସମ୍ବଲପୁରର ପ୍ରତିଷ୍ଠିତ ସରକାରୀ ଏଡ୍‌ଭୋକେଟ ଓ ବହୁ ଗାଡ଼ିର ମାଲିକ ରୂପେ ଗଣ୍ୟମାନ୍ୟ ବ୍ୟକ୍ତି, କଲେଜର ଅସ୍ଥାୟୀ କିରାଣୀ ଭାବେ ନିଯୁକ୍ତ ହେଲେ । ତାଙ୍କର କାମ ହେଲା ବିଭିନ୍ନ ସ୍ଥାନରୁ କଲେଜ ପାଇଁ ରସିଦ ଜରିଆରେ ସଂଗୃହୀତ ଆୟର ପରିମାଣକୁ ଲିପିବଦ୍ଧ କରିବା । କାରଣ ଆଗରୁ ପ୍ରସ୍ତାବିତ କଲେଜ ପାଣ୍ଠି ସଂଗ୍ରହ ପାଇଁ ରସିଦ ବହି ଛପା ସରିଥିଲା । ଉକ୍ତ ତାଲିକାରେ କୌଣସି ବ୍ୟକ୍ତିବିଶେଷଙ୍କ ଦାନକୁ ନ୍ୟୂନ ବୋଲି ବିବେଚନା ନ କରି ସର୍ବନିମ୍ନ ଟ.୧ରୁ ଆରମ୍ଭ କରି ସହସ୍ରାଧିକ ଟଙ୍କା ପର୍ଯ୍ୟନ୍ତ ଦାତାମାନଙ୍କ ନାମ ଉଲ୍ଲିଖିତ ହେଉଥିଲା ।

ପ୍ରଥମେ S.D.O. ଶ୍ରୀ ରାଧାମୋହନ ମହାନ୍ତିଙ୍କ ପ୍ରସ୍ତାବ ଅନୁସାରେ ଭବିଷ୍ୟତରେ କଲେଜର ନାମକରଣକୁ ଆଖି ଆଗରେ ରଖି ସବଡିଭିଜନର ସର୍ବମୋଟ ୫୭ଟି ପଞ୍ଚାୟତରୁ ପ୍ରତ୍ୟେକେ ଅନ୍ତତଃ ଟ. ୨୦୦୦ ଅନୁଦାନ ଦେବା ପାଇଁ ପରୋକ୍ଷ ଭାବେ ପ୍ରସ୍ତାବ ଗ୍ରହଣ କରିବାକୁ ସେ ତାଙ୍କ ଅଧସ୍ତନ କର୍ମଚାରୀଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଫଳରେ ଅଞ୍ଚଳର ୫୭ଟି ପଞ୍ଚାୟତରୁ ଟ. ୧,୧୪,୦୦୦ ପରିମାଣ ଦାନସୂତ୍ରରେ ମିଳିବାର ପଥ ସୁଗମ ହୋଇଗଲା । କଲେଜଟି ପଞ୍ଚାୟତ କଲେଜ ନାମରେ ନାମିତ ହେଲା । ପୁଣି କ୍ରମେ ଆଲୋଚନାରୁ ଜଣାଗଲା ଯେ ବରଗଡ଼ ନିକଟସ୍ଥ ସାହାଜବାହାଲ ଗାଁର ଗୌନ୍ତିଆଙ୍କ ସ୍ତ୍ରୀ ଶୋଭଦ୍ରା ନିଦାରାଣୀ

ଜୀବିତ ଓ ତାଙ୍କ ଶତାଧିକ ଏକର ଜମି ଆଦିବାସୀମାନଙ୍କ ଦ୍ୱାରା ଗତ କେତେ ବର୍ଷ ଧରି ଅଧିକୃତ ଓ ଚାଷ କରା ଯାଉଥିଲା । ତେଣୁ ସେଥିରେ ମଧ ବୁଦ୍ଧି ଓ ଉପାୟ ପ୍ରୟୋଗ ପୂର୍ବକ ସେ ଜମି ଚାଷ କରୁଥିବା ଆଦିବାସୀମାନଙ୍କୁ ଉକ୍ତ ଜମିର ମାଲିକାନା ଦେବାକୁ ସରକାରଙ୍କ ସାହାଯ୍ୟ ଓ ଋଣ ମଞ୍ଜୁର କରାଇବାର ଦାୟିତ୍ୱ ରାଜସ୍ୱ ବିଭାଗ କର୍ମଚାରୀଙ୍କୁ ଦିଆଯାଇ ତହିଁରୁ ପ୍ରାପ୍ତ ଧନକୁ କଲେଜ ପାଣ୍ଠିରେ ଅନ୍ତର୍ଭୁକ୍ତ କରାଗଲା ।

ପୁଣି S.D.O. ଯେଉଁ ଆଡ଼େ ସରକାରୀ ଗସ୍ତରେ ଯାଉଥିଲେ ସେଠାକାର ସରକାରୀ ଓ ଗଣ୍ୟମାନ୍ୟ ବ୍ୟକ୍ତିଙ୍କୁ ଧରି ଗାଁମାନଙ୍କର ଧନୀ ଓ ବଦାନ୍ୟ ବ୍ୟକ୍ତିଙ୍କଠାରୁ ମଧ ପାଣ୍ଠି ସଂଗ୍ରହ କରିବାରେ ଅଦମ୍ୟ ଚେଷ୍ଟା କରୁଥିଲେ । ଅର୍ଥାତ୍ ସରକାରୀ କାର୍ଯ୍ୟ ସହ ଏହି କଲେଜ ପ୍ରତିଷ୍ଠା କାର୍ଯ୍ୟକ୍ରମକୁ ଦ୍ୱିତୀୟ ସ୍ଥାନ ଦେଇଥିଲେ । ଏପରି ଭାବେ ୧୯୫୮ ଓ ୫୯ର ମଧ ଭାଗ ପର୍ଯ୍ୟନ୍ତ ଲକ୍ଷାଧିକ ଟଙ୍କା ସଂଗ୍ରହ କରାଯାଇ ବିଶ୍ୱବିଦ୍ୟାଳୟକୁ ଦରଖାସ୍ତ ସହ କଲେଜ ଆରମ୍ଭ ପାଇଁ Affiliation Fee ପାଇଁ ପ୍ରାୟ ଲକ୍ଷାଧିକ ଟଙ୍କା ଜମା କରି କଳା, ବିଜ୍ଞାନ ଓ ବାଣିଜ୍ୟ ବିଭାଗ ଆରମ୍ଭ କରିବାକୁ ଆବେଦନପତ୍ର ଦିଆଗଲା । ଏପଟେ ବଳକା ପାଣ୍ଠିର ବିନିଯୋଗ କରି କଲେଜଘର ନିର୍ମାଣ ପାଇଁ ବରଗଡ଼ ନିକଟସ୍ଥ ଗୁହୁଣିଆ ଗ୍ରାମ ନିକଟସ୍ଥ ବିସ୍ତୀର୍ଣ୍ଣ ପଡ଼ିଆ ଅବ୍ୟବହୃତ ଥିବାରୁ ତାର ମାଲିକମାନଙ୍କୁ ଅନୁରୋଧ କରି ସେମାନେ ସ୍ୱଇଚ୍ଛାରେ କଲେଜ ପାଇଁ ଦାନ କରିବାକୁ ଲିଖିତ ପ୍ରତିଶୃତି ସଂଗ୍ରହ କରାଯାଇ ମୋଟ ଜମିର ପରିମାଣ ପ୍ରାୟ ୬୪ ଏକରରେ ପହଞ୍ଚିଲା । ଅବଶ୍ୟ ସେଠାରେ କଲେଜଘର ତିଆରିରେ ସେହି ଦାନ କରିଥିବା ବ୍ୟକ୍ତିଙ୍କ ଅସ୍ୱାଭାବିକ ଲୋଭ ହେବାରୁ କେତେକ ନିଜ ପ୍ରତିଶୃତିରୁ ଓହରି ଯିବାକୁ ପଶ୍ଚାଦପଦ ହେଲେ ନାହିଁ । ହେଲେହେଁ ଏବେ ମୋଟ ୪୦ ଏକର ପର୍ଯ୍ୟନ୍ତ ଜମି କଲେଜ ଅଧୀନରେ ଥିବାର ମନେ ହୁଏ । ବିଶେଷ କରି କଲେଜର ସୀମା ନିର୍ଦ୍ଧାରଣ କରି ବାଡ଼ ଦେବାରେ ବିଳମ୍ବ ହେବାରୁ ସ୍ୱାର୍ଥାନ୍ୱେଷୀ କେତେକ ବ୍ୟକ୍ତି ନିଜ ନିଜ ଜମିକୁ ଦଖଲ କରି ନେଇଛନ୍ତି । ଏପରିଭାବେ ୧୯୫୯ ସାଲରୁ କଲେଜଘର, ହଷ୍ଟେଲ୍ ଓ ୨ଟି କ୍ୱାଟର୍ସ ଆରମ୍ଭ କରାଯାଇ ବିଶ୍ୱବିଦ୍ୟାଳୟକୁ ପରିଦର୍ଶନ ଦଳ ପଠାଇବାକୁ ଅନୁରୋଧ କରାଗଲା । ତେଣୁ ସରକାରଙ୍କ ତରଫରୁ ତତ୍କାଳୀନ ଶିକ୍ଷା ନିର୍ଦ୍ଦେଶକ ପ୍ରଫେସର ବାମାଚରଣ ଦାସ ୧୯୬୦ର ପ୍ରାରମ୍ଭରେ କଲେଜ ପରିଦର୍ଶନରେ ଆସି ଗୃହ ତିଆରିର ପ୍ରାରମ୍ଭିକ କାର୍ଯ୍ୟ ଅବଲୋକନରେ ଅସନ୍ତୋଷ ପ୍ରକାଶ କରି ୧୯୬୦-୬୧ର ପ୍ରାରମ୍ଭରେ କଲେଜ ଆରମ୍ଭ ସମ୍ପୂର୍ଣ୍ଣ ଅସମ୍ଭବ ବୋଲି ମନ୍ତବ୍ୟ

ଦେବାରୁ କେଇଜଣ କାର୍ଯକାରୀ କମିଟିର ସଦସ୍ୟଗଣ ତଥା S.D.O. କଲେଜଘର କାମ ୧୯୬୦ ମଇ ପୂର୍ବରୁ ଶେଷ ହେବାର ନିର୍ଭର ପ୍ରତିଶୃତି ଦେଇ ୧୯୬୦-୬୧ରୁ ଶିକ୍ଷାଦାନ କର୍ମ ନିଜ କଲେଜଘରରେ ଆରମ୍ଭ କରିବାକୁ ନିର୍ଭର ଦୃଢ଼ତା ପ୍ରକାଶ କଲେ । ସତକୁ ସତ ୧୯୬୦ର ଜୁନ୍ ବେଳକୁ କଲେଜଘର ତିଆରି ସରି କଲେଜଗୃହର ଶୁଭ ଉଦ୍‌ଘାଟନ ପାଇଁ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଡ. ହରେକୃଷ୍ଣ ମହତାବଙ୍କ ସ୍ୱୀକୃତି ମିଳିବାରୁ କଲେଜକୁ ବରଗଡ଼ ସହ ସଂଯୋଗକାରୀ ରାସ୍ତାର ତିଆରି ଓ ମରାମତି କାମ ଜୋରସୋରରେ ଚାଲିଲା ।

ଏପଟେ କଲେଜର ଅଧାପନା ପାଇଁ ବିଭିନ୍ନ ଶିକ୍ଷକ ଓ ଅଧାପକ ନିଯୁକ୍ତି ପାଇଁ ବିଜ୍ଞାପନ ଜରିଆରେ ଦରଖାସ୍ତ ଆହ୍ୱାନ, ଦରଖାସ୍ତକାରୀଙ୍କ Interview ଓ ତାଙ୍କର ସମୀକ୍ଷା ପରେ ଅଧାପକମାନଙ୍କ ନିଯୁକ୍ତିପତ୍ର ପଠାଗଲା । ଏସବୁ କାମ ତତ୍କାଳୀନ କାର୍ଯ୍ୟକାରୀ ସମ୍ପାଦକ ହେ.ମା. ଜର୍ଜ ହାଇସ୍କୁଲ ଦସ୍ତଖତରେ ସମ୍ପାଦିତ ହେଲା । ପ୍ରଥମେ ଯେଉଁ କେତେକ ଅଧାପକ ନିଯୁକ୍ତି ପାଇଲେ ସେମାନେ ହେଲେ ଶ୍ରୀ ଶରତଚନ୍ଦ୍ର ପୂଜାରୀ - ଅର୍ଥଶାସ୍ତ୍ର, ଶ୍ରୀ ପ୍ରଫୁଲ୍ଲ କୁମାର ମହାନ୍ତି - ଓଡ଼ିଆ, Sri M.M. Lucose - ଇଂରାଜୀ, Mr. Joseph - ପଦାର୍ଥ ବିଜ୍ଞାନ, Mr. M.P. Joseph Zoology ଓ ପ୍ରଥମ ଅଧକ୍ଷ ରୂପେ ଶ୍ରୀ ନିର୍ମଳଚନ୍ଦ୍ର ଦେ କଲିକତାରୁ ନିଯୁକ୍ତି ପାଇଲେ । ସେତେବେଳେ ଅବସରପ୍ରାପ୍ତ ମଦନମୋହନ ପ୍ରଧାନ କିରାନୀ ଓ କେତେକ ୪ର୍ଥ ଶ୍ରେଣୀ କର୍ମଚାରୀଙ୍କୁ ନିଯୁକ୍ତି ଦିଆଗଲା । ୧୯୬୦ ଜୁଲାଇ ୧୦ ତାରିଖରେ କଲେଜ ସୌଧ ଡ. ମହତାବ, ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ଉଦ୍‌ଘାଟିତ ହେଲା ଓ ୧୯୬୦-୬୧ରୁ ଶିକ୍ଷାଦାନ କର୍ମ କଲେଜର ନିଜ ଗୃହରେ ଆରମ୍ଭ କରାଗଲା । ଅବଶ୍ୟ ଆଗରୁ କିଛି ଦିନ ପାଇଁ ସ୍ଥାନୀୟ Town Hallରେ କଲେଜ କାମ ଅସ୍ଥାୟୀ ଭାବେ ଚାଲୁଥିଲା । କଲେଜଘର ଉଦ୍‌ଘାଟିତ ହେବା ପରେ ଟାଉନ୍ ହଲରୁ ସବୁ ଜିନିଷ କଲେଜଘରକୁ ସ୍ଥାନାନ୍ତରିତ ହୋଇ ସେଠାରେ କାର୍ଯ୍ୟକ୍ରମ ରୀତିମତ ଚାଲିଲା ।

ପ୍ରକାଶ ଥାଉ କି ପ୍ରଥମରେ ଉପରୋକ୍ତ ନିଯୁକ୍ତି ପାଇଥିବା ଅଧାପକଗଣ ଆସି ଜର୍ଜ ହାଇସ୍କୁଲର ଇ.ଏମ. ହଷ୍ଟେଲ୍‌ରେ ରହି ମେସ୍‌ରେ ଖାଇ ସେ ବର୍ଷର ଦଶହରା ଛୁଟି ପର୍ଯ୍ୟନ୍ତ କାର୍ଯ୍ୟ କରୁଥିଲେ ।

ଦଶହରା ଛୁଟି ପୂର୍ବରୁ କଲେଜ କାର୍ଯ୍ୟକାରୀ କମିଟି ଡକା ଯାଇ ବିଧିବଦ୍ଧ ଭାବେ ସ୍ୱର୍ଗୀୟ ବ୍ରଜମୋହନ ପଣ୍ଡାଙ୍କ ଅଧକ୍ଷତାରେ ଏକ ସାଧାରଣ ସଭା ଆହୂତ ହେଲା । ନୂତନ Governing Body ଗଠନ କରାଗଲା । ନିୟମ ଅନୁସାରେ

ଉକ୍ତ କମିଟିରେ ଜିଲ୍ଲାପାଳ ସଭାପତି, ତାଙ୍କ ଅନୁପସ୍ଥିତିରେ S.D.O., ଉପସଭାପତି କୃତାର୍ଥ ଆଗ୍ରର୍ଯ୍ୟ, ସମ୍ପାଦକ ଡ. ଲଳିତମୋହନ ଦାଶ, ଭରତଚନ୍ଦ୍ର ହୋତା, ତୀର୍ଥବାସୀ ପ୍ରଧାନ ଆଦି ସଦସ୍ୟ ରହିଲେ ଓ ସେହି Governing Bodyକୁ ମୁଁ କାର୍ଯକାରୀ ସମ୍ପାଦକ ଭାବେ କଲେଜର ସବୁ କାଗଜାତ ଓ ପାଣ୍ଠି ହସ୍ତାନ୍ତର କରିଥିଲି।

ଲୋକେ ସ୍ୱତଃପ୍ରବୃତ୍ତ ହୋଇ ଦାନ କରିଥିବା କାନର ସୁନା କୁଣ୍ଡଳ, ମୁଦି ଓ ଅଳଙ୍କାର ଆଦି ମଧ କଲେଜ ପାଣ୍ଠିରେ ଠୁଳ ହୋଇଥିଲା। ମୋର ଇପ୍ସିତ ପ୍ରସ୍ତାବର ପ୍ରକୃତ ରୂପରେଖ ନେଇ ଅନୁଷ୍ଠାନଟି ସ୍ଥାପିତ ହୋଇଥିବାରୁ ମୁଁ ଆତ୍ମପ୍ରସାଦ ଲାଭ କଲି।

ଏହି ବର୍ଷଟି - ୧୯୬୦ଟି ବରଗଡ଼ର ଶିକ୍ଷାକ୍ଷେତ୍ର ପାଇଁ ଏକ ଚିରସ୍ମରଣୀୟ ସମୟ। କାରଣ ତତ୍କାଳୀନ କୌଣସି କାରଣରୁ ସ୍ଥାନୀୟ ବ୍ୟବସାୟୀ ଗୋଷ୍ଠୀଙ୍କଠାରୁ କଲେଜ ପାଣ୍ଠି ପାଇଁ କୌଣସି ପ୍ରକାର ଦାନ ଗ୍ରହଣ ନ କରିବାକୁ ନିଷ୍ପତ୍ତି ନେବାରୁ ସେହି ବର୍ଷ ସହରର ଶିକ୍ଷାଦାନ ଦୃଷ୍ଟିରୁ ଆଉ ଏକ ଉଚ୍ଚ ବିଦ୍ୟାଳୟର ଆବଶ୍ୟକତା ଅନୁଭବ କରି ସେହି ବ୍ୟବସାୟୀଗୋଷ୍ଠୀଙ୍କ ଅନୁଦାନରେ ରାଣାପ୍ରତାପ ଉଚ୍ଚ ବିଦ୍ୟାଳୟ ସ୍ଥାପନ କରାଗଲା ଓ ସେଥିପାଇଁ ମଧ କୋଠାବାଡ଼ି ଆଦି ନିର୍ମାଣ କରାଗଲା।

ପୁଣି ସେହି ବର୍ଷ ନୂତନ ଭାବେ ବରଗଡ଼ବାସୀଙ୍କ ଆବଶ୍ୟକତା ଦୃଷ୍ଟିରୁ ଏକ ଘରୋଇ ବାଳିକା ଉଚ୍ଚ ବିଦ୍ୟାଳୟର ଶୁଭାରମ୍ଭ କରାଗଲା। ଅବଶ୍ୟ ପରବର୍ତ୍ତୀ ସମୟରେ ସରକାର ସ୍ଥାନୀୟ ସରକାରୀ ନିମ୍ନ ମାଧମିକ ବିଦ୍ୟାଳୟକୁ ବାଳିକା ଉଚ୍ଚ ବିଦ୍ୟାଳୟରେ ପରିଣତ କରିଥିଲେ। ତେଣୁ ସେହି ଘରୋଇ ବାଳିକା ଉଚ୍ଚ ବିଦ୍ୟାଳୟଟି ସରକାରୀ ବିଦ୍ୟାଳୟରେ ମିଶିଗଲା।

୧୯୬୦ ସାଲରେ Officer's Colony ନିମ୍ନ ବିଦ୍ୟାଳୟଟିଏ କଚେରୀ ପଛ ପଟେ ଆରମ୍ଭ ହୋଇ ସେହି ବର୍ଷ ତାହା ନିମ୍ନ ମାଧମିକ ବିଦ୍ୟାଳୟରୁ କ୍ରମେ ମାଧମିକ ବିଦ୍ୟାଳୟକୁ ଉନ୍ନୀତ କରାଯାଇ ଏକ ନୂତନ ରେକର୍ଡ ସୃଷ୍ଟି ହେଲା। ଅର୍ଥାତ୍ ୧୯୬୦ ସାଲରେ ବରଗଡ଼ରେ ପ୍ରାଥମିକ ବିଦ୍ୟାଳୟରୁ ମାଧମିକ, ବାଳକ ଓ ବାଳିକାମାନଙ୍କ ପାଇଁ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇ ମହାବିଦ୍ୟାଳୟ ପର୍ଯ୍ୟନ୍ତର ଶୁଭାରମ୍ଭ ବରଗଡ଼ ଇତିହାସରେ ଏକ ସୁବର୍ଣ୍ଣ ଅଧାୟ ଓ ଜାଜ୍ୱଲ୍ୟମାନ ମାଇଲଖୁଣ୍ଟ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ। ୧୯୬୦ରୁ କଲେଜ ଆରମ୍ଭ ହୋଇ ୧୯୭୧ ଇ. ରେ ସରକାର କଲେଜକୁ ନିଜ ହାତକୁ ନେଲେ ଓ ଏକ ସରକାରୀ କଲେଜର

ମାନ୍ୟତା ପାଇ ଏ ପର୍ଯ୍ୟନ୍ତ ଅଗ୍ରଗତି କରୁଛି । ବୋଧ ହୁଏ ଦେଖିବାକୁ ଗଲେ ନୂତନ କଲେଜଟି ଆରମ୍ଭ କରାଯାଇ ତାକୁ ନିଜର ଦ୍ୱାରା ନିର୍ମିତ ସୌଧରେ ପାଠଦାନ ଓ କ୍ୱାର୍ଟର୍ସ ଆଦି ତିଆରି ହେବା ଘଟଣା ଏକ ଅନନ୍ୟ ଉଦାହରଣ ପରି ମନେ ହୁଏ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ଏ ସବୁ ଅନୁଷ୍ଠାନରେ ମୋର ପ୍ରତ୍ୟକ୍ଷ ଓ ପରୋକ୍ଷ ସାହାଯ୍ୟ ଏକାନ୍ତ ଭାବେ ଅନିବାର୍ଯ୍ୟ ଥିଲା । ତେଣୁ ମୋତେ ମୋ ନିଜ କାର୍ଯ୍ୟର ସୁଗ୍ଭରୁ ରୂପେ ପରିଗ୍ଭଳନା କରି ଏ ସବୁରେ ଅଂଶ ଗ୍ରହଣ କରିବାକୁ ବହୁ ଶ୍ରମ ସ୍ୱୀକାର କରିବାକୁ ପଡୁଥିଲା । ଏପରିକି ସରକାରୀ ବାଳିକା ବିଦ୍ୟାଳୟରେ ବିଜ୍ଞାନ ଶିକ୍ଷକଙ୍କ ଅଭାବ ଦୃଷ୍ଟିରୁ ମୋତେ ସେଠାରେ ସପ୍ତାହରେ ୨/୩ଟି ଶ୍ରେଣୀ ପାଠ ପଢ଼ାଇବାକୁ ପଡୁଥିଲା ।

୧୯୬୧ ଇ.ର ପ୍ରାରମ୍ଭରେ ସରକାରଙ୍କ ନୂତନ ଯୋଜନା ଅନୁସାରେ ଦେଶର ପ୍ରାଥମିକ ବିଦ୍ୟାଳୟମାନଙ୍କରେ ତାଲିମପ୍ରାପ୍ତ ଶିକ୍ଷକମାନଙ୍କ ଘୋର ଅଭାବ ପରିଲକ୍ଷିତ ହେବାରୁ ଓ ତତ୍କାଳୀନ ପ୍ରଶିକ୍ଷଣ ବିଦ୍ୟାଳୟମାନଙ୍କରୁ ଉତ୍ତୀର୍ଣ୍ଣ ତାଲିମପ୍ରାପ୍ତ ଶିକ୍ଷକମାନେ ସେହି ଅଭାବର ଗ୍ଭହିଦା ମେଣ୍ଟାଇ ପାରୁ ନ ଥିବାରୁ ଏକ ନୂତନ ସଂକ୍ଷିପ୍ତ ଇ.ଟି. ତାଲିମକେନ୍ଦ୍ର (Condensed E.T. Centre) ପ୍ରତିଷ୍ଠା ଯୋଜନା କରା ଯାଇଥିଲା । ଏଥିରେ ଅଣତାଲିମପ୍ରାପ୍ତ ନନ୍ ମେଟ୍ରିକ ଶିକ୍ଷକମାନଙ୍କୁ ଗ୍ଭକିରୀକାଳର ଅଭିଜ୍ଞତାକୁ ବିଗ୍ଭରକୁ ନେଇ ସଂକ୍ଷିପ୍ତ ତାଲିମ ଦେବାର ବ୍ୟବସ୍ଥାର ସୂତ୍ରପାତ ହେଲା । ଅର୍ଥାତ୍ ସପ୍ତମ ଶ୍ରେଣୀରୁ ଉର୍ଦ୍ଧ୍ୱ ଓ ମେଟ୍ରିକ ପାସ୍ କରି ନ ଥିବା ଅଥଚ ଶିକ୍ଷକ ଗ୍ଭକିରୀ କରୁଥିବା ୫ ବର୍ଷ ବା ତତୋଧିକ କାର୍ଯ୍ୟରତ ଶିକ୍ଷକମାନଙ୍କୁ ୨ ବର୍ଷ ପରିବର୍ତ୍ତେ ୧ ବର୍ଷ/୧୦ ମାସ ଜୁନରୁ ମାର୍ଚ୍ଚ/ଅପ୍ରେଲ ପର୍ଯ୍ୟନ୍ତ ସଂକ୍ଷିପ୍ତ ଇ.ଟି. ତାଲିମ ଦେବାର ବ୍ୟବସ୍ଥା କରାଗଲା । ଏହି ପରି ଭାବେ ସାରା ପ୍ରଦେଶରେ (ଆରମ୍ଭ କରା ଯାଇଥିବା) ୧୦ଟା ତାଲିମ କେନ୍ଦ୍ର ପ୍ରତିଷ୍ଠା କରାଗଲା ଓ ଜର୍ଜ ହାଇସ୍କୁଲ ତନ୍ମଧ୍ୟରୁ ଗୋଟାଏ । ଅର୍ଥାତ୍ ରାଜ୍ୟର ନିର୍ବାଚିତ ସୁଯୋଗ୍ୟ ପରିବେଶ ବିଶିଷ୍ଟ ୧୦ଟା ସ୍କୁଲରୁ ଅନ୍ୟତମ ଭାବେ ବିବେଚିତ ହେବା କମ୍ ଗୌରବର ବିଷୟ ନ ଥିଲା ।

ଏହି ତାଲିମ କେନ୍ଦ୍ରଟି ହାଇସ୍କୁଲର ପାଠ ପଢ଼ାରେ ବ୍ୟାଘାତ ନ ଘଟାଇ ଓ ସେହି ଛାତ୍ରମାନଙ୍କ ବସବାସ ପାଇଁ ଛାତ୍ରାବାସର ସୁବିଧା ଥିବାର କଳ୍ପନା କରାଯାଇ ବିଦ୍ୟାଳୟକୁ ନିର୍ବାଚନ କରା ଯାଇଥିଲା । ତାଲିମ କେନ୍ଦ୍ରର ପାଠ ପଢ଼ା ସକାଳ ସାଢ଼େ ୬ଟାରୁ ସାଢ଼େ ୯ଟା, ସନ୍ଧ୍ୟା ୪ଟାରୁ ସାଢ଼େ ୬ଟା ପର୍ଯ୍ୟନ୍ତ ନିୟମିତ ସ୍କୁଲର ବହିର୍ଭୂତ ସମୟରେ ଗ୍ଭଲୁଥିଲା । ସେଥିପାଇଁ ହେ.ମା. ଜଣେ ତାଲିମପ୍ରାପ୍ତ Matric

C.T. ଓ ଜଣେ Craft teacher/ବା ଅନ୍ୟ ଜଣେ Matric C.T. ତାଲିମ ଶ୍ରେଣୀ ପାଇଁ କାର୍ଯ୍ୟରତ ଥିଲେ। ସେମାନଙ୍କୁ ଯଥାକ୍ରମେ ମାସକୁ ଟ.୬୦, ଟ. ୪୦, ଟ. ୩୦ କରି ଅଧିକା allowance ଦିଆ ଯାଉଥିଲା। ଗୁରୁଛାତ୍ର ମାନଙ୍କୁ Stipend ଆକାରରେ ମାସକୁ ଟ.୬୦ରୁ ଟ.୭୫ ପର୍ଯ୍ୟନ୍ତ ଦିଆ ଯାଉଥିଲା ଓ ବର୍ଷକୁ ଛାତ୍ର ଗ୍ରହଣର ସଂଖ୍ୟା ୪୦ରେ ସୀମିତ ଥିଲା। ସେମାନଙ୍କୁ ସ୍କୁଲର ଛାତ୍ରାବାସରେ ରଖାଯାଇ କେବଳ ବିଜୁଳି ଖର୍ଚ୍ଚ ପାଇଁ କିଛି ଦେୟ ଅସୁଲ କରା ଯାଇଥିଲା ଓ ସେମାନେ ନିଜେ ମେସ କରି ଚଳୁ ଥିଲେ।

ଉକ୍ତ ଛାତ୍ରମାନଙ୍କୁ Theory ଓ Practical ଉଭୟରେ ପ୍ରଶିକ୍ଷଣ ଦିଆ ଯାଉଥିଲା। ବର୍ଷକୁ ୧୫ଟି ଅଭ୍ୟାସ ପାଠଦାନ କରୁଥିଲେ। ବର୍ଷରେ ବିଶିଷ୍ଟ ଦିବସ ପାଳନ, ପୂଜାପାର୍ବଣ ତଥା ସାଂସ୍କୃତିକ କାର୍ଯ୍ୟକ୍ରମ ମଧରେ ବାର୍ଷିକ ନାଟକ ପ୍ରଦର୍ଶନ ଓ ପରିଭ୍ରମଣ ଶିକ୍ଷାର ଏକ ବିଶେଷ ଅଂଶ ଥିଲା। ଏପରି ଭାବେ ୧୯୬୧ରୁ ୧୯୬୯ ପର୍ଯ୍ୟନ୍ତ ପ୍ରାୟ ୮ଟି ବେଚ୍ ସଂକ୍ଷିପ୍ତ ତାଲିମ ପାଇ ଶତକଡ଼ା ୯୫ ଭାଗ କୃତକାର୍ଯ୍ୟ ହୋଇ ବିଭିନ୍ନ ବିଦ୍ୟାଳୟରେ କାର୍ଯ୍ୟରତ ଅଛନ୍ତି। ସେମାନେ ପରେ ନିଜର ଶିକ୍ଷାର ମାନବୃଦ୍ଧି କରି ମେଟ୍ରିକ ଓ ବି.ଏ. ପାସ୍ କରି C.T. ଓ B.Ed. ପାସ୍ କରି ନିଜର ଦକ୍ଷତା ଓ କୁଶଳତା ବୃଦ୍ଧି କରି ଉଚ୍ଚତର ଆସନକୁ ଉନ୍ନୀତ ହୋଇଛନ୍ତି। ଉକ୍ତ ସ୍ୱଳ୍ପକାଳୀନ ଶିକ୍ଷକ ସଂକ୍ଷିପ୍ତ ତାଲିମ ସେମାନଙ୍କ ଭବିଷ୍ୟତ ଉନ୍ନତି ମାର୍ଗର ପଥ ଉନ୍ମୁକ୍ତ କରିଥିଲା।

ଉପରୋକ୍ତ ତାଲିମ ପ୍ରାପ୍ତି ସମୟରେ ବିଭିନ୍ନ ବର୍ଷମାନଙ୍କରେ ପରିଭ୍ରମଣ ଅବସରରେ ଟେକ୍ସିରେ କଟକ, ପୁରୀ, କୋଣାର୍କ ଓ ନନ୍ଦନକାନନ ଭ୍ରମଣରେ ଯାଇଥିଲେ ଓ ବଣଭୋଜୀ ଅବସରରେ ନରସିଂହନାଥ, ଦେବଗଡ଼ର ପ୍ରଧାନପାଟ ଯାଇ ପ୍ରାକୃତିକ ଦୃଶ୍ୟ ସନ୍ଦର୍ଶନ, ତୀର୍ଥସ୍ଥାନ ଦର୍ଶନର ସଦୁପଯୋଗ କରିଥିଲେ। ଏଥି ପାଇଁ ଏହି ଟ୍ରେନିଂ ଦାୟିତ୍ୱରେ ଥିବା ଶିକ୍ଷକମାନେ ତଥା ଅନ୍ୟାନ୍ୟ ସହାନୁଭୂତିଶୀଳ ଶିକ୍ଷକମାନଙ୍କ ସାହାଯ୍ୟ ବେଶ ପ୍ରଶଂସନୀୟ। ସେମାନେ ଯଥାସମୟରେ ଆମକୁ ତଥା ଗୁରୁଛାତ୍ର ମାନଙ୍କୁ ଉତ୍ସାହିତ କରୁଥିଲେ। ଏବେ ଏହି ଗୁରୁଛାତ୍ର ମାନେ ଭେଟ ପଡ଼ିଲେ ସେ ସମୟର ପ୍ରଶିକ୍ଷଣ ଓ ପରିବେଶକୁ ସ୍ମରଣ କରି ବେଶ କୌତୁହଳୀ ହୁଅନ୍ତି।

## ବିଭିନ୍ନ ପରୀକ୍ଷାକେନ୍ଦ୍ର ରୂପେ ଜର୍ଜ ହାଇସ୍କୁଲ:-

ରାଜ୍ୟରେ ମାଧମିକ ବିଦ୍ୟାଳୟର ସଂଖ୍ୟା ବୃଦ୍ଧି ହେତୁ ପରୀକ୍ଷାର୍ଥୀଙ୍କ

ସଂଖ୍ୟା ମଧ ବୃଦ୍ଧି ପାଇବାକୁ ଲାଗିଲା । ସେଥିପାଇଁ ମାଧମିକ ପରୀକ୍ଷା ସଂଗ୍ଳନ ପାଇଁ ମାଧମିକ ଶିକ୍ଷା ପରିଷଦ ଗଠନ କରାଗଲା ୧୯୫୪ ସାଲରୁ । ପ୍ରଥମେ ଏହି ପରୀକ୍ଷା (Matriculation Exam) ସମଗ୍ର ବିହାର, ଓଡ଼ିଶା ଓ ବଙ୍ଗଳାକୁ ମିଶାଇ ପ୍ରଥମେ କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ ପରେ ପରେ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ଓ ୧୯୪୪ ସାଲରୁ ନୂତନ ଭାବେ ଗଠିତ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ପରିଗ୍ଳିତ ହେଲା । କ୍ରମଶଃ ଶିକ୍ଷାନୁଷ୍ଠାନ ଓ ଛାତ୍ର ସଂଖ୍ୟା ଦୃଷ୍ଟିରୁ ପରୀକ୍ଷାକେନ୍ଦ୍ର କଲିକତାରୁ କଟକ, ସମ୍ବଲପୁର ଆଦି ବିଶିଷ୍ଟ ସହରମାନଙ୍କରେ ପରୀକ୍ଷାକେନ୍ଦ୍ର ସ୍ଥାପନ କରାଗଲା । ଆମ୍ଭେମାନେ ୧୯୪୪ ସାଲରେ ସମ୍ବଲପୁରକୁ ଯାଇ ପରୀକ୍ଷା ଦେଇଥିଲୁଁ । କିନ୍ତୁ ଆଗରୁ ସାରା ଓଡ଼ିଶା ପାଇଁ ବୋଧ ହୁଏ କେବଳ କଟକରେ ପରୀକ୍ଷାକେନ୍ଦ୍ର ଥିଲା । ଆମର ପୂଜ୍ୟ ଗୁରୁଦେବ ଶ୍ରୀଯୁକ୍ତ ଶଶିଭୂଷଣ ମିଶ୍ର ଶର୍ମା ସମ୍ବଲପୁର ଜିଲ୍ଲା ସ୍କୁଲରୁ ପରୀକ୍ଷା ଦେବା ପାଇଁ ଟ୍ରେନରେ କଟକ ଯାଇ ସେଠାରେ ପରୀକ୍ଷା ଦେଇଥିଲେ । ସେତେବେଳେ ସେ ପରୀକ୍ଷାରେ ସମ୍ବଲପୁର ଜିଲ୍ଲାରେ ସର୍ବପ୍ରଥମ ହୋଇ ପ୍ରଥମ ଶ୍ରେଣୀରେ ପାସ କରିଥିଲେ । କିନ୍ତୁ କାଳକ୍ରମେ ସେହି ଧରଣର ପରୀକ୍ଷା ପାଇଁ ୧୯୫୮ରେ ଜର୍ଜ ହାଇସ୍କୁଲକୁ ମାଧମିକ ଶିକ୍ଷା ପରିଷଦ ଏକ ପରୀକ୍ଷାକେନ୍ଦ୍ର ରୂପେ ନିର୍ଦ୍ଧାରଣ କରିଥିଲେ । ଏହା ନୂତନ କେନ୍ଦ୍ର ରୂପେ ସ୍ଥିର କରା ଯାଇଥିବାରୁ ବାହାରୁ ସମ୍ବଲପୁର ମହାବିଦ୍ୟାଳୟର ଇଂରାଜୀ ପ୍ରାଧାପକ ଶ୍ରୀ ପ୍ରଫୁଲ୍ଲ କୁମାର ପତି ପରୀକ୍ଷା ତତ୍ତ୍ୱାବଧାରକ ଭାବେ ନିଯୁକ୍ତି ପାଇ ଆସି ପରୀକ୍ଷା ପରିଗ୍ଳନା କରିଥିଲେ । ସେତେବେଳେ ସ୍କୁଲରେ ଲୁହା ଆଲମିରା ବା ଟ୍ରେଜେରୀ ନ ଥିବାରୁ ପ୍ରଶ୍ନପତ୍ର ଗୁଡ଼ିକୁ ସମ୍ବଲପୁର ଜିଲ୍ଲାପାଳଙ୍କ ଅନୁମତିକ୍ରମେ ଟ୍ରେଜେରୀରେ ଜମା ରହୁଥିଲା । ପ୍ରତିଦିନ ସକାଳେ ସାଢ଼େ ୧୦ଟାରୁ ଟ୍ରେଜେରୀକୁ ଯାଇ ପ୍ରଶ୍ନପତ୍ର ଅଣାଯାଇ ସନ୍ଧ୍ୟା ସାଢ଼େ ୫ ପରେ ପୁଣି ଯାଇ ସେହି ବାକ୍ସକୁ ଟ୍ରେଜେରୀରେ ଜମା କରା ଯାଉଥିଲା । ଏହି ପ୍ରଣାଳୀରେ ପ୍ରତିଦିନ ପ୍ରଶ୍ନପତ୍ର ଓ ପରୀକ୍ଷାର୍ଥୀମାନଙ୍କ ଉତ୍ତରଖାତା ଯାହାକି ସେ ଦିନ ଡାକ ଯୋଗେ ପଠା ଯାଇ ପାରୁ ନ ଥିଲା ସେ ସବୁ ଟ୍ରେଜେରୀରେ ଜମା ଦେଇ ଆସୁଥିଲୁଁ । ଏପରି ଭାବେ ପ୍ରଥମ ବର୍ଷ, ୨ ବର୍ଷ ପରେ ନିଜର ଲୁହା ଆଲମିରା କିଣା ଯିବାରୁ ତାକୁ ଜଉମୁଦ ଦେଇ ଆମ ଅଫିସରେ ରଖାଯାଇ ରାତ୍ରିରେ ଜଗିବା ପାଇଁ ଅଧିକା ମୂଲ୍ୟ ଦେଇ ଜଗୁଆଳୀ ରଖା ଯାଇଥିଲା ।

ପ୍ରଥମ ବର୍ଷ ପରୀକ୍ଷାର ଶେଷ ଦିବସରେ ସମସ୍ତ ପରୀକ୍ଷାର୍ଥୀଙ୍କୁ ଏକତ୍ର କରି ତାଙ୍କୁ ଏକ ସଭାରେ ବିଦାୟକାଳୀନ ସମ୍ବର୍ଦ୍ଧନା ଜଣାଇ ସମାଜ ପ୍ରତି ତାଙ୍କର

କର୍ତ୍ତବ୍ୟ ଓ ପରୀକ୍ଷା ପାଇଁ କିପରି ନିଷ୍ଠା ଓ ଯତ୍ନ ଦରକାର ସେ ବିଷୟରେ ସୂଚନା ଦିଆ ଯାଇଥିଲା ।

୧୯୫୯ରେ ଦ୍ୱିତୀୟ ବର୍ଷ ମଧ୍ୟ ଶ୍ରୀ ପ୍ରଫୁଲ୍ଲ ପତି ଆସି ପରୀକ୍ଷା ପରିଚ୍ଲନା କରି ଯାଇଥିଲେ । ୧୯୬୦ରେ ମାଧ୍ୟମିକ ଶିକ୍ଷା ପରିଷଦର ବାର୍ଷିକ ପରୀକ୍ଷା ପାଇଁ ଅଧ୍ୟାପକ ସ୍ୱର୍ଗତ ଶୁକଦେବ ମିଶ୍ର ଆସି ପରୀକ୍ଷା ପରିଚ୍ଲନା କରିଥିଲେ । କିନ୍ତୁ ସେ ବର୍ଷ Supplementary ପରୀକ୍ଷା ପାଇଁ ମଧ୍ୟ ଆମ ସ୍କୁଲ କେନ୍ଦ୍ର ରୂପେ ବିବେଚିତ ହେବାରୁ ଆଉ ବାହାରୁ କାହାକୁ ନ ପଠାଇ ମୋତେ ପରୀକ୍ଷା ପରିଚ୍ଲନା ପାଇଁ ନିଯୁକ୍ତି ଦେଇଥିଲେ । ସେହି ବର୍ଷଠାରୁ ପ୍ରାୟ ସବୁ ପରୀକ୍ଷା ପରିଚ୍ଲନା ପାଇଁ ୧୯୬୫ ବା ପରେ ମଧ୍ୟ ମୋତେ ନିଯୁକ୍ତି ମିଳିଥିଲା ।

ଧୀରେ ଧୀରେ ଆମ ବିଦ୍ୟାଳୟକୁ E.T., B.T. ଓ C.T. ପରୀକ୍ଷାର କେନ୍ଦ୍ର ରୂପେ ଧାର୍ଯ୍ୟ କରାଯାଇ ସମସ୍ତ ପରୀକ୍ଷାର ପରିଚ୍ଲନା ଭାର ମୋର ଉପରେ ନ୍ୟସ୍ତ କରାଗଲା ।

ଏଥି ପୂର୍ବରୁ ତ ମୁଁ ସପ୍ତମ ଶ୍ରେଣୀ ବୃତ୍ତି ପରୀକ୍ଷା ପାଇଁ ପରୀକ୍ଷକ ରୂପେ ନିଯୁକ୍ତି ପାଇଥିଲି । ପରେ ମେଟ୍ରିକ ପରୀକ୍ଷାର ବିଜ୍ଞାନ, ଗଣିତ ପାଇଁ ପରୀକ୍ଷକ ଓ ବିଜ୍ଞାନ ପାଇଁ ମୁଖ୍ୟ ପରୀକ୍ଷକ ରୂପେ ନିଯୁକ୍ତି ପାଇ ମୋର କର୍ତ୍ତବ୍ୟ ସମ୍ପାଦନ କରିଥିଲି ।

ଏତଦ୍‌ଭିନ୍ନ ଆମ ସ୍କୁଲ U.P. Scholarship, M.E. Common ଓ M.E. Scholarship ପରୀକ୍ଷାକେନ୍ଦ୍ର ରୂପେ ସ୍ଥିରୀକୃତ ହୋଇ ତାର ପରିଚ୍ଲନା ଆମ ସ୍କୁଲ ଶିକ୍ଷକମାନଙ୍କୁ ଓ ଆବଶ୍ୟକ ହେଲେ ବାହାର ସ୍କୁଲ ଶିକ୍ଷକମାନଙ୍କ ସାହାଯ୍ୟ ନିଆଯାଉଥିଲା ।

ପ୍ରକାଶଯୋଗ୍ୟ ଯେ ଉପରୋକ୍ତ ପରୀକ୍ଷାମାନଙ୍କରେ ଆମ ସ୍କୁଲର ଛାତ୍ରମାନେ ଯୋଗ୍ୟତାପୂର୍ବକ କୃତିତ୍ୱ ପ୍ରଦର୍ଶନ କରି ସାରା ଜିଲ୍ଲା ବା ପ୍ରାଦେଶିକ ସ୍ତରରେ ମଧ୍ୟ ସୁନାମ ଅର୍ଜନ କରୁଥିଲେ । ପ୍ରତିଟି ପରୀକ୍ଷାର ଫଳ ସନ୍ତୋଷଜନକ ହୋଇ ଆମ ସ୍କୁଲର ଛାତ୍ରମାନେ ପ୍ରଥମ ଦଶଜଣଙ୍କ ମଧ୍ୟରେ ସ୍ଥାନ ହାସଲ କରି ସ୍କୁଲର ଗୌରବ ବର୍ଦ୍ଧନ କରୁଥିଲେ । ଉକ୍ତ କୃତୀ ଛାତ୍ରଛାତ୍ରୀମାନେ ଦେଶ ବିଦେଶରେ ବିଭିନ୍ନ କ୍ଷେତ୍ରରେ ଗୌରବ ଅର୍ଜନ କରି ସ୍କୁଲର ନାମକୁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରିଛନ୍ତି ।

ପାଠପଢ଼ା ଛଡ଼ା ଅନ୍ୟାନ୍ୟ ସାଂସ୍କୃତିକ ଓ କ୍ରୀଡ଼ା କ୍ଷେତ୍ରରେ ମଧ୍ୟ ସୁନାମ ଅର୍ଜନ କରିଥିବା ଉଦାହରଣ ମଧ୍ୟ ଉଲ୍ଲେଖଯୋଗ୍ୟ । ୧୯୬୨-୬୩ରେ କଲିକତାର

ରାଣୀ ରାସମଣୀ ହାଇସ୍କୁଲ ସର୍ବଭାରତୀୟ ସ୍ତରରେ ହାଇସ୍କୁଲ ସ୍ତରରେ ସର୍ବଶ୍ରେଷ୍ଠ ଫୁଟବଲ ଖେଳାଳୀ ରୂପେ ସୁବ୍ରତ ମୁଖାର୍ଜୀ କପ ହାସଲ କରିଥିଲେ । ଆମର ଏଠାକୁ ସେହି ସ୍କୁଲକୁ ଓ ଅନ୍ୟାନ୍ୟ ନିକଟତମ ସ୍କୁଲମାନଙ୍କୁ ଡକାଇ ଏକ ପ୍ରଦର୍ଶନୀ ଫୁଟବଲ ମେଚର ଆୟୋଜନ କରିଥିଲୁଁ । ପ୍ରଥମ ଦିନ ଆମ ସ୍କୁଲ ଉପରୋକ୍ତ ରାଣୀ ରାସମଣୀ ସ୍କୁଲ ସଙ୍ଗେ ଖେଳିଲା ବେଳେ ଆରମ୍ଭର ପ୍ରଥମ ମିନିଟରେ ଆମ ସ୍କୁଲର ଜନୈକ ପ୍ରବୀଣ ଖେଳାଳୀ ଦେବେନ୍ଦ୍ର ଭୋଇ ଗୋଟିଏ ଗୋଲ ଦେଇ ସ୍କୁଲର ଇଜ୍ଜତ ରଖିଥିଲେ । କିନ୍ତୁ ପରେ ପରେ ସେମାନେ ଆମକୁ ୨ଟି ଗୋଲ ଦେଇ ଜିତିଗଲେ । ହେଲେହେଁ ଭାରତ ବିଖ୍ୟାତ କପ୍ ବିଜୟୀ ଦଳକୁ ଆମେ ପ୍ରଥମରେ ଗୋଲଟିଏ ଦେଇ ଯେଉଁ ଗୌରବ ଅର୍ଜନ କରିଥିଲୁଁ ତାହା କମ କଥା ନୁହେଁ ।

ଆମ ସ୍କୁଲରେ Science Club ସଂଗଠନ କରା ଯାଇଥିଲା । ପ୍ରାଦେଶିକ ସ୍ତରରେ ବିଜ୍ଞାନ ପ୍ରତିଯୋଗିତାରେ ଯୋଗ ଦେଇ ସର୍ବଶ୍ରେଷ୍ଠ ସ୍ଥାନ ଅର୍ଜନ କରିଥିବାର ଗୌରବ ହାସଲ କରିଥିବା ଉଲ୍ଲେଖନୀୟ । ଏଥିପାଇଁ ତତ୍କାଳୀନ ବିଜ୍ଞାନ ଶିକ୍ଷକ ତଥା ଛାତ୍ର ପରଶରାମ ଅଗ୍ରୱାଲଙ୍କ ଉଦ୍ୟମ ପ୍ରଶଂସନୀୟ ଅଟେ । ଏଥିପାଇଁ ଶ୍ରୀ ପରଶରାମ ଅଗ୍ରୱାଲଙ୍କ ନାମ ଉଲ୍ଲେଖଯୋଗ୍ୟ ।

ବର୍ଣ୍ଣିତ ସମୟରେ ଜର୍ଜ ହାଇସ୍କୁଲ ଏକମାତ୍ର ପୁରାତନ ଅନୁଷ୍ଠାନ ହିସାବରେ ଅଗ୍ରଗଣ୍ୟ ଥିବାରୁ ଓ କଲେଜର ତଥା ଅନ୍ୟାନ୍ୟ ଶିକ୍ଷାନୁଷ୍ଠାନମାନଙ୍କର ପ୍ରାଧାନ୍ୟ ଓ ବରଗଡ଼ରେ ଯେକୌଣସି ସାଂଗଠନିକ, ସାମାଜିକ ତଥା ସରକାରୀ ସ୍ତରରେ ଆମ ସ୍କୁଲ ଏକ ମୁଖ୍ୟ ଭୂମିକା ଗ୍ରହଣ କରୁଥିଲା ଏବଂ ଆମ ବିଦ୍ୟାଳୟର ଏକ ସୁବିସ୍ତୀର୍ଣ୍ଣ ପଡ଼ିଆ ଥିବାରୁ ଯାବତୀୟ ସାମୁହିକ ଖେଳ ବା ଅନ୍ୟାନ୍ୟ ପେରେଡ ଆଦି କାର୍ଯ୍ୟ ଆମ ସ୍କୁଲ ଜରିଆରେ ସମ୍ପନ୍ନ ହେଉଥିଲା ।

ଶିକ୍ଷାମଣ୍ଡଳର ଯେକୌଣସି କାର୍ଯ୍ୟକ୍ରମ କରିବାରେ ଏହି ବିଦ୍ୟାଳୟଟି ମୁଖ୍ୟ କେନ୍ଦ୍ର ରୂପେ ବିଗ୍ରର କରା ଯାଉଥିଲା । ଏଣୁ ବ୍ଲକ ସ୍ତରୀୟ, ମଣ୍ଡଳସ୍ତରୀୟ ବା ଆଞ୍ଚଳିକ ସ୍ତରୀୟ ସମସ୍ତ କାର୍ଯ୍ୟକ୍ରମ ଏଠାରେ ସମ୍ପାଦିତ ହେଉଥିଲା । ୧୯୬୪-୬୫ରେ ଉତ୍ତର ପୂର୍ବର ପ୍ରାୟ ୫ଟି ଜିଲ୍ଲାର Regional Science Fair ଏଠାରେ ଅନୁଷ୍ଠିତ ହୋଇ ଆମ ସ୍କୁଲ ପ୍ରାୟ ଅନେକାଂଶ କାର୍ଯ୍ୟକ୍ରମରେ ଅଂଶ ନେଇ କୃତିତ୍ୱ ହାସଲ କରିଥିଲା ।

ବିଦ୍ୟାଳୟର ଅନ୍ୟାନ୍ୟ କାର୍ଯ୍ୟକ୍ରମ ବିଷୟରେ ଉଲ୍ଲେଖ କରାଯାଇ ଏହା ସୂଚନା ଦିଆ ଯାଇପାରେ ଯେ ୧୯୬୨ ସାଲରେ ସ୍କୁଲର ପୁରସ୍କାର ବିତରଣୀ ଉତ୍ସବରେ ତତ୍କାଳୀନ ଉପମୁଖ୍ୟମନ୍ତ୍ରୀ ପବିତ୍ରମୋହନ ପ୍ରଧାନ ମୁଖ୍ୟ ଅତିଥି ଭାବେ

ଯୋଗ ଦେଇ ସ୍କୁଲର ସର୍ବାଙ୍ଗୀନ ଉନ୍ନତି ଦେଖି ସନ୍ତୋଷ ପ୍ରକାଶ କରିଥିଲେ। ସେତେବେଳେ ଭାରତ ଓ ଚୀନର ଯୁଦ୍ଧ ପାଣ୍ଠି ପାଇଁ ମଧ୍ୟ ଚାନ୍ଦା ସଂଗ୍ରହ କରାଯାଇ ମନ୍ତ୍ରୀଙ୍କୁ ଦାନ କରା ଯାଇଥିଲା।

୧.୩.୧୯୬୯ରେ ସରକାରଙ୍କ ନୂତନ ନିୟମ ଅନୁସାରେ ୧୪୨ଟି Net Deficit ସ୍କୁଲକୁ ପୂର୍ଣ୍ଣ ସରକାରୀ A type ସ୍କୁଲ ରୂପେ ଘୋଷଣା କରିବାରୁ ଆମ ସ୍କୁଲ 'A' ଶ୍ରେଣୀ ପାହ୍ୟାକୁ ଉନ୍ନୀତ ହୋଇ ପରେ ୧୯୮୦ରେ ସରକାରୀ ନିୟମାନୁଯାୟୀ ସରକାରୀ ୨ୟ ଶ୍ରେଣୀ ପାହ୍ୟାକୁ ଉନ୍ନୀତ ହୋଇ ପ୍ରଧାନ ଶିକ୍ଷକଙ୍କ ପଦବୀକୁ ମଧ୍ୟ ୨ୟ ଶ୍ରେଣୀ Gazetted କରାଗଲା। ଅବଶ୍ୟ ସେତେବେଳେ ମୁଁ ସ୍କୁଲରୁ ଅନ୍ୟତ୍ର ବଦଳି ହୋଇ ଯାଇଥିଲି।

୧୯୬୯ରେ ମଣ୍ଡଳାଧୀଶ ଶ୍ରୀ ଆଦିକନ୍ଦ ନାୟକ ଥିଲେ ଓ ସେତେବେଳେ ଆମ ସ୍କୁଲରେ ସାରା ମଣ୍ଡଳର ପ୍ରଧାନ ଶିକ୍ଷକମାନଙ୍କର ଏକ ସମ୍ମିଳନୀ ଆୟୋଜିତ ହୋଇଥିଲା। ସେଦିନ ସନ୍ଧ୍ୟାରେ  ଆମେ ଏକ ପୁରସ୍କାର ବିତରଣୀ ଉତ୍ସବ ଆୟୋଜନ କରିଥିଲୁ। ସେଥିରେ ସ୍କୁଲସମୂହର ନିର୍ଦ୍ଦେଶକ ପ୍ରଫେସର ବୈଦ୍ୟନାଥ ରଥ ମୁଖ୍ୟ ଅତିଥି ରୂପେ ଯୋଗ ଦେଇଥିଲେ। କିନ୍ତୁ ଆଗନ୍ତୁକ ପ୍ରଧାନ ଶିକ୍ଷକଙ୍କ ମଧ୍ୟରେ ଆମ ବିଦ୍ୟାଳୟର ପୂର୍ବତନ ହେ.ମା. ତଥା ମୋର ଗୁରୁ ଶ୍ରୀଯୁକ୍ତ ହାରାଚ୍ଛନ୍ଦ ନାୟକ ଉପସ୍ଥିତ ଥିଲେ। ପ୍ରଫେସର ରଥ ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ କଲା ବେଳେ ଶ୍ରୀଯୁକ୍ତ ନାୟକ ତାଙ୍କର ଶିକ୍ଷକ ଥିଲେ। ତେଣୁ ତାଙ୍କ ଶିକ୍ଷକଙ୍କୁ ସମ୍ମାନ ଦେବା ଦୃଷ୍ଟିରୁ ନିଜେ ମୁଖ୍ୟ ଅତିଥି ରୂପେ ଛାତ୍ରମାନଙ୍କୁ ପୁରସ୍କାର ନ ଦେଇ ତାଙ୍କ ନିଜର ଗୁରୁ ଶ୍ରୀଯୁକ୍ତ ନାୟକଙ୍କୁ ମଞ୍ଚ ଉପରକୁ ଡକାଇ ତାଙ୍କ ହାତରେ ପୁରସ୍କାର ବଣ୍ଟନ କରିବାର ଗୌରବ ପ୍ରଦାନ କରି ଭାରତରେ ଗୁରୁ ଛାତ୍ରଙ୍କ ସମ୍ପର୍କର ଉତ୍କର୍ଷତା ପ୍ରଦର୍ଶନ କରିଥିଲେ। ତେଣୁ ଶ୍ରୀଯୁକ୍ତ ନାୟକ ଭାବବିହ୍ୱଳିତ ହୋଇ ପ୍ରକାଶ କରି କହି ପକାଇଥିଲେ ଯେ ଗୁରୁ ଓ ଚେଲାର ସମ୍ପର୍କକୁ ମହୀୟାନ କରି ବୁଝାଇଥିଲେ। ଅର୍ଥାତ ଗୁରୁ 'ଗୁଡ଼' ହୋକେ ରହ ଗୟା ଔର ଚେଲା 'ଚିନି'ବନ୍‌କର ବହୁତ ଉପାଦେୟ ହୋ ଗୟା। ଏଥିରେ ଉପସ୍ଥିତ ଜନତା କରତାଳି ଦେଇ ଆନନ୍ଦ ପ୍ରକାଶ କରିଥିଲେ। ଫଳରେ ଉଭୟଙ୍କ ସମ୍ମାନ ବୃଦ୍ଧି ପାଇଥିଲା।

ଏହା ପରେ ଆଉ ଥରେ ୧୯୭୫ରେ ଆମ ସ୍କୁଲରେ ପୁରସ୍କାର ବିତରଣୀ ସଭା ଓ ବିଜ୍ଞାନ ପ୍ରଦର୍ଶନୀ ତଥା ଯୋଗାସନର ପ୍ରଦର୍ଶନ କରା ଯାଇଥିଲା। ସେତେବେଳେ ଆମ ବିଭାଗୀୟ ଯୁଗ୍ମ ନିର୍ଦ୍ଦେଶକ ଶ୍ରୀଯୁକ୍ତ ଦୀନବନ୍ଧୁ

ଜଣେ ଶିକ୍ଷକ...

ପାଣିଗ୍ରାହୀ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ସ୍କୁଲର ସାଂସ୍କୃତିକ କାର୍ଯ୍ୟକ୍ରମରେ ଅତିଶୟ ପ୍ରୀତ ହୋଇଥିଲେ । ତାଙ୍କର ଦେଇଥିବା ଅଭିଭାଷଣକୁ ଟେପ୍ ରେକର୍ଡ କରାଯାଇ ତାଙ୍କୁ ଶୁଣାଇ ଦେବାରୁ ସେ ଅଶେଷ ସନ୍ତୋଷ ପ୍ରକାଶ କରିଥିଲେ ।

ମୋର 'NonStudents Youth Welfare Board'ରେ ସଦସ୍ୟ ହେବା ପରେ ଆମ ସ୍କୁଲ ଜରିଆରେ ୧୯୬୦ରେ ଏକ ଅଣଛାତ୍ର ଯୁବମେଳା ଅନୁଷ୍ଠିତ ହୋଇଥିଲା । ସେଥିପାଇଁ ରାଜ୍ୟ ସରକାରଙ୍କ ତରଫରୁ ଯଥାଯଥ ପରିମାଣ ଅନୁଦାନ ମିଳିଥିଲା । ସେଥିରେ ଏହି ଅଞ୍ଚଳର ବିଭିନ୍ନ ଅଣଛାତ୍ର ଯୁବସଂସ୍ଥା ଭାଗ ନେଇ ନାନା ସାଂସ୍କୃତିକ କାର୍ଯ୍ୟକ୍ରମ ଓ କ୍ରୀଡ଼ା ପ୍ରଦର୍ଶନ ପୂର୍ବକ ବିଶେଷ ପୁରସ୍କୃତ ହୋଇଥିଲେ । ଉକ୍ତ ଉତ୍ସବରେ ତତ୍କାଳୀନ ଯୁବମଙ୍ଗଳ ସଂସ୍ଥାର ପ୍ରାଦେଶିକ ସମ୍ପାଦକ ପ୍ରଫେସର ବୈଦ୍ୟନାଥ ମିଶ୍ର ଯୋଗ ଦେଇ ଉକ୍ତ ଉତ୍ସବରେ ମୁଖ୍ୟ ଅତିଥି ଭାବେ ସମସ୍ତଙ୍କୁ ଉତ୍ସାହ ଉଦ୍ଦୀପକ ଭାଷଣରେ ଆପ୍ୟାୟିତ କରିଥିଲେ । ଉକ୍ତ ସଂସ୍ଥା ତରଫରୁ ବିଭିନ୍ନ ଅଣଛାତ୍ର ତଥା ଅନୁଷ୍ଠାନମାନଙ୍କୁ ପୁସ୍ତକାଗାର ଓ ପରିଭ୍ରମଣ ସକାଶେ ଯଥେଷ୍ଟ ଅନୁଦାନ ମିଳୁଥିଲା । ଏସବୁଥିରେ ସଂସ୍ଥାର ସଦସ୍ୟ ହିସାବରେ ମୋର ଯଥେଷ୍ଟ ଦାୟିତ୍ୱ ଥିଲା । ଉକ୍ତ ସଂସ୍ଥାରେ ମୁଁ ପ୍ରାୟ ଅନେକ ବର୍ଷ ଧରି ସଦସ୍ୟ ରହି ଏ ଅଞ୍ଚଳର ବିଭିନ୍ନ ଅନୁଷ୍ଠାନଗୁଡ଼ିକ ମୋର ପରିସରଭୁକ୍ତ ସାହାଯ୍ୟ କରିବାରେ ସକ୍ରିୟ ଭାଗ ନେଇଥିଲି ।

## ବିଦ୍ୟାଳୟରେ ବିଜୁଳି ଯୋଗାଣ:-

ଏହି ସମୟରେ ହୀରାକୁଦରୁ ବିଜୁଳି ଉତ୍ପାଦନ ଆରମ୍ଭ ହୋଇ ସବୁଆଡ଼େ ଯୋଗାଣ ଆରମ୍ଭ ହୋଇଥିଲା । ତେଣୁ ସ୍କୁଲରେ ବିଦ୍ୟୁତ ଯୋଗାଣ ପାଇଁ ତତ୍କାଳୀନ S.D.O.ଙ୍କ ସଙ୍ଗେ ଆଲୋଚନା କରିବାରୁ ଉକ୍ତ ମହାଶୟ ସ୍ଥାନୀୟ ନଗରସେଠ ହରନାରାୟଣ ଅଗ୍ରୱାଲଙ୍କୁ କହି ଏକ ଟ.୧୫୦୦ର ଦାନର ପାଇଁ ସ୍ୱୀକୃତ କରାଇଥିଲେ । ମୁଁ ତାଙ୍କ ସହ ଅହରହ ସମ୍ପର୍କ ରଖି ଅନୁନୟ ଓ ବିନୟ କରି ଉକ୍ତ ମୂଲ୍ୟର ବିଜୁଳି ଯୋଗାଣ ସରଞ୍ଜାମ କଲିକତାରୁ ମଗାଇ ସ୍କୁଲକୁ ବିଦ୍ୟୁତିକରଣ ପାଇଁ ବିଭିନ୍ନ ବଦାନ୍ୟ ଠିକାଦାରଙ୍କ ଜରିଆରେ ନାମକୁ ମାତ୍ର ପାରିଶ୍ରମିକ ଦେଇ ବିଦ୍ୟୁତ ଯୋଗାଣ କରାଇଥିଲି । ତାର ଶୁଭ ଉଦ୍‌ଘାଟନ ସେଠ ହରନାରାୟଣଙ୍କ ସ୍ୱହସ୍ତରେ ସମ୍ପାଦିତ ହୋଇଥିଲା ୧୯୬୦ରେ । ପରେ ଅନ୍ୟାନ୍ୟ ବଦାନ୍ୟ ବ୍ୟକ୍ତିଙ୍କ ସାହାଯ୍ୟ ତଥା ଛାତ୍ରାବାସର ଛାତ୍ରମାନଙ୍କ ସ୍ୱତଃପ୍ରବୃତ୍ତ ଦାନରେ ଛାତ୍ରାବାସଦ୍ୱୟ ତଥା ଛାତ୍ରାବାସ ତତ୍ତ୍ୱାବଧାରକଙ୍କ ସରକାରୀ କ୍ୱାଟର୍ସ ଓ ପ୍ରଧାନ ଶିକ୍ଷକଙ୍କ କ୍ୱାଟର୍ସକୁ

ବିଜୁଳି ଯୋଗାଣ ସମ୍ଭବ ହୋଇଥିଲା । ଏହି ବିଜୁଳି ଯୋଗାଣର ବୈଷୟିକ ସାହାଯ୍ୟ ତତ୍କାଳୀନ ବରଗଡ଼ ଶିଳ୍ପ ବିଦ୍ୟାଳୟର ବିଜୁଳି ବିଭାଗର ଉପଦେଷ୍ଟା ୰ ନିମାଇଁ ଚରଣ ସାହୁବାବୁ ଓ ତାଙ୍କ ଛାତ୍ରମାନଙ୍କ ବିନା ମୂଲ୍ୟ ଓ ଅକୁଣ୍ଠ ସାହାଯ୍ୟରେ ସମ୍ପାଦିତ ହୋଇଥିଲା । ତେଣୁ ସେମାନେ ଆମର ଧନ୍ୟବାଦାର୍ହ । ସେହି ଦିନଠାରୁ ସାରା ସ୍କୁଲ ପରିସରକୁ ବିଜୁଳି ଯୋଗାଣ ଅବ୍ୟାହତ ରହିଲା । ଆମର ଅନୁରୋଧକ୍ରମେ ମୁନିସିପାଲଟି ଚେୟାରମେନ ଶ୍ରୀଯୁକ୍ତ ସେବାରାମ ଫସାରୀ ଆମ ସ୍କୁଲ ପରିସର ମଧ୍ୟରେ ଏକ ମୁନିସିପାଲଟି ପ୍ରଦତ୍ତ ଟ୍ୟୁବଲାଇଟ ଯୋଗାଇ ଆମ ବିଦ୍ୟାଳୟ ପରିସରକୁ ଆଲୋକିତ ହେବା ପାଇଁ ଆମକୁ ଉତ୍ସାହିତ କରିଥିଲେ ।

## ଦିଲ୍ଲୀ ବିଶ୍ୱ ଶିକ୍ଷା ସମ୍ମିଳନୀ (WCOTP - World Confederation of Organisation of the Teaching Profession):-

୧୯୬୧ ସାଲର ଜୁଲାଇ - ଅଗଷ୍ଟ ମାସରେ ଦିଲ୍ଲୀରେ ସାରା ବିଶ୍ୱର ୭୦ଟି ଦେଶକୁ ନେଇ ଏକ ବିଶ୍ୱ ଶିକ୍ଷା ସମ୍ମିଳନୀ ଆୟୋଜିତ ହୋଇଥିଲା । ମୁଁ ସେତେବେଳେ OSSTA (Orissa Secondary School Teachers Association)ର ସମ୍ବଲପୁର ଜିଲ୍ଲାର ସମ୍ପାଦକ ଥିଲି । ତେଣୁ ମୋତେ ସରକାରଙ୍କ ଅନୁମୋଦନ କ୍ରମେ ଉକ୍ତ ସମ୍ମିଳନୀରେ ପ୍ରତିନିଧିତ୍ୱ କରିବାର ସୌଭାଗ୍ୟ ମିଳିଥିଲା । ସେହି ଅନୁମୋଦନର ବଳରେ ବିଭାଗୀୟ ଅନୁମତି ପାଇ ମୁଁ ଦିଲ୍ଲୀ ଯିବାକୁ ପ୍ରସ୍ତୁତ ହେଲି । ସେଥିପାଇଁ ଯଥାନୁରୂପ ରିହାତି ଦରରେ ଟିକଟର ମୂଲ୍ୟ ଦେଇ ଯିବାକୁ ପଡ଼ିଲା ଓ ସେଥିରେ ସ୍ଥାନ ସଂରକ୍ଷଣ ପାଇଁ ଚକ୍ରଧରପୁରରୁ ଅନୁମତି ଆଣି ଠିକ ସମୟରେ ବାହାରି ଝାରସୁଗୁଡ଼ାରୁ କଲିକତା ବାଟେ ଦିଲ୍ଲୀ ଯିବାକୁ ହେଉଥିଲା । କାରଣ ସେତେବେଳେ ଝାରସୁଗୁଡ଼ାରୁ ବା ଓଡ଼ିଶାରୁ ସିଧାସଳଖ ଦିଲ୍ଲୀ ପାଇଁ ଟ୍ରେନ ନ ଥିଲା । ଏହା ମୋ ପାଇଁ ଦିଲ୍ଲୀ ଯାତ୍ରା ସର୍ବପ୍ରଥମ ଓ ପୁରାପୁରି ଭାବେ ନୂତନ ତେଣୁ ମୁଁ ଯୋଗାଡ଼ କରି ଦିଲ୍ଲୀରେ ପଢୁଥିବା କେତେକ ଛାତ୍ରଙ୍କ ଠିକଣା ନେଇ ଏଠାରୁ ଯାଇଥିଲି । ସେମାନଙ୍କ ମଧ୍ୟରେ ଆମ ବିଦ୍ୟାଳୟର ଅନ୍ୟତମ ଶିକ୍ଷକ ଶ୍ରୀ ଦୀର୍ଘଜୀବୀ ଶର୍ମାଙ୍କ କନିଷ୍ଠ ଭ୍ରାତା ଶତନ୍ଜୀବୀ ଶର୍ମା Agriculture Research Institute, Pusa, New Delhiରେ ଅଧ୍ୟୟନ କରୁଥିଲେ । ମୁଁ ସେହି ସାହସରେ ଦିଲ୍ଲୀ ଅଭିମୁଖେ ଯାତ୍ରା କରି ଝାରସୁଗୁଡ଼ାରୁ କଲିକତା ଗଲି । ମୁଁ ଯେଉଁ ଟିକଟ ସଂଗ୍ରହ କରିଥିଲି ତାଦ୍ୱାରା ମୁଁ ଯେଉଁ ରେଳରେ

ଯିବା କଥା ତାକୁ ଧରି ଦିଲ୍ଲୀ ଗଲେ ଦିଲ୍ଲୀରେ ପହଞ୍ଚିବାକୁ ପ୍ରାୟ ବେଶୀ ସମୟ ଲାଗିବ, ଗାଡ଼ିଟି ରାତ୍ରିରେ ପହଞ୍ଚେ। କିନ୍ତୁ ଆଉ ଏକ ଦ୍ରୁତଗାମୀ Vestibule Trainରେ ଗଲେ ଶୀଘ୍ର ଓ ପରଦିନ ଦିବାଲୋକରେ ପହଞ୍ଚିବ। କିନ୍ତୁ ସେଥିପାଇଁ ଆଉ ଟ.୨୦ ଅଧିକା ଭଡ଼ା ଲାଗିବ। ମୁଁ ଦିନବେଳା ତଥା ଶୀଘ୍ର ପହଞ୍ଚିବା ଦୃଷ୍ଟିରୁ ଅଧିକ ଟ. ୨୦ ଦେଇ ଦିନ ୧୧ଟାରେ ସେହି ଦ୍ରୁତଗାମୀ ଟ୍ରେନ ଧରି ଦିଲ୍ଲୀ ମୁଖେ ଯାତ୍ରା କଲି। Vestibule Trainର ସୁବିଧା ଏହି ଯେ ଏହି ଟ୍ରେନର ସମସ୍ତ ଡବା ପରବର୍ତ୍ତୀ ଡବା ସହ ଏକ Corridor (କ୍ଷୁଦ୍ର ସଂଯୋଜକ ପଥ) ଦ୍ୱାରା ସଂଯୁକ୍ତ। ତେଣୁ ଜଣେ ଯାତ୍ରୀ ଟ୍ରେନର ଏମୁଣ୍ଡରୁ ଅପର ମୁଣ୍ଡକୁ ସୁନ୍ଦର ଭାବେ ବୁଲାବୁଲି କରି ସମୟ ଅତିବାହିତ କରିପାରେ। ଅର୍ଥାତ ଯାତ୍ରାଟି ଆଉ ବିରକ୍ତିକର ନ ହୋଇ ଆନନ୍ଦଦାୟକ ହୋଇପାରେ। ତାପରେ ନିଜ ବସିବା ସ୍ଥାନରେ ଥାଇ ଖାଦ୍ୟପଦାର୍ଥ ଓ ଜଳଖିଆ ବରାଦ କଲେ ରେଳ କର୍ମଚାରୀମାନେ ସେଠାରେ ଆଣି ଦେଇ ଯିବେ। ବସିବା ସିଟଟି ମଧ୍ୟ ନିଜ ଇଚ୍ଛାରେ ଆଗ ପଛ କରି ଗୋଡ଼ ଲମ୍ବାଇ ବସିବାର ସୁବିଧା ଓ ଚାହିଁଲେ ଶୋଇବାର ମଧ୍ୟ ସୁବିଧା କରା ଯାଇପାରେ। କିନ୍ତୁ ନିଜର ସାମାନ୍ୟ ଦରକାରୀ ଜିନିଷ ବ୍ୟତୀତ ଆଉ ଅଧିକ ଜିନିଷ ନିଜ ପାଖରେ ନ ରଖି ସର୍ବସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ Luggage Vanରେ ରଖି ବିଧିମତ ରସିଦ ଦିଆଯାଏ। ଗନ୍ତବ୍ୟ ସ୍ଥଳରେ ପହଞ୍ଚିଲେ ସେସବୁ ଯାତ୍ରୀମାନଙ୍କୁ ଫେରସ୍ତ ଦିଆଯାଏ। ଏହି ଗାଡ଼ିଟି କେତେକ ବୃହତ୍ ଷ୍ଟେସନ ମାନଙ୍କରେ ଅଟକେ। ଏହି ବାଟରେ ଗଲା ବେଳେ ଲକ୍ଷ୍ନୌ ଏ ଟ୍ରେନ୍ ଅଟକିବା ପାଇଁ ଉଦ୍ଦିଷ୍ଟ ଷ୍ଟେସନ ଓ ଏଠାରେ କିଛି ସମୟ ମଧ୍ୟ ରହେ। ତେଣୁ ମୋର ଜିନିଷକୁ ପାଖର କିଛି ଯାତ୍ରୀଙ୍କୁ ଜିମା ଦେଇ ଲକ୍ଷ୍ନୌରେ ପ୍ଲେଟଫାର୍ମରେ ଓହ୍ଲାଇଲା ବେଳେ ପାଖ ଡବାରୁ ମୋର ପୂର୍ବ ପରିଚିତ ଅଧ୍ୟାପକ Prof. V.G. Jhingranଙ୍କୁ ଗୋଟିଏ ଛୋଟ କୁକୁର (Puppy)କୁ ଧରି ଓହ୍ଲାଉଥିବାର ଦେଖି ଅତି କୌତୁହଳରେ ଯାଇ ତାଙ୍କ ପାଦ ସ୍ପର୍ଶ କରିବାରେ ସେ ଆଶ୍ଚର୍ଯ୍ୟ ହୋଇ ମୋତେ ଜିଜ୍ଞାସା ଦୃଷ୍ଟିରେ ଅନାଇଲେ। ମୁଁ ତାଙ୍କ ମନୋଭାବ ଜାଣି କହି ପକାଇଲି ଯେ ସମ୍ବଲପୁର କଲେଜର I.Scରେ Roll No. 54, Shashi Babu, How do you do? ସେ ଆନନ୍ଦରେ ଅଭିଭୂତ ହୋଇ କୁଣ୍ଡାଇ ପକାଇଲେ ଓ ଭଲମନ୍ଦ କିପରି ପଚାରୁ ପଚାରୁ ଟ୍ରେନ୍ ହୁଇସିଲ ଦେଲା। ମୁଁ ତରତରରେ ତାଙ୍କର ଠାରୁ ଆଶୀର୍ବାଦ ଓ ବିଦାୟ ନେଇ ଟ୍ରେନରେ ଉଠିଲି। ସତରେ ଶିକ୍ଷକ ଛାତ୍ରଙ୍କ ମଧ୍ୟରେ କି ଅନାବିଳ ସମ୍ପର୍କ! ଯାହା ଆଜି ଚଳଣିରେ ସମ୍ପୂର୍ଣ୍ଣ ଯେ ବିରଳ।

ତାହା ପରେ ପରଦିନ ପ୍ରାୟ ୧୧ଟାରେ ଟ୍ରେନ ନୂଆଁ ଦିଲ୍ଲୀ ଷ୍ଟେସନରେ ପହଞ୍ଚିଲା । ମୁଁ ଟ୍ରେନ୍‌ରୁ ଓହ୍ଲାଇ ମୋର ଲଗେଜ ପାଇଁ ଅପେକ୍ଷା କରି କିଛି ସମୟ ପରେ ରସିଦ ଦେଖାଇ ମୋର ଜିନିଷ ଆଣି କୁଲି ସାହାଯ୍ୟରେ ଷ୍ଟେସନ ବାହାରକୁ ଆସି କୌଣସି ଯାନବାହନର ସନ୍ଧାନରେ ଅପେକ୍ଷା କରୁଛି ଜଣେ ଟେମ୍ପୋ ବାଲା ଆସି ମୋତେ ମୋ ଗନ୍ତବ୍ୟ ସ୍ଥାନର ଉଦ୍ଦେଶ୍ୟ ପଚାରିବାରୁ ମୁଁ Pusa Agriculture Research Instituteକୁ ଯିବା କଥା କହିବାରୁ ସେ ସଙ୍ଗେ ସଙ୍ଗେ ରାଜି ହୋଇ ମୋ ଜିନିଷପତ୍ର ତାର ଟେମ୍ପୋରେ ରଖି ମୋତେ ବସିବାକୁ ଅନୁରୋଧ କରି ତାର ଗାଡ଼ି ନିର୍ଦ୍ଧାରିତ ସ୍ଥାନ ଅଭିମୁଖେ ଚଳାଇ ପ୍ରାୟ ୪୫ ମିନିଟ ଭିତରେ ମୋର ଲକ୍ଷ୍ୟସ୍ଥାନରେ ପହଞ୍ଚିଲି । ସେଠାକାର ଓଡ଼ିଶାର ଛାତ୍ରମାନଙ୍କ ଠିକଣା ପଚାରି ତାଙ୍କ କୋଠରୀରେ ପହଞ୍ଚିଲି । ଦାଶ ବାବୁ ଓ ଆମ ଓଡ଼ିଶାର ସମ୍ବଲପୁରର ମିଶ୍ର ବାବୁ ଓ ଆଉ ଜଣେ ସେଠାରେ ଅଧ୍ୟୟନ କରୁଥିଲେ । ସେମାନେ ମୋତେ ଦେଖି ପ୍ରଥମେ ଆଶ୍ଚର୍ଯ୍ୟ ହେଲେ ନିଶ୍ଚୟ । ପରେ କିନ୍ତୁ ମୋର ଦିଲ୍ଲୀ ଆଗମନର ଉଦ୍ଦେଶ୍ୟ ଜାଣି ଆନନ୍ଦରେ ମୋତେ ସ୍ୱାଗତ କରି ଆପଣାର କରି ନେଲେ ଏବଂ କହିଲେ ଯେ ସେଠାରେ ମୋର ରହିବା ବା ଖାଇବାର କିଛି ଅସୁବିଧା ହେବ ନାହିଁ । ସେମାନଙ୍କ ଜରିଆରେ ମୁଁ ତାଙ୍କ ଅତିଥି ହିସାବରେ ରହି ମେସ୍‌ରେ ଖାଇ ଯାହା ଉଚିତ ଦେୟ ଦେଲେ ଚଳିବ ବୋଲି କହିଥିଲେ ।

ତାପରେ ମୁଁ ଗାଧୁଆ ସାରି ଟିକିଏ ସଜବାଜ ହେବା ପରେ ସେମାନଙ୍କ ଅନୁରୋଧରେ ତାଙ୍କ ମେସ୍‌କୁ ଖାଇବାକୁ ଗଲୁଁ କାରଣ ସେତେବେଳେ ପ୍ରାୟ ଦିନ ୧ଟା ୩୦ ମିନିଟ ଓ ତାଙ୍କ ଖାଇବାର ସମୟ । ସେମାନେ ଜଣେ ଅତିଥି ଚର୍ଚ୍ଚା ପାଇଁ ଅଧିକା ଖାଦ୍ୟର ଅସୁବିଧା ହେବ ନାହିଁ ବୋଲି ଜଣାଇବାରୁ ମୁଁ ମଧ ନିଃସଙ୍କୋଚରେ ତାଙ୍କ ସଙ୍ଗେ ଭୋଜନାଳୟକୁ ଗଲି । ସେଠାରେ ଖାଦ୍ୟ ହିସାବରେ ଭାତ, ରୋଟି, ଡାଲି, ତରକାରୀ, ଭଜା ଓ ଖଟା ଯୋଗାଇ ଦିଆଯାଏ । ମାଛ ମାଂସ ଯୋଗାଇବାର ମଧ ବ୍ୟବସ୍ଥା ସପ୍ତାହରେ ୨/୩ ଥର କରାଯାଏ । ସକାଳେ ଜଳଖିଆରେ ପରୋଠା ତରକାରୀ, ପାଉରୋଟି କ୍ଷୀର ବା ଅନ୍ୟ କିଛିର ବ୍ୟବସ୍ଥା ଥାଏ । ଭୋଜନ ସାରି ଆସି ବିଶ୍ରାମ ନେବା ସମୟରେ ମୁଁ ସେମାନଙ୍କ ସହ ବିଶ୍ୱ ସମ୍ମିଳନୀରେ (WCOTP) ଯୋଗ ଦେବା ପାଇଁ ଆସିଥିବାର ଜାଣି ଅଶେଷ ଆନନ୍ଦିତ ହେଲେ । ଭାରତ ଏହା ଆୟୋଜନ କରୁଥିବାରୁ ଭାରତୀୟମାନଙ୍କ ରହିବା ଓ ଖାଇବା ପାଇଁ ଆମ ସଂସ୍ଥା ତରଫରୁ କିଛି ବ୍ୟବସ୍ଥା କରାଯାଇ ନ ଥିଲା । ତେଣୁ ଭାରତୀୟ ପ୍ରତିନିଧିମାନେ ନିଜେ ରହିବା ଓ ଖାଇବା ବନ୍ଦୋବସ୍ତ କରୁଥିଲେ । ସମସ୍ତେ ନିଜ

ନିଜ ପରିଚିତ ବନ୍ଧୁ ବା ଅନ୍ୟମାନଙ୍କ ଘରେ ରହି ଉକ୍ତ ସମ୍ମିଳନୀରେ ଯୋଗ ଦେଉଥିଲେ ।

ଆମ ସମ୍ମିଳନୀଟି 'ବିଜ୍ଞାନ ଭବନ' ଠାରେ ପରଦିନ ଅନୁଷ୍ଠିତ ହେବାର କାର୍ଯ୍ୟକ୍ରମ ଥିବାରୁ ବିଜ୍ଞାନ ଭବନର ସ୍ଥିତି ନିରୂପଣ ପାଇଁ ଆମର ଜଣେ ଓଡ଼ିଆ ବନ୍ଧୁଙ୍କୁ ଧରି ସେଦିନ ସନ୍ଧ୍ୟାରେ ଯାଇ ଦେଖି ଆସିଲି । ତାହା ଏହି ଅନୁଷ୍ଠାନରୁ ପ୍ରାୟ ୫/୬ କି.ମି.ଦୂର । ବସରେ ଯିବାକୁ ହେଲେ ପ୍ରାୟ ୫୦ ପଇସାରୁ ଟ.୧ ଖର୍ଚ୍ଚ କରିବାକୁ ହେଉଥିଲା । କିନ୍ତୁ Tempoରେ ଗଲେ ପ୍ରାୟ ଟ.୨-ଟ.୩ ପର୍ଯ୍ୟନ୍ତ ଖର୍ଚ୍ଚ ପଡୁଥିଲା । ତେଣୁ ନିର୍ଦ୍ଦିଷ୍ଟ ବସ ଧରି ପ୍ରତିଦିନ ଯାତାୟାତ କଲେ ପ୍ରାୟ ଖର୍ଚ୍ଚ ଟ.୧ ରୁ ଟ.୨ ପର୍ଯ୍ୟନ୍ତ ପଡୁଥିଲା ।

ପରଦିନ ୧୧ଟାରେ ସମ୍ମିଳନୀ ଉଦ୍‌ଘାଟନୀ ଉତ୍ସବ । ଏଣୁ ସକାଳ ୮ଟାରେ ଜଳଖିଆ ସାରି ବାହାରିବା ପାଇଁ ପ୍ରସ୍ତୁତ ହେଲା ବେଳକୁ ସେହି ପୁସା ପରିସର ମଧ୍ୟରେ ଏକ Town Bus ଛିଡ଼ା ହୋଇଥିଲା । ବୁଝିଲି ଯେ ତାହା ସେହି ବିଜ୍ଞାନ ଭବନ ନିକଟବର୍ତ୍ତୀ ରାସ୍ତା ଦେଇ ଯିବ । ତେଣୁ ବନ୍ଧୁମାନଙ୍କ ସହାୟତାରେ ତାର ଗନ୍ତବ୍ୟ ରାସ୍ତା ସମ୍ପର୍କରେ ତଥ୍ୟ ସଂଗ୍ରହ କରି ବିଜ୍ଞାନ ଭବନ ନିକଟସ୍ଥ ଏକ ଛକରେ ଓହ୍ଲାଇଲେ ବିଜ୍ଞାନ ଭବନକୁ ଚାଲି କରି ଯାଇ ହେବ । ତେଣୁ ସେପରି ଭାବେ ବସରେ ଯାଇ ଉଦ୍ଦିଷ୍ଟ ଛକରେ ଓହ୍ଲାଇ ଜଣେ ବନ୍ଧୁଙ୍କୁ ପଚାରିବାରୁ ବିଜ୍ଞାନ ଭବନ ରାସ୍ତାଟି ଦେଖାଇ ଦେଲେ । ବିଜ୍ଞାନ ଭବନ ଆଗରେ ବିଭିନ୍ନ ଦେଶର ଜାତୀୟ ପତାକାମାନ ଉଡୁଥିବାର ଦେଖାଗଲା । ତେଣୁ ସେଠାରେ ମୋର ପହଞ୍ଚିବାରେ କିଛି ଅସୁବିଧା ହେଲା ନାହିଁ ।

ବିଜ୍ଞାନ ଭବନ ସାରା ଏସିଆ ମହାଦେଶର ଏକ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଅଟ୍ଟାଳିକା ତଥା ଅନୁଷ୍ଠାନ । ଏହା ପ୍ରାୟ କେତେ ଏକର ଜମିରେ ପ୍ରତିଷ୍ଠିତ । ଏଠାରେ ବର୍ଷର ପ୍ରାୟ ସବୁ ସମୟରେ କୌଣସି ନା କୌଣସି ଆନ୍ତର୍ଜାତିକ ସଭା ସମିତି ଅନୁଷ୍ଠିତ ହୋଇଥାଏ । ବିଭିନ୍ନ ଦେଶ ବିଦେଶର ପ୍ରତିନିଧିମାନେ ଆସି ଉକ୍ତ ଅନୁଷ୍ଠାନମାନଙ୍କରେ ଯୋଗ ଦେଇ ବିଭିନ୍ନ ବିଷୟରେ ବିଚାର ବିମର୍ଷ କରିଥାନ୍ତି । ଏଠାରେ ଛୋଟ ବଡ଼ ବହୁତ ଗୁଡ଼ିଏ କୋଠରୀ ଅଛି । ସବୁ କୋଠରୀ ଶୀତତାପ ନିୟନ୍ତ୍ରିତ ଓ ଆଧୁନିକ ରୁଚିସମ୍ପନ୍ନ ଆସବାବ ଓ ସାଜସଜ୍ଜାରେ ସଜ୍ଜିତ । ବାହାରେ ଏକ ସୁଦୃଶ୍ୟ ଭଦନ ଦେଶୀ ବିଦେଶୀ ପତ୍ର ପୁଷ୍ପରେ ସୁଶୋଭିତ । ପ୍ରତ୍ୟେକ କୋଠରୀରେ ଡାକତାରବାଜି ଯନ୍ତ୍ର ପ୍ରତ୍ୟେକ ବସିବା ସ୍ଥାନ ପାଇଁ ଉଦ୍ଦିଷ୍ଟ ଓ ଖଞ୍ଜା । ସମ୍ମିଳନୀରେ ଉପସ୍ଥିତ ସଦସ୍ୟ ସଂଖ୍ୟାନୁସାରେ ବିଭିନ୍ନ ସଭା ସମିତି ପାଇଁ

କୋଠରୀଗୁଡ଼ିକୁ ସୂଚୀତ କରାଯାଇ ଥାଏ । ଏସବୁ ଜଣାଇବା ପାଇଁ ପ୍ରବେଶ ଦ୍ୱାରରେ ଏକ ସୂଚନା ବୋର୍ଡରେ କେଉଁ କମିଟୀ କେଉଁ କୋଠରୀରେ କେତେବେଳେ ହେବ ସଠିକ ଭାବେ ଲେଖାଯାଇ ଆଗନ୍ତୁକମାନଙ୍କୁ ସୂଚାଇ ଦିଆଯାଏ । ତେଣୁ ଆଗନ୍ତୁକ ଅତିଥି ତଥା ସଦସ୍ୟମାନେ ନିର୍ଦ୍ଧାରିତ କୋଠରୀକୁ ଯାଇ ଠିକ୍ ସମୟ ପୂର୍ବରୁ ନିଜ ଆସନ ସଂରକ୍ଷଣ କରିଥାନ୍ତି ।

ବିଜ୍ଞାନ ଭବନର ସବୁଠାରୁ ବଡ଼ କୋଠରୀ Assembly Hallଟିରେ ପ୍ରାୟ ଦୁଇ ହଜାର ଲୋକଙ୍କ ବସିବା ପାଇଁ ଗେଲେରୀ ପଦ୍ଧତିରେ ଅଲଗା ଅଲଗା ସ୍ଥାନର ବ୍ୟବସ୍ଥା ଅଛି । ପ୍ରତିଟି ସ୍ଥାନରେ ବସିଥିବା ଲୋକ ଶୁଣିବା ପାଇଁ ଏକ ଶ୍ରୁତିଯନ୍ତ୍ର ଓ କିଛି କହିବା ପାଇଁ ଏକ ମୁଖଯନ୍ତ୍ର (mike)ର ସଂଯୋଗ କରାଯାଇଛି । ଶୁଣିବା ପାଇଁ ଏକ Regulator ବା ନିୟନ୍ତ୍ରଣକାରୀ ସୁଇଚ ଲାଗିଛି । କାରଣ ସଭାରେ ଆଲୋଚ୍ୟ ବିଷୟର ଭାବକୁ ବିଭିନ୍ନ ଭାଷାରେ ତର୍ଜମା କରି ଯୋଗାଇବା ପାଇଁ ହଲ୍‌ର ଡାହାଣ ପଟେ ବେଲକନିରେ ବିଭିନ୍ନ ଭାଷାଭାଷୀ ତର୍ଜମାକାରୀ ଦକ୍ଷ ବ୍ୟକ୍ତି ବିଭିନ୍ନ ସ୍ଥାନରେ ବସି ତାକୁ ପ୍ରକାଶ କରୁଥାନ୍ତି । ତେଣୁ ଶ୍ରୋତାମାନେ ଯେ ଯେଉଁ ଭାଷାରେ ବୁଝି ପାରିବେ ସେହି ନମ୍ବରକୁ ଘୁରାଇଲେ ସେମାନେ ଭାଷଣକୁ ସଠିକ ରୂପେ ବୁଝି ପାରିବେ । ଏହି ଅଭିନବ କୌଶଳର ପଦ୍ଧତି କେବଳ ଏହି ଭବନରେ କରା ଯାଇଥିବାରୁ ଆନ୍ତର୍ଜାତିକ ସଭା ସମିତି ପାଇଁ ଏକାନ୍ତ ଯୋଗ୍ୟ ଓ ପ୍ରକୃଷ୍ଟ ସ୍ଥାନ । ବିଶେଷତଃ ହିନ୍ଦି ବା ଇଂରାଜୀ ଭାଷାକୁ ଜର୍ମାନୀ, ଫ୍ରାନ୍ସ, ଚୀନ, ଜାପାନ ବା ଆଉ ଦରକାରୀ ଭାଷାରେ ତର୍ଜମା କରାଯାଇ ଶୁଣା ଯିବାର ବ୍ୟବସ୍ଥା ଅଛି । ଅନ୍ୟାନ୍ୟ ଛୋଟ ଛୋଟ କୋଠରୀମାନଙ୍କରେ ଏ ସୁବିଧା ନ ଥିଲେ ମଧ୍ୟ ଚଳନୀୟ । କାରଣ ଏକ ସମଦଳୀୟ ବା ଏକଦଳୀୟ ସଭା ସମିତି ହେଲେ ଏହାର ପ୍ରାୟ ଆବଶ୍ୟକତା ନ ଥାଏ ।

ପ୍ରଥମ ଦିନ ମୁଁ ଟିକିଏ ଆଗରୁ ପହଞ୍ଚି ସାରା ବିଜ୍ଞାନ ଭବନକୁ ଭଲ ଭାବେ ବୁଲି ଦେଖି ନେଲି ଓ ଆମର ନିର୍ଦ୍ଧାରିତ କୋଠରୀକୁ ଯାଇ ସଭା ଆରମ୍ଭକୁ ଅପେକ୍ଷା କରି ବସିଲି । ଠିକ୍ ସମୟରେ ସଦସ୍ୟମାନେ ଆସି ସଭାକାର୍ଯ୍ୟ ଆରମ୍ଭ ହେଲା । ଭାରତ ଓ ବିଦେଶର ବିଶିଷ୍ଟ ଶିକ୍ଷାବିତ୍ ତଥା କର୍ମକର୍ତ୍ତାଗଣ ଆସି ନିଜ ନିଜ ସ୍ଥାନ ଗ୍ରହଣ କରି ସଭା କାର୍ଯ୍ୟ ଆରମ୍ଭ କଲେ । ଏହି ସମ୍ମିଳନୀର ଉଦ୍ଦେଶ୍ୟ ବିଷୟରେ କାର୍ଯ୍ୟକ୍ରମ ଓ ପୁସ୍ତିକା ଯୋଗାଇ ଦେଲେ । ଉକ୍ତ ସମ୍ମିଳନୀରେ ୭୦ଟି ଦେଶ ବିଦେଶର ପ୍ରତିନିଧି ତଥା ଭାରତର ପ୍ରତ୍ୟେକ ପ୍ରଦେଶରୁ ସଦସ୍ୟଗଣ ଯୋଗ ଦେଇଥିଲେ ।

ମୋଟ ଉପରେ ଶିକ୍ଷାର ସଂସ୍କାର, ଶିକ୍ଷାରେ କ୍ରୀଡ଼ା ଓ କସରତର ଉପାଦେୟତା, ସାମାଜିକ ଶୃଙ୍ଖଳା ଓ ବିଷୟବସ୍ତୁର ଗୁରୁତ୍ୱ ତଥା ଶିକ୍ଷାରେ ଯୌନ ପ୍ରକ୍ରିୟାର କୁପ୍ରଭାବ ଓ ସୁପ୍ରଭାବ ଆଦି ବିଷୟ ମୁଖ୍ୟ ଥିଲା । ଏତଦ୍‌ଭିନ୍ନ ବିଭିନ୍ନ ଶିକ୍ଷାନୁଷ୍ଠାନ ଓ ସାମାଜିକ ଶିକ୍ଷାକେନ୍ଦ୍ର ଓ ଉତ୍ପାଦନକେନ୍ଦ୍ରର ପ୍ରତ୍ୟକ୍ଷ ଦର୍ଶନ ଓ ଭ୍ରମଣ ପାଇଁ ବ୍ୟବସ୍ଥା ଥିଲା ଓ ମଝିରେ ମଝିରେ ସାମାଜିକ, ସାଂସ୍କୃତିକ ଓ ଅନ୍ୟାନ୍ୟ ସମୟୋପଯୋଗୀ ପ୍ରଦର୍ଶନୀ ବେଶଭୂଷାର ପ୍ରୟୋଗ ଓ ପ୍ରଦର୍ଶନୀର ଆୟୋଜନ ଦିଲ୍ଲୀ ସହରର ବିଭିନ୍ନ ହୋଟେଲ ଓ ଦିଲ୍ଲୀ ନିକଟବର୍ତ୍ତୀ ସ୍ଥାନମାନଙ୍କୁ ନେଇ ସେସବୁ ଦର୍ଶନ କରାଇବାର ସୁଯୋଗର ବ୍ୟବସ୍ଥା ଥିଲା । ଏହି ସମ୍ମିଳନୀ ପ୍ରାୟ ୧୪ ଦିନ ଧରି ଚାଲିଥିଲା ଓ ବିଭିନ୍ନ ବିଷୟର ଆଲୋଚନା ପାଇଁ ଭାରତ ତଥା ବିଦେଶାଗତ ଶିକ୍ଷାବିତ୍ ଓ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ଆଲୋଚନା ଓ ସେମିନାର ଆଦିର ସୁବ୍ୟବସ୍ଥା ଥିଲା । ତେଣୁ ସେଠାକୁ ଗଲେ ବିଭିନ୍ନ କାର୍ଯ୍ୟକ୍ରମରେ ଏପରି ବ୍ୟସ୍ତ ରହିବାକୁ ପଡୁଥିଲା ଯେ ସମୟ କିପରି ଅତିବାହିତ ହେଉଥିଲା ତାହା ଆଦୌ ଜଣା ପଡୁ ନ ଥିଲା । ମଝିରେ ମଝିରେ ଚା ଓ ଜଳଖିଆ ମଧ୍ୟ ଯୋଗାଇ ଦିଆଯିବାର ବ୍ୟବସ୍ଥା ଥିଲା । ଆଗନ୍ତୁକ ସଦସ୍ୟମାନଙ୍କ ପାଇଁ ବିଭିନ୍ନ ହୋଟେଲ ଓ ରେଷ୍ଟୁରାଣ୍ଟରେ ରହିବା ଓ ଖାଇବାର ବ୍ୟବସ୍ଥା ସୁଲଭ ମୂଲ୍ୟରେ ଯୋଗାଇ ଦେବାର ବ୍ୟବସ୍ଥା କରାଯାଇ ଥିଲା ।

ପ୍ରାରମ୍ଭିକ ଅଧିବେଶନରେ ମଧ୍ୟାହ୍ନ ଭୋଜନ ଓ ଉପର ଓଳି ବିଧିବଦ୍ଧ ଭାବେ ଆଲୋଚନା ପର୍ଯ୍ୟାଲୋଚନା, ପ୍ରବନ୍ଧ ପାଠ ଆଦି କାର୍ଯ୍ୟକ୍ରମ ପରେ ସମୂହ ଜଳପାନ ପରେ ସେଦିନର କାର୍ଯ୍ୟକ୍ରମ ଶେଷ ହେବା ପୂର୍ବରୁ ପ୍ରତ୍ୟେକ ସଦସ୍ୟଙ୍କୁ ମହାତ୍ମା ଗାନ୍ଧିଙ୍କ ଛବି ଥିବା ଏକ ଖଦୀବେଗ୍ ଓ ଆବଶ୍ୟକୀୟ କାର୍ଯ୍ୟକ୍ରମର ସୂଚନା ଓ ନଥିପତ୍ର ଯୋଗାଇ ଦିଆଯାଇ ଥିଲା । ସଭା ଶେଷ ହେବାରୁ ମୁଁ ନିକଟସ୍ଥ ବସ୍‌ଷ୍ଟେଣ୍ଡକୁ ଆସି ଆମ Pusa Institute ଆଡ଼େ ଗତି କରୁଥିବା ବସ୍ ଧରି ଆମର ବିଶ୍ରାମସ୍ଥଳର ଗେଟ୍‌ରେ ପହଞ୍ଚିଲି । କାରଣ କେତେଗୁଡ଼ିଏ ବସ୍ ସେହି Campus ଭିତରକୁ ଯାଏ ନାହିଁ । ତେଣୁ ମୁଁ ବସ୍‌ରୁ ଓହ୍ଲାଇ ନିର୍ଦ୍ଦିଷ୍ଟ ଛାତ୍ରାବାସର କୋଠରୀରେ ପହଞ୍ଚିଲା ବେଳକୁ ପ୍ରାୟ ଆମର ଓଡ଼ିଆ ବନ୍ଧୁମାନେ ବୁଲାବୁଲି କରି ଫେରି ନିଜ ନିଜ ଆସନରେ ପଠନ ଆରମ୍ଭ କରୁଥାଆନ୍ତି । ମୋତେ ଦେଖିଲାରୁ ସେମାନେ ଆଗ୍ରହର ସହ ମୋର ସେଦିନର ଅନୁଭୂତି ପଚାରିବାରୁ ମୋର ନିଜ ମତାମତ ଦେଇ ସଙ୍ଗରେ ଆଣିଥିବା ସୂଚନା କାଗଜ ଆଦି ଦେଖାଇଲି । ତାପରେ କିଛି ସମୟ ବିଶ୍ରାମ ନେଇ ଧୁଆଧୋଇ ହୋଇ ରାତ୍ର ଭୋଜନ ପରେ ବିଶ୍ରାମ ନେଲୁଁ ।

ଉପରୋକ୍ତ କାର୍ଯ୍ୟକ୍ରମ ଭଳି ୨/୩ ଦିନ ସଭାକାର୍ଯ୍ୟ ଚ୍ଲିଲା । ବୋଧ ହୁଏ ୪ର୍ଥ ଦିନ ୧୧ଟା ସମୟରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ସେହି ବିରାଟ ହଲରେ ଆଗନ୍ତୁକ ସମସ୍ତ ଦେଶବିଦେଶର ଶିକ୍ଷାବିତ୍ ମାନଙ୍କୁ ସ୍ୱାଗତ ସମ୍ଭାଷଣ ଦେଇ ଦେଶରେ ଓ ସମାଜରେ ଶିକ୍ଷାର ସକ୍ରିୟ ଉପାଦେୟତା ଓ ତହିଁରେ ଶିକ୍ଷାବିତ୍ ଓ ଶିକ୍ଷକମାନଙ୍କ ଭୂମିକା ଉପରେ ଗୁରୁତ୍ୱ ଦେଇ ଶିକ୍ଷାର ମାନବୃଦ୍ଧି ଓ ମାନବଧର୍ମୀ ଶିକ୍ଷା ପ୍ରଣାଳୀର ଉଦ୍ଭବ କରି ପ୍ରକୃତ ମାନବ ଗଠନର ପ୍ରସ୍ତାବ ଗୁଡ଼ିକୁ ରୂପରେଖ ଦେବାକୁ ଆହ୍ୱାନ ଜଣାଇ ଥିଲେ । ତାଙ୍କର ଗାମ୍ଭୀର୍ଯ୍ୟପୂର୍ଣ୍ଣ ଅଭିଭାଷଣରେ ଅଭିନବ ଚିନ୍ତାଧାରାର ସୂଚନା ସ୍ପଷ୍ଟ ପରିଲକ୍ଷିତ ହୋଇ ସମଗ୍ର ମାନବ ସମାଜର କଲ୍ୟାଣ ସକାଶେ ତାଙ୍କ ଏକାନ୍ତ ଇଚ୍ଛା ପ୍ରକଟିତ ହୋଇଥିଲା । ଏହା ଥିଲା ମୋ ପକ୍ଷରେ ପଣ୍ଡିତ ନେହେରୁଙ୍କୁ ନିକଟରୁ ଦେଖିବା ପାଇଁ ଦ୍ୱିତୀୟ ବାର। ପ୍ରଥମରେ ୧୯୪୮ ସାଲର କଟକ କଂଗ୍ରେସ ଅଧିବେଶନରେ ସ୍ୱେଚ୍ଛାସେବୀ ରୂପେ ତାଙ୍କ ନିକଟସ୍ଥ ହୋଇଥିଲି । ଏବେ ପୁଣି ଥରେ ତାଙ୍କୁ ନିକଟରେ ପାଇ ସ୍ୱମୁଖ ନିସୃତ ବାଣୀ, ଭାବ ବିଭୋର ଶ୍ରବଣର ସୁଯୋଗ ମନରେ ଅଶେଷ ଆନନ୍ଦ ପ୍ରଦାନ କରିଥିଲା । ଦିଲ୍ଲୀରେ ରହଣୀ ମଧ୍ୟରେ ୨ଟା ରବିବାର ଓ ଆଉ ଏକ ଦିନ ଦିଲ୍ଲୀ ଭ୍ରମଣ ପାଇଁ ଉଦ୍ଦିଷ୍ଟ କାର୍ଯ୍ୟକ୍ରମ ଥିଲା । ତାହା ଏହି ସମ୍ମିଳନୀର ଦେଶୀବିଦେଶୀ ସଦସ୍ୟଙ୍କୁ ନେବା ପାଇଁ ସ୍ୱତନ୍ତ୍ର ବସ୍ ବନ୍ଦୋବସ୍ତ କରାଯାଇ ଥିଲା ।

ଦିଲ୍ଲୀ ଭ୍ରମଣ ପ୍ରାୟ ସକାଳ ୮ଟାରେ ସମସ୍ତେ ବିଜ୍ଞାନ ଭବନରୁ ଏକ ସଙ୍ଗେ ବାହାରିବା ପାଇଁ ସୂଚନା ଦିଆଯାଇ ଥିଲା । ସଙ୍ଗରେ ବୁଲାଇ ଦେଖାଇବା ପାଇଁ ଗାଇଡମାନେ ନିଯୁକ୍ତ ଥିଲେ । ତେଣୁ ଆମ୍ଭେମାନେ ସମସ୍ତେ ସକାଳେ ସାଢ଼େ ୭ଟା ବେଳେ ବିଜ୍ଞାନ ଭବନରେ ଜମା ହୋଇ ସାରିଥିଲୁଁ । ଏ ମଧ୍ୟରେ ଅନ୍ୟ ପ୍ରଦେଶରୁ ଆସିଥିବା ବନ୍ଧୁମାନଙ୍କ ସହ ବେଶ ପରିଚୟ ହୋଇ ଯାଇଥିଲା । ସେମାନେ ହେଲେ କେରଳର ଜଣେ ହାଇସ୍କୁଲ ଶିକ୍ଷକ ମୋ ବୟସର ଓ ଗୋନ୍ଦିଆରୁ ଆସିଥିବା ଆଉ ଜଣେ ସ୍କୁଲ ଶିକ୍ଷକ । ଆମେ ତିନି ଜଣ ବିଶେଷ କରି ଗୋନ୍ଦିଆ ବନ୍ଧୁ ଓ ମୁଁ ଏକାଠି ବସାଉଠା ଓ ଯିବାଆସିବା ପାଇଁ ମିଳି ମିଶି ସଭାକୁ ଉପଭୋଗ କରୁଥିଲୁଁ । ସେଦିନ ଠିକ୍ ୮ଟାରେ ବସ୍‌ଗୁଡ଼ିକ ବିଜ୍ଞାନ ଭବନରୁ ବାହାରି ଦିଲ୍ଲୀର ନିମ୍ନଲିଖିତ ସ୍ଥାନକୁ ବୁଲାଇ ନେଇଥିଲେ । ସେଗୁଡ଼ିକ ହେଲା ପାର୍ଲାମେଣ୍ଟ ଭବନ, ରାଷ୍ଟ୍ରପତି ଭବନ, ସୁପ୍ରିମ କୋର୍ଟ, ଅଶୋକା ହୋଟେଲ, ବିରଳା - ଲକ୍ଷ୍ମୀନାରାୟଣ ମନ୍ଦିର, ଜନ୍ତରମନ୍ତର, କୁତବ ମୀନାର, ଇନ୍ଦ୍ରପ୍ରସ୍ଥ, ରାଜଘାଟ,

ବାଳ ଭବନ, ଲାଲ କିଲ୍ଲା ଆଦି ଅନ୍ୟତମ। ଏସବୁ ସ୍ଥାନ ଭ୍ରମଣ ଅବସରରେ ଜନ୍ତରମନ୍ତରରେ ଦିନ ୧ଟା ହେବାରୁ ସେଠାରେ ନିକଟସ୍ଥ ହୋଟେଲରେ ମଧ୍ୟାହ୍ନ ଭୋଜନ କରି ପୁଣି ଅନ୍ୟ ସବୁ ସ୍ଥାନକୁ ଯାଇ ପ୍ରାୟ ୫ଟା ବେଳେ ଦିଲ୍ଲୀ ଦର୍ଶନ ଶେଷ ହେଲା। ମୁଁ ମୋର ବ୍ୟବସ୍ଥା କରି କୃଷି ଗବେଷଣାଗାରକୁ ଫେରି ଆସିଲି।

ଉପରୋକ୍ତ ବର୍ଣ୍ଣିତ ସ୍ଥାନମାନଙ୍କ ବିଷୟରେ ସମ୍ୟକ୍ ସୂଚନା ଦେଲେ ଅପ୍ରାସଙ୍ଗିକ ହେବ ନାହିଁ ବୋଲି ମନେ ହୁଏ।

ଏବେ ତ ଟିଭି ଜରିଆରେ ପାର୍ଲାମେଣ୍ଟ ଭବନ, ରାଷ୍ଟ୍ରପତି ଭବନର ପ୍ରତ୍ୟକ୍ଷ ଦୃଶ୍ୟ ଦେଖାଯାଉଛି। ହେଲେହେଁ ଏସବୁକୁ ନିଜେ ଚକ୍ଷୁରେ ନ ଦେଖିଲେ ସ୍ପଷ୍ଟ ଧାରଣା କରି ହେବ ନାହିଁ।

ପାର୍ଲାମେଣ୍ଟ ଭବନ: ଏହି ସ୍ଥାନଟି ଭାରତର ଶାସନ ନିୟନ୍ତ୍ରଣ ମାଗଁ ଶାସକ ଓ ସାଂସଦମାନଙ୍କ ମିଳନ ଓ ଅଧିବେଶନ ପାଇଁ ବିଭିନ୍ନ ବିରାଟ ବିରାଟ ହଲ୍ ଅଛି। ଏଥିରେ ରାଜ୍ୟସଭା ଓ ଲୋକସଭା ଅଧିବେଶନର ବୈଠକ ଗ୍ୱଲେ। ଏହା ଛଡ଼ା ଏକ କେନ୍ଦ୍ର ହଲ୍ ଅଛି ଯେଉଁ ଠାରେ ମନ୍ତ୍ରୀ ଓ ସାଂସଦମାନଙ୍କ ଶପଥ ପାଠ କାର୍ଯ୍ୟକ୍ରମ ରାଷ୍ଟ୍ରପତିଙ୍କ ଦ୍ୱାରା ସଂପାଦିତ ହୁଏ। ଏଠାରେ ଭାରତର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ତଥା ଲୋକପ୍ରିୟ ନେତାମାନଙ୍କ ପ୍ରତିକୃତି ଓ ତୈଳଚିତ୍ରମାନ ସଂରକ୍ଷିତ ହୋଇଅଛି। ଏହାକୁ ଇଂରେଜ ସରକାର ନିର୍ମାଣ କରାଇଥିଲେ। ଏହା ନିକଟରେ India Gate ଏକ ଦର୍ଶନୀୟ ସ୍ଥାନ। ଏଠାରେ ସହୀଦ ଜବାନମାନଙ୍କ ଉଦ୍ଦେଶ୍ୟରେ ସ୍ମୃତି ଶ୍ରଦ୍ଧାଞ୍ଜଳି କରାଯାଏ।

ରାଷ୍ଟ୍ରପତି ଭବନ: ଏହା ଭାରତର ପ୍ରଥମ ନାଗରିକ ତଥା ଶ୍ରେଷ୍ଠ ବ୍ୟକ୍ତି ଯେ କି ଭାରତର ରାଷ୍ଟ୍ରପତି ହୁଅନ୍ତି, ତାଙ୍କ ପାଇଁ ଉଦ୍ଦିଷ୍ଟ। ଇଂରେଜ ଶାସନକାଳରେ ଏଠାରେ ଭାରତର ଭାଇସରାୟ ବା ଗଭର୍ଣ୍ଣର ଜେନେରାଲ ରହୁଥିଲେ। ଏହା ୧୦୦ ଏକର ବିଶିଷ୍ଟ ଏକ ବୃହତ ସ୍ଥାନରେ ଶତାଧିକ କୋଠରୀ ବିଶିଷ୍ଟ ଏକ ସୌଧ। ଏଠାରେ ସମସ୍ତ ରାଜନୈତିଜ୍ଞ ଓ କୂଟନୀତିଜ୍ଞମାନଙ୍କ ବୈଠକ ବସି ଭାରତ ତଥା ଆନ୍ତର୍ଜାତିକ ବିଷ୍ୱର ବିମର୍ଷ ଗ୍ୱଲେ। ଏହାର ବିଶେଷତ୍ୱ ହେଉଛି ଆକର୍ଷଣୀୟ ମୋଗଲ ଗାର୍ଡନ। ସେଠାରେ ବିଭିନ୍ନ ପାର୍ଟି ବା ବନ୍ଧୁମିଳନର ଆୟୋଜନ କରାଯାଏ। ଆମର ବିଶ୍ୱ ସମ୍ମିଳନୀର ସଦସ୍ୟମାନଙ୍କୁ ରାଷ୍ଟ୍ରପତିଙ୍କ ତରଫରୁ ଏକ ଗ୍ୱ ଭୋଜୀ ପାଇଁ ଆମନ୍ତ୍ରଣ କରା ଯାଇଥିଲା। ସେତେବେଳେ ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦ ପୀଡ଼ିତ ଥାଇ ଚିକିତ୍ସାଧୀନ ଥିବାରୁ ଉପରାଷ୍ଟ୍ରପତି ଡା. ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ ରାଷ୍ଟ୍ରପତି ଦାୟିତ୍ୱରେ ଥିଲେ। ସେ ଆମମାନଙ୍କୁ ସାକ୍ଷାତ ଦେଇ

ତତ୍କାଳୀନ ବିଶ୍ୱ ପରିସ୍ଥିତି ଉପରେ ମତାମତ ଦେଇଥିଲେ । ଆମର ପ୍ରତ୍ୟେକ ସଦସ୍ୟଙ୍କୁ ତାଙ୍କ ସଙ୍ଗେ ପ୍ରାୟ ୧/୨ ମି. ବସିବା ପାଇଁ ସୁଯୋଗ ଦିଆ ଯାଇଥିଲା । ଏହି ସାକ୍ଷାତ ପରେ ଗ୍ରୁ ଭୋଜୀରେ ଆପ୍ୟାୟିତ କରା ଯାଇଥିଲା । ଏ ଅନୁଭୂତିଟି ଜୀବନର ଏକ ସର୍ବଶ୍ରେଷ୍ଠ ସ୍ମରଣୀୟ ଅନୁଭୂତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

**ଅଶୋକା ହୋଟେଲ:** ଏହା ଭାରତର ସର୍ବବୃହତ ଖର୍ଚ୍ଚ ସାପେକ୍ଷ ପଞ୍ଚତାରକା ହୋଟେଲ ଓ ବମ୍ବେର ତାଜମହଲ ହୋଟେଲ ଭଳି । ଏଠାରେ ବିଶିଷ୍ଟ ବିଦେଶୀ ଅତିଥି ତଥା ଧନୀ ବ୍ୟକ୍ତିମାନେ କେବଳ ରହିପାରନ୍ତି । କାରଣ ସର୍ବସାଧାରଣଙ୍କ ପାଇଁ ଏହା ଆକାଶକଇଆଁ । ହୋଟେଲ ଜନପଥ ଆଉ ଏକ ବିଶିଷ୍ଟ ହୋଟେଲ । ଏଠାରେ ମଧ୍ୟବିତ୍ତ ସ୍ତରର ଲୋକଙ୍କ ପାଇଁ ଉଦ୍ଦିଷ୍ଟ । ଏଠାରେ ଏହି ସମ୍ମିଳନୀ ଉଦ୍ଦେଶ୍ୟରେ ଏକ ଆନ୍ତର୍ଜାତିକ ଚିତ୍ତାକର୍ଷକ ପୋଷାକ ମେଳାର ଆୟୋଜନ କରା ଯାଇଥିଲା ।

ବିରଳା ମନ୍ଦିର: ଏହି ମନ୍ଦିରଟି ଶ୍ରେଷ୍ଠ ଶିଳ୍ପପତି ଶ୍ରୀ ଘନଶ୍ୟାମଦାସ ବିରଳାଙ୍କ ଦ୍ୱାରା ନିର୍ମିତ । ମୁଖ୍ୟତଃ ଏଠାରେ ଲକ୍ଷ୍ମୀନାରାୟଣ ମୂର୍ତ୍ତି ପୂଜିତ ହୁଅନ୍ତି । ହେଲେହେଁ ଏହି ମନ୍ଦିମ ପରିସର ମଧ୍ୟରେ ଅନ୍ୟାନ୍ୟ ଦେବଦେବୀଙ୍କ ମୂର୍ତ୍ତି ଯଥା ରାମସୀତା, ରାଧାକୃଷ୍ଣ, ଗଣେଶ, ଶିବ ତଥା ଅନ୍ୟ ସବୁ ମୂର୍ତ୍ତି ମୂଲ୍ୟବାନ ଶଙ୍ଖମଲମଲ ପଥରରେ ତିଆରି । ଚଟାଣ ସବୁ ମଧ ଶଙ୍ଖମଲମଲ ପଥରରେ ଆଚ୍ଛାଦିତ । ମନ୍ଦିରଟି ସମୁଚ୍ଚ ହେଲେହେଁ କେବଳ ସରଳ ଓ ଶକ୍ତ ଭାବେ ନିର୍ମିତ । ମନ୍ଦିରର କାନ୍ଥମାନଙ୍କରେ ସାରା ଭଗବତ୍‌ଗୀତାର ଶ୍ଳୋକଗୁଡ଼ିକ ଦ୍ୱାରା ସମାହିତ । ମନ୍ଦିର ପଛରେ ଏକ କୃତ୍ରିମ ଗୁମ୍ଫା, ପାହାଡ଼ ଓ ଝରଣାର ସୃଷ୍ଟି କରାଯାଇ ଜନ ମନ ହରଣ କରେ । ସେଠାକୁ ଯାଇ ଦର୍ଶନ କଲେ ଓ କିଛି ସମୟ ବିଶ୍ରାମ ନେଲେ ଜାଗତିକ ଜଞ୍ଜାଳରୁ ମୁକ୍ତି ଭଳି ମନେ ହୁଏ ।

ଜନ୍ତରମନ୍ତର: ଏହା ଏକ ବୈଜ୍ଞାନିକ ସୌଧ । ଏଠାରେ ବିଭିନ୍ନ ଅର୍ଦ୍ଧବୃତ୍ତାକାର ଓ ଚନ୍ଦ୍ରାକାର ସ୍ତମ୍ଭମାନ ତିଆରି ହୋଇଛି ଯେ ସୂର୍ଯ୍ୟକିରଣ ତା ଉପରେ ପଡ଼ିଲେ ଦିନର ଓ ବର୍ଷର ବିଭିନ୍ନ ସଂମୟ ଓ ଋତୁ ସବୁର ସୂଚନା ମିଳେ । ଅବଶ୍ୟ ତାକୁ ବୁଝାଇବା ପାଇଁ ଏକ ଗାଇଡ ଦରକାର ।

କୁତବ ମୀନାର: ଏହା ପାଞ୍ଚ ମହଲା ବିଶିଷ୍ଟ ଗୋଲାକାର ଗମ୍ବୁଜ । କୁତବୁଦ୍ଦିନଙ୍କ ଦ୍ୱାରା ନିର୍ମିତ ବୋଲି ଇତିହାସ ସୂଚନା ଦିଏ । ଏବେ ତାହା ସର୍ବସାଧାରଣରେ ବିଶେଷ ଚର୍ଚ୍ଚିତ । କାରଣ କୁତବ ମୀନାର ପରିସର ମଧ୍ୟରେ ଏକ ଲୌହ ସ୍ତମ୍ଭ ମଧ୍ୟ ଅଛି ଓ ତାହା ହିନ୍ଦୁ ରାଜାଙ୍କ ଦ୍ୱାରା ନିର୍ମିତ ବୋଲି କେତେକ ମତ ଦିଅନ୍ତି । କୁତବ

ଜଣେ ଶିକ୍ଷକ...

ମୀନାରକୁ ଚଢ଼ିଲା ବେଳେ ବାଟରୁ ଟିକଟ ନେଇ ଉପରକୁ ଚଢ଼ିବାକୁ ହୁଏ । ସେହି ଗୋଲ ଗମ୍ବୁଜକୁ ଉଠିବା ପାଇଁ ବୃତ୍ତାକାରରେ ପାହାଚ ଗୁଡ଼ିକ ଅଛି । ମଝିରେ ମଝିରେ ଆଲୋକ ଆସିବା ପାଇଁ ଝରକା ମଧ୍ୟ ଅଛି । ପ୍ରଥମ ମହଲାକୁ ଚଢ଼ିଲେ ତାର ଚାରି ଆଡ଼େ ବୁଲିବା ପାଇଁ ପ୍ରଶସ୍ତ ଖୋଲା ବେଲକୋନୀ ଅଛି । ଏପରି ଭାବେ ପ୍ରତି ମହଲାରେ ବୁଲିବାର ସୁବିଧା ଅଛି । ଆମର ପରିଦର୍ଶନ ବେଳେ ସବା ଉପରକୁ ଯିବା ପାଇଁ ଅନୁମତି ମିଳିଥିଲା । ମୁଁ ଓ ମୋର ସାଥୀ ବନ୍ଧୁ ତଥା ବିଦେଶରୁ ଆଗତ ବନ୍ଧୁ ବାନ୍ଧବୀଗଣ ସମସ୍ତେ ଉପରକୁ ଉଠୁଥିଲୁଁ । ଜଣେ ଦାକ୍ଷିଣାତ୍ୟରୁ ଆସିଥିବା ଟିକିଏ ପୃଥୁଳକାୟା ଥିବାରୁ ସେ ଉପରକୁ ଉଠିବାରେ କଷ୍ଟ ହେଉଥିଲା । କିନ୍ତୁ ତାଙ୍କର ସବା ଉପରକୁ ଉଠିବାର ଏକାନ୍ତ କାମନା ଥିବାରୁ ମୁଁ ତାଙ୍କୁ ଉତ୍ସାହ ଦେଇ ମଝିରେ ବିଶ୍ରାମ ନେଇ ସବା ଉପରକୁ ନେଇଥିଲି । ସେହି ଉପରକୁ ଉଠି ଦିଲ୍ଲୀ ସହରକୁ ଦୃଷ୍ଟି ନିକ୍ଷେପଣ କଲେ ୨/୩ ମହଲା କୋଠା ଗୁଡ଼ିକ ଅତିଶୟ ସାନ ଦେଖା ଯାଉଥିଲା । ରାସ୍ତାରେ ଯାଉଥିବା ବସ୍‌ଗାଡ଼ି ଗୁଡ଼ିକ ଛୋଟ ଛୋଟ ଦିଆସିଲି ଖାଡ଼ି ଭଳି ମନେ ହେଉଥିଲା । ରାସ୍ତାରେ ଚାଲୁଥିବା ପୁରୁଷସ୍ତ୍ରୀଙ୍କୁ ସ୍ପଷ୍ଟ ରୂପେ ଦେଖା ଯାଉନଥିଲା । ସେହି ମୀନାର ଉପରୁ ତଳକୁ ଓହ୍ଲାଇବା ପରେ କିଛି ସମୟ ବିଶ୍ରାମ ନେବାକୁ ହେଲା । ଏବେ ପ୍ରଥମ ତଲା ବ୍ୟତୀତ ଆଉ ଉପରକୁ ଚଢ଼ିବାକୁ ଦିଆଯାଉ ନାହିଁ । ଏହା ନିକଟରେ ଏକ ଲୌହ ଖମ୍ବ ଅଛି । ଏହା ବହୁ ପୁରୁଣା ଓ ଏହାକୁ ଜଣେ ଦୁଇ ହାତରେ କୁଣ୍ଢାଇ ଧରି ପାରିବ ନାହିଁ ।

**ଇନ୍ଦ୍ରପ୍ରସ୍ଥ:** ଏହା ଏକ ପୁରାତନ ସୌଧରାଜିର ଭଗ୍ନ ସ୍ତୂପ ବିଶେଷ । ପ୍ରବାଦ ଅଛି ଦ୍ୱାପର ଯୁଗର ପାଣ୍ଡବମାନଙ୍କ ରାଜଧାନୀ ଇନ୍ଦ୍ରପ୍ରସ୍ଥର ଭଗ୍ନାବଶେଷ ମାତ୍ର । ଏହା ଏକ ବିସ୍ତୀର୍ଣ୍ଣ ଅଞ୍ଚଳ ଓ ପୁରାତନ ଭଗ୍ନ ଅଟ୍ଟାଳିକାମାନଙ୍କର ଚିହ୍ନମାନ ବିଦ୍ୟମାନ ।

**ରାଜଘାଟ:** ଭାରତୀୟ ଜାତିର ଜନକ ମହାତ୍ମା ଗାନ୍ଧିଙ୍କ ସମାଧି ସ୍ଥଳ । ଯମୁନା କୂଳରେ ଅବସ୍ଥିତ । ଏହା ଏକ ଜାତୀୟ ସ୍ମୃତି ପୀଠ । ସେତେବେଳେ ଆଜିକାଲି ଭଳି ଏତେ ଉନ୍ନତ ଧରଣର ବ୍ୟବସ୍ଥା ହୋଇ ନ ଥିଲା । ଏଠାକୁ ପବିତ୍ର ସ୍ୱାଧୀନତା ଦିବସ, ଗାନ୍ଧି ଜୟନ୍ତି ଓ ସହୀଦ ଦିବସାଦିରେ ଜାତୀୟ ନେତାମାନେ ଯାଇ ତାଙ୍କ ଶ୍ରଦ୍ଧାସୁମନ ଅର୍ପଣ କରି ଥାଆନ୍ତି ।

ଆଜିକାଲି ଯମୁନା ନଦୀ କୂଳରେ ରାଜଘାଟ ପାର୍ଶ୍ୱରେ ଶାନ୍ତିଘାଟ, ବିଜୟଘାଟ, ଶକ୍ତିସ୍ଥଳ, କିସାନଘାଟ ଓ ଆଉ କେତେକ ଜାତୀୟ ପୀଠ ମୁଣ୍ଡ ଟେକିଲାଣି ।

**ବାଳଭବନ:** ଏହା ଏକ ଶିଶୁ ବିହାର ବା ଶିଶୁମାନଙ୍କ ମନୋରଞ୍ଜନ ଓ ଅବସର ବିନୋଦନ କେନ୍ଦ୍ର । ଏଠାରେ ଶିଶୁମାନଙ୍କୁ ଆନନ୍ଦପ୍ରଦ କେତେ ଖେଳ ସରଞ୍ଜାମ

ରଖାଯାଇଛି ଓ ଚାରି ଆଡ଼େ ଫଳପୁଷ୍ପର ଉଦ୍ୟାନ ସୁସଜ୍ଜିତ । ଏହାର ମଧ୍ୟରେ ଏକ ଛୋଟିଆ ରେଳଇଞ୍ଜିନ ଦ୍ୱାରା ଚାଳିତ ଶିଶୁ ରେଳଗାଡ଼ି, କେବଳ ଶିଶୁମାନଙ୍କ ଦ୍ୱାରା ପରିଚାଳିତ ହୁଏ । ଏହି ଇଞ୍ଜିନଟିକୁ ଟାଟା କମ୍ପାନୀ ପ୍ରଧାନମନ୍ତ୍ରୀ ନେହେରୁଙ୍କୁ ଉପହାର ପ୍ରଦାନ କରିଥିଲେ । ତାକୁ ସେ ଜାତିର ଶିଶୁ କଲ୍ୟାଣ ଓ ମନୋରଞ୍ଜନ ପାଇଁ ଉତ୍ସର୍ଗ କରିଥିଲେ ।

ଏତଦ୍‌ଭିନ୍ନ ଏବେ ଆହୁରି କେତେକ ଦର୍ଶନୀୟ ସ୍ଥାନର ଗୁରୁତ୍ୱ ବଢ଼ିଲାଣି । ସେଗୁଡ଼ିକ ମଧ୍ୟରେ ପ୍ରଗତି ମଏଦାନ, ଆନ୍ତର୍ଜାତିକ ଇନ୍ଦିରା ଗାନ୍ଧି ଉଡ଼ାଜାହାଜ କେନ୍ଦ୍ର, ପାଳିକା ବଜାର ଆଦି ଅନ୍ୟତମ । ଦିଲ୍ଲୀର ବିଭିନ୍ନ ବଜାର ଗୁଡ଼ିକ ମଧ୍ୟରେ କନଟ ପ୍ଲେସ୍, କରୋଲ ବାଗ, ଚାନ୍ଦନୀ ଚୌକ ଆଦି ଅନ୍ୟତମ । ପୁଣି ଲୋଟସ ମନ୍ଦିର, ଇସ୍କନ ମନ୍ଦିର ଓ ପ୍ଲାଜା ହୋଟେଲ ଆଉ ଅନେକ ଦର୍ଶନୀୟ ସ୍ଥାନ ହେଲାଣି । ପ୍ରସଙ୍ଗକ୍ରମେ ଲାଲ କିଲ୍ଲାର ବର୍ଣ୍ଣନା ନ କଲେ ଦିଲ୍ଲୀର ବିବରଣୀ ଅଧୁରା ରହିଯିବ । ଲାଲକିଲ୍ଲା: ମୋଗଲ ସମ୍ରାଟ ସାହଜାହାନଙ୍କ ଦ୍ୱାରା ତିଆରି ରାଜପ୍ରାସାଦ । ଏଠାରେ ଦିଓ୍ୱାନୀଖାସ ଓ ଦିଓ୍ୱାନୀଆମ ୨ଟି ବିଶିଷ୍ଟ ପ୍ରାସାଦ ରହିଛି । ଏହି ପ୍ରାସାଦଟି ଜୟପୁରର ଲାଲ ପଥରରେ ତିଆରି ହୋଇଥିବାରୁ ଏହାକୁ ଲାଲକିଲ୍ଲା କୁହାଯାଏ । ଏହା ଯମୁନା ନଦୀ କୂଳରେ ଅବସ୍ଥିତ । ଏହାର ପାଚେରୀ ବାହାରେ ପୂର୍ବରେ ଖାଇ ଥିବାର ସୂଚନା ମିଳେ । ଏବେ ଏହି ସାରା ଅଟ୍ଟାଳିକା ଏକ ମିଉଜିଅମ ଓ କେତେକ ସେନାନୀମାନଙ୍କ ଦ୍ୱାରା ସୁରକ୍ଷିତ । ଏହି ବିରାଟ ପ୍ରାସାଦର ଏକ ପାର୍ଶ୍ୱରେ ସନ୍ଧ୍ୟାରେ Light & Soundର ପ୍ରୟୋଗରେ ଭାରତର ପୁରାତନ ଇତିହାସର ପୃଷ୍ଠାର ସନ୍ଦେଶ ଦର୍ଶନ ଓ ଶ୍ରବଣ ମାଧମରେ ଜନସାଧାରଣଙ୍କୁ ପ୍ରଦର୍ଶିତ ହୁଏ । ଅବଶ୍ୟ ସେଥି ପାଇଁ କିଛି ଶୁଳ୍କ ଆଦାୟ କରାଯାଏ । ହେଲେହେଁ ଏହା ଏକ ଦର୍ଶନୀୟ ଓ ଉପଭୋଗ୍ୟ ବସ୍ତୁ ।

କୁଟନୀତିଜ୍ଞମାନଙ୍କ ବାସସ୍ଥାନ ଓ ବୈଦେଶିକ ଦୂତାବାସ ଆଦି ମଧ ଦର୍ଶନୀୟ । ସମ୍ମିଳନୀର ଏକ ଦିଗ ବର୍ଣ୍ଣନା କରୁ କରୁ ବହୁତ ଗୁଡ଼ିଏ ବିଷୟର ଅବତାରଣା କରାଯାଇଛି ।

ସମ୍ମିଳନୀର କାର୍ଯ୍ୟକ୍ରମ ଅନୁସାରେ ଦିନେ ସନ୍ଧ୍ୟାରେ ହାଇଦ୍ରାବାଦ ଭବନରେ ଖାଦ୍ୟପେୟ ଓ ନୃତ୍ୟଗୀତର ଆୟୋଜନ କରା ଯାଇଥିଲା । ସେଥିରେ ଭାଗ ନେଇ ନିଜ ବସାକୁ ଫେରିବା ବେଳକୁ ପ୍ରାୟ ରାତି ସାଢ଼େ ୧୧ ପର । ସେତେବେଳେ କୌଣସି ଯାନବାହନର ସୁବ୍ୟବସ୍ଥା ନ ଥିଲା । ତଥାପି ଗୋଟିଏ ଟେକ୍ସିରେ କୃଷି ଗବେଷଣା କେନ୍ଦ୍ରର ଏକ ନିକଟସ୍ଥ ଜାଗାକୁ ଗୋଟିଏ ଟେମ୍ପୋ ରାଜି

ହେବାରୁ ସେଠାକୁ ଯାଇ ସେଠାରୁ ଚାଲି ଚାଲି ଏକ ନିର୍ଜନ ରାସ୍ତାରେ କୃଷି ଗବେଷଣାଗାରକୁ ଗଲି । ଗଲା ବେଳେ ଏକାକୀ ଥିବା ହେତୁ ଭୀଷଣ ଉଦ୍‌ବେଗ ଓ ଭୟ ଲାଗୁଥିଲା । ଯାହା ହେଉ ରାତି ୧ଟା ୩୦ ମି. ବେଳେ ବିଶ୍ରାମ ସ୍ଥଳରେ ଯାଇ ପହଞ୍ଚି ଶୟନ କଲି । ସକାଳେ ମୋର ରାତ୍ରରେ ଏକାକୀ ଆଗମନ ବାର୍ତ୍ତା ସମସ୍ତଙ୍କୁ ଜଣାଇବାରୁ ସେମାନେ ମଧ୍ୟ ଶଙ୍କି ଯାଇଥିଲେ । କାରଣ ମୋର ଆସିବା ପଥରେ ଏକ ନିଛାଟିଆ ଖଙ୍କାଳିଆ ସ୍ଥାନରେ ଭୂତ ପ୍ରକୋପ ତଥା ଅନ୍ୟାନ୍ୟ ଆକସ୍ମିକ ଦୁର୍ଘଟଣାର ଖବର ଆଗରୁ ସେମାନେ ପାଇଥିଲେ । ଯାହା ହେଉ ମୁଁ ନିରାପଦରେ ପହଞ୍ଚି ଥିବାରୁ ଅଶେଷ ଧନ୍ୟବାଦ ଦେଲି ।

## ଆଗ୍ରା ଦର୍ଶନ :

ଏ ମଧ୍ୟରେ ଆମ ସମ୍ମିଳନୀ ପ୍ରାୟ ୧୦ମ ଦିନରେ ପହଞ୍ଚି ଥିଲା ଓ ଆଗକୁ କେବଳ ଗୋଟିଏ ଛୁଟି ଦିନ ଥିବାରୁ ଓ ସେତେବେଳେ ପୂର୍ବର ଶନିବାର ଦିନରୁ ଆଗ୍ରା ତାଜମହଲ ଭ୍ରମଣରେ ଯିବାର ପ୍ରସ୍ତୁତି ଥିବାରୁ ମୁଁ ଓ ମୋର ଗୋନ୍ଦିଆର ଶିକ୍ଷକ ବନ୍ଧୁଙ୍କ ସଙ୍ଗରେ ଶୁକ୍ରବାର ଦିନ ରାତ୍ର ଟ୍ରେନରେ ବାହାରି ପରଦିନ ସକାଳେ "ରାଜା କି ମଣ୍ଡି" (ଆଗ୍ରାର) ଠିକ୍ ପୂର୍ବର ଷ୍ଟେସନରେ ଓହ୍ଲାଇ ଘୋଡ଼ାଗାଡ଼ିରେ ଦୟାଲ ବାଗ ଯାଇ ସେଠାକାର ଏକ ହୋଟେଲରେ ଚା ଜଳଖିଆ କରି ଭ୍ରମଣ ଆରମ୍ଭ କଲୁଁ । ପ୍ରକାଶ ଥାଉ କି ଆମେ ଟିକିଏ ପ୍ରାତଃରୁ ଉଠି ଟ୍ରେନରେ ଆମ ପ୍ରାତଃକୃତ୍ୟ ଶେଷ କରିଥିଲୁଁ ।

ଦୟାଲ ବାଗ: ଏକ ହିନ୍ଦୁ ସଂସ୍କାର କାରୁକାର୍ଯ୍ୟ ବିମଣ୍ଡିତ ଶଙ୍ଖମଲମଲ ପଥରର ଏକ ମନ୍ଦିର । ଶୁଣିବାକୁ ମିଳିଲା ଯେ ତାହା ଦୀର୍ଘ ୪୦ ବର୍ଷ ଧରି କାମ ଆରମ୍ଭ ହୋଇ ନିର୍ମାଣାଧୀନ ରହିଛି । ସେଠାରେ ଯେଉଁ ପଥର ଶିଳ୍ପୀମାନେ କାମ କରୁଥିଲେ ତାଙ୍କର ପୂର୍ବପୁରୁଷ ବାପ ଅଜାମାନେ ମଧ୍ୟ ସେଠାରେ କାମ କରୁଥିଲେ । ଯୋଜନା ଅନୁସାରେ କାମ ହେଲେ ହୁଏତ ଆହୁରି ଅନେକ ବର୍ଷ ଲାଗି ଯାଇପାରେ । କାରଣ ଭାରତ କାହିଁକି ପୃଥିବୀର ଯେତେ ପ୍ରକାର ଫୁଲ ଫଳ, ପଶୁପକ୍ଷୀ, ଜନ ମାନବାଦିଙ୍କ ମୂର୍ତ୍ତି ସେଥିରେ ସ୍ଥାନ ପାଇବ । ସେଠାରେ ଦେଖିବାକୁ ମିଳିଲା ଯେ ମନ୍ଦିରର କାନ୍ଥ ଦେହରେ ପେନ୍ଥା ପେନ୍ଥା ଅଙ୍ଗୁର, ନାସପାତି ଓ ଅନ୍ୟାନ୍ୟ ପତ୍ରପୁଷ୍ପର ପଥର ତିଆରି ସଦ୍ୟ ଜିନିଷର ରୂପରେଖ ସେଠାରେ ଶୋଭା ପାଉଥିଲା । ଆମେ ଆନନ୍ଦରେ କୌତୂହଳୀ ହୋଇ କେତେକ ମନ୍ଦିର ଗାତ୍ରରେ ଥିବା ପତ୍ରପୁଷ୍ପର ଫଟୋ ଉତ୍ତୋଳନ କରିଥିଲୁ ।

ତାହା ପରେ ଆମେ ଘୋଡ଼ାଗାଡ଼ିରେ ପୃଥିବୀ ବିଖ୍ୟାତ ତାଜମହଲ ଦର୍ଶନ କରିବାକୁ ଗଲୁଁ । ଆମେ ସେଠାରେ ପହଞ୍ଚିଲା ବେଳକୁ ଯାତ୍ରୀ ଭିଡ଼ ଲାଗି ଯାଇଥିଲା । ତାଜମହଲକୁ ଯାଇ ତାର ତିଆରି, ଗାମ୍ଭୀର୍ଯ୍ୟପୂର୍ଣ୍ଣ ବାତାବରଣ ଓ ବିଶାଳତା ଦୃଷ୍ଟିରୁ ତାକୁ ଭାଷାରେ ବର୍ଣ୍ଣନା କରିବା ଅସମ୍ଭବ । ତା ହୋଇ ନ ଥିଲେ ବିଶିଷ୍ଟ ମୋଗଲ ସମ୍ରାଟ ସାହାଜାହାନ ତାଙ୍କ ମୃତ ପତ୍ନୀ ମମତାଜଙ୍କ ନାମରେ ଏପରି ଏକ ସୁଦୃଶ୍ୟ, ସ୍ମରଣୀୟ ଓ ଆକର୍ଷଣୀୟ ବିରାଟ ସୌଧ ୧୧ ବର୍ଷରେ ବହୁ ଧନ ବ୍ୟୟରେ କରାଇ ଥାଆନ୍ତେ ! ଏହା ଯମୁନା ନଦୀ କୂଳରେ ଥାଇ ଅପରୂପ ଶୋଭା ସମ୍ଭାରର ଗନ୍ତାଘର । ଯମୁନା ନଦୀ ଜଳରେ ତାର ପ୍ରତିଛବି ଦର୍ଶକ ମନରେ ଅପାର ଆନନ୍ଦର ସ୍ରୋତ ବହାଇ ଥାଏ । ଶୁଣିବାକୁ ମିଳେ ଯେ ପୂର୍ଣ୍ଣମୀ ଚନ୍ଦ୍ରର ମେଘ ମୁକ୍ତ ଚନ୍ଦ୍ରାଲୋକରେ ତାଜମହଲର ଅପରୂପ ଶୋଭା ସନ୍ଦର୍ଶନରେ ଭାବୁକ, ଦାର୍ଶନିକ ତଥା କବିର ଭାବନାନ୍ତର ଜାତ ହୁଏ ଓ ମନରେ ପୁଲକ ଓ ଶିହରଣ ସୃଷ୍ଟି କରେ କାରଣ ସେତେବେଳେ ସାରା ତାଜମହଲଟି ଏକ ବିରାଟ ରୌପ୍ୟ ରଙ୍ଗ ସୌଧର ପ୍ରତୀକ ରୂପେ ଅଲୌକିକ ଭାବରାଜିର ଉଦ୍ରେକ କରେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଆଗ୍ରାର ସବୁ ପୁରାତନ monumentଗୁଡ଼ିକରେ ବିଶ୍ୱର ଶ୍ରେଷ୍ଠ ଧଳା ମାର୍ବଲ ପଥର ଓ ଅତି ବିରଳ ଶ୍ରେଣୀର ସବୁଜ, ଗୋଲାପୀ ଓ କଳା ରଙ୍ଗର ପଥର ବ୍ୟବହୃତ ହୋଇଥିଲା । ଏହା ଆଜି ପର୍ଯ୍ୟନ୍ତ ନିଖୁଣ ଅବସ୍ଥାରେ ବିଦ୍ୟମାନ । ତାଜମହଲର ମାର୍ବଲ କାରୁକାର୍ଯ୍ୟ ଦିନ ଓ ରାତ୍ରିରେ ଆଲୋକର ତୀବ୍ରତା ଅନୁସାରେ ବିଭିନ୍ନ ରଙ୍ଗରେ ଝଲକୁ ଥାଏ । ପୂର୍ଣ୍ଣିମା ରାତ୍ରିର ତାଜମହଲର ଦୃଶ୍ୟ ଅତି ମନମୁଗ୍ଧକର ଓ ରମଣୀୟ । ଏହିସବୁ ବିରଳ ପଥର ପ୍ରାୟ ନିକଟସ୍ଥ Makarana ଖଣିରୁ ସଂଗୃହୀତ ହୋଇଥିଲା ।

ଆଗ୍ରାର ସ୍ଥାପତ୍ୟ କଳା ଇରାନ ଦେଶର ବିଖ୍ୟାତ Architectଙ୍କ ଦ୍ୱାରା ପରିକଳ୍ପିତ ଓ ସୁଦକ୍ଷ ପଥରକଟାଳୀମାନଙ୍କ ଦ୍ୱାରା ନିର୍ମିତ । ଏହି କାରିଗରମାନଙ୍କ ବଂଶଧରମାନେ ଏବେ ମଧ୍ୟ ବିଦ୍ୟମାନ ।

ଏହା ଦେଖି ସାରିବା ପରେ ଆମେ ହୋଟେଲକୁ ଯାଇ ମଧ୍ୟାହ୍ନ ଭୋଜନ ପରେ ନିକଟସ୍ଥ ଦୋକାନମାନଙ୍କରୁ କିଛି ଖେଳନା ଓ ତାଜମହଲର ଛୋଟ ମଡେଲ ଆଦି କ୍ରୟ କରିବା ବେଳେ ଅସ୍ରାଏ  ବର୍ଷା ହେତୁ ଟିକିଏ ଅଟକି ଗଲୁଁ । ବର୍ଷା ଛାଡ଼ିବା ପରେ ଅନ୍ୟମାନଙ୍କଠାରୁ ବୁଝି ଜାଣିଲୁଁ ଯେ ଆଗ୍ରାର ୨୭ ମାଇଲ ଦୂରରେ ଆଉ ଏକ ଐତିହାସିକ ସ୍ଥାନ ଫତେପୁର ସିକ୍ରି ମଧ୍ୟ ଏକ ଦର୍ଶନୀୟ ସ୍ଥାନ । ତା ପୂର୍ବରୁ ଅବଶ୍ୟ ଆଗ୍ରା ଦୁର୍ଗ ମୋଗଲମାନଙ୍କର ପୂର୍ବ ରାଜାମାନେ ବୁଲାବୁଲି କରି ଦେଖି ସାରିଥିଲୁଁ ।

**ଫତେପୁର ସିକ୍ରି:** ଗୋଟିଏ ବସ୍ ଯୋଗେ ଫତେପୁର ସିକ୍ରି ଗଲୁଁ । ସେଠାରେ ମୋଗଲମାନଙ୍କ ଅନ୍ୟ ଏକ ସୌଧ ବିଶେଷ ଦେଖିବାର ସୁଯୋଗ ପାଇଲୁଁ । ଏହା ଆକବରଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଏହି ଦୁର୍ଗର ପ୍ରବେଶ ଦ୍ୱାରର ନାମ 'ବୁଲନ୍ଦ ଦରୱାଜା' ପୃଥିବୀ ବିଖ୍ୟାତ ସର୍ବୋଚ୍ଚ ଦରୱାଜା ଥିବା ଦୁର୍ଗରେ ପଞ୍ଚମହଲା ଓ ଏକ ମୋଗଲ ସାଧୁ 'ନୀଳମ ଚେସ୍ତି'ଙ୍କ ସମାଧି ଅଛି । ସେଠାରେ ମାନସିକ କରି ହିନ୍ଦୁ ଓ ମୁସଲମାନମାନେ ସୂତାଖିଅ ବାନ୍ଧନ୍ତି ଓ ମନସ୍କାମନା ପୂର୍ଣ୍ଣ ହେଲେ ପୁଣି ଯାଇ ଦର୍ଶନ କରନ୍ତି । ଏପରି ଭାବେ ଫତେପୁର ସିକ୍ରିର ଅଟ୍ଟାଳିକା ଦର୍ଶନ ପରେ ଆଗ୍ରା ଫେରି ଆସିଲୁଁ ଓ ରାତ୍ର ଭୋଜନ ପରେ ଟ୍ରେନ ଯୋଗେ ମଥୁରା ଫେରି ଆସିଲୁ ପ୍ରାୟ ରାତି ପାହାନ୍ତାରେ ।

**ମଥୁରା, ଗୋପ, ବୃନ୍ଦାବନ:** ଷ୍ଟେସନରେ ପ୍ରାତଃକୃତ୍ୟ ସାରି ଟାଙ୍ଗା ଧରି ମଥୁରା ବୁଲିବାକୁ ବାହାରି କଂସର ବନ୍ଦୀଶାଳାର ଭଗ୍ନାବଶେଷ, ଦ୍ୱାରିକାଧୀଶ ମନ୍ଦିର, ଚିଲ ଘାଟ (ବସ୍ତ୍ରହରଣ ନଦୀ ଘାଟ) ଆଦି ଦର୍ଶନ କରି ଏକ ଟାଙ୍ଗା ଧରି ଯମୁନା ନଦୀ ପାର ହୋଇ ଗୋପପୁର ହୋଇ ବୃନ୍ଦାବନ ଯିବା ବାଟରେ ନନ୍ଦଯଶୋଦାଙ୍କ ଘର ଓ କୃଷ୍ଣଙ୍କ ଏନ୍ଦୁଡ଼ିଶାଳ ଦର୍ଶନ କରିଥିଲୁଁ । ସେଠାରେ ବର୍ଷକୁ ଦିନେ ମିସରି ଭୋଗ ପାଇଁ ସେତେବେଳେ ଟ.୧୦ ଦେବାକୁ ପଡୁଥିଲା । ସେତିକି ଟଙ୍କାର ସୁଧରେ ବର୍ଷକୁ ଦିନକର ମିସରି ଖର୍ଚ୍ଚ ମିଳି ଯାଉଥିଲା । ମୁଁ ସ୍ୱତଃପ୍ରବୃତ୍ତ ହୋଇ ଉକ୍ତ ପରିମାଣ ଟଙ୍କା ଜମା କରି ରସିଦ ଆଣିଲି । ସେଠାରେ ଶିଶୁମାନଙ୍କୁ କୁଦୃଷ୍ଟିରୁ ରକ୍ଷା ପାଇଁ କୃଷ୍ଣଙ୍କ ଲାଗି ଥିବା ଏକ ପ୍ରକାର ମାଳୀ ମାଗଣା ମିଳୁଥିଲା । ସେଥିରୁ ଗୋଟିଏ ସଂଗ୍ରହ କରି ଆଣିଥିଲି । ଟାଙ୍ଗାରେ ବୃନ୍ଦାବନ ଯିବା ବାଟରେ ଟାଙ୍ଗାବାଲା ଏକ ବିସ୍ତୀର୍ଣ୍ଣ ପ୍ରାନ୍ତର ଦେଖାଇ ତାର ଆୟତନ ୮୦ କୋଶ ଓ ଏସବୁ ଜାଗା ଗୋକୁଳ ବୋଲି କହିଥିଲା । ଦୂରରୁ ଗିରି ଗୋବର୍ଦ୍ଧନ ପାହାଡ଼କୁ ମଧ୍ୟ ଦେଖାଇ ଦେଇଥିଲା । ତାକୁ ଦେଖି ଦୂରରୁ ମୁଣ୍ଡ ନୁଆଁଇ ପ୍ରଣତି ଜଣାଇଲି । ଏପରି କଥାବାର୍ତ୍ତା ହେଉଁ ହେଉଁ ବୃନ୍ଦାବନରେ ପହଞ୍ଚିଲୁଁ । ସେଠାରେ ସ୍ୱର୍ଣ୍ଣସ୍ତମ୍ଭ, ଜୟପୁର ରାଣୀଙ୍କ ତିଆରି ଲାଲ ପଥର ମନ୍ଦିର ଦର୍ଶନ କରି କେତେକ ଜାଗା ବୁଲି ଦେଖିଲୁଁ । ମଠମାନଙ୍କରେ ଅନାଥ, ଅସହାୟ, ବିଧବା, ପରିତ୍ୟକ୍ତା ଓ ସଧବା ସ୍ତ୍ରୀମାନେ ସର୍ବଦା କୃଷ୍ଣନାମ ଗାନରେ ବ୍ୟସ୍ତ ରହୁଥିଲେ ଓ ମଠରୁ ଦି ଓଳି ଦି ଗଣ୍ଡା ଖାଇବାକୁ ପାଉଥିଲେ । ତାପରେ ରାଧାକୁଣ୍ଡକୁ ଯାଇ ବୁଲି ଦେଖିଲୁଁ ଯେ ତାହା ରାଧାକୃଷ୍ଣଙ୍କ ରାତ୍ର ଅଭିସାର ସ୍ଥାନ ନିଧୁବନ । ସେଠାରେ ଏବେ ମଧ୍ୟ ଏକ ସୁସଜ୍ଜିତ ପଲଙ୍କ ରଖା ଯାଇଛି ଓ ରାତ୍ରିରେ ସେଠାରୁ ସୁମଧୁର ବଂଶୀ ସୂରଲହରୀ ଭାସି ଆସିବା

ଶୁଣାଯାଏ । କୌଣସି ବ୍ୟକ୍ତି ରାତ୍ରିରେ ସେଠାରେ ରହିଗଲେ ତାର ମୃତ୍ୟୁ ସୁନିଶ୍ଚିତ ବୋଲି ପ୍ରବାଦ ଅଛି। ବୃନ୍ଦାବନର ଆଉ ଏକ ବିଶେଷତ୍ୱ ଏହି ଯେ ବର୍ଷସାରା ଏଠାରେ ରାଧାକୃଷ୍ଣ ଲୀଳା ଓ ରାସ ମହୋତ୍ସବ ନିୟମିତ ଭାବେ ଅବିରାମ ଚ୍ୱଲି ଥାଏ । ତାହା ବୃନ୍ଦାବନବାସୀଙ୍କ ଦ୍ୱାରା ଆୟୋଜିତ ହୁଏ । ଏବେ ସେଠାରେ ଉତ୍କଳ ଯାତ୍ରୀନିବାସ ବାଙ୍କେବିହାରୀ ଗୌତମଙ୍କ ତତ୍ତ୍ୱାବଧାନରେ ପରିଚ୍ୱଳିତ। ଏହା ଅତି ସୁବିଧାଜନକ ରହଣୀ ସ୍ଥାନ ହେଲାଣି। ଏସବୁ ଦର୍ଶନ କରି ଖିଆପିଆ ସାରି ପୁଣି ଟାଙ୍ଗାରେ ଫେରି ଆସି ମଥୁରାରେ ପହଞ୍ଚିଲୁ ଓ ଏଠାରୁ ଟ୍ରେନ ଯୋଗେ ଦିଲ୍ଲୀରେ ପହଞ୍ଚିଲା ବେଳକୁ ପ୍ରାୟ ରାତି ୧୦ଟା। ସେଠାରେ ଯେ ଯାହାର ବିଶ୍ରାମସ୍ଥଳକୁ ଯାଇ ପରଦିନ ପୁଣି ସମ୍ମିଳନୀରେ ଯୋଗ ଦେବାକୁ ବିଜ୍ଞାନ ଭବନକୁ ଗଲି। ଏହା ପରେ ଆଉ ପ୍ରାୟ ୨/୩ ଦିନ ପରେ ସମ୍ମିଳନୀ ଉଦ୍‌ଯାପିତ ହେଲା। ତେଣୁ ସେଠାକାର ବନ୍ଧୁମାନଙ୍କୁ ପଚ୍ୱରି କିଛି ଜିନିଷ ଘର ପାଇଁ କିଣିବାକୁ ଚ୍ୱନ୍ଦନୀ ଚୌକ ବଜାରକୁ ଗଲୁଁ। ସେଠାରେ ଦିଲ୍ଲୀର ଜନୈକ ବନ୍ଧୁଙ୍କ ସାହାଯ୍ୟରେ ଗୋଟିଏ ଦୋକାନରୁ ବୋଧ ହୁଏ ଟ.୪୦/୪୫ ରେ ଏକ Pure Silk ଶାଢ଼ୀ କିଣିଲି। ତାହା ଏତେ ସୂକ୍ଷ୍ମ ଥିଲା ଯେ ତାକୁ ଗୋଟିଏ ମୁଠାରେ ଧରି ରଖା ଯାଇପାରେ। ତାକୁ ଘରକୁ ଆଣି ସମସ୍ତେ ଦେଖି ବହୁତ ପସନ୍ଦ କଲେ। ସେପରି ଧରଣର ସିଲ୍କ ଶାଢ଼ୀ ଆଉ କେବେ କିଣିବାର ସୁଯୋଗ ମିଳି ନ ଥିଲା। ତାକୁ ସମସ୍ତେ ଏତେ ପସନ୍ଦ କରୁଥିଲେ ଯେ ତାର କିୟଦଂଶ ଟେବୁଲ ଉପରେ ପକାଯାଇ ଗତ ୭୫/ ୮୦ ସାଲ ପର୍ଯ୍ୟନ୍ତ ବ୍ୟବହୃତ ହୋଇଥିଲା। ତାପରେ ସମ୍ମିଳନୀ ଶେଷ ହେବାରୁ ଦିଲ୍ଲୀରୁ ଝାରସୁଗୁଡ଼ା ବାଟେ ବରଗଡ଼ ଫେରିଲି।

ଫେରିବା ପରେ ସ୍କୁଲର ଛାତ୍ର ଓ ଶିକ୍ଷକଙ୍କ ଅନୁରୋଧରେ ଏକ ସଭାରେ ମୋର ଦିଲ୍ଲୀ ଯାତ୍ରା ଓ ଅନୁଭୂତି ବର୍ଣ୍ଣନା ସମସ୍ତଙ୍କୁ ଆନନ୍ଦ ପ୍ରଦାନ କରିଥିଲା।

## ଗୋଆଲିଅର ସର୍ବଭାରତୀୟ ଶିକ୍ଷା ସମ୍ମିଳନୀ- ୧୯୬୮ :

ମୁଁ ସମ୍ବଲପୁର ଜିଲ୍ଲା ବେସରକାରୀ ଶିକ୍ଷକ ସଂଘର ସମ୍ପାଦକ ଥିବାରୁ ୧୯୬୮ରେ ଗୋଆଲିଅରରେ ହେବାକୁ ଥିବା All India Teachers' Federationର ବାର୍ଷିକ ସମ୍ମିଳନୀରେ ଯୋଗ ଦେବା ପାଇଁ ଓଡ଼ିଶା ମାଧମିକ ଶିକ୍ଷକ ସଂଘ ତରଫରୁ ସେଠାକୁ ଯାଇଥିଲି। ତାହା ୨୮.୧.୬୮ରୁ ୩୦.୧.୬୮ ପର୍ଯ୍ୟନ୍ତ ବସିଥିଲା। ଏଣୁ ମୁଁ ମୋର ଜନୈକ ଛାତ୍ର ଶିକ୍ଷକ ବନ୍ଧୁ ଦୁର୍ଗା ପ୍ରସାଦ ମିଶ୍ର ଓ ବନ୍ଧୁ ଖେଳ ଶିକ୍ଷକ ଅବଧୂତ ପ୍ରଧାନ ଉଭୟେ କମଗାଁ ସ୍କୁଲରେ ଶିକ୍ଷକତା

କରୁଥିଲେ । ସେମାନେ ମୋର ସହଯାତ୍ରୀ ହେଲେ । ସେମାନେ ଦିଲ୍ଲୀ, ଆଗ୍ରା, ମଥୁରା, ବୃନ୍ଦାବନ ଆଦି ଆଗରୁ ଦେଖି ନ ଥିବାରୁ ଏହି ଅବସରରେ ଉପର୍ଯ୍ୟୁକ୍ତ ସ୍ଥାନ ଦେଖିବା ଉଦ୍ଦେଶ୍ୟରେ ଯାଇଥିଲେ । ତେଣୁ ଆମ୍ଭେମାନେ ୨୩.୧.୬୮ରେ ବରଗଡ଼ରୁ ବାହାରି ଝାରସୁଗୁଡ଼ା, ନାଗପୁର ଦେଇ ଦିଲ୍ଲୀରେ ୨୫.୧.୬୮ ଦିନ ବେଳେ ପହଞ୍ଚିଲୁଁ । ନୂଆଁଦିଲ୍ଲୀ ରେଳଷ୍ଟେସନ ନିକଟସ୍ଥ ନୀଳମ ହୋଟେଲରେ ଯାଇ ରହିଲୁଁ । ସେଦିନ ନିତ୍ୟକର୍ମ ଓ ଖିଆପିଆ ସାରି ବିଶ୍ରାମ ନେଲୁଁ । ସନ୍ଧ୍ୟା ବେଳେ India Gate ନିକଟକୁ ଯାଇ ପରଦିନ ସାଧାରଣତନ୍ତ୍ର ଦିବସ ପେରେଡ ଦେଖିବା ପାଇଁ କଅଣ ସୁବିଧା ହୋଇପାରେ ଜାଣିବା ପାଇଁ ତଥ୍ୟ ସଂଗ୍ରହ କଲୁଁ । ଦେଖିଲୁଁ ରାସ୍ତାର ଉଭୟ ପଟେ Baricate କରାଯାଇ ଜନସାଧାରଣଙ୍କ ବସିବା ବା ଠିଆ ହୋଇ ଦେଖିବା ପାଇଁ ବ୍ୟବସ୍ଥା କରା ଯାଇଥିଲା । ଦେଖିଲୁଁ ଯେ ଲୋକମାନେ ସେଦିନ ସନ୍ଧ୍ୟାରୁ ଯାଇ ରାସ୍ତାକଡ଼ରେ ବସିବା ବା ଠିଆ ହେବା ପାଇଁ ସ୍ଥାନ ସଂରକ୍ଷଣ କରିବାକୁ ଆରମ୍ଭ କଲେଣି । ସେମାନଙ୍କଠାରୁ ବୁଝିଲୁଁ ଯେ ପରଦିନ ପାହାନ୍ତିଆରେ ଅର୍ଥାତ୍ ପ୍ରାତଃ ୪/୫ଟାରେ ଆସିଲେ ହୁଏତ ସ୍ଥାନ ମିଳି ଯାଇପାରେ । ତେଣୁ ହୋଟେଲକୁ ଫେରିଯାଇ ଖିଆପିଆ କରି ରାତ୍ରି ବିଶ୍ରାମ କଲୁଁ । ପରଦିନ ପ୍ରାତଃ ୩ଟାରୁ ଉଠି ନିତ୍ୟକର୍ମ ସାରି ପେରେଡ ଦେଖିବାକୁ ପ୍ରସ୍ତୁତ ହେବା ବେଳକୁ ଅତିଶୟ ଥଣ୍ଡା ଓ ସାମାନ୍ୟ ଝିପିଝିପି ବର୍ଷା ପାଇଁ ଟିକିଏ ଅଟକି ଗଲୁଁ । ତାପରେ ଯାଇ ପହଞ୍ଚିଲା ବେଳକୁ ପ୍ରାୟ ୬ଟା ପାଖାପାଖି । ସବୁ ସ୍ଥାନ ପ୍ରାୟ ଅଧିକୃତ । ରାସ୍ତାକଡ଼ର ବୃକ୍ଷମାନଙ୍କରେ ମଧ ଲୋକେ ବହୁ ସ୍ଥାନ ଆବୋରି ନେଇ ଥାଆନ୍ତି ।

ତେଣୁ ପତାକା ଉତ୍ତୋଳନର ମଣ୍ଡପ ଓ ବିଶିଷ୍ଟ ଅତିଥି ଓ ଅନ୍ୟମାନଙ୍କ ବସିବା ସ୍ଥାନରେ ଏକ ସୁବିଧା ଦେଖି ଠିଆ ହେଲୁଁ । ଧୀରେ ଧୀରେ ଠିକ ସମୟ ନିକଟେଇ ଆସିଲା । ଉପରୁ ହେଲିକପ୍ଟର ଯୋଗେ ଗୋଲାପ ପୁଷ୍ପ ପାଖୁଡ଼ା ବୃଷ୍ଟି ହେବାକୁ ଲାଗିଲା । ଧୀରେ ଧୀରେ ବିଶିଷ୍ଟ ଅତିଥି ଓ କର୍ମଚାରୀମାନେ ଆସି ନିଜ ନିଜ ସ୍ଥାନ ଅଧିକାର କଲେ । ଉକ୍ତ ସଂରକ୍ଷଣ ସ୍ଥାନକୁ ଯିବାକୁ ବିଧିମତ ପ୍ରବେଶ ପତ୍ର ଓ ସାଧାରଣ ଲୋକଙ୍କ ପାଇଁ ମଧ Passର ବ୍ୟବସ୍ଥା ଥିଲା । ଠିକ୍ ୯ଟା ହେବାକୁ ଥିବାର ୨ ମିନିଟ ପୂର୍ବରୁ ରାଷ୍ଟ୍ରପତି ଓ ଅନ୍ୟମାନେ ପ୍ରାୟ ଏକା ରଙ୍ଗର ୮/୧୦ଟି ଗାଡ଼ିରେ ଘୋଡ଼ାସବାରମାନଙ୍କ ପଛରେ ଆସି ଦ୍ୱାରଦେଶରେ ପହଞ୍ଚିବାରୁ ପ୍ରଧାନମନ୍ତ୍ରୀ, ତିନି ବାହିନୀର ସର୍ବୋଚ୍ଚ କର୍ତ୍ତାଗଣ ତଥା ଅନ୍ୟ ମନ୍ତ୍ରୀମଣ୍ଡଳର ସଦସ୍ୟଗଣ ରାଷ୍ଟ୍ରପତିଙ୍କୁ ପାଛୋଟି ନେଲେ । ସେ ବର୍ଷର ମୁଖ୍ୟ ଅତିଥି ୬୦ଲ

ଜଣେ ବିଦେଶୀ ଆଗନ୍ତୁକ । ପତାକା ଉତ୍ତୋଳନ ପରେ ପୂର୍ବରୁ ନିର୍ଦ୍ଧାରିତ ମୃତ ଜବାନ ବା ତାଙ୍କ ପତ୍ନୀମାନଙ୍କୁ ପୁରସ୍କାର ଓ ମାନପତ୍ର ପ୍ରଦାନ କରାଗଲା । ତାପରେ ଦେଶର ବିଭିନ୍ନ ଯୁଦ୍ଧ ବ୍ୟବହୃତ ଟେଙ୍କ, ବିମାନ, ମୋଟରସାଇକେଲ ଚ଼ାଳନ ଓ ତିନି ବାହିନୀର ଜବାନ ମାନେ ପେରେଡରେ ମାର୍ଚ୍ଚପାଷ୍ଟ କରି ଚ଼ାଲିଲେ । ପରେ ପରେ ବିଭିନ୍ନ ପ୍ରଦେଶର Tabulo ଗୁଡ଼ିକ ଓ N.C.C. Airwing, A.C.C. ବାହିନୀ ଓ ଦିଲ୍ଲୀର ବିଭିନ୍ନ ଅନୁଷ୍ଠାନର ଛାତ୍ର ଛାତ୍ରୀମାନଙ୍କ କୌତୁକିଆ ସାଂସ୍କୃତିକ କାର୍ଯ୍ୟକ୍ରମ, ଡ୍ରିଲ ଆଦି ପ୍ରଦର୍ଶିତ ହେଲା ।

ପରଦିନ ପ୍ରାତଃ ଭୋଜନ ପରେ ଗୋଟିଏ ଟେମ୍ପୋ ଯୋଗାଡ଼ କରି ଦିଲ୍ଲୀ ଭ୍ରମଣ ପାଇଁ ତିନି ଜଣ ବାହାରି ପଡ଼ିଲୁଁ । ଆଗରୁ ବର୍ଣ୍ଣିତ ସ୍ଥାନମାନଙ୍କରୁ ଗୋଟିଏ ଦୁଇଟା ସ୍ଥାନ ଦେଖି ସାରିବା ପରେ ସେହି ଯାନଟି ଅଚଳ ହେବାରୁ ଆଉ ଏକ ଯାନ ଧରି ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନ ପରିଦର୍ଶନ କଲୁଁ । ଏଥର ନୂଆଁ କରି ଶାନ୍ତିଘାଟ (ନେହେରୁଙ୍କ ସମାଧି) ଓ ତାଙ୍କ ପୂର୍ବ ତ୍ରିମୂର୍ତ୍ତି ଭବନ ଦେଖିଲୁଁ । କାରଣ ତ୍ରିମୂର୍ତ୍ତି ଭବନକୁ ଜାତି ଉଦ୍ଦେଶ୍ୟରେ ଏକ ସଂଗ୍ରହାଳୟ ରୂପେ ସମର୍ପଣ କରା ଯାଇଥିଲା । ଏହି ଭବନର ଉଦ୍ୟାନରେ ମଧ୍ୟ ଅମର ଜବାନଙ୍କ ପାଇଁ India Gate ଓ ରାଜଘାଟ ପରେ ବାପୁଜୀଙ୍କ ପାଇଁ ଅହୋରାତ୍ର ଜଳୁଥିବା ଅଗ୍ନିଶିଖା ଭଳି ଏକ ଶିଖା ସଦାସର୍ବଦା ଜଳୁଥିବାର ଦେଖାଗଲା ।

ସେଦିନ ଦିଲ୍ଲୀ ଭ୍ରମଣ ସାରି ରାତ୍ରିରେ ଟ୍ରେନ୍ ଯୋଗେ ଗୋଆଲିଅର ଅଭିମୁଖେ ଯାତ୍ରା କଲୁଁ । ପରଦିନ ୨୮.୧.୬୮ରେ ୧୦ଟାରେ ଯାଇ ଗୋଆଲିଅର ପହଞ୍ଚି ସଦସ୍ୟମାନଙ୍କ ରହଣୀସ୍ଥଳକୁ ଯାଇ ସମ୍ମିଳନୀରେ ଯୋଗ ଦେବା ପାଇଁ ପ୍ରସ୍ତୁତ ହେଲୁଁ । ଏଠାରେ ପ୍ରତ୍ୟେକ ସଦସ୍ୟଙ୍କ ପାଇଁ ରହିବା, ଖାଇବା ଓ ଶୋଇବାର ଏପରିକି ଉଷ୍ଣ ଜଳ ଓ ଶୀତ ପାଇଁ ଘୋଡ଼େଇ ହେବା ରେଜେଇ ଆଦି ବନ୍ଦୋବସ୍ତ ହୋଇଥିଲା । ଅବଶ୍ୟ ରେଜେଇ ପାଇଁ କିଛି କିଛି ଶୁଳ୍କ ଦେବାକୁ ପଡୁଥିଲା । ସେଠାରେ ତା. ୨୮ ଓ ୨୯ ଦିନ ରହି ଗୋଆଲିଅରର ଦର୍ଶନୀୟ ସ୍ଥାନ ରାଜାଙ୍କ ଦୁର୍ଗ ପରିଦର୍ଶନରେ ଯାଇଥିଲୁଁ । ଏହା ମଧ୍ୟ ଏକ ସଂଗ୍ରହାଳୟ ଭଳି । ସେଠାରେ ଏକ ବୃହତ୍ ଗାଲିଚ଼ା ଦେଖିବାକୁ ମିଳିଲା ଯହିଁରେ ମୋଗଲ ସମ୍ରାଟ ତଥା ଅନ୍ୟାନ୍ୟ ରାଜାମାନଙ୍କର ମୂର୍ତ୍ତି ଆଦି ସୂକ୍ଷ୍ମ ଭାବେ ବୁଣା ଯାଇଥିଲା । ଦୁର୍ଗର ସଂରକ୍ଷକଙ୍କ ଠାରୁ ଜଣାଗଲା ଯେ ଉକ୍ତ ଗାଲିଚ଼ାଟି ଏକ ବିରଳ ଧରଣର କାରଣ ସେହିଭଳି ମାତ୍ର ୩ଟି ଗାଲିଚ଼ା ପୃଥିବୀରେ ଅଛି । ଆଗ୍ରା କିଲାରେ ଶିବାଜୀ ଯେଉଁ ବନ୍ଦୀଶାଳାରୁ ପଳାୟନ କରିଥିଲେ ତାହା ଦେଖିବାକୁ ମିଳେ । ଏହା ଛଡ଼ା ଆଉ ଦିଓଟି ଗୋଟିଏ

ରାଜସ୍ଥାନର ଜୟପୁରରେ ଓ ଅନ୍ୟଟି ଲଣ୍ଡନ ମିଉଜିୟମରେ ସଂରକ୍ଷିତ ହୋଇଛି । ସେହି ଗାଲିଚ୍ଚକୁ ସନ୍ଦର୍ଶନ କଲେ ଭାରତର ହସ୍ତଶିଳ୍ପ ନୈପୁଣ୍ୟର ପରାକାଷ୍ଠା ସାରା ବିଶ୍ୱରେ ବିରଳ ମନେ ହୁଏ । ସେଠାରୁ ସମ୍ମିଳନୀ ଶେଷ ହେବା ପରେ ଆମେ ଆଗ୍ରା, ବୃନ୍ଦାବନ, ମଥୁରା ଦର୍ଶନ କରି ୧.୨.୬୮ରେ ମଥୁରାରୁ ଟ୍ରେନ ଯୋଗେ ସାଗର, କଟନୀ, ବିଲାସପୁର ବାଟେ ଝାରସୁଗୁଡ଼ା ଅଭିମୁଖେ ଯାତ୍ରା କଲୁଁ । ପ୍ରାୟ ସବୁବେଳେ ତିନି ଜଣଙ୍କର ଟିକଟ ଓ ପଇସା ଆଦି ମୋ ଠାରେ ଥିଲା । କିନ୍ତୁ କେଜାଣେ କାହିଁକି ସାଗର ଷ୍ଟେସନ ଆଗରୁ ମୁଁ ଦୁର୍ଗା ବାବୁଙ୍କୁ ଓ ଅବଧୂତ ବାବୁଙ୍କୁ ତାଙ୍କ ଟିକଟ ଦେଇଥିଲି । କିଛି କିଛି ପଇସା ମଧ ତାଙ୍କୁ ଖର୍ଚ୍ଚ କରିବାକୁ ଦିଆ ଯାଇଥିଲା । ସାଗର ଷ୍ଟେସନରେ ଆସି ଗାଡ଼ି ଅଟକିଲା । ଦୁର୍ଗା ବାବୁ ଷ୍ଟେସନ ବାହାରକୁ ଜଳଖିଆ ଖାଇବାକୁ ଗଲେ । ସେ ଜଳଖିଆ ଖାଇ ଆସିବା ପୂର୍ବରୁ ଗାଡ଼ି ଛାଡ଼ି ଦେଲା । ତେଣୁ ସେ ଏକାକୀ ସାଗରରେ ରହିଗଲେ ଓ ଆମେ ଗାଡ଼ିରେ ଚ୍ଚଲି ଆସିଲୁଁ । ଅନ୍ୟ ଡବାରେ କାଳେ ଦୁର୍ଗା ବାବୁ ଚଢ଼ି ଥାଇ ପାରନ୍ତି ଏହି ସନ୍ଦେହରେ ପରବର୍ତ୍ତୀ ୨/୩ ଷ୍ଟେସନ ପର୍ଯ୍ୟନ୍ତ ଅପେକ୍ଷା କରି ତାଙ୍କୁ ନ ଭେଟିବାରୁ ଆମର ଧାରଣା ହେଲା ଯେ ସେ ସାଗରରେ ରହିଗଲେ । ଆମେ ଯାଇ ବିଲାସପୁର ଷ୍ଟେସନରେ ଓହ୍ଲାଇଲୁଁ ପରବର୍ତ୍ତୀ ଝାରସୁଗୁଡ଼ାଗାମୀ ଟ୍ରେନ ଧରିବା ପାଇଁ । ସେଠାରେ ନିତ୍ୟକର୍ମ ସାରି ଅବଧୂତ ବାବୁ ଏକ ପରବର୍ତ୍ତୀ ଟ୍ରେନରେ ଝାରସୁଗୁଡ଼ା ଚ୍ଚଲିଗଲେ, କାରଣ ତାଙ୍କ ଗାଁରେ ପୋ.ଅ. କାମର ଦାୟିତ୍ୱ ଥିଲା । ତେଣୁ ମୁଁ ବାଧ ହୋଇ ବିଲାସପୁରରେ ଅପେକ୍ଷା କଲି ଦୁର୍ଗା ବାବୁଙ୍କ ଆଗମନକୁ ।

ସକାଳୁ ନିତ୍ୟକର୍ମ ସାରି ଜଳଖିଆ ଖାଇ ବିଲାସପୁର ସହରକୁ ବୁଲିବାକୁ ଯିବା ପାଇଁ ମନସ୍ଥ କଲି କାରଣ ପରବର୍ତ୍ତୀ ସାଗରରୁ ଆସୁଥିବା ଟ୍ରେନ ପହଞ୍ଚିବାର ସମୟ ବିଳମ୍ବ ଥାଏ । ବିଲାସପୁର ବଜାରରେ ବୁଲିବା ବେଳେ ଦେଖିଲି ଅନ୍ୟାନ୍ୟ ଜିନିଷ ଅପେକ୍ଷା ଭଲ ପ୍ରକାରର ଓ ବଡ଼ ବଡ଼ ଟମାଟୋ ଅତି ଶସ୍ତାରେ ମିଳୁଥିବାର ମନେ ହେଲା । ତେଣୁ ଟ.୧ ରେ ୧୦ କିଲୋ ଟମାଟୋ ଗୋଟିଏ ଝୁଡ଼ିରେ ଆଣିଲି ।

ଯଥାସମୟରେ ଦୁର୍ଗା ବାବୁ ପହଞ୍ଚିଲେ । ତାଙ୍କ ହାତରେ ଟିକଟ ସହ ମୋଟେ ଟ.୩/୪ ଥିବାରୁ ବାଟରେ ଅଖିଆ ରହି ଆସିବାକୁ ହେଲା । ତେଣୁ ସେ ବିଲାସପୁରରେ ପହଞ୍ଚି ଧୁଆଧୋଇ ହେବା ପରେ ଭୋଜନ କଲୁଁ । ପରବର୍ତ୍ତୀ ଟ୍ରେନରେ ଝାରସୁଗୁଡ଼ା ପହଞ୍ଚି ବସ୍ ଯୋଗେ ବରଗଡ଼ ଆସିଲୁଁ । ବରଗଡ଼ରେ ପହଞ୍ଚି ଶୁଣିଲି ଯେ ବରଗଡ଼ରେ ଟମାଟୋ ଟଙ୍କାରେ ୧୫/୨୦ କେଜି ମିଳୁଛି । ତେଣୁ ମୋର ପରିଶ୍ରମର ଅସାର୍ଥକତା ଅନୁଭବ କରି ଚୁପ୍ ରହିଲି ।

## ନିଖିଳ ଭାରତୀୟ ଶିକ୍ଷା ସମ୍ମିଳନୀ, ପୁନା (୧୯୬୮):

ଏ ବର୍ଷଟିରେ ଏହି ସମ୍ମିଳନୀ ବର୍ଷାରମ୍ଭରେ ଓ ବର୍ଷ ଶେଷରେ ଦୁଇ ଥର ହୋଇଥିଲା। ଡିସେମ୍ବର ମାସ ଶେଷ ସପ୍ତାହରେ ପୁନା ଠାରେ ନିଖିଳ ଭାରତ ଶିକ୍ଷା ସମ୍ମିଳନୀରେ ଯୋଗ ଦେବା ପାଇଁ ଓଡ଼ିଶା ମାଧମିକ ଶିକ୍ଷକ ସଂଘ ତରଫରୁ ମନୋନୀତ ହୋଇ ଯାଇଥିଲି। ମୋର ୩ୟ ପୁତ୍ର ୰ ସୁଶାନ୍ତ କିଶୋର ଦାଶ, ଆମ ସ୍କୁଲର ପିଅନ ଶ୍ରୀ ଅମରୁ ବନଛୋର ଓ ସଙ୍ଗୀତ ଶିକ୍ଷକ ଶ୍ରୀ ଫକୀର ପଟ୍ଟନାୟକ ମୋର ସହଯାତ୍ରୀ ଥିଲେ। ମୋର ପୁଅର ଦୁର୍ବଳ ସ୍ୱାସ୍ଥ୍ୟ ସକାଶେ ଓଡ଼ିଶାର ଡାକ୍ତରମାନଙ୍କ ଚିକିତ୍ସାରେ ଆରୋଗ୍ୟ ନ ହେବାରୁ ତାକୁ ପୁନାର Artificial Limb Centre ଓ ବମ୍ବେ (ଆଜିକାଲିର ମୁମ୍ବାଇ)ର Kiny Instituteକୁ ଦେଖାଇବା ମୋର ଯାତ୍ରାର ମୁଖ୍ୟ ଉଦ୍ଦେଶ୍ୟ ଥିଲା। ତେଣୁ ଆମେ ଏଠାରୁ କଟକ ଯାଇ କଟକରୁ ଯାଉଥିବା ଅନ୍ୟ ଶିକ୍ଷକମାନଙ୍କ ସଙ୍ଗରେ ରିହାତି ଦରରେ ଟିକଟ୍ ପାଇ କଟକରୁ ବିଜ୍ୱାଡ଼ା, ସିକନ୍ଦରାବାଦ, ହାଇଦରାବାଦ ବାଟେ ପୁନା ଯିବାକୁ ହେଲା। ବାଟରେ ହାଇଦରାବାଦରେ କିଛି ସମୟ ରହି ହାଇଦରାବାଦର ଚ୍ୱରମୀନାର, ଉସମାନିଆ ବିଶ୍ୱବିଦ୍ୟାଳୟ ଓ ପୁସ୍ତକାଗାର ଓ ପୃଥିବୀ ବିଖ୍ୟାତ ସଲାରଜଙ୍ଗ ମିଉଜିୟମ ଦେଖିବାର ସୁବିଧା ପାଇଥିଲୁଁ। ସଲାରଜଙ୍ଗ ସଂଗ୍ରହାଳୟର ବିଶେଷତ୍ୱ ଏହି ଯେ ଏଠାରେ ପୃଥିବୀର ବିଭିନ୍ନ ଦେଶର ସବୁ ପ୍ରକାର ବସ୍ତୁ ଦୀପ, ଦିହୁଡ଼ି ଠାରୁ ପୋଷାକ ଓ ଅସ୍ତ୍ର ଶସ୍ତ୍ର ସବୁ ସୁସଜ୍ଜିତ ହୋଇ ରଖା ଯାଇଥିଲା। ଉକ୍ତ ସଂଗ୍ରହାଳୟକୁ ଆହୁରି ବିଭାଗୀୟ ଶୃଙ୍ଖଳାନୁସାରେ ସଜାଇବା ପାଇଁ ନୂତନ ଗୃହ ନିର୍ମାଣ କରି ସଜାସକି କରା ଯାଇଥିଲା। ସେଠାରେ ଅନ୍ୟାନ୍ୟ ଦର୍ଶନୀୟ ବସ୍ତୁମାନଙ୍କ ମଧରେ ଗୋଟିଏ କାନ୍ଥଘଣ୍ଟା ବିଶେଷ ଆକର୍ଷଣୀୟ ଥିଲା। କାରଣ ସେହି ଘଣ୍ଟାରେ ଘଣ୍ଟାର ସୂଚନା ଦେବା ପାଇଁ ଠିକ୍ ସମୟ ହେଲେ ଘଡ଼ି ଭିତରେ ଥିବା ଲୁକ୍କାୟିତ ସ୍ଥାନରୁ ଏକ ଛୋଟ ମଣିଷ ପିତୁଳା ଭଳି ଜଣେ କେହି ଆସି ଦେଖାଯିବା ଭଳି ଏକ ସ୍ଥାନରେ ନିଜେ ଏକ ହାତୁଡ଼ିରେ ଶବ୍ଦ ବାହାରୁ ଥିବା ଏକ ଘଣ୍ଟାରେ ଆଘାତ କରି ସମୟ ସୂଚାଇ ଦେଉଥିଲା। ଅର୍ଥାତ୍ ଗୋଟାଏ ବେଳେ ଥରେ, ଦୁଇଟା ବେଳେ ୨ ଥର ଏପରି କ୍ରମଶଃ ଘଣ୍ଟା ପରିମାଣରେ ହାତୁଡ଼ିରେ ପିଟି ଶବ୍ଦ ଦ୍ୱାରା ସମୟ ସୂଚିତ ହେଉଥିଲା। ଏପରି ଆହୁରି କେତେ ଅତ୍ୟାଶ୍ଚର୍ଯ୍ୟ ବସ୍ତୁ ସଂଗୃହୀତ ହୋଇ ସମସ୍ତଙ୍କୁ ଆନନ୍ଦ ପ୍ରଦାନ କରୁଥିଲା। ସେଠାରୁ ପୁନା ଯାଉଥିବା ଟ୍ରେନ୍‌ରେ ରାତିରେ ପୁନା ଗଲୁଁ ଓ ସେଠାରେ ନିର୍ଦ୍ଦିଷ୍ଟ ଦିନରେ ପହଞ୍ଚି ଶିକ୍ଷା ସମ୍ମିଳନୀରେ ଯୋଗ ଦେଲୁଁ।

ପୁନା ରହଣୀ କାଳରେ ସମ୍ମିଳନୀରେ ଅନୁଷ୍ଠିତ ସାଂସ୍କୃତିକ କାର୍ଯ୍ୟକ୍ରମରେ ମୋ ସାଙ୍ଗରେ ଯାଇଥିବା ଆମ ସଙ୍ଗୀତ ଶିକ୍ଷକ ଶ୍ରୀ ଫକୀର ମୋହନ ପଟ୍ଟନାୟକ ସଙ୍ଗୀତ ପରିବେଷଣ କରି ଉପସ୍ଥିତ ଶ୍ରୋତାମାନଙ୍କୁ ମୁଗ୍ଧ କରିଥିଲେ । ଏପରି ଏକ ସର୍ବଭାରତୀୟ ସ୍ତରର ଏକ ସମ୍ମିଳନୀରେ ସେ ଯୋଗଦାନ କରିଥିବାର ସୁଯୋଗ ପାଇଥିବାରୁ ନିଜକୁ ଧନ୍ୟ ମନେ କରିଥିଲେ ।

ପୁନାରେ ଏକ ପ୍ରସିଦ୍ଧ କୃତ୍ରିମ ଅଙ୍ଗ ପ୍ରତ୍ୟଙ୍ଗ ଲଗାଇବା ଡାକ୍ତରଖାନା ଅଛି । ସେଠାରେ ଥିବା ବଡ଼ ଡାକ୍ତରଙ୍କୁ ମୋର ପୁଅକୁ ନେଇ ତାର ପୂର୍ବ ଚିକିତ୍ସା ସଂକ୍ରାନ୍ତୀୟ କାଗଜାତ ଦେଖାଇବାରୁ ତାକୁ ତନ୍ନ ତନ୍ନ କରି ପରୀକ୍ଷା କରି ଶେଷରେ ମତ ଦେଲେ ଯେ ତାହା (Polio) ଏକ ଅସାଧ ରୋଗ ଯାହାର କି ସଠିକ ଔଷଧ ସେ ପର୍ଯ୍ୟନ୍ତ ଆବିଷ୍କୃତ ହୋଇ ନ ଥିଲା । ତାହାର ପରୀକ୍ଷା ନିରୀକ୍ଷା ଚାଲିଛି କିନ୍ତୁ ନିଶ୍ଚିତ ରୂପେ ଆରୋଗ୍ୟ ହେବାର କୌଣସି ସିଦ୍ଧାନ୍ତରେ ଔଷଧ ବିଜ୍ଞାନ ପହଞ୍ଚି ପାରି ନାହିଁ । ତେଣୁ ଭଗବାନଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କରି ତାଙ୍କୁ ପ୍ରାର୍ଥନା କରିବା ଛଡ଼ା ଆଉ ଅନ୍ୟ ପନ୍ଥା ନାହିଁ । ଏହା ଶୁଣି ଶେଷରେ ଯଦିଓ ମୁଁ ନିରୁତ୍ସାହ ହେଲି ତଥାପି ଏତେ ଦୂର ଯାଇ ବମ୍ବେ ନେଇ ଦେଖାଇବାର ଚେଷ୍ଟା ଓ ଇଚ୍ଛାକୁ ବର୍ଜନ ନ କରି ସମ୍ମିଳନୀ ଶେଷରେ ବମ୍ବେରୁ ଆସିଥିବା ଶିକ୍ଷକମାନଙ୍କ ସଙ୍ଗରେ ଆମର ଓଡ଼ିଶାର ଅନ୍ୟାନ୍ୟ ଶିକ୍ଷକମାନେ ଯାଇ ଏକ ଉଚ୍ଚ ବିଦ୍ୟାଳୟରେ ରହିବାର ସୁବିଧା ପାଇଲୁଁ । କାରଣ ସେତେବେଳେ X'mas ପାଇଁ ସ୍କୁଲଗୁଡ଼ିକ ବନ୍ଦ ଥିଲା ।

ଉଚ୍ଚ ବିଦ୍ୟାଳୟଟି ଏକ ତିନି ତାଲା ବିଶିଷ୍ଟ ଓ ତହିଁରେ Liftର ବ୍ୟବସ୍ଥା ଥିଲା । ତେଣୁ ଜିନିଷପତ୍ର ଉଠାଇବାକୁ Liftର ସାହାଯ୍ୟ ନିଆ ଯାଇଥିଲା । ଏହା ବୋଧ ହୁଏ ଡିସେମ୍ବର ୨୯ ତାରିଖ । ସେଠାରେ ପହଞ୍ଚିବା ପରେ ଯଦିଓ ବମ୍ବେ ସହର ବୁଲି ଦେଖିବାର ଇଚ୍ଛା ଥିଲା, ଆମର ପ୍ରାଥମିକ ଉଦ୍ଦେଶ୍ୟ ପୁଅକୁ ନେଇ ଏସିଆର ସର୍ବୋତ୍କୃଷ୍ଟ ଶିଶୁ ଓ ଅଙ୍ଗ ପ୍ରତ୍ୟଙ୍ଗ ଚିକିତ୍ସା ପାଇଁ Kiny Instituteକୁ ଗଲୁଁ । ସେଠାରେ ସମ୍ପୃକ୍ତ ବିଭାଗକୁ ଯାଇ କାଗଜପତ୍ର ଧରି ସେଠାରେ କାର୍ଯ୍ୟରତ ଡାକ୍ତରଙ୍କୁ ଦେଖାଇବାରୁ ଉକ୍ତ ଡାକ୍ତର ଡା. N.J. Singh ଆମ ଓଡ଼ିଶାର ଡା. ତେଜେଶ୍ୱର ରାଓଙ୍କ ବିଦେଶରେ ପଢୁଥିବା ବେଳର ସାଥୀ । ସେ ସବୁ କାଗଜାତ ଦେଖି ଚିକିତ୍ସା ଠିକ୍ ଚାଲିଛି ତଥାପି ତାଙ୍କ ବିଭାଗୀୟ ମୁଖ୍ୟଙ୍କୁ ଦେଖାଇ ସଠିକ୍ ମତ ନେବାର ପ୍ରସ୍ତାବ ଦେଲେ । ଉକ୍ତ ମୁଖ୍ୟ ଡାକ୍ତର ପରଦିନ ବମ୍ବେରୁ ବାହାରକୁ ଚାଲି ଯିବାର ଥିଲା । ତେଣୁ Dr. Singh ସ୍ୱଚେଷ୍ଟାରେ ସେହି ମୁଖ୍ୟ ଡାକ୍ତର ଓ ଅନ୍ୟାନ୍ୟ ବିଭାଗୀୟ ଡାକ୍ତରଙ୍କ ସଙ୍ଗରେ ପରାମର୍ଶ କରି ସେଦିନ ମୋର ପୁଅକୁ ପରୀକ୍ଷା

କରି ଘଣ୍ଟାଧିକ କାଳ ବିଗ୍ଭର ବିମର୍ଷରେ (ସେମିନାର କରି) ବ୍ୟସ୍ତ ରହିଲେ। ଶେଷରେ ସେମାନେ ମତ ଦେଲେ ଯେ ଯାହା ସବୁ ଚିକିତ୍ସା ଗ୍ଭଲିଛି ତାହା ଠିକ୍। କିନ୍ତୁ ରୋଗୀର ବିଭିନ୍ନ ସ୍ଥାନର ମାଂସପେଶୀରୁ ମାଂସ ଟିକିଏ ନେଇ Biopsy କଲେ ହୁଏତ କେଉଁ ପ୍ରକାର ରୋଗ ଓ କେଉଁ ସ୍ତରରେ ପହଞ୍ଚିଛି ଜଣା ପଡ଼ିବ। କିନ୍ତୁ ନିର୍ଦ୍ଦିଷ୍ଟ ରୂପେ ଆରୋଗ୍ୟର ଆଶା ନାହିଁ। ତେଣୁ ମୁଁ ସେହି ଚିକିତ୍ସାରୁ ବିରତ ହେଲି।

ଡାକ୍ତରଖାନାରୁ ଫେରି ସେଦିନ ସନ୍ଧ୍ୟାରେ ଓ ପର ଦିନ ୩୧.୧୨.୬୮ରେ ବମ୍ବେ ସହର ବୁଲାବୁଲି ସାରି ୧.୧.୬୯ରେ ବରଗଡ଼ ଫେରିବାର ପ୍ରସ୍ତାବ କରି ଆମେ ଷ୍ଟେସନକୁ ଯାଇ ଟିକଟ ଓ ସ୍ଥାନ ସଂରକ୍ଷଣ କରାଇ ଆସିଲୁଁ। ବମ୍ବେରେ ଦର୍ଶନୀୟ ସ୍ଥାନ ମଧ୍ୟରେ ତାଜମହଲ ହୋଟେଲ, ସମୁଦ୍ର କୂଳ, ମାଲବାର ପାହାଡ଼, ପ୍ରାଣୀ ସଂଗ୍ରହାଳୟ, ହନୁମାନ ମନ୍ଦିର ଓ ସିନେମାଚିତ୍ର ଗ୍ରହଣର ଷ୍ଟୁଡିଓ ଛଡ଼ା ବମ୍ବେ ନିକଟସ୍ଥ ସମୁଦ୍ର ମଧ୍ୟରେ ଥିବା Elephanta Cave ପ୍ରସିଦ୍ଧ। ୩୦.୧୨.୬୮ର ଉପର ଓଳି କିଛି ସ୍ଥାନ ଦେଖି ପରଦିନ ସକାଳ ଡଙ୍ଗାରେ ଯାଇ ଏଲିଫାଣ୍ଟା କେଭ ଦେଖିଲୁଁ ଓ ସେଠାରୁ ଫେରି ଟ୍ରେନ୍ ଯୋଗେ ସିନେମା ଷ୍ଟୁଡିଓ ଅଞ୍ଚଳକୁ ଯାଇ ବିସ୍ତୀର୍ଣ୍ଣ ପଡ଼ିଆରେ କୃତ୍ରିମ ପାହାଡ଼ ଓ ଜଳପ୍ରପାତ ଓ ଉଦ୍ୟାନ ଆଦି ଦେଖିଲୁଁ। ତହିଁରୁ ସିନେମାରେ ଦୃଶ୍ୟମାନ ମନୋହର ଚିତ୍ର ସବୁ କିପରି ଭାବେ ସଜାଇ ପ୍ରଦର୍ଶନ କରାଯାଏ ତାହାର ଅବଧାରଣା କରିବାକୁ ଅସମର୍ଥ ହେଲୁଁ। ଏସବୁ ବୋଧ ହୁଏ ଚିତ୍ରଗ୍ରହଣର ବାହାଦୁରୀ ଓ ବାହ୍ୟ ଜାଗାରୁ ଚିତ୍ର ଗ୍ରହଣ କରି ତାକୁ କୃତ୍ରିମ ଷ୍ଟୁଡିଓରେ ସଜାଇ ପ୍ରଦର୍ଶିତ ହୋଇଥାଏ। ସେଠାରୁ ଫେରି ବଜାରରୁ କିଛି କିଛି ଆବଶ୍ୟକୀୟ ବସ୍ତୁ କିଣାକିଣି କରି ପରଦିନ ସକାଳ ଟ୍ରେନ୍ ବମ୍ବେ ହାଓଡ଼ା ମେଲରେ ଫେରିବା ପାଇଁ ପ୍ରସ୍ତୁତ ହେଲୁଁ।

ପରଦିନ ୨.୧.୬୯ ସ୍କୁଲ ଖୋଲିବାର ଥିଲା। ତେଣୁ ଆମ୍ଭେମାନେ ସ୍କୁଲ ଆରମ୍ଭ ହେବା ପୂର୍ବରୁ ସ୍ଥାନ ଛାଡ଼ିବା କଥା। ଉକ୍ତ ବିଦ୍ୟାଳୟରେ ଦୁଇ ଥର କରି ପାଠ ପଢ଼ା ହୁଏ। ପ୍ରଥମ ଥର ପ୍ରାତଃ ୬ଟାରୁ ୧୧ଟା ଓ ଅନ୍ୟ ଥର ସାଢ଼େ ୧୧ରୁ ସାଢ଼େ ୪ଟା ପର୍ଯ୍ୟନ୍ତ। ସେଠାରେ ସକାଳ ୬ଟା ଅର୍ଥାତ୍ ଅନ୍ଧକାର ଯାଇ ନ ଥାଏ। ଛାତ୍ରମାନେ ନିଜ ଘରୁ ବାହାରି ଆସିବା ବେଳେ ଆକାଶର ତାରାଗଣ ଦୃଶ୍ୟମାନ। ଆମେ ପ୍ରାୟ ୫ଟାରୁ ପ୍ରସ୍ତୁତ ହୋଇ ସାଢ଼େ ୫ଟା ବେଳେ Liftରେ ତଳକୁ ଜିନିଷ ଓହ୍ଲାଇଲା ବେଳେ ଛାତ୍ରମାନେ ଜଣେ ଜଣେ ଆଗତ ପ୍ରାୟ। ଆକାଶର ତାରାଗଣ ସ୍ପଷ୍ଟ ଦୃଶ୍ୟମାନ ଥିଲା। ଏହା ଦେଖି ପ୍ରକୃତି ଓ ସାଗର ବୈଚିତ୍ର୍ୟ ଓ ବିଶ୍ୱନିୟନ୍ତାଙ୍କ ସୃଷ୍ଟି, ପାଳନ ବିଷୟ ଚିନ୍ତା କରି ତାଙ୍କ ଅପରିସୀମ ଶକ୍ତି ଓ ମହତ୍ୱକୁ ହୃଦୟଙ୍ଗମ କରିବାକୁ ଚେଷ୍ଟା କରି ଅଭିଭୂତ ହେବାକୁ ହୁଏ।

ଜଣେ ଶିକ୍ଷକ...

ଯଥା ସମୟ ପୂର୍ବରୁ V.T.(Victoria Terminus)ରେ ପହଞ୍ଚି ନିଜର ଟ୍ରେନ୍‌ରେ ଚଢ଼ିଗଲୁଁ। ନାଗପୁର, ରାଯପୁର, ବିଲାସପୁର ବାଟେ ଝାରସୁଗୁଡ଼ାରେ ପହଞ୍ଚିଲା ବେଳକୁ ଅପରାହ୍ଣ ଆଗତ ପ୍ରାୟ। ତେଣୁ ଟ୍ରେନ୍‌ରୁ ଓହ୍ଲାଇ ଝାରସୁଗୁଡ଼ାରୁ ବସ୍ ଯୋଗେ ସମ୍ବଲପୁର ଓ ପରେ ବରଗଡ଼ ପହଞ୍ଚିଲା ବେଳକୁ ସନ୍ଧ୍ୟା। ଏପରି ଭାବେ ବମ୍ବେ ଯାତ୍ରା ବେଶ ଆମୋଦଦାୟକ ହୋଇଥିଲା ସିନା ଯେଉଁ ଆଶାରେ ପୁଅକୁ ନେଇ ଯାଇଥିଲୁଁ ତାର କିଛି ଲାଭ ହେଲା ନାହିଁ।

## ମଣ୍ଡଳୀୟ ପ୍ରଧାନ ଶିକ୍ଷକ ସମ୍ମିଳନୀ:

୧.୩.୧୯୬୯ରୁ ଆମ ଭଳି ୧୪୨ଟି ପୂର୍ଣ୍ଣ ସାହାଯ୍ୟପ୍ରାପ୍ତ ଉଚ୍ଚ ବିଦ୍ୟାଳୟ (Full Net Deficit)ଗୁଡ଼ିକୁ ସରକାର 'A' type ସ୍କୁଲକୁ ଉନ୍ନୀତ କରିବାରୁ ଆମ ସ୍କୁଲକୁ ମଧ୍ୟ 'A' type ପାହ୍ୟା ମିଳିଲା। ସେହି ବର୍ଷ ଆମ (ସମ୍ବଲପୁର-ସୁନ୍ଦରଗଡ଼)ମଣ୍ଡଳର ଉଚ୍ଚ ବିଦ୍ୟାଳୟ ପ୍ରଧାନ ଶିକ୍ଷକଙ୍କ ସମ୍ମିଳନୀ ଆମ ସ୍କୁଲରେ ଅନୁଷ୍ଠିତ ହୋଇଥିଲା ଓ ସେଥିପାଇଁ ଆମ ବିଦ୍ୟାଳୟର ପୂର୍ବତନ ଖ୍ୟାତନାମା ପ୍ରଧାନ ଶିକ୍ଷକ ୰ ଶ୍ରୀ ହାରାଚନ୍ଦ୍ର ନାୟକ ଦର୍ଲିପାଲି ଘରୋଇ ଉଚ୍ଚ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ରୂପେ ଆସି ଯୋଗ ଦେଇଥିଲେ। ସେ ପ୍ରଧାନ ଶିକ୍ଷକ ଥିଲା ବେଳେ ମୁଁ ଯେଉଁ କ୍ୱାଟର୍ସରେ ରହୁଥିଲି ତାଙ୍କ ପୂର୍ବ ପରିଚିତ କ୍ୱାଟର୍ସରେ ଆସି ରହିଲେ ଓ ଅତିଶୟ ଆନନ୍ଦିତ ହେଲେ। ଉକ୍ତ ସମ୍ମିଳନୀରେ ପ୍ରଫେସର ବୈଦ୍ୟନାଥ ରଥ ସ୍କୁଲ ବିଭାଗୀୟ Director ମୁଖ୍ୟ ଅତିଥି ରୂପେ ଯୋଗ ଦେଇଥିଲେ। ସେହି ଉଦ୍ଦେଶ୍ୟରେ ସ୍କୁଲର ଏକ ପୁରସ୍କାର ବିତରଣୀ ଉତ୍ସବ ଓ ସାଂସ୍କୃତିକ କାର୍ଯ୍ୟକ୍ରମର ଆୟୋଜନ ହୋଇଥିଲା। ଉକ୍ତ ଉତ୍ସବରେ ଶ୍ରୀଯୁକ୍ତ ରଥ ମୁଖ୍ୟ ଅତିଥି ଥିବାରୁ ମଞ୍ଚାସୀନ ହୋଇଥିଲେ। ଶ୍ରୀଯୁକ୍ତ ହାରାଚନ୍ଦ୍ର ନାୟକ ପ୍ରଧାନ ଶିକ୍ଷକମାନଙ୍କ ସଙ୍ଗେ ଦର୍ଶକ ମଣ୍ଡଳୀ ମଧ୍ୟରେ ଅବସ୍ଥାନ କରିଥିଲେ। ଏହା ଦେଖି ଶ୍ରୀଯୁକ୍ତ ରଥଙ୍କ ନିର୍ଦ୍ଦେଶକ୍ରମେ ଶ୍ରୀଯୁକ୍ତ ନାୟକଙ୍କୁ ମଞ୍ଚ ଉପରକୁ ଆସିବାକୁ ଅନୁରୋଧ କରାଗଲା। କାରଣ ଶ୍ରୀ ରଥ ଶ୍ରୀଯୁକ୍ତ ନାୟକଙ୍କ ଛାତ୍ର ରୂପେ ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ କରୁଥିଲେ। ଶେଷରେ ଯେତେବେଳେ ପୁରସ୍କାର ବିତରଣ କରା ଯିବାର ସମୟ ଆସିଲା, ସେତେବେଳେ ଶ୍ରୀଯୁକ୍ତ ରଥ ନିଜେ ପୁରସ୍କାର ନ ଦେଇ ତାଙ୍କ ପୂର୍ବତନ ଗୁରୁ ନାୟକଙ୍କୁ ପୁରସ୍କାର ବିତରଣ କରିବାର ସମ୍ମାନ ଦେଇ ଉଭୟଙ୍କର ଗୌରବ ବର୍ଦ୍ଧନ କରିଥିଲେ। ତେଣୁ ତାଙ୍କର ଅଭିମତ ପ୍ରଦାନ କାଳରେ ଶ୍ରୀଯୁକ୍ତ ନାୟକ ଅତି ଗଦ୍‌ଗଦ୍‌ରେ କହିଥିଲେ "ଗୁରୁ ଗୁଡ଼ ହୋକର ରହ ଗୟା, ଔର ଚେଲା ଚିନି ବନ୍

କର ଅତ୍ୟଧିକ ଉପାଦେୟ ଓ ଉଚ୍ଚ ସ୍ଥାନ ମେଁ ହୋ ଗୟା।" ଏତଦ୍ୱାରା ସମସ୍ତେ କରତାଳି ଦେଇ ସମର୍ଥନ କରିଥିଲେ ଓ ତହିଁରେ ଶିକ୍ଷକ ଶ୍ରୀଯୁକ୍ତ ନାୟକ ଓ ଛାତ୍ର ଶ୍ରୀଯୁକ୍ତ ରଥ ଉଭୟଙ୍କ ସମ୍ମାନ ବହୁ ଗୁଣରେ ବୃଦ୍ଧି ପାଇ ମହାନ ଆଦର୍ଶର ପରମ୍ପରା ସୃଷ୍ଟ ହେଲା।

ମୋର ଜର୍କ ହାଇସ୍କୁଲ ରହଣୀ କାଳରେ ଅନେକ ବର୍ଷ ଧରି ଜାନୁୟାରୀ ୨୬ ତାରିଖ ଦିନ ସ୍କୁଲର ବିଭିନ୍ନ ଶ୍ରେଣୀ କୋଠରୀ ଗୁଡ଼ିକୁ ସାଜସଜ୍ଜା କରି ଉତ୍ସାହିତ କରା ଯାଇଥିଲା ଓ ଯୋଗ୍ୟ ଓ ଉତ୍କୃଷ୍ଟ ଶ୍ରେଣୀ-ସଜ୍ଜା ପାଇଁ ପୁରସ୍କାର ଦେବା ପାଇଁ ଶିକ୍ଷକମାନଙ୍କୁ ବିଚାରକମଣ୍ଡଳୀ ରୂପେ ନିଯୋଜନ କରା ଯାଉଥିଲା। ଏହା ବେଶ ଆମୋଦପ୍ରଦ ଓ ଆକର୍ଷଣୀୟ ହେଉଥିଲା। ପୁଣି ପରିଷ୍କାର ପରିଚ୍ଛନ୍ନତା ଉପରେ ଗୁରୁତ୍ୱ ଦେବା ପାଇଁ ଛାତ୍ରମାନଙ୍କ ନଖ, ବାଳ ଆଦିର ସୁବିନ୍ୟାସ ପାଇଁ ଉପଦେଶ ଦେବା ଦ୍ୱାରା କେଶବୃଦ୍ଧି (ହିପି କଟ୍, Hippi Cut) ନିରୋଧ କରା ଯିବାର ବିଧିବଦ୍ଧ ନିୟମ ଥିଲା। ସେ ସମ୍ପର୍କରେ ଥରେ ଖବର କାଗଜରେ ତାହା ପ୍ରକାଶ ପାଇଥିଲା। ତାହା ଦେଖି ତତ୍କାଳୀନ ନବଜୀବନ ପତ୍ରିକାର ସମ୍ପାଦକ ଶ୍ରୀ ଚିନ୍ତାମଣି ମହାପାତ୍ର ଏହା ପ୍ରଶଂସା କରିଥିବାର ଶୁଣା ଯାଇଥିଲା।

ଆଉ ମଧ ଛାତ୍ରମାନଙ୍କ ଶିଷ୍ଟାଚାର ଓ ଆଚାର ଶୁଦ୍ଧ ସକାଶେ ସବୁବେଳେ ସେମାନଙ୍କୁ ନିଜର ପୋଷାକପତ୍ର ତଥା ସେଥିରେ ବ୍ୟବହୃତ ହେଉଥିବା ବୋତାମର ସୁରକ୍ଷା ତଥା କାମିଜର ଉପର ବୋତାମ ଛଡ଼ା ବାକି ସବୁ ବିଧିମତ ବନ୍ଦ କରିବା ଉପରେ ଗୁରୁତ୍ୱ ପ୍ରଦାନ କରିବାର ଏକ ଶୃଙ୍ଖଳାଗତ ନିୟମ ଥିଲା। ଏ ସବୁ ସ୍ମରଣ ପୂର୍ବକ ପ୍ରାପ୍ତ ବୟସରେ ମଧ ଅଧୁନା ପ୍ରତିଷ୍ଠିତ ତଥା ଉଚ୍ଚ ପଦସ୍ଥ ଛାତ୍ରଗଣ ତାର ମର୍ଯ୍ୟାଦା ଦେଇ ପ୍ରକାଶ କରିଥାନ୍ତି।

୧୯୭୩ ସାଲରେ ମଣ୍ଡଳାଧୀଶଙ୍କ ଅନୁମତିକ୍ରମେ ମୁଁ କଲିକତା ଯାଇ ଆମ ସ୍କୁଲର ଉନ୍ନୟନ ପାଣ୍ଠିରୁ ଏକ ସିନେମା ପ୍ରୋଜେକ୍ଟର, ଟେପ ରେକର୍ଡର କିଣି ଆଣି ସ୍କୁଲର ବିଜ୍ଞାନ ଶିକ୍ଷାଦାନକୁ ଉନ୍ନତ କରା ଯାଇଥିଲା।

ସେ ବର୍ଷର ଆଉ ଏକ ସ୍ମରଣୀୟ ଘଟଣା ହେଉଛି ଜର୍କ ହାଇସ୍କୁଲର ପ୍ରଧାନ ଶିକ୍ଷକ ଭାବେ ମୁଁ ରାଜ୍ୟପାଳ ପୁରସ୍କାର କୃତୀ-ଶିକ୍ଷକ ରୂପେ ଲାଭ କରି ନିଜର ତଥା ବିଦ୍ୟାଳୟର ମାନବର୍ଦ୍ଧନ କରା ଯାଇଥିଲା।

ସେହି ବର୍ଷ ଅଗଷ୍ଟ ମାସରେ ଓଡ଼ିଶାରୁ ରେଡକ୍ରସ୍ ସମ୍ମିଳନୀ ସିମଲାରେ ଯୋଗ ଦେବା ପାଇଁ ମୁଁ ମନୋନୀତ ହୋଇଥିଲି। ମୋ ସଙ୍ଗରେ କଟକର ମଣ୍ଡଳାଧୀଶ ଶ୍ରୀ ଜୀବାନନ୍ଦ ଆଚାର୍ଯ୍ୟ, ଢେଙ୍କାନାଳର ବାଳିକା ସ୍କୁଲର ପ୍ରଧାନ

ଜଣେ ଶିକ୍ଷକ...

ଶିକ୍ଷୟିତ୍ରୀ କଲ୍ୟାଣୀ ସାହୁ, ଦୁଇ ଜଣ ଖେଳ ଶିକ୍ଷୟିତ୍ରୀ ଓ ଜଣେ ଖେଳ ଶିକ୍ଷକ ସୁନ୍ଦରଗଡ଼ରୁ ଉକ୍ତ ସମ୍ମିଳନୀରେ ଯୋଗ ଦେଇଥିଲେ। ମୋ ସଙ୍ଗେ ମୋର ବାଲ୍ୟବନ୍ଧୁ ଶ୍ରୀ ଚକାନନ ସରାଫ ପ୍ରାଥମିକ ବିଦ୍ୟାଳୟର ଜଣେ କର୍ମକର୍ତ୍ତା ରୂପେ ଯୋଗ ଦେବାର ସୁଯୋଗ ପାଇଥିଲେ। ସିମଲାରେ ୭ ଦିନ ସମ୍ମିଳନୀ ବସିଥିଲା। ଉକ୍ତ ସମ୍ମିଳନୀରେ ଦିଗ୍‌ଦର୍ଶକ ହରିଆନାର ରେଡକ୍ରସ ସଂସ୍ଥାର ସମ୍ପାଦକ ଶ୍ରୀଯୁକ୍ତ ସିଂ ଥିଲେ। ସେ ମହାଶୟ ଆଗନ୍ତୁକ ବିଭିନ୍ନ ପ୍ରଦେଶର ସଦସ୍ୟମାନଙ୍କୁ ପ୍ରତିଦିନ ସଭାପତି ମନୋନୟନ କରି ସମ୍ମିଳନୀ ପରିଚ୍ଳନା କରାଉଥିଲେ। ସେଠାରେ ତାରାଦେବୀ କେମ୍ପରେ ଆମ ରହିବାର ଓ ଖାଇବାର ବ୍ୟବସ୍ଥା କରା ଯାଇଥିଲା। ସିମଲାକୁ ଯିବାକୁ ହେଲେ କଲିକତାରୁ କାଲକା ମେଲ ଯୋଗେ କାଲକା ଯାଇ ସେଠାରୁ ସଂକୀର୍ଣ୍ଣ ରେଳପଥରେ ସିମଲା ଯିବାକୁ ହେଉଥିଲା। ବାଟରେ ତାରାଦେବୀ ଷ୍ଟେସନରେ ଓହ୍ଲାଇ ନିଜ ଜିନିଷ ସବୁ କୁଲି ଦ୍ୱାରା ପାହାଡ଼ ଉପର ସ୍ଥିତ ହଷ୍ଟେଲ୍‌କୁ ନିଆ ଗଲା। କୁଲିମାନେ ଏହି ବୋଝକୁ ଦଉଡ଼ି ବା ସିକାରେ ବାନ୍ଧି ମୁଣ୍ଡରେ ଭାର ରଖି କାନ୍ଧରେ ଝୁଲାଇ ବୋହୁଥିଲେ। ରହିବା ପାଇଁ ହଷ୍ଟେଲ୍‌ଟି ଅନେକ ବଡ଼ କୋଠରୀ ବିଶିଷ୍ଟ। ପ୍ରତ୍ୟେକ କୋଠରୀରେ ଆଲମାରୀର ଥାକ ଭଳି କରାଯାଇ ୪ ଜଣଙ୍କ ପାଇଁ ଶୋଇବା ବ୍ୟବସ୍ଥା ଥିଲା। ଉପରକୁ ଉଠିବା ପାଇଁ ଏକ କଡ଼ରେ ସିଡ଼ି ଭଳି ଥିଲା। ପାଗ ପ୍ରାୟ ମେଘୁଆ ଓ ମେଘଗୁଡ଼ିକ ଆମ ହଷ୍ଟେଲ୍ ବାଟେ ଆମକୁ ଛୁଇଁ ଭାସୁ ଥିଲେ ଓ ତାହାର ଦର୍ଶନାନୁଭୂତି ନିଜେ ନ ଦେଖିଲେ ଭାଷାରେ ପ୍ରକାଶ କରି ହେବ ନାହିଁ।

ପ୍ରତି ଦିନ ସମ୍ମିଳନୀରେ ବିଭିନ୍ନ ପ୍ରଦେଶରୁ ଆସିଥିବା ବିଶିଷ୍ଟ କର୍ମଚ୍ରୀଗଣ ସଭାପତିତ୍ୱ କରୁଥିଲେ ଓ ସେମାନେ ସଭାକୁ ପରିଚ୍ଳନା କରୁଥିଲେ। ପ୍ରଥମ ଦିନ ଓଡ଼ିଶା ଭାଗରେ ପଡ଼ିବାରୁ ଆମର ପ୍ରଦେଶର କଟକର ମଣ୍ଡଳାଧୀଶ ଶ୍ରୀ ଜୀବାନନ୍ଦ ଆଚ୍ର୍ଯ୍ୟ ସଭାପତିତ୍ୱ କରିଥିଲେ। ପର ଦିନ ମାନଙ୍କରେ ଅନ୍ୟ ପ୍ରଦେଶରୁ ପ୍ରତିନିଧିତ୍ୱ କରି ସଭା ପରିଚ୍ଳିତ ହେଲା। ପ୍ରାୟ ସବୁ ପ୍ରଦେଶର ପାଳି ସରି ଯିବାରୁ ଶେଷ ଦିନ ଶ୍ରୀ ସିଂ ମହାଶୟ ଉପସ୍ଥିତ ସଦସ୍ୟମାନଙ୍କ ମଧ୍ୟରୁ ଯେ କେହି ସଭାପତିତ୍ୱ କରିବା ପାଇଁ ଅନୁରୋଧ କରି ଅପେକ୍ଷାରତ ହେଲେ। ଶେଷରେ କେହି ସଭାପତି ପାଇଁ ରାଜି ନ ହେବାରୁ ମୁଁ ଉଠି ସଭାପତି ପାଇଁ ସମ୍ମତ ହେବାରୁ ସମସ୍ତେ କରତାଳି ଦେଇ ସମର୍ଥନ କଲେ। ଶେଷ ଦିନର ପରିଚ୍ଳନାରେ ସନ୍ତୋଷ ପ୍ରକାଶ କରି ଆମକୁ ଧନ୍ୟବାଦ ଦେଲେ। ଉପର ଓଳି ସାଂସ୍କୃତିକ କାର୍ଯ୍ୟକ୍ରମରେ ଆମ ପ୍ରଦେଶର ଖେଳ ଶିକ୍ଷକ ନୃତ୍ୟ ପ୍ରଦର୍ଶନ କଲେ ଓ ମୁଁ ସେଥିରେ

ବୋଲ ଦେଲି । ନୃତ୍ୟଟି ବେଶ ଉପଭୋଗ୍ୟ ହୋଇଥିଲା ।

ସିମଲା ଛ଼ଡ଼ିବାର ପୂର୍ବଦିନ ଆମକୁ ବସରେ ସିମଲାକୁ ବୁଲିବାକୁ ନିଆଗଲା । ରାସ୍ତା ଗୁଡ଼ିକ ଏତେ ବଙ୍କା ଓ ଚିକ୍କଣ ଯେ ବସ ଚ୍ଚାଳକ ସିଧା ହୋଇ ବସି ଗାଡ଼ି ଚଳାଇବା ଅସମ୍ଭବ ହୋଇ ପଡୁଥିଲା । ସିମଲା ବସ ଷ୍ଟେଣ୍ଡରେ ପହଞ୍ଚି ଆମେ ବିଭିନ୍ନ ବଜାର ଦେଖିବାକୁ ଆମକୁ ପାହାଚ ପାହାଚ କରି ଉଠିବାକୁ ପଡୁଥିଲା । କାରଣ ସିମଲା ସହରଟି ପାହାଡ଼କୁ ସ୍ତର ସ୍ତର କରି ସମତଳ କରି ଗୃହ ନିର୍ମାଣ କରା ଯାଇଛି । ଏହି ସ୍ତରୀୟ ଗୃହ ନିର୍ମାଣ ଶୈଳୀ ପାଇଁ ରାତିରେ ସିମଲାର ବିଜୁଳି ଆଲୁଅ ତାରାଦେବୀ କେମ୍ପରୁ ବେଶ ମନୋହର ଦେଖା ଯାଉଥିଲା । ସିମଲା ହେଉଛି ଇଂରେଜ ବଡ଼ଲାଟମାନଙ୍କ ଗ୍ରୀଷ୍ମନିବାସ ଓ ସ୍ୱାଧୀନତା ପରେ ଆନ୍ତର୍ଜାତୀୟ ସିମଲା ସମ୍ମିଳନୀର ପ୍ରସ୍ତାବ ସାରା ପୃଥିବୀ ପ୍ରତି ବେଶ ଉପାଦେୟ ଓ ସହାୟକ । ଏଠାରେ ଜଙ୍ଗଲି କାଠରେ ଚିତ୍ରିତ କାଠଖଣ୍ଡ, ଚ୍ଚାବି ରିଙ୍ଗ, ବାଡ଼ି ଆଦି ସୁଲଭ ମୂଲ୍ୟରେ ମିଳେ । ସେଓ, ନାସପାତି ଆଦି ପାର୍ବତୀୟ ଫଳ ମଧ୍ୟ ସୁଲଭ କେ.ଜି. ପ୍ରତି ଟ.୧୨ରୁ ୨ ଟଙ୍କା ମଧ୍ୟରେ । ସିମଲା ନିକଟବର୍ତ୍ତୀ ଶିକ୍ଷକମାନେ ଘରକୁ ପେଟିରେ ଫଳ କିଣି ନେଲେ । ଆମେ ଦୂରରୁ ଯାଇ ଥିବାରୁ ଫଳ ଶସ୍ତା ହେଲେବି ଆଣିବାର ସାହସ କଲୁ ନାହିଁ । କାରଣ ଏତେ ଦୂରରୁ ଆଣିବା ବେଳେ ସମୟ ସାପେକ୍ଷ ହେତୁ ଫଳଗୁଡ଼ିକ ପଚି ଯାଇପାରେ । ଆମେ କେତେକ ଶସ୍ତା ମୂଲ୍ୟର କାଠର ଜିନିଷ କିଣି ଆଣିଲୁଁ । ସେ ଦିନ ରାତ୍ରରେ ଆମ କେମ୍ପକୁ ଫେରି ପରଦିନ ଫେରିବାର ଆୟୋଜନ କରିବାକୁ ଲାଗିଲୁଁ । ସେଦିନ ସକାଳୁ ଭୋଜନ ସାରି ତାରାଦେବୀ ଷ୍ଟେସନକୁ ଓହ୍ଲାଇ କାଲକା ଯିବା ଟ୍ରେନ୍‌କୁ ଅପେକ୍ଷା କଲୁଁ । ଯଥାସମୟରେ ଟ୍ରେନ୍‌ଟି ଆସିଲା । ଆମେ ଟ୍ରେନ୍‌ରେ ଉଠି ସେହି ପାହାଡ଼ିଆ ବକ୍ର ରାସ୍ତାରେ ପାହାଡ଼ର ପ୍ରାକୃତିକ ଶୋଭାକୁ ଶେଷ ଥର ପାଇଁ ଉପଭୋଗ କଲୁଁ । କାଲକାରେ ପହଞ୍ଚି କାଲକା ମେଲ ଧରି ଦିଲ୍ଲୀ ଅଭିମୁଖେ ଯାତ୍ରା କରି ପୁରୁଣା ଦିଲ୍ଲୀରେ ଓହ୍ଲାଇଲୁଁ । ଦିଲ୍ଲୀ ସହର ଦର୍ଶନ ପାଇଁ ଏକ ନିକଟସ୍ଥ ହୋଟେଲରେ ଅବସ୍ଥାନ କଲୁଁ ।

ହୋଟେଲରେ ନିତ୍ୟକର୍ମ ସାରି ଦିଲ୍ଲୀ ଭ୍ରମଣ ପାଇଁ ଟେକ୍ସି ଭଡ଼ା କରି ଦିଲ୍ଲୀର ବିଶିଷ୍ଟ ସ୍ଥାନ ଗୁଡ଼ିକ ଯଥା ପାର୍ଲାମେଣ୍ଟ ଭବନ, ରାଷ୍ଟ୍ରପତି ଭବନ, ବିଜ୍ଞାନ ଭବନ, କୂଟନୀତିଜ୍ଞ ଅଞ୍ଚଳ (Ambassy), ବିର୍ଲା ମନ୍ଦିର, ଲାଲ କିଲ୍ଲା, କୁତବ ମୀନାର, ରାଜଘାଟ, ଶାନ୍ତିଘାଟ, ବିଜୟ ଘାଟ, ଚ୍ଚାନ୍ଦନୀ ଚୌକ, କନଟ୍ ପ୍ଲେସ, କରୋଲ ବାଗ ଆଦି ଦର୍ଶନ କରି ଆମର ପାଣ୍ଠି ଅନୁସାରେ ଜିନିଷପତ୍ର ଖରିଦ କରି ପରଦିନ କାଲକା ହାଓଡ଼ା ମେଲରେ ଫେରିବାର ମନସ୍ଥ କରି ସଜବାଜ ହେଲୁଁ ।

ପରଦିନ ସକାଳରୁ ହୋଟେଲ ଦେୟ ପୈଠ କରି ପୁରୁଣା ଦିଲ୍ଲୀ ଷ୍ଟେସନକୁ ଯାଇ ହାଓଡ଼ା ପାଇଁ ଟିକଟ କରି ସ୍ଥାନ ସଂରକ୍ଷଣ ପାଇଁ ଅନୁରୋଧ କରିବାରୁ ଆମକୁ ୭ଟା ସିଟ ମିଳିଗଲା । ସେତେବେଳେ ସ୍ଥାନ ସଂରକ୍ଷଣ ପାଇଁ ଦିନକୁ ଟ.୨୫ କରି ଦେୟ ଦେବାକୁ ପଡୁଥିଲା । ଉକ୍ତ ଟିକଟଦାତା ଅତି ଭଦ୍ର ଲୋକ ହୋଇଥିବାରୁ ଆମକୁ ଆଉ ଅଧିକ ଦେୟ ଦେବାକୁ ପଡ଼ି ନ ଥିଲା । ସେ ବିଷୟ ଆଜିକାଲି ଚିନ୍ତା କଲେ ବା ଏ ବର୍ଣ୍ଣନା ପଢ଼ି ଲୋକେ ବିଶ୍ୱାସ କରିବାକୁ କୁଣ୍ଠାବୋଧ କରିବେ । କାରଣ ଆଜିକାଲି କଥାକଥାରେ ପଇସା, ପଇସା ନାହିଁ ତ କଥାବାର୍ତ୍ତା ନାହିଁ । ପୁଣି ପଇସା ଦେଇ ମଧ ସେହି ଦଲାଲମାନେ ଏକରେ ନାହିଁ କରୁଛନ୍ତି ବା ଅଧିକ ପଇସା ଦାବୀ କରୁଛନ୍ତି । ବହୁ ସମୟରେ ପଇସା ନେଇ ଦଲାଲମାନେ ଉଭାନ୍ ହୋଇଯାଇ ପୁଣି ହାତରୁ ପଇସା ଦେଇ ମୂଳରୁ ସ୍ଥାନ ସଂରକ୍ଷଣ ଆଦି ଯାବତୀୟ କର୍ମ ପାଇଁ ଶ୍ରୀଗଣେଶ କରିବାକୁ ପଡୁଛି । ହାୟ ! ସମୟର କି ଦ୍ରୁତ ଗତିରେ ପରିବର୍ତ୍ତନ । ପ୍ରଗତିର ଲକ୍ଷଣ ବୋଲି ଦେଶବାସୀ, ନେତା ଓ ସମସ୍ତେ ଆଗେଇଛନ୍ତି ଦୁର୍ଗତି ପଥରେ । କେବେ ଏ ଦେଶର ଭାଗ୍ୟ ଉଦୟ ହେବ ଓ ମହାତ୍ମା ଗାନ୍ଧିଙ୍କ ପରିକଳ୍ପିତ ରାମରାଜ୍ୟର ପ୍ରତିଷ୍ଠା ହେବ କେଜାଣେ ?

ଯାହା ମନେ ହୁଏ ଏହି ଆଧୁନିକ ଶସ୍ତା ରାଜନୀତି, ନେତାଗିରୀ ଓ ସ୍ୱାର୍ଥ ଜଡ଼ିତ କ୍ଷମତାଲିପ୍ସୁ ଅଧିନାୟକମାନଙ୍କ ମାୟା ଓ ମୋହ ଜାଲର ପରଦା କେବେ ଉନ୍ମୁକ୍ତ ତାହା କେବଳ ଭଗବାନଙ୍କୁ ହିଁ ଜଣା । କଳ୍କୀ ଅବତାରର ଆବିର୍ଭାବର ଆବଶ୍ୟକତା ଯେ ଅବଶ୍ୟମ୍ଭାବୀ ଅଦୂର ଭବିଷ୍ୟତ୍ ନିକଟ ପ୍ରାୟ ।

ଟିକଟ ଆଣି ନିଜ ନିଜ ଜିନିଷପତ୍ର ନେଇ ଉଦ୍ଦିଷ୍ଟ ସ୍ଥାନମାନଙ୍କରେ ଆମ୍ଭେମାନେ ଯାଇ ବସିଲୁଁ । ଠିକ୍ ସମୟରେ ଗାଡ଼ି ଚ୍ଛଳିଲା । ଏହି କାଲ୍କା ମେଲର ଏତିକି ବିଶେଷତ୍ୱ ଯେ ଏଥିରେ ଖାଦ୍ୟ ପରିବେଷଣ ଓ ଯୋଗାଣ ପାଇଁ ଏକ ସ୍ୱତନ୍ତ୍ର କରି Dining Car ସଂଲଗ୍ନ ଥାଏ । ତେଣୁ ଯାତ୍ରୀମାନେ ଇଚ୍ଛା କଲେ ନିଜେ ସେହି କାରକୁ ଯାଇ ଚ୍ଚ ଜଳଖିଆ ଓ ଖାଦ୍ୟ ଆଦି ନିଜର ରୁଚି ଅନୁସାରେ ପଇସା ଦେଇ ଖାଇ ପାରିବେ । ସେହି ଖାଦ୍ୟାଳୟକୁ ଯିବା ପାଇଁ ପ୍ରତ୍ୟେକ ବଗିର ସମ୍ପର୍କ ରହିଛି ।

ଏହି ପ୍ରକାର ଖାଦ୍ୟ ଓ ଜଳଖିଆ ଯୋଗାଣ ବ୍ୟବସ୍ଥା ବୃନ୍ଦାବନ ଏକ୍ସପ୍ରେସ ମାନ୍ଦ୍ରାଜ ରୁ ବେଙ୍ଗଲୋର, ତାଜ ଏକ୍ସପ୍ରେସ ଦିଲ୍ଲୀରୁ ଆଗ୍ରା, ଡେକାନ୍ କୁଇନ ବମ୍ବେରୁ ପୁନା, ଷ୍ଟିଲ ଏକ୍ସପ୍ରେସ କଲିକତାରୁ ରାଉରକେଲା ଗାଡ଼ିମାନଙ୍କରେ ରହିଛି । ଏହି ଚ୍ଛରୋଟି ଗାଡ଼ି ପ୍ରାୟ ସକାଳରୁ ବାହାରି ସନ୍ଧ୍ୟାରେ ପୁଣି ନିଜ ସ୍ଥଳକୁ ଫେରି ଆସନ୍ତି ।

ଆମେମାନେ କିଛି ବାଟ ଗଲା ପରେ Dining carର Boy ମଧ୍ୟ ଆସି ଅର୍ଡର ନେଇଗଲା ଓ ଜଣାଇ ଦେଇ ଗଲା ଖାଦ୍ୟପେୟର ମୂଲ୍ୟ। କାରଣ ନିଜ ବସିବା ସ୍ଥାନମାନଙ୍କୁ ଖାଦ୍ୟ ଅଣାଗଲେ ତାପାଇଁ ଅଧିକା କିଛି Service Charge ପଡ଼େ। ଏତଦ୍‌ଭିନ୍ନ ବାଟରେ ବିଭିନ୍ନ ଷ୍ଟେସନରେ ଖାଦ୍ୟ ଯୋଗାଇବା ପାଇଁ ଦିନବେଳେ ଓ ରାତ୍ରରେ ଆଗରୁ ସଂପୃକ୍ତ ରେଲୱେ କର୍ମଚାରୀମାନେ ଅଗ୍ରୀମ ବରାଦ ନେଇ ଉପଯୁକ୍ତ ସମୟରେ ଖାଦ୍ୟ ଯୋଗାଇ ଦେବାର ବ୍ୟବସ୍ଥା କରନ୍ତି। କେହି କେହି ଆଗରୁ ପ୍ରସ୍ତୁତ ହୋଇ ବାଟରେ ଖାଇବା ପାଇଁ ଘରୁ ତିଆରି କରି ଆଣି ଥାଆନ୍ତି ଓ ଦରକାର ବେଳେ ତାକୁ ଭୋଜନ କରନ୍ତି। ଏଥିରେ ପ୍ରାୟ ନିୟମିତ ଦୂରଗାମୀ ପଞ୍ଜାବୀ, ସିନ୍ଧି, ମାରୱାଡ଼ି, ଗୁଜରାଟୀ ବନ୍ଧୁମାନେ ଅଭ୍ୟସ୍ତ। ଆଜିକାଲି ଆମ ଓଡ଼ିଆ ଓ ବଙ୍ଗାଳୀମାନେ ମଧ୍ୟ ଶିଖିଲେଣି। ଏହା ସ୍ୱାସ୍ଥ୍ୟ ପକ୍ଷେ ଉପକାରୀ, ସୁସ୍ୱାଦୁ ଓ ଅଳ୍ପ ଖର୍ଚ୍ଚରେ ସାପେକ୍ଷ। ଏହାଛଡ଼ା ବାଟରେ ବୁଲାବିକାଳୀମାନେ ଫଳ, ଚିନାବାଦାମ, ମୁଢ଼ି ବା ଅନ୍ୟ ସବୁ ଜିନିଷ ଓ ଚା ଆଦି ମଧ୍ୟ ବିକ୍ରୀ କରୁଥିବା ଦେଖାଯାଏ।

ଆମ୍ଭେମାନେ କାଲକା ମେଲରେ ମୋଗଲସରାଇ ପହଞ୍ଚିବା ପରେ ମୋର ବନ୍ଧୁ ଚକାନନ ସରାଫ ଅନ୍ୟ ଜଣେ ନୂତନ ଭାବେ ବନ୍ଧୁତା ଜମାଇଥିବା ସହଯାତ୍ରୀଙ୍କ ସଙ୍ଗେ ଓହ୍ଲାଇଗଲେ ଓ ସେଠାରେ ଦିନେ ଓଳିଏ ରହି ପରବର୍ତ୍ତୀ ଟ୍ରେନରେ ବା ବସ୍ ଯୋଗେ ବରଗଡ଼ ଫେରିବାର ମନସ୍ଥ ଦଲେ। ଆମେ ବାକୀ ଛଅ ଜଣ ଦିନସାରା ଓ ରାତ୍ରୀଯାକ ଟ୍ରେନ ଯାତ୍ରା ପରେ ସକାଳେ କଲିକତାରେ ଓହ୍ଲାଇ ରେଲୱେ ବିଶ୍ରାମାଗାରରେ ସ୍ନାନ ସାରି ଜଳଖିଆ କରି ଜିନିଷପତ୍ର Cloack (କ୍ଲୋକ) ରେଲୱେ ଜମାଖାନାରେ ରଖି କଲିକତା ଭ୍ରମଣରେ ବାହାରିଲୁଁ। ଆମ ଗାଡ଼ି ସନ୍ଧ୍ୟାରେ ଝାରସୁଗୁଡ଼ା ପାଇଁ ଆସିବାର ଥିଲା କିନ୍ତୁ ଅନ୍ୟମାନେ କଟକ ଭୁବନେଶ୍ୱର ଯିବା ପାଇଁ ଗାଡ଼ି ଦିନ ସାଢ଼େ ୧୧ଟାରେ ଥିବାରୁ ଆମେ ଶୀଘ୍ର ବଜାରକୁ ଯାଇ ସାମାନ୍ୟ କିଛି କିଣାକିଣି କରି ଭୋଜନ ସାରି ଷ୍ଟେସନକୁ ଫେରିଲୁଁ। ସେତେବେଳେ କଟକ ଭୁବନେଶ୍ୱର ପାଇଁ ଗାଡ଼ି ପ୍ଲେଟଫର୍ମରେ ଲାଗି ଥାଏ। ତେଣୁ ସେମାନଙ୍କୁ ଟ୍ରେନରେ ବସାଇ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା କରି ସେମାନଙ୍କଠାରୁ ବିଦାୟ ନେଲା ବେଳକୁ ଗାଡ଼ି ଛାଡ଼ିଲା। ଦୀର୍ଘ ୧୦/୧୨ ଦିନର ଏକାଠି ରହଣୀ ପ୍ରକୃତରେ ବେଶ ଦୁଃଖପ୍ରଦ ହୋଇ ଆଖିରେ ଅଶ୍ରୁ ଆସିଲା। ତାପରେ ସମୟ ଥିବାରୁ ମୁଁ ଓ ସୁନ୍ଦରଗଡ଼ର ଖେଳ ଶିକ୍ଷକ ପୁଣି ଥରେ କଲିକତା ସହରକୁ ଯାଇ ବୁଲିବା ବାହାନାରେ ପିଲାମାନଙ୍କ ପାଇଁ କିଛି

ଜିନିଷପତ୍ର କିଣି ସନ୍ଧ୍ୟାରେ ଷ୍ଟେସନକୁ ଫେରିଲୁଁ । ରେଲୱେ କେଣ୍ଟିନରେ ରାତ୍ର ଭୋଜନ ସାରି ନିଜ ଗାଡ଼ି ଅପେକ୍ଷାରେ ରହିଲୁଁ ଓ ଠିକ୍ ସମୟରେ ନିର୍ଦ୍ଧାରିତ ପ୍ଲେଟଫର୍ମରେ ଗାଡ଼ି ଲାଗିବାରୁ ଆମେ ଉଭୟେ ନିଜ ନିଜ ସଂରକ୍ଷିତ ସ୍ଥାନରେ ଯାଇ ବସିଲୁଁ । ରାତ୍ର ଠିକ ସାଢ଼େ ୮ଟାରେ ଟ୍ରେନ ଝାରସୁଗୁଡ଼ା ଅଭିମୁଖେ ଗତି କରି ବାଟରେ ଖଡ଼ଗପୁର, ଚକ୍ରଧରପୁର, ରାଉରକେଲା ଆଦି ଷ୍ଟେସନ ଦେଇ ଝାରସୁଗୁଡ଼ାରେ ପହଞ୍ଚିଲା ବେଳକୁ ସକାଳ ପ୍ରାୟ ସାଢ଼େ ୮ଟା । ସେଠାରୁ ଓହ୍ଲାଇ ସୁନ୍ଦରଗଡ଼ ଶିକ୍ଷକଙ୍କୁ ବିଦାୟ ଦେଇ ମୁଁ ବସ୍ ଧରି ସମ୍ବଲପୁର ଦେଇ ବରଗଡ଼ ପହଞ୍ଚିଲା ବେଳକୁ ପ୍ରାୟ ଅପରାହ୍ନ ୪ଟା । ଘରକୁ ପହଞ୍ଚି ଧୁଆଧୋଇ ହୋଇ ସାମାନ୍ୟ ଭୋଜନ କରି ସାରିଲା ବେଳକୁ ଘରର ପିଲାମାନେ ଓ ଶିକ୍ଷକମାନେ ଘରେ ଜମି ଯାଇଥିଲେ । ତେଣୁ ତାଙ୍କୁ ମୋର ସିମଲା ଯାତ୍ରା ଓ ଅନୁଭୂତି ବଖାଣି ବସିବାରୁ ସନ୍ଧ୍ୟା । ସେମାନଙ୍କୁ ସମସ୍ତଙ୍କୁ ବିଦାୟ ଦେଇ ପରବର୍ତ୍ତୀ ଦିନ ପାଇଁ ବାକୀ ସବୁ କହିବା ପାଇଁ ସୂଚନା ଦେଲି ।

ମୋର ପ୍ରଧାନ ଶିକ୍ଷକତା ସମୟରେ ମୁଁ ୧୯୫୮ରେ ଇଂରାଜୀ ପାଠଦାନରେ ଏକ ନୂଆ ପ୍ରଣାଳୀରେ ତାଲିମ ପାଇବା ପାଇଁ କଟକ ରାଧାନାଥ ଟ୍ରେନିଂ କଲେଜ ଓ ପୁରୀ ଜିଲ୍ଲା ସ୍କୁଲକୁ ମନୋନୀତ ହୋଇ ଯାଇଥିଲି । ସେହି ନୂଆ ପ୍ରଣାଳୀ Structural Approach of Direct Method to teach English । ଏହାର ମୁଖ୍ୟ ଉଦ୍ଦେଶ୍ୟ ଅଭିନୟ ଓ ପ୍ରକୃତ କାର୍ଯ୍ୟ (Direct Action) ମାଧ୍ୟମରେ ପାଠଦାନ । ମୋଟରେ ପ୍ରାୟ ୨୫୦ଟି Structure ଓ ପ୍ରାୟ ୨୫୦୦ ଇଂରାଜୀ ଶବ୍ଦ ମାଧ୍ୟମରେ ଏହି ଶିକ୍ଷାଦାନ ସୀମିତ ରହୁଥିଲା । ଏସବୁକୁ ଆୟତ୍ତ କଲେ ପ୍ରାୟ ପୃଥିବୀର ଯେଉଁ ପ୍ରାନ୍ତକୁ ଗଲେ ମଧ୍ଯ ଇଂରାଜୀ କହିବା ବା ବୁଝିବାର ଅସୁବିଧା ନ ଥିଲା । ସେହି ଅନୁସାରେ ୬ଷ୍ଠ ଶ୍ରେଣୀରୁ ଆରମ୍ଭ କରି ଉଚ୍ଚ ଶ୍ରେଣୀ ପର୍ଯ୍ୟନ୍ତ ଇଂରାଜୀ ବହି ଲେଖାଯାଇ ସ୍କୁଲମାନଙ୍କରେ ପ୍ରଚଳନ କରା ଯିବାର ସରକାର ସ୍ଥିର କଲେ । ତେଣୁ ନିମ୍ନ ମାଧ୍ୟମିକ ବିଦ୍ୟାଳୟର ଇଂରାଜୀ ଶିକ୍ଷକମାନଙ୍କୁ ବିଶେଷତଃ ପ୍ରଧାନ ଶିକ୍ଷକମାନଙ୍କୁ ସେହି ନୂଆ ପ୍ରଣାଳୀରେ ତାଲିମ ଦେବା ପାଇଁ ଗ୍ରୀଷ୍ମାବକାଶ ଓ ଦଶହରା ଛୁଟିରେ ୧୦/୧୫ ଦିନ ଲେଖାଏଁ ଥରକୁ ୩୦/୫୦ ଜଣ ଶିକ୍ଷକଙ୍କୁ ଖାଦ୍ୟପେୟ ଦେଇ ବ୍ୟବସ୍ଥା କରାଗଲା । ତାଲିମ ଦେବାକୁ ମୋତେ ଦାୟିତ୍ୱ ଦିଆଗଲା କାରଣ ମୁଁ ଆଗରୁ ଏ ସମ୍ପର୍କରେ ତାଲିମ ପାଇଥିଲି । ସେତେବେଳେ ଏହି ତାଲିମ ଦେବା ପାଇଁ ସମ୍ବଲପୁର ଜିଲ୍ଲା ପାଇଁ କେବଳ ଆମ ଜର୍ଜ ହାଇସ୍କୁଲ ମନୋନୀତ ହୋଇଥିଲା । ଏହି ତାଲିମ କାର୍ଯ୍ୟକ୍ରମ ପ୍ରାୟ ୧୯୫୯ରୁ

ଆରମ୍ଭ ହୋଇ ୧୯୬୬ ପର୍ଯ୍ୟନ୍ତ ଚାଲିଲା ବର୍ଷକୁ ୨ ଥର କରି । ଏପରି ଭାବେ ମୋଟ ବର୍ଷକୁ ୧୦୦ ଜଣ କରି ତାଲିମ ପାଇ ୭/୮ ବର୍ଷରେ ୬୦୦/୭୦୦ ଜଣ ଶିକ୍ଷକ ଏହି ପ୍ରଣାଳୀର ଇଂରାଜୀ ପାଠଦାନର ସୁବିଧା ପାଇଲେ । ତେଣୁ ଆମ ସ୍କୁଲଟି ଏପରି ଏକ ତାଲିମକେନ୍ଦ୍ର ରୂପେ ନିର୍ଣ୍ଣିତ ହେବା ଏକ ଗୌରବର ବିଷୟ ।

ସରକାର ପୁଣି ପରେ ଇଂରାଜୀକୁ ୪ର୍ଥ ଓ ୫ମ ଶ୍ରେଣୀରୁ ଆରମ୍ଭ କରାଯିବାର ସ୍ଥିର କରିବାରୁ ଏ ଅଞ୍ଚଳର ପ୍ରାଥମିକ ଶିକ୍ଷକମାନଙ୍କୁ ପ୍ରାୟ ୨ ଥର ୧ ମାସ କରି ୫୦/୧୦୦ ଜଣଙ୍କୁ ତାଲିମ ଦିଆ ଯାଇଥିଲା ।

ମୋଟ ଉପରେ କୌଣସି ସରକାରୀ ନୂଆ ପ୍ରଣାଳୀ ବା ଯୋଜନା କାର୍ଯ୍ୟକାରୀ କରିବାକୁ ହେଲେ ସାରା ଓଡ଼ିଶାରେ ଆମ ବିଦ୍ୟାଳୟଟି ସେହି ସୁଯୋଗରୁ ବଞ୍ଚିତ ହେଉ ନ ଥିଲା । କାରଣ ଯେ କୌଣସି ଶିକ୍ଷାଗତ କାର୍ଯ୍ୟକ୍ରମ ସୁଚାରୁ ରୂପେ ଏଠାରେ ପରିଚାଳିତ ହେଉଥିବାର ସରକାର ବିଶ୍ୱାସ କରି ସେହି ଦାୟିତ୍ୱ ଆମ ସ୍କୁଲ ଉପରେ ନ୍ୟସ୍ତ କରୁଥିଲେ । ୧୯୭୨ ସାଲର X'mas ଛୁଟିରେ ଓଡ଼ିଶା ଭ୍ରମଣ ଏକ ସ୍ମରଣୀୟ ଅନୁଭୂତି । ବରଗଡ଼ର ବିଭିନ୍ନ ସ୍କୁଲର ଶିକ୍ଷକ ଓ ଛାତ୍ରମାନଙ୍କୁ ନେଇ ଏକ ସରକାରୀ ବସରେ ବରଗଡ଼ରୁ କଟକ, ପୁରୀ, କୋଣାର୍କ, ଚିଲିକା, ବ୍ରହ୍ମପୁର, ବଲାଙ୍ଗୀର ବାଟେ ବରଗଡ଼ ଫେରିଲୁଁ ପ୍ରାୟ ଷଷ୍ଠ ଦିନ ରାତିରେ । ଏହି ଭ୍ରମଣ ବେଳେ କଟକର ସେକେଣ୍ଡାରୀ ବୋର୍ଡ ହାଇସ୍କୁଲ, ଭୁବନେଶ୍ୱର ନନ୍ଦନକାନନ, ଧଉଳିଗିରି ବାଟେ ଯାଇ ରାତ୍ରିରେ କୋଣାର୍କରେ ବିଶ୍ରାମ ଓ ଭୋଜନ । ପରବର୍ତ୍ତୀ ଦିନ ପୁରୀ ରହଣୀ, ବୁଲାବୁଲି ଓ ଅବଢ଼ା ଖାଇ ବିଶ୍ରାମ ନେଲା ପରେ ପରଦିନ ଚିଲିକା ଦର୍ଶନ ଓ ନୌକା ବିହାର ବ୍ରହ୍ମପୁରରେ ଭ୍ରମଣ ଓ ଭୋଜନ ପରେ ବଲାଙ୍ଗୀର ବାଟେ ବରଗଡ଼କୁ ପହଞ୍ଚିଲା ବେଳକୁ ରାତ୍ର ବାରଟା । ଏହା ପରେ ଭ୍ରମଣାର୍ଥୀମାନଙ୍କ ମଧ୍ୟରେ Quiz ପ୍ରତିଯୋଗିତା କରି ପୁରସ୍କାର ପ୍ରଦାନ ବେଶ ଆମୋଦଦାୟକ ହୋଇଥିଲା । ସମସ୍ତେ ପରବର୍ତ୍ତୀ ବର୍ଷମାନଙ୍କରେ ଏପରି ଭ୍ରମଣ ପାଇଁ ସ୍ୱାଗତ କରିଥିଲେ ମଧ୍ୟ ଆଉ ଭ୍ରମଣ ଆୟୋଜନ ହୋଇପାରି ନ ଥିଲା ।

୧୯୬୭ ସାଲରେ ଇ.ଟି. ଛାତ୍ରମାନଙ୍କୁ ନେଇ ୪ଟି କାରରେ ପ୍ରାୟ ୨୫/୩୦ ଜଣଙ୍କୁ ନେଇ କଟକ, ପୁରୀ, କୋଣାର୍କ, ଭୁବନେଶ୍ୱର ଆଦି ପରିଭ୍ରମଣରେ ନେଇ ତାଙ୍କ ଅନୁଭୂତି ଓ ଜ୍ଞାନ ପରିସର ବୃଦ୍ଧିରେ ସହାୟକ ହୋଇଥିଲା ।

## ୧୯୫୭ରୁ ୧୯୭୫ ମଧ୍ୟରେ ଆମ ପାରିବାରିକ ପରିସ୍ଥିତି :

ପ୍ରସଙ୍ଗକ୍ରମେ ପୂର୍ବରୁ ମୋର ୨ ଝିଅ ଓ ଦୁଇ ପୁଅଙ୍କ ଜନ୍ମ ବିଷୟ ସୂଚନା ଦିଆ ଯାଇଛି । ସେମାନେ କାଳକ୍ରମେ ବଡ଼ ହୋଇ କିଏ କିଏ ପାଠ ପଢ଼ା ଆରମ୍ଭ କରି ବସିଲେଣି । ୧୯୫୯ ଅପ୍ରେଲ ମାସରେ ଆଉ ଏକ ପୁତ୍ର ସନ୍ତାନର ଜନ୍ମ ହେଲା । ୧୯୬୦ ଡିସେମ୍ବର ମାସରେ ଝିଅଟିଏ ଓ ୧୯୬୨ ଜୁଲାଇ ମାସରେ ପୁଅଟିଏ ଜନ୍ମ ହୋଇ ପରିବାର ସଂଖ୍ୟାରେ ଝିଅ ଚାରି ଓ ପୁଅ ଚାରି ହେଲେ ।

୧୯୬୦ ସାଲରେ ମୋର ବଡ଼ ପୁଅ ପ୍ରଦୀପ୍ତ ଓ ଭାଇ ଝସକେତନର ବ୍ରତକର୍ମ ହେତୁ ବରଗଡ଼ରେ ପ୍ରଥମ ସାମାଜିକ ମିଳନର ଆୟୋଜନ ଯତ୍ନ ଓ ସନ୍ତୋଷ ସହ କରା ଯାଇଥିଲା । ୧୯୬୬ ସାଲରେ ବଡ଼ ଝିଅ ମାଧୁରୀ ସରକାରୀ ବାଳିକା ବିଦ୍ୟାଳୟରୁ ସର୍ବପ୍ରଥମ ମେଟ୍ରିକରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲା । ତାର ବୟସ ୧୭+ ହୋଇଥିଲେ ହେଁ ଗୁରୁଜନଙ୍କ ପ୍ରସ୍ତାବରେ ୧୯୬୬ ଜୁନ ମାସରେ ତାର ବିବାହ ବଲାଙ୍ଗୀର ନିବାସୀ ୰ ମଧୁସୂଦନ ନନ୍ଦଙ୍କ କନିଷ୍ଠ ପୁତ୍ର ରାଜକିଶୋର ନନ୍ଦଙ୍କ ସଙ୍ଗେ ଆମ ପରିସ୍ଥିତି ଓ ସମ୍ମାନକୁ ଚାହିଁ ବେଶ ଜାକଜମକରେ ସମାହିତ ହେଲା । ଜୋଇଁ ସେତେବେଳେ କେସିଙ୍ଗାରେ ବାଣିଜ୍ୟକର ବିଭାଗର ନିରୀକ୍ଷକ ରୂପେ କାର୍ଯ୍ୟରତ ଥିବାରୁ ସେଠାକୁ ଝିଅ ସଙ୍ଗେ ମୋର ପିଉସୀ ଯାଇ ତାକୁ ଘରକରଣୀ କରିବାରେ ସାହାଯ୍ୟ ଓ ସହଯୋଗ କରିଥିଲେ । ସେମାନେ କେସିଙ୍ଗାରେ ଥିବା ବେଳେ ତାଙ୍କୁ ବରଗଡ଼ ଆଣିବା ପାଇଁ ଏକ ସ୍ୱତନ୍ତ୍ର ଗାଡ଼ି ପଠା ଯାଇଥିଲା । ଗାଡ଼ିରେ ମୋର ଶଳା ହୃଷିକେଶ ବାବୁ, ବଡ଼ ପୁଅ ପ୍ରଦୀପ୍ତ, ସୁଦୀପ୍ତ ଓ ମୋର ଜଣେ ଛାତ୍ର ଗାଡ଼ିର ମାଲିକ ପ୍ରକାଶ ମିତ୍ତଲ ଯାଇଥିଲେ । ବାଟରେ ମୋର ଛାତ୍ର ଜଣକ ନିଜେ ଗାଡ଼ି ଚଳାଉଥିବା ବେଳେ ଏକ ବଙ୍କା ରାସ୍ତାରେ ଗାଡ଼ିଟି ଓଲଟି ପଡ଼ିବାରୁ ସାମନା ପଟ କାଚଟା କେବଳ ଖୋଲିଗଲା ଓ ବାକି ସମସ୍ତେ ନିରାପଦରେ ଉଦ୍ଧାର ପାଇଲେ । ଏ ଖବର ଆମ ପାଖକୁ ରାତିରେ ପହଞ୍ଚିଲା ପରେ ବ୍ୟସ୍ତ ହେଲୁଁ । ଗାଡ଼ିର ମାଲିକ ଲୋକ ପଠାଇ ଗାଡ଼ି ଆଣିଲେ ଓ ଆମ ପିଲାମାନେ ପରଦିନ ବସରେ ବରଗଡ଼ ଆସିଲେ । ଏପରି ଏକ ଭୟଙ୍କର ଦୁର୍ଘଟଣାରୁ ଭଗବାନ ସମସ୍ତଙ୍କୁ ରକ୍ଷା କରିଥିବାରୁ ଭଗବାନଙ୍କୁ କୋଟି କୋଟି ପ୍ରଣାମ ଜଣାଇଲୁଁ । ଏଥିରୁ ସ୍ପଷ୍ଟ ଜଣାଯାଏ 'ହରି ରଖେ ମାରେ କିଏ, ହରି ମାରେ ରଖେ କିଏ ?' ଉକ୍ତିଟି ଯଥାର୍ଥ । ବଡ଼ ଝିଅର ୧୯୬୭ ସାଲରେ ପୁଅଟିଏ ହେଲା - ପ୍ରଥମ ନାତି । ତେଣୁ ବେଶ ଜାକଜମକରେ ତାର ନାମକରଣ କରାଗଲା । ବହୁ ଲୋକେ ତାକୁ ସୁନା ରୂପା ଟଙ୍କା ପଇସା ଆଦି ଉପହାର ଦେଇଥିଲେ । ଏପରିକି ମୋର ବନ୍ଧୁ କଲିକତାର

ବିଶ୍ୱାସ ବାବୁ ଓ ସ୍କୁଲରେ ତାଲିମ ପାଉଥିବା ଗୁରୁଛାତ୍ରମାନେ ମଧ୍ୟ ସୁନାର ଅଳଙ୍କାର ଉପହାର ଦେଇଥିଲେ । ତାର ନାମ ଅସିତ ରଖାଗଲା । ଡାକ ନାମ ବାପୀ । ଝିଅର ୧୯୬୯ରେ ଆଉ ଏକ ପୁଅ ହେଲା । ତାର ନାମ ଅମିତ (ବୁବନୁ) । ୧୯୭୦ରେ ଝିଅଟିଏ ହେଲା, ତାର ନାମ ମାଳିନୀ (ଝୁନୀ) । ଜୋଇଁଙ୍କର ବାପା ମା ନ ଥିବାରୁ ନାତିନାତୁଣୀଙ୍କ ବାଲ୍ୟକର୍ମାଦି ଆମ ଘରେ ସମ୍ପନ୍ନ ହେଲା । ଏ ମଧ୍ୟରେ ଜୋଇଁ ନନ୍ଦ ବାବୁ ଜୟପୁର, ସୁଙ୍କି ଚେକଗେଟ ଓ ଯାଜପୁରକୁ ବଦଳି ହୋଇ ଶେଷରେ ସମ୍ବଲପୁରରେ ଅବସ୍ଥାପିତ ହେଲେ ।

ଇତି ମଧ୍ୟରେ ପ୍ରଥମ ପୁତ୍ର ଏମ.ଏ.ଏଲ.ଏଲ.ବି. କରି ବରଗଡ଼ରେ ଓକିଲାତି ଆରମ୍ଭ କଲା । ୨ୟ ପୁତ୍ର P.U. ପରେ Burla Enginering Collegeରେ ନାମ ଲେଖାଇ ପଢ଼ିବାକୁ ଲାଗିଲା । ୨ୟ ଝିଅ ଓ ୩ୟ ଝିଅ ସ୍ଥାନୀୟ ପଞ୍ଚାୟତ କଲେଜରେ ଓ ସାନ ଝିଅ ଓ ସାନ ପୁଅ ହାଇସ୍କୁଲରେ ଅଧ୍ୟୟନରତ ଥିଲେ । ଅର୍ଥାତ ୧୯୭୫ ବେଳକୁ ୨ୟ ଝିଅ ବାସନ୍ତୀ ଓ ତୃତୀୟ ଝିଅ ସବିତା M.Sc. ପଢୁଥିଲା ।

ଏହି ସମୟ ମଧ୍ୟରେ ଘଟିଥିବା କେତେକ ଦୁଃଖଦ ଘଟଣାର ବର୍ଣ୍ଣନା ଆବଶ୍ୟକ । ୧୯୬୧ରେ ବଡ଼ମାଙ୍କ ଓ ପିଉସୀଙ୍କ ଦେହାନ୍ତ, ୧୯୬୯ ସାଲର ମାର୍ଗଶୀର ମାସର ପ୍ରଥମାଷ୍ଟମୀରେ ମାତାଙ୍କ ଦେହାନ୍ତ ଓ ୧୯୭୦ ବୈଶାଖ କୃଷ୍ଣ ତ୍ରୟୋଦଶୀ ଦିନ ପିତାଙ୍କ ଦେହାନ୍ତ ହେଲା । ସତେ ଯେପରି ମା ଓ ବାପା ଡକା ଡକି ହୋଇ ଚାଲିଗଲେ । ବାପାଙ୍କ ମୃତ୍ୟୁ ଆମ ଗାଁ ବା ବରଗଡ଼ରେ ନ ହୋଇ ମୋର ୨ୟ ଭଉଣୀର ଶାଶୁଘର ଗାଁ ଖଣ୍ଡଥାରେ ତାର ପୁଅର ବ୍ରତ ଦିନ ଆକସ୍ମିକ ଭାବେ ଘଟିଥିଲା । ମୋର ବାପା ଓ ପିଲାମାନେ ବଳଦଗାଡ଼ିରେ ଶୁକ୍ରବାର ଦିନ ମଉଳା ଭାର ଧରି ଖଣ୍ଡଥା ଗଲେ । ଶନିବାର ଦିନ ବ୍ରତର ପ୍ରାରମ୍ଭିକ କାର୍ଯ୍ୟ ଅର୍ଥାତ୍ ଛାମୁଣ୍ଡିଆ କରିବା, ବେନୀ କରିବା ଆଦି କାମ ଯଥାରୀତି ଚାଲିଲା । ଆମ ସଙ୍ଗେ ଯାଇଥିବା ଚାକରଟି ସବୁ କାମରେ ସାହାଯ୍ୟ କଲା । ରାତିରେ ଖାଇପିଇ ଶୋଇବା ବେଳେ ବାପା ପେଟରେ ଯନ୍ତ୍ରଣା ଅନୁଭବ କଲେ । ତାଙ୍କ ପେଟବ୍ୟଥା ବେମାରୀ ଆଗରୁ ଥିଲା । ଏହା ପ୍ରାୟ ଆମ ବଂଶଗତ ବେମାରୀ, ମୋର ଅଜାଙ୍କର ଥିବାର ଶୁଣାଯାଏ । ବଡ଼ ବାପା, ବାପା ଓ କାକାଙ୍କର ମଧ୍ୟ ମଝିରେ ମଝିରେ ପେଟ ବ୍ୟଥା ହୁଏ ଓ ଖାଇବା ସୋଡ଼ା ବା ଅନ୍ୟ କିଛି ଖାଇଲେ ତାର ଉପଶମ ଘଟେ । ସେଦିନ ମଧ୍ୟ ସେପରି କିଛି ହୋଇଥିବା ଭାବି ଉପସ୍ଥିତ ମୋର ଭଉଣୀମାନେ ବାପାଙ୍କ ଯତ୍ନ ନେଲେ । ମୁଁ ସେତେବେଳେ ବରଗଡ଼ରେ ଥିଲି, କାରଣ ପରଦିନ ସକାଳେ ବ୍ରତରେ ମାମୁର କର୍ତ୍ତବ୍ୟ ହିସାବରେ ଭିକ୍ଷା ଥାଳି ଧରିବା କଥା ।

ଯାହା ହେଉ ରାତିଟି କଷ୍ଟେ କଷ୍ଟେ କଟିଗଲା । ବାପା ସକାଳୁ ଉଠି ସ୍ନାନ ପାଇଁ ଗାଁର କଟାକୁ ଯାଇ ସଉଚ ହେବା ପରେ ଗାଧୋଇ ଘରକୁ ଫେରିଲେ । ସେତେବେଳେ ସେ ମୁଣ୍ଡ କୁଣ୍ଡାଇ ଚନ୍ଦନ ଲଗାଇବା ବେଳେ ମୋର ବଡ଼ ପୁଅ ପ୍ରଦୀପ୍ତକୁ କହିଲେ, 'ବାବୁ ଆଜି ମୋତେ ବହୁତ ଝାଡ଼ା ହେଲା ଓ ଦୁର୍ବଳ ଲାଗୁଛି । ତେଣୁ ବ୍ରତ ସରିଲେ ଆମେ ବରଗଡ଼ ଚାଲିଯିବା । ଏଠାରେ ରହିବା ନାହିଁ ।' ଏହା ପରେ ତାଙ୍କୁ ଜଳଖିଆ ଯାଚିବାରୁ ସେ ମନା କଲେ । ମୋର ଭଉଣୀ ଘରେ ସ୍ଥାନାଭାବ ହେତୁ ଆମକୁ ତାଙ୍କର ସମ୍ପର୍କୀୟ ଆଉ ଏକ ଘରେ ରହିବାର ବନ୍ଦୋବସ୍ତ କରିଥିଲେ । ତେଣୁ ସେ ଘରକୁ ଯିବା ବାଟରେ ଗାଁର ଦୋକାନୀକୁ ତାର କେତେ ପାଉଣା ଅଛି କହିଲେ । କାରଣ ପୂର୍ବ ଦିନ ଦୋକାନରୁ କିଛି ପାନ, ଗୁଡ଼ାଖୁ ଆଦି ଧାରରେ ନେଇଥିଲେ । ଦୋକାନୀ ନମ୍ରତା ସହ କହିଲେ, 'ବ୍ରାହ୍ମଣ ଗୋସାଇଁ, ଏତେ ହରବର କାହିଁକି, ପରେ ଦେଲେ ହେବ ନାହିଁ ?' ଉତ୍ତରରେ ବାପା କହିଲେ, 'କାହିଁକି ବାବୁ ? ତୁମର ପାଉଣା ନେଇ ଯାଅ, ହୁଏତ ମୁଁ ମରି ଯାଇ ପାରେଁ ଓ ଧାରୁଆ କାହିଁକି ହେବି ?' କହି ତାଙ୍କର ପାଉଣା ଦେଇ ଦେଲେ । ସେଠାରୁ ଗଲେ ଆମର ଡେରାଘରକୁ ଅର୍ଥାତ୍ ତାଙ୍କ ମାଉସୀ ଶାଶୁ ଘରକୁ । ସେଠାରେ ଖଟ ପକାଇ ଧୋତି ଖଣ୍ଡିକ ମୁଣ୍ଡରେ ନେଇ ଏକ ଗାମୁଛା ପିନ୍ଧି ଶୋଇଲେ । ବହୁ ସମୟ ପରେ ତାଙ୍କର ମାଉସୀ ଶାଶୁ ତାଙ୍କର ହଳଚଳ ନ ଦେଖି ଆମର ଛୁଆମାନଙ୍କୁ ଡକାଇଲେ ଓ ତାଙ୍କୁ ଉଠାଇବାକୁ ପ୍ରବର୍ତ୍ତାଇଲେ । ଛୁଆମାନେ ଯେତେ ପାଟି କରି ଡାକିଲେ ମଧ୍ୟ ନ ଉଠିବାରୁ ମୋର ସ୍ତ୍ରୀ ଓ ଅନ୍ୟମାନଙ୍କୁ ଡକାଇ ଦେଖିଲା ବେଳକୁ ଆଉ ସେ ସଂସାରରେ ନ ଥିଲେ । ସତେ ଯେପରି ସେ ଜାଣି ପାରିଥିଲେ ଯେ କିଛି ସମୟ ପରେ ସେ ସଂସାରରୁ ଚାଲି ଯିବେ । ନଚେତ ଦୋକାନୀକୁ ଉପରୋକ୍ତ ମତେ ଉତ୍ତର ଦେଇଥାନ୍ତେ କିପରି ଓ ଧାର ପରିଶୋଧ କରନ୍ତେ କିପରି ? ଏହି ଘଟଣାଟି ଆମ ସମସ୍ତଙ୍କ ଚିରସ୍ମରଣୀୟ ହୋଇ ରହିଛି । ଏହା ପରେ ମୋର ପୁଅ ପ୍ରଦୀପ୍ତ ଓ ଭଣଜା ସ୍ୱର୍ଗତ ଶିବପ୍ରସାଦ ବରଗଡ଼ ଆସି ଗାଡ଼ି ଯୋଗାଡ଼ କରି ଶବ ନେବା ବ୍ୟବସ୍ଥା କରିଥିଲେ । ଇତି ମଧ୍ୟରେ ମୁଁ ବରଗଡ଼ରୁ ଖଣ୍ଡହଥା ଯାଇ ପହଞ୍ଚିଲା ବେଳକୁ ଏହି ଅପ୍ରତ୍ୟାଶିତ ଘଟଣା ଦେଖି ସ୍ତମ୍ଭୀଭୂତ ହେଲି ।

ବରଗଡ଼ରୁ ଗାଡ଼ି ଯାଇ ଶବ ସଙ୍ଗେ ଆମ ଘରର ଅନ୍ୟମାନେ ମଧ୍ୟ ଚାଲି ଆସିଲେ । କେବଳ ଅନ୍ୟ ବନ୍ଧୁବାନ୍ଧବମାନେ ଅନିଚ୍ଛା ସତ୍ତ୍ୱେ ମନ ଦୁଃଖରେ ରହି ବ୍ରତ କାମ ସାରି ଫେରିଲେ । ଶବକୁ ବରଗଡ଼ ଆଣି ସେଦିନ ଶବ ସଂସ୍କାର ପରେ ଅନ୍ୟାନ୍ୟ ପ୍ରେତକୃତ୍ୟ ଚାଲିଲା ୧୨ ଦିନ ପର୍ଯ୍ୟନ୍ତ । ମୋର ଏ ଦୁଃସମ୍ବାଦ ପାଇ OSSTAର କର୍ମକର୍ତ୍ତା ଓ ବନ୍ଧୁଗଣ ଦ୍ୱାଦଶାହ ଦିନ ଆସି ପହଞ୍ଚିଲେ । ସଙ୍ଗରେ

ସେମାନେ ପୁରୀର ନିର୍ମାଲ୍ୟ (ସୁଖିଲା ପ୍ରସାଦ) ଆଣିବାକୁ ଭୁଲି ନ ଥିଲେ । ଏପରି ଭାବେ ମାତା ଓ ପିତାଙ୍କୁ ଅଳ୍ପ ବ୍ୟବଧାନରେ ହରାଇ ଅନାଥ ହେବାକୁ ପଡ଼ିଲା । ଫଳରେ ସ୍କୁଲର ଜଞ୍ଜାଳ ତ ଭାରି, ତା ଉପରେ ଗାଁର ଜମିବାଡ଼ି ଓ ଘରଦ୍ୱାର କଥା ମୁଣ୍ଡ ଉପରକୁ ଆସିଲା । ବୋଝ ଉପରେ ନଳିତା ବିଡ଼ା । ଅବଶ୍ୟ ସେତେବେଳେ ମୋର ସାନ କାକା ଓ ଖୁଡ଼ୀ ଘରେ ରହୁଥିଲେ ଓ ସେମାନେ ଦେଖାଦେଖି କରିବାରେ ସାହାଯ୍ୟ କରିବାକୁ ଲାଗିଲେ ।

୧୯୭୩ ସାଲରେ ସାନ କାକା ଶିକ୍ଷକତାରୁ ଅବସର ନେଲେ ଓ ସେ ବର୍ଷ ଡିସେମ୍ବର ୩୧ ତାରିଖରେ ସାନ ଖୁଡ଼ୀଙ୍କ ଦେହାନ୍ତ ହେଲା । ତାଙ୍କର ଶୁଦ୍ଧିକ୍ରିୟା ପାଇଁ କାକା ମୋର ସାନ ଭାଇ ଝସକୁ ମନୋନୀତ କରିବାରୁ ବଡ଼ଖା ବାପା ଅସନ୍ତୁଷ୍ଟ ହେଲେ । କାରଣ କାକାଙ୍କ ଉଦ୍ଦେଶ୍ୟ ଝସକୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିବାର ଥିଲା । ସେହି ବର୍ଷ ଝସ B.A. ପାସ କରି ସିମେଣ୍ଟ କାରଖାନାରେ କାର୍ଯ୍ୟରତ ଥିଲା । ଝସର N.C.C. ଦକ୍ଷତା ଥିବା ଯୋଗୁଁ ତତ୍କାଳୀନ ସ୍କୁଲ ମଣ୍ଡଳାଧୀଶ ଶ୍ରୀ ରାଧାକାନ୍ତ ମିଶ୍ର ସ୍ୱତଃପ୍ରବୃତ୍ତ ହୋଇ ପଞ୍ଚପଡ଼ା ST ସ୍କୁଲର ଖେଳ ଶିକ୍ଷକ ରୂପେ ନିଯୁକ୍ତି ଦେଲେ । ଏବେ ସେ B.Ed ଓ M.A. ପାସ କରି ତାଲିମପ୍ରାପ୍ତ ଶିକ୍ଷକ ରୂପେ କାର୍ଯ୍ୟରତ । ୧୯୭୪ ରେ ବଡ଼ ପିଉସୀଙ୍କ ଦେହାନ୍ତ ହେଲା । ଏସବୁ ବିଷୟ ଉଲ୍ଲେଖ କରିବାର ତାତ୍ପର୍ଯ୍ୟ ଏହି ଯେ ବରଗଡ଼ରେ ଘର କରି ରହିଥିବାରୁ ଅତିଥି ଅଭ୍ୟାଗତ ସଂଖ୍ୟା ପର୍ଯ୍ୟାପ୍ତ, ତାପରେ ପୀଡ଼ିତ ବନ୍ଧୁବାନ୍ଧବଙ୍କ ଆଗମନ ତଥା ଉପରୋକ୍ତ ଗୁରୁଜନଙ୍କ ସେବାସୁଶ୍ରୁଷାର କେନ୍ଦ୍ର ଥିଲା ଅମ ବାସଗୃହ । ତାର ପରିଚର୍ଯ୍ୟାକାରିଣୀ ଥିଲେ ୮ଟି ସନ୍ତାନର ଜନନୀ ମୋର ସ୍ତ୍ରୀ - ଅହରହ ରନ୍ଧାବଢ଼ା ଓ ରୋଗୀ ସେବାରେ ବ୍ୟସ୍ତ । କାରଣ ଅତିଥି ଆଗମନର ତ ସମୟ ନ ଥାଏ । ତେଣୁ ସେମାନେ ଆସିଲେ ଚର୍ଚ୍ଚା ନ କଲେ ନିନ୍ଦା ଓ ଅସନ୍ତୋଷର ସୃଷ୍ଟି । ମୁଁ ଯଦିଓ କିଛି କିଛି ବୁଝିବାକୁ ଗ୍ରହେଁ ହେଲେହେଁ ସ୍କୁଲ ଜଞ୍ଜାଳ, ଛାତ୍ର ଅଭିଭାବକ ସମ୍ପର୍କ ତଥା ଉପରିସ୍ଥ କର୍ମଗ୍ରରୀଙ୍କ ଆଗମନ ଓ ଚର୍ଚ୍ଚାରେ ବ୍ୟସ୍ତ ରହି ମୁଁ ବିଶେଷ ସମୟ ଦେଇ ପାର୍ ନ ଥିଲି ।

ଅବଶ୍ୟ ଏହି କେତେ ବର୍ଷ ହେଲା ମୋର ଭଉଣୀ ଓ ବଡ଼ ବାପାଙ୍କ ପୁଅ ଭାଇ ଖଜୁରଟିକ୍ରାରେ ଘର କରି ରହି ଥିବାରୁ ଆପାତତଃ ଆମ ଘରରେ ଭିଡ଼ ଅପେକ୍ଷାକୃତ କମ ଥିଲା ।

ଆମ ପରିବାରର ମୁଁ ବଡ଼ ପୁଅ, ଶାଶୁ ଘରେ ବଡ଼ ଜୋଇଁ, ହାଇସ୍କୁଲ ପ୍ରଧାନ ଶିକ୍ଷକ ପୁଣି ଜର୍ଜ ହାଇସ୍କୁଲର, ତେଣୁ ଢେଙ୍ଗା ମୁଣ୍ଡରେ ଠେଙ୍ଗା ଭଳି ମୋ ଉପରେ ଗୁରୁଦାୟିତ୍ୱ ରହୁଥିଲା ଓ ମୁଁ ଗୁରୁଜନ କୃପା ଓ ପ୍ରଭୁଙ୍କ ଆଶୀର୍ବାଦରୁ କୌଣସି

ମତେ ତୁଳାଇ ନେଉଥିଲି । ଧୀରେ ଧୀରେ ମୋର କାର୍ଯ୍ୟକଳାପର ଦକ୍ଷତା ହେତୁ ସରକାରୀ ଲୋକେ କଟକ ବା ଭୁବନେଶ୍ୱରରୁ ଆସିଲେ ଆମ ବାଟ ଦେଇ ସମୟ ଅସମୟରେ ସାହାଯ୍ୟ ନେଇ ଅନ୍ୟତ୍ର ଯାଉଥିଲେ ।

ଆମ ପରିବାରର ମୁଁ ଏକମାତ୍ର ଶିକ୍ଷିତ ଓ ପଦବୀଧାରୀ ହୋଇଥିବାରୁ ସମସ୍ତେ ମୋତେ କାୟ, ମନ ଓ ଅର୍ଥ ସାହାଯ୍ୟ ପାଇଁ ନିର୍ଭର କରୁଥିଲେ । ମୋର ପୁଅ ଝିଅ ୮ ଜଣ, ବଡ଼ ଭଉଣୀର ପୁଅ ଝିଅ ୮ ଜଣ, ମଝିଆ ଭଉଣୀର ପୁଅ ଝିଅ ୭ ଜଣ ଓ ସାନ ଭଉଣୀର ୭ । ଏପରି ଭାବେ ଭଣଜା ଭାଣଜୀଙ୍କ ସଂଖ୍ୟା ୩୦ ଜଣ । ଏମାନଙ୍କ ବ୍ରତ ଓ ବିବାହ ସମୟରେ ମାମୁଘର କର୍ତ୍ତବ୍ୟ ହିସାବରେ ମଉଳାଭାର ନେବା କଥା । ଏସବୁ ପୁଣି ମୋ ଉପରେ । ଆହୁରି ୫/୭ ଜଣଙ୍କ କାର୍ଯ୍ୟ ପାଇଁ ଦାୟିତ୍ୱ ରହିଛି । ଏବେ ପୁଣି ମୋର ନିଜର ଝିଅପୁଅ ସନ୍ତାନଙ୍କ ସଂଖ୍ୟା ୧୬ । ସେଥିରୁ ବଡ଼ ଝିଅର ୨ଟି ପୁଅଙ୍କ ବ୍ରତ ଓ ଝିଅର ବାହାଘର ସରିଛି ଆଉ ବାକୀ ସବୁ କାର୍ଯ୍ୟ କରିବାକୁ ଅଛି । ଏଣୁ ବହୁକୁଟୁମ୍ବୀ ହିସାବରେ ଦାୟିତ୍ୱ ବହୁତ ବେଶୀ ହୋଇ ଯାଉଛି । ଭଗବାନ କିନ୍ତୁ କୌଣସି କାର୍ଯ୍ୟକୁ ଅଟକିବାକୁ ଦେଉ ନାହାନ୍ତି । ଏହା ପ୍ରଭୁଙ୍କ ଅଶେଷ କରୁଣା ଓ ପିତୃପିତାମହଙ୍କ ଆଶୀର୍ବାଦର ସୁଫଳ । ଏବେ ତୃତୀୟ ଝିଅ ସବିତାର ବଡ଼ ଝିଅ ଅର୍ଚ୍ଚନା ୨୩.୦୬.୦୪ରେ ବିବାହ ହେଲା ।

## ୧୯୫୭ରୁ ୭୫ ମଧ୍ୟରେ ବିଭିନ୍ନ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠାନ:

ଜର୍ଜ ହାଇସ୍କୁଲରେ ମୋର ପ୍ରଧାନ ଶିକ୍ଷକ ଦାୟିତ୍ୱ ନେବା ବେଳେ ସମ୍ବଲପୁର ଜିଲ୍ଲାରେ ଆଙ୍ଗୁଠିରେ ଗଣିବା ଭଳି ସଂଖ୍ୟକ ଉଚ୍ଚ ବିଦ୍ୟାଳୟ ଥିଲା । ସେତେବେଳେ ବଲାଙ୍ଗୀର ପଶ୍ଚିମାଞ୍ଚଳ ମଣ୍ଡଳାଧୀଶଙ୍କ ଅଧୀନରେ ୬ଟି ଜିଲ୍ଲା ଥାଇ ମଧ୍ୟ ମୋଟ ହାଇସ୍କୁଲ ସଂଖ୍ୟା ହୁଏତ ଏକଶତରୁ ଊଣା ହୋଇପାରେ । କିନ୍ତୁ ୬ଷ୍ଠ ଦଶକର ଶେଷ ଭାଗରେ ବଲାଙ୍ଗୀର ମଣ୍ଡଳାଧୀଶ ହିସାବରେ ଶ୍ରୀଯୁକ୍ତ ଦୀନବନ୍ଧୁ ପାଣିଗ୍ରାହୀ ଯୋଗଦାନ କଲା ପରେ ସେ ଏ ଅଞ୍ଚଳର ଶିକ୍ଷାନୁଷ୍ଠାନର ନ୍ୟୂନତା ଦୃଷ୍ଟିରୁ ଓ ଉପକୂଳ ଅଞ୍ଚଳର ଶିକ୍ଷାନୁଷ୍ଠାନ ବହୁଳତା ହେତୁ ତାଙ୍କରି ଅମଳରେ ଏ ଅଞ୍ଚଳର ଶିକ୍ଷାଲୋକର ଦୀପିକା ଶିଖାର ପ୍ରଜ୍ୱଳନ କରାଇବାକୁ ଚେଷ୍ଟିତ ହେଲେ । ତେଣୁ ଯେଉଁ ସବୁ ନୂଆଁ ନୂଆଁ ଉଚ୍ଚ ବିଦ୍ୟାଳୟ ମୁଣ୍ଡ ଟେକିବାକୁ ଉଠିଲା ସେଥିରେ ସେ ଅଯାଚିତ ଭାବେ ସହାୟକ ହେଲେ । ଏପରିକି କୌଣସି ନୂଆଁ ବିଦ୍ୟାଳୟ ପରିଦର୍ଶନକୁ ଯିବା ଆଗରୁ ଏ ଲେଖକଙ୍କୁ ଖବର ଦେଉଥିଲେ ଯେ ତାଙ୍କ ପରିଦର୍ଶନ ବେଳେ ସ୍କୁଲରେ ଅନ୍ତତଃପକ୍ଷେ ଆବଶ୍ୟକୀୟ ତାଲିମପ୍ରାପ୍ତ ଶିକ୍ଷକ କାର୍ଯ୍ୟରତ

ଥିବା ବିଧେୟ । ଏଣୁ ତାଙ୍କର ଏ ଖବର ପାଇଁ ମୁଁ ତାଲିମପ୍ରାପ୍ତ ହେଉ ବା ଅଣତାଲିମ ବି.ଏ. ଯୁବକ ଓ I.Sc. ପାସ କରିଥିବା ଯୁବକମାନଙ୍କୁ ସେହି ସ୍କୁଲକୁ ପଠାଇ ଦେଲା ପରେ ମୁଁ ଓ ମଣ୍ଡଳାଧୀଶ ପାଣିଗ୍ରାହୀ ମହାଶୟ ଉକ୍ତ ବିଦ୍ୟାଳୟ ପରିଦର୍ଶନ କରି ଅନୁମୋଦନ ପାଇଁ ସୁପାରିଶ କରୁଥିଲେ । କାରଣ ସେତେବେଳେ ଗୋଟିଏ ସ୍କୁଲର ସ୍ୱୀକୃତି ପାଇବା ମଣ୍ଡଳାଧୀଶଙ୍କ ଅନୁମୋଦନ ଉପରେ ସମ୍ପୂର୍ଣ୍ଣ ନିର୍ଭର କରୁଥିଲା । ତେଣୁ ତାଙ୍କ ଅମଳରେ ଆମ ଅଞ୍ଚଳରେ ବହୁ ନୂତନ ଉଚ୍ଚ ବିଦ୍ୟାଳୟ ମୁଣ୍ଡ ଟେକିଲା । ୧.୭.୧୯୫୮ରୁ ୧୯୬୬-୬୮ ପର୍ଯ୍ୟନ୍ତ ପୂର୍ଣ୍ଣ ପ୍ରତିଷ୍ଠିତ ସ୍ୱାବଲମ୍ବୀ ସ୍କୁଲ ଗୁଡ଼ିକୁ ସରକାର Net Deficit ରୂପେ ଗ୍ରହଣ କରି ୧.୩.୬୯ରୁ ରାଜ୍ୟର ୧୪୨ଟା ଏହି ଧରଣର ସ୍କୁଲକୁ ସରକାରୀ 'A' ଶ୍ରେଣୀଭୁକ୍ତ କରି ଦେଲେ ।

ମୁଁ ଏକ କେନ୍ଦ୍ରସ୍କୁଲର ପ୍ରଧାନ ଶିକ୍ଷକ ଥିବାରୁ ଆମ ଅଞ୍ଚଳର ସ୍କୁଲର ନୂତନ ଶିକ୍ଷକ ନିଯୁକ୍ତି ପାଇଁ ସଂପୃକ୍ତ ସମ୍ପାଦକମାନେ ମୋର ମତାମତ ନେଇ ଶିକ୍ଷକ ନିଯୁକ୍ତି ଦେଉଥିଲେ । ସେହି ପରିପ୍ରେକ୍ଷୀରେ ପାଇକମାଲ ସ୍କୁଲର ପ୍ରଥମ ପ୍ରଧାନ ଶିକ୍ଷକ ରୂପେ ସେତେବେଳେ ବି.ଏ. ପାସ କରିଥିବା ମୋର ପରବର୍ତ୍ତୀ କାଳର ବଡ଼ ଜୋଇଁ ରାଜୁବାବୁଙ୍କୁ ପଠାଇଥିଲି । ପରେ ସେ B.Ed Training ଯାଇ ଓ Sales Tax Inspector ପରୀକ୍ଷା ଦେଇ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ Inspector ରୂପେ ଯୋଗ ଦେଇଥିଲେ ।

ଏହିପରି ବହୁ ଗୁଡ଼ିଏ ଉଚ୍ଚ ବିଦ୍ୟାଳୟର ପ୍ରତିଷ୍ଠାରେ ମୋର ପ୍ରତ୍ୟକ୍ଷ ଓ ପରୋକ୍ଷ ସଂଯୋଗ ରହିଛି । ଅବଶ୍ୟ ଏବେ ବିଂଶ ଶତାବ୍ଦୀର ଶେଷ ଭାଗରେ ଯେଉଁ ରୂପେ ଗାଁ ଗାଁରେ କଲେଜ ପ୍ରତିଷ୍ଠା ଚାଲିଛି, ସେତେବେଳର ହାଇସ୍କୁଲ ପ୍ରତିଷ୍ଠାର ଅଗ୍ରଗତି ବର୍ତ୍ତମାନର ପ୍ରଗତି ସମକକ୍ଷ ହୋଇ ପାରିବ ନାହିଁ । ବରଗଡ଼ର ପ୍ରତିଷ୍ଠା ଓ କ୍ରମବର୍ଦ୍ଧିଷ୍ଣୁ ସହର ଭାବରେ ଜନସଂଖ୍ୟା, କେନାଲ ପାଣିର ବ୍ୟବହାର ଓ ବାଣିଜ୍ୟ କେନ୍ଦ୍ର ଦୃଷ୍ଟିରୁ ଏଠାରେ ସରକାରୀ I.Bର ବିଶେଷ ଅଭାବ ଥିଲା । ଅବଶ୍ୟ Canal I.B. ବା ସିମେଣ୍ଟ କାରଖାନା ସ୍ଥାପନ ପରେ ଏହାର ଅଭାବ କେତେକାଂଶରେ ପୂରଣ ହେବାର ଅନୁଭୂତ ହେଲେହେଁ ଶିକ୍ଷା ବିଭାଗୀୟ ଅଫିସରମାନଙ୍କ ରହିବାର ସୁବିଧା ନ ଥିଲା । ତେଣୁ ମଣ୍ଡଳାଧୀଶଙ୍କ ଅନୁମତି ଓ ଅନୁମୋଦନକ୍ରମେ ଆମ ସ୍କୁଲରେ ଏକ ବିଶ୍ରାମାଗାର, ଜଳ ଯୋଗାଣ ଓ ଫୋନ ଯୋଗାଯୋଗର ସୁବିଧା ହୋଇଥିବାରୁ ସବୁବେଳେ ଆମ ବିଦ୍ୟାଳୟଟି କର୍ମଚାରୀଙ୍କ ଉପଯୋଗୀ ଥିଲା । ତେଣୁ ସେମାନଙ୍କ ଆଗମନ ପରିଦର୍ଶନ ଓ ରହଣୀ ଓ ଖାଦ୍ୟପେୟର ବ୍ୟବସ୍ଥା ସମ୍ପର୍କରେ ସମ୍ୟକ୍ ଧାରଣା ଦେବା ଉଚିତ ମନେ ହୁଏ ।

ଦିନକର ଘଟଣା - ଶ୍ରାବଣ ମାସ - ମୁଷଳଧାରାରେ ବର୍ଷା ହେଉଛି। ସମୟ ସନ୍ଧ୍ୟା ସାଢ଼େ ୮ଟା ପ୍ରାୟ। ମୁଁ ମୋ କ୍ୱାଟର୍ସରେ ଅଛି। ଖିଆପିଆ ସରି ନାହିଁ। ବାଟରୁ ଘଣ୍ଟି ବାଜିଲା। ବାଟକୁ ବାହାରି ଦେଖିଲା ବେଳକୁ D.P.I.ଙ୍କ ଷ୍ଟେନୋ ଗାଡ଼ି ଧରି ଦ୍ୱାର ମୁଁହରେ। ସେ ମହାଶୟ ଜଣାଇଲେ ଯେ D.P.I. ଡ. ସଦାଶିବ ମିଶ୍ର ଦିନସାରା ଅତାବିରା ଡାକବଙ୍ଗଳାରେ ଅପେକ୍ଷା କରି ନଦୀବଢ଼ୀ ହେତୁ ସମ୍ବଲପୁର ନ ଯାଇ ବରଗଡ଼ ଫେରି ଆସି କେନାଲ ଡାକବଙ୍ଗଳାରେ ଆପଣଙ୍କୁ ଡକାଇଛନ୍ତି। D.P.I.ଙ୍କ ନାମ ଶୁଣି ମୁଁ ତଟସ୍ଥ। ଷ୍ଟେନୋ ବସନ୍ତ ବାବୁ ବ୍ୟସ୍ତ ନ ହେବାକୁ କହି ମୋତେ ଗାଡ଼ିରେ ବଙ୍ଗଳାକୁ ନେବା ବାଟରେ କହିଲେ D.P.I. ଅତାବିରାରେ ମୁଢ଼ି ଆଦି ଖାଇଛନ୍ତି ଓ ଅପେକ୍ଷା କରି କ୍ଳାନ୍ତ ତେଣୁ ସେ ରାତ୍ରରେ କିଛି ନ ଖାଇ ଶୋଇ ପଡ଼ିବେ। ଯଦି ହୁଏ କିଛି ଗରମ କ୍ଷୀର ହେଲେ ଚଳିବ। ତଥାପି ଆପଣ D.P.I.ଙ୍କ ସଙ୍ଗେ ଦେଖା କଲା ପରେ ଯାହା କଥା। ତେଣୁ ମୁଁ ହୋଟେଲରେ ଗରମ କ୍ଷୀର ବରାଦ କରି ରଖିବାକୁ କହି ବଙ୍ଗଳାକୁ ଗଲି। ତାଙ୍କଠାରୁ ଯାହା ଶୁଣିଲି ସେ ରାତିରେ ଆଉ କାହାକୁ ବ୍ୟସ୍ତ ନ କରି କେବଳ ବିଶ୍ରାମ ଚାହାନ୍ତି - କିଛି କ୍ଷୀର ହେଲେ ଚଳିଯିବ। କିନ୍ତୁ ପରଦିନ ସକାଳ ଜଳଖିଆ ପାଇଁ ଯାହା ବରାଦ କରିବାର କଥା କହିଲେ ବରାଦ ମଧ୍ୟରେ ଥିଲା - ପାଚିଲା ଅମୃତଭଣ୍ଡା, ଗରମ ଜିଲବୀ, ସିଙ୍ଗଡ଼ା ବା ଅନ୍ୟ କିଛି ଓ ଫଳାଦି। ତେଣୁ ସେଠାରୁ ଫେରି ଡ୍ରାଇଭର ଓ ଷ୍ଟେନୋଙ୍କୁ ହୋଟେଲରେ ଖାଇବା ବରାଦ କରି ଗରମ କ୍ଷୀର ବଙ୍ଗଳାକୁ ପଠାଇ ଦେଲି। ସେମାନେ ଖାଇ ସାରିବା ପରେ ମୋତେ ଘରକୁ ଆଣି ଛାଡ଼ି ଦେଇଗଲେ। ପରଦିନ ସକାଳେ ୭ଟା ପୂର୍ବରୁ ଯେପରି ଜଳଖିଆ ପହଞ୍ଚେ ସେ ବିଷୟରେ ସୂଚନା ଦେଇଗଲେ।

ପରଦିନ ସକାଳୁ ବରାଦ ମୁତାବକ ଜଳଖିଆ ଯୋଗାଡ଼ କରି ଡାକବଙ୍ଗଳାରେ ହାଜର ହେଲୁଁ। D.P.I. ଜଳଖିଆ କରି ପ୍ରସ୍ତୁତ ହୋଇ ଆମ ସ୍କୁଲକୁ ଆସିବାକୁ ମନସ୍ଥ କଲେ। ଗାଡ଼ିରେ ସ୍କୁଲ ଫାଟକରେ ପହଞ୍ଚିଲା ପରେ କେଉଁ ଶ୍ରେଣୀର ସ୍କୁଲ ବୋଲି କହିବାରୁ ମୁଁ ଯେତେବେଳେ Aided (ସାହାଯ୍ୟପ୍ରାପ୍ତ) ବୋଲି ଜଣାଇଲି ସେଥିରେ ତାଙ୍କର ଅସହାୟ ଅବସ୍ଥା ପ୍ରକାଶ କରି କଅଣ କରା ଯାଇପାରେ ଚେଷ୍ଟା କରିବେ ବୋଲି କହିଥିଲେ।

ୀୟ ଥର Sri G.C. Satpathy (ଗୋକୁଳ ଚନ୍ଦ୍ର ଶତପଥୀ) ଯୁଗ୍ମ ଶିକ୍ଷା ନିର୍ଦ୍ଦେଶକ ଥାଆନ୍ତି। ତାଙ୍କର ଖରିଆରରୁ ବରଗଡ଼ ଆସି ରହିବାର ଥିବାରୁ ଆମେ ତାଙ୍କ ପାଇଁ ଡାକବଙ୍ଗଳାରେ ରନ୍ଧାବଢ଼ା କରି ରାତ୍ର ୧୦ଟା ପର୍ଯ୍ୟନ୍ତ ଅପେକ୍ଷା

କରି ବ୍ୟସ୍ତ ହୋଇ ଘରକୁ ଯିବାକୁ ଉଦ୍ୟତ ହେବା ବେଳେ ଗାଡ଼ି ଆସି ପହଞ୍ଚିଲା ଓ ତାଙ୍କ ଆତିଥ୍ୟରେ କିଛି ତ୍ରୁଟି ରହିଲା ନାହିଁ।

ଆଉ ଥରେ ଶୁକ୍ରବାର ଦିନ ସକାଳ ସ୍କୁଲ ୧୦ଟା ବେଳେ ସମ୍ବଲପୁରରୁ ଖବର ଆସିଲା ଫୋନରେ ଯେ Jt. D.P.I. ଶ୍ରୀ ଶତପଥୀ ବରଗଡ଼ ଯାଉଛନ୍ତି ଓ ସେଠାରେ ସେ ମଧ୍ୟାହ୍ନ ଭୋଜନ କରିବେ।.ତାଙ୍କ ପାଇଁ ଉଚିତ ବ୍ୟବସ୍ଥା ଦରକାର। ତେଣୁ ସଙ୍ଗେ ସଙ୍ଗେ ଲୋକ ପଠାଇ ଜିନିଷପତ୍ର ଯୋଗାଡ଼ କରି ଡାକବଙ୍ଗଳାରେ ରାନ୍ଧିବାକୁ ଆରମ୍ଭ କରିବା ବେଳେ ପ୍ରାୟ ୧୧ଟା ବେଳେ Jt. D.P.I. ଙ୍କ ଗାଡ଼ି ଆସି ହାଜର। ଆମେ ପୂଝାରୀ ଦ୍ୱାରା ୨/୩ଟି ଚୂଲି ଲଗାଇ ଶୀଘ୍ର ରାନ୍ଧିବାର ବ୍ୟବସ୍ଥାରେ ବ୍ୟସ୍ତ ହେବା ବେଳକୁ ପ୍ରାୟ ୧୧.୧୫ ମିନିଟରେ ଶତପଥୀ ସାହେବ ମୋତେ ଡକାଇ ଶୀଘ୍ର ଖାଇବା ବ୍ୟବସ୍ଥା କରିବାକୁ ବରାଦ କଲେ। ମୁଁ ଭୟରେ ହଁ କରିବାକୁ ବାଧ ହୋଇ ପ୍ରମାଦ ଗଣିଲି। ଇତି ମଧରେ ଜଳଖିଆ ଖାଇବାକୁ କହିବାରୁ ସେ ଅତି କ୍ଷୁଧାର୍ତ୍ତ ଓ ଖାଦ୍ୟ ଅନ୍ନ ଦରକାର ବୋଲି କହିଲେ ଯେ I am hungry, I want a morsal of rice. ଏହା ଶୁଣି ମୋର ମୁଣ୍ଡକୁ ତେନ୍ତୁଳିଆ ବିଛା କାମୁଡ଼ିଲା ଭଳି ବୋଧ ହେଲା। କିଛି କ୍ଷଣ ପରେ ସେ ପୁଣି ଖାଦ୍ୟ ପ୍ରସ୍ତୁତି ପାଇଁ ପଚ୍ଚରିବାରୁ ମୁଁ ସନ୍ତର୍ପଣରେ ପ୍ରକାଶ କଲି ଯେ ବଙ୍ଗଳାରେ ରନ୍ଧା ହେବା ଦୃଷ୍ଟିରୁ ସମୟ ସାପେକ୍ଷ ଓ ଆପଣ ଅନୁମତି ଦେଲେ ଘରୁ ଭୋଜନ ମଗାଇ ଦେଇ ପାରିବି। ସେ ତତ୍କ୍ଷଣାତ୍ କହି ପକାଇଲେ, 'Please do it'.

ତା ପରେ ମୁଁ ବଙ୍ଗଳାରୁ ଘରକୁ ଟେଲିଫୋନ କଲି। ସ୍ତ୍ରୀକୁ ଫୋନରେ କହିଲି ଯେ Jt. D.P.I.ଙ୍କ ପାଇଁ ଖାଦ୍ୟ ଶୀଘ୍ର ଦରକାର ଓ Tiffin Carrierରେ ପଠାଅ। ଏହା ଶୁଣି ସେ ବିବ୍ରତ ହୋଇ ଅସ୍ଥିର ହେଲେ। ଅବଶ୍ୟ ସେତେବେଳକୁ ଘରେ ରନ୍ଧା ସରିଥିଲା - କେବଳ ଭଜା ଭଳି କିଛି କରି ଭାତ, ଡାଲି, ତରକାରୀ, ଆମ୍ବିଳ, ଶାଗ ଓ ଭଜା ଦେଇ ପଠାଇଲେ। ମୁଁ ସଙ୍କୋଚରେ Jt. D.P.I.ଙ୍କୁ କହିଲି ଯେ ଘରେ କେବଳ ସାଦା ହୋଇଛି, କହିଲେ ହୋଟେଲରୁ ମାଛ, ମାଂସ ଅଣାଯିବ। କିନ୍ତୁ ସେ ଏଥିରେ ରାଜି ହେଲେନି ଓ ଘରୁ ଆସିଥିବା ଖାଦ୍ୟ ଖାଇ କ୍ଷୁଧା ଶାନ୍ତ କଲେ। କିଛି ଫଳ ମଧ ଯୋଗାଡ଼ କରା ଯାଇଥିଲା। କିନ୍ତୁ ସେ ସବୁ କିଛି ଛୁଁଇଲେ ନାହିଁ। କାରଣ ତାଙ୍କ ଦାନ୍ତ ବିନ୍ଧୁଥିଲା। ତେଣୁ ସେ କିଛି ଉଷୁମ ଜଳ ଦରକାର କରିବାରୁ ବଙ୍ଗଳାରେ ଗରମ ଜଳ କରି ଯୋଗାଇ ଦିଆଗଲା। ସେ ୩/୪ ଥର କୁଳି କଲା ପରେ ଆଶ୍ୱସ୍ତ ହୋଇ ସ୍କୁଲକୁ ଯିବା ପାଇଁ କହିଲେ। ସ୍କୁଲକୁ ଆସି ପରିଦର୍ଶନ ଖାତାରେ ମତବ୍ୟ ଦେଇ ବରଗଡ଼ରୁ ବଲାଙ୍ଗୀର ଅଭିମୁଖେ ଯାତ୍ରା କଲେ।

ଜଣେ ଶିକ୍ଷକ...

ଏହିପରି ଭାବରେ ଉପରିସ୍ଥ କର୍ମଚାରୀଙ୍କ ପାଇଁ ଅତିଥିଚର୍ଚ୍ଚା ଏକ ନିତିଦିନିଆ ଘଟଣାରେ ପରିଣତ ହୋଇଥିଲା । ବିଶେଷ କରି ମଣ୍ଡଳାଧୀଶଗଣ ପରିଦର୍ଶନରେ ଆସିଲେ ତାଙ୍କର ଖାଇବା ପାଇଁ ବ୍ୟବସ୍ଥା ପ୍ରାୟ ଘରେ କରିବାକୁ ହେଉଥିଲା କାରଣ ସେମାନେ ହୋଟେଲ ଖାନାକୁ ନାପସନ୍ଦ କରୁଥିଲେ । ଆଉ ମଧ କେତେକ ମଣ୍ଡଳାଧୀଶଙ୍କ ସହ ଘରୋଇ ସମ୍ପର୍କ ଓ ବ୍ୟକ୍ତିଗତ ବନ୍ଧୁତା ଥିଲା । ତେଣୁ ତାଙ୍କ ଆତିଥ୍ୟ ପାଇଁ ବିଶେଷ ପ୍ରସ୍ତୁତି ଦରକାର ପଡୁଥିଲା । ହେଲେହେଁ ଘରେ ସ୍ତ୍ରୀଙ୍କ ଉପରେ କୁଟୁମ୍ବ ଜଞ୍ଜାଳ, ବନ୍ଧୁବାନ୍ଧବ ଚର୍ଚ୍ଚା, ରୋଗୀସେବା ଓ ତଦୁପରି ଉପରିସ୍ଥ କର୍ମଚାରୀଙ୍କ ପାଇଁ ଖାଦ୍ୟପେୟର ବ୍ୟବସ୍ଥା ପ୍ରାୟ ଦାୟିତ୍ୱପୂର୍ଣ୍ଣ ରୂପେ ସମ୍ପାଦନ କରିବାକୁ ପଡୁଥିଲା । ଅବଶ୍ୟ ଏହା ଆମ ଘରର ଓ ବଂଶର ଏକ ଖାନଦାନୀ ଚଳଣୀ ଯାହାକି ମୋର ବାପାଅଜାଙ୍କ ଅମଳରୁ ଚଳି ଆସୁଥିଲା । ମୋ ବେଳକୁ ବା ନ ହୁଅନ୍ତା କିପରି ?

ବରଗଡ଼ ରହଣୀ କାଳରେ ମୋର ଉଚ୍ଚ କର୍ମଚାରୀଙ୍କ ମଧ୍ୟରେ ଥିଲେ ପ୍ର. ବୈଦ୍ୟନାଥ ରଥ, ସର୍ବଶ୍ରୀ ଦୀନବନ୍ଧୁ ପାଣିଗ୍ରାହୀ, ଗୌରୀପଦ ତ୍ରିପାଠୀ, ହରିହର ମିଶ୍ର, ଆଦିକନ୍ଦ ନାଏକ, ରାମକୃଷ୍ଣ ମିଶ୍ର, ମନମୋହନ ପଟ୍ଟନାଏକ ଓ ରାଧାକାନ୍ତ ମିଶ୍ର । ଏମାନେ ସମସ୍ତେ ମୋର ବ୍ୟବହାର, କାର୍ଯ୍ୟଦକ୍ଷତା, ଦାୟିତ୍ୱପୂର୍ଣ୍ଣ ପରିଚାଳନା ଓ ସାଂଗଠନିକ ଦକ୍ଷତା ପାଇଁ ମୋ ଉପରେ ସନ୍ତୁଷ୍ଟ ଥିଲେ । ମୋର ଏ ସୁବ୍ୟବହାର ଓ ଉତ୍ତମ ବିଭାଗୀୟ ସମ୍ବନ୍ଧ ପାଇଁ ଅନେକଙ୍କ ଗାତ୍ରଦାହ ହେଉଥିଲା, କିନ୍ତୁ ମୁଁହରେ କେହି କିଛି କହି ପାରୁ ନ ଥିଲେ । ଏ ମଧ୍ୟରେ School Directorate ଅଲଗା ହେବାରୁ Prof. Dr. D.C. Mishra School D.P.I ଭାବେ ଆସି ସ୍କୁଲର ପରିଚାଳନା ଓ ବାତାବରଣ ଦେଖି ସନ୍ତୋଷ ପ୍ରକାଶ କରିଥିଲେ ।

## ବିଦ୍ୟାଳୟରେ ପରିଚାଳନାଗତ ଶୃଙ୍ଖଳା ଓ ସଂସ୍କାର :

ମୁଁ ପ୍ରଧାନ ଶିକ୍ଷକ ଥିବା ସମୟରେ ଶ୍ରେଣୀ ପାଠଦାନରେ ନିତ୍ୟ ନୈମିତ୍ତିକ ଶୃଙ୍ଖଳା ଭିନ୍ନ ଅନ୍ୟ କେତେକ ସଂସ୍କାରମୂଳକ ପନ୍ଥା ପ୍ରଣୟନ କରା ଯାଇଥିଲା । ସେ ଗୁଡ଼ିକ ମଧ୍ୟରେ ସ୍କୁଲ ସମୟ ପରେ ଅଧିକା ସମୟ ପାଠ ପଢ଼ାଇବା, ଅବକାଶ ସମୟରେ ଛାତ୍ରମାନଙ୍କ ସମୟର ସଦୁପଯୋଗ ପାଇଁ Holiday Task ପ୍ରଦାନ, ଗ୍ରୀଷ୍ମାବକାଶ ଓ ଦଶହରା ଛୁଟିରେ ଏକାଦଶ ଶ୍ରେଣୀ (ସର୍ବୋଚ୍ଚ) ଶ୍ରେଣୀର ଛାତ୍ରଙ୍କୁ Extra Classରେ ନିୟୋଜିତ କରିବା, ଏକାଦଶ ଶ୍ରେଣୀରେ Pretest, Test ପରୀକ୍ଷା ଛଡ଼ା Periodical ପରୀକ୍ଷାର ପ୍ରଚଳନ ଓ Periodical

Examରେ Objective Type ପ୍ରଶ୍ନର ପ୍ରୟୋଗ ତହିଁରେ ଆବଶ୍ୟକ ହେଲେ ପୁସ୍ତକ ଦେଖି ଉତ୍ତର ପ୍ରଦାନର ସୁଯୋଗ ପ୍ରଦାନ ଓ ବିନା ନିରୀକ୍ଷକ Invigilatorରେ ପରୀକ୍ଷା ପ୍ରଚଳନ। ପରୀକ୍ଷା ପ୍ରାୟ ସକାଳ ୭ଟାରୁ ୯ଟା ଭିତରେ ସାରି ଦେଇ ପୁଣି ସାଢ଼େ ୧୦ଟାରୁ ସ୍କୁଲ ପଢ଼ା ଚାଲୁ ରଖା ଯାଉଥିଲା।

ପୁଣି Test ପରୀକ୍ଷା ପରେ ପରୀକ୍ଷାର୍ଥୀମାନଙ୍କୁ ନିୟମିତ ଲେଖା ଅଭ୍ୟାସ କରିବାକୁ ଉପଦେଶ ପ୍ରଦାନ ମୁଖ୍ୟ ଥିଲା। ଗ୍ରୀଷ୍ମାବକାଶରେ Holiday Task କରି ଆଣି ନ ଥିଲେ ସ୍କୁଲ ଖୋଲିବା ଦିନ ପୁଣି ନିମ୍ନ ଶ୍ରେଣୀକୁ ଖସାଇ ଦେବାର ଭୟ ସମସ୍ତଙ୍କୁ କର୍ମପ୍ରବଣ କରୁଥିଲା। ଏ ସବୁ କାରଣରୁ ସ୍କୁଲର ବାର୍ଷିକ ପରୀକ୍ଷା ଫଳ ସନ୍ତୋଷଜନକ ହେଉଥିଲା ଓ ରାଜ୍ୟରେ ମାଧମିକ ବୋର୍ଡ ପରୀକ୍ଷାରେ ପ୍ରଥମ ଦଶ ଜଣଙ୍କ ମଧରେ ସ୍ଥାନ ରଖି ସ୍କୁଲର ଗୌରବ ବର୍ଦ୍ଧନ କରୁଥିଲେ।

ସ୍କୁଲରେ ପ୍ରତି ଶ୍ରେଣୀରେ ଶନିବାର ଦିନ ତର୍କସଭା କରାଯାଇ ଛାତ୍ରମାନଙ୍କ ଭାଷଣ ଶକ୍ତି ବୃଦ୍ଧି ଓ ନିର୍ଭୀକ ହେବାକୁ ସୁଯୋଗ ଦିଆ ଯାଉଥିଲା। ପ୍ରତି ବର୍ଷ ଶୀତକାଳରେ ବିଭିନ୍ନ ଶ୍ରେଣୀ ତରଫରୁ ବରଗଡ଼ ନିକଟବର୍ତ୍ତୀ ନଦୀକୂଳରେ ବଣଭୋଜୀ ହେଉଥିଲା ଓ ଶିକ୍ଷକମାନେ ସେଥିରେ ଯୋଗ ଦେଉଥିଲେ। ଏକାଦଶ ଶ୍ରେଣୀ ଓ N.C.C ଛାତ୍ରମାନେ ବରଗଡ଼ରୁ ୨୦/୩୦ କି.ମି. ଦୂରରେ ଏପରି ବଣଭୋଜୀର ଆୟୋଜନ କରି ନିଜ ନିଜର ବିଭିନ୍ନ ସୁଗୁଣର ପରିଚୟ ଦେବାକୁ ସୁଯୋଗ ପାଉଥିଲେ।

ଆଉ ମଧ ଛାତ୍ରମାନଙ୍କ ଶିକ୍ଷାସ୍ତରର ମାନବୃଦ୍ଧି ଓ ନିରାଡମ୍ବର ହେବା ପାଇଁ ସ୍କୁଲ ପୋଷାକ, ପ୍ରାର୍ଥନା, ଶୃଙ୍ଖଳା ଓ ସଫା ସୁତୁରା ପାଇଁ ପୁରସ୍କାର ପ୍ରଦାନ କରି ଛାତ୍ରମାନଙ୍କ ବିଭିନ୍ନ ଗୁଣାତ୍ମକ ବିକାଶର ସୁଯୋଗ ଦିଆ ଯାଉଥିଲା। ଲମ୍ବା ବାଳ ମୁଣ୍ଡରେ ରଖିବାକୁ ନିଷେଧ କରା ଯାଉଥିଲା। କେହି ଅମାନ୍ୟ କଲେ ସ୍କୁଲକୁ ବାରିକ ଡକାଇ ଛାତ୍ରମାନଙ୍କ କେଶ କର୍ତ୍ତନ କରା ଯାଉଥିଲା। ଏପରିକି ଛାତ୍ରମାନେ କମିଜର ବଟନ୍‌ଗୁଡ଼ିକ ଠିକ୍ ଭାବରେ ଲଗାଇବାକୁ ନିର୍ଦ୍ଦେଶ ଦିଆ ଯାଉଥିଲା। ଏହାର ସୁପ୍ରଭାବ ଏବେ ମଧ ବୟସ୍କ ଛାତ୍ରମାନଙ୍କ ଉପରେ ପଡୁଛି ଓ ସେମାନେ ମୋତେ ଦେଖିଲେ ସେମାନଙ୍କ ହାତ କାମିଜର ବଟନ୍‌ମାନଙ୍କ ନିକଟକୁ ଚାଲି ଯାଏ। ୧୯୭୦ ସାଲ ପରେ ପରୀକ୍ଷାରେ ସଂସ୍କାର ଆଣିବା ପାଇଁ ଓ ଘରୋଇ ପାଠପଢ଼ାରୁ ବିରତ ହେବା ପାଇଁ ଏକ ଅଭିନବ ପନ୍ଥାର ଉଦ୍ଭବ କରା ଯାଇଥିଲା। ଅର୍ଥାତ୍ Question Bank Systemର ପ୍ରଚଳନ କରାଗଲା। ଅର୍ଥାତ୍ ପରୀକ୍ଷାର ପ୍ରାୟ ମାସକ ପୂର୍ବରୁ ପ୍ରତ୍ୟେକ ବିଷୟରେ ପଠିତ ଅଂଶରୁ ପ୍ରାୟ ୧୫/୨୦ଟା ପ୍ରଶ୍ନ

ଡାକି ଦିଆ ଯାଉଥିଲା। ସେହି ସବୁ ପ୍ରଶ୍ନ ପତ୍ରରେ ଛପାଯାଇ ପରୀକ୍ଷାର ପ୍ରାୟ ୧୦ ମିନିଟ ପୂର୍ବରୁ ପ୍ରତ୍ୟେକ ଶ୍ରେଣୀର ଛାତ୍ର ପ୍ରତିନିଧିମାନେ ଅଫିସକୁ ଆସି ଆବଶ୍ୟକୀୟ ସଂଖ୍ୟକ ପ୍ରଶ୍ନଗୁଡ଼ିକର ନିର୍ଦ୍ଧାରଣ ଲଟେରୀ ସାହାଯ୍ୟରେ ବାହାର କରୁଥିଲେ ଓ ତାହା ସବୁ ଶ୍ରେଣୀରେ ଛାତ୍ରମାନଙ୍କୁ ଜଣାଇ ଦିଆ ଯାଉଥିଲା। ଫଳରେ ପରୀକ୍ଷାରେ ଆଉ ନକଲ କରିବାକୁ ନିବୃତ୍ତ ରହୁଥିଲେ ଓ ମନ ଦେଇ ପଢୁଥିଲେ। ଅବଶ୍ୟ ଏଥିରେ ଶିକ୍ଷକମାନେ ପ୍ରଥମେ ଅସନ୍ତୁଷ୍ଟ ଥିଲେ କିନ୍ତୁ ପରେ ତାର ମହତ୍ୱ ବୁଝି ପାରି ତାକୁ ଗ୍ରହଣ କରିନେଲେ।

ଏପରି ଅନେକ ପ୍ରକାର ସଂସ୍କାରମୂଳକ ନୂତନ ଚିନ୍ତାଧାରାର ପରୀକ୍ଷା ନିରୀକ୍ଷା ସ୍କୁଲର ପାଠ୍ୟଦାନ ଓ ପରୀକ୍ଷା ପଦ୍ଧତିର ପ୍ରଚଳନ କରି ନାନା ସୁଫଳ ମିଳିଥିଲା। ତଥାପି ୧୯୬୫ ସାଲ ବୋର୍ଡ ବାର୍ଷିକ ପରୀକ୍ଷାଫଳ ନିହାତି ଅସନ୍ତୋଷଜନକ ଅର୍ଥାତ୍ ୩୫%ରୁ ମଧ କମ୍ ହେବାରୁ ଜନସାଧାରଣ ତଥା ବିଭାଗୀୟ କର୍ମଗ୍ରରୀମାନେ ଅସନ୍ତୋଷ ପ୍ରକାଶ କରିଥିଲେ। ସ୍କୁଲର ବିପକ୍ଷ ଦଳର ଲୋକେ ନାନା କୁତ୍ସାରଟନା କରିବାକୁ ଲାଗିଲେ। ବିଶେଷ କରି ବ୍ୟକ୍ତିଗତ ଆକ୍ରୋଶ ଜନିତ କ୍ରୋଧ ହେତୁ। ଶେଷରେ ମଣ୍ଡଳାଧୀଶ ସ୍କୁଲ ପରିଦର୍ଶନ କରି Test ପରୀକ୍ଷାର ଛାତ୍ରମାନଙ୍କ ଖାତାଗୁଡ଼ିକ ତନଖି କରି ଜାଣି ପାରିଲେ ଯେ ସେହି ବର୍ଷର ଛାତ୍ରମାନଙ୍କ ମାନ ଅପେକ୍ଷାକୃତ ଦୁର୍ବଳ ଥିଲା। ତଥାପି ମୋତେ ପ୍ରଧାନ ଶିକ୍ଷକ ରୂପେ ଆଗରୁ ସଜାଗ ରହିବା ଉଚିତ ଥିଲା ବୋଲି ମନ୍ତବ୍ୟ ଦେଲେ। ସେତେବେଳକୁ ସ୍କୁଲର ବାର୍ଷିକ ପରୀକ୍ଷା ଗ୍ଲଲି ଥାଏ ଓ ଫଳ ପ୍ରକାଶିତ ହେବାକୁ ଥାଏ। ତତ୍କାଳୀନ ମଣ୍ଡଳାଧୀଶ ଶ୍ରୀ ଗୌରୀପଦ ତ୍ରିପାଠୀ ଏକ ସୁଦକ୍ଷ ପ୍ରଧାନ ଶିକ୍ଷକ ହିସାବରେ ପ୍ରସ୍ତାବ ଦେଲେ ଯେ ଆଗାମୀ ବାର୍ଷିକ ପରୀକ୍ଷା ଟିକିଏ କଡ଼ାକଡ଼ି ଭାବେ ପ୍ରକାଶ କରିବେ ଯେପରିକି ପରବର୍ତ୍ତୀ ସ୍କୁଲର ମେଟ୍ରିକ ପରୀକ୍ଷାଫଳ ସନ୍ତୋଷଜନକ ହେବ। ଏହା ପରେ ସେ ଗ୍ଲଲି ଗଲେ। ଏ ବିଷୟରେ ମୁଁ ମୋର ଅନ୍ତରଙ୍ଗ କେତେକ ଶିକ୍ଷକଙ୍କୁ ଡାକି ମଣ୍ଡଳାଧୀଶଙ୍କ ପ୍ରସ୍ତାବ ଶୁଣାଇ ଦେଲି।

ବାର୍ଷିକ ପରୀକ୍ଷାର ଖାତା ଦେଖା ସରିଲା। ମାର୍କ ସବୁ ପିଲାଙ୍କର ଚଢ଼ିଲା। ଯେତେବେଳେ ବିଗ୍ଳର ପାଇଁ ସମୟ ଆସିଲା, ମୁଁ ଓ ଆଉ କେତେକ ଶିକ୍ଷକ ଅଡ଼ି ବସିଲୁଁ ଯେ ଏଥର ଯେଉଁମାନେ ସବୁ ବିଷୟରେ ପାସ କରିଛନ୍ତି ତାଙ୍କୁ କେବଳ ଉପର ଶ୍ରେଣୀକୁ ଉତ୍ତୀର୍ଣ୍ଣ କରାଯାଉ। ଏହା ଶୁଣିଲା ମାତ୍ରେ ଶିକ୍ଷକଗଣ ଅତି ତୀବ୍ର ଭାବେ ପ୍ରତିବାଦ କଲେ ଓ ଏପରି କଲେ ଘୋର ଆପତ୍ତି ଓ ବିଶୃଙ୍ଖଳା ଘଟିବ। ମୁଁ ସମସ୍ତଙ୍କ ମତାମତ ଶୁଣିଲା ପରେ ଦୃଢ଼ ଭାବରେ ଘୋଷଣା କଲି ଯେ ଉପରୋକ୍ତ

ପ୍ରସ୍ତାବକୁ ଗ୍ରହଣ କରାଯାଉ ଓ ବାକୀ ଅକୃତକାର୍ଯ୍ୟ ହେଉଥିବା ଛାତ୍ରଙ୍କୁ ପୁଣି ଥରେ ଜୁନ୍ ମାସରେ ପରୀକ୍ଷା କରାଯାଇ ଫଳ ଖରା ଛୁଟି ପରେ ସ୍କୁଲ ଖୋଲିବା ଦିନ ପ୍ରକାଶ କରାଯିବ । ଏ ବିଷୟ ତ ଆଗରୁ କେତେକ ଶିକ୍ଷକ ଜାଣିଥିଲେ, ବାକୀମାନେ ଛୁଟି ଭିତରେ ଅସମ୍ଭବ ବୋଲି ଆପତ୍ତି କରିବାରୁ ମୁଁ କହିଲି ଛାତ୍ରମାନଙ୍କ ଉନ୍ନତି ପାଇଁ ଥରେ ଛୁଟିର କିଛି ଦିନ ବ୍ୟୟ କରାଗଲେ ଶିକ୍ଷକମାନଙ୍କ ପାଇଁ କିଛି କ୍ଷତି ହେବ ନାହିଁ। ବରଂ ଏହା ଛାତ୍ର ଓ ଅଭିଭାବକମାନଙ୍କୁ ଉତ୍ସାହ ଓ ଆଶ୍ୱାସନା ଯୋଗାଇବ। ଯେଉଁମାନେ ଦୁର୍ବଳ ଛାତ୍ର ଛୁଟିରେ ପୁଣି ଥରେ ପଢ଼ିଥିବା ପାଠକୁ ପୁନରାଲୋଚନା କରି ଆଗାମୀ ପରୀକ୍ଷା ପ୍ରତି ସଜାଗ ଓ ପ୍ରସ୍ତୁତ ହେବେ । ଶେଷରେ ବହୁତ ତର୍କ ବିତର୍କ ଓ ବିଗ୍ଭର ବିମର୍ଷ ପରେ କେତେ ଜଣଙ୍କ ଅନିଚ୍ଛା ସତ୍ତ୍ୱେ ଏହି ପ୍ରସ୍ତାବ ଗୃହୀତ ହୋଇ ଶିକ୍ଷକ ସଂଘ ଖାତାରେ ଲିପିବଦ୍ଧ କରାଗଲା ଓ ସମସ୍ତଙ୍କୁ ସେଥିରେ ଦସ୍ତଖତ ଦେବାକୁ କୁହାଗଲା । ସେମାନେ ବାଧ ହୋଇ ଦସ୍ତଖତ କଲେ । କିନ୍ତୁ କଥା ହେଲା ବହୁତ ଛାତ୍ର ଅକୃତକାର୍ଯ୍ୟ ହୋଇ ଥିବାରୁ ସେମାନଙ୍କ ପରୀକ୍ଷା ପାଇଁ କାଗଜ ଓ ପ୍ରଶ୍ନପତ୍ର ପାଇଁ ଖର୍ଚ୍ଚ ଓ ଲୋକବାକ ଦରକାର । ଖର୍ଚ୍ଚ ଯାହା ହେବ ପରେ ବିଗ୍ଭର କରିବା କିନ୍ତୁ ପରୀକ୍ଷା ଓ ପ୍ରଶ୍ନପତ୍ର ପାଇଁ ଶିକ୍ଷକମାନେ ଦାୟିତ୍ୱ ନେଇ ଶୀଘ୍ର ଯୋଗାଇଲେ ତାର ଲିଥୁ କାମ କରାଯିବ। ଯେଉଁମାନେ ସାଧାରଣତଃ ଅଳସୁଆ ଓ କର୍ମଭୀରୁ ଏକ ଗୋଳମାଳିଆ ପରିସ୍ଥିତି ସୃଷ୍ଟି କରାଯାଇ ପାରିବ ସେହି ଆଳରେ କେତେଜଣ ପ୍ରସ୍ତାବ ଦେଲେ ଯେ ୨ୟ ପରୀକ୍ଷା ପାଇଁ ପ୍ରଶ୍ନ ତିଆରି ଆଦି କାମ ହେ.ମା. ନିଜେ କରନ୍ତୁ । ତହିଁରେ ଗୋପନୀୟ ଓ ସୁବିଗ୍ଭର ହୋଇ ପାରିବ। କାରଣ ସେମାନେ ବୁଝିଥିଲେ ଏପରି ପ୍ରସ୍ତାବରେ ହୁଏତ ପ୍ରଧାନ ଶିକ୍ଷକ ରାଜି ହେବେ ନାହିଁ କିମ୍ବା ନିଜେ ଏକାକୀ କରିପାରିବେ ନାହିଁ। ଏହା ଥିଲା ତାଙ୍କର ଗୁପ୍ତ ଉଦ୍ଦେଶ୍ୟ ଓ challange। ମୁଁ ଭଗବାନଙ୍କୁ ସ୍ମରଣ କରି ତାଙ୍କ ପ୍ରସ୍ତାବରେ ରାଜି ହୋଇ ଗଲି । ପରବର୍ତ୍ତୀ ଜୁନ ମାସ ୧ ତାରିଖରୁ ସମସ୍ତ ଅକୃତକାର୍ଯ୍ୟ ପିଲାମାନଙ୍କ ପରୀକ୍ଷା ହେବ। ଶିକ୍ଷକମାନେ ଆସି ପରୀକ୍ଷା ପରିଗ୍ଭଳନା କରି ଖାତା ସଂଶୋଧନ କରି ୧୫/୬ ମଧ୍ୟରେ ଦାଖଲ କଲେ ତାର ଅନ୍ୟାନ୍ୟ କାର୍ଯ୍ୟ କରାଯାଇ ଖରାଛୁଟି ପରେ ବିଦ୍ୟାଳୟ ଖୋଲିବା ଦିନ ଫଳ ପ୍ରକାଶ ପାଇବ। ଏଥିରେ ସମସ୍ତେ ରାଜି ହେଲେ । ତା ପରେ ସ୍କୁଲର ଶ୍ରେଣୀ ଫଳାଫଳ ଉପର୍ଯ୍ୟୁକ୍ତ ପ୍ରସ୍ତାବ ଅନୁଯାୟୀ ପ୍ରକାଶ କରାଯାଇ ଦ୍ୱିତୀୟ ପରୀକ୍ଷା ପାଇଁ ମଧ୍ୟ ଦିନ ଓ କାର୍ଯ୍ୟକ୍ରମ ଘୋଷଣା କରାଗଲା । ବିଦ୍ୟାଳୟ ଗ୍ରୀଷ୍ମାବକାଶ ପାଇଁ ବନ୍ଦ ରହିଲା ଓ ଏହି ପ୍ରସ୍ତାବର ନକଲଟିଏ ଶିକ୍ଷା ମଣ୍ଡଳାଧୀଶଙ୍କ ପାଖକୁ ପଠାଇ ଦେଲି। ଏହା ପାଇବା ପରେ ପ୍ରସ୍ତାବକୁ ସ୍ୱାଗତ କରି ପ୍ରଶଂସା କଲେ।

ଗ୍ରୀଷ୍ମଛୁଟି ଆରମ୍ଭ ହେଲା, ଶିକ୍ଷକମାନେ ଛୁଟି ମନାଇଲେ ଓ ପରୀକ୍ଷା କିପରି ହେବ ମଜା ଦେଖିବା ପାଇଁ ଟାକିଲେ। ମୁଁ ମଧ ନିଜକୁ ସଂଯତ କରି ପରୀକ୍ଷା ପାଇଁ ପ୍ରଶ୍ନ ତିଆରି ଚିନ୍ତାରେ ରହିଲି। କାରଣ ମୋତେ ୬ଷ୍ଠ ଶ୍ରେଣୀରୁ ଦଶମ ଶ୍ରେଣୀ ସଂସ୍କୃତ, ହିନ୍ଦୀ ସହ ସବୁ ବିଷୟର ପ୍ରଶ୍ନ ପ୍ରସ୍ତୁତ କରିବାକୁ ପଡ଼ିଲା। କ୍ରମେ କ୍ରମେ ପୁସ୍ତକପତ୍ର ଓ ଟେଷ୍ଟ ପେପର ସଂଗ୍ରହ କରି ପ୍ରଶ୍ନପତ୍ରର ଟିପାଟିପ୍ପଣୀ କରିବାକୁ ଲାଗିଲି। ଆମ ଲିଥୁ ମେସିନ୍‌ଟି ଠିକ୍ ଚ୍ଛଲୁ ଅବସ୍ଥାରେ ଥିବାରୁ ପରୀକ୍ଷାର ୨/୩ ଦିନ ପୂର୍ବରୁ ପ୍ରଶ୍ନଗୁଡ଼ିକ ଷ୍ଟେନସିଲରେ ଲେଖି ସାଇତି ରଖିଲି ଓ ପରୀକ୍ଷାର ପୂର୍ବଦିନ ସେସବୁ ଉଠାଇଲି। ପରୀକ୍ଷା ପାଇଁ ସ୍ଥାନ ସଜା ଆଦି ଶିକ୍ଷକମାନେ ଆସି କଲେ ଓ ଠିକ୍ ସମୟରେ ପରୀକ୍ଷା କରାଯାଇ ଶେଷରେ ପରୀକ୍ଷା ଖାତା ଗୁଡ଼ିକ ଶିକ୍ଷକମାନଙ୍କୁ ଦେଖିବା ପାଇଁ ଦିଆଗଲା। ସୁରୁଖୁରୁରେ ପରୀକ୍ଷାଟି କେବଳ ଜଣକ ଦ୍ୱାରା ପ୍ରଶ୍ନ ତିଆରି, ଲେଖା ଓ ପ୍ରସ୍ତୁତି ପାଇଁ ଶିକ୍ଷକମାନଙ୍କ ମନ୍ଦ ଉଦ୍ଦେଶ୍ୟର କୁଫଳ ଦୂରୀଭୂତ ହେଲା ଓ ତାଙ୍କର ମୋ ପ୍ରତି ସମ୍ମାନ ବଢ଼ିଗଲା। ପ୍ରାୟ ୧୫ ଦିନ ପରେ ସବୁ ପିଲାଙ୍କର ମାର୍କ ଆଣି ଟେବୁଲେସନ କରି ଫଳ ନିର୍ଣ୍ଣୟ ପାଇଁ ଶିକ୍ଷକମାନଙ୍କ ବୈଠକ ଡକା ଗଲା। ପିଲାଙ୍କର ଉନ୍ନତି ଦେଖି ସମସ୍ତେ ସନ୍ତୋଷ ପ୍ରକାଶ କଲେ। ମୋଟ ଉପରେ ଶ୍ରେଣୀମାନଙ୍କ ଛାତ୍ରଙ୍କ ପାସ ସଂଖ୍ୟା ୮୦% ରୁ ୮୫% ହେଲା ଓ ସ୍କୁଲ ଖୋଲିବା ଦିନ ଫଳ ବାହାର କରିବାରୁ ନୂତନ ଭାବେ ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରମାନେ ତାଙ୍କ ବନ୍ଧୁଙ୍କ ସଙ୍ଗେ ଆନନ୍ଦିତ ହେଲେ। ଏପରି ଭାବେ ଏକ ସ୍କୁଲ ଗୃହରେ ଝଡ଼ ଝଞ୍ଜାର ଅବସାନ ହେଲା। ଶିକ୍ଷକମାନଙ୍କ ଅହମିକା ଫିକା ପଡ଼ିଲା।

ଏହି ସମୟରେ ସ୍କୁଲରେ N.C.C. ଓ A.C.C. ଶାଖା ଆରମ୍ଭ ହୋଇ Cadet ମାନେ ବିଭିନ୍ନ କେମ୍ପମାନଙ୍କରେ ଯୋଗ ଦେଇ ଗୌରବ ଅର୍ଜନ କରିଥିଲେ। ଏହି ସଂସ୍ଥା ପାଇଁ ସ୍କୁଲର ଶିକ୍ଷକମାନେ ତାଲିମ ପାଇଁ କେଡେଟମାନଙ୍କୁ ସପ୍ତାହରେ ୩ ଥର ଶିକ୍ଷା ଦିଆ ଯାଉଥିଲା। ଏଥି ପାଇଁ ଶିକ୍ଷକମାନେ କିଛି ଭତ୍ତା ମାସକୁ ପାଉଥିଲେ।

ପ୍ରସଙ୍ଗକ୍ରମେ ଆଉ ଏକ ବ୍ୟକ୍ତିଗତ ଉନ୍ନତି ବିଷୟ ବର୍ଣ୍ଣନା କରା ଯାଇପାରେ। ଯେଉଁ ବର୍ଷ ହେ.ମା. ଦାୟିତ୍ୱରେ ରହିଲି ସେ ବର୍ଷ ଅର୍ଥାତ୍ ୧୯୫୭ରେ ମୋ ପକ୍ଷେ ଏକ ଉନ୍ନତିର ବର୍ଷ। ମୋଠାରେ ନିଜର ସାଇକଲ ନ ଥିଲା, ତେଣୁ ଟ ୧୫୦ରେ ଏକ English Raleigh ସାଇକଲ କିଣିଲି। ଅନ୍ୟ ବନ୍ଧୁମାନଙ୍କ ପରାମର୍ଶକ୍ରମେ ବର୍ତ୍ତମାନ ରହୁଥିବା ଘରଡିହ ୮ ଡିସମିଲ ଟ.୨୦୦ରେ କିଣାଗଲା ଓ ସେହି ବର୍ଷ ଏକ ବେଟେରୀ ଚ୍ଛଳିତ ରେଡିଓ ମଧ ଧାର ସୂତ୍ରରେ କିଣି ଧୀରେ ଧୀରେ ତାର ମୂଲ୍ୟ ପରିଶୋଧ କରିଥିଲି।

୧୯୬୪-୬୫ ପିତାଙ୍କ ଜୀବିତାବସ୍ଥାରେ ନିଜେ ଏକ ଲକ୍ଷ ଇଟାଭାଟି ପୋଡ଼ାଇ ସେହି ବର୍ଷ ଘର ତିଆରି ପାଇଁ ରଖି ବାକି ସବୁ ବିକ୍ରି କରାଗଲା। ୧୯୬୫ରେ କୌଣସି ପ୍ରକାରେ ଏକ ଘର ତିଆରି କରିବା ଆରମ୍ଭ କରି ୨୬-୧-୬୬ ପୂର୍ବରୁ ତାକୁ ବାସୋପଯୋଗୀ କରି ବାପା ଓ ମାଙ୍କ ଦ୍ୱାରା ପ୍ରତିଷ୍ଠା କରାଇ ଉପରୋକ୍ତ ଦିନରୁ ସରକାରୀ P.H.D. ଅଫିସ ସକାଶେ ମାସକୁ ଟ.୧୫୦ରେ ଭଡ଼ା ଦେଲି। ସେମାନେ ଧୀରେ ଧୀରେ ସମୟ ଅନୁକ୍ରମେ ଭଡ଼ା ବୃଦ୍ଧି କରି ଟ.୨୨୩ କରି ମାସକୁ ଦେଲେ ଓ ତାଙ୍କର ନିଜର ସରକାରୀ ଅଫିସଘର ତିଆରି ହେବାରୁ ସେମାନେ ୨୯-୪-୭୯ରେ ଆମ ଘର ଛାଡ଼ି ଦେଲେ। ଏପରି ଭାବେ ୧୩ ବର୍ଷ ଧରି ପ୍ରାୟ ଟ.୨୫୦୦୦ ସରକାରଙ୍କଠାରୁ ପାଇଥିଲୁ। ପ୍ରାୟ ଘର ତିଆରି ଖର୍ଚ୍ଚଟି ଆପେ ଆପେ ମିଳିଗଲା।

ଆଉ ମଧ୍ୟ ଉଲ୍ଲେଖନୀୟ ଘଟଣା ମଧ୍ୟରେ ମୋର ପୁଅଝିଅମାନେ ଭଲ ପଢୁଥିବାରୁ ପ୍ରାୟ ସବୁବେଳେ ଶ୍ରେଣୀରେ ଶୀର୍ଷସ୍ଥାନ ଅଧିକାର କରି ଭିନ୍ନ ଭିନ୍ନ ବୃତ୍ତି ପାଉଥିଲେ। ତେଣୁ ତାଙ୍କ ପଢ଼ିବା ପାଇଁ ମୋତେ ବେଶୀ ଖର୍ଚ୍ଚ ପଡୁ ନ ଥିଲା। ବଡ଼ ପୁଅ ପ୍ରଦୀପ୍ତ ବରଗଡ଼ କଲେଜ ଶିକ୍ଷା ସାରି ବିଶ୍ୱବିଦ୍ୟାଳୟରେ M.A. ପଢ଼ିବାକୁ ଯାଇ ତା ସଙ୍ଗେ ସମ୍ବଲପୁର ଆଇନ କଲେଜରେ ଆଇନ ପଢ଼ିଲା। ସେଠାରେ ପଢ଼ିବା ବେଳେ ମୋର ହିତୈଷୀ ବନ୍ଧୁ ୰ ମନମୋହନ ପଟ୍ଟନାଏକ ଅବସର ନେଇ ଗୋଟିଏ ଭଡ଼ାଘରେ ରହୁଥିଲେ। ତେଣୁ ତାଙ୍କ ସଙ୍ଗେ ରହି ପ୍ରଦୀପ୍ତ ଇତିହାସରେ ଏମ.ଏ. ଓ L.L.B. ପଢ଼ି ପାସ କଲା। ଏମ.ଏ.ରେ ୫୯% ପାଇ ୨ୟ ଶ୍ରେଣୀ ହେଲା। ତାପରେ ସେ ଓକିଲାତି Licence ଆଣି ଓକିଲାତି ଅରମ୍ଭ କଲା ସୁନାମୀ ଓକିଲ ବାଳକୃଷ୍ଣ ବାବୁଙ୍କ ଅଫିସରେ ୧୯୭୪ରୁ।

ଏ ମଧ୍ୟରେ ମୋର ବରଗଡ଼ରେ ରହଣୀ ହେ.ମା. ଭାବେ ୧୮ ବର୍ଷ ସରକାରୀ ଭାବେ ୬ ବର୍ଷ ଓ ଛାତ୍ର ଭାବେ ୭ ବର୍ଷ କଟାଇ ମୋଟ ପ୍ରାୟ ୩୧ ବର୍ଷ ଅତିବାହିତ ହେଲା। ଏଣୁ ଜର୍ଜ ହାଇସ୍କୁଲ କହିଲେ ତତ୍କାଳୀନ ହେ.ମା. ଓ ହେ.ମା. କହିଲେ ଜର୍ଜ ହାଇସ୍କୁଲ ବୁଝାଉ ଥିଲା ଅର୍ଥାତ୍ A School is a lengthen shadow of the Headmaster ଓ ତାହା ସେତେବେଳେ ପ୍ରତିପାଦିତ ହୋଇଥିଲା ଓ ସରକାରୀ ଓ ବେସରକାରୀ ମହଲରେ ସାରା ଓଡ଼ିଶାରେ ସୁନାମ ଥିଲା। ଏପରିକି ଏ ଅଞ୍ଚଳକୁ କୌଣସି ନୂତନ ଶିକ୍ଷା ବିଭାଗୀୟ କର୍ମଚାରୀ ନୂଆଁ କରି ଆସିଲେ ବା ଏବାଟେ ବଲାଙ୍ଗିର, କଳାହାଣ୍ଡି ଅର୍ଥାତ୍ ପଶ୍ଚିମ ଓଡ଼ିଶାକୁ ଯିବାକୁ ହେଲେ ଆଗରୁ ମୋ ପାଖକୁ ଖବର ଆସି ଯାଉଥିଲା କିମ୍ବା ମୋର ଖବର ନେଇ ମୋଠାରୁ ସାହାଯ୍ୟ ଆଶା କରି ମୋ ସଙ୍ଗେ ସାକ୍ଷାତ କରୁଥିଲେ।

ପ୍ରକାଶ ଥାଉ କି ଏ ମଧ୍ୟରେ ସ୍କୁଲରେ ଓ ହେ.ମା. କ୍ୱାଟର୍ସରେ ଫୋନ ବଦାନ୍ୟ ବ୍ୟକ୍ତିଙ୍କ ଦାନରେ ଲାଗି ସାରିଥିଲା । ତେଣୁ ଖବର ଆଦାନ ପ୍ରଦାନରେ ଅସୁବିଧା ନ ଥିଲା । କହିବାକୁ ଗଲେ ଓଡ଼ିଶାର କୌଣସି ସ୍କୁଲରେ ଓ ହେ.ମା. କ୍ୱାଟର୍ସରେ ଫୋନର ବ୍ୟବସ୍ଥା ଥିବାର ଶୁଣା ନ ଥିଲା । ପୁଣି ଆମ ସ୍କୁଲର ସ୍ୱତନ୍ତ୍ର ବିଶ୍ରାମାଗାର, ସ୍କୁଲରେ ବିଜୁଳି ଯୋଗାଣ ଓ ଜଳ ଯୋଗାଣର ସୁବିଧା ଥିବାରୁ ଉପରିସ୍ଥ କର୍ମଚାରୀଗଣ ରହିବାକୁ ପସନ୍ଦ କରୁଥିଲେ । କାରଣ ବିଶ୍ରାମାଗାରଟି ଆଧୁନିକ ରୁଚିସମ୍ପନ୍ନ ସବୁ ସୁବିଧାରେ ପରିପୂର୍ଣ୍ଣ ଥିଲା । ଓଡ଼ିଶାର କୌଣସି ହାଇସ୍କୁଲରେ ଏପରି ବ୍ୟବସ୍ଥା ଥିବାର ନଜିର ନାହିଁ। ଆମ ସ୍କୁଲର ବିଶେଷତ୍ୱ ଏହି ଯେ ସ୍କୁଲଘର, ଛାତ୍ରାବାସ ଓ ଖେଳ ପଡ଼ିଆ ତଥା ଶିକ୍ଷକଙ୍କ ରହିବା ପାଇଁ ବାସ ଆଦି ଏକ ସ୍ଥଳରେ ଥିବାରୁ ବହୁତ ସୁବିଧାରେ ସବୁ କାମ କରି ହେଉଥିଲା । ତେଣୁ ବାହାରୁ ଆସିଥିବା ଆଗନ୍ତୁକ ବା କର୍ମଚାରୀଗଣ ଏହାକୁ ଇଂଲଣ୍ଡର ସ୍କୁଲ ସଙ୍ଗେ ତୁଳନା କରୁଥାଆନ୍ତି ।

ସ୍କୁଲଘରଟି ୧୯୨୧ରେ ତିଆରି ହୋଇ ପୁରୁଣା ହୋଇ ଥିବାରୁ ବର୍ଷାକାଳରେ ସ୍କୁଲ ଘରେ ଛାତରୁ ପାଣି ପଡୁଥିଲା । ତେଣୁ ୧୯୬୪-୬୫ରେ ସ୍କୁଲର ଉନ୍ନୟନ ପାଣ୍ଠିରୁ ଖର୍ଚ୍ଚ କରି ସ୍କୁଲ ଛାତ ଉପରେ Tarfelt ବିଛାଇ ପାଣି ଗଳିବା ବନ୍ଦ କରା ଯାଇଥିଲା । ପୁଣି ୧୯୭୫ ସାଲରେ ସରକାରୀ ଅନୁଦାନରେ ଟ.୧୫୦୦୦ ବିଦ୍ୟାଳୟ ଓ ଛାତ୍ରାବାସର ଝରକା କବାଟ ଓ ଅନ୍ୟାନ୍ୟ ମରାମତି କାର୍ଯ୍ୟ ଓ ଗୀତା ହଷ୍ଟେଲର ଝରକାମାନଙ୍କରେ Grill ଖଞ୍ଜା ଯାଇଥିଲା । E.M. Hostel ମଧ୍ୟରେ O.B.C. Hostel ତିଆରି , କୋଠରୀମାନଙ୍କର ଚଟାଣ ମରାମତି, Harijan Hostel ତିଆରି ତଥା Science Room ଓ Building ତିଆରି ଏ ସମୟର ଉଲ୍ଲେଖନୀୟ ଘଟଣା ।

୧୯୭୨ ସାଲର X'mas ଛୁଟିରେ ସ୍ଥାନୀୟ ବିଭିନ୍ନ ସ୍କୁଲର ଶିକ୍ଷକ ଓ ଛାତ୍ରଛାତ୍ରୀଙ୍କୁ ନେଇ ଏକ ସ୍ୱତନ୍ତ୍ର ସରକାରୀ ବସରେ Orissa Tour (ଓଡ଼ିଶା ଭ୍ରମଣ)ର ଆୟୋଜନ କରା ଯାଇଥିଲା । ସେତେବେଳେ କଟକ, ପାରାଦୀପ, କୋଣାର୍କ, ଭୁବନେଶ୍ୱର, ନନ୍ଦନକାନନ, ସାକ୍ଷୀଗୋପାଳ ଓ ପୁରୀ ବାଟେ ଚିଲିକା ଦେଇ ବ୍ରହ୍ମପୁର ଯାଇ ବଲାଙ୍ଗୀର ବାଟେ ପ୍ରାୟ ଷଷ୍ଠ ଦିନ ରାତ୍ର ୧୧ଟାରେ ବରଗଡ଼ ଫେରିଲୁଁ । ପ୍ରକାଶ ଥାଉ କି ଏ ସବୁ ସ୍ଥାନରେ ରହିବା ପାଇଁ ଆଗରୁ ଖବର ଓ ଅନୁରୋଧ କରାଯାଇ ସ୍ଥାନ ସଂରକ୍ଷଣ କରାଯାଇ ଥିବାରୁ କୌଣସି ଅସୁବିଧା ହୋଇ ନ ଥିଲା । ଏପରିକି କୋଣାର୍କରେ ପହଞ୍ଚିଲା ବେଳକୁ ପ୍ରାୟ ସନ୍ଧ୍ୟା ୪ଟା ।

ସେତେବେଳେ କୋଣାର୍କ ପାନ୍ଥ ନିବାସର ଦାୟିତ୍ୱରେ ଆମ ବିଦ୍ୟାଳୟର ପୁରାତନ ଛାତ୍ର ଶ୍ରୀ ବିରଞ୍ଚି ମିଶ୍ର ଥିଲେ । ତେଣୁ ସେଠାରେ ପହଞ୍ଚିଲା କ୍ଷଣି ଆମର ରହଣୀ ଓ ଖାଇବାର ବ୍ୟବସ୍ଥା ସଙ୍ଗେ ସଙ୍ଗେ କରିଥିଲେ ଓ ନିଜ ଅଞ୍ଚଳ ପ୍ରତି ତାଙ୍କ ଆନ୍ତରିକତା ପ୍ରଦର୍ଶନର ଚରମ ନିଦର୍ଶନ ଦେଖାଇଥିଲେ । ଓଡ଼ିଶା ଭ୍ରମଣରୁ ଫେରିଲା ପରେ ସମସ୍ତ ଯାତ୍ରୀଙ୍କ ପାଇଁ ମହାପ୍ରସାଦ ଅଣା ଯାଇଥିଲା ଓ ବରଗଡ଼ ଆସି ଫଶୀଦାର ଛାତ୍ରମାନଙ୍କ ମଧ୍ୟରେ ଏକ Quiz ପ୍ରତିଯୋଗିତା କରାଯାଇ ଯୋଗ୍ୟ ଛାତ୍ରଛାତ୍ରୀଙ୍କୁ ପୁରସ୍କୃତ କରା ଯାଇଥିଲା । ଏପରି ଏକ ଆୟୋଜନ ପ୍ରତି ବର୍ଷ କରାଗଲେ ଛାତ୍ରମାନଙ୍କ ଜ୍ଞାନାନୁଭୂତି ପରିସର ବୃଦ୍ଧି ହୁଅନ୍ତା ବୋଲି ମତପ୍ରକାଶ ପାଇଥିଲା ।

ଜର୍ଜ ହାଇସ୍କୁଲ ସମ୍ପର୍କୀୟ ଆଉ କେତେକ ପ୍ରଧାନ ଆବଶ୍ୟକ ବିଷୟରେ ସୂଚନା ଦିଆଗଲା ।

ସ୍ଥାନୀୟ ମେନେଜିଂ କମିଟିର ଜନୈକ ବିଶିଷ୍ଟ ସଦସ୍ୟ ତଥା ସ୍କୁଲର ପୂର୍ବତନ ଛାତ୍ର ତଥା ସ୍କୁଲର ହିତୈଷୀ ଶ୍ରୀ ଦୟାଲାଲ ଯୋଷୀ ସ୍ୱୀୟ ପିତାଙ୍କ ନାମରେ - ଅର୍ଥାତ୍ 'ନର୍ଭେରାମ ଯୋଷୀ ବୃତ୍ତି' ସକାଶେ ଟ.୪୦୦୦ (ଚାରି ହଜାର ଟଙ୍କା) ଦାନ କରି ତାହାର ବାର୍ଷିକ ସୁଦରେ ୭ମ ଶ୍ରେଣୀରୁ ଉତୀର୍ଣ୍ଣ ହୋଇ ଜର୍ଜ ହାଇସ୍କୁଲରେ ଅଧ୍ୟୟନରତ ସର୍ବଶ୍ରେଷ୍ଠ ବିବେଚିତ ଛାତ୍ରକୁ ମାସକୁ ଟ.୫ ହିସାବରେ ଏକ ବର୍ଷ ପର୍ଯ୍ୟନ୍ତ ବୃତ୍ତି ପ୍ରଦାନ କରା ଯାଉଥିଲା ।

ଏହି ସ୍କୁଲର ପୁରାତନ ଛାତ୍ର ଓ କିଛି କାଳ ଶିକ୍ଷକତା କରିଥିବା ତଥା କଟକ କ୍ରାଏଷ୍ଟ କଲେଜର ଦର୍ଶନ ବିଭାଗର ଅଧ୍ୟାପକ ଶ୍ରୀଯୁକ୍ତ ନିତ୍ୟାନନ୍ଦ ଦର୍ଜୀ ନିଜ ସ୍ୱର୍ଗୀୟା ମାତାଙ୍କ ନାମରେ କିଛି ଅର୍ଥ ଓଡ଼ିଶା ମାଧ୍ୟମିକ ଶିକ୍ଷା ବୋର୍ଡରେ ଜମା ଦେଇଥିଲେ । ତହିଁରୁ ମିଳୁଥିବା ସୁଦରେ ସ୍କୁଲ ସର୍ବୋଚ୍ଚ ଶ୍ରେଣୀରେ ଅଧ୍ୟୟନ କରୁଥିବା ସର୍ବଶ୍ରେଷ୍ଠ ଛାତ୍ରକୁ ମାସକୁ ଟ.୧୦ ଲେଖାଏଁ ପ୍ରଦାନ କରିବାକୁ ବ୍ୟବସ୍ଥା କରିଥିଲେ । ଏହା ୧୯୫୭ ସାଲ ପର୍ଯ୍ୟନ୍ତ ପ୍ରଦାନ କରା ଯାଇଥିଲା । ଏହି ବୃତ୍ତି ଶ୍ରୀମତୀ ବୃତ୍ତି ନାମରେ ପରିଚିତ ।

ଏହି ସ୍କୁଲର ଅନ୍ୟ ଜଣେ ପୁରାତନ ଶିକ୍ଷକ ତଥା ସମ୍ବଲପୁରୀ ଭାଷା ଓ ସାହିତ୍ୟର ପ୍ରଶଂସକ ୰ ସତ୍ୟନାରାୟଣ ବହିଦାର ମହୋଦୟ ତାଙ୍କ ନିଜ ପାସବୁକରେ ଗଚ୍ଛିତ ଥିବା ଏକ ଶତ ଟଙ୍କା ଦାନ କରି ତାଙ୍କର ଅଜା 'କଳାକାହ୍ନୁ ଦାଶ'ଙ୍କ ନାମରେ ଏକ ପାଣ୍ଠି ପ୍ରଦାନ କରିଥିଲେ । ସେହି ପାଣ୍ଠିର ବାର୍ଷିକ ସୁଦରୁ ସ୍କୁଲରୁ ପ୍ରକାଶିତ ବାର୍ଷିକ ମୁଖପତ୍ର 'ମୁକ୍ତାଲୋକ'ର ଶ୍ରେଷ୍ଠ ବିବେଚିତ ଲେଖକଙ୍କୁ ଏକ ସିଲ୍ଡ ଓ ପୁରସ୍କାର ଦେବା ପାଇଁ ପ୍ରସ୍ତାବ ଦେଇଥିଲେ । ଏହା କେତେ ବର୍ଷ ପାଇଁ ପ୍ରଦାନ କରା ଯାଇଥିଲା ।

ଏହି ସ୍କୁଲର ଆଉ ଜଣେ ପୁରାତନ ଛାତ୍ର ଶ୍ରୀ ରାଜକିଶୋର ଅଗ୍ରୱାଲ ସ୍ଥାନୀୟ ତତ୍କାଳୀନ ଏକମାତ୍ର ସାଇକଲ ଦୋକାନୀ ତାଙ୍କ ପିତାଙ୍କ ଦ୍ୱାରା ପ୍ରଦତ୍ତ ଟ.୨୦୦ର ଏକ ପାଣ୍ଠି ତାଙ୍କ ଅଜା 'ହୀରାଲାଲ ନାରାୟଣ ପ୍ରସାଦ' ତର୍କ ପ୍ରତିଯୋଗିତା ପାଇଁ ପ୍ରଦାନ କରିଥିଲେ। ତାର ସୁଦରୁ ପ୍ରତି ବର୍ଷ କୌଣସି ଏକ ବିଶିଷ୍ଟ ଦିବସରେ ବାକ୍ ପ୍ରତିଯୋଗିତା କରାଯାଇ ପୁରସ୍କାର ପ୍ରଦାନ କରା ଯାଉଥିଲା।

ଏହି ସ୍କୁଲରେ ପ୍ରାୟ ସ୍ଥାନୀୟ ବିଶିଷ୍ଟ ସଭା ସମିତି, ଖେଳକସରତ ଆଦି ସାମୂହିକ ଅନୁଷ୍ଠାନଗୁଡ଼ିକ ଏଠାରେ ଆୟୋଜିତ ହୋଇ ଆସୁଥିଲା। ସମସ୍ତ ବ୍ଲକ ସ୍ତରୀୟ ସବୁ ପ୍ରକାର ସମାରୋହ ଏଠାରେ ହିଁ କରା ଯାଉଥିଲା।

ଥରେ ଭୂଦାନ କର୍ମର ଅଗ୍ରଗଣ୍ୟ ନେତା ଗାନ୍ଧୀଜୀଙ୍କ ଅନୁଗାମୀ ଶ୍ରୀ ବିନୋବା ଭାବେ ବରଗଡ଼ ନିଜ କର୍ମୀମାନଙ୍କ ସଙ୍ଗେ ଆସି ଆମ ହଷ୍ଟେଲ୍‌ରେ ରହିଥିଲେ ଓ ପରଦିନ ସ୍କୁଲର ପଛପଟ ବିରାଟ ଆମ୍ବ ଗଛ ତଳେ ପଡ଼ିଆରେ ସହସ୍ରାଧିକ ଜନସମାଗମ ପ୍ରାର୍ଥନା ସଭାର ଆୟୋଜନ କରା ଯାଇଥିଲା। ତାଙ୍କର ନିର୍ଦ୍ଦେଶକ୍ରମେ ସେହି ଅଗଣିତ ଜନତା ୨ ମିନିଟ ପାଇଁ ନୀରବ ପ୍ରାର୍ଥନା କରିଥିଲେ। ଉକ୍ତ ନୀରବତା ଏତେ ଶାନ୍ତ ଓ ନିସ୍ତବ୍ଧତା ଗମ୍ଭୀର ଥିଲା ଯେ ଅନୁଭବକାରୀ ଛଡ଼ା ଆଉ କେହି ତାର ଗୁରୁତ୍ୱ ବା ତାତ୍ପର୍ଯ୍ୟ ଉପଲବ୍ଧ କରି ପାରିବେ ନାହିଁ।

ତତ୍କାଳୀନ ନୂତନ ଭାବେ ଆରମ୍ଭ ହୋଇଥିବା Rotary Clubର ମାସିକ ତଥା ଆନୁସଙ୍ଗିକ ସଭାସମିତି ଆଦି ସ୍କୁଲରେ ଆୟୋଜିତ ହେଉଥିଲା।

ଅନ୍ୟାନ୍ୟ ସାଂସ୍କୃତିକ ସମାରୋହ ମଧ୍ୟରେ ଥରେ ସ୍କୁଲ ସମ୍ମୁଖରେ ସାହିତ୍ୟ ଆସରର ଆଲୋଚନା ପାଇଁ ଏକ ବାସନ୍ତୀ ଉତ୍ସବ ସମାରୋହ ଆୟୋଜିତ ହୋଇଥିଲା। ଏଥିରେ ପ୍ରଧାନ ପୃଷ୍ଠପୋଷକ ଥିଲେ ଶ୍ରୀ ଦୟାଲାଲ ଯୋଷୀ।

ଏପରି ଭାବେ ସହରର ଯାବତୀୟ ସାଂସ୍କୃତିକ, ସାମାଜିକ ତଥା ଅନ୍ୟାନ୍ୟ ସାମୂହିକ କାର୍ଯ୍ୟକ୍ରମାଦି ଏହି ସ୍କୁଲରେ ସମାହିତ ହେଉଥିଲା। ତେଣୁ ସରକାରଙ୍କ ଚରମ ଉଦ୍ଦେଶ୍ୟ ସାଧନର ସଫଳତା ପାଇଁ ସ୍କୁଲଟି Community Center ରୂପେ କାର୍ଯ୍ୟ କରି ସଫଳ ତଥା ଅଗ୍ରଗଣ୍ୟ ଥିଲା।

## ୧୯୭୪ରୁ ୧୯୭୯ (ମାଧ୍ୟମିକ ଶିକ୍ଷା ପରିଷଦ):

ଏ ମଧ୍ୟରେ ମାଧ୍ୟମିକ ଶିକ୍ଷା ବୋର୍ଡର ସ୍ୱତନ୍ତ୍ର ଅଫିସର (Special Officer) ପୋଷ୍ଟ ପାଇଁ ବିଜ୍ଞାପନ ବାହାରିବାରୁ ମୁଁ ଦରଖାସ୍ତ କଲି।

Interviewକୁ ଯାଇ ସଂପୃକ୍ତ ଅଫିସରମାନଙ୍କ ସଙ୍ଗେ ଦେଖା ବେଳେ Prof Dr. D.C. Mishra ବୋର୍ଡର ସଭାପତି ଭାବେ Interview ବୋର୍ଡରେ ମୋତେ କହି ପକାଇଲେ ଯେ ତୁମେ ତ ଜଣେ Dynamic ହେ.ମା.। ତୁମେ କାହିଁକି Boardକୁ ଆସିବାକୁ ଚାହୁଁଛ ? ମୁଁ ଶିକ୍ଷକତାରୁ ପ୍ରଶାସନିକ ଅଭିଜ୍ଞତା ପାଇଁ ବୋର୍ଡକୁ ଆସିବାକୁ ଚାହୁଁଥିବାରୁ ସେମାନେ ତୁନି ରହିଲେ ଓ ଶେଷରେ ମୋର ପ୍ରାର୍ଥୀତ୍ୱକୁ ଯୋଗ୍ୟ ବିଚାରି ନିଯୁକ୍ତି ପତ୍ର ପଠାଇଲେ। ଅବଶ୍ୟ ମୋର ଦରଖାସ୍ତ ସରକାରଙ୍କ ଜରିଆରେ ଯାଇଥିଲା। ତେଣୁ ମୋର ସରକାରଙ୍କଠାରୁ deputation ଆଦେଶ ନ ହେଲେ ବୋର୍ଡରେ ଯୋଗ ଦେବାର ଅସମ୍ଭବ ଜାଣି ମୁଁ ନିଜେ ଯାଇ Jt. D.P.I. ଶ୍ରୀ ଦୀନବନ୍ଧୁ ପାଣିଗ୍ରାହୀଙ୍କୁ ଦେଖା କଲି। ସେ କହିଲେ "ଶଶି ! ତୁମେ ପ୍ରକୃତରେ ବୋର୍ଡକୁ ଚାକିରୀ ପାଇଁ ଯିବ ? ସ୍କୁଲରେ ରହିଲେ କଅଣ ଅସୁବିଧା ?" ମୁଁ ତାଙ୍କୁ ବୁଝାଇ କହିଲି ଯେ ଜର୍ଜ ହାଇସ୍କୁଲରେ ମୋର ହେ.ମା. କାର୍ଯ୍ୟକାଳ ୧୮ ବର୍ଷ ଓ ଧୀରେ ଧୀରେ ସରକାରଙ୍କ ମତିଗତି ପରିବର୍ତ୍ତନ ହେଉଛି। ବରଗଡ଼ବାସୀ ମଧ ପ୍ରକାରାନ୍ତରେ ସେତେ ଆଗ୍ରହୀ ନୁହନ୍ତି। ସର୍ବୋପରି ଆପଣ ତ ସବୁବେଳେ ଏହି ପୋଷ୍ଟରେ ଥାଇ ମୋ ପ୍ରତି ଅନୁଗ୍ରହ ପ୍ରଦର୍ଶନ କରିବା ଅସମ୍ଭବ। ଏଣୁ ସ୍କୁଲ ଛାଡ଼ି ବୋର୍ଡକୁ ଯିବା କେତେ ସମୀଚିନ ଓ ଯୁକ୍ତିଯୁକ୍ତ ଆପଣ ବିଚାର କରନ୍ତୁ। ଏହା ଶୁଣି ସେ କିଛି କ୍ଷଣ ତୁନି ରହିବା ପରେ 'ହଉ ଯାଅ ମୁଁ ତୁମର ଡେପୁଟେସନକୁ ସ୍ୱାକ୍ଷର କରି ଦେଉଛି' କହି ଦୀର୍ଘ ନିଶ୍ୱାସ ଛାଡ଼ିଲେ। କାରଣ ସେତେବେଳେ Govt.ରୁ ମୋର ବୋର୍ଡକୁ Deputation ୩ ବର୍ଷ ପାଇଁ ମଞ୍ଜୁରୀ ଆସି ଯାଇଥିଲା। ତେଣୁ ସେ ଆଦେଶ ପାଇଲା ପରେ ମୋର ଦାୟିତ୍ୱ ପ୍ରଦାନ ସଂକ୍ରାନ୍ତ କାଗଜପତ୍ର ପାଇଁ ଶିକ୍ଷକ ଓ କିରାଣୀଙ୍କୁ ଅନୁରୋଧ କରି ସ୍କୁଲ ଛାଡ଼ିବା ପାଇଁ ପ୍ରସ୍ତୁତ ହେଲି। ଦୀର୍ଘ ୧୮ ବର୍ଷର ସ୍କୁଲର ସମ୍ପର୍କ ଓ ସ୍ଥାନୀୟ ବିଭିନ୍ନ ଅନୁଷ୍ଠାନର ଦେୟ ଆଦି ପରିଶୋଧ କରି ଚାର୍ଜଲିଷ୍ଟ ତିଆରି କରାଗଲା ଓ ମୁଁ ୯.୮.୧୯୭୫ରେ ଶନିବାର ଦିନ ସ୍କୁଲରୁ ବିଦାୟ ନେଇ କାର୍ଯ୍ୟମୁକ୍ତ ହେଲି - ମୋର ସହକର୍ମୀ ବନ୍ଧୁ ଶ୍ରୀ ସୁନ୍ଦର ଦାସ ସ୍କୁଲ ଦାୟିତ୍ୱରେ ରହିଲେ।

ଏହା ପରେ ବିଦାୟକାଳୀନ ସଭା, ଭୋଜିଭାତ ଆଦି ଯଥାବିଧିରେ ସମାପନ ହେଲା। ବିଦାୟ କାଳୀନ ସଭାରେ ନିଜ ନିଜ ବକ୍ତବ୍ୟ ପ୍ରକାଶ କଲା ବେଳେ ବିଭିନ୍ନ ପ୍ରକାର ମତ ପ୍ରକାଶ ପାଇଲା। ଏପରିକି ସେମାନେ ଶତମୁଖରେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦେବା ଆଳରେ କହି ପକାଇଥିଲେ ଯେ ଆଜ୍ଞାଙ୍କର (ହେ.ମା. ଶଶିଭୂଷଣ ଦାଶ) ସ୍କୁଲରେ କାର୍ଯ୍ୟ କରିବା ସମୟଟି ଏତେ ବିଶିଷ୍ଟ ଘଟଣାବହୁଳ

ଯେ ଏହି ସମୟକୁ ସ୍କୁଲର ସୁବର୍ଣ୍ଣ ଯୁଗ କହିଲେ ଅତ୍ୟୁକ୍ତି ହେବ ନାହିଁ। ଏପରି ମତ ପ୍ରକାଶ କଲା ପରେ ମଧ୍ୟ ଶିକ୍ଷକବନ୍ଧୁମାନେ ମୋର ସ୍କୁଲରୁ ଚାଲି ଯିବା ପରେ ମୋର କୁତ୍ସାରଟନା କରିବାକୁ ପଶ୍ଚାତ୍‌ପଦ ହୋଇ ନ ଥିଲେ। ଏପରିକି ଜଣେ ଅଧେ ଶିକ୍ଷକବନ୍ଧୁ ଯାହାଙ୍କର ଏହି ଶିକ୍ଷା ବିଭାଗରେ କିଛି ଦାୟିତ୍ୱ ନ ଥିଲା ତାଙ୍କୁ କାର୍ଯ୍ୟ କରିବାର ସୁଯୋଗ ଦେଇ ଓ ତାଙ୍କୁ ମୋର ବିଶ୍ୱାସୀ ମନେ କରି କେତେକ ଦରକାରୀ ଗୁପ୍ତ ବିଷୟରେ ସଂଶ୍ଳିଷ୍ଟ କରି ଥିବାବେଳେ ସେମାନେ ମୋର ନାମ ଧରି ବିଭିନ୍ନ ଉଚ୍ଚ ସ୍ତରରେ କାର୍ଯ୍ୟ କରିବାର ସୁଯୋଗ ପାଇ ମଧ୍ୟ ମୋର ପ୍ରତ୍ୟକ୍ଷ ବିପକ୍ଷରେ ଯାଇ ମୋର ଚରିତ୍ର ସଂହାର ବା ଗୁରୁତର ଅପରାଧୀ ବୋଲି ସାବ୍ୟସ୍ତ କରିବାକୁ ତିଳେମାତ୍ର ପଛେଇ ନ ଥିଲେ। ଅବଶ୍ୟ ସେମାନେ ନିଜର କୁଚକ୍ରର ବିଷମୟ ଫଳ ଭୋଗ କରି ଯଥାନୁରୂପ ଫଳ ପାଇଥିଲେ।

ମୁଁ ମାଧ୍ୟମିକ ଶିକ୍ଷା ପରିଷଦର ସ୍ୱତନ୍ତ୍ର ଅଫିସର (Special Officer) ରୂପେ ନିଯୁକ୍ତି ପାଇ ସେହି କାର୍ଯ୍ୟରେ ଯୋଗ ଦେବାକୁ ୧୦.୮.୭୫ ଦିନ ବରଗଡ଼ ଛାଡ଼ି କଟକ ଅଭିମୁଖେ ଯିବା ବେଳେ ବସ ଷ୍ଟେଣ୍ଡରେ ବହୁ ଶିକ୍ଷକ ଓ ଅଭିଭାବକମାନେ ବିଦାୟ ଦେବାକୁ ଉପସ୍ଥିତ ଥିଲେ। ୧୧.୮.୭୫ରେ କଟକ ପହଞ୍ଚି ଦିନ ୧୧ଟା ବେଳେ ମାଧ୍ୟମିକ ଶିକ୍ଷା ପରିଷଦରେ ଯୋଗ ଦେଲି ଓ ସହକାରୀ ସମ୍ପାଦକ ଶ୍ରୀଯୁକ୍ତ ପାଢ଼ୀ ଓ ସଭାପତିଙ୍କୁ ଦେଖା କଲି। ସେମାନେ ଖୁସିରେ ସ୍ୱାଗତ ଜଣେଇଲେ ଓ ସେହି ଦିନ ମୋର ପରିଷଦରେ ଯୋଗଦାନ ଓ ମୋର ବିଭିନ୍ନ ବିଭାଗର ଦାୟିତ୍ୱ ଘୋଷଣା କରାଗଲା। ମୁଁ ସହକାରୀ ସମ୍ପାଦକ ଶ୍ରୀଯୁକ୍ତ ରାମନାରାୟଣ ପାଢ଼ୀଙ୍କ ପାଖକୁ ଯାଇ ପରିଷଦ ସମ୍ପର୍କରେ ଓ ମୋର କାର୍ଯ୍ୟ ଦାୟିତ୍ୱ ସମ୍ପର୍କରେ ତାଙ୍କଠାରୁ କିଛିଟା ପ୍ରାରମ୍ଭିକ ଉପଦେଶ ଓ ସାବଧାନତା ସମ୍ପର୍କରେ ଜ୍ଞାନ ଓ ଦପ୍ତର ସମ୍ପର୍କୀୟ ଓ କାର୍ଯ୍ୟକାରିତା ସମ୍ପର୍କରେ ଆଲୋଚନା କରି ପ୍ରାରମ୍ଭିକ ଜ୍ଞାନ ଆହରଣ କଲି।

ପ୍ରଥମରେ ମୋତେ Text Book I ଓ II, Recognition of High School, E.P.S. (Estate Purchase and Sales) ଏପରି ଚାରୋଟି ବିଭାଗର ଦାୟିତ୍ୱ ଦିଆଗଲା। ସଂପୃକ୍ତ ବିଭାଗରୁ Fileଗୁଡ଼ାକ ବିଭାଗୀୟ ମୁଖ୍ୟ କିରାଣୀମାନେ ମୋ ଜରିଆରେ ସମ୍ପାଦକ ବା ସଭାପତିଙ୍କ ନିକଟକୁ ପଠାଇଲେ। ମୋର ଦକ୍ଷତାକୁ ପରଖିବା ପାଇଁ ହେଉ ବା ମୋତେ ହଇରାଣ ହରକତ କରିବା ପାଇଁ ହେଉ ଦିନକୁ ବହୁତ File ମୋଠାକୁ ଆସିଲା। ସେଥିରେ ବେଶୀ ଦାୟିତ୍ୱପୂର୍ଣ୍ଣ ବିଭାଗ ସ୍କୁଲମାନଙ୍କୁ ସ୍ୱୀକୃତି ଦେବା। ତେଣୁ ବିଭିନ୍ନ ବିଭାଗରୁ

ଆସୁଥିବା File ସଂଖ୍ୟା ଏତେ ବେଶୀ ହେଲା ଯେ ମୋତେ ସେ ସବୁ ପଢ଼ି ମତାମତ ଦେବାକୁ ବହୁତ ସମୟ ଲାଗୁଥିଲା । କିନ୍ତୁ ସେ ସବୁକୁ ମୁଁ ପ୍ରତିଦିନ ସବୁ କାମ ନ ସାରିବା ପର୍ଯ୍ୟନ୍ତ ଅଫିସ ଛାଡୁ ନ ଥିଲି । ଏପରିକି ମୋତେ ଅଫିସ ସମୟ ବାହାରେ ଆହୁରି ଘଣ୍ଟାଏ ଅଧ ଘଣ୍ଟା ଅଧିକ ସମୟ ଖଟିବାକୁ ପଡୁଥିଲା । ପ୍ରକାଶ ଥାଉ କି ସବୁ Fileଗୁଡ଼ିକ ପଢ଼ି ସେଥିରେ ଥିବା ବର୍ଣ୍ଣାଶୁଦ୍ଧି ଓ ବ୍ୟାକରଣଗତ ତ୍ରୁଟିକୁ ସଂଶୋଧନ କରି ମୋର ମତାମତ ଦେଉଥିଲି । ଏପରି ଭାବେ ୨/୩ ଦିନ ମଧ୍ୟରେ ମୋ ନିକଟକୁ ଆସୁଥିବା Fileକୁ ଦେଖି, ପଢ଼ି, ମତାମତ ଦେଇ ଶେଷ କଲା ପରେ ଅଫିସରୁ ଆସୁଥିଲି । ଉପରି କାର୍ଯ୍ୟ ତତ୍ପରତା, କୁଶଳତା ଓ ଅନ୍ୟାନ୍ୟ ବିଷୟ ଉପଲବ୍ଧି କଲା ପରେ ବିଭାଗୀୟ କିରାଣୀମାନେ ଆଉ ସେତେ ସଂଖ୍ୟକ File ପଠାଇଲେ ନାହିଁ । ତେଣୁ ମୋର କାର୍ଯ୍ୟ ପରିସର ଓ ତହିଁର ବିଷୟବସ୍ତୁ ଉପରେ ସମ୍ୟକ୍ ଧାରଣା ହୋଇଗଲା ।

ମୁଁ ବୋର୍ଡରେ ଯୋଗଦାନ ପରେ ବୋର୍ଡ ସଭାପତି ୰ ପ୍ରଫେସର ବ୍ରଜବନ୍ଧୁ ମିଶ୍ରଙ୍କ ନୂତନ ଚିନ୍ତାଧାରା ଅନୁସାରେ ବୋର୍ଡ ଦ୍ୱାରା ମୁଦ୍ରିତ ଓ ପ୍ରକାଶିତ ପାଠ୍ୟ ପୁସ୍ତକଗତ ତ୍ରୁଟି ଓ ତାର ଦୂରୀକରଣ ସକାଶେ ହାଇସ୍କୁଲ ଶିକ୍ଷକମାନଙ୍କ ଠାରୁ ମତାମତ ଅଣାଇ ତାର ବିଚାର ବିମର୍ଷ ଦ୍ୱାରା ଉନ୍ନତ ପାଠ୍ୟ ପୁସ୍ତକ ପ୍ରସ୍ତୁତି, ମୁଦ୍ରଣ ଓ ପ୍ରକାଶନ ପାଇଁ ବିଭିନ୍ନ ସ୍ଥାନମାନଙ୍କୁ ଶିକ୍ଷକମାନଙ୍କୁ ଡକାଇ Seminar ବା ଆଲୋଚନାଚକ୍ରର କର୍ମଶାଳା ଓଡ଼ିଶାର ବିଭିନ୍ନ ସ୍ଥାନରେ ଆୟୋଜନ କରାଗଲା । ସେଥିରୁ ଦୁଇଟି ଆଲୋଚନା କେନ୍ଦ୍ର ପୁରୀ ଓ ରାଉରକେଲାରେ ପ୍ରାୟ ୧୦ ଦିନ ଲେଖାଏଁ କରି ଚାଲିଲା । ଆଉ ଦୁଇଟି କେନ୍ଦ୍ର ବ୍ରହ୍ମପୁର ଓ ଭବାନୀପାଟଣା ଠାରେ ଆୟୋଜିତ ହୋଇଥିଲା । ମୁଁ ଓ ସଭାପତି ପୁରୀ ଓ ରାଉରକେଲା ଦାୟିତ୍ୱରେ ରହି କେନ୍ଦ୍ର ପରିଚାଳନା କଲୁଁ । ଅନ୍ୟ କେନ୍ଦ୍ରଗୁଡ଼ିକ ଉପସଭାପତି Dr. G. S. Mohanty ଓ ମୂଲ୍ୟାୟନ ଅଫିସର ଶ୍ରୀ ରାମଚନ୍ଦ୍ର ମିଶ୍ରଙ୍କ ତତ୍ତ୍ୱାବଧାନରେ ପରିଚାଳିତ ହୋଇଥିଲା । ଉକ୍ତ କେନ୍ଦ୍ରମାନଙ୍କର ଯାବତୀୟ ଖର୍ଚ୍ଚ ମାଧ୍ୟମିକ ସଂସଦ ବହନ କରୁଥିଲା ।

ପ୍ରଥମ ଥର ପୁରୀ ଓ ବ୍ରହ୍ମପୁରରେ ୧୦ ଦିନ ଲେଖାଏଁ କେନ୍ଦ୍ର ପରିଚାଳିତ ହୋଇ ଶିକ୍ଷକମାନଙ୍କ ମତାମତ ଲିପିବଦ୍ଧ କରାଯାଇ ପରବର୍ତ୍ତୀ ମୁଦ୍ରଣରେ ପୁସ୍ତକ ପ୍ରକାଶନ ବେଳେ ଆବଶ୍ୟକ ସ୍ଥଳେ ସେ ସବୁରେ ସଂଶୋଧନ ଓ ପରିମାର୍ଜିତ ସଂସ୍କରଣ ପ୍ରକାଶନ କରାଯିବାର ସ୍ଥିର ହେଲା । ଏସବୁ କେନ୍ଦ୍ର ପରିଚାଳନା ପାଇଁ ଶିକ୍ଷକମାନଙ୍କ ରହଣୀ ଓ ଖାଦ୍ୟପେୟର ବ୍ୟବସ୍ଥା ବୋର୍ଡ କର୍ତ୍ତୃପକ୍ଷରୁ କରା

ଯାଉଥିଲା । ସେଥିପାଇଁ ସଂପୃକ୍ତ ସରକାରୀ ଅଫିସରମାନେ ଆଗରୁ ଯାଇ ସ୍ଥାନ ସଂରକ୍ଷଣ, ଖାଇବା ବ୍ୟବସ୍ଥାର ସୁବିଧା କରୁଥିଲେ । ମୁଁ ପ୍ରଥମେ ପୁରୀ ଯାଇ ଆମନ୍ତ୍ରିତ ଶିକ୍ଷକମାନଙ୍କ ରହଣୀ ପାଇଁ ମୁଁ ପୁରୀ ଯାତ୍ରୀ ନିବାସ ସ୍ଥିର କରି ଆସିଲି ଓ ଶିକ୍ଷକମାନେ ନିଜ ନିଜ ଖାଦ୍ୟପେୟ ସୁବିଧା କରିବେ ଓ ଦୈନିକ ଭତ୍ତା ତାଙ୍କୁ ଦିଆ ଯିବାର ଧାର୍ଯ୍ୟ ହେଲା । ହେଲେହେଁ ଏଥର ପୁରୀରେ ଶିକ୍ଷକମାନଙ୍କ ରହିବାର ବ୍ୟବସ୍ଥା ଓ ସଂରକ୍ଷଣ ସୁବିଧା ଦେଖି ବେଶ ସନ୍ତୋଷ ପ୍ରକାଶ କରିଥିଲେ । ଶେଷ ଦିନରେ ଏକ ସାମୁହିକ ଭୋଜନ ଓ ଅଁଳା ନବମୀ ଉପଲକ୍ଷ୍ୟେ ସାକ୍ଷୀଗୋପାଳରେ ରାଧା ପାଦ ଦର୍ଶନର ସୁଯୋଗ ସୁବନ୍ଦୋବସ୍ତ କରା ଯାଇଥିଲା । ଏହି କେନ୍ଦ୍ରରେ ରହିବାର ଓ ଖାଇବାର ସବିଶେଷ ଯତ୍ନ ନେଇ ବୋର୍ଡ କର୍ତ୍ତୃପକ୍ଷ ଶିକ୍ଷକମାନଙ୍କ ସୁବିଧା କରିଥିବାରୁ ସେମାନେ ବେଶ ଆପ୍ୟାୟିତ ହୋଇ କହି ପକାଇଥିଲେ ଯେ ଏ ରକମର ସୁବ୍ୟବସ୍ଥା ଆଉ କେବେ ପୂର୍ବରୁ କରା ଯିବାର ନଜିର ନ ଥିଲା । କାରଣ କେଉଁ କେଉଁ ଶିକ୍ଷକ କେଉଁ କେଉଁ କୋଠରୀରେ ରହିବେ ସେହି କୋଠରୀ କବାଟରେ ସଂପୃକ୍ତ ଆଗନ୍ତୁକ ଶିକ୍ଷକମାନଙ୍କ ନାମ ଆଦି ସୂଚନା ଦେଇ ଲିଖିତ ହୋଇ ସାରିଥିଲା । ଅବଶ୍ୟ ଏଥିପାଇଁ ବହୁ ପରିଶ୍ରମ କରିବାକୁ ପଡ଼ିଥିଲା ।

୧୯୭୫ ନଭେମ୍ବର ମାସରେ ରାଉରକେଲା ସେକ୍ଟର ୧୮ ନମ୍ବର ହାଇସ୍କୁଲରେ ଏପରି ଏକ ଆଲୋଚନା କେନ୍ଦ୍ର କରାଯିବାର ସ୍ଥିର ହେବାରୁ ସ୍କୁଲ ଗୃହରେ ରହିବାର ସୁବିଧା କରାଯାଇ Sales Canteenରୁ ଜଳଖିଆ ଓ ଖାଦ୍ୟପେୟର ସୁବ୍ୟବସ୍ଥା କରା ଯାଇଥିଲା । ଏପରିଭାବେ ଅଗଷ୍ଟରୁ ନଭେମ୍ବର ମଧ୍ୟରେ ବୋର୍ଡ ପାଇଁ ବିଶେଷ କାର୍ଯ୍ୟକ୍ରମର ଦାୟିତ୍ୱ ସମ୍ପାଦନ କରି ମୋର ସୁଦକ୍ଷ କାର୍ଯ୍ୟକାରିତା ପାଇଁ ସମସ୍ତେ ଧନ୍ୟବାଦ ଦେଲେ । ଏହା ପରେ ବିଭିନ୍ନ କାର୍ଯ୍ୟକ୍ରମ ବୋର୍ଡର ଜରିଆରେ କରିବାକୁ ପଡ଼ିଲା ଓ ସେହି ବର୍ଷ ସମ୍ବଲପୁର ଓ ବ୍ରହ୍ମପୁରରେ ଏକ ଏକ ନୂତନ ଆଞ୍ଚଳିକ ଶାଖା ଅଫିସ ଖୋଲାଯାଇ ଛାତ୍ର ଓ ଜନସାଧାରଣଙ୍କୁ ବିଶେଷ ସୁବିଧା ଯୋଗାଇବା ବ୍ୟବସ୍ଥା କରା ଯାଇଥିଲା । ତେଣୁ ଏହି ଆଞ୍ଚଳିକ କାର୍ଯ୍ୟାଳୟରେ ସହକାରୀ ସମ୍ପାଦକଙ୍କ ନିଯୁକ୍ତି ପର୍ଯ୍ୟନ୍ତ ସମ୍ବଲପୁର ପାଇଁ ମୋତେ ଦାୟିତ୍ୱ ଦିଆଗଲା ଓ ମୁଁ ଆସି ୪ର୍ଥ ଶ୍ରେଣୀ କର୍ମଚାରୀ ଓ କିରାନୀ ନିଯୁକ୍ତି ପାଇଁ ବ୍ୟବସ୍ଥା କଲି । ତେଣୁ ଆବେଦନପତ୍ର ମଗାଯାଇ ସମସ୍ତଙ୍କୁ ନିଯୁକ୍ତି ପାଇଁ କେନ୍ଦ୍ରୀୟ ଅଫିସ ସମ୍ପାଦକଙ୍କ ପାଖକୁ ପଠାଗଲା ଓ ସମ୍ପାଦକ ମଧ ନିଜେ ସେସବୁ ତଦାରଖ କରିଗଲେ ।

ଧୀରେ ଧୀରେ ବୋର୍ଡ ପରିସର ବୃଦ୍ଧି ହେତୁ ସହସମ୍ପାଦକମାନଙ୍କ ପାଇଁ

ପ୍ରାର୍ଥୀ ବଛାଯାଇ ପ୍ରାୟ ପାଞ୍ଚ ଜଣଙ୍କୁ ନିଯୁକ୍ତି ଦିଆ ଯାଇଥିଲା। ଦୁଇ ଜଣ ଦୁଇ ଆଞ୍ଚଳିକ କାର୍ଯ୍ୟାଳୟରେ ରହିଲେ ଓ ଆଉ ତିନି ଜଣ ପ୍ରଧାନ କେନ୍ଦ୍ର ଅଫିସରେ ରହିଲେ। ସେମାନେ ହେଲେ ଶ୍ରୀ ଯତୀନ୍ଦ୍ରନାଥ ମହାନ୍ତି, ଶ୍ରୀ ପ୍ରବୋଧ କୁମାର ପଟ୍ଟନାୟକ, ଶ୍ରୀ ବାବାଜୀ ବଳ, ଶ୍ରୀ ପ୍ରଫୁଲ୍ଲ କୁମାର ପଟ୍ଟନାୟକ ଓ ଶ୍ରୀଯୁକ୍ତ ପାଢ଼ୀ। ଶ୍ରୀ ବଳ ଓ ଶ୍ରୀ ପାଢ଼ୀ ଯଥାକ୍ରମେ ସମ୍ବଲପୁର ଓ ବ୍ରହ୍ମପୁର ଦାୟିତ୍ୱରେ ରହିଲେ। ଉପରୋକ୍ତ କର୍ମଚାରୀମାନେ ଯୋଗ ଦେବା ପରେ ଓ ଆଞ୍ଚଳିକ ଅଫିସମାନଙ୍କୁ କେତେକ କାର୍ଯ୍ୟ ସ୍ଥାନାନ୍ତରିତ ହେବାରୁ ମୋ ଉପରୁ କିଛି କିଛି ଦାୟିତ୍ୱ ଭାର କମିଗଲା। ହେଲେହେଁ ମୋ ଉପରେ ସ୍କୁଲ ମଞ୍ଜୁରି, E.P.S. ଓ Text Book I ଛପାକାମ ରହିଲା ଓ ବାକୀ ସବୁ ଅନ୍ୟମାନଙ୍କୁ ଦିଆଗଲା। ପରୀକ୍ଷା କାମ ବହୁତ ଭିଡ଼ ଥିବାରୁ ସେତେବେଳର Asst Secretary ଶ୍ରୀ ରାମନାରାୟଣ ପାଢ଼ୀଙ୍କୁ ଉନ୍ନତ ପଦବୀରେ ଅର୍ଥାତ୍ Dy Secretaryଙ୍କୁ ଉନ୍ନୀତ କରି ସେହି ବିଭାଗରେ ଦୁଇ ଜଣ Asst Secy ଶ୍ରୀ ମହାନ୍ତି ଓ ଶ୍ରୀ ପ୍ରବୋଧ ପଟ୍ଟନାୟକ ରହିଲେ। ଶ୍ରୀ ପ୍ରଫୁଲ୍ଲ ପଟ୍ଟନାୟକଙ୍କୁ ମଧ କିଛି କିଛି ଦାୟିତ୍ୱ ଦିଆଯାଇ କାର୍ଯ୍ୟଭାର ବଣ୍ଟା ଯାଇଥିଲା। ମୋର ବୋର୍ଡରେ କାର୍ଯ୍ୟକାଳ ଭିତରେ ବୋର୍ଡର ଘର ତିଆରି କାମ, ଗାଡ଼ି କିଣାବିକା କାମ ଓ ପରୀକ୍ଷା ପରିଚାଳନା କାମର ପରିସର ବୃଦ୍ଧି ସଙ୍ଗେ ସଙ୍ଗେ ରାଜ୍ୟରେ ଛାତ୍ର ସଂଖ୍ୟା ବୃଦ୍ଧି ଓ ନୂତନ ପାଠ୍ୟପୁସ୍ତକ ପ୍ରଚଳନ ଓ ମୁଦ୍ରଣ ପାଇଁ କାର୍ଯ୍ୟଭାର ଅଧିକତର ହେଲା। କାରଣ ବୋର୍ଡ କର୍ତ୍ତୃପକ୍ଷ ୮ମ ରୁ ଏକାଦଶ ଶ୍ରେଣୀ ଓ ପରେ ଦଶମ ଶ୍ରେଣୀ ପର୍ଯ୍ୟନ୍ତ ସମସ୍ତ ପୁସ୍ତକ ପ୍ରଣୟନ ଓ ପ୍ରକାଶନ କରୁଥିଲେ। ଏହି ବ୍ୟବସାୟରେ ପ୍ରାୟ ଲାଭକ୍ଷତିର ପରିମାଣ ସମାନ ରଖାଯାଇ ଛାତ୍ରମାନଙ୍କୁ ସୁଲଭ ମୂଲ୍ୟରେ ପୁସ୍ତକ ଯୋଗାଇବାର ମୁଖ୍ୟ ଉଦ୍ଦେଶ୍ୟ ଥିଲା। ପୁସ୍ତକ ମୁଦ୍ରଣର ଦାୟିତ୍ୱ ବୋର୍ଡ ନେଉଥିବାରୁ କାଗଜ କିଣାବିକା ଓ ତାଙ୍କୁ ମହଜୁଦ ରଖିବା ପାଇଁ ଘରଦ୍ୱାର ତଥା ବହି ଗୋଦାମ ତିଆରି ଆଦି କାମ ବିସ୍ତୃତ ଭାବେ ବଢ଼ି ଚାଲିଲା ଓ ସେତେବେଳେ ପ୍ରଧାନ ବୋର୍ଡ ଅଫିସଘର ୩ ତାଲା ହୋଇଥିଲେ ମଧ ଘର ନିଅଣ୍ଟ ପଡ଼ିଲା। ତେଣୁ ଆଉ ଘର ଆଦି ତିଆରି ସଙ୍ଗେ ବୋର୍ଡ ପରିସର ମଧରେ ଆଗରୁ ତ ହାଇସ୍କୁଲ ଥିଲା। କିନ୍ତୁ ବୋର୍ଡ କର୍ମଚାରୀଙ୍କ ପାଇଁ ଘର ତିଆରି ହୋଇ ନ ଥିଲା। ତେଣୁ ସଭାପତି, ସମ୍ପାଦକ, ଉପସଭାପତି ତଥା ଅନ୍ୟ କର୍ମଚାରୀଙ୍କ ପାଇଁ ଘର ତିଆରି ଆରମ୍ଭ କରାଗଲା। ଏପରି ଭାବେ ବର୍ଷାଧିକ କାଳ କାର୍ଯ୍ୟ କଲା ପରେ ରାଜ୍ୟର ବହୁତ ଗୁଡ଼ିଏ ପ୍ରସ୍ତାବିତ ଉଚ୍ଚ ବିଦ୍ୟାଳୟ ଦୀର୍ଘ ୧୦/୧୫ ବର୍ଷରୁ ଆରମ୍ଭ ହୋଇ ମଧ ବୋର୍ଡର ମଞ୍ଜୁରି ପାଇ ନ ଥିଲା। ତେଣୁ ମୋର ବୋର୍ଡରେ ଯୋଗ ଦେଲା ବେଳେ ରାଜ୍ୟର ସମସ୍ତ ହାଇସ୍କୁଲକୁ ସେମାନଙ୍କ ସ୍ଥିତି, ଘରଦ୍ୱାର,

କର୍ମଚାରୀ ତାଲିକା ଓ ଫଳାଫଳ ଆଦିର ବିବରଣୀ ମଗା ଯାଇଥିଲା । କାରଣ ଗୋଟିଏ ହାଇସ୍କୁଲକୁ ମଞ୍ଜୁରି ଦେବାକୁ ହେଲେ କେତେକ ମୌଳିକ ଯୋଗ୍ୟତାର ଆବଶ୍ୟକତା ଥିଲା । ତେଣୁ ବୋର୍ଡର ନ୍ୟୂନତମ ନିୟମାନୁସାରେ ରାଜ୍ୟର ବହୁତ ସରକାରୀ ଓ ପ୍ରତିଷ୍ଠିତ ବିଦ୍ୟାଳୟଗୁଡ଼ିକ ମଧ୍ୟ ମଞ୍ଜୁରି ପାଇବା ପାଇଁ ଯୋଗ୍ୟ ନ ଥିଲେ । ତେଣୁ ବୋର୍ଡର ମଞ୍ଜୁରି ନ ପାଇଲେ ସେହି ଉଚ୍ଚ ବିଦ୍ୟାଳୟର ଛାତ୍ରମାନେ ପରବର୍ତ୍ତୀ ତଥା ଆସନ୍ତା ବାର୍ଷିକ ହାଇସ୍କୁଲ ପରୀକ୍ଷାରେ ବସି ପାରିବେ ନାହିଁ । ତେଣୁ ସମୟର ଅଳ୍ପତା ଦୃଷ୍ଟିରୁ ମୋର ପ୍ରସ୍ତାବ କ୍ରମେ ପୁରାତନ ଓ ପ୍ରତିଷ୍ଠିତ ସରକାରୀ ସ୍କୁଲମାନଙ୍କୁ ଅସ୍ଥାୟୀ ଭାବେ ମଞ୍ଜୁରି ଦେଇ ପରବର୍ତ୍ତୀ କାଳରେ ସେହି ତ୍ରୁଟି ସଂଶୋଧନ କରି ତଥ୍ୟ ଯୋଗାଇବା ପାଇଁ ସମୟ ଦିଆଯାଇ ସମସ୍ୟାର ଆଶୁ ସମାଧାନର ପନ୍ଥା ନିର୍ଣ୍ଣୟ କରା ଯିବାରୁ ସରକାର ମଧ୍ୟ ଆଶ୍ୱସ୍ତ ହେଲେ ନଚେତ୍ ନୀତିଗତ ବୈଷୟିକ ଦୃଷ୍ଟିକୋଣରୁ ବୋର୍ଡର ଆପତ୍ତି ଓ ଅଭିଯୋଗ ସମୀଚିନ ଥିବାରୁ ସରକାର ମଧ୍ୟ ତୁନି ରହୁଥିଲେ । ଏହି ମଧ୍ୟବର୍ତ୍ତୀ କାଳୀନ ସମାଧାନ ହେତୁ ଓଡ଼ିଶାର ହାଇସ୍କୁଲ ପରିଚାଳନା କର୍ତ୍ତୃପକ୍ଷଗଣ ବୋର୍ଡର ଶକ୍ତି ଓ ଆଇନ କାନୁନ ବିଷୟରେ ଅବଗତ ହୋଇ ପରବର୍ତ୍ତୀ ପଦକ୍ଷେପ ନେବାକୁ ଯଦ୍ପରୋନାସ୍ତି ପ୍ରଚେଷ୍ଟା କଲେ । ତେଣୁ ବୋର୍ଡ କର୍ତ୍ତୃପକ୍ଷଙ୍କ ବାର୍ଷିକ ସମ୍ମିଳନୀର ପ୍ରସ୍ତାବ ଅନୁଯାୟୀ କାର୍ଯ୍ୟକାରୀ କମିଟିର ଅନୁମୋଦନ ଫଳରେ ନୂତନ ଭାବେ ଆରମ୍ଭ ହୋଇଥିବା ଓ ମଞ୍ଜୁରୀ ପାଇ ନ ଥିବା ସ୍କୁଲଗୁଡ଼ିକର ପ୍ରତ୍ୟକ୍ଷ୍ୟ ଯାଞ୍ଚ ପାଇଁ କାର୍ଯ୍ୟକାରୀ କମିଟି ସଦସ୍ୟ, ବିଭାଗୀୟ ମଣ୍ଡଳାଧୀଶ ଓ ବୋର୍ଡର ଅନୁମୋଦିତ ଅଫିସରମାନେ କାର୍ଯ୍ୟକ୍ରମ ନିର୍ଦ୍ଧାରଣ କରି ବିଭିନ୍ନ ଜିଲ୍ଲାକୁ ଗଲେ । ସେଠାରେ ଥିବା ଅଣମଞ୍ଜୁରିପ୍ରାପ୍ତ ବିଦ୍ୟାଳୟର କୋଠାବାଡ଼ି, ଜମି,ଆଞ୍ଚଳିକ ସ୍ଥିତି ଓ ଶିକ୍ଷକ ନିଯୁକ୍ତି ଆଦିର ସର୍ବେକ୍ଷଣ ପାଇଁ ନୀତି ନିର୍ଦ୍ଧାରିତ ହେଲା । ମୋ ଭାଗରେ କଟକ କେନ୍ଦ୍ର ଅଧିନରେ ଥିବା କଟକ, ବାଲେଶ୍ୱର, ମୟୁରଭଞ୍ଜ, କେନ୍ଦୁଝର, ଢେଙ୍କାନାଳ ଜିଲ୍ଲାର ଅଣମଞ୍ଜୁରିପ୍ରାପ୍ତ ହାଇସ୍କୁଲକୁ ଯାଇ ଯାଞ୍ଚ କରିବାର ଦାୟିତ୍ୱ ପଡ଼ିଲା । ସମ୍ବଲପୁର ଭାଗରେ ସମ୍ବଲପୁର, ସୁନ୍ଦରଗଡ଼, ବଲାଙ୍ଗିର, କଳାହାଣ୍ଡି ଓ ବାକି ସବୁ ଜିଲ୍ଲା ବ୍ରହ୍ମପୁର ଅଧିନରେ ଥିବାରୁ ସେହି ଅଞ୍ଚଳର କର୍ମଚାରୀମାନେ ଉକ୍ତ କର୍ମରେ ବ୍ୟାପ୍ତ ରହିଲେ । ଏପରିଭାବେ ୧୯୭୬ ସାଲର ଅଗଷ୍ଟ ମାସରୁ ନଭେମ୍ବର ମାସରେ ସମସ୍ତ ସ୍କୁଲ ଯାଞ୍ଚ କରାଯାଇ ତାର କାଗଜାତ ଓ ସ୍କୁଲର ପ୍ରକୃତ ଅବସ୍ଥା ଜଣାଗଲା ପରେ ମଞ୍ଜୁରୀ ଦେବା ପରେ ସେପ୍ଟେମ୍ବରେ ମାସ ବୋର୍ଡ ମିଟିଙ୍ଗରେ ବିଚାର କରାଯାଇ ସଭାପତିଙ୍କୁ ମଞ୍ଜୁରୀ ଦେବା ପାଇଁ ପୂର୍ଣ୍ଣ ଦାୟିତ୍ୱ ଦିଆଗଲା । ତେଣୁ ପ୍ରାୟ ନଭେମ୍ବର

ଶେଷ ବେଳକୁ ପ୍ରାୟ ଯେତିକି ଉଚ୍ଚ ବିଦ୍ୟାଳୟ ସର୍ତ୍ତଗୁଡ଼ିକ ପୂରଣ କରିଥିଲେ ସେମାନଙ୍କୁ ମଞ୍ଜୁରୀ ଦେବା ପାଇଁ ଖବର କାଗଜରେ ଘୋଷଣା କରିବା ପାଇଁ ସଭାପତି ନିର୍ଦ୍ଦେଶ ଦେଲେ। ଏହା ହେଉଛି ବୋର୍ଡ ଇତିହାସରେ ଏକ ନୂତନ ଘଟଣା।

ବିଭିନ୍ନ ସ୍କୁଲ ପରିଦର୍ଶନ କଲାବେଳେ କଟକ, ବାଲେଶ୍ୱର, ମୟୂରଭଞ୍ଜ ଓ କେନ୍ଦୁଝର ଜିଲ୍ଲାରେ ସ୍କୁଲମାନଙ୍କୁ ଦେଖିଲା ବେଳେ ସେମାନେ କିପରି ଶିକ୍ଷା ପାଇଁ ଆଗ୍ରହୀ ଓ ତାଙ୍କର ସ୍କୁଲ ପ୍ରତିଷ୍ଠା ପାଇଁ ଆଗ୍ରହ ଥିଲା ଜଣାଗଲା। ଅବଶ୍ୟ ଅନେକ ସ୍କୁଲରେ ସ୍କୁଲ ନ ଥାଇ କାଗଜପତ୍ର ଥିବାର ଦେଖି ଆଶ୍ଚର୍ଯ୍ୟ ଲାଗିଲା। ତେଣୁ ଆମ ଅଞ୍ଚଳର ସ୍କୁଲ କର୍ତ୍ତୃପକ୍ଷ କଟକ ଯାଇ କିଛି ସାହାଯ୍ୟ ଚାହିଁଲେ ମୁଁ ଅକୁଣ୍ଠ ଚିତ୍ତରେ ଆଇନ ଅନୁଯାୟୀ ସାହାଯ୍ୟ କରୁଥିଲି।

ବୋର୍ଡରେ କାର୍ଯ୍ୟରତ ଥିଲା ବେଳେ ୧୯୭୫ ଡିସେମ୍ବର ୧୭ରୁ ୨୦ ତାରିଖରେ ଭୁବନେଶ୍ୱରରେ COBSE (Conference of Board of Secondary Education) ଅନୁଷ୍ଠିତ ହେଲା। ଏଥିରେ ଭାରତର ପ୍ରାୟ ସମସ୍ତ ପ୍ରଦେଶରୁ ମାଧ୍ୟମିକ ଶିକ୍ଷା ପରିଷଦର ସଭାପତି, ସମ୍ପାଦକ ଓ ପ୍ରତିନିଧିମାନେ ଯୋଗଦେଇ ଦେଶର ମାଧ୍ୟମିକ ସ୍ତରର ଶିକ୍ଷା, ପୁସ୍ତକ ମୁଦ୍ରଣ, ନୀତିନିର୍ଦ୍ଧାରଣ ଓ ପରୀକ୍ଷା ପରିଚାଳନା ସମ୍ପର୍କରେ ଏକ ଆଲୋଚନାଚକ୍ର ଅନୁଷ୍ଠିତ ହୋଇଥିଲା। ମୁଁ ସେଥିରେ ଯୋଗ ଦେଇ ନାନା ପ୍ରକାର ଅଭିଜ୍ଞତା ପାଇବାର ସୁଯୋଗ ପାଇଲି ଓ ବିଭିନ୍ନ ରାଜ୍ୟର ଶିକ୍ଷାର ପ୍ରଣାଳୀ, ପରିଷଦ ପରିଚାଳନା, ପୁସ୍ତକ ପ୍ରଣୟନ ଓ ପରୀକ୍ଷା ପରିଚାଳନା ଆଦି ସମ୍ପର୍କରେ ବିଶେଷ ଧାରଣା ମିଳିଲା। ଉକ୍ତ ଆମନ୍ତ୍ରିତ ସଦସ୍ୟମାନଙ୍କୁ ପୁରୀ, କୋଣାର୍କ ଓ ନନ୍ଦନକାନନ ଆଦି ବୁଲାଇ ଦେଖାଇବା ଦାୟିତ୍ୱ ଆଦି ଆମ ଉପରେ ଥିଲା। ମୋଟ ଉପରେ ଏହା ଭାବ ଆଦାନ ପ୍ରଦାନ ପାଇଁ ଏକ ସୁଯୋଗ ଓ ଉପଯୁକ୍ତ ମାଧ୍ୟମର ବ୍ୟବସ୍ଥା ଥିଲା।

୧୯୭୬ରେ ଭୂଗୋଳ ପୁସ୍ତକର ମେପ ଛପାଇବା ପାଇଁ ଭାରତ ସରକାରଙ୍କ ଡେରାଡୁନ ଅଫିସରୁ ସ୍ୱୀକୃତି ଆଣିବା ପାଇଁ ମୁଁ ଓ ଆମ ବିଭାଗର ସଂପୃକ୍ତ ଦାୟିତ୍ୱ ସମ୍ପନ୍ନ ମୁଖ୍ୟ କିରାନୀ ପ୍ରସନ୍ନ ମହାନ୍ତିଙ୍କ ସହ ଡେରାଡୁନ ଯାଇଥିଲୁଁ। ସଙ୍ଗରେ ମୋ ସ୍ତ୍ରୀ ମଧ୍ୟ ଯାଇଥିଲେ ଓ ସାଙ୍ଗରେ ମୋର ପିତାମାତା ଓ ସାନ ଖୁଡ଼ୀଙ୍କ ଅସ୍ଥି ନେଇ ଯାଇଥିଲୁଁ। ଡେରାଡୁନରୁ ମସୋରୀ ଭ୍ରମଣ ଓ ପ୍ରୟାଗ ଓ ଗୟା ଦେଇ କଲିକତା ବାଟେ ପ୍ରତ୍ୟାବର୍ତ୍ତନ କଲୁଁ।

ବୋର୍ଡର ମୁଖ୍ୟ ଦାୟିତ୍ୱ ପରୀକ୍ଷା ପରିଚାଳନା, ପ୍ରଶ୍ନପତ୍ର ଯୋଗାଣ,

ପରୀକ୍ଷା ଖାତା ପ୍ରେରଣ ତଥା ସଂଶୋଧନ ଓ ପରୀକ୍ଷକ ନିଯୁକ୍ତି, ମାର୍କ ସଂଗ୍ରହ ଓ ତାର ଟେବୁଲେସନ କରି ପରୀକ୍ଷାର୍ଥୀଙ୍କ ପାସ ଫେଲ ନିର୍ଦ୍ଧାରଣ ତଥା ଫଳ ପ୍ରକାଶନ। ଏହି କାମ ଦୀର୍ଘ ୨୦ ବର୍ଷରୁ ଅଧିକ ସମୟ ଧରି ପରିଚାଳନା କରା ଯାଇଥିଲେ ମଧ୍ୟ ତହିଁରେ ନାନା ତ୍ରୁଟି ହେତୁ ଫଳ ପ୍ରକାଶନର ବହୁ ବିଳମ୍ବ ଘଟୁଥିଲା। ଆମ ସମୟରେ ଫେବୃୟାରୀ ମାସରେ ପରୀକ୍ଷା ହୋଇ ଅପ୍ରେଲ/ମେ ମାସରେ ଫଳ ନିଶ୍ଚିତ ରୂପେ ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରକାଶିତ ହେଉଥିଲା। କିନ୍ତୁ କାଳକ୍ରମେ ସ୍କୁଲ ସଂଖ୍ୟା ବୃଦ୍ଧି, ଛାତ୍ର ସଂଖ୍ୟା ବୃଦ୍ଧି ହେତୁ ତଥା ପୋଷ୍ଟ ଅଫିସର ଆବଶ୍ୟକୀୟ ତତ୍ପରତା ଅଭାବରୁ ବହୁ ସମୟ ଅତିବାହିତ ହୋଇ ସମ୍ପୂର୍ଣ୍ଣ ରୂପେ ଫଳ ପ୍ରକାଶନରେ ବ୍ୟାଘାତ ସୃଷ୍ଟି ହେଉଥିଲା। ଏ ସବୁକୁ ଆଖି ଆଗରେ ରଖି ମୁଁ ଓ ୰ ଶ୍ରୀଯୁକ୍ତ ରାମନାରାୟଣ ପାଢ଼ୀ ମିଶି ପରୀକ୍ଷାର ଆଶୁ ଫଳ ପ୍ରକାଶନ ପାଇଁ କେନ୍ଦ୍ରୀୟ ମୂଲ୍ୟାୟନ (Central Valuation) କରା ଯିବାର ଏକ ପ୍ରସ୍ତାବ ସମ୍ପାଦକ ଓ ସଭାପତିଙ୍କୁ ଜଣାଇବାରୁ ସେମାନେ ଏହି ପ୍ରସ୍ତାବର ପୁଙ୍ଖାନୁପୁଙ୍ଖ ଆଲୋଚନା ଓ ନିୟମାବଳୀ, ଆବଶ୍ୟକୀୟ କାର୍ଯ୍ୟକ୍ରମ ଓ ଖର୍ଚ୍ଚ ସମ୍ପର୍କୀୟ ଏକ ଯୋଜନା ଚାହିଁଲେ। ତେଣୁ ଆମେ ଦୁହେଁ ମିଶି ୧୯୭୬ ସାଲରୁ ଆରମ୍ଭ କରି ଏହା ଶେଷ ଭାଗରେ ଏକ ରିପୋର୍ଟ ଦେଇ ସମୟ ଓ ଅର୍ଥର ଖର୍ଚ୍ଚର ପରିମାଣ ହ୍ରାସ ଓ ଯଥାସମୟରେ ପରୀକ୍ଷକଗଣ ଖାତା ମୂଲ୍ୟାୟନରେ ପାରିଶ୍ରମିକ ପ୍ରାପ୍ତି ଓ ରାଜ୍ୟର ବିଭିନ୍ନ ମୁଖ୍ୟ ସ୍ଥାନମାନଙ୍କରେ ମୂଲ୍ୟାୟନ କେନ୍ଦ୍ର ନିର୍ଦ୍ଧାରଣ, ଖାତା ପ୍ରେରଣର ବ୍ୟବସ୍ଥାର ଏକ ପୂର୍ଣ୍ଣାଙ୍ଗ ରିପୋର୍ଟ ଦେଲାରୁ ତାହା ବୋର୍ଡରେ, ପରୀକ୍ଷା ସମିତି ଓ କାର୍ଯ୍ୟକାରୀ ସମିତିର ଅନୁମୋଦନ ଲାଭ କଲା। ଏଠାରେ ସୂଚନାଯୋଗ୍ୟ ଯେ ଆମେ ଦୁହେଁ ମୁଁ, ଶ୍ରୀଯୁକ୍ତ ପାଢ଼ୀ ହାଇସ୍କୁଲ ପ୍ରଧାନ ଶିକ୍ଷକ ରୂପେ ଅଧିଷ୍ଠିତ ଥିଲୁଁ ଓ ପ୍ରଥମ ଥର ୧୯୭୭ ବାର୍ଷିକ ପରୀକ୍ଷାରେ ପ୍ରାୟ ୨୦ଟି କେନ୍ଦ୍ରରେ ସାରା ଓଡ଼ିଶାର ବିଭିନ୍ନ ସ୍ଥାନରେ ମୂଲ୍ୟାୟନ କେନ୍ଦ୍ର ସ୍ଥିର କରାଗଲା। ଏହି କେନ୍ଦ୍ରମାନଙ୍କରେ ଦୂରଦୂରାନ୍ତ ସ୍ଥାନୀୟ ଜିଲ୍ଲାରୁ ଖାତାପତ୍ର ଆସି ସ୍ଥାନୀୟ ବା ନିକଟବର୍ତ୍ତୀ ପରୀକ୍ଷକ, ନିରୀକ୍ଷକ (Scrutiniser)ଙ୍କୁ ନିଯୁକ୍ତି ଦେଇ କାର୍ଯ୍ୟ ଆରମ୍ଭ କରାଗଲା। କେନ୍ଦ୍ରୀୟ ହାଇସ୍କୁଲର ପ୍ରଧାନ ଶିକ୍ଷକ କେନ୍ଦ୍ର ପରିଚାଳନା (Camp Supervisor) ଓ ବୋର୍ଡର ଭାରପ୍ରାପ୍ତ କର୍ମଚାରୀ ଓ ସହକାରୀଗଣ (Camp Officer) ଯୋଗ ଦେଇ କାର୍ଯ୍ୟ ସମ୍ପାଦନ କଲେ। ଅବଶ୍ୟ ଏଥିପାଇଁ କର୍ମଚାରୀମାନେ କିଛି ବେଶୀ ଭତ୍ତା ପାଇଲେ। ମୁଁ ସେ ବର୍ଷ ସୁନାବେଢ଼ା ହାଇସ୍କୁଲକୁ ବୋର୍ଡ ତରଫରୁ Camp Officer ରୂପେ ମୂଲ୍ୟାୟନ କେନ୍ଦ୍ର ପରିଚାଳନା ପାଇଁ ଯାଇଥିଲି। ସେତେବେଳେ

ପ୍ରତ୍ୟେକ ଖାତା ସଂଶୋଧନ ପାଇଁ ଟ୦.୭୫ ପଇସା, ଦୈନିକ ଭତ୍ତା ଟ ୧୦ ଓ ଯିବା ଆସିବା ଖର୍ଚ୍ଚ ଆଦି ଦିଆ ଯାଉଥିଲା । କେମ୍ପ ଅଫିସର ଓ Camp Supervisorଙ୍କୁ ମଧ୍ୟ କିଛି ଭତ୍ତା ପାଇବାର ନିୟମ ଥିଲା । ସେତେବେଳେ ସୁନାବେଡ଼ା ହାଇସ୍କୁଲର ପ୍ରଧାନ ଶିକ୍ଷକ ରୂପେ ଅବସରପ୍ରାପ୍ତ ସରକାରୀ ହେ.ମା. ଂ କାହ୍ନୁଚରଣ ସାମଲ କାର୍ଯ୍ୟ କରୁଥିଲେ । ସେ ମହାଶୟ ବୋର୍ଡର ସହ ପ୍ରତ୍ୟକ୍ଷ ରୂପେ ସଂପୃକ୍ତ ଥିଲେ ଓ ପରୀକ୍ଷକମାନଙ୍କୁ ନିଜ ବିଦ୍ୟାଳୟରେ ରହିବା ପାଇଁ ଜାଗା ଦେଇଥିଲେ । ସେମାନଙ୍କ ଭୋଜନ ବ୍ୟବସ୍ଥା HAL କେଣ୍ଟିନରେ ସୁଲଭ ମୂଲ୍ୟରେ ମିଳିବାର ସୁବ୍ୟବସ୍ଥା କରିଥିଲେ । ସେହି କେଣ୍ଟିନରେ HAL କର୍ମଚାରୀମାନେ ଉପଯୁକ୍ତ ମୂଲ୍ୟରୁ କମ ମୂଲ୍ୟରେ Subsidy ପାଇ ଭୋଜନ କରୁଥିଲେ । ପ୍ରତ୍ୟେକ ଓଳିର ମିଲ ଖର୍ଚ୍ଚ ଟ୧.୩୦ ପଇସା ଓ ଜଳଖିଆ ପାଇଁ ପ୍ରତି ଜିନିଷର ଦାମ ଟ୦.୧୦ ପଇସା ଥିଲା । ଅର୍ଥାତ୍ ଚପ, ସିଙ୍ଗାଡ଼ା, ଆଳୁଚପ, ମିଠା ଆଦି । ଏପରି ଭାବେ ପ୍ରତ୍ୟେକ ପରୀକ୍ଷକ ବା ଅନ୍ୟ କର୍ମଚାରୀମାନଙ୍କର ଦୈନିକ ଖର୍ଚ୍ଚ ପ୍ରାୟ ଟ୩ ରୁ ବେଶୀ ପଡୁ ନ ଥିଲା । ମୁଁ ଓ ହେ.ମା. ସାମଲ ବାବୁ ତାଙ୍କ ବସାରେ ଏକାଠି ଖାଉଥିଲୁଁ ଓ ତାଙ୍କ ପିଅନ ଆମ ପାଇଁ ରାନ୍ଧି ଦେଉଥିଲେ । ଏପରି ଭାବରେ ସେହି କେନ୍ଦ୍ରଟି ନବମ ଦିନରେ ପହଞ୍ଚିବା ପୂର୍ବରୁ ମୁଁ ସମସ୍ତ ପରୀକ୍ଷକମାନଙ୍କୁ ଏକ ପ୍ରସ୍ତାବ ଦେଇ ତାଙ୍କର ମତାମତ ଗ୍ରହଣ କଲି, ଯେ ଯଦି ସମସ୍ତେ ଚାହିଁବେ ତେବେ ଶେଷ ଦିନ ଏକ ପଂକ୍ତି ଭୋଜନର ଆୟୋଜନ କରାଯିବ ଓ ପ୍ରତ୍ୟେକ ପରୀକ୍ଷକ ଓ ଅନ୍ୟ କର୍ମଚାରୀଗଣ ଯଦି ଜଣକୁ ଟ୫ କରି ଚାନ୍ଦା ଦେବେ ତେବେ ୧୯୭୭ ପରୀକ୍ଷକଙ୍କ ତରଫରୁ 1977 Central Valuation Sunabeda Examiner's Memorial ନାମରେ ଏକ ପାଣ୍ଠି ସ୍କୁଲକୁ ଯୋଗାଇ ଦିଆଯିବ ଓ ତାହାର ସୁଧରୁ ପ୍ରତିବର୍ଷ ସେହି ସ୍କୁଲରୁ ମେଟ୍ରିକ ପରୀକ୍ଷା ଉତ୍ତୀର୍ଣ୍ଣ ହୋଇଥିବା ସର୍ବୋଚ୍ଚ ମାର୍କ ରଖିଥିବା ଛାତ୍ରଙ୍କୁ ଟ୫୦ ର ଏକ ପୁରସ୍କାର ଦିଆଯିବ । ଏହି ପ୍ରସ୍ତାବରେ ସମସ୍ତେ ରାଜି ହେଲେ ଓ ପ୍ରତ୍ୟେକେ ଟ୧୦ କରି ଚାନ୍ଦା ଦେବାରୁ ଟ୫୦୦ର ଏକ ସ୍ଥାୟୀ ପାଣ୍ଠି ବିଦ୍ୟାଳୟକୁ ଓ ୧୯୭୭ ପରୀକ୍ଷାରେ ପ୍ରଥମ ହୋଇଥିବା ଛାତ୍ରଙ୍କୁ ଟ୫୦ ପୁରସ୍କାର ଏପରି ଟ୫୫୦ ହେ.ମା.ଙ୍କୁ ଦିଆଗଲା । ବାକୀ ସମୂହ ପଂକ୍ତି ଭୋଜନ ଓ ରାତ୍ରିରେ ସାଂସ୍କୃତିକ କାର୍ଯ୍ୟକ୍ରମ ପାଇଁ ଯାହା ଖର୍ଚ୍ଚ ହେଲା ସମସ୍ତେ ସାହାଯ୍ୟ କରିଥିଲେ । ଏପରି ଭାବରେ ୧୦ମ ଦିନ କେନ୍ଦ୍ର କାମ ସାରି ସଂଶୋଧିତ ଖାତା ଧରି ଏକ ଟ୍ରକ ଯୋଗେ କଟକ ଫେରିଲୁଁ । କଟକ ଫେରିବା ପରେ ହିସାବ କିତାବ କରି ଯାହା ଅଗ୍ରିମ ନେଇଥିବାର ପରିମାଣରୁ ବଳକା ହେଲା ତାକୁ ଆସି ବୋର୍ଡରେ

ଜମା ଦେଇ ରସିଦ ରଖିଲି । ଏହା ପୂର୍ବରୁ ଅନ୍ୟମାନେ ଯେଉଁ ଅଗ୍ରିମ ଟଙ୍କା ନେଉଥିଲେ ତାର ହିସାବ ନ ଦେବା ପର୍ଯ୍ୟନ୍ତ ଟଙ୍କା ନିଜର ପାଖରେ ରଖୁଥିଲେ ।

ଖାତାପତ୍ର ସଂଶୋଧନ ପରେ ମାର୍କ ଗୁଡ଼ିକ ସଂରକ୍ଷିତ ହୋଇ ଓଡ଼ିଶା ରାଜ୍ୟ ସାରା ଶିକ୍ଷକମାନଙ୍କୁ Tabulator ନିଯୁକ୍ତି ଦେଇ ତାଙ୍କ ପାଖକୁ ମାର୍କ ଓ Tabulation ଖାତା ପଠାଗଲା ବା ନିକଟସ୍ଥ ବ୍ୟକ୍ତିଙ୍କୁ ବୋର୍ଡକୁ ଆସି ନେଇ ଯିବାର ବ୍ୟବସ୍ଥା କରାଗଲା । ଏହି ନୂତନ ପ୍ରଣାଳୀ ଦ୍ୱାରା ପ୍ରାୟ ୨ ମାସ ମଧ୍ୟରେ ଫଳ ପ୍ରକାଶନ କରା ଯିବାର ସୁବିଧା ହେଲା । ଶେଷ ଭାଗରେ Tabulator ମାନେ କଟକ ବୋର୍ଡ ଅଫିସକୁ ଆସି ବାକୀ ଥିବା ମାର୍କ ନେଇ Tabulation ସାରିଲେ ଓ ସେମାନଙ୍କୁ କେତେକ ନିୟମ ସୂଚାଇ ଦିଆ ଯାଇଥିଲା ଯେପରିକି ସେମାନେ ନିଜେ ନିଜେ ପରୀକ୍ଷାର୍ଥୀଙ୍କ ପାସ, ଫେଲ ନିର୍ଦ୍ଧାରଣ କରି 'P' ବା 'F', I, II ଓ III ଲେଖି ପାରିବେ ।

ଏହା ବୋର୍ଡର ନୂତନ ପଦ୍ଧତି ଓ ଫଳ ପ୍ରକାଶନ ପାଇଁ ମଧ୍ୟ ସୁବିଧା କରାଗଲା ଓ ଫଳ ପ୍ରକାଶନର ଏକ ଏକ Result ଖାତା ଛପାଯାଇ ବିକ୍ରି କରା ଯିବାର ବନ୍ଦୋବସ୍ତ କରାଗଲା । ଏହି ଫଳ ଛପା ଖାତାଗୁଡ଼ିକ କଟକ, ସମ୍ବଲପୁର ଓ ବରହମପୁର ଆଞ୍ଚଳିକ ଅଫିସରେ ମିଳିଲା । ଅବଶ୍ୟ ଏବେ ଆହୁରି ଆଞ୍ଚଳିକ ଶାଖା ଖୋଲି ଗଲାଣି ଓ ଏହି ପ୍ରକାଶିତ ପୁସ୍ତିକାଫଳ ବିକ୍ରୟ ପାଇଁ ଓଡ଼ିଶାର ଅନ୍ୟାନ୍ୟ ଦୂରଦୂରାନ୍ତ କେନ୍ଦ୍ରସ୍ଥଳରେ ସୁବିଧା କରା ଯାଇଛି ।

ବୋର୍ଡରେ କାର୍ଯ୍ୟରତ ଥିଲା ବେଳେ ଦିନକର ଘଟଣା ସ୍ମରଣୀୟ । କୌଣସି କାରଣରୁ ସେ ଦିନ ସଭାପତି, ଉପସଭାପତି, ସମ୍ପାଦକ, ଡେପୁଟୀ ସମ୍ପାଦକ କାର୍ଯ୍ୟାନ୍ତରରେ କେହି କେହି କଟକ ଛାଡ଼ି ଅନ୍ୟତ୍ର ଚାଲି ଯାଇଥିଲେ । ତେଣୁ ବରିଷ୍ଠ କର୍ମଚାରୀ ହିସାବରେ ମୁଁ ସାରା ବୋର୍ଡର ଦାୟିତ୍ୱରେ ଥିଲି । ତେଣୁ ବୋର୍ଡରୁ ଯାହା ଚିଠି ବାହାରକୁ ଯିବା କଥା ସେ ସବୁ ମୋରି ଦସ୍ତଖତରେ ଯିବା କଥା । ତେଣୁ ବିଭିନ୍ନ ବିଭାଗରୁ ଯାହା ସବୁ ଚିଠିପତ୍ର ପୁରାପୁରି ପ୍ରସ୍ତୁତ ହୋଇ ଦସ୍ତଖତ ପାଇଁ ମୋ ନିକଟକୁ ଆସିଲେ ସର୍ବଶେଷ ସ୍ୱାକ୍ଷର ପାଇଁ, ସେତେବେଳେ ମୋର ମନେ ହେଲା ବୋର୍ଡର ସର୍ବୋଚ୍ଚ କର୍ତ୍ତାଙ୍କ ଦାୟିତ୍ୱ କେତେ ଗୁରୁତ୍ୱପୂର୍ଣ୍ଣ । ତେଣୁ ଯେଉଁଟା ସବୁ ଗତାନୁଗତିକ ବା ଆଗରୁ ଅଫିସରମାନଙ୍କ ଅନୁମତି ପ୍ରାପ୍ତ ଚିଠିପତ୍ର, ସେସବୁକୁ ସମ୍ପାଦକଙ୍କ ତରଫରୁ ସ୍ୱାକ୍ଷର କରି ପଠାଇ ଦେଲି । କିନ୍ତୁ ଯେଉଁ ସବୁ ଗୁରୁତ୍ୱପୂର୍ଣ୍ଣ ଓ ତାତ୍ପର୍ଯ୍ୟପୂର୍ଣ୍ଣ, ତାକୁ ସମ୍ପାଦକ ବା ସଂପୃକ୍ତ କର୍ମଚାରୀଙ୍କ ଆଗମନ ପରେ ଦସ୍ତଖତ କରିବାକୁ ନିର୍ଦ୍ଦେଶ ଦେଇଥିଲି । ଏହି ଦିବସଟି ମୋ ଜୀବନର ଏକ

ବଡ଼ ଗୌରବମୟ ଓ ଗୁରୁତ୍ୱପୂର୍ଣ୍ଣ ଦିବସ। ଏହା ପରେ ସମ୍ବଲପୁର ସହକାରୀ ସମ୍ପାଦକ ପଦବୀ ଖାଲି ପଡ଼ିବାରୁ ମୋତେ ସମ୍ବଲପୁରକୁ ବଦଳି ହେଲା ଓ ୧୯୭୭ ଡିସେମ୍ବର ମାସରେ ଆସି ସମ୍ବଲପୁରରେ ଯୋଗ ଦେଲି। ସମ୍ବଲପୁରରେ କାର୍ଯ୍ୟ କଲା ବେଳେ ମୋର ବଡ଼ ଝିଅ ଜୋଇଁ ସମ୍ବଲପୁର କାର୍ଯ୍ୟାଳୟରେ ଥିବାରୁ ମୁଁ ତାଙ୍କ ଘରେ ରହିଲି।

ସମ୍ବଲପୁରରେ ରହିବା ବେଳେ ମୋର ପ୍ରସ୍ତାବରେ ସମ୍ବଲପୁର କଚେରୀ ନିକଟରେ ଏକ ସରକାରୀ ଜାଗା ବୋର୍ଡ ନାମରେ ପଞ୍ଜୀକୃତ କରାଗଲା ଓ ବୋର୍ଡର କର୍ମଚାରୀମାନଙ୍କ ରହିବା ପାଇଁ ବାସସ୍ଥାନ ତିଆରି ସକାଶେ ସମ୍ବଲପୁର ଷ୍ଟେଡିଅମ ପାଖରେ କିଛି ଜାଗା କିଣି ସହ-ସମ୍ପାଦକଙ୍କ ପାଇଁ ଏକ କ୍ୱାଟର୍ସ ଓ କିରାଣୀମାନଙ୍କ ପାଇଁ ୨ଟି ଫ୍ଲାଟ ଘର ୪ ଜଣଙ୍କ ରହିବା ଭଳି, ଗୃହ ତିଆରି କରାଇବା ଆରମ୍ଭ କରାଗଲା। କିନ୍ତୁ ସେ ସବୁ ନିର୍ମାଣ ଶେଷ ହେବା ପୂର୍ବରୁ ମୋର ବୋର୍ଡରୁ ନିଜର ପୂର୍ବ ବିଭାଗକୁ ଫେରିବା ନିର୍ଦ୍ଦେଶ ଆସିବାରୁ ମୁଁ ୩୧.୫.୭୯ ଇ. ଦିନ ବୋର୍ଡରୁ ଅବ୍ୟାହତି ନେଇ ୧.୬.୭୯ରେ ସରକାରୀ ଉଚ୍ଚ ବିଦ୍ୟାଳୟ ସିଆଲଖଣ୍ଡଥାରେ ଯାଇ ଯୋଗ ଦେଲି। ସୂଚନାଯୋଗ୍ୟ ଯେ ମୋର ସରକାରୀ ନିୟମାନୁଯାୟୀ ମୋର ଚାକିରୀ, ୩ ବର୍ଷ ବୋର୍ଡରେ ସରି ଯାଇଥିଲା ଓ ବୋର୍ଡର ଅନୁରୋଧକ୍ରମେ ଆଉ ଏକ ବର୍ଷ ଅଧିକା ରହି କାମ କରୁଥିଲି। ତେଣୁ ମୋର ବୋର୍ଡ ଚାକିରୀ ଛାଡ଼ି ଆସିବାରେ ଆଦୌ ଦୁଃଖ ନ ଥିଲା। କାରଣ ବୋର୍ଡରେ ଥିଲା ବେଳେ ମୋର ବୋର୍ଡ ପ୍ରତି ଯାହା କର୍ତ୍ତବ୍ୟ ତାକୁ ସମ୍ପାଦନରେ କେବେ ଅବହେଳା ପ୍ରଦର୍ଶନ କରୁ ନ ଥିଲି। ଏ ମଧ୍ୟରେ ବୋର୍ଡର ସମ୍ପାଦକମାନଙ୍କ ପରିବର୍ତ୍ତନ ମଧ୍ୟ ହୋଇ ଯାଇଥିଲା। ମୋଟ ଉପରେ ପଶ୍ଚିମାଞ୍ଚଳର ଜଣେ କର୍ମଚାରୀ ଯାଇ କଟକ ପରି ଓଡ଼ିଶାର ସର୍ବୋତ୍କୃଷ୍ଟ କେନ୍ଦ୍ର ଓ ଜଟିଳତାପୂର୍ଣ୍ଣ ସ୍ଥାନରେ ଅଲଗା ମନୋଭାବର ପ୍ରାବଲ୍ୟରେ ରହି କାର୍ଯ୍ୟ କରିବା ଏକବାରେ ଅସମ୍ଭବ ମନେ କରୁଥିଲେ। କିନ୍ତୁ ଭଗବାନଙ୍କ କୃପା, ଗୁରୁ ଆଶୀର୍ବାଦ ଓ ମୋର କାର୍ଯ୍ୟ ଦକ୍ଷତା ଓ ବ୍ୟବହାରରେ ସମସ୍ତଙ୍କ ପ୍ରିୟ ପାତ୍ର ହୋଇ ବୋର୍ଡ କାମରୁ ଅବ୍ୟାହତି ନେଲି। କାରଣ ମୋର ବୋର୍ଡର କାର୍ଯ୍ୟକାଳ ଭିତରେ କେତେ ଅଧା ପଢୁଆ ଓ ମେଟ୍ରିକ ପାସ କରି ନ ଥିବା ସମସ୍ତ ୪ର୍ଥ ଶ୍ରେଣୀ କର୍ମଚାରୀମାନଙ୍କୁ ମେଟ୍ରିକ ପରୀକ୍ଷା ଦେବା ପାଇଁ ଉତ୍ସାହ ଦେଇ ସମସ୍ତଙ୍କୁ ମେଟ୍ରିକ ପାସ ପରେ ନିୟମିତ କିରାନୀ କାମରେ ନିଯୁକ୍ତି ପାଇବାର ପଥ ସୁଗମ କରାଗଲା। ତେଣୁ ଏ ପର୍ଯ୍ୟନ୍ତ ବୋର୍ଡର ସେହି କର୍ମଚାରୀଗଣ ମୋତେ ଭୁଲି ପାରି ନାହାନ୍ତି ଓ ଦେଖିଲେ ଯଥେଷ୍ଟ ସମ୍ମାନ ଦେଖାନ୍ତି। ଏହା ଜଣେ ପଶ୍ଚିମାଞ୍ଚଳ

ଅଧିବାସୀ ପକ୍ଷେ ଯେ ଏକ ଗୌରବମୟ ଘଟଣା ସମସ୍ତେ ସ୍ୱୀକାର କରନ୍ତି । ମୋର ବୋର୍ଡର କାର୍ଯ୍ୟରେ ଯୋଗ ଦେବା ବେଳେ ସମସ୍ତେ ଆଶଙ୍କା କରୁଥିଲେ ଯେ ମୁଁ ସେଠାରେ ଅସୁବିଧା ପରିସ୍ଥିତିର ସମ୍ମୁଖୀନ ହୋଇ ଫେରି ଆସିବି । କିନ୍ତୁ ମୁଁ ସେଠାକୁ ଯାଇ ଆସନ ଜମାଇ କାର୍ଯ୍ୟ କରି ଆମ ଅଞ୍ଚଳ ତଥା ସାରା ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ଆଗନ୍ତୁକମାନଙ୍କୁ ବୋର୍ଡ ତରଫରୁ ଯାହା ନ୍ୟାଯ୍ୟ ଅଧିକାର ଓ ଦାବୀ ତାକୁ ପ୍ରଦାନ କରି ସାରା ଓଡ଼ିଶାରେ ଖ୍ୟାତିସମ୍ପନ୍ନ ହେଲା ।

ବୋର୍ଡର କାର୍ଯ ସମ୍ପାଦନ ବେଳେ ୩୧.୫.୭୯ରେ ଖବର ଆସିଲା ଯେ କୌଣସି କାରଣ ହେତୁ ମୋତେ ସେହି ଦିନ ବୋର୍ଡରୁ ବିଦାୟ ନେବାକୁ ହେବ । ତାହା ମୋ ପାଖରେ ୩୧.୫.୭୯ର ସକାଳ ୯ଟା ବେଳେ କଟକ ଅଫିସରୁ ଖବର ଆସିଲା । ତେଣୁ ମୋର ଅନୁରୋଧକ୍ରମେ ଆମ ଅଫିସର କର୍ମଚାରୀଗଣ ମୋର ଅଫିସରୁ ଅବ୍ୟାହତି ପାଇଁ ସବୁ କାଗଜପତ୍ର ପ୍ରସ୍ତୁତ କରିବାରେ ଲାଗି ପଡ଼ିଲେ । ପ୍ରାୟ ସାଢ଼େ ୧୧ଟା/୧୨ଟା ବେଳେ ସବୁ କାଗଜପତ୍ର ପ୍ରସ୍ତୁତ ହୋଇ ଗଲା । ବୋର୍ଡରୁ ଆଗନ୍ତୁକ ମୋର ପରବର୍ତ୍ତୀ କର୍ମଚାରୀ ଶ୍ରୀ ପ୍ରବୋଧ କୁମାର ପଟ୍ଟନାୟକଙ୍କୁ ଅପେକ୍ଷା କରି ରହିଲୁଁ । ସେ ମହାଶୟ ୧୨.୫୫ଟାରେ ପହଞ୍ଚିଲା ବେଳକୁ ମୋର ତ୍ୟାଗପତ୍ର ଓ କାର୍ଯ୍ୟଭାର ହସ୍ତାନ୍ତର କାଗଜାତ ଅର୍ଥାତ୍ ବୋର୍ଡର ସଂପୃକ୍ତ ଆୟବ୍ୟୟର ହିସାବ, ବୋର୍ଡ ନାମରେ ଥିବା ସବୁ ବେଙ୍କ ଡ୍ରାଫ୍ଟ ଓ ପରୀକ୍ଷାର୍ଥୀଙ୍କ ପାସ୍ ସାର୍ଟିଫିକେଟ୍ ଆଦି ଗଣାଗଣି କରି ସଠିକ ରୂପେ ସଜ୍ଜିତ ରଖା ଯାଇଥିଲା । ତେଣୁ ପଟ୍ଟନାୟକ ବାବୁ ପହଞ୍ଚିଲା ବେଳକୁ ଏ ସବୁର ହିସାବ ଗଣି ଦେଇ ଦେଲି ଓ ସଂପୃକ୍ତ ବଡ଼ ବାବୁ ଘୋଷ ବାବୁ ଏସବୁ ତାଙ୍କ ପରେ ଉପସ୍ଥାପନ କରି ଦସ୍ତଖତ କରିବାକୁ ଅନୁରୋଧ କରିବାରୁ ସେ କେବଳ ଆଶ୍ଚର୍ଯ୍ୟ ହୋଇ ଅବାକ୍ ମୁହଁରେ ଚାହିଁ ରହିଲେ । ସେ ସଙ୍ଗେ ସଙ୍ଗେ ପ୍ରକାଶ କରି କହି ପକାଇଲେ ଯେ ଏସବୁ ମୁଁ କଣ ଦେଖୁଛି ? କାରଣ ମୋତେ ଏକ ଭିନ୍ନ ଧାରଣା ଦେଇ ପଠା ଯାଇଥିଲା ଓ ସମ୍ପାଦକଙ୍କ ସନ୍ଦେହ ଥିଲା ଯେ ବହୁତ ଗୁଡ଼ିଏ ଅର୍ଥ ଆତ୍ମସାତ କରାଯାଇଛି ଓ ଦରକାର ହେଲେ ପୋଲିସ ଜରିଆରେ ଅଫିସର ଚାର୍ଜ ନେବେ । କିନ୍ତୁ ଏପରି କୌଣସି ପରିସ୍ଥିତିର ମୁକାବିଲାର ସୃଷ୍ଟି ହୋଇ ନ ଥିଲା । ତେଣୁ ମୁଁ ତାଙ୍କୁ ହସ୍ତାନ୍ତର କାଗଜାତରେ ଦସ୍ତଖତ କରି ମୋର ଅବ୍ୟାହତି କାଗଜରେ ଦସ୍ତଖତ କରିବାକୁ ଅନୁରୋଧ କରି ମୋର ପାଇଁ ଉଦ୍ଦିଷ୍ଟ ନକଲଟି ଧରି ସ୍ଥାନୀୟ ଶିକ୍ଷା ମଣ୍ଡଳାଧୀଶ ଶ୍ରୀ ଲକ୍ଷ୍ମୀନାରାୟଣ ପାତ୍ରଙ୍କୁ ମୋର ବିଷୟରେ ଜଣାଇ ପରଦିନ ମୁଁ ସିଆଳଖଣ୍ଡଥା ଯାଇ ବିଦ୍ୟାଳୟରେ ଯୋଗଦାନ କରିବାର ଖବର ଦେବାରୁ ସେ ଅତିଶୟ ଆନନ୍ଦ ପ୍ରକାଶ କଲେ ।

ସଙ୍ଗେ ସଙ୍ଗେ ମୁଁ ଆମ ଅଫିସର ବଡ଼ ବାବୁ ଓ ଅନ୍ୟ କର୍ମଚାରୀମାନଙ୍କୁ ନବାଗତ ସହ-ସମ୍ପାଦକ ପଟ୍ଟନାୟକ ବାବୁଙ୍କ ଖାଦ୍ୟପେୟ ଓ ରହଣୀର ବ୍ୟବସ୍ଥା କରାଇ ବୋର୍ଡରୁ ଅବ୍ୟାହତି ନେଇ ଚାଲି ଆସିଲି । ଇତି ମଧ୍ୟରେ ପଟ୍ଟନାୟକ ବାବୁ ତାଙ୍କ ଅଫିସର ଦାୟିତ୍ୱ ଗ୍ରହଣ ଅତି ସୁରୁଖୁରୁରେ ସମ୍ପାଦିତ ହେବାର ଖବର କଟକ ଜଣାଇ ଦେଇଥିଲେ । ଏହା ଶୁଣି ସମସ୍ତେ କେବଳ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ଆକସ୍ମିକ ଆଦେଶ ପାଇ ମଧ୍ୟ କାର୍ଯ୍ୟଭାର ହସ୍ତାନ୍ତର କରା ଯିବାରେ କିଛି ଅସୁବିଧା ହୋଇ ନ ଥିଲା । କାରଣ ଉପରିସ୍ଥ କର୍ମଚାରୀମାନେ ଆମ ସମ୍ବଲପୁର ଅଫିସ ସମ୍ପର୍କରେ କୌଣସି ଅସ୍ୱାଭାବିକ ଅବସ୍ଥା ଶୁଣି ହଠାତ୍ ଏପରି ଏକ ପଦକ୍ଷେପ ନିଆ ଯାଇଥିଲା ବୋଲି ଜଣାଗଲା । କିନ୍ତୁ ଫଳତଃ ସେପରି କିଛି ଗୁରୁତର ପରିସ୍ଥିତିର ଅବକାଶ ନ ଥିଲା ।

## ସିଆଲଖଣ୍ଡଥା ସରକାରୀ ଉଚ୍ଚ ବିଦ୍ୟାଳୟରେ ଯୋଗଦାନ (୧.୬.୭୯ ରୁ ୨୬.୭.୮୦):

୧.୬.୭୯ ଦିନ ସକାଳୁ ଖିଆପିଆ ସାରି ସିଆଲଖଣ୍ଡଥା ହାଇସ୍କୁଲରେ ଯୋଗ ଦେବା ପାଇଁ ପ୍ରସ୍ତୁତି ପର୍ବ ଚାଲିଲା । ସେତେବେଳେ ସିଆଲଖଣ୍ଡଥାକୁ ସିଧାସଳଖ କୌଣସି ଯାନବାହନର ବ୍ୟବସ୍ଥା ନ ଥିବାରୁ ସମ୍ବଲପୁରରୁ ଗୋଡ଼ଭଗା ଯାଇ ସେଠାରୁ ତୁରୁମ ଯାଉଥିବା ଏକ ବସ ଯୋଗେ ମହୁଲପାଲି ଗ୍ରାମରେ ଓହ୍ଲାଇ ସେଠାରୁ ଚାଲି ଚାଲି ସିଆଲଖଣ୍ଡଥା ଅଭିମୁଖେ ଯାତ୍ରା କଲି । ସେଠାରେ ପହଞ୍ଚି ଦେଖିଲି ଯେ ବିଦ୍ୟାଳୟଟି ଗ୍ରୀଷ୍ମାବକାଶ ପାଇଁ ବନ୍ଦ ଅଛି । ସ୍ଥାନୀୟ ଶ୍ରୀ ରାଧେଶ୍ୟାମ ନାଏକ ବାବୁ ସହକାରୀ ଶିକ୍ଷକ ଛୁଟିରେ ସ୍କୁଲ ଦାୟିତ୍ୱରେ ଥିଲେ । ତାଙ୍କୁ ଖବର ଦେବାରୁ ସେ ସ୍କୁଲକୁ ଆସି ମୋର ଯୋଗଦାନ ପତ୍ର ଗ୍ରହଣ କଲେ ଓ ସ୍କୁଲର ଶିକ୍ଷକ ହାଜିରାରେ ଦସ୍ତଖତ କରି ସ୍କୁଲରେ ଯୋଗଦାନର ସ୍ଥିତିକୁ ଜଣାଇ ସମ୍ବଲପୁର ଶିକ୍ଷାମଣ୍ଡଳାଧୀଶଙ୍କ ନିକଟକୁ ମୋର ଯୋଗଦାନ କାଗଜ ଓ ତାର ନକଲ ଅନ୍ୟାନ୍ୟ ସଂପୃକ୍ତ ସରକାରୀ ସଂସ୍ଥାଗୁଡ଼ିକୁ ଯଥା ବରଗଡ଼ ଟ୍ରେଜେରୀ ଓ ଅନ୍ୟାନ୍ୟମାନଙ୍କୁ ଜଣାଇ ଦେଲି । ପରେ ପୁଣି ସେହି ନାଏକ ବାବୁଙ୍କୁ ସ୍କୁଲର ଅସ୍ଥାୟୀ ଦାୟିତ୍ୱ ପ୍ରଦାନ ପୂର୍ବକ ମୁଁ ସିଆଲଖଣ୍ଡଥାରୁ ପ୍ରତ୍ୟାବର୍ତ୍ତନ କରିବା ପାଇଁ ପ୍ରସ୍ତୁତ ହେଉଥିବା ବେଳେ ସେଇ ସ୍କୁଲର ପ୍ରତିଷ୍ଠାତା ଶ୍ରୀ ତୀର୍ଥବାସୀ ପଣ୍ଡା ମି.ଇ. ସ୍କୁଲ ଶିକ୍ଷକ ଓ ସ୍କୁଲର ପୂର୍ବତନ ଶିକ୍ଷକ ଶ୍ରୀ ପରୀକ୍ଷିତ ମିଶ୍ର ମୋ ଯୋଗଦାନ ଖବର ପାଇ ସ୍କୁଲରେ ହାଜର ହେଲେ । ସେମାନଙ୍କ ଅନୁରୋଧକ୍ରମେ ମୁଁ ପରୀକ୍ଷିତ ମିଶ୍ରଙ୍କ

ନିଜ ବାସଗୃହ କୁଡ଼ାପାଲିରେ ରାତ୍ରିଟି ବିଶ୍ରାମ ପାଇଁ ରହିଗଲି। ପରଦିନ ସକାଳୁ ପୁଣି ସୁବିଧା କରି ବରଗଡ଼ ଫେରିବାର ଇଚ୍ଛା ପ୍ରକାଶ କଲି।

ମୋର ଜର୍ଜ ହାଇସ୍କୁଲରେ ଦୀର୍ଘ ୧୮ ବର୍ଷ ପ୍ରଧାନ ଶିକ୍ଷକତା ତଥା ୫ ବର୍ଷ ବୋର୍ଡରେ ଚାକିରୀ କଲା ପରେ ସିଆଲଖଣ୍ଡଥାରେ ହେ.ମା. ଭାବେ ଯୋଗଦାନ ହୁଏତ କାହା କାହାକୁ ଆଶ୍ଚର୍ଯ୍ୟ ଲାଗିପାରେ। କିନ୍ତୁ ମୋର ଦୃଢ଼ ଧାରଣା ଓ ସମସ୍ତଙ୍କ ପ୍ରତି ଏହି ମତାମତ, ନିର୍ଦ୍ଦେଶ ତଥା ଉପଦେଶ ଯାହାର ଯେଉଁଠାରେ ଯେତେ ଦିନ ପାଇଁ ଦାନା ପାଣି ଅଛି ତାକୁ କେହି ଅନ୍ୟଥା କରି ପାରିବେ ନାହିଁ। ତେଣୁ ମୋର ଜର୍ଜ ହାଇସ୍କୁଲ ଶିକ୍ଷକତା ସମୟରେ ଜର୍ଜ ହାଇସ୍କୁଲ ଜିଲ୍ଲା ବେସରକାରୀ ଶିକ୍ଷକ ସଂଘର ମୁଖ୍ୟ କାର୍ଯ୍ୟାଳୟ ଥିଲା ଓ ମୁଁ ତହିଁର ସମ୍ପାଦକ ଥିଲି। ସେତେବେଳେ ସାରା ସମ୍ବଲପୁର ଜିଲ୍ଲାର ହାଇସ୍କୁଲର ବିଭିନ୍ନ ପରୀକ୍ଷା ତଥା ୭ମ ଶ୍ରେଣୀ ସାଧାରଣ ପରୀକ୍ଷାମାନଙ୍କ ପାଇଁ ପ୍ରଶ୍ନ ଯୋଗାଇବାର ବ୍ୟବସ୍ଥା ଥିଲା। ସେତେବେଳେ ସାରା ସମ୍ବଲପୁର ଜିଲ୍ଲାର ପ୍ରଧାନ ଶିକ୍ଷକମାନେ ବରଗଡ଼ ଯାଇ ପ୍ରଶ୍ନ ସଂଗ୍ରହ କରୁଥିଲେ। ସେତେବେଳେ ସିଆଲଖଣ୍ଡଥାର ଭୂତପୂର୍ବ ପ୍ରଧାନ ଶିକ୍ଷକ ୰ ଉଦୟନାଥ ପଣ୍ଡା, ବରପାଲି ହାଇସ୍କୁଲର ପ୍ରଧାନ ଶିକ୍ଷକ ୰ ଗଣନାଥ ଗଡ଼ତିଆ, ପଦ୍ମପୁର ହାଇସ୍କୁଲର ପ୍ରଧାନ ଶିକ୍ଷକ ୰ ଉଦୟନାଥ ସାମଲ, ଘେଁସର ତତ୍କାଳୀନ ପ୍ରଧାନ ଶିକ୍ଷକ ଓ ଆଜିର ଅବସରପ୍ରାପ୍ତ ଅଧ୍ୟାପକ ତଥା ପଦ୍ମପୁର ମହିଳା କଲେଜ ଅଧକ୍ଷ ଶ୍ରୀ ଶିବଶଙ୍କର ନାୟକ ଆଦି ଏକାଠି ହୋଇ ନାନା ଆଲୋଚନା ବେଳେ ଆମ୍ଭେମାନେ ଥଟ୍ଟାରେ କହି ପକାଉଥିଲୁଁ ଯେ ଯେହେତୁ ସ୍କୁଲ ଗୁଡ଼ିକ ୧.୩.୬୯ରୁ A Type ସ୍କୁଲ ରୂପେ ପରିବର୍ତ୍ତିତ ହୋଇଛି, ତେଣୁ ଦରକାର ହେଲେ ଯେ ଆମ୍ଭମାନଙ୍କୁ ବିଭିନ୍ନ ସ୍କୁଲକୁ ପରିବର୍ତ୍ତନ ଦୃଷ୍ଟିରୁ ହୁଏତ ଆମ୍ଭଙ୍କୁ କମଗାଁ, ସିଆଲଖଣ୍ଡଥା ଆଦି ସରକାରୀ ସ୍କୁଲକୁ ପରିବର୍ତ୍ତନ ହୋଇ ପାରେ। ଏହା ଶୁଣି ସମସ୍ତେ ମୋର ପ୍ରସ୍ତାବକୁ ଅସମ୍ଭବ ଓ ଅଯୌକ୍ତିକ କହି ହସରେ ଉଡ଼ାଇ ଦେଉଥିଲେ। କିନ୍ତୁ ବିଧିର ବିଧାନ ତ ବିଚିତ୍ର। କାଳର ଗତି ଅନୁସାରେ ଅବସ୍ଥା ଚକ୍ରରେ ମୋର ଭାଗ୍ୟରେ ବୋର୍ଡରୁ ଯାଇ ସିଆଲଖଣ୍ଡଥାରେ ଯୋଗ ଦେବାକୁ ହେଲା ଓ ବର୍ଷଟିଏ ସେଠାରେ ରହିଲି। ମୋର ଏହି ସ୍କୁଲରେ ଯୋଗଦାନ ସେ ଅଞ୍ଚଳବାସୀ ତଥା ସେଠାକାର ଶିକ୍ଷକବର୍ଗଙ୍କୁ ବେଶ ଉତ୍ସାହିତ ଓ ଆମୋଦିତ କରିଥିଲା। ଶ୍ରୀ ତୀର୍ଥବାସୀ ପଣ୍ଡା ଅବସର ପ୍ରାପ୍ତ ଜିଲ୍ଲା ଜଜ ରବିନାରାୟଣ ପଣ୍ଡାଙ୍କ ପିତା ତଥା ମି.ଇ. ସ୍କୁଲ ଶିକ୍ଷକ ଓ ହାଇସ୍କୁଲର ଉଦଯୋଗୀ ତୀର୍ଥବାସୀ ପଣ୍ଡା କହି ପକାଇଲେ ଆବେଗରେ ଯେ ଶଶି ବାବୁ ସ୍କୁଲରେ ଯୋଗ ଦେଲେ ଅର୍ଥାତ୍ ସ୍କୁଲ

ଏଣିକି ନାଚିଲା ଅର୍ଥାତ୍ ବେଶ ସୁରୁଖୁରୁରେ ଓ ଯଥାର୍ଥରେ ଉନ୍ନତି ପଥରେ ଚାଲିବ ଓ ସମସ୍ତେ ଏହାକୁ ସ୍ୱୀକାର କଲେ । ସେଦିନ ମୁଁ କୁଡ଼ାପାଲିର ଶ୍ରୀ ପରୀକ୍ଷିତ ମିଶ୍ରଙ୍କ ଆତିଥ୍ୟ ଗ୍ରହଣ କରି ପରଦିନ ସକାଳେ ସିଆଲଖଣ୍ଡଥାକୁ ଯାଉଥିବା ଏକ ଟ୍ରକରେ ଗୋଡ଼ଭଗା ଆସି ସେଠାରୁ ବରଗଡ଼ ଯାତ୍ରା କଲି ।

ବରଗଡ଼ରେ ଦିନେ ଦି ଦିନ ରହି ସମ୍ବଲପୁର ଆସିଲି । ମୋର ଆସିବାର ଖବର ପାଇ ବୋର୍ଡର କର୍ମଚାରୀଗଣ ମୋର ବିଦାୟ ସମ୍ବର୍ଦ୍ଧନା ସକାଶେ ଏକ ଭୋଜୀଭାତର ଆୟୋଜନ ପୂର୍ବକ ଏକ ସସ୍ନେହ ଉପହାର ପ୍ରଦାନ କରି ବିଦାୟ ଦେଲେ । ମୋର ସମ୍ବଲପୁରରେ ଥିବା ବ୍ୟବହୃତ ଜିନିଷସବୁ ଧରି ବରଗଡ଼ ଗଲି ଓ ବହୁ ବର୍ଷ ପରେ ପୁଣି ସ୍କୁଲ ବିଭାଗୀୟ ଗ୍ରୀଷ୍ମାବକାଶ ଉପଭୋଗ କଲି । ମୋର ସିଆଲଖଣ୍ଡଥାରେ ଅବସ୍ଥାପନ ବିଷୟ ଶୁଣି କେତେକ ଦୁଃଖିତ ହେଲେ ଓ ମୋର ସମ୍ମାନ ହାନିର ଚିନ୍ତା କଲେ । କିନ୍ତୁ ମୁଁ ତାଙ୍କୁ ଏକ ଉପଯୁକ୍ତ ଖେଳାଳୀ ରୂପେ ନିଜ କାର୍ଯ୍ୟକୁ ଗ୍ରହଣ କରି ସ୍କୁଲର ମୋ ଦ୍ୱାରା ଯଥାସମ୍ଭବ ଉନ୍ନତି କଲେ ମନୋଯୋଗ ଦେଲି । ଜୁନ ମାସ ଶେଷ ଭାଗରେ ଗ୍ରୀଷ୍ମାବକାଶ ପରେ ସ୍କୁଲ ଖୋଲା ଯାଉଥିବାରୁ ମୁଁ ମୋର ନିହାତି ଆବଶ୍ୟକୀୟ ବ୍ୟବହାର୍ଯ୍ୟ ବସ୍ତୁ ଅର୍ଥାତ୍ ବେଡିଂ ବିସ୍ତର, ଲଣ୍ଠନ ଓ କିଛି ପୋଷାକପତ୍ର ସାଇତି ରଖି ବିଦ୍ୟାଳୟ ଖୋଲିବାର ପୂର୍ବ ଦିନ ଉପର ଓଳି ବରଗଡ଼ରୁ ଡୁଲୁମ ଯାତ୍ରା କରୁଥିବା ବସ ପାଇଁ ପ୍ରସ୍ତୁତ ହେଲି । ପ୍ରକାଶ ଥାଉ କି ସେତେବେଳେ ସିଆଲଖଣ୍ଡଥାରେ ବରଗଡ଼ ଅଧିବାସୀ ମୋର ଜନୈକ ପୂର୍ବତନ ଛାତ୍ର ରାଜାରାମ ଦାଶ କିରାନୀ କାର୍ଯ୍ୟ କରୁଥିଲେ । ସେ ମୋର ସେ ସ୍କୁଲରେ ଯୋଗଦାନ କରିବା ଜାଣି ଆନନ୍ଦିତ ହେଲେ ଓ ମୋର ସେଠାରେ ରହିବାର କିଛି ଅସୁବିଧା ହେବ ନାହିଁ ବୋଲି ପ୍ରକାଶ କଲେ । ସେଠାରେ ହେ.ମା.ଙ୍କ ରହିବା ପାଇଁ ଏକ ପ୍ରଶସ୍ତ ବାସଗୃହ ଥିଲା । ସେ ମଧ ମୋ ସଙ୍ଗରେ ସ୍କୁଲ ଖୋଲିବାର ପୂର୍ବ ଦିନ ସିଆଲଖଣ୍ଡଥା ଅଭିମୁଖେ ବାହାରିଲେ । ଆଗରୁ ସେ ସିଆଲଖଣ୍ଡଥା ସ୍କୁଲର ୪ର୍ଥ ଶ୍ରେଣୀ କର୍ମଚାରୀଦ୍ୱୟଙ୍କୁ ଖବର ଦେଇ ଆମକୁ ମହୁଲପାଲି ବସ୍‌ଷ୍ଟେଣ୍ଡରେ ଅପେକ୍ଷା କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ଆମେ ଠିକ୍ ୩ଟା ବେଳେ ବରଗଡ଼ରୁ ବସ୍ ଯୋଗେ ଗୋଡ଼ଭଗା ବାଟେ ମହୁଲପାଲିରେ ପ୍ରାୟ ସାଢ଼େ ୫ଟା ବେଳେ ପହଞ୍ଚିଲୁଁ । ସେଠାରେ ସ୍କୁଲର ପିଅନ ଦୁଇ ଜଣ, ଚମରା ସେଠ ଓ ଭୋସାଗର ଅପେକ୍ଷା କରିଥିଲେ । ସେମାନେ ଆମର ବେଡିଂ ବାକ୍ସ ଆଦି ଧରି ଆଗେ ଆଗେ ଚାଲିଲେ । ମୁଁ ଓ ରାଜାରାମ ତଥା ଅନ୍ୟାନ୍ୟ ସିଆଲଖଣ୍ଡଥାର ଯାତ୍ରୀମାନେ ଆମର ସହଗାମୀ ହେଲେ । ସ୍କୁଲରେ ପହଞ୍ଚିଲା ବେଳକୁ ପ୍ରାୟ ସନ୍ଧ୍ୟା ସାଢ଼େ ୬ଟା ପର ହୋଇଥିଲା ।

ହେ.ମା.ଙ୍କ ବାସଗୃହକୁ ସଫାସୁତୁରା କରି ସେମାନେ ରଖିଥିଲେ । ରାତ୍ରିରେ ସେଠାରେ ଥିବା ହୋଟେଲରୁ ଖାଦ୍ୟ ଅଣାଗଲା ଓ ରାତ୍ରଟି କଟିଗଲା । ଖାଇ ସାରିବା ପରେ ସ୍କୁଲର ପିଅନ ଚମରା ସେଠ ଅନୁଗତ ସ୍ୱୀକାର ପୂର୍ବକ ଶୋଇବା ବେଳେ ପାଦ ସଞ୍ଚାଳନ କରି ପଥଶ୍ରମ ଜନିତ କଷ୍ଟ ଲାଘବ କରିଥିଲେ ।

ପର ଦିନ ସକାଳେ ସ୍କୁଲ ସମୟ ପୂର୍ବରୁ ପ୍ରସ୍ତୁତ ହୋଇ ହୋଟେଲରୁ ଖାଦ୍ୟ ଖାଇ ସ୍କୁଲକୁ ଯାଇ ଶିକ୍ଷକ ଓ ଛାତ୍ରମାନଙ୍କ ସହ ସାକ୍ଷାତ ହେଲା । ସ୍କୁଲ ସଂଲଗ୍ନ ମିଡିଲ ସ୍କୁଲର ଶିକ୍ଷକଗଣ ତଥା ଉ.ପ୍ରାଥମିକ ବିଦ୍ୟାଳୟର ଶିକ୍ଷକଗଣ ଆସି ସାକ୍ଷାତ କରି ସମ୍ମାନ ପ୍ରଦର୍ଶନ କରିଥିଲେ । ମୋର ସ୍କୁଲରେ ଯୋଗଦାନ ସେ ଅଞ୍ଚଳକୁ ଓ ସେଠାକାର ଶିକ୍ଷକ ତଥା ଜନସାଧାରଣଙ୍କୁ ଅସୀମ ଉତ୍ସାହ ଓ ଆନନ୍ଦ ଉଲ୍ଲାସ ପ୍ରଦାନ କଲା ।

ଅବଶ୍ୟ ମୋ ପକ୍ଷରେ ଏହା ଏକ ନବୀନ ଓ ଅଭିନବ ଆଶ୍ଚର୍ଯ୍ୟପ୍ରଦ ଘଟଣା । କାରଣ ଦୀର୍ଘ ୨୦/୨୫ ବର୍ଷର ଜର୍କ ହାଇସ୍କୁଲ ଭଳି ବିରାଟ ସ୍କୁଲର ଦାୟିତ୍ୱ ବହନ ଓ ପରିଚ୍ଳନା ତଥା ବୋର୍ଡରେ ସହସମ୍ପାଦକ ରୂପେ ଯୋଗଦାନ କରି ଗୁରୁଦାୟିତ୍ୱର ସମ୍ପାଦନ ପରେ ସିଆଳଖଣ୍ଡଥା ଭଳି ୬/୭ ଜଣ ଶିକ୍ଷକ, ଜଣେ କିରାନୀ ଓ ୧୦୮ ଜଣ ଛାତ୍ରସଂଖ୍ୟାର ଏକ ଛୋଟ ହାଇସ୍କୁଲର ପରିଚ୍ଳନା ମୋ ପକ୍ଷେ ଅତି ନ୍ୟୂନତମ ଦାୟିତ୍ୱ ବୋଲି ମନେ ହେଲେ ହେଁ ମୁଁ ମୋର ପରିସର ମଧ୍ୟରେ ଯଥାଶକ୍ତି ସ୍କୁଲର ଉନ୍ନତି କଅଣ କରା ଯାଇପାରେ ସେ ବିଷୟରେ ଚିନ୍ତା କଲି । ହାଇସ୍କୁଲ ଓ ମି.ଇ. ସ୍କୁଲ ଶିକ୍ଷକଙ୍କ ଏକ ମିଳିତ ବୈଠକ ଡକାଇ ବିଚ୍ର ବିମର୍ଷ ଓ ଆଲୋଚନା କଲି । ଆଲୋଚନା ପ୍ରସଙ୍ଗରେ ଜଣାଗଲା ଯେ ସ୍କୁଲର ନିଜସ୍ୱ କେତେ ଚ୍ଷଜମି ଅଛି ଓ ସ୍କୁଲରେ ଅବ୍ୟବହୃତ ସରକାରୀ ଅନୁଦାନ ତଥା ଚ୍ଷଜମିରୁ ମିଳୁଥିବା ଧାନର ମୂଲ୍ୟ ଗଚ୍ଛିତ ଅଛି । ତାପରେ ମନେ ମନେ ସ୍ଥିର କଲି ଏହି ପରିମାଣ ଧାନର ସଦ୍‌ବ୍ୟବହାର ସକାଶେ ।

କିଛି ଦିନ ରହଣି ପରେ ଜାଣିଲି ଯେ ସ୍କୁଲ ହତା ମଧ୍ୟ ଦେଇ ନିକଟସ୍ଥ ପପଙ୍ଗା ପାହାଡ଼ରୁ ଭାଲୁ, ଚିତାବାଘ ଆଦି ଯିବା ଆସିବା କରନ୍ତି । ତେଣୁ ବିଦ୍ୟାଳୟ ଯେ ଆପଦ ସଙ୍କୁଳ ଏଥିରେ କିଛି ସନ୍ଦେହ ରହିଲା ନାହିଁ । ତେଣୁ ସ୍କୁଲ ହତାକୁ ଆଲୋକ ପ୍ରଦାନ ଏକ ଅତ୍ୟାବଶ୍ୟକ ଓ ଜରୁରୀ ସମସ୍ୟା । ତେଣୁ ଗ୍ରାମର କେତେ ବିଶିଷ୍ଟ ଲୋକ ଓ ସ୍କୁଲର ଶିକ୍ଷକମାନଙ୍କ ସଙ୍ଗେ ଆଲୋଚନା କରି ବିଦ୍ୟାଳୟ ତଥା ଛାତ୍ରାବାସ ଓ ଶିକ୍ଷକ ବାସଗୃହକୁ ବିଦ୍ୟୁତ ଯୋଗାଣର ଗୁରୁତ୍ୱ ବିଷୟ ସମସ୍ତଙ୍କୁ ଉପଲବ୍ଧ କରାଇଲି । ମି.ଇ. ର ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ଯୁଧିଷ୍ଠିର ନାଏକ ମଧ୍ୟ

ତାଙ୍କ ବିଦ୍ୟାଳୟକୁ ବିଦ୍ୟୁତ ଆଲୋକ ନେବା ପାଇଁ ସ୍ୱୀକୃତି ପ୍ରଦାନ କରିବାରୁ ମୁଁ ତାର ପରଦିନ ଠାରୁ ସ୍କୁଲ ହତାକୁ ବିଦ୍ୟୁତ ଯୋଗାଣର ଯୋଜନାରେ ଅଗ୍ରସର ହେଲି । ତାପରେ ମୁଁ ଯେତେବେଳେ ବରଗଡ଼ ଗଲି ସେତେବେଳେ ବିଦ୍ୟୁତ ବିଭାଗୀୟ ଇଞ୍ଜିନିୟର ଓ ଓଭରସିଅରଙ୍କୁ ଦେଖା କରିବା ପାଇଁ ବିଦ୍ୟୁତ ଅଫିସକୁ ଗଲା ବେଳେ ଗ୍ରାମୀଣ ବିଦ୍ୟୁତ ଯୋଗାଯୋଗ ପାଇଁ ଶ୍ରୀ ଉପେନ୍ଦ୍ର ମିଶ୍ର ଜୁନିୟର ଇଞ୍ଜିନିୟର ଦାୟିତ୍ୱରେ ଥିଲେ । ପ୍ରକାଶ ଥାଉ କି ଉକ୍ତ ମିଶ୍ର ଆମ ଅଞ୍ଚଳର ଗଣ୍ୟମାନ୍ୟ ବ୍ୟକ୍ତି ଦେଶଭଟଲିର ଜନପ୍ରିୟ ମେନେଜର ୰ଗୋପାଳ ମିଶ୍ରଙ୍କ ପୁତ୍ର ଓ ସ୍ୱନାମଧନ୍ୟ ଶିକ୍ଷକ ୰କାହ୍ନୁ ମିଶ୍ରଙ୍କର ପୁତୁରା । ତେଣୁ ତାଙ୍କ ସଙ୍ଗେ ଏ ବିଷୟ ଆଲୋଚନା କଲା ବେଳେ ସେ ମତ ଦେଲେ ଯେ ଯଦି ତତ୍କାଳୀନ Ex. Engineer ଶ୍ରୀଯୁକ୍ତ ଅଙ୍ଗଠା ପଟେଲ ସେତେବେଳେ ଏକ ସହାନୁଭୂତି ସମ୍ପନ୍ନ ସମ୍ବଲପୁରିଆ କର୍ମଚାରୀ ଥିଲେ ଓ ସେ ଯଦି ତାଙ୍କୁ ମୌଖିକ ଆଦେଶ ଦିଅନ୍ତି ତେବେ ସେ ବିଦ୍ୟୁତ ଯୋଗାଣରେ ସେ ସାହାଯ୍ୟ କରିବେ । ସେତେବେଳେ ସିଆଲଖଣ୍ଡଥା ଗାଁକୁ କେବଳ ବିଜୁଳି ଯୋଗାଣ ଥିଲା ଓ ସ୍କୁଲକୁ ବିଜୁଳି ନେବାକୁ ହେଲେ ଆଉ ୪/୬ଟି ବିଜୁଳି ଖମ୍ବର ଆବଶ୍ୟକତା ହୋଇପାରେ । ତେଣୁ Ex. Engineerଙ୍କ ଆଦେଶ ସାପେକ୍ଷ । ମୁଁ ତାଙ୍କ ସଙ୍ଗେ କଥାବାର୍ତ୍ତା କରି Ex. Engineerଙ୍କ ସହ ସାକ୍ଷାତ କରି କହିଲେ ଯେ ସିଆଲଖଣ୍ଡଥା ହାଇସ୍କୁଲ, ମି.ଇ. ସ୍କୁଲ ଓ ଉ.ପ୍ରା. ସ୍କୁଲ ଏକ ହତା ମଧ୍ୟରେ ଓ ତାହା ଆପଦ ସଙ୍କୁଳ ତେଣୁ ସେଠାକୁ ବିଦ୍ୟୁତ ଯୋଗାଣ ଏକାନ୍ତ ପ୍ରୟୋଜନ ଓ ଜରୁରୀ । ତେଣୁ ତାଙ୍କ ଆଦେଶ ହେଲେ ଆମ ସ୍କୁଲର ଅନ୍ତତଃ ବିଦ୍ୟୁତକରଣ କାର୍ଯ୍ୟ ଆରମ୍ଭ କରିବୁ । ସେଥିପାଇଁ ଆମର ଅନୁରୂପ ପରିମାଣ ସମ୍ବଳ ଅଛି । ସେ ସଙ୍ଗେ ସଙ୍ଗେ ସଂପୃକ୍ତ ସହକାରୀ ଯନ୍ତ୍ରୀ ଉକ୍ତ ମିଶ୍ରଙ୍କୁ ଡକାଇ ପଠାଇ ସ୍କୁଲକୁ ବିଦ୍ୟୁତ ଯୋଗାଣର ସୁବିଧା ଅସୁବିଧା ବିଷୟରେ ଆଲୋଚନା କରି ସେଠାକୁ ଶୀଘ୍ର ଯୋଗାଣ ବ୍ୟବସ୍ଥା କରିବାକୁ ଅନୁମତି ଦେଲେ । ମିଶ୍ର ବାବୁ ତାଙ୍କ ସଙ୍ଗେ ଆଲୋଚନା ପରେ ମୋତେ ସ୍କୁଲ ଓ ଛାତ୍ରାବାସକୁ ବିଦ୍ୟୁତିକରଣ ପାଇଁ ଆଗେଇବାକୁ ପ୍ରସ୍ତାବ ଦେଲେ ଓ ସଙ୍ଗେ ସଙ୍ଗେ ତାଙ୍କର ବିଭାଗୀୟ ସିଆଲଖଣ୍ଡଥା କର୍ମଚାରୀଙ୍କୁ ପତ୍ର ଦ୍ୱାରା ଆମକୁ ଯଥାଶୀଘ୍ର ସାହାଯ୍ୟ ପାଇଁ ଅନୁମତି ପତ୍ର ଦେଲେ ।

ମୁଁ ତାପରେ ସ୍କୁଲ ଓ ଛାତ୍ରାବାସର ବିଦ୍ୟୁତିକରଣ ସକାଶେ ଯାବତୀୟ ସାମଗ୍ରୀ ବରଗଡ଼ କୁମାର ଇଲେକ୍ଟ୍ରିକାଲ୍ସଙ୍କ ଠାରୁ ଯୋଗାଡ଼ କରି ସେ ସବୁ ଧରି ସିଆଲଖଣ୍ଡଥାରେ ପହଞ୍ଚିଲି । ମିଶ୍ରବାବୁଙ୍କ ପତ୍ରଟି ସ୍ଥାନୀୟ ଲାଇନମେନକୁ ଦେବାରୁ ସେ ସେଥିରେ ସହ ସମ୍ମତ ହୋଇ କାର୍ଯ୍ୟ ଆରମ୍ଭ କଲେ ଓ ପ୍ରାୟ ୮/୧୦ ଦିନ ମଧ୍ୟରେ ସ୍କୁଲ, ଛାତ୍ରାବାସ, ହେ.ମା. କ୍ୱାଟର୍ସ ଆଦି ସମସ୍ତ ଘରକୁ ବିଦ୍ୟୁତ ପହଞ୍ଚିଲା

ଭଳି ଅନ୍ତତଃ ୧.୫/୨ ପଏଣ୍ଟ କମ କରିବାକୁ ଅନୁରୋଧ କଲି ଓ ଧୀରେ ଧୀରେ ଅନ୍ୟାନ୍ୟ କାମ ସାରିବାକୁ କହିଲି । ଏଆଡ଼େ କାମ ଚାଲିଥାଏ ଓ ମୁଁ ବରଗଡ଼ ଯାଇ Ex. Engineerଙ୍କୁ ଖବର ଦେଲି ଯେ ଉକ୍ତ ମହାଶୟ ଆସି ୧୫ ଅଗଷ୍ଟ ଦିନ ଆମ ସ୍କୁଲର ପତାକା ଉତ୍ତୋଳନର ମୁଖ୍ୟ ଅତିଥି ଓ ନୂତନ ବିଦ୍ୟୁତ ଯୋଗାଣ ଉଦ୍‌ଘାଟନ କରିବେ । ଏହା ପରେ ସେ ମିଶ୍ରଙ୍କୁ ବିଦ୍ୟୁତ ଯୋଗାଣର ଅଗ୍ରଗତି ସମ୍ପର୍କରେ ସଚେତନ କରାଇ ଦେଇ କହିଲେ ଯେ ସେ ବିଦ୍ୟୁତ ଯୋଗାଣ ଉଦ୍‌ଘାଟନ କରିବେ ନାହିଁ । କିନ୍ତୁ ଆମର ଅନୁରୋଧ କ୍ରମେ ସ୍କୁଲର ପତାକା ଉତ୍ତୋଳନରେ ଯୋଗ ଦେବାକୁ ସମ୍ମତି ପ୍ରଦାନ କଲେ । ଏହା ହେଉଛି ଅଗଷ୍ଟର ପ୍ରଥମ ସପ୍ତାହ ୬/୭ ତାରିଖ । ବର୍ଷା ମାସ, ବର୍ଷା ଲାଗିଛି । ତଥାପି ମିଶ୍ର ମହାଶୟ ୮ଟା ବିଜୁଳି ଖୁଣ୍ଟ, ତାର, ଏକ ଟ୍ରକରେ ପଠାଇ ଦେଲେ ଓ କଡ଼ା ତାଗିଦ କରିଥିଲେ ଯେ ଗାଁରୁ ତାର ଟାଣି ସ୍କୁଲକୁ ପହଞ୍ଚାଇବା ପାଇଁ ଯେତେଟା ଖୁଣ୍ଟ ଦରକାର ତାକୁ ଶୀଘ୍ର ସାରି ସେମାନେ ଫେରିବେ ।

ଏ ମଧ୍ୟରେ ଦିନେ ପାଖ ଗାଁମାନଙ୍କର ବିଶିଷ୍ଟ ଲୋକମାନଙ୍କୁ ତଥା ଗାଁର ମୁଖିଆ ଲୋକଙ୍କୁ ତଥା ଯୁବକମାନଙ୍କୁ ଡକାଇ ଏକ ସଭାର ଆୟୋଜନ କରାଗଲା । ସେଥିରେ ସ୍ୱାଧୀନତା ଦିବସ ପାଳନ, ବିଜୁଳି ଯୋଗାଣର ଉଦ୍‌ଘାଟନ ଓ ବ୍ୟକ୍ତିଗତ ଦାନରେ ପଂକ୍ତି ଭୋଜନର ଆୟୋଜନର ବିଚାର କରାଗଲା । ସମସ୍ତେ ଏଥିରେ ରାଜି ହେଲେ ।

୧୫ ଅଗଷ୍ଟ ପାଇଁ ପ୍ରାଥମିକ, ମିଡିଲ ଓ ହାଇସ୍କୁଲର ଛାତ୍ରମାନଙ୍କର ଏକ ମିଳିତ ପେରେଡର ଆୟୋଜନ ପାଇଁ ଅଭ୍ୟାସ ଆରମ୍ଭ କରାଗଲା ଓ ଆମ ବିଦ୍ୟାଳୟର ଖେଳ ଶିକ୍ଷକ ଶ୍ରୀ ବଳରାମ ମିଶ୍ର ସେ ଦାୟିତ୍ୱରେ ରହିଲେ । ସ୍କୁଲର ପୁରାତନ ଅବ୍ୟବହୃତ ନଷ୍ଟପ୍ରାୟ ଡ୍ରମ୍ ଓ ସାଇଡ୍‌ଡ୍ରମକୁ ସମ୍ବଲପୁରରେ ମରାମତି କରାଯାଇ ଅଣାଗଲା । ଏପରି ଭାବେ ଏକ ନୂତନ ଉତ୍ସାହ ଓ ଉନ୍ମାଦନା ମଧ୍ୟରେ ସ୍ୱାଧୀନତା ଦିବସ ପାଳନ ପାଇଁ ପ୍ରଚେଷ୍ଟା ଚାଲିଲା ।

ଅଗଷ୍ଟ ୧୨ ତାରିଖ ଦିନ ପବିତ୍ର ଜନ୍ମାଷ୍ଟମୀ ତିଥିରେ ସ୍ଥାନୀୟ ବିଶିଷ୍ଟ ବ୍ୟବସାୟୀ ଓ ଶିକ୍ଷା ଓ ଭଗବତ୍ ପ୍ରେମୀ ୰ ରାମକୁମାର ଅଗ୍ରୱାଲଙ୍କ ଦ୍ୱାରା ସ୍କୁଲର ବିଦ୍ୟୁତ ଯୋଗାଣ ଉଦ୍‌ଘାଟିତ ହେଲା । ଫଳରେ ସ୍କୁଲ ହତାରେ ବିଦ୍ୟୁତ ଆଲୋକ ଝଲସି ଉଠି ସମସ୍ତଙ୍କୁ ଆନନ୍ଦ ଓ ଉତ୍ସାହ ଯୋଗାଇଲା । ଏପରି ଭାବେ ହାଇସ୍କୁଲ, ଛାତ୍ରାବାସ, ମିଡିଲ ସ୍କୁଲ ତଥା ଶିକ୍ଷକମାନଙ୍କ କ୍ୱାଟର୍ସ ଆଦି ସବୁ ଘରେ ବିଦ୍ୟୁତ ଯୋଗାଣ ସ୍କୁଲର ପ୍ରଗତି ଇତିହାସରେ ଏକ ସ୍ମରଣୀୟ ମାଇଲଖୁଣ୍ଟ ରୂପେ ପରିଗଣିତ ହେଲା ।

ଅଗଷ୍ଟ ୧୫ ତାରିଖ ଦିନ ବରଗଡ଼ର ବିଦ୍ୟୁତ ବିଭାଗୀୟ ଯନ୍ତ୍ରୀ ଶ୍ରୀ ଅର୍ଗଁଠା ପଟେଲ ଆମ ସ୍କୁଲକୁ ଆସି ସ୍କୁଲର ପତାକା ଉତ୍ତୋଳନରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ଯେଉଁ ସମ୍ମାନ ପାଇଲେ ତାହା ତାଙ୍କ ଜୀବନର ଏକ ବିଶିଷ୍ଟ ଘଟଣା ବୋଲି ମନେ କରି ବେଶ କୃତଜ୍ଞ ଓ ଗର୍ବ ଅନୁଭ କରିଥିଲେ। ସେ ବି ସେଠାରେ ଭବ୍ୟ ସମ୍ବର୍ଦ୍ଧନା ପାଇ ଭୋଜୀଭାତ ପରେ ବରଗଡ଼ ଫେରିଲେ। ସିଆଲଖଣ୍ଡଥାରେ ମୁଁ ଯୋଗ ଦେଲା ପରେ ଜଣାଗଲା ଯେ ସରକାରୀ ଅନୁଦାନ ଟଙ୍କା କିଛି ପ୍ରାୟତଃ ଟ. ୧୫୦୦ ଖର୍ଚ୍ଚ ନ ହୋଇ ଗଚ୍ଛିତ ଅଛି ଓ ତାହା ସ୍କୁଲର ଦରକାରୀ ଆସବାବ ପ୍ରତି ଉଦ୍ଦିଷ୍ଟ। ତେଣୁ ଶିକ୍ଷକ ତଥା ସ୍ଥାନୀୟ ବିଦ୍ୟାଳୟର ସଂପୃକ୍ତ ବ୍ୟକ୍ତିଙ୍କ ସଙ୍ଗେ ଆଲୋଚନା କରି ଉକ୍ତ ପରିମାଣ ଅର୍ଥରେ ସ୍କୁଲ ପାଇଁ କେତେକ ଚୌକୀ, ହେ.ମା.ଙ୍କ ପାଇଁ ଏକ ଚଳନଶୀଳ ଚୌକୀ ଓ କ୍ୱାଟର୍ସ ପାଇଁ ଏକ ପଲଙ୍କ କିଣା ଯାଇଥିଲା।

ଏହା ପରେ ଗୁରୁଦିବସ ପାଳନ ପାଇଁ ସ୍କୁଲର ଅବସରପ୍ରାପ୍ତ ପୂର୍ବତନ ପ୍ରଧାନ ଶିକ୍ଷକ ୰ ଉଦୟନାଥ ପଣ୍ଡାଙ୍କୁ ନିମନ୍ତ୍ରଣ କରା ଯାଇଥିଲା ଓ ସେ ମହାଶୟ ଉକ୍ତ ଗୁରୁଦିବସ ପାଳନ ପାଇଁ ଆସି ଯୋଗ ଦେଇ ସ୍କୁଲର ସାମୂହିକ ଉନ୍ନତି ଦେଖି ଆତ୍ମ ସନ୍ତୋଷ ଲାଭ କରିଥିଲେ। ପ୍ରାଥମିକ, ମିଡିଲ ଓ ହାଇସ୍କୁଲର ସମସ୍ତ ଛାତ୍ର ଗୋଟିଏ ଗୋଟିଏ ଫୁଲମାଳ ଆଣି ତାଙ୍କୁ ଭକ୍ତି ପ୍ରଦର୍ଶନର ନିଦର୍ଶନ ସ୍ୱରୂପ ପ୍ରଦାନ କରିଥିଲେ। ଏପରିକି ସେ ଫୁଲମାଳରେ ଶ୍ରୀଯୁକ୍ତ ପଣ୍ଡାଙ୍କ ମୁଖମଣ୍ଡଳ ସମ୍ପୂର୍ଣ୍ଣ ଆଚ୍ଛାଦିତ ହେଲା। ସେ ଏଥିରେ ଅଭିଭୂତ ହୋଇ ଯାଇଥିଲେ। ଏହି ଉପଲକ୍ଷେ ସାଂସ୍କୃତିକ କାର୍ଯ୍ୟକ୍ରମ ଓ ଭୋଜୀଭାତର ଆୟୋଜନ ମଧ୍ୟ କରା ଯାଇଥିଲା।

ଉକ୍ତ ସ୍କୁଲରେ ରହଣୀ କାଳରେ ରାକ୍ଷୀ ପୂର୍ଣ୍ଣିମା, ଗାନ୍ଧୀ ଜୟନ୍ତୀ, ବିଶ୍ୱ କୁଷ୍ଠ ଦିବସ ଓ ବାର୍ଷିକ ପୁରସ୍କାର ବିତରଣ ଉତ୍ସବ ପାଳନ ବେଳେ ବୁର୍ଲା ଜଳସେଚନ ବିଭାଗ Sup. Engineer ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ସ୍ୱାଇଁ, ଶ୍ରୀ ଦୟାଲାଲ ଯୋଷୀ ଓ ତତ୍କାଳୀନ ସବ୍ କଲେକ୍ଟର ଶ୍ରୀ ରମେଶ ମିଶ୍ର I.A.S. ଯଥାକ୍ରମେ ଯୋଗ ଦେଇଥିଲେ। ସ୍କୁଲ ବାର୍ଷିକ କ୍ରୀଡ଼ା ପ୍ରତିଯୋଗିତାରେ ଶିକ୍ଷା ବିଭାଗ ମଣ୍ଡଳାଧୀଶ ଶ୍ରୀ ଲକ୍ଷ୍ମୀନାରାୟଣ ପାତ୍ର ଯୋଗ ଦେବା ପାଇଁ ସ୍ୱୀକୃତି ଦେଇ କାର୍ଯ୍ୟବଶତଃ ଯୋଗ ଦେଇ ନ ପାରିବାରୁ ସ୍ଥାନୀୟ ବିଶିଷ୍ଟ ଶିକ୍ଷା ପ୍ରେମୀ ତଥା ସ୍କୁଲର ପୂର୍ବତନ ଛାତ୍ର ଶ୍ରୀଧର ଦାଶ ମୁଖ୍ୟ ଅତିଥି ଭାବେ ଯୋଗ ଦେଇଥିଲେ। ପରଦିନ ମଣ୍ଡଳାଧୀଶ ଶ୍ରୀଯୁକ୍ତ ପାତ୍ର ସ୍କୁଲରେ ପହଞ୍ଚି ତାଙ୍କ ପୂର୍ବ ଦିନ ନ ପହଞ୍ଚି ପାରିବାର କାରଣ ଦର୍ଶାଇ

ତାଙ୍କ ଦୁର୍ଭାଗ୍ୟ ବୋଲି ଦୁଃଖ ପ୍ରକାଶ କରିଥିଲେ। ସେ ଅସମୟରେ ପହଞ୍ଚି ସ୍କୁଲ ପରିଦର୍ଶନ ଆଳରେ ଅତି ଅଳ୍ପ ସମୟ ମଧ୍ୟରେ ତାଙ୍କ ପାଇଁ ଆୟୋଜିତ ଚର୍ବ୍ୟ, ଚୋଷ୍ୟ, ଲେହ୍ୟର ବ୍ୟବସ୍ଥା ଦେଖି କୃତ୍ୟକୃତ୍ୟ ହୋଇ କହି ପକାଇ ଥିଲେ ଯେ ତାଙ୍କ ଜୀବନରେ ଏପରି ଆତିଥ୍ୟ କେବେ ପୂର୍ବରୁ ପାଇ ନ ଥିଲେ ଓ ଏତେ ଆୟୋଜନ କେବେ ଦେଖି ନ ଥିଲେ। ସିଆଳଖଣ୍ଡଥା ଭଳି ଏକ ପଲ୍ଲୀ ଅଞ୍ଚଳରେ ଏପରି ଏକ ଆୟୋଜନ ପ୍ରକୃତ ପକ୍ଷେ ଯଦିଓ କଳ୍ପନାତୀତ ଓ ଅସମ୍ଭବ ମନେ ହେଉଥିଲା, ତଥାପି ଶିକ୍ଷକମାନଙ୍କର ପରିବାରବର୍ଗଙ୍କ ଆନ୍ତରିକତା ଓ ସହାନୁଭୂତି ଏଥିପ୍ରତି ସର୍ବାଦୌ ଉଲ୍ଲେଖନୀୟ ଓ ସ୍ମରଣୀୟ। ପ୍ରକୃତରେ ଏଥିରେ ଭଗବତ୍‌କୃପା ଓ ଗୁରୁକୃପାର ଫଳ ନିହିତ ହୋଇଥିଲା ନିଶ୍ଚୟ।

ମୋର ସିଆଳଖଣ୍ଡଥାରେ ଯୋଗଦାନ ପରେ ଏକ ବସ୍ ସିଧାସଳଖ ସିଆଳଖଣ୍ଡଥା ଚଳାଇବାକୁ ସରକାରଙ୍କୁ ଅନୁରୋଧ କରା ଯାଇଥିଲା ଓ ମୋର ସିଆଳଖଣ୍ଡଥାରୁ ଚ୍ଛଳି ଆସିବା ପରେ ସେ ଅନୁରୋଧ ବଳରେ ଏକ ସରକାରୀ ବସ୍ ଓ ଘରୋଇ ବସ୍ ଯିବା ଆସିବାର ବ୍ୟବସ୍ଥା ହୋଇଥିଲା। ଯଥାଯଥ ଭାବେ ସ୍କୁଲ କାମ ଚ୍ଛଳିଥିବା ସହ ଉପଯୁକ୍ତ ସମୟରେ ସ୍କୁଲରେ ବିଭିନ୍ନ ଉତ୍ସବ ଓ ଦିବସ ପାଳନ ହେତୁ ସ୍ଥାନୀୟ ଲୋକେ କହୁଥିଲେ ଯେପରିକି ମୋର ସେଠାରେ ରହଣି ବହୁକାଳରୁ ଓ ସମସ୍ତେ ପ୍ରାୟ ସ୍କୁଲର ପ୍ରତ୍ୟେକ କାର୍ଯ୍ୟରେ ସଂପୃକ୍ତ। ସ୍ଥାନୀୟ ସରକାରୀ ଡାକ୍ତର ଶ୍ରୀ ଉମେଶ ମିଶ୍ର ମଧ୍ୟ ଏଥିରୁ ବାଦ ନ ଥିଲେ। ମୋଟ ଉପରେ ସ୍କୁଲରେ ବିଭିନ୍ନ ପର୍ବପର୍ବାଣୀ ପାଳନ, ଭୋଜୀଭାତ ତଥା ଅନ୍ୟାନ୍ୟ କାର୍ଯ୍ୟକ୍ରମ ସବୁ ଜନସାଧାରଣଙ୍କୁ ଆକୃଷ୍ଟ କରୁଥିଲା।

ପ୍ରକାଶ ଥାଉ କି ଜଳସେଚନ ବିଭାଗର ସହାୟତାରେ ବିଦ୍ୟାଳୟକୁ ସପ୍ତାହକୁ ଥରେ କେନାଲ ପାଣି ଅଣାଯାଇ ବଗିଚ୍ଛ ଓ କୂଅଁରେ ବ୍ୟବହୃତ ହେଉଥିଲା ଯଦ୍ୱାରା ସ୍କୁଲ ବଗିଚ୍ଛରେ ଥିବା ଲେମ୍ବୁ ଗଛଗୁଡ଼ିକ ବହୁତ ଫଳବତୀ ହୋଇ କଳ୍ପନାତୀତ ଆକାରରେ ଫଳ ଫଳିଲା ଓ ସେସବୁକୁ ବିଭିନ୍ନ ସଂପୃକ୍ତ ବ୍ୟକ୍ତିଙ୍କୁ ପ୍ରଦାନ କରାଯାଇ ପ୍ରଶଂସିତ ହୋଇଥିଲା।

ଯଥାସମୟରେ ବାର୍ଷିକ ପରୀକ୍ଷା ପରେ ଫଳ ପ୍ରକାଶନ କରା ଯାଇଥିଲା ଓ ଅସଫଳ ହୋଇଥିବା ଛାତ୍ରଙ୍କୁ ଗ୍ରୀଷ୍ମାବକାଶ ପରେ ପୁଣି ଥରେ ପରୀକ୍ଷା କରାଯାଇ ଯୋଗ୍ୟ ବିବେଚିତ ଛାତ୍ରଙ୍କୁ ଉଚ୍ଚ ଶ୍ରେଣୀକୁ ଉତ୍ତୀର୍ଣ୍ଣ କରା ଯାଇଥିଲା। ଏପରିଭାବେ ପ୍ରାୟ ଏକ ବର୍ଷ ରହଣୀ ପରେ ଜୁଲାଇ ମାସର ମଧ୍ୟ ଭାଗରେ ବିଭାଗୀୟ ୨ୟ ଶ୍ରେଣୀକୁ ଉନ୍ନୀତ ହୋଇ କଳାହାଣ୍ଡି ଧର୍ମଗଡ଼ ଶିକ୍ଷା ଜିଲ୍ଲାଧିକାରୀ

ରୂପେ ଯୋଗ ଦେବାର ଆଦେଶ ମିଳିବାରୁ ୧୯୮୦ ଜୁଲାଇ ୨୭ ତାରିଖରେ ସେଠାରୁ ଅବ୍ୟାହତି ନେଇ ସିଆଲଖଣ୍ଡଥା ଛାଡ଼ିବାକୁ ହେଲା । ଏଥିପାଇଁ ବିଦ୍ୟାଳୟରେ ଓ ଗ୍ରାମବାସୀମାନେ ମୋର ପୃଥକ ପୃଥକ ଭାବେ ବିଦାୟ କାଳୀନ ସଭାର ଆୟୋଜନ କରି ଯଥାଯୋଗ୍ୟ ଉପଢୌକନ ପ୍ରଦାନରେ କୁଣ୍ଠାବୋଧ କରି ନ ଥିଲେ ।

## ସିଆଲଖଣ୍ଡଥାରୁ ଧର୍ମଗଡ଼ :-

ସିଆଲଖଣ୍ଡଥାରୁ ବରଗଡ଼ ଆସି ଦିନେ ଦି ଦିନ ଧର୍ମଗଡ଼ ଯିବାର ପ୍ରସ୍ତୁତିରେ ରହି ୩୦.୭.୮୦ରେ ଯାଇ ଧର୍ମଗଡ଼ ଶିକ୍ଷା ଜିଲ୍ଲାଧିକାରୀ ଭାବେ ଯୋଗ ଦେଇ ଯୋଗଦାନ କାଗଜ ସଂପୃକ୍ତ ବିଭାଗକୁ ଓ ସ୍ଥାନୀୟ ସରକାରୀ ଦପ୍ତରମାନଙ୍କୁ ଜଣାଇ ଦିଆଗଲା । ମୁଁ ସେଠାକାର S.I. ଶ୍ରୀ ପ୍ରଫୁଲ୍ଲ ଆଚାର୍ଯ୍ୟଙ୍କ ଠାରୁ ଦାୟିତ୍ୱ ନେଇଥିଲି ।

ଧର୍ମଗଡ଼ ଯିବାକୁ ଓ ସେଠାରୁ ଫେରିବାକୁ ଯେଉଁ ଅସୁବିଧା ଉଲ୍ଲେଖଯୋଗ୍ୟ । ଧର୍ମଗଡ଼ ଯିବାକୁ ହେଲେ ବରଗଡ଼ରୁ ରେଳ ଯୋଗେ କେସିଙ୍ଗା ଓ ସେଠାରୁ ବସ୍ ବା ଜିପ୍ ଯୋଗେ ଧର୍ମଗଡ଼ ଯିବାକୁ ପଡୁଥିଲା । ବରଗଡ଼ ବା ବଲାଙ୍ଗିରରୁ କୌଣସି ସିଧାସଳଖ ବସ୍‌ର ସଂଯୋଗ ନ ଥିଲା । କାରଣ ତେଲ ନଦୀରେ ପୋଲ ତିଆରି ନ ହୋଇଥିବାରୁ ଏହି ଅନ୍ତରାୟ ସୃଷ୍ଟି ହୋଇଥିଲା । ଏବେ ସରକାର ଗୋଟିଏ ବସ୍ ବରଗଡ଼ରୁ ଧର୍ମଗଡ଼କୁ ସିଧାସଳଖ ଭାବେ ଚଳାଉଛନ୍ତି ନୂଆପଡ଼ା, ଭବାନୀପାଟଣା, ଜୁନାଗଡ଼ ଦେଇ । ବରଗଡ଼ରୁ ସକାଳରୁ ବାହାରି ସନ୍ଧ୍ୟାରେ ବସ୍‌ଟି ଧର୍ମଗଡ଼ ପହଞ୍ଚେ ଓ ପରଦିନ ସକାଳରୁ ଧର୍ମଗଡ଼ରୁ ପୁଣି ବାହାରି ସନ୍ଧ୍ୟାରେ ବରଗଡ଼ ପହଞ୍ଚିବାରେ ଲାଗିଛି । ସେତେବେଳେ ଧର୍ମଗଡ଼ରୁ ବରଗଡ଼ ଆସିବାକୁ ହେଲେ ଦୀର୍ଘ ୨ ଦିନ ଧରି ମାନସିକ ପ୍ରସ୍ତୁତି ସହ ଆସିବା ଦିନର ଦିବା ୧୨ଟାରୁ ବସ୍‌ରେ ସ୍ଥାନ ସଂରକ୍ଷଣ କରା ନ ଗଲେ ବସିବାକୁ ଜାଗା ମିଳେ ନାହିଁ ଓ ସେହି ବସ୍ ଛାଡ଼ିଲେ ଆଉ ଅନ୍ୟ ବସ୍‌ର ଚଳାଚଳ ନ ଥିଲା । କେସିଙ୍ଗାରୁ ଟ୍ରେନ୍ ଯୋଗେ ବରଗଡ଼ରେ ପହଞ୍ଚିଲା ବେଳକୁ ପ୍ରାୟ ରାତ୍ରି ସାଢ଼େ ୯ଟା ।

ଅବଶ୍ୟ ଗ୍ରୀଷ୍ମକାଳର ଫେୟାର ଉଏଦର (Fair Weather) ବେଳେ ତେଲ ନଦୀରେ ଅସ୍ଥାୟୀ ପୋଲ କରାଯାଇ ସମ୍ବଲପୁରରୁ ସୁନାବେଡ଼ା ସହ ବସ୍ ସଂଯୋଗ କରା ଯାଉଥିଲା । ଏବେ ତାହା ସମ୍ବଲପୁର ଦାମନ-ଯୋଡ଼ୀ ବସ୍ ରୂପେ ପରିଚାଳିତ ହେଉଛି । ଏହିପରି ଭାବେ ଧର୍ମଗଡ଼ରୁ ଯେଉଁ ସ୍ଥାନକୁ ଯିବାକୁ ହେଲେ ବସ୍ ଯୋଗାଯୋଗ ଅତି ନିକୃଷ୍ଟ ଧରଣର ଓ ବସ୍‌ଗୁଡ଼ିକର ଅବସ୍ଥା ମଧ୍ୟ ଅତି ନିମ୍ନମାନର ଥିଲା ।

ଧର୍ମଗଡ଼ ଗୋଟିଏ ଉପଖଣ୍ଡ (Sub-Division)ର ସଦର ମହକୁମା ଥିଲେ ମଧ ଏହା ଏକ ବଡ଼ ଗ୍ରାମର ସମ୍ମାନ ଦିଆ ଯାଇ ନ ପାରେ ଯଦିଓ ସେଠାରେ ଉପଖଣ୍ଡ ଅଧିକାରୀ ତହସିଲଦାର ବ୍ଲକ ବା ଅନ୍ୟ ସରକାରୀ ଅଫିସ୍‌ମାନ ରହିଛି। ଜିଲ୍ଲାସ୍ତରୀୟ ଅଫିସର ମଧରେ ଶିକ୍ଷା ଜିଲ୍ଲାଧିକାରୀଙ୍କ ଅବସ୍ଥାନ ଏକ ଉଚ୍ଚ ଶ୍ରେଣୀର। ହେଲେହେଁ ଅନ୍ୟ ବିଭାଗର ଅଫିସରମାନେ ସରକାରଙ୍କଠାରୁ ସରକାରୀ ଗାଡ଼ି ପାଇଥିଲେ ମଧ ଆମ ବିଭାଗର ଅର୍ଥାଭାବ ହେତୁ ଗାଡ଼ୀ ମିଳିବାର ଯୋଜନା ନ ଥିଲା। ତେଣୁ ନିଜ ଅଞ୍ଚଳରେ ପରିଦର୍ଶନ ବା ପରିଭ୍ରମଣ ପାଇଁ ବ୍ଲକ, ତହସିଲଦାର ବା S.D.O.ଙ୍କ ସାହାଯ୍ୟ ନେବାକୁ ପଡୁଥିଲା। ଅବଶ୍ୟ ସେମାନେ ନିଃସଙ୍କୋଚରେ ଓ ଆଗ୍ରହରେ ତାଙ୍କ ସାଥୀରେ ପରିଭ୍ରମଣ କରିବାର ସୁଯୋଗ ଦେଉଥିଲେ। ଆମ ଅଧିନସ୍ଥ ପ୍ରାୟ ୬ଟି ବ୍ଲକ - ଯଥା ଧର୍ମଗଡ଼, ଗୋଲାମୁଣ୍ଡା, ଜୟପାଟଣା, କଲମପୁର, ଜୁନାଗଡ଼ ଓ କୋକସରା ଆଦି ସବୁ ସ୍କୁଲ ପରିଦର୍ଶନ ପାଇଁ ବ୍ଲକ ଅଫିସରମାନେ ସର୍ବଦା ନିଜ ଗାଡ଼ି ଯୋଗାଇ ଦେଉଥିଲେ। ମୋଟ ଉପରେ ସ୍କୁଲ ପରିଦର୍ଶନ ପାଇଁ ବିଶେଷ କିଛି ଅସୁବିଧା ହେଉ ନ ଥିଲା। କାରଣ ଏକାଧିକ S.I.ଙ୍କ ଠାରେ ମୋଟର ସାଇକଲ ଥିବାରୁ ତାଙ୍କ ସହ ମଧ ପରିଦର୍ଶନର ସୁବିଧା ହୋଇ ପାରୁଥିଲା।

ମୁଁ ୩୦.୭.୮୦ରେ ଧର୍ମଗଡ଼ରେ ଯୋଗ ଦେବା ପରେ ଡି. ଆଇ.ଙ୍କ ପାଇଁ କୌଣସି ଏକ ସରକାରୀ ବାସଗୃହ ନ ଥିବାରୁ ମୁଁ ବାଧ ହୋଇ ଅଫିସଘରେ ଏକ କୋଠାରେ ଅସ୍ଥାୟୀ ଭାବେ ରହି ହୋଟେଲରେ ଭୋଜନର ବ୍ୟବସ୍ଥା କରିବାକୁ ହେଲା। ଅଫିସରେ ଯୋଗଦାନ ପରେ ସରକାରୀ ଚିଠିପତ୍ର ଦେଖି ଜଣାଗଲା ଯେ ସରକାରଙ୍କଠାରୁ ଏକ ଚିଠି ଆସିଛି ଯହିଁରେ କୌଣସି ଅଫିସର ନିଜର ଘର ବା କର୍ମଚାରୀଙ୍କ ପାଇଁ ବାସଗୃହ ନ ଥିଲେ ସେ ବିଷୟରେ ସରକାରଙ୍କ ନିକଟକୁ ବାସଗୃହ ସମ୍ପର୍କୀୟ କାଗଜାତ ପ୍ରସ୍ତାବ ପଠାଇବାକୁ ହେବ। ଏଣୁ ଯେହେତୁ ଆମ ଅଫିସ କାମ ସ୍ଥାନୀୟ ପ୍ରଶିକ୍ଷଣ ବିଦ୍ୟାଳୟର ୨ଟି କୋଠରୀରେ ଚାଲୁଥିଲା ଓ କୌଣସି କର୍ମଚାରୀଙ୍କ ପାଇଁ ବାସଗୃହ ଉଦ୍ଦିଷ୍ଟ ନ ଥିଲା, ତେଣୁ ଆମ ଅଫିସରୁ ସେ ସମ୍ପର୍କରେ ପ୍ରସ୍ତାବ ପଠାଇବା ଏକାନ୍ତ ଜରୁରୀ ମନେ କରି ପରଦିନ ଭବାନୀପାଟଣା ଯାଇ ଜିଲ୍ଲାପାଳ/ଜିଲ୍ଲାଧୀଶଙ୍କ ଅଫିସରେ ସେ ସଂକ୍ରାନ୍ତରେ ଆଲୋଚନା କରିବା ବେଳେ ସେଠାକାର କର୍ମଚାରୀଗଣ ତା ଉପରେ ଗୁରୁତ୍ୱ ନ ଦେଇ ସେ ବିଷୟରେ ଉପହାସମୂଳକ ତାଚ୍ଛଲ୍ୟ ଭାବ ପ୍ରକାଶ କଲେ। କାରଣ ମୁଁ ସେଠାରେ କାର୍ଯ୍ୟରେ ଯୋଗ ଦେବା ସଙ୍ଗେ ସଙ୍ଗେ ଏପରି ଏକ ପ୍ରସ୍ତାବ ଓ ପଦକ୍ଷେପ

ନେବା ଅବାନ୍ତର ମନେ କଲେ। ଅବଶ୍ୟ ସେତେବେଳେ ଶିକ୍ଷାମଣ୍ଡଳାଧୀଶ ରୂପେ କେହି ଅଧିଷ୍ଠିତ ନ ଥିଲେ ଓ ଭବାନୀପାଟଣା ଡି.ଆଇ. ମଣ୍ଡଳାଧୀଶ ଦାୟିତ୍ୱରେ ଥିଲେ। ତାଙ୍କ ସଙ୍ଗେ ଆଲୋଚନା କରି ବୁଝିଲି ଯେ ଏପରି ପ୍ରସ୍ତାବ ସବୁ Plan ଓ Estimate ସହ ମଣ୍ଡଳାଧୀଶଙ୍କ ଦ୍ୱାରା P.W.D. Engineerଙ୍କ ମାର୍ଫତରେ ସରକାରଙ୍କୁ ପଠାଯିବା କଥା। ମୁଁ ମନେ ମନେ ସ୍ଥିର କଲି ଯେ P.W.D. ଅଫିସକୁ ଯାଇ ବୁଝାବୁଝି କଲେ କଥାଟା ଠିକ୍ ଜଣା ପଡ଼ିବ। ମୁଁ P.W.D. ଅଫିସକୁ ଯାଇ ବୁଝାବୁଝି କରିବାରୁ D.I. ଅଫିସ ଘର, D.I. Quarters ଓ ଅନ୍ୟାନ୍ୟ କର୍ମଚାରୀଙ୍କ ସଂଖ୍ୟା ଅନୁଯାୟୀ କ୍ୱାଟର୍ସ ପାଇଁ Plan ଓ Estimate ନିହାତି ଦରକାର ଓ ସେ ସବୁ ତିଆରି ପାଇଁ ସରକାରୀ ଜାଗା ମଧ ଆବଶ୍ୟକ। ତେଣୁ ମୁଁ P.W.D. ଅଫିସ୍‌ର ସଂପୃକ୍ତ କର୍ମଚାରୀ Draftsmanଙ୍କ ସହ ଆଲୋଚନା ଓ ବାର୍ତ୍ତାଳାପ ପରେ ସେ ଏସବୁ କାର୍ଯ୍ୟ କରିବା ପାଇଁ ଏକ ଅନୁରୋଧ ପତ୍ର P.W.D. Ex. Engineerଙ୍କୁ ଦେବାକୁ ହେବ। ଏଣୁ ମୁଁ ସଙ୍ଗେ ସଙ୍ଗେ ଏପରି ଏକ ମର୍ମରେ ଅନୁରୋଧ ପତ୍ର ଲେଖି ତାଙ୍କୁ ଦେଇ ଦେଲି ଓ ପରେ ଏପରି ଚିଠିଟିଏ ଧର୍ମଗଡ଼ ଅଫିସରୁ ଲେଖି ପଠାଇବା ପାଇଁ କହି ଚାଲି ଆସିଲି। ସଂପୃକ୍ତ Draftsman ମୋର ଅନୁରୋଧ ଅନୁସାରେ ଆମ ଅଫିସ୍‌ର ଯାବତୀୟ ଗୃହ ନିର୍ମାଣ ପାଇଁ ଆବଶ୍ୟକୀୟ Plan ଓ Estimate ପ୍ରାୟ ଆଗାମୀ ୧୫ ଦିନ ମଧରେ କରି ଦେବାକୁ ନିର୍ଭର ପ୍ରତିଶୃତି ଦେଲେ ଓ ମୋତେ ଚା, ଜଳଖିଆ ଦେଇ ଆପ୍ୟାୟିତ କଲେ। ଉକ୍ତ ମହାଶୟ ମୋର କାର୍ଯ୍ୟରେ ନୂତନ ଯୋଗଦାନ ହେତୁ ଓ ମୋର ଆଗ୍ରହ ଦେଖି ସାହାଯ୍ୟ ସହାନୁଭୂତି ପାଇଁ ଆଗ୍ରହୀ ହେବାର ଜଣାଗଲା। ନୂତନ କର୍ମକ୍ଷେତ୍ରରେ ମୋର ଆକସ୍ମିକ ପ୍ରଚେଷ୍ଟାରେ ପ୍ରୋତ୍ସାହନ ପାଇ ମନେ ମନେ ଆନନ୍ଦିତ ହେଲି। ଅଫିସ୍‌କୁ ଆସି ଏ ସବୁ କହିବାରୁ ସମସ୍ତେ ତାହା ଉପରେ ଗୁରୁତ୍ୱ ପ୍ରଦାନ କରି ନ ଥିଲେ। ହେଲେହେଁ ମୁଁ ମୋ ପ୍ରଚେଷ୍ଟାରୁ ଓହରି ଯାଇ ନ ଥିଲି ଓ ପ୍ରାୟ ୧ ମାସ ମଧରେ ଅଫିସ୍ ଘର, D.I. କ୍ୱାଟର୍ସ ଓ ଅନ୍ୟାନ୍ୟ କ୍ୱାଟର୍ସମାନଙ୍କ ପାଇଁ ପ୍ରାୟ ୯ ଲକ୍ଷ ଟଙ୍କାର Plan Estimate ସରକାରଙ୍କୁ ପଠାଇ ଏଆଡ଼େ ସ୍ଥାନୀୟ ତହସିଲଦାର ଓ S.D.O.ଙ୍କୁ କହି Site Selection ପାଇଁ ବିଶେଷ ଚେଷ୍ଟାରେ ରହିଲି।

ମୋର ଧର୍ମଗଡ଼ରେ ଯୋଗ ଦେବା ପରେ ଅଫିସ୍‌ର କିରାନୀ କେଇ ଜଣ ମୋର ପ୍ରଥମେ ଅନୁଭୂତି ଜାଣିବା ପାଇଁ କେତେକ ସମସ୍ୟା ଉପସ୍ଥାପନ କରିବା ଆଳ ଦେଖାଇବାରୁ ତାର ତୁରନ୍ତ ସମାଧାନ ସୂଚକ ମନ୍ତବ୍ୟ ପ୍ରଦାନ କରି ସେମାନଙ୍କ

ମନରେ ଶଙ୍କା ସୃଷ୍ଟି ହୋଇଥିଲା । ପ୍ରାୟ ୨ ଦିନ ପରେ ମୁଁ ଅଫିସ୍ କାମ ସାରି ସନ୍ଧ୍ୟାରେ ଅଫିସ୍ ସମ୍ମୁଖରେ ବସିଥିବା ବେଳେ ଓଡ଼ିଶା ଶିକ୍ଷକ ମହାସଂଘର ତତ୍କାଳୀନ ସଭାପତି ୰ ବନମାଳୀ ବ୍ରହ୍ମଗ୍ୱରୀ ଜନୈକ ଶିକ୍ଷକଙ୍କ ସମସ୍ୟା ସମ୍ପର୍କରେ D.I.ଙ୍କ ସଙ୍ଗେ ଆଲୋଚନା ଉଦ୍ଦେଶ୍ୟରେ ଆମ ଅଫିସ୍‌କୁ ଆସି ମୋତେ ଦେଖିଲା ପରେ ସ୍ୱତଃପ୍ରବୃତ୍ତ ଭାବେ କହି ପକାଇଲେ ଯେ ଏଣିକି ଶିକ୍ଷକମାନଙ୍କ ସମସ୍ୟା ରହିବ ନାହିଁ କାରଣ ଆମ ବନ୍ଧୁ ଶଶି ବାବୁ ଶିକ୍ଷା ଜିଲ୍ଲା ନିରୀକ୍ଷକ ଭାବେ ଯୋଗ ଦେଲେଣି । ତଥାପି ତାଙ୍କ ଆଗମନର ପ୍ରକୃତ ଉଦ୍ଦେଶ୍ୟ ଜାଣିବା ପାଇଁ ମୁଁ ଆଗ୍ରହ ପ୍ରକାଶ କରିବାରୁ ସେ ଆମ ଜିଲ୍ଲାର ଜନୈକ ଶିକ୍ଷକଙ୍କ ସମ୍ପର୍କରେ ସୂଚନା ଦେଇ କହିଲେ ଯେ ସେ ଶିକ୍ଷକଙ୍କ ବହୁ ପୁରୁଣା ସମସ୍ୟା ଓ ତାର ଆଶୁ ପ୍ରତିକାର ଆବଶ୍ୟକ। ତେଣୁ ମୁଁ ଯଦିଓ ସେ ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ ଥିଲି ତଥାପି ତାଙ୍କ ପ୍ରଶ୍ନର ଉତ୍ତର ଏପରି ଭାବେ ଦିଆଗଲା ଯେ ସେ ସନ୍ତୋଷରେ ଆମ ଅଫିସ୍‌ରୁ ବିଦାୟ ନେଇ ଗଲେ । ଏହା ଶୁଣି ଆମ ଅଫିସ୍ ତଥା ଅନ୍ୟାନ୍ୟ ଶିକ୍ଷକଗଣ ମଧ୍ୟ ଏଥିରେ ଆଶ୍ୱସ୍ତ ହେଲେ ଓ ଅବାକ୍ ହୋଇଥିଲେ ।

ପ୍ରତି ମାସରେ ସ୍କୁଲ S.I.ମାନଙ୍କର ଆମ ଅଫିସ୍‌ରେ ପ୍ରାୟ ପ୍ରଥମ ସପ୍ତାହରେ ଏକ ବୈଠକ ବସି ଶିକ୍ଷାର ବିଭିନ୍ନ ଦିଗ ଓ ଶିକ୍ଷକଙ୍କ ସମସ୍ୟା ବିଷୟରେ ଆଲୋଚନା ଓ ସମାଧାନ ପନ୍ଥା ନିର୍ଣ୍ଣୟ କରାଯାଏ । ପ୍ରଥମ ଥର ସେହିପରି ଏକ ବୈଠକରେ ଆଜିକାଲିର ଛାତ୍ରମାନଙ୍କ ଲେଖା ଖାତାର ଖୋଳ ବା ମଲାଟର ଦୁରବସ୍ଥାରୁ ମୁଁ ଛାତ୍ରମାନଙ୍କୁ ନିଜ ଖାତାମାନଙ୍କରେ ସ୍ୱହସ୍ତ ତିଆରି ମଲାଟ (Cover) ଲଗାଇବାକୁ ସୂଚନା ଦେବାରୁ ସେମାନେ ଏହା ଶୁଣି ବୁଝି ପାରିଲେ ନାହିଁ। ତାପରେ ଏହାର ସଦ୍‌ଉପଯୋଗର ଉଦାହରଣ ସକାଶେ ମୁଁ ବରଗଡ଼ରୁ ୧୨ ଖଣ୍ଡ ସୁଦୃଶ୍ୟ ରଙ୍ଗୀନ ମଲାଟ ବାର୍ଣ୍ଣିସ କାଗଜ ଲଗାଇ ନେଇଥିଲି ଓ ତାହା ସେମାନେ ଆଗ୍ରହ ସହ ଗ୍ରହଣ କରିଥିଲେ । ଏ ବିଷୟରେ ସେମାନଙ୍କ ଆଗରୁ କୌଣସି ସଠିକ୍ ଧାରଣା ନ ଥିଲା ।

ସାଧାରଣତଃ ଶିକ୍ଷା ଜିଲ୍ଲାଧୀଶଙ୍କ ଅଧୀନରେ ଥିବା ବେସରକାରୀ ମିଡିଲ ସ୍କୁଲ ଓ ପ୍ରାଇମେରୀ ସ୍କୁଲର ଦରମା ବିଲକୁ ସ୍ୱାକ୍ଷର କଲେ ସଂପୃକ୍ତ ଶିକ୍ଷକମାନେ ଦରମା ପାଆନ୍ତି । ମିଡିଲ ସ୍କୁଲ ଶିକ୍ଷକମାନେ ଡି.ଆଇ. ଅଫିସ୍‌ରୁ ଓ ପ୍ରାଇମେରୀ ଶିକ୍ଷକମାନେ ବ୍ଲକ ଜରିଆରେ ଏହି ଦରମା ଦିଆଯାଏ । ଏଥିପାଇଁ ସାମୟିକ ଭାବେ ପର୍ଯ୍ୟାୟକ୍ରମେ ସରକାରଙ୍କଠାରୁ ଅନୁଦାନ ପାଣ୍ଠିର ମଞ୍ଜୁରି ଆସେ । ସେହି ଅନୁସାରେ ସେହି ପରିମାଣକୁ ଆଖି ଆଗରେ ରଖି ବିଲଗୁଡ଼ିକୁ ଦସ୍ତଖତ କରିବାକୁ

ହୁଏ । ଅନୁଦାନ ଟଙ୍କା ନିଅଣ୍ଟ ହେଲେ ଶିକ୍ଷକମାନେ ମାସ ମାସ ଧରି ଦରମା ପାଇବାକୁ ବଞ୍ଚିତ ହୁଅନ୍ତି । ଦରମା ନ ଦେଇ ତାଙ୍କଠାରୁ କାର୍ଯ୍ୟ ଦକ୍ଷତା ଚାହିଁବା ଅପ୍ରାସଙ୍ଗିକ ମନେ ହୁଏ । ବିଶେଷତଃ ସ୍ୱାଧୀନ ଦେଶର ନାଗରିକ ଭାବେ ସମସ୍ତଙ୍କର ଯଥାସମୟରେ ନ୍ୟାଯ୍ୟ ପ୍ରାପ୍ୟ ମିଳିବା ବାଞ୍ଛନୀୟ । କିନ୍ତୁ ନୂତନ ଭାବେ ଶିକ୍ଷା ନୀତି ପ୍ରଣୟାନୁସାରେ ଅନ୍ୟ ପ୍ରଗତିଶୀଳ ରାଷ୍ଟ୍ରମାନଙ୍କ ସହ ସମକକ୍ଷ ହେବା ସକାଶେ ସରକାର ନୂଆଁ ନୂଆଁ ବିଦ୍ୟାଳୟ ସ୍ଥାପନ କରି ବାହାବା ମାରିବାର ଆଳରେ ନିଅଣ୍ଟିଆ ବଜେଟ୍ ପାଇଁ ଶିକ୍ଷା ବିଭାଗର ପାଣ୍ଠିକୁ ଅନ୍ୟତ୍ର ଖର୍ଚ୍ଚ କରିବା ହେତୁ ସଠିକ୍ ଭାବେ ଶିକ୍ଷାର ପ୍ରକୃତ ଉଦ୍ଦେଶ୍ୟ ସାଧନ ଓ ଲକ୍ଷ୍ୟ ହାସଲ ହୋଇପାରେ ନାହିଁ । ବିଶେଷତଃ ଉନ୍ନୀତ ନିମ୍ନ ମାଧମିକ ବିଦ୍ୟାଳୟ ସ୍ଥାପନ ଏକ ଧୂଆଁବାଣ ଭଳି ମନେ ହୁଏ । ତା ସଙ୍ଗକୁ ପ୍ରାଇମେରୀ ସ୍କୁଲ, ହାଇସ୍କୁଲ ଓ ଛତୁ ଫୁଟିଲା ଭଳି କଲେଜମାନ ଆରମ୍ଭ କରାଯାଇ ଶିକ୍ଷାର ଗୁଣାତ୍ମକ ମାନର ବିକାଶକୁ ଦୁର୍ଗତି ଅବା ସୁଗତି କିଛି ବୁଝାଯାଇ ପାରୁ ନାହିଁ । ତଥାକଥିତ କଲେଜ ପଢୁଆ ଯୁବକମାନେ କାହିଁରେ ଯୋଗ୍ୟ ହୋଇପାରୁ ନାହାନ୍ତି । ଏଆଡ଼େ ତ ପାଠ ପଢ଼ା ଯାହା ମା ଗଙ୍ଗେ ଜାଣନ୍ତି । ପୁଣି କଲେଜପଢ଼ାର ଅଭିନୟ କରି ଆଉ ଘରକାମ ବା ବିଲବାଡ଼ି କାମ ବୁଝିବାକୁ ନାରାଜ ଓ ଅକ୍ଷମ ମଧ । ସମସ୍ତେ ଦି ଅକ୍ଷର ପଢ଼ି ପକାଇଲେ ଖାଲି ଚାକିରୀ ଖୋଜିବାରେ ବ୍ୟସ୍ତ, କାରଣ ଚାକିରୀ ପାଇବାର ବଳୟ ମଧରେ ଆଳସ୍ୟ ବଢ଼ି ଯାଏ ଓ ଲୋକେ କର୍ମକୁଣ୍ଠ ବା ନିକମା ହୁଅନ୍ତି । ତେଣୁ ଏହି ଶିକ୍ଷା ପ୍ରଣାଳୀର ସମାଜ ଉପରେ କି ପ୍ରକାର ସୁଦୂର ପ୍ରସାରୀ ପ୍ରଭାବ ପଡୁଛି ଓ ପଡ଼ିବ ତାହା କେବଳ ଅନୁଭବୀ ହିଁ ଜାଣନ୍ତି । ଈଶ୍ୱର ଏ ଦେଶକୁ ଏ ଦୁର୍ଦ୍ଦଶାରୁ ରକ୍ଷା କରନ୍ତୁ ଏହାହିଁ କାମନା ।

ଧର୍ମଗଡ଼ରେ ଯୋଗ ଦେବା ପରେ ଏକ ନୂତନ ଅନୁଭୂତି ଲାଭ ପାଇଁ ସ୍କୁଲ ପରିଦର୍ଶନ କାମରେ ଆଗେଇବା ନିତ୍ୟ ନୈମିତ୍ତିକ କାର୍ଯ୍ୟକ୍ରମରେ ପରିଣତ ହେଲା । ଅବଶ୍ୟ ବଡ଼ ବାପାଙ୍କ ମୋର ଜନ୍ମଦିନର ଭବିଷ୍ୟତ ଆଶା ଓ ବାଣୀ ପ୍ରକୃତ ରୂପ ନେଲା । ମୁଁ ପ୍ରଥମେ ନିକଟସ୍ଥ ବିଦ୍ୟାଳୟଗୁଡ଼ିକ ସମ୍ପର୍କରେ ଧାରଣା ପାଇବା ପାଇଁ ସ୍କୁଲ ସବ୍‌ଇନ୍ସପେକ୍ଟର ଶ୍ରୀ ରଘୁବଂଶୀ ପଣ୍ଡାଙ୍କ ସହ ସ୍କୁଲ ପରିଦର୍ଶନରେ ଗଲୁଁ । ସ୍କୁଲର ସାଧାରଣ ଅବସ୍ଥା ଚଳନୀୟ ଓ ଛାତ୍ରଛାତ୍ରୀମାନଙ୍କ ଅବସ୍ଥା ଶାରୀରିକ, ମାନସିକ ତଥା ପାଠାଭ୍ୟାସର ମତିଗତି ସେତେ ସନ୍ତୋଷଜନକ ନ ଥିଲା । ସ୍କୁଲଘର ଗୁଡ଼ିକର ଅବସ୍ଥା ମଧ ଅତି ଶୋଚନୀୟ ଥିଲା । ସାଂପ୍ରତିକ ସମାଜର ଚାହିଦା ଦୃଷ୍ଟିରୁ ସରକାର ବିଭିନ୍ନ ଅଞ୍ଚଳରେ ପ୍ରାଥମିକ ସ୍କୁଲରୁ ଆରମ୍ଭ

କରି ଉଚ୍ଚ ବିଦ୍ୟାଳୟ ପର୍ଯ୍ୟନ୍ତ ସ୍କୁଲ ଗୁଡ଼ିକ ଖୋଲିବାକୁ ମଞ୍ଜୁରି ଆଦେଶ ଦେଲେ ମଧ୍ୟ ଲୋକଙ୍କ ଆର୍ଥିକ ଅବସ୍ଥା ଦୃଷ୍ଟିରୁ ତାକୁ ଏକ ଉପଯୁକ୍ତ ଓ ଆଦର୍ଶ ସ୍କୁଲକୁ ଆଣିବାକୁ ସମ୍ଭବ ହେଉ ନ ଥିଲା । ସରକାରୀ ଅନୁଦାନ ଶିକ୍ଷା ବିଭାଗର ଶିକ୍ଷକ ତଥା କର୍ମଚାରୀଙ୍କ ଦରମା ବାବଦକୁ ମଧ୍ୟ ନିଅଣ୍ଟ ପଡୁଥିବାରୁ ଠିକ୍ ସମୟରେ ଶିକ୍ଷକମାନଙ୍କ ମାସିକ ଦରମା ପୈଠ କରାଯାଇ ପାରୁ ନ ଥିଲା । ସରକାରଙ୍କ ଅନୁଦାନ ମଞ୍ଜୁରି ରାଜ୍ୟର ନିଅଣ୍ଟିଆ ବଜେଟ୍‌ରୁ ଭରଣା କରାଯାଉ ଥିବାରୁ ସରକାରଙ୍କଠାରୁ ଅନୁଦାନ ଅଣାଯାଇ ଦରମା ଦେବାବେଳେ ଅନ୍ତରାୟ ସୃଷ୍ଟି ହେଉଥିଲା । ତଥାପି ନିଜର ଜିଲ୍ଲାର ଅନୁନ୍ନତ ଓ ପଛୁଆ ଶ୍ରେଣୀର ଆଳ ଦେଖାଇ ଅନୁଦାନ ସରକାରଙ୍କଠାରୁ ଆସିବା ସଙ୍ଗେ ସଙ୍ଗେ ଆମ ପାଖକୁ ଆମର ନ୍ୟାଯ୍ୟ ପାଉଣା ସର୍ବପ୍ରଥମ କିସ୍ତିରେ ଆମ ପାଖକୁ ଆଦେଶନାମା ପହଞ୍ଚି ଯାଉଥିଲା ଓ ଶିକ୍ଷକମାନଙ୍କୁ ଦରମା ଦେବାରେ ଆମ ଜିଲ୍ଲା ଯଥାନୁରୂପ ଆଗୁଆ ରହୁଥିଲା ।

ମୋର ଶିକ୍ଷା ବିଭାଗରେ ଡି.ଆଇ. ଭାବେ ଯୋଗ ଦେବାର ଅଳ୍ପ ଦିନ ମଧ୍ୟରେ ଆମ ଶିକ୍ଷା ଜିଲ୍ଲାରେ ଥିବା ୬ଟି ବ୍ଲକରେ ପ୍ରାଥମିକ ଓ ନିମ୍ନ ମାଧ୍ୟମିକ ସ୍କୁଲ ପରିଦର୍ଶନର ଭାର ମୋର ଉପରେ ଥିବାରୁ ମୁଁ ସଂପୃକ୍ତ ବ୍ଲକ ଉନ୍ନୟନ ଅଧିକାରୀଙ୍କ ସାହାଯ୍ୟରେ ବିଭିନ୍ନ ଅଞ୍ଚଳର ଦୁର୍ଗମ ସ୍ଥାନକୁ ମଧ୍ୟ ଯାଇ ପରିଦର୍ଶନ କରିବାର ସୁଯୋଗ ପାଇଥିଲି । ଆମ ଶିକ୍ଷା ଜିଲ୍ଲାରେ ଧର୍ମଗଡ଼, କୁନାଗଡ଼, ବଲମପୁର, କୋକସରା, ଜୟପାଟଣା ଓ ଗୋଲାମୁଣ୍ଡା ଏପରି ୬ଟି ବ୍ଲକରେ ପ୍ରାୟ ୨୦୦ ପର୍ଯ୍ୟନ୍ତ ପ୍ରାଥମିକ ବିଦ୍ୟାଳୟ, ୧୫୦ରୁ ଅଧିକ ନିମ୍ନ ମାଧମିକ ବିଦ୍ୟାଳୟ ମଧ୍ୟରୁ ୬ଟି ସରକାରୀ, ୧୦୦ଟି ବେସରକାରୀ ଓ ପ୍ରାୟ ୫୦ଟି ଉନ୍ନୀତ ନିମ୍ନ ମାଧମିକ ବିଦ୍ୟାଳୟ ଥିଲା ଓ ତହିଁ କାର୍ଯ୍ୟରତ ଶିକ୍ଷକଙ୍କ ସଂଖ୍ୟା ପ୍ରାୟ ୨୫୦୦ରୁ ଅଧିକ । ଏଥିରୁ ଉନ୍ନୀତ ନିମ୍ନ ମାଧମିକ ବିଦ୍ୟାଳୟ ଏକ ଅଲଗା ଶ୍ରେଣୀର । ଏଥିରୁ ପ୍ରଥମରୁ ୭ମ ଶ୍ରେଣୀ ପର୍ଯ୍ୟନ୍ତ ଛାତ୍ର ପଢୁଥିଲେହେଁ ସ୍କୁଲମାନଙ୍କରେ ୨ରୁ ୩ଟା ବା ୪ଟା ପର୍ଯ୍ୟନ୍ତ କୋଠରୀ ଥିବାର ଦେଖା ଯାଉଥିଲା । ଶ୍ରେଣୀ କୋଠରୀଗୁଡ଼ିକର ଅବସ୍ଥା ଅତି ଶୋଚନୀୟ ଥିଲା ଏପରି ଝାଟିମାଟି ଘେରା ଛାତ ବିହୀନ ଘର (ବିଦ୍ୟାଳୟ) ଛାତ୍ରଙ୍କ ପଠନ ପାଇଁ ବିଦ୍ୟାଳୟର ନାମ ସାର୍ଥକ କରୁଥିଲା । ଏହି ଉନ୍ନୀତ ନିମ୍ନ ମାଧମିକ ବିଦ୍ୟାଳୟଗୁଡ଼ିକରେ ପ୍ରଧାନ ଶିକ୍ଷକ ଏକ ସ୍ନାତକଧାରୀ ତାଲିମପ୍ରାପ୍ତ ଓ ତାଙ୍କ ଅଧିନରେ ଜଣେ ବା ୨ ଜଣ ମେଟ୍ରିକ ସି.ଟି. ପାସ୍ ଶିକ୍ଷକ ତଥା ପୂର୍ବରୁ ପ୍ରାଥମିକ ବିଦ୍ୟାଳୟରେ ଥିବା ୨/୩ ଜଣ ଶିକ୍ଷକ ଏପରି ମୋଟରେ ୪/୫ ଜଣ ଶିକ୍ଷକ ଥାଇ ୭ଟି ଶ୍ରେଣୀରେ ପଠନ କାର୍ଯ୍ୟ ଚାଲୁଥିଲା । ଏପରି ସ୍କୁଲର

ପ୍ରଧାନ ଶିକ୍ଷକମାନେ ମାସର ଶେଷ ସପ୍ତାହରେ ତାଙ୍କ ବିଦ୍ୟାଳୟର ଦରମା ବିଲ ଡି.ଆଇ. ଅଫିସ୍‌ରେ ଦାଖଲ କରିବେ ଓ ପରବର୍ତ୍ତୀ ମାସର ୧୦/୧୨ ତାରିଖରେ ଆସି ତାଙ୍କ ଦରମା ଡି.ଆଇ. ଅଫିସ୍‌ରୁ ନେବେ । ପ୍ରଥମେ ନଗଦ ଟଙ୍କା ଆକାରରେ ଦରମା ଦିଆ ଯାଉଥିବାରୁ ଦରମା ଦେବା ସମୟରେ ଅସୁବିଧା ଦେଖା ଦେବାରୁ ତାକୁ ସରକାରୀ ବେଙ୍କ ଚେକ୍ ଜରିଆରେ ଦେବାର ବ୍ୟବସ୍ଥା କରାଗଲା । କିନ୍ତୁ ଏଥିରେ ମଧ୍ୟ ସମୟ ସମୟେ ଶିକ୍ଷକମାନେ ଅଫିସ୍‌କୁ ଆସି ସରକାରୀ ନିର୍ଦ୍ଧାରିତ ପାଣ୍ଠି ଅନୁଦାନ ଅଭାବରୁ ନିର୍ଦ୍ଧାରିତ ଦିନ ଚେକ୍ ଦିଆଯାଇ ନ ପାରିବାରୁ ଶିକ୍ଷକମାନେ ଘୋର ଅସୁବିଧାର ସମ୍ମୁଖୀନ ହେଉଥିଲେ । ଫଳରେ ଶିକ୍ଷକମାନଙ୍କ ମଧ୍ୟରେ ଭୀଷଣ ଅସନ୍ତୋଷ ମନୋଭାବ ସୃଷ୍ଟି ହେଉଥିଲା । ଏଥିରେ କାହାରି ପ୍ରକୃତ ଦୋଷ ନ ଥିବାରୁ କେବଳ ଅବସ୍ଥାକୁ ସମ୍ଭାଳିବାକୁ ହିଁ ପଡୁଥିଲା ମାତ୍ର ପରେ ସରକାରଙ୍କଠାରୁ ଏକ ପତ୍ରାଦେଶ ମିଳିଲା ଯେ ଶିକ୍ଷକମାନଙ୍କ ଦରମା ବିଲ ଓ ତାର ବିହିତ ପ୍ରାପ୍ୟ ଚେକ୍ କେବଳ ଡ଼ାକ ଯୋଗେ ପଠାଯିବ ଓ ଶିକ୍ଷକମାନେ ଅଯଥା ବିଦ୍ୟାଳୟ ଛାଡ଼ି ଅଫିସ୍‌କୁ ଆସି ଛାତ୍ରମାନଙ୍କ ପାଠ କ୍ଷତି ଓ ଅଫିସ୍‌ରେ ଅଯଥା ଗହଳି ସୃଷ୍ଟି କରୁଥିବାରୁ କ୍ଷାନ୍ତ ହେବେ । ଶେଷରେ କଥା ହେଲା ଯେ ଚେକ୍ ପଠାଇବା ପାଇଁ ଡ଼ାକ ଯୋଗେ ଯେଉଁ ରେଜେଷ୍ଟ୍ରି ଖର୍ଚ୍ଚ ହେବ ତାକୁ କିଏ ବହନ କରିବ ? ପୁଣି ଡ଼ାକ ଯୋଗେ ପତ୍ର ପ୍ରାପ୍ତି ସୁବିଧା ଓ ସମୟ ଉପଯୋଗୀ ହେବ କି ? ଏସବୁ ବିଷୟର ବିମର୍ଷ ଓ ସରକାରଙ୍କ ମତାମତ ଲୋଡ଼ିବା ପରେ ସେହି ପୂର୍ବ ପ୍ରଚଳିତ ପ୍ରଥା ଚେକ୍ ଶିକ୍ଷକମାନଙ୍କୁ ଦେବାର ସ୍ଥିର ହେଲା ଓ ସେଥିରେ ଯିବା ଆସିବା ଖର୍ଚ୍ଚ ସଂପୃକ୍ତ ଶିକ୍ଷକମାନେ ବହନ କରୁଥିଲେ । ଅବଶ୍ୟ ଏଥିରେ ମଧ୍ୟ ଅନେକ ସ୍ଥଳରେ ପ୍ରଧାନ ଶିକ୍ଷକଗଣ ଦରମା ପାଇଲା ପରେ ତାକୁ ଧରି ସ୍କୁଲକୁ ନ ଯାଇ ଅନ୍ୟତ୍ର ଯାଇ ଖର୍ଚ୍ଚ ଆଦି କରି ପାଠପଢ଼ାରେ ବ୍ୟାଘାତ ଓ ଶିକ୍ଷକମାନଙ୍କ ଦରମା ଆତ୍ମସାତର ଅଭିଯୋଗମାନ ମଧ୍ୟ ମିଳିଲା । ସେ ଯାହା ହେଉ ଦେଶରେ ଶିକ୍ଷକମାନେ ବିଶିଷ୍ଟ ଜ୍ଞାନୀ ଓ ଅଗ୍ରଣୀ, ସେମାନେ ଯଦି କୁପଥଗାମୀ ହୋଇ ଅନାଦର୍ଶ କାର୍ଯ୍ୟ କରନ୍ତି ଆଉ କାହାକୁ କହିବା - ନୀତିରେ ଭଗବାନଙ୍କୁ କେବଳ ପ୍ରାର୍ଥନା କରିବାକୁ ହେବ ଯେ ଏହି ଦେଶର ସୁଶୃଙ୍ଖଳା ଓ ପ୍ରଗତି ପାଇଁ ସେହି ପଥ ପ୍ରଦର୍ଶନ କରନ୍ତୁ ।

ଧର୍ମଗଡ଼ରେ ଶିକ୍ଷା ଜିଲ୍ଲାଧିକାରୀ ଭାବେ ଯୋଗ ଦେବା ପରେ ମୁଁ ବିଭିନ୍ନ ବ୍ଲକର ବିଦ୍ୟାଳୟ ପରିଦର୍ଶନ ପାଇଁ ସଂପୃକ୍ତ ବି.ଡି.ଓ. ବନ୍ଧୁମାନେ ସର୍ବଦା ସହାନୁଭୂତିଶୀଳ ଥିଲେ । ତେଣୁ ସେହି ପରିଦର୍ଶନ କାଳର କେତେକ ଅନୁଭୂତି ବର୍ଣ୍ଣନା କରିବା ପ୍ରାସଙ୍ଗିକ ମନେ ହୁଏ । ମୋର ପୂର୍ବର ଅନୁଭୂତିରୁ ଶିକ୍ଷକମାନଙ୍କ ସ୍ଥିତି ଓ କାର୍ଯ୍ୟକଳାପକୁ ବିଷୟର କରି ତାଙ୍କୁ ତାଙ୍କର ମାସିକ ପ୍ରାପ୍ୟ ନ ଦେଇ କେବଳ

ପାଠଦାନ, ଠିକ୍ ଭାବେ ଉପସ୍ଥିତି ଓ ସ୍କୁଲଘର ରକ୍ଷଣାବେକ୍ଷଣ ଆଦି ଉପରେ ଗୁରୁତ୍ୱ ଦେବାକୁ ଯଦିଓ ମୁଁ ସମୀଚିନ ମନେ କଲି ନାହିଁ ତଥାପି ବିଭାଗୀୟ ସମ୍ମାନହାନି ନ ହେବା ପାଇଁ ଅନ୍ତତଃ ମୌଳିକ କେତେକ ପ୍ରସ୍ତାବ ଶିକ୍ଷକମାନଙ୍କୁ ଜଣାଇ ତାର ପାଳନ ପାଇଁ ଅନୁରୋଧ କଲି । ବିଶେଷତଃ ଗଣେଷ ପୂଜା, ସରସ୍ୱତୀ ପୂଜା, ଗଣତନ୍ତ୍ର ଦିବସ ଓ ସ୍ୱାଧୀନତା ଦିବସରେ ଉତ୍ସାହ ଓ ପ୍ରେରଣାମୂକ ଉପଦେଶ ସାର୍କୁଲାର ଜରିଆରେ ସହ-ନିରୀକ୍ଷକଙ୍କ ମାଧମରେ ଶିକ୍ଷକମାନଙ୍କୁ ଜଣାଇଲି । ସେମାନେ ପ୍ରଥମେ ଏପରି ଗୋଟିଏ ଉପଦେଶାମୂକ ନୀତିପୂର୍ଣ୍ଣ ସନ୍ଦେଶ ଶିକ୍ଷା ଜିଲ୍ଲାଧିକାରୀଙ୍କ ଠାରୁ ପାଇ ଅତିଶୟ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ ସ୍ୱତଃପ୍ରବୃତ୍ତ ଭାବେ କହି ପକାଇଲେ ଯେ ଦୀର୍ଘ ୪୦ ବର୍ଷ ଧରି ଅର୍ଥାତ୍ ସ୍ୱାଧୀନତା ପ୍ରାପ୍ତି ପରେ ଏପରି ଏକ ସାର୍କୁଲାର ସେମାନେ ପାଇ ନ ଥିଲେ । ଏହାକୁ ସେମାନେ ସ୍ୱାଗତ ଜଣାଇଲେ । ଏପରି ଭାବେ ସେମାନଙ୍କ ସଙ୍ଗେ ଆଲୋଚନା ଓ ବିସ୍ତୃତ ବିମର୍ଷ ପରେ ଶିକ୍ଷା ସମ୍ପର୍କୀୟ ବିଂଶ ସୂତ୍ରୀ କାର୍ଯ୍ୟକ୍ରମ ସମସ୍ତଙ୍କୁ ଅବଗତ କରାଯାଇ ତାକୁ ପାଳନ କରିବା ପାଇଁ ଅନୁରୋଧ କରାଗଲା । ସେହି ବିଂଶ ସୂତ୍ରୀ କାର୍ଯ୍ୟକ୍ରମ ମଧ୍ୟରୁ ଶିକ୍ଷକଙ୍କ ପାଠ୍ୟ ପ୍ରସ୍ତୁତି ଓ ପାଠ୍ୟଦାନ ପ୍ରଣାଳୀ, ନିୟମିତ ଉପସ୍ଥାନ ଛଡ଼ା ସ୍କୁଲଘର ରକ୍ଷଣାବେକ୍ଷଣ, ସ୍କୁଲର ବାଡ଼ାବନ୍ଦୀ, ବଗିଚା ତଥା ଆବଶ୍ୟକୀୟ ବୃକ୍ଷରୋପଣ ଦ୍ୱାରା ସ୍କୁଲ ପରିବେଶର ଶ୍ରୀବୃଦ୍ଧି ସାଧନ ପାଇଁ ଉପଦେଶ ପ୍ରଦାନ କରାଯାଇଥିଲା । ଯଦ୍ୱାରା ସାରା ଜିଲ୍ଲାରେ ଏକ ନୂତନ ଶିକ୍ଷା ଜାଗରଣ ସୃଷ୍ଟି ହେବାର ଲକ୍ଷ୍ୟ କରାଗଲା ।

ଥରେ କୌଣସି ଏକ ବିଦ୍ୟାଳୟକୁ ପରିଦର୍ଶନ କରିବା ଅବକାଶରେ ଯାଇ ଦେଖିଲି ଯେ ଉକ୍ତ ସ୍କୁଲର ପ୍ରଧାନ ଶିକ୍ଷକ ଏକାଦିକ୍ରମେ ୧୫/୨୦ ବର୍ଷ ସେଠାରେ ଥାଇ ସ୍କୁଲର ବାଡ଼ାବନ୍ଦି, ବଗିଚା ତଥା ସ୍କୁଲର ନାମ ଫଳକ ବା ନୀତିବାକ୍ୟର କୌଣସି ସୂଚନା ନ ମିଳିବାରୁ, ମୁଁ ସଂପୃକ୍ତ ଶିକ୍ଷକଙ୍କୁ ସେ ବିଷୟ ପ୍ରଶ୍ନ କରିବାରୁ ସେ ତାଚ୍ଛଲ୍ୟ ଭାବେ ଉତ୍ତର ଦେଲେ ଯେ, "ସାର୍, ଆଜିକାଲି ଆଉ ଏସବୁ କିଏ କରୁଛି ବା ବିଭାଗୀୟ କର୍ମକର୍ତ୍ତାଙ୍କ ସେ ବିଷୟରେ ସେତେ ତାଗିଦା ଦେବା ଝୁଙ୍କ ନାହିଁ" । ତେଣୁ ତାଙ୍କୁ ତାଙ୍କ କର୍ତ୍ତବ୍ୟପରାୟଣତା ଓ ଦରମା ପ୍ରାପ୍ତିର ସୂଚନା ତଥା ନିଜ ଗ୍ରାମର ନିକଟରେ ଥାଇ ପାଠ୍ୟଦାନ ଓ ବିଦ୍ୟାଳୟ ଗୃହ ଓ ପରିବେଶ ସମ୍ପର୍କରେ ଅବହେଳା ପ୍ରଦର୍ଶନ କେତେଦୂର ଯୁକ୍ତିଯୁକ୍ତ ବୋଲି ଦୋହରାଇବାରୁ ମଧ୍ୟ ସେଥି ପ୍ରତି ସେ ଗୁରୁତ୍ୱ ନ ଦେଇ ମୋର ମତାମତକୁ ସମର୍ଥନ କରିବା ତ ଦୂରେ ଥାଉ ତାକୁ ଅବାନ୍ତର ବୋଲି ମନୋଭାବ ପ୍ରକାଶ କଲେ । ସେଥିରେ ମୁଁ ଅବଶ୍ୟ ଉତ୍ତେଜିତ ନ ହୋଇ

ତାଙ୍କୁ ଅତି ନମ୍ର ଭାବରେ ପରଦିନ ତାଙ୍କ ବଦଳି ସେଠାରୁ ୨୦/୨୫ କି.ମି. ଦୂରସ୍ଥ ଆଉ ଏକ ବିଦ୍ୟାଳୟକୁ ହେବାର ସୂଚନା ଦେଇ ବିଦ୍ୟାଳୟ ପରିତ୍ୟାଗ କରିବାକୁ ଉଦ୍ୟତ ହେବା ବେଳେ ଉକ୍ତ ଶିକ୍ଷକ ମହୋଦୟ ଭୀତତ୍ରସ୍ତ ଭାବେ ଆସି ଅତି ବିନମ୍ର ସହକାରେ ବିଦ୍ୟାଳୟର ସମୂହ ଉନ୍ନତି କଳ୍ପେ ଆପ୍ରାଣ ଚେଷ୍ଟା କରିବାକୁ ଅଙ୍ଗୀକାରବଦ୍ଧ ହେବାରୁ ଆପାତତଃ ତାଙ୍କ ବଦଳି କାର୍ଯ୍ୟକାରୀ ନ ହେବାର ସୂଚନା ଦେଇ ବିଦ୍ୟାଳୟ ପରିତ୍ୟାଗ କଲି। ଉକ୍ତ ଘଟଣା ସାରା ଅଞ୍ଚଳରେ ବ୍ୟାପି ଯାଇ ସମସ୍ତେ ନିଜ ନିଜ ସ୍କୁଲ ସଜାଇବାରେ ତତ୍ପର ହେଲେ। ସାଧାରଣତଃ ମୋର ପରିଦର୍ଶନ ଆକସ୍ମିକ ଥିଲା ଓ ମୁଁ ଯେଉଁଠାରେ ଯାହା ମିଳେ ତାକୁ ସେବନ କରି କାହାକୁ ଅସୁବିଧାରେ ନ ପକାଇ ଚଳାଇ ନେଉଥିଲି। ତେଣୁ ସମସ୍ତେ ମୋର ପରିଦର୍ଶନ ପାଇଁ ବ୍ୟସ୍ତ ହେଉ ନ ଥିଲେ।

ଥରେ ମୋର ସହକର୍ମୀ ସହ-ପରିଦର୍ଶକ ଶ୍ରୀ ପ୍ରଫୁଲ୍ଲ କୁମାର ଆଗ୍ରର୍ଯ୍ୟଙ୍କ ମୋଟର ସାଇକେଲରେ ପ୍ରାୟ ଦିନ ୧୦ଟାରୁ ବାହାରି ସନ୍ଧ୍ୟା ୫ଟା ପର୍ଯ୍ୟନ୍ତ ଗୋଟିଏ ରାସ୍ତାରେ ଯାଇ ରାସ୍ତାରେ ଥିବା ପ୍ରାଥମିକ ଓ ନିମ୍ନ ମାଧମିକ ବିଦ୍ୟାଳୟଗୁଡ଼ିକ ପରିଦର୍ଶନ କରି ଫେରୁଥିଲି। ପରେ ସେହି ଦିନ ଆମ ପରିଦର୍ଶନ ସମୟରେ ମଣ୍ଡଳାଧୀଶ ମଧ ସେହି ବାଟେ ପରିଦର୍ଶନ କରିବାକୁ ଯାଇଥିଲେ। ଏଣୁ ଆମ ଶିକ୍ଷା ଜିଲ୍ଲାରେ ପ୍ରାୟ ଛାତ୍ର ଉପସ୍ଥାନ, ଶିକ୍ଷକ ପାଠଦାନ ଓ ଅନ୍ୟାନ୍ୟ କାର୍ଯ୍ୟକ୍ରମ ଏକ ରକମ ଶୃଙ୍ଖଳା ସହ ଚ୍ଲିଥିଲା। ସ୍ଥାନୀୟ ତହସିଲଦାର ଓ ଏସ୍.ଡି.ଓ., ବି.ଡି.ଓ. ଆଦି ସରକାରୀ କର୍ମଗ୍ରୀଙ୍କ ସହ ସଦ୍‌ଭାବ ଥିବାରୁ ବେଳେ ବେଳେ ପରିଦର୍ଶନ ପାଇଁ ଯିବାକୁ ଅସୁବିଧା ପଡୁ ନ ଥିଲା।

ମୋର ରହଣି-କାଳ ମଧରେ ଥରେ ସରକାରୀ ଚିଠି ଆସିଲା ଯେ ଯଦି ବିଭାଗୀୟ କୌଣସି କୋଠାବାଡ଼ି P.W.Dକୁ ହସ୍ତାନ୍ତରିତ ହୋଇ ନାହିଁ, ତେବେ ସେ ସବୁକୁ ଏକ ନିର୍ଦ୍ଧାରିତ ସମୟ ମଧରେ ହସ୍ତାନ୍ତର କରା ଯିବା ପାଇଁ ପ୍ରସ୍ତାବ ପଠାଇବାକୁ ହେବ। ଏଣୁ ମୁଁ ସରକାରୀ ସ୍କୁଲ ଘର କେତେ ଅଛି ତାହା ଅଫିସ ରେକର୍ଡ଼ରୁ ବାହାର କରି ଦେଖାଗଲା ଯେ ପ୍ରାୟ ୩୮ଟି ପ୍ରାଥମିକ ଓ ନିମ୍ନ ମାଧମିକ ସ୍କୁଲ କୋଠାବାଡ଼ି ଯାହାକି ୧.୧.୪୮ ଗଡ଼ଜାତ ମିଶ୍ରଣ ପୂର୍ବରୁ ରାଜାଙ୍କ ଅଧିନରେ ଥିଲା ସେ ସବୁ ଦୀର୍ଘ ୪୨ ବର୍ଷ ଧରି କାହାରି ଦ୍ୱାରା ମରାମତି ନ ହୋଇ ପ୍ରାୟ ଭଗ୍ନପ୍ରାୟ ଓ ସେଗୁଡ଼ିକର ଆଶୁ ମରାମତି ଏକାନ୍ତ ଆବଶ୍ୟକ। ଏଣୁ ଉପରୋକ୍ତ ସରକାରୀ ଚିଠି ପ୍ରାପ୍ତିର ସୁଯୋଗ ନେଇ ଏକ ପ୍ରସ୍ତାବ ନିର୍ଦ୍ଦିଷ୍ଟ ସମୟ ମଧରେ ଜିଲ୍ଲାର P.W.D. Ex. Engineerଙ୍କୁ ପ୍ରସ୍ତାବ ପଠାଯାଇ ତାର ନକଲଗୁଡ଼ିକ ଶିକ୍ଷା ମଣ୍ଡଳ

ଜଣେ ଶିକ୍ଷକ...

ଅଫିସ ଓ ଡି.ପି.ଆଇ ଓ ସରକାରଙ୍କୁ ପଠାଗଲା ଓ ସୂଚ୍ନଇ ଦିଆଗଲା ଯେ ବିଗତ କେତେ ବର୍ଷ ଧରି ମରାମତି ଅଭାବରୁ ସେ କୋଠାବାଡ଼ି ଭୁଷୁଡ଼ି ପଡ଼ିବା ଉପରେ ଓ ଯେହେତୁ ସେହି ଘରଗୁଡ଼ିକର ମାଲିକ କେହି ନ ଥିଲେ, ତେଣୁ ତାର ମରାମତି ସରକାର ନେବା ବାଞ୍ଛନୀୟ ଓ ତାର ଆଶୁ ମରାମତି ଏକାନ୍ତ ଜରୁରୀ । ଏହି ପ୍ରସ୍ତାବ ପ୍ରେରଣର ପ୍ରାୟ ୨/୩ ମାସ ମଧ୍ୟରେ ସରକାରଙ୍କଠାରୁ ଚିଠି ଆସିଲା ଯେ ସେହି ସ୍କୁଲ ଘରଗୁଡ଼ିକ P.W.D. ଖାତାଭୁକ୍ତ ହେଲା ଓ ପ୍ରତ୍ୟେକ ବିଦ୍ୟାଳୟ ପାଇଁ ପ୍ରାୟ ଟ.୧୫୦୦ ଲେଖାଏଁ ମରାମତି ମଞ୍ଜୁରି ଆସିଗଲା । ଏ ଖବର ପାଇ ମଣ୍ଡଳାଧୀଶଙ୍କୁ ଜଣାଇବାରୁ ସେ ଆନନ୍ଦିତ ହୋଇ ପରବର୍ତ୍ତୀ ଡି.ଆଇ.ମାନଙ୍କ ସଭାରେ ପ୍ରକାଶ କଲେ ଓ ଅନ୍ୟ ଡି.ଆଇ.ମାନେ କାହିଁକି ସେପରି କଲେ ନାହିଁ ବୋଲି ପଚ୍ଚରିବାରୁ ସେମାନେ ଏହାକୁ ନିୟମ ବହିର୍ଭୂତ ପ୍ରସଙ୍ଗ କହି ହସରେ ଉଡ଼ାଇ ଦେଲେ । ପରେ ଘଟଣାର ସତ୍ୟତା ଜାଣି ଆଶ୍ଚର୍ଯ୍ୟ ହେଲେ ଓ ସେମାନଙ୍କର ଜିଲ୍ଲାର ଅନୁରୂପ ବିଦ୍ୟାଳୟ କୋଠାବାଡ଼ି ସରକାରଙ୍କୁ ହସ୍ତାନ୍ତର କରିବାର ଚିନ୍ତା କଲା ବେଳକୁ 'ଲେଡ଼ି ଗୁଡ଼୍ କହୁଣୀକୁ ବହି ଯାଇ' ପ୍ରସ୍ତାବ ପ୍ରେରଣ ହୋଇପାରି ନ ଥିଲା । ମୋଟାମୋଟି ଭାବରେ ଧର୍ମଗଡ଼ରେ ରହଣି କାଳରେ ଶିକ୍ଷା ବିଭାଗରେ ପ୍ରାଥମିକ ସ୍ତରରେ ଏକ ଚେତନା ଓ ବିଭାଗର ଅସ୍ତିତ୍ୱ ବିଷୟରେ ସମସ୍ତେ ଅବଗତ ହୋଇଥିଲେ ।

ମୋର ରହଣି-କାଳରେ ଗୋଲାମୁଣ୍ଡା ବ୍ଲକର ଏକ ଉଚ୍ଚ ପ୍ରାଥମିକ ବିଦ୍ୟାଳୟକୁ ପରିଦର୍ଶନ କଲା ବେଳେ ଦେଖାଗଲା ଯେ ୪ର୍ଥ ଓ ୫ମ ଶ୍ରେଣୀରେ ଅତି କମ ସଂଖ୍ୟକ ଛାତ୍ରଙ୍କ ନାମ ଉପସ୍ଥାନ ଖାତାରେ ଥିଲା ଓ ସେମାନଙ୍କ ମଧ୍ୟରୁ କେହି ବର୍ଷ ସାରା ସ୍କୁଲକୁ ଆସିବାର ସୂଚନା ଜଣା ପଡୁ ନ ଥିଲା । ସ୍କୁଲର ଶିକ୍ଷକ ସଂଖ୍ୟା ୩ ଓ ମୋଟ ଛାତ୍ର ସଂଖ୍ୟା ୨୯ ଓ ଦୈନିକ ଉପସ୍ଥାନ ପ୍ରାୟ ୧୭/୧୮ ମଧ୍ୟରେ । ତାଙ୍କ ଛାତ୍ର ହାଜିରା ଅଣାଇ ଦେଖାଗଲା ଯେ ଦୀର୍ଘ ଦିନ ଧରି ୪ର୍ଥ ଓ ୫ମ ଶ୍ରେଣୀ ଛାତ୍ର ଛାତ୍ରୀ ଅନୁପସ୍ଥିତ ଥିବାରୁ ୪ର୍ଥ ଓ ୫ମ ଶ୍ରେଣୀ ପ୍ରାୟ ବନ୍ଦ ରହିଥିଲା ଓ ସେହି ବର୍ଷର ବାର୍ଷିକ ପରୀକ୍ଷାରେ ୪ର୍ଥ ଓ ୫ମ ଶ୍ରେଣୀର କୌଣସି ପରୀକ୍ଷା କରାଯାଇ ନ ଥିଲା । ଏସବୁ ଦୃଷ୍ଟିରୁ ଉକ୍ତ ସ୍କୁଲରେ ଜଣେ ଶିକ୍ଷକରୁ ଅଧିକଙ୍କ ଆବଶ୍ୟକତା ନ ଥିଲା । ତେଣୁ ସେହି ଶିକ୍ଷକମାନଙ୍କୁ ଆବଶ୍ୟକ ହେଲେ ଦୂରଦୂରାନ୍ତକୁ ବଦଳି କରାଯିବାର ନିଶ୍ଚିତତା ଅଛି ଓ ସେମାନେ ଛାତ୍ର ଉପସ୍ଥାନରେ ବୀତସ୍ପୃହ ହେବାର କାରଣ ହେଉଛି ଶିକ୍ଷକଙ୍କ ଦାୟିତ୍ୱହୀନତା ତଥା ନିଜ ଚାକିରୀକୁ ନିଜେ ହରାଇବାର ପଥ ସୁଗମ କରିବାର ସୁଯୋଗ ଦେବା । ତେଣୁ ମୋର ଏହି

ମତାମତରେ ଶିକ୍ଷକମାନେ ଶଙ୍କିତ ହୋଇ ନିର୍ବାକ୍ ହେଲେ ଓ ଅତିଶୟ ଅସହାୟ ମନୋଭାବ ପ୍ରକାଶ କରି ପ୍ରମାଦ ଗଣିଲେ । ଶେଷରେ ୪ର୍ଥ ଶ୍ରେଣୀର ଛାତ୍ର ଉପସ୍ଥାନରୁ କେତେକ ଛାତ୍ର ଓ ତାଙ୍କ ଅଭିଭାବକମାନଙ୍କୁ ଡକାଇବାର ମନ୍ତବ୍ୟ ଦେବାରୁ ୪ର୍ଥ ଶ୍ରେଣୀର ଛାତ୍ରଛାତ୍ରୀଗଣ ଅଭିଭାବକମାନଙ୍କ ସଙ୍ଗରେ ଉପସ୍ଥିତ ହେଲେ । ସେମାନଙ୍କ ଅନୁପସ୍ଥିତିର କାରଣ ପଚାରିବାରୁ ଶିଶୁମାନେ ବାପ ମାଙ୍କୁ ଦୈନିକ ଆହାର ସଂଗ୍ରହ ଭାଇ ଭଉଣୀଙ୍କ ଯତ୍ନ ନେବାର ଆଳ ଦେଖାଇଲେ ଓ ବିଦ୍ୟାଳୟରେ ପାଠ୍ୟଦାନର ବିଶୃଙ୍ଖଳା ଓ ଅନିୟମିତତା ହେତୁ ସ୍କୁଲ ପ୍ରତି ସେମାନଙ୍କ ବିତୃଷ୍ଣା ଆସିବାରୁ ଛାତ୍ରଛାତ୍ରୀଙ୍କୁ ସ୍କୁଲକୁ ନ ପଠାଇବା ପାଇଁ ସିଦ୍ଧାନ୍ତ କରିଥିଲେ । ପରିଶେଷରେ ମୋର ସଂପୃକ୍ତ ସ.ଇ. ପାଠର ଗୁରୁତ୍ୱ ଓ ଛାତ୍ରଛାତ୍ରୀଙ୍କ ଭବିଷ୍ୟତର ସୁଫଳ ବିଷୟରେ ସୂଚନା ଦେବାରୁ ସେମାନେ ନିୟମିତ ଭାବେ ତାଙ୍କ ପୁଅ ଝିଅମାନଙ୍କୁ ସ୍କୁଲକୁ ପଠାଇବା ପାଇଁ ଆଗ୍ରହ ପ୍ରକାଶ କଲେ । ତେଣୁ ମୁଁ ସେହି ଅନିୟମିତ ଭାବେ ଆସୁ ନ ଥିବା ୪ର୍ଥ ଶ୍ରେଣୀର ଛାତ୍ରଛାତ୍ରୀଙ୍କୁ ଡକାଇ ତାଙ୍କୁ କେତେକ ମୌଖିକ ପ୍ରଶ୍ନ ପଚାରି ତାଙ୍କୁ ୫ମ ଶ୍ରେଣୀକୁ ଉନ୍ନିତ ଓ କେତେକଙ୍କୁ ୪ର୍ଥ ଶ୍ରେଣୀରେ ରଖି ୪ର୍ଥ ଓ ୫ମ ଶ୍ରେଣୀର ସ୍ଥିତିକୁ ବଜାୟ ରଖି ଶିକ୍ଷକମାନଙ୍କୁ ସେମାନଙ୍କ କର୍ତ୍ତବ୍ୟ ବିଷୟରେ ସଚେତନ କରାଇ ଆସିଲି । ଏହି ପଦକ୍ଷେପ ନ ନେଇଥିଲେ ସଂପୃକ୍ତ ସ୍କୁଲଟି ଉ.ପ୍ରା. ସ୍କୁଲରୁ ନି.ପ୍ରା. ସ୍କୁଲକୁ ଖସି ସେଠାରୁ ଅନ୍ତତଃ ଜଣେ ଶିକ୍ଷକଙ୍କ ବଦଳି ନିଶ୍ଚୟ ହୋଇ ଥାଆନ୍ତା । ଏଥିରେ ସଂପୃକ୍ତ ସ.ଇ. ସଜାଗ ଦୃଷ୍ଟି ଦେବା ପାଇଁ ଏପରି ଅସୁବିଧା ପରିସ୍ଥିତିର ଯଥାଯଥ ପଦକ୍ଷେପ ନେବା ପାଇଁ ଉପଦେଶ ଦେଲି ।

ଆଉ କେତେକ ବିଶିଷ୍ଟ ଘଟଣା ଉଲ୍ଲେଖଯୋଗ୍ୟ ମନେ ହୁଏ । ସେଥି ମଧ୍ୟରୁ କେତେକ ବିଶିଷ୍ଟ ବ୍ୟକ୍ତିଙ୍କ ଧର୍ମଗଡ଼କୁ ଆଗମନ ଓ ସଭାରେ ଯୋଗଦାନ । ମାଧ୍ୟମିକ ଶିକ୍ଷା ପରିଷଦ ଆନୁକୂଲ୍ୟରେ ଥରେ ଭବାନୀପାଟଣାରେ ଏକ ପରୀକ୍ଷା ନିୟନ୍ତ୍ରଣ ଓ ପ୍ରଶ୍ନ ତିଆରି ଶିବିର ଆୟୋଜନ କରାଯାଇ ଥିଲା । ସେତେବେଳେ ଶ୍ରୀଯୁକ୍ତ ସତ୍ୟପ୍ରସାଦ ମୁଣ୍ଡ କଳାହାଣ୍ଡିର ମଣ୍ଡଳାଧୀଶ ଥିଲେ । ଉକ୍ତ ଶିବିରରେ ଇଂରାଜୀ, ଭୂଗୋଳ, ବିଜ୍ଞାନ ଓ ଅନ୍ୟାନ୍ୟ ବିଷୟ ଆଲୋଚନାର ପରିସରଭୁକ୍ତ ଥିଲା । ମଣ୍ଡଳାଧୀଶ ଉକ୍ତ ଶିବିରର ସଂଯୋଜକ ଦାୟିତ୍ୱରେ ଥିଲେ । ସେହି ଶିବିରରେ ଯୋଗଦାନ ପାଇଁ କଟକରୁ ମାଧ୍ୟମିକ ଶିକ୍ଷା ପରିଷଦର ଭାରପ୍ରାପ୍ତ କର୍ମଚାରୀ ମୂଲ୍ୟାୟନ ଅଧିକାରୀ ଶ୍ରୀ ନଟବର ସାହୁ ଶିବିର ପରିଚାଳନା ଦାୟିତ୍ୱରେ ଥିଲେ । ବିଭିନ୍ନ ବିଭାଗର ବିଶେଷଜ୍ଞ ରୂପେ ଇଂରାଜୀ ଶ୍ରୀଯୁକ୍ତ ରାମଚନ୍ଦ୍ର ମିଶ୍ର, ଭୂଗୋଳରେ ପୂର୍ବତନ ସମ୍ବଲପୁର ମଣ୍ଡଳାଧୀଶ ସ୍ୱନାମଧନ୍ୟ ୰ ମନମୋହନ ପଟ୍ଟନାୟକ ଓ

ମୋତେ ବିଜ୍ଞାନରେ ନିଯୁକ୍ତି ମିଳିଥିଲା । ତାହା ପ୍ରାୟ ୫ ଦିନ ପର୍ଯ୍ୟନ୍ତ ଚାଲିଥିଲା । ସେହି ସମୟରେ ମଝିରେ ଦିନଟିଏ ସନ୍ଧ୍ୟା ବେଳେ ଭବାନୀପାଟଣାରେ ଶିବିର କାର୍ଯ୍ୟ ଶେଷ ପରେ ଏଥିରେ ଆଗନ୍ତୁକ ବିଶେଷଜ୍ଞ ଓ ମଣ୍ଡଳାଧୀଶଙ୍କୁ ଆମନ୍ତ୍ରଣ କରାଯାଇ ଧର୍ମଗଡ଼ ମାଧମିକ ପ୍ରଶିକ୍ଷଣ ବିଦ୍ୟାଳୟରେ ଏକ ଶିକ୍ଷା ସମ୍ବନ୍ଧୀୟ ଆଲୋଚନା ସଭା ଆୟୋଜିତ ହୋଇଥିଲା । ସେଥିରେ ମାଧମିକ ବିଦ୍ୟାଳୟର ଛାତ୍ରଛାତ୍ରୀଗଣ ତଥା ଧର୍ମଗଡ଼ ନିକଟସ୍ଥ ମି.ଇ. ଓ ଉଚ୍ଚ ପ୍ରାଥମିକର ଶିକ୍ଷକ ଶିକ୍ଷୟିତ୍ରୀମାନେ ଯୋଗ ଦେଇଥିଲେ । ଉକ୍ତ ଆଲୋଚନା ସଭା ଶେଷରେ ଶିକ୍ଷକ ଓ ଶିକ୍ଷୟିତ୍ରୀଗଣ ଏକ ସାମୂହିକ ପଂକ୍ତିଭୋଜନର ଆୟୋଜନ କରିଥିଲେ । ଧର୍ମଗଡ଼ ଶିକ୍ଷା ଜିଲ୍ଲାରେ ଏପରି ଏକ ସଭା ସର୍ବପ୍ରଥମ ବୋଲି ବହୁମତ ପ୍ରକାଶ ପାଇଥିଲା ।

ଆଉ ଥରେ ଧର୍ମଗଡ଼ ଶିକ୍ଷା ଜିଲ୍ଲାରେ ପ୍ରଥମ କରି ନିମ୍ନ ମାଧମିକ ବିଦ୍ୟାଳୟର ପ୍ରଧାନ ଶିକ୍ଷକଙ୍କ ଦୁଇ ଦିନିଆ ସମ୍ମିଳନୀ ଆୟୋଜନ କରାଯାଇ ଥିଲା । ଉକ୍ତ ସମ୍ମିଳନୀରେ କଳାହାଣ୍ଡିର ତତ୍କାଳୀନ ଜିଲ୍ଲାପାଳ କୁମାରୀ ମୀନା ଗୁପ୍ତା I.A.S. ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ଶିକ୍ଷକ ଓ ଅନୁଷ୍ଠାନମାନଙ୍କର ସୁବିଧା, ଅସୁବିଧା ଆଦି ବୁଝି ତାର ଉପଯୁକ୍ତ ପଦକ୍ଷେପ ନେବା ପାଇଁ ବିହିତ ବ୍ୟବସ୍ଥା କରିବାକୁ ପ୍ରତିଶ୍ରୁତି ଦେଇଥିଲେ ।

୧୯୮୧ରେ ଜନଗଣନା କାର୍ଯ୍ୟରେ ଆମ ବିଭାଗ ଓ ଆମ ବିଭାଗୀୟ ଅଫିସରମାନେ ସୁଚାରୁ ରୂପେ ନିଜ କର୍ତ୍ତବ୍ୟ ସମ୍ପାଦନା କରି ପୁରସ୍କୃତ ଓ ପ୍ରଶଂସିତ ହୋଇଥିଲେ । ଏପରି ଭାବେ ଆମ ଶିକ୍ଷା ବିଭାଗରେ ପ୍ରାଥମିକ ବିଦ୍ୟାଳୟ ଠାରୁ ଆରମ୍ଭ କରି ମାଧମିକ ପ୍ରଶିକ୍ଷଣ ପ୍ରତିଷ୍ଠାନ ତଥା ମାଧମିକ ବିଦ୍ୟାଳୟମାନଙ୍କରେ ଅପୂର୍ବ ଶିକ୍ଷାନୁରକ୍ତି ଓ ଚେତନା ଜାଗରଣ ଘଟିଥିଲା । ଅବଶ୍ୟ ଏଥିରେ ମୋର ସହକର୍ମୀ ଶିକ୍ଷା ପରିଦର୍ଶକଗଣ, ଧର୍ମଗଡ଼ ମାଧମିକ ପ୍ରଶିକ୍ଷଣ କେନ୍ଦ୍ରର ପ୍ରଧାନ ଶିକ୍ଷକ ଶ୍ରୀ ଲିଙ୍ଗରାଜ ମିଶ୍ର ଓ ଧର୍ମଗଡ଼ ହାଇସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀ ଜନ୍ମେଜୟ ପାତ୍ର ଥିଲେ । ଜଣେ ବିକଳାଙ୍ଗ ଶିକ୍ଷକଙ୍କୁ ୫୧ କି.ମି. ଦୂରତ୍ୱ ସ୍ଥଳରୁ ନିଜ ଗ୍ରାମ ପାଖକୁ ଅଣାଯାଇ ଥିଲା । ଏପରି ଭାବରେ ସେଠାରେ ରହଣି କାଳରେ ପ୍ରାୟ ୨.୫ ବର୍ଷ ବିତିଗଲା । ସେଠାରେ ଚାକିରୀ କରୁଥିବା ବେଳେ କୌଣସି ଏକ କାର୍ଯ୍ୟରେ ଭୁବନେଶ୍ୱର ଯାଇଥିଲି ଓ ସଙ୍ଗରେ ବଡ଼ ଝିଅ ମାଧୁରୀର ୨ ପୁଅ ବାପୀ ଓ ବୁବୁନୁଙ୍କୁ ଧରି ପୁରୀ, କୋଣାର୍କ ପରିଭ୍ରମଣ କରାଇ ଆଣିବାର ଉଦ୍ଦେଶ୍ୟ ଥିଲା । କିନ୍ତୁ ସେଠାକୁ ଯାଇଥିବା ଆମ ଅଫିସର ଶ୍ରୀ ରମାନାଥ ମହାପାତ୍ର ଉପଶିକ୍ଷାଧିକାରୀ ଆସିଥିଲେ ଓ ତାଙ୍କଠାରୁ ଜଣାଗଲା ଯେ ମୋର ପାରଳାଖେମୁଣ୍ଡି ମାଧମିକ ପ୍ରଶିକ୍ଷଣ

ବିଦ୍ୟାଳୟର ପ୍ରଧାନ ଶିକ୍ଷକ ରୂପେ ବଦଳି ହୋଇଛି। ଅବଶ୍ୟ କିଛି ସମୟ ଆଗରୁ ମୋର ଧର୍ମଗଡ଼ରୁ ବଦଳି ହୋଇପାରେ ବୋଲି ଶୁଣା ଯାଉଥିଲା। ଏପରିକି ପୁରୀ ଆସିବାକୁ ଚାହିଁଲେ କିଛି ଅର୍ଥ ଶ୍ରାଦ୍ଧ କରାଗଲେ ତାହା ମଧ୍ୟ ସମ୍ଭବ, କାରଣ ସେତେବେଳେ ପୁରୀ ଡି.ଆଇ. ପୋଷ୍ଟ ଖାଲି ଥିଲା। ମୁଁ ଏ ଖବର ପାଇ ପ୍ରକାଶ କଲି ଯେ ମୋତେ କିଛି ଅର୍ଥ ପୁରସ୍କାର ଦେଇ ପୁରୀକୁ ମୁଁ ବଦଳି ହୋଇ ପାରେଁ। ଯେତେବେଳେ ନିଜ ବାସସ୍ଥାନ ଛାଡ଼ି ଧର୍ମଗଡ଼ ଆସିଲି ତେଣୁ ଅନ୍ୟ ଯେ କୌଣସି ଦୂରକୁ ବଦଳି କରାଗଲେ ମୋର କିଛି ଭୟଭୀତ ହେବାର ଅବକାଶ ନ ଥିଲା। ପୁଣି ପ୍ରକାରାନ୍ତରେ ଶୁଣିଲି ଯେ ଆମ ଅଞ୍ଚଳର ବିଧାୟକ ମାନେ ଅବଶ୍ୟ ବରଗଡ଼ ବ୍ୟତୀତ, ମୋତେ ତାଙ୍କ ଅଞ୍ଚଳକୁ ଅଣା ଯିବାର ଚେଷ୍ଟାରେ ଥିଲେ। ଏଣୁ ମୋର ପାରଳାଖେମୁଣ୍ଡୀ ବଦଳି ଜାଣି ପଦ୍ମପୁରର ତତ୍କାଳୀନ ବିଧାୟକ ଶ୍ରୀ ସତ୍ୟଭୁଷଣ ସାହୁ ଓ ମେଲଛାମୁଣ୍ଡାର ବିଧାୟକ ଶ୍ରୀ ପ୍ରକାଶ ଚନ୍ଦ୍ର ଦେବତା ଉଭୟେ ତାଙ୍କ ପଦ୍ମପୁରକୁ ଦିଆଯାଉ ବୋଲି ତତ୍କାଳୀନ ଶିକ୍ଷା ମନ୍ତ୍ରୀ ମାନ୍ୟବର ଗଙ୍ଗାଧର ମହାପାତ୍ରଙ୍କୁ ଅନୁରୋଧ କରି ତାଙ୍କର ଉଦ୍ଦେଶ୍ୟ ସାଧନ କଲେ। କାରଣ ତତ୍କାଳୀନ ପଦ୍ମପୁର ଡି.ଆଇ. ସେତେ ଜନପ୍ରିୟ ନ ଥିଲେ ବୋଲି ଜନମତ ପ୍ରକାଶ ପାଇଥିଲା ବୋଧ ହୁଏ। ଅବଶ୍ୟ ଏ ଦିଗରେ ମୋର ହିତାକାଂକ୍ଷୀ ବନ୍ଧୁ ମାଧ୍ୟମିକ ଉପ ଶିକ୍ଷା ନିର୍ଦ୍ଦେଶକ ଶ୍ରୀ ସୁଦାମ ପ୍ରହରାଜଙ୍କ ସାହାଯ୍ୟ ଅବିସ୍ମରଣୀୟ। କାରଣ ମୋର ବଦଳି ଆଦେଶ ବାହାରିବା ପରେ ମୁଁ ମୋର ଅସୁବିଧା ଦର୍ଶାଇ ମୋର ଅବସ୍ଥାନ ବରଗଡ଼ ବା ତତ୍ ସନ୍ନିକଟ ସ୍ଥାନକୁ ବଦଳି ପାଇଁ ଆବେଦନ କଲି ଓ ମୋର ଚାକିରୀକାଳ ଆଉ ପ୍ରାୟ ୩.୫ ବର୍ଷ ବାକୀ ଥିବା ଦୃଷ୍ଟିରୁ ନିଜ ଜିଲ୍ଲା ବା ବାସସ୍ଥାନ ସଂଲଗ୍ନ ସ୍ଥାନକୁ କୌଣସି ଅନୁରୂପ ପଦବୀରେ ପରିବର୍ତ୍ତନ ସରକାରୀ ଆଇନାନୁମୋଦିତ ଓ ଏଥିରେ କାହାରି କରୁଣା ବା ସହାନୁଭୂତିର ବିଶେଷ ଆବଶ୍ୟକ ନ ଥାଏ।

ସେଠାରୁ ଫେରି ଧର୍ମଗଡ଼ରେ ପହଞ୍ଚିଲା ବେଳକୁ ମୋର ବଦଳି ଆଦେଶର ନକଲ ଆମ ଅଫିସ୍‌କୁ ଆସିଗଲା। ତେଣୁ ମୋର ବିଦାୟ କାଳୀନ କାର୍ଯ୍ୟକ୍ରମ ଅଫିସ୍‌ର ବାକି ଥିବା କାମକୁ ସାରି ଦେବାକୁ ସଂପୃକ୍ତ କିରାଣୀ ଓ ସହ-ନିରୀକ୍ଷକ (S.I.) ମାନଙ୍କୁ ନିର୍ଦ୍ଦେଶ ଦେଲି। ଏପରି ଭାବେ ୧୯୮୩ ଜାନୁୟାରୀ ମାସ ଆଗେଇବାରେ ଲାଗିଥାଏ। ଶେଷରେ ସେହି ଆଦେଶନାମା ଅନୁସାରେ ଜାନୁୟାରୀ ମାସ ଶେଷ ସପ୍ତାହରେ ଧର୍ମଗଡ଼ରୁ କାର୍ଯ୍ୟମୁକ୍ତ ହେଲି, କାରଣ ଉତ୍ତରାଧିକାରୀ ଶ୍ରୀଯୁକ୍ତ ଦାସ ବାବୁ ନିଜ କାର୍ଯ୍ୟରେ ଯୋଗ ଦେବାକୁ ପହଞ୍ଚି ଗଲେ। ଏଣୁ ମୋର ସେଠାରୁ ଅନ୍ୟତ୍ର ଯିବାର ପଥ ସୁଗମ ହେଲା ଓ ବୋଧ ହୁଏ ଜାନୁୟାରୀ

ଶେଷ ସପ୍ତାହ ଅର୍ଥାତ୍ ମାସ ଶେଷରେ କାର୍ଯ୍ୟରୁ ମୁକ୍ତ ହୋଇ ମୋର ଜିନିଷପତ୍ର ଧରି ବରଗଡ଼ ଗ୍ଭଲି ଆସିଲି ।

ବରଗଡ଼ରେ ଦିନେ ଦି ଦିନ ରହିବା ପରେ ଆମେ ସ୍ଥିର କଲୁଁ ଯେ ସରକାରୀ ଆଦେଶାନୁସାରେ ଠିକ୍ ସମୟରେ ଯାଇ ନିଜର ନୂତନ କର୍ମକ୍ଷେତ୍ରରେ ଯୋଗ ଦେବା ବାଞ୍ଛନୀୟ । ଏଣୁ ମୁଁ ଓ ମୋ ସ୍ତ୍ରୀ ଉଭୟେ ପ୍ରସ୍ତୁତ ହୋଇ କଟକ ଦେଇ ପାରଳାଖେମୁଣ୍ଡି ଯାଇ ଯୋଗ ଦେବାର ଯୋଜନା କରି ବାହାରିଲୁଁ । ସେତେବେଳେ କଟକରେ ଆମ ତୃତୀୟ ଜୋଇଁ ରେଭେନ୍ସା ମହାବିଦ୍ୟାଳୟରେ ଅଧ୍ୟାପକ ଥାଆନ୍ତି । ତେଣୁ ସେଠାରେ କିଛି ଦିନ ରହି ଡି.ପି.ଆଇ. ଅଫିସ୍ ଖବର ଜାଣି ପରବର୍ତ୍ତୀ କର୍ମପନ୍ଥା ନିର୍ଦ୍ଧାରଣ କରିବାର ଯୋଜନାରେ କଟକ ଯାଇ ପହଞ୍ଚିଲୁଁ ।

କଟକରୁ ଭୁବନେଶ୍ୱର ଯାଇ ସଂପୃକ୍ତ ବିଭାଗୀୟ ମାଧ୍ୟମିକ ଉପନିର୍ଦ୍ଦେଶକ ତଥା ଆମ ପରିଚିତ ହିତୈଷୀ ବନ୍ଧୁ ଶ୍ରୀଯୁକ୍ତ ସୁଦାମ ପ୍ରହରାଜଙ୍କୁ ଭେଟିଲି । ସେ ମୋତେ ଦେଖି ମୋର ଆଗମନର ଉଦ୍ଦେଶ୍ୟ ଜାଣିବାରେ ଆଗ୍ରହ ପ୍ରକାଶ କରିବାରୁ ମୁଁ ତାଙ୍କୁ ଜଣାଇ ଦେଲି ଯେ ମୁଁ ଧର୍ମଗଡ଼ରୁ କାର୍ଯ୍ୟମୁକ୍ତ ହୋଇ ସରକାରୀ ଆଦେଶ ପାଳନ କରିବା ସକାଶେ ପାରଳାଖେମୁଣ୍ଡି ପଥର ଯାତ୍ରୀ । ସେଠାରେ ଯାଇ ଯୋଗ ଦେଇ ଦୀର୍ଘ ବିଦାୟ ନେଇ ଗ୍ଭଲି ଆସିବି । ଇତି ମଧ୍ୟରେ ସରକାରଙ୍କ ଠାରୁ ସଂଶୋଧିତ ଆଦେଶନାମା ପାଇ ନ ଥିବାରୁ ମନରେ ସାମାନ୍ୟ କ୍ଷୋଭ ପ୍ରକାଶ କଲେ ଓ ମୋତେ ପାରଳାଖେମୁଣ୍ଡିକୁ ଯିବାକୁ ମନା କଲେ । ସଙ୍ଗେ ସଙ୍ଗେ ଏକ ପ୍ରସ୍ତାବ ଦେଲେ ଯେ ମୁଁ ଯାଇ ସଂପୃକ୍ତ ବିଧାୟକ ଶ୍ରୀ ସତ୍ୟଭୂଷଣ ସାହୁ ଓ ଶ୍ରୀ ପ୍ରକାଶ ଚନ୍ଦ୍ର ଦେବତାଙ୍କୁ ସାକ୍ଷାତ କରିବା ପାଇଁ ସଙ୍କେତ ଦେଲେ । ପୁନଶ୍ଚ ଏହା ମଧ୍ୟ ପ୍ରକାଶ କରିଥିଲେ ଯେ ମୋର ବଦଳି ପ୍ରସ୍ତାବ ଯଥାଯଥ ଭାବେ ଦିଆଯାଇ ମୋତେ ପଦ୍ମପୁର ଶିକ୍ଷା ଜିଲ୍ଲାଧିକାରୀ ରୂପେ ଅବସ୍ଥାପନ ପାଇଁ ଠିକ୍ ହୋଇଥିଲା ଓ ମଝିରେ କୌଣସି କାରଣରୁ ସେହି ସମଗ୍ର ବଦଳି ଶିକ୍କୁଳିଟି ମଝିରେ କାଟି ଦିଆ ଯିବାରୁ ଏହି ବିଭ୍ରାଟ ଘଟିଥିବାର ସୂଚନା ଦେଲେ । ହେଲେହେଁ ଏହା ସଂପୃକ୍ତ ବିଧାୟକମାନେ ଇଚ୍ଛା କଲେ ଆଶୁ ଫଳପ୍ରଦ ହୋଇ ପରିବର୍ତ୍ତନ ଆଦେଶ ସଂଶୋଧିତ ହେବାର ଯଥେଷ୍ଟ ଆଶା ଅଛି । ଏଣୁ ଏଥିରେ ଚେଷ୍ଟା କରିବା ଅତ୍ୟାବଶ୍ୟକ ଅଟେ । ତେଣୁ ସଙ୍ଗେ ସଙ୍ଗେ ମୁଁ ବିଧାୟକମାନଙ୍କୁ ଦେଖା କରିବାରୁ ସେମାନେ ଆଦେଶନାମାର ବିଳମ୍ବ ପାଇଁ ବ୍ୟସ୍ତ ହେଲେ ଓ ମୋର ପାରଳାଖେମୁଣ୍ଡି ଯିବାକୁ ସ୍ପଷ୍ଟ ମନା କରିଦେଲେ । ସେମାନେ ସଙ୍ଗେ ସଙ୍ଗେ ଶିକ୍ଷା ମନ୍ତ୍ରୀଙ୍କୁ ଓ ଶିକ୍ଷା ଉପ-ସଚିବଙ୍କୁ ଫୋନରେ ଏହି ବିଷୟର ନିଷ୍ପତ୍ତି ଓ ପରିବର୍ତ୍ତନର ସଂଶୋଧନ କରା

ଯିବାର ବିଳମ୍ବର କାରଣ ପଗ୍ଚରିଲେ। ଏଥିରୁ ସ୍ପଷ୍ଟ ହେଲା ଯେ କାର୍ଯ୍ୟଟି ସରକାରୀ ସ୍ତରରେ ବିଳମ୍ବ ହୋଇଛି। ଏଣୁ ମୋତେ ଦିନେ ଦି ଦିନ ଅପେକ୍ଷା କରିବାକୁ ଅନୁରୋଧ କଲେ। ତେଣୁ ମୁଁ ଉପନିର୍ଦ୍ଦେଶକଙ୍କୁ ଏ ବିଷୟ ଜଣାଇ କଟକ ଚ୍ଚାଲି ଆସିଲି। ତହିଁ ପର ଦିନ କଟକରୁ ଭୁବନେଶ୍ୱର ଯିବାରୁ ଜଣାଗଲା ଯେ ଫାଇଲଟି ଗତି କରି ମନ୍ତ୍ରୀ ସ୍ତରକୁ ଗଲେ ସେଠାରୁ ଆଦେଶ ହୋଇ ଫେରିବ ଓ ବଦଳି ଆଦେଶ ସଂଶୋଧିତ ହେବ। ଏହା ଶୁଣି ଅବଶ୍ୟ ମୋତେ ଟିକିଏ ଆଶ୍ୱସ୍ତି ବୋଧ ହେଲା। ଜଣାଗଲା ଯେ ହୁଏତ ଆଉ ଗୋଟିଏ ଦୁଇ ଦିନ ମଧ୍ୟରେ ବଦଳି ଆଦେଶନାମାର ସଂଶୋଧନ ଅବଶ୍ୟମ୍ଭାବୀ। ତେଣୁ ମୁଁ ଲିଙ୍ଗରାଜ ମନ୍ଦିର, କେଦାର ଗୌରୀ ଓ ଅନ୍ୟାନ୍ୟ ମନ୍ଦିର ଦର୍ଶନ କରି କଟକ ଆସି କଟକଚଣ୍ଡୀଙ୍କୁ ପ୍ରଣତି ଜଣାଇ ଦର୍ଶନାଶାରେ ସେଠାକୁ ଗଲି। ସେଠାରେ ମୋର ହାରି ଗୁହାରି ଜଣାଇ ବସାକୁ ଫେରି ରାତ୍ରିରେ ବିଶ୍ରାମ ନେଲି। ପରଦିନ ସକାଳୁ ଝିଅକୁ ଚଞ୍ଚଳ ଭୋଜନ ପ୍ରସ୍ତୁତ କରିବାକୁ କହି ମୁଁ ପ୍ରାୟ ୧୨ଟା ବେଳେ ଭୋଜନ ପରେ ଭୁବନେଶ୍ୱର ଗଲି। ମୋର ଗଲା ବେଳେ ଉପନିର୍ଦ୍ଦେଶକ ସେକ୍ରେଟେରିଏଟକୁ କୌଣସି ଜରୁରୀ କାମରେ ଯାଇଥିଲେ ଓ ସେଠାରୁ ଫେରି ମୋର ତାଙ୍କର ଦେଖା ହେବାରୁ ସେ ସୂଚନା ଦେଲେ ଯେ ସେ ଦିନ ସନ୍ଧ୍ୟା ପର୍ଯ୍ୟନ୍ତ ପରିବର୍ତ୍ତନ ଆଦେଶନାମା ହୁଏତ ବାହାରି ଯିବାର ଯଥେଷ୍ଟ ସମ୍ଭାବନା ରହିଛି। ତେଣୁ ମୋତେ ବିଳମ୍ବ ହେଲେ ବି ଅପେକ୍ଷା କରିବାକୁ ହେବ। ଏଣୁ ମୁଁ ସେହି ଶୁଭ ମୂହୁର୍ତ୍ତର ଅପେକ୍ଷାରେ ରହିଲି।

ତୃଷାର୍ତ୍ତକୁ ଜଳ ଦିଆଯିବା ସମ୍ଭାବନା ଜଣାଗଲେ ସେ ଜଳପାନରେ ତୃଷା ମେଣ୍ଟାଇବା ପାଇଁ କି ପ୍ରକାର ଧୈର୍ଯ୍ୟର ସହ ଅପେକ୍ଷା କରିପାରେ ତାହା ତାକୁ ଜଣା। ମୋତେ ଅଫିସ୍‌ରେ ବସି ରହିବାକୁ ହେଲା ଦିନ ଗୋଟାଏରୁ ସନ୍ଧ୍ୟା ୮ଟା ପର୍ଯ୍ୟନ୍ତ। ସେତେବେଳ ପର୍ଯ୍ୟନ୍ତ ପ୍ରହରାଜ ବାବୁ ସେକ୍ରେଟେରିଏଟରୁ ଫେରି ନ ଥାଆନ୍ତି। ଏ ଆଡ଼େ ମୋର ଧୈର୍ଯ୍ୟଚ୍ୟୁତି ଘଟି ବସିଲାଣି ଯେ ମୁଁ ସେ ଦିନ ମଧ୍ୟ ରାତିରେ ମୋର ଆଦେଶନାମା ଧରି ଫେରିବାର ସମ୍ଭବ ହୁଏତ ମଧ୍ୟ ହୋଇ ନ ପାରେ। ଏପରି ମନେ ମନେ ଚିନ୍ତା ଓ ଆଶଙ୍କାରେ ବ୍ୟସ୍ତ ଥିବା ବେଳେ ହଠାତ୍ ପ୍ରହରାଜ ବାବୁ କୋଠରୀକୁ ପଶି ଆସି କହିଲେ, 'ଶଶି ବାବୁ! ଆପଣଙ୍କ ବଦଳି ଆଦେଶନାମା ନିଅନ୍ତୁ ଓ ଶୀଘ୍ର ଯାଇ ପଦ୍ମପୁର ଡି.ଆଇ. ଭାବେ ଯୋଗଦାନ କରନ୍ତୁ'। ଏହା କହି ସରକାରୀ ଆଦେଶନାମାର ଏକ କିତା ନକଲ ମୋ ଆଡ଼କୁ ବଢ଼ାଇ ଦେଲେ। ତାହା ବୋଧ ହୁଏ ୫.୨.୮୩ ଦିନ ସନ୍ଧ୍ୟାର ଘଟଣା। ଆଦେଶନାମାଟି ପାଇ ତାଙ୍କୁ ଧନ୍ୟବାଦ ଓ ଭଗବାନଙ୍କୁ ମୋର ଭାବଯୁକ୍ତ ପ୍ରଣାମ

ଜଣାଇ ଶୀଘ୍ର ବସ୍ ଷ୍ଟେଣ୍ଡକୁ ଧାଇଁଲି । ଯାଇ ପହଞ୍ଚିଲା ବେଳକୁ ବରଗଡ଼ ବସ୍ ସବୁ ଗ୍ଲିଯାଇ ଥାଏ । କିନ୍ତୁ ସମ୍ବଲପୁର ବସ୍‌ଗୁଡ଼ିକ ଯିବା ପାଇଁ କିଛି ସମୟ ବାକୀ ଅଛି । ସେମାନଙ୍କୁ ମୋର ଗନ୍ତବ୍ୟ ଯୋଜନା ପ୍ରକାଶ କରି ମୁଁ କଟକରେ ତାଙ୍କ ବସ୍‌ରେ ଯିବା ପାଇଁ ଅନୁରୋଧ କରି ସ୍ଥାନ ସଂରକ୍ଷଣ ପାଇଁ ବରାଦ କରି କଟକ ପାଇଁ ଆଉ ଏକ ବସ୍ ଧରିଲି । କଟକରେ ପହଞ୍ଚି ଝିଅକୁ ମୋର ବାକ୍ସପତ୍ର ବନ୍ଧାବନ୍ଧି କରି ତାର ମାଙ୍କୁ ମଧ ପ୍ରସ୍ତୁତ ହେବା ପାଇଁ କହିଲି । ଇତି ମଧରେ ଝିଅ ଆମ ପାଇଁ ରୋଟି ତରକାରୀ ରନ୍ଧାରନ୍ଧି କରି ଖାଇବାକୁ ଦେଇ ଶୀଘ୍ର ବିଦାୟ ଦେଲା ଓ ମୋର ବଦଳିରେ ଆନନ୍ଦିତ ହେବାର ପ୍ରକାଶ କଲା । ତେଣୁ ଆମେ ଦୁହେଁ ରିକ୍ସା ଧରି ବସ୍ ଷ୍ଟେଣ୍ଡକୁ ଆସିବା ବେଳେ ଭୁବନେଶ୍ୱର ଗାଡ଼ି ଆସି ପହଞ୍ଚି ନ ଥିଲା । ଆମେ ଆଶ୍ୱସ୍ତ ହୋଇ ଜିନିଷପତ୍ର ସହ ଆକାଂକ୍ଷିତ ବସ୍‌ଟିକୁ ଅପେକ୍ଷା କଲୁଁ ।

ଆମେ ବସ୍‌ରେ ଆସି ସମ୍ବଲପୁରରେ ପହଞ୍ଚିଲା ବେଳକୁ ସମୟ ପ୍ରାୟ ସାଢ଼େ ୬ଟା ସକାଳ । ତେଣୁ ସେଠାରୁ ଅନ୍ୟ ଏକ ବସ୍ ଧରି ବରଗଡ଼ ଗଲୁଁ ଓ ସେଠାରେ ପ୍ରାୟ ଦିନ ୧୦ଟା ପୂର୍ବରୁ ପହଞ୍ଚି ଗଲୁଁ । ଆମକୁ ଦେଖି ସମସ୍ତେ ଆନନ୍ଦ ପ୍ରକାଶ କଲେ, ବିଶେଷତଃ ମୋର ପଦ୍ମପୁର ବଦଳି ହେବା ଶୁଣି । ଘରକୁ ଆସି ନିତ୍ୟ କର୍ମାଦି ସମାପନ ପରେ ସେ ଦିନଟି ବିଶ୍ରାମ ନେଇ ପରଦିନ ପଦ୍ମପୁର ଯିବାର ଯୋଜନା କରି ନିଜର ଜିନିଷପତ୍ର ଯୋଗାଡ଼ କରିବାକୁ ନିର୍ଦ୍ଦେଶ ଦେଲି । ଅର୍ଥାତ୍ ପାରଳାଖେମୁଣ୍ଡି ଯାଇ କାର୍ଯ୍ୟ କରିବାର ନୋହିଲା ଓ ରଥ ଫେରିଲା ବିପରୀତ ଦିଗକୁ ନୂତନ ସ୍ଥାନରେ ଅବସ୍ଥାନ ପାଇଁ । ଯାହାର ଯେଉଁଠି ଯେତେ ଦିନ ଯାଏ ଦାନାପାଣି ତାହାକୁ କେହି ଅନ୍ୟଥା କରି ନ ପାରେ - ଏହା ହେଉଛି ବିଧିର ନିୟମ । ମଣିଷ ମିଛଟାରେ ଧନ୍ଦି ହେଉଥାଏ ସିନା । ସେହି ବିଶ୍ୱ ନିୟନ୍ତାଙ୍କ ନିୟନ୍ତ୍ରଣ ଧାରାକୁ କିଛି ଦୃଷ୍ଟିରେ ନ ରଖି । ସବୁ ତାଙ୍କରି ହାତରେ ଛାଡ଼ି ଦେଇ ନିଜକୁ ଶରଣାଗତ ମନୋଭାବାପନ୍ନ କରି ସମର୍ପଣ କଲେ ମଣିଷକୁ କିଛି ଦୁଃଖ କରିବାକୁ ପଡ଼ନ୍ତା ନାହିଁ ।

ପର ଦିନ ୬.୨.୮୩ଟି ବିଶ୍ରାମ ନେଇ ତା ପର ଦିନ ସକାଳୁ ଅର୍ଥାତ୍ ୭.୨.୮୩ରେ ବାହାରିଲି ପଦ୍ମପୁର ଅଭିମୁଖେ । ସକାଳ ସାଢ଼େ ୬ରେ । ସେଠାରେ ଯାଇ ପହଞ୍ଚିଲା ବେଳକୁ ପ୍ରାୟ ୯ଟା ପରେ । ସେଠାକାର ହାଇସ୍କୁଲରେ ସେତେବେଳେ ମୋର ଜଣେ ପ୍ରିୟ ଛାତ୍ର ଶ୍ରୀ କୀର୍ତ୍ତି ଚନ୍ଦ୍ର ଶତପଥୀ ସହକାରୀ ଶିକ୍ଷକ ରୂପେ କାର୍ଯ୍ୟ କରି ହାଇସ୍କୁଲ ମଧରେ ଥିବା ଏକ ସ୍କୁଲ କ୍ୱାଟର୍ସରେ ରହୁଥିଲେ । ମୁଁ ତାଙ୍କୁ ଡକାଇ କଥାବାର୍ତ୍ତା ପରେ ସେଠାକାର ଡି.ଆଇ. ଅଫିସ ବଡ଼ ବାବୁ (ହେଡ଼ କ୍ଲର୍କ)ଙ୍କୁ ଖବର ଦେବା ପାଇଁ ପରାମର୍ଶ ଦେବାରୁ ସେ ଜଣେ ଛାତ୍ରଙ୍କୁ ପଠାଇ ତାଙ୍କୁ

ଡକାଇ ଅଣାଗଲା । ସେତେବେଳେ ଶ୍ରୀ ନବକିଶୋର ସାହୁ ବାବୁ ହେଡ଼୍ କ୍ଲର୍କ ଦାୟିତ୍ୱରେ ଥାଆନ୍ତି । ସେ ଖବର ପାଇବା ସଙ୍ଗେ ସଙ୍ଗେ ଆସିଲେ । ସେତେବେଳେ ପଦ୍ମପୁର ଡି.ଆଇ. ଥାଆନ୍ତି ଶ୍ରୀ ରାଜକିଶୋର ପଟ୍ଟନାଏକ ।

ଇତି ମଧ୍ୟରେ ରାଜବୋଡ଼ାସମ୍ବର ଉଚ୍ଚ ବିଦ୍ୟାଳୟକୁ ରାଜଗାଙ୍ଗପୁରରୁ ବଦଳି ହୋଇ ଆସିଥିବା ମୋର ପୁରାତନ ବନ୍ଧୁ ଶ୍ରୀ ଲୋକନାଥ ସାନବର୍ଷା ମଧ ସ୍କୁଲକୁ ପହଞ୍ଚିଲେ ଓ ମୋର ଆଗମନ ଓ ସେଠାରେ ଡି.ଆଇ. ଭାବେ ଯୋଗ ଦେବା ଶୁଣି ଆନନ୍ଦିତ ହେଲେ । ମୁଁ ପ୍ରାୟ ସାଢ଼େ ୧୦ଟାରେ ବାବୁ କୀର୍ତ୍ତିଚନ୍ଦ୍ରଙ୍କ ବାସଭବନରେ ମୋର ମଧ୍ୟାହ୍ନ ଭୋଜନ କରି ଡି.ଆଇ. ଅଫିସ୍‌କୁ ଗଲି ଓ ମୋର ସରକାରୀ ଆଦେଶନାମା ସଂପୃକ୍ତ ଡି.ଆଇ. ଶ୍ରୀଯୁକ୍ତ ପଟ୍ଟନାଏକଙ୍କୁ ଦେଖାଇବାରୁ ସେ ଆଶ୍ଚର୍ଯ୍ୟ ହୋଇ ହତବାକ୍ ହେଲେ । ପରେ ତାଙ୍କ ସଙ୍ଗେ ଆଲୋଚନା କରି ମୋର ଯୋଗ ଦେବା ସମୟ ଅତିକ୍ରାନ୍ତ ହେଉଥିବା ହେତୁ ମୋର ନୂତନ କାର୍ଯ୍ୟରେ ଶୀଘ୍ର ଯୋଗଦାନ ନିତାନ୍ତ ଆବଶ୍ୟକ ନଚେତ୍ ମୋତେ ନାନା ଅସୁବିଧା ଭୋଗିବାକୁ ହେବ । ଏହା ଶୁଣି ସେ ମହାଶୟ ତାଙ୍କ ନିଜର ଆଦେଶନାମା ନ ପାଇ କିପରି କାର୍ଯ୍ୟଭାର ଅର୍ପଣ କରିବେ, ପୁଣି ବିଭାଗୀୟ ଉପରିସ୍ଥ ଦପ୍ତରରୁ ଅର୍ଥାତ୍ ଡି.ପି.ଆଇ ବା C.I ଅଫିସ୍‌ରୁ ଆଦେଶନାମାକୁ ଅପେକ୍ଷା କରିବା ବାଞ୍ଛନୀୟ ଦର୍ଶାଇ ମୋତେ କାର୍ଯ୍ୟଭାର ଦେବାକୁ ଅମଙ୍ଗ ହେଲେ । ଏ ମଧ୍ୟରେ ମୋର ପଦ୍ମପୁରକୁ ବଦଳି ଓ ମୋର ଆସିବା ଓ ଯୋଗ ଦେବା କଥା ଗ୍ରରି ଆଡ଼େ ପ୍ରଗ୍ୱର ହୋଇ ଯାଇଥିଲା । ସମସ୍ତେ ମୋର ଆଗମନ ଓ ଯୋଗଦାନକୁ ସ୍ୱାଗତ କରୁଥିଲେ । ପ୍ରକାରାନ୍ତରେ ପଟ୍ଟନାଏକଙ୍କ ରହଣି ଓ କାର୍ଯ୍ୟ କଲା ପରେ ଜନସାଧାରଣ, କର୍ମକର୍ତ୍ତା, ଶିକ୍ଷକଗଣ ସନ୍ତୁଷ୍ଟ ନ ଥିବାର ସୂଚନା ମିଳୁଥିଲା । ଫଳରେ ସେ ଯେତେ ଆଳ ଦେଖାଇଲେ ମଧ ନିଜ କାର୍ଯ୍ୟଭାର ସମର୍ପଣ କରି କାର୍ଯ୍ୟମୁକ୍ତ ହୋଇ ପଦ୍ମପୁର ତ୍ୟାଗ କରିବାକୁ ବାଧ ହେଲେ । ଅର୍ଥାତ୍ ମୋତେ ପଦ୍ମପୁର ଶିକ୍ଷା ଜିଲ୍ଲାଧିକାରୀ ରୂପେ କାର୍ଯ୍ୟ ଗ୍ରହଣ କରିବାକୁ ପଡ଼ିଲା ।

ନୂତନ କାର୍ଯ୍ୟଭାର ଗ୍ରହଣର ପ୍ରଥମ ଦିବସରେ ଅର୍ଥାତ୍ ୭.୨.୮୩ ଦିନଟି ନିମ୍ନ ମାଧ୍ୟମିକ ବିଦ୍ୟାଳୟର ଶିକ୍ଷକମାନଙ୍କର ଦରମା ଦେୟ ଚେକ୍ ଦସ୍ତଖତ କରିବାକୁ ହେଲା ଓ ସମସ୍ତଙ୍କ ସଙ୍ଗେ ପ୍ରଥମରେ ସାକ୍ଷାତ ହେବାର ସୁଯୋଗ ମିଳିଲା । ଶିକ୍ଷକମାନଙ୍କ ମଧ୍ୟରେ ଅନେକ ପରିଚିତ ଓ ଛାତ୍ର ଥିବାର ଲକ୍ଷ୍ୟ କଲି ଓ ସମସ୍ତେ ପ୍ରାୟ ସନ୍ତୋଷ ହେବାର ହୃଦବୋଧ ହେଲା ।

ମୋର ଧର୍ମଗଡ଼ର କାର୍ଯ୍ୟମୁକ୍ତ ହେବାର ଓ ପଦ୍ମପୁରରେ ଯୋଗ ଦେବାର

ସମୟ ନିର୍ଦ୍ଧାରିତ ନିୟମାନୁମୋଦିତ ସମୟରୁ କିଛି ଦିନ ଅତିକ୍ରାନ୍ତ ହୋଇ ଥିବାରୁ କାର୍ଯ୍ୟରେ ଯୋଗ ଦେବା ଦିନଟି ୭ ଦିନରୁ ଅଧିକ ହେବା ଦୃଷ୍ଟିରୁ ସରକାରଙ୍କ ଓ ବିଭାଗୀୟ ସର୍ବୋଚ୍ଚ କର୍ମକର୍ତ୍ତାଙ୍କ ଅନୁମୋଦନ ପାଇଁ ପଠାଗଲା । ସେହି କାରଣରୁ ମୋର ସେ ମାସର ଦରମା ଯାତ୍ରା ଦିବସକୁ ଛାଡ଼ି ମିଳିବାର ନିୟମାନୁମୋଦିତ ଥିବାରୁ ତାହା କରାଯାଇ ଥିଲା । ମୋର ପଦ୍ମପୁର ଶିକ୍ଷା ଜିଲ୍ଲାଧିକାରୀ ଭାବେ ଯୋଗ ଦେବାର କାଗଜାତ ସ୍ଥାନୀୟ ସଂପୃକ୍ତ ଦପ୍ତରକୁ ଓ ଉଚ୍ଚତର ଦପ୍ତର ଓ ସରକାରଙ୍କ ଅବଗତି ନିମନ୍ତେ ପଠାଗଲା ।

ମୋର କାର୍ଯ୍ୟରେ ଯୋଗ ଦେବାର ପରଦିନ ପଦ୍ମପୁର ନିକଟସ୍ଥ ଏକ ଉନ୍ନୀତ ନିମ୍ନ ମାଧମିକ ବିଦ୍ୟାଳୟ ପରିଦର୍ଶନ ପାଇଁ ଜନୈକ ସହ ନିରୀକ୍ଷକଙ୍କ ସହ ଯାଇଥିଲି ଓ ପରିଦର୍ଶନ କରି ଫେରିଲି । ସେହି ସ୍କୁଲ ପରିଦର୍ଶନ ପରେ ମୋର ହୃଦୟଙ୍ଗମ ହେଲା ଯେ ଏହି ଶିକ୍ଷା ଜିଲ୍ଲାର ଶିକ୍ଷାର ମାନ ସେତେ ଉଚ୍ଚତର ନ ଥିଲେ ମଧ ଧର୍ମଗଡ଼ ଶିକ୍ଷା ଜିଲ୍ଲାଠାରୁ ଉନ୍ନତ ଥିଲା । ତେଣୁ ଏହି ଶିକ୍ଷା ଜିଲ୍ଲା ପାଇଁ କିଛି ପଦକ୍ଷେପ ନିଆ ଯିବାର କଥା ସେ କଥା ମନରେ ଘାଣ୍ଟି ହେଲା । ୯.୨.୮୩ ଇ. ଦିନ ସମ୍ବଲପୁର ମଣ୍ଡଳାଧୀଶଙ୍କ ଅଫିସ୍‌କୁ ଯାଇ ମଣ୍ଡଳାଧୀଶଙ୍କୁ ଦେଖା କରିବା ପାଇଁ ଗଲି । ସେତେବେଳେ ପଦ୍ମପୁର ପୂର୍ବତନ ଡି.ଆଇ. ଶ୍ରୀ ପଟ୍ଟନାୟକ ମଧ ଅଫିସ୍‌ରେ ପହଞ୍ଚି ମୋର କାର୍ଯ୍ୟରେ ଯୋଗ ଦେବାର ସମୀଚିନତା ଉପରେ ମନ୍ତବ୍ୟ ଦେଲା ବେଳେ ମଣ୍ଡଳାଧୀଶ ଓ ଅନ୍ୟ କର୍ମକର୍ତ୍ତାଗଣ ତାଙ୍କ ମତକୁ ଗ୍ରହଣ ନ କରିବାରୁ ସେ ନିଜର ଯୁକ୍ତିରେ ଆଉ ଅଗ୍ରସର ହେଲେ ନାହିଁ । ଫଳରେ ମୋର କାର୍ଯ୍ୟରେ ଯୋଗ ଦେବା କାଗଜାତ ମଣ୍ଡଳାଧୀଶଙ୍କୁ ଜମା ଦେଇ ଅନ୍ୟାନ୍ୟ ଦପ୍ତର ସଂକ୍ରାନ୍ତୀୟ ବିଷୟ ଆଲୋଚନା କରି ସନ୍ଧ୍ୟାରେ ପଦ୍ମପୁର ଫେରିବା ବାଟରେ ବରଗଡ଼ରେ ରାତ୍ରି ଯାପନ କଲି ।

ପରଦିନ ସକାଳୁ ବସ୍ ଯୋଗେ ପଦ୍ମପୁର ଯାଇ ଠିକ୍ ଅଫିସ୍ ସମୟ ଆଗରୁ ପହଞ୍ଚି ଅଫିସ୍ କାମରେ ବ୍ୟସ୍ତ ରହିଲି । ସେ ଦିନ ଅଫିସ୍ କାର୍ଯ୍ୟ ଶେଷ ହେବା ପୂର୍ବରୁ ମୁଁ ଅଫିସ୍‌ର ସମସ୍ତ କର୍ମଚାରୀମାନଙ୍କୁ ଡକାଇ ଏକ ଅଣଆନୁଷ୍ଠାନିକ ମିଟିଙ୍ଗ କରି ସମସ୍ତଙ୍କ ସୁବିଧା ଅସୁବିଧା ଓ ସମଗ୍ର ଜିଲ୍ଲାର ସମସ୍ୟା ସମ୍ପର୍କରେ ସମସ୍ତଙ୍କ ମତାମତ ଲୋଡ଼ିଲି । ସମସ୍ତେ ନିଜ ନିଜ ମତ ବ୍ୟକ୍ତ କରି ବିଭାଗୀୟ ବିଭିନ୍ନ ଦିଗ ସମ୍ପର୍କରେ ନିଜର ଚିନ୍ତାଧାରା ପ୍ରକାଶ କଲେ । ମୋଟାମୋଟି ଭାବେ ଜିଲ୍ଲାର ଶିକ୍ଷକମାନଙ୍କ ନିୟମିତ ଦରମା ପ୍ରଦାନ, ନିଜର ସ୍ୱତନ୍ତ୍ର ଅଫିସ୍‌ଘର ଓ ଅନ୍ୟାନ୍ୟ ବିଷୟରେ ଅସୁବିଧା ଜଣାଗଲା । ତେଣୁ ସେହି ଦିନଠାରୁ ମୁଁ ଆମ ଅଫିସ୍ ପାଇଁ ଜାଗା ଓ ତା

ପାଇଁ ପାଣ୍ଠି ଓ ଡି.ପି.ଆଇ. ଅଫିସ୍‌ରୁ କିପରି ଭାବରେ ନିୟମିତ ଅନୁଦାନ ଆସିବ ତାହି ବ୍ୟବସ୍ଥାରେ ଧ୍ୟାନ ଦେବା ବିଶେଷ ଜରୁରୀ ମନେ କଲି । ସେତେବେଳେ ଆମ ଅଫିସ୍‌ରେ ଉପ ଶିକ୍ଷା ଜିଲ୍ଲାଧିକାରୀ ରୂପେ ଶ୍ରୀଯୁକ୍ତ ରଘୁନାଥ ମିଶ୍ର ଅଭିଷିକ୍ତ ଥିଲେ । ଉକ୍ତ ମହାଶୟ ଏକ ଧର୍ମଭୀରୁ, କର୍ମଠ ଓ ସଚ୍ଚୋଟ କର୍ମଚାରୀ ଥିଲେ । କିନ୍ତୁ କୌଣସି କାର୍ଯ୍ୟ ସ୍ୱତଃପ୍ରବୃତ୍ତ ହୋଇ କରିବାର ଯୋଜନା ଦେବାକୁ ବୋଧ ହୁଏ କୁଣ୍ଠାବୋଧ କରୁଥିଲେ ।

କିଛି ଦିନ ମଧ୍ୟରେ ସ୍ଥାନୀୟ ହାଇସ୍କୁଲ ହେ.ମା.ଙ୍କ ଜରିଆରେ ତତ୍କାଳୀନ ଉପଖଣ୍ଡ ଅଧିକାରୀ S.D.O. ଶ୍ରୀଯୁକ୍ତ ଦିଲ୍ଲୀପ କୁମାର ମହାନ୍ତି O.A.S. ଓ କଲେଜର ସର୍ବଜନାଦୃତ ଅଧ୍ୟାପକ ଶ୍ରୀ ନାରାୟଣ ପୃଷ୍ଟିଙ୍କ ସହ ଘନିଷ୍ଠତା ବଢ଼ିଲା । ତେଣୁ କାଳକ୍ରମେ କୌଣସି ଏକ ସାଂସ୍କୃତିକ, ସରକାରୀ ବା ସାମାଜିକ ତଥା ଯେ କୌଣସି କାର୍ଯ୍ୟରେ ଯୋଗ ଦେବାକୁ ହେଲେ ଆମେ ଚାରି ଜଣଯାକ ଯୋଗ ଦେଇ ସମସ୍ତଙ୍କ ଆସ୍ଥାଭାଜନ ହେଲୁଁ ।

ସେତେବେଳେ ଆମ ଜିଲ୍ଲାରେ ଛଅଟି ବ୍ଲକରେ ପଦ୍ମପୁର, ପାଇକମାଲ, ଝାରବନ୍ଧ, ଗାଇସିଲେଟ, ସୋହେଲା ଓ ବିଜେପୁର ମିଶି ୧୨ ଜଣ ସହକାରୀ ନିରୀକ୍ଷକ (S.I.) ଥିଲେ । ସେମାନଙ୍କ ମଧ୍ୟରେ ଅଧିକାଂଶ ମୋର ଛାତ୍ର ବନ୍ଧୁ । ତେଣୁ ସେମାନେ ମୋର ଉପଦେଶ ବା ନିର୍ଦ୍ଦେଶଗୁଡ଼ିକ ଆନ୍ତରିକତାର ସହ ଗ୍ରହଣ କରୁଥିଲେ । ସେମାନଙ୍କ ମଧ୍ୟରେ ଗାଇସିଲେଟର ଶ୍ରୀ ଗଣେଶ ପ୍ରସାଦ ଦାଶ, ପଦ୍ମପୁରର ଶ୍ରୀ ତୀର୍ଥବାସୀ ପଣ୍ଡା ଓ ବିଜେପୁରର ଶ୍ରୀ ରତ୍ନାକର ମହାପାତ୍ର ବିଶେଷ ଉଲ୍ଲେଖଯୋଗ୍ୟ । ପ୍ରଥମ କରି ଶ୍ରୀ ରତ୍ନାକର ମହାପାତ୍ର ବିଜେପୁର ଅନ୍ତର୍ଗତ ବରପଦର ଗ୍ରାମରେ ଏକ ଶିକ୍ଷକ କେନ୍ଦ୍ର ସଭାର ଆୟୋଜନ କରିଥିଲେ । ତହିଁରେ ମୋତେ ଆମନ୍ତ୍ରଣ କରାଯାଇ ଥିଲା । ମୁଁ ସେଥିରେ ଯୋଗ ଦେଇ ମୋର ଭାଷଣ ପ୍ରସଙ୍ଗରେ ମୁଁ ଶିକ୍ଷକମାନଙ୍କ ସମସ୍ୟା, ସେମାନଙ୍କ ବାର୍ଷିକ ଦରମା ବୃଦ୍ଧି, ଛୁଟି ମଞ୍ଜୁରୀ ବା ଅନ୍ୟ କିଛି ସମସ୍ୟାର ସର୍ବେକ୍ଷଣ କରି ସେ ସବୁର ଆଶୁ ସମାଧାନ ପାଇଁ ମୁଁ ଯଥାସାଧ୍ୟ ଚେଷ୍ଟା କରିବାକୁ ପ୍ରତିଶୃତି ଦେଇ ମୋର ନିଜର ମତାମତ ବ୍ୟକ୍ତ କରି ଜଣାଇ ଦେଲି ଯେ ଶିକ୍ଷକମାନଙ୍କ ନିୟମିତ ଉପସ୍ଥାନ, ସ୍କୁଲଘରର ରକ୍ଷଣାବେକ୍ଷଣ, ସ୍କୁଲର ନାମଫଳକ, ବାଡ଼ା ବନ୍ଧ ଓ ସ୍କୁଲ ହତା ମଧ୍ୟରେ ବ୍ୟବହାର ଉପଯୋଗୀ ବୃକ୍ଷ ଅର୍ଥାତ୍ ଶାଳ, ପିଆଶାଳ, ଶିଶୁ, ସାଗୁଆନ, ଗମ୍ଭାରୀ ବା କିଛି ନ ହେଲେ ନିମ୍ବ ଗଛ ରୋପଣ ପ୍ରତ୍ୟେକ କର୍ମଚାରୀଙ୍କ ପକ୍ଷେ ଏକାନ୍ତ ଆବଶ୍ୟକୀୟ ତଥା ଅନିବାର୍ଯ୍ୟ ବୋଲି ଦୃଢ଼ ଭାବେ ଘୋଷଣା କରି ଜଣାଇ ଦେଲି ଯେ ଉପଯୁକ୍ତ

ଶିକ୍ଷକଙ୍କୁ ପୁରସ୍କାର ଦିଆଯିବ ଓ ଖିଲାପକାରୀଙ୍କୁ ଦଣ୍ଡ ଦେବାରେ ମଧ୍ୟ ଆଇନ ନିଜ ରାସ୍ତା ଧରିବ ବୋଲି ଜଣାଇଲି । ସମସ୍ତେ ଏହାକୁ ଅତି ଆନନ୍ଦର ସହ କରତାଳି ମାଧ୍ୟମରେ ସ୍ୱୀକାର କଲେ ।

ଏହା ପରେ ଦ୍ୱିତୀୟ ଶିକ୍ଷକମାନଙ୍କ କେନ୍ଦ୍ର ସମ୍ମିଳନୀ ଗାଇସିଲେଟର ବୁରୋମୁଣ୍ଡା ଉ.ପ୍ରା. ବିଦ୍ୟାଳୟରେ ଆୟୋଜିତ ହୋଇଥିଲା ଓ ପରେ ପରେ ପ୍ରାୟ ପ୍ରତ୍ୟେକ ବ୍ଲକରେ ବିଭିନ୍ନ କେନ୍ଦ୍ରମାନଙ୍କର ଶିକ୍ଷକମାନଙ୍କ ସଭା ସମିତିମାନ ଆୟୋଜିତ ହୋଇ ଶିକ୍ଷା ସମ୍ପର୍କୀୟ ସମସ୍ୟା ଓ ତାର ସମାଧାନ ସମ୍ପର୍କରେ ଆଲୋଚିତ ହୋଇଥିଲା । ସେଥି ମଧ୍ୟରେ ସୋହେଲାରେ ଶିକ୍ଷକମାନଙ୍କ ସଭା ଓ ଘେଁସରେ ହୋଇଥିବା ସଭା ଉଲ୍ଲେଖନୀୟ । କାରଣ ସୋହେଲାରେ ଶିକ୍ଷକମାନଙ୍କ ବ୍ୟତୀତ ଅନେକ ଶିକ୍ଷାପ୍ରେମୀ ଜନସାଧାରଣ ଉପସ୍ଥିତ ରହି ଆଲୋଚନାର ଅଂଶ ଗ୍ରହଣ କରିଥିଲେ । ଘେଁସରେ ଆୟୋଜିତ ସଭାରେ ମେଲଛାମୁଣ୍ଡା ବିଧାୟକ, ପଦ୍ମପୁର ଉପଖଣ୍ଡ ଅଧିକାରୀ, ପଦ୍ମପୁର ହାଇସ୍କୁଲ ପ୍ରଧାନ ଶିକ୍ଷକ ତଥା ଅଞ୍ଚଳ କଲେଜର ଅଧ୍ୟାପକ ଶ୍ରୀ ନାରାୟଣ ପୃଷ୍ଟେଠ ଯୋଗ ଦେଇ ଆଲୋଚନାକୁ ଜୀବନ୍ତ ଓ ଉପଭୋଗୀ କରାଇ ଥିଲେ ।

ମୋର ପଦ୍ମପୁର ରହଣିର କିଛି କାଳ ପରେ ବିଧାୟକ ଶ୍ରୀ ସତ୍ୟଭୂଷଣ ସାହୁ ଓ ଶ୍ରୀ ପ୍ରକାଶ ଚନ୍ଦ୍ର ଦେବତାଙ୍କ ଅନୁମୋଦନକ୍ରମେ ଜିଲ୍ଲାସ୍ତରୀୟ ବାର୍ଷିକ କ୍ରୀଡ଼ା ପ୍ରତିଯୋଗିତା ତଥା ସାଂସ୍କୃତିକ କାର୍ଯ୍ୟକ୍ରମର ଅର୍ଥାତ୍ ସଙ୍ଗୀତ, ବକ୍ତୃତା ଆଦି ଆୟୋଜନ ୨ ଥର ପଦ୍ମପୁରରେ ଓ ଥରେ ବିଜେପୁରରେ ହୋଇଥିଲା । ଏତଦ୍‌ଭିନ୍ନ ମୋର ଅନୁରୋଧରେ ବିଭିନ୍ନ ବଦାନ୍ୟ ବ୍ୟକ୍ତିମାନେ ଜିଲ୍ଲାରେ ୩ୟ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ବୃତ୍ତି ପାଇଥିବା, ୫ମ ଶ୍ରେଣୀରେ ବୃତ୍ତି ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରିଥିବା ଓ ୭ମ ଶ୍ରେଣୀ ସାଧାରଣ ପରୀକ୍ଷାରେ ବା N.R.T.S. ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରିଥିବା ଛାତ୍ରଛାତ୍ରୀମାନଙ୍କୁ ଏକ ଏକ 'Shield' ଦେବା ପାଇଁ ଆଗ୍ରହୀ ହୋଇଥିଲେ ଓ ତାହା ମୋର ପଦ୍ମପୁର ଛାଡ଼ିବା ପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇ ଆସୁଥିଲା । ୭ମ ଶ୍ରେଣୀ ପାଇଁ ଶ୍ରୀ ନବୀନ ଚନ୍ଦ୍ର ପାଢ଼ୀ ତାଙ୍କ ସ୍ୱର୍ଗୀୟ ପିତାଙ୍କ ନାମରେ ଏକ ସିଲ୍ଡ ପ୍ରଦାନ କରିଥିଲେ । ୫ମ ଶ୍ରେଣୀ ଓ ୩ୟ ଶ୍ରେଣୀ ପାଇଁ ମଧ୍ୟ କପ୍ ଯୋଗାଡ଼ କରାଯାଇ ଥିଲା । ଏହିପରି ଆୟୋଜନ ସଭାକୁ ଆମ ସମ୍ବଲପୁରର ପୂର୍ବତନ ମଣ୍ଡଳାଧୀଶ ଶ୍ରୀ ମନମୋହନ ପଟ୍ଟନାୟକ ଓ ତତ୍କାଳୀନ ମଣ୍ଡଳାଧୀଶ ଶ୍ରୀ କାର୍ତ୍ତିକ ଚନ୍ଦ୍ର ଦେ ଓ ଶ୍ରୀ ରାମଚନ୍ଦ୍ର ପଣ୍ଡା ମୁଖ୍ୟ ଅତିଥି ଭାବେ ଯୋଗ ଦେଇଥିଲେ । ମୋର ପଦ୍ମପୁର ରହଣିର ୨ୟ

ବର୍ଷରେ ଆମ ଜିଲ୍ଲାର ବରିହାପାଲିର ସ୍କୁଲର ଛାତ୍ର କରୁଣାକର ତାଙ୍କ ସାହସିକତା ପାଇଁ ଜାତୀୟ ସ୍ତରରେ ପୁରସ୍କୃତ ହୋଇଥିଲେ ଓ ସେହି ଛାତ୍ର ଓ ତାଙ୍କ ପ୍ରଧାନ ଶିକ୍ଷକ ଚୂଡ଼ାମଣି ସାହୁ ଦିଲ୍ଲୀରୁ ପୁରସ୍କୃତ ହୋଇ ଫେରିବା ପରେ ଜିଲ୍ଲାର ବିଭିନ୍ନ ସ୍ଥାନରେ ତାଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇ ଥିଲା।

ମୋର ପଦ୍ମପୁର କାର୍ଯ୍ୟକାଳ ମଧରେ ପ୍ରାଥମିକ ବିଦ୍ୟାଳୟ ସ୍ତରରେ ଶ୍ରୀ କୃଷ୍ଣଚନ୍ଦ୍ର ସାହୁ ଝାରବନ୍ଧ ଉ.ପ୍ରା. ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଓ ପରବର୍ତ୍ତୀ ବର୍ଷ ନିମ୍ନ ମାଧମିକ ସ୍ତରରେ ଶ୍ରୀ ଗଗନ କୁମାର ମହାନ୍ତି ମୁରୁମକେଲ ନିମ୍ନ ମାଧମିକ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ରାଜ୍ୟ ସ୍ତରରେ କୃତୀ ଶିକ୍ଷକ ଭାବେ ପୁରସ୍କୃତ ହୋଇ ଜିଲ୍ଲାର ମାନବର୍ଦ୍ଧନ କରିଥିଲେ।

ଧର୍ମଗଡ଼ ଶିକ୍ଷା ଜିଲ୍ଲା ଭଳି ଏହି ଶିକ୍ଷା ଜିଲ୍ଲାରେ ମଧ ଶିକ୍ଷା ସମ୍ପର୍କୀୟ ବିଂଶ ସୂତ୍ରୀ କାର୍ଯ୍ୟକ୍ରମ ଚଳନ କରାଯାଇ ସ୍କୁଲର ବାଡ଼ାବନ୍ଦି, ନାମ ଫଳକ ଓ ବୃକ୍ଷ ରୋପଣ କାର୍ଯ୍ୟକୁ ଅଗ୍ରାଧିକାର ଦିଆଯାଇ ଥିଲା। ଅନେକ ବିଦ୍ୟାଳୟ ବୃକ୍ଷଦ୍ୱରା ସୁରକ୍ଷାର ସୁବ୍ୟବସ୍ଥା କରି ଜିଲ୍ଲା ସ୍ତରରେ ପ୍ରକୃତି ସୁରକ୍ଷା ପୁରସ୍କାର ପାଇଥିଲେ।

ଏଠାରେ ଥିବା ବେଳେ ସବୁଠାରୁ ଉଲ୍ଲେଖନୀୟ ଘଟଣା ହେଉଛି ପାଇକମାଲରେ ୨.୬.୮୪ ଦିନ ଅନୁଷ୍ଠିତ ଏକ ଶିକ୍ଷା ସମ୍ମିଳନୀ। ଏଥିରେ ଯୋଗ ଦେଇଥିଲେ ସାଂସଦ, ବିଧାୟକ, ମଣ୍ଡଳାଧୀଶ, ଶିକ୍ଷା ଜିଲ୍ଲାଧିକାରୀଗଣ (୬ ଜଣ), ଆମ ଜିଲ୍ଲାର ସବୁ ସହ-ନିରୀକ୍ଷକଗଣ, ସମସ୍ତ ବି.ଡି.ଓ, ସବୁ ଅଞ୍ଚଳର ଶିକ୍ଷକ ପ୍ରତିନିଧି, ଏ ସବୁ ମିଶି ପ୍ରାୟ ୨୦୦ ଜଣ। ଏଥିରେ ସମସ୍ତଙ୍କ ସହଯୋଗରେ ଓ ଶିକ୍ଷା ଜିଲ୍ଲାଧିକାରୀଙ୍କ ତତ୍ତ୍ୱାବଧାନରେ ଏ ଆୟୋଜନ କରା ଯାଇଥିଲା। ଏଥିରେ ଶିକ୍ଷା ସମ୍ବନ୍ଧରେ ନାନା ପ୍ରକାର ଆଲୋଚନା ଓ ସମାଧାନ ବିଷୟରେ ପୁଙ୍ଖାନୁପୁଙ୍ଖ ଭାବେ ଆଲୋଚିତ ହୋଇଥିଲା। ବିଶେଷ କରି ସ୍କୁଲମାନଙ୍କର ଅତ୍ୟଧିକ ସଂଖ୍ୟା ଦୃଷ୍ଟିରୁ ଉପଯୁକ୍ତ ପରିଦର୍ଶନ ପାଇଁ ବ୍ୟାଘାତ ସୃଷ୍ଟି ହେବା ଫଳରେ ଶିକ୍ଷକମାନଙ୍କ ସ୍କୁଲରେ ନିୟମିତ ଉପସ୍ଥାନ ଓ ପାଠଦାନରେ ତ୍ରୁଟି ଦେଖା ଦେବା ହେତୁ କାହାକୁ ଦାୟୀ କରିବାର ଅବସର ନ ଥିଲା, ଯେହେତୁ ସହ-ନିରୀକ୍ଷକଗଣ ବ୍ଲକର ଯାବତୀୟ କାର୍ଯ୍ୟରେ ବ୍ୟସ୍ତ ରହିବା ହେତୁ ଓ ବିଶେଷତଃ ଗୋଟିଏ ଗୋଟିଏ ପଞ୍ଚାୟତ ଦାୟିତ୍ୱରେ ରହୁଥିବାରୁ ସେମାନଙ୍କ ମୁଖ୍ୟ ଶିକ୍ଷା ବିଭାଗୀୟ ପରିଦର୍ଶନକୁ ବାଦ ଦେବାକୁ ପଡୁଥିଲା। ପୁଣି ସେମାନେ ସରକାରଙ୍କ ପରିବର୍ତ୍ତିତ ନୀତି ଅନୁସାରେ ତାଙ୍କ ଦରମା ବ୍ଲକ ଜରିଆରେ ପାଇବା ହେତୁ ତାଙ୍କ ଆନୁଗତ୍ୟ ନିଜର ମୂଳ ବିଭାଗକୁ

ଉପେକ୍ଷା କରି ବ୍ଲକ ଅଧିକାରୀଙ୍କ କାର୍ଯ୍ୟରେ ଗୁରୁତ୍ୱ ପ୍ରଦାନ କରୁଥିଲେ। କାରଣ କଥାରେ ଅଛି 'ଯାର ଖାଇବ ତାର ଗାଇବ' ବା 'ଯାର ଲାଠି ତାର ମହିଁଷ'। ତେଣୁ ଏଥିରେ ଆଉ କିଛି କହିବାର ନାହିଁ। ଏସବୁକୁ ଦୃଷ୍ଟିରେ ରଖି ପ୍ରାଥମିକ ଶିକ୍ଷା ଓ ବିଦ୍ୟାଳୟର ଆଭ୍ୟନ୍ତରୀଣ ଶୃଙ୍ଖଳା ପାଇଁ ଗ୍ରାମ୍ୟ କମିଟି ଓ ମହିଳାମାନଙ୍କୁ ଦୃଷ୍ଟି ଦେବାକୁ ଅନୁରୋଧ କରାଯାଇ ଥିଲା। ଏହାକୁ ସମସ୍ତେ ପୂର୍ଣ୍ଣ ପ୍ରାଣରେ ସମୀଚିନ ବୋଲି ସମର୍ଥନ କଲେ। ପରବର୍ତ୍ତୀ ସମୟରେ ଏହାର ସୁଫଳ ମିଳିବାର ଜଣାଗଲା। ଆଉ ଏକ ଗୁରୁତ୍ୱ ବିଷୟରେ ସୂଚନା ଦିଆଗଲା ଯେ ଶିକ୍ଷକମାନେ ବିନା ଦରଖାସ୍ତରେ ଯଦି ୩ ଦିନ ପର୍ଯ୍ୟନ୍ତ ଅନୁପସ୍ଥିତ ରହନ୍ତି ଓ ପରେ ଆସି ବିଦ୍ୟାଳୟରେ ପହଞ୍ଚି କାର୍ଯ୍ୟ କରିବାକୁ ଆଗ୍ରହୀ ହୁଅନ୍ତି, ସେପରି ସ୍ଥଳେ ସେମାନଙ୍କୁ ବିଦ୍ୟାଳୟରେ ଯୋଗ ନ ଦେବାକୁ ଗ୍ରାମ୍ୟ କମିଟି ଓ ସ୍କୁଲ ସମ୍ପାଦକଙ୍କୁ ଅନୁରୋଧ କରାଯାଇ ଥିଲା। ଫଳରେ ଶିକ୍ଷକମାନେ ନିଜର କର୍ତ୍ତବ୍ୟ ପ୍ରତି ସଜାଗ ରହି ନିୟମିତ ସ୍କୁଲକୁ ଆସିଲେ ଓ ସ୍କୁଲରେ ଛାତ୍ର ଉପସ୍ଥାନ ବଢ଼ିଲା। ପ୍ରକାରାନ୍ତରେ ବିଦ୍ୟାଳୟର ସାମଗ୍ରିକ ଉନ୍ନତି ଘଟିବାର ଲକ୍ଷ୍ୟ କରାଗଲା। ଏଠାରେ ଏକ ଘଟଣା ସମସ୍ତଙ୍କ ଅବଗତି ନିମନ୍ତେ ସୂଚନା ଦିଆଯାଇ ପାରେ ଯେ ଜଣେ ଶିକ୍ଷକ ନିଜ ବାସସ୍ଥାନଠାରୁ ପ୍ରାୟ ୪୦ କି.ମି. ଦୂରସ୍ଥ ଏକ ବିଦ୍ୟାଳୟରେ କାର୍ଯ୍ୟରତ ଥାଇ ପ୍ରତି ଦିନ ନିଜ ଗାଁରୁ ଯିବା ଆସିବା କରୁଥିଲେ। ତେଣୁ ସେ କିପରି ଭାବେ ଏତେ ଦୂରରୁ ଯାଇ ଠିକ୍ ସମୟରେ ବିଦ୍ୟାଳୟରେ ପହଞ୍ଚି ପାଠଦାନ କରି ପାରିବେ ତାହା ସହଜରେ ଅନୁମେୟ। କାରଣ ପ୍ରତିଦିନ ୪୦+୪୦= ୮୦ କି.ମି. ବାଟ ଯିବା ଆସିବାକୁ କେତେ ସମୟ ଲାଗିବ ଓ ପୁଣି ଜଣେ ପରିଶ୍ରମ ପରେ କିପରି ନିଜ କର୍ତ୍ତବ୍ୟରେ ଧ୍ୟାନ ଦେଇ ପାରିବ ଏହା ପ୍ରକୃତରେ ବିଚାର୍ଯ୍ୟ। ପୁଣି ବହୁ ଶିକ୍ଷକ ପ୍ରାୟ ଦିନ ୧୧ଟା ପୂର୍ବରୁ ବିଦ୍ୟାଳୟରେ ପହଞ୍ଚି ପୁଣି ୪ଟା ପୂର୍ବରୁ ବିଦ୍ୟାଳୟ ତ୍ୟାଗ ଏକ ନିତ୍ୟ ନୈମିତ୍ତିକ ଘଟଣା। ତେଣୁ ମଣ୍ଡଳାଧୀଶ ଶ୍ରୀଯୁକ୍ତ ରାମଚନ୍ଦ୍ର ପଣ୍ଡାଙ୍କ ମତାନୁସାରେ ଶିକ୍ଷକମାନେ ସ୍କୁଲ ସମୟରେ ଘରୁ ବାହାରି ବିଦ୍ୟାଳୟକୁ ଯାଇ ସେଠାରେ କାମ ସାରି ସ୍କୁଲ ସମୟ ମଧ୍ୟରେ ଅର୍ଥାତ୍ ୧୦ଟାରୁ ୪ଟା ମଧ୍ୟରେ ନିଜ ଘରୁ ଯାଇ ପୁଣି ନିଜ ଘରକୁ ଫେରିବା କିଛି ଅସମୀଚିନ ନୁହେଁ ଅବଶ୍ୟ ଏହା କେତେ ଯେ କ୍ଷୋଭର ଓ ଦୁଃଖର ସହ ପ୍ରକାଶ କରୁଥିଲେ ତାହା ଅନୁଭବୀ ହିଁ ଜାଣିପାରେ।

ଆମ ଅଫିସ୍‌ଟି ଏକ ଭଡ଼ାଘରେ ଚାଲୁଥିଲା। ପରେ ସୁବିଧା ଦେଖି ସ୍ଥାନୀୟ S.D.O.ଙ୍କ ସୁପାରିଶକ୍ରମେ ସ୍ଥାନୀୟ ବିଶିଷ୍ଟ ବ୍ୟବସାୟୀ ୰ ଲକ୍ଷ୍ମୀନାରାୟଣ ଅଗ୍ରୱାଲଙ୍କ ପୁତ୍ର ରୋଶନଲାଲଙ୍କ ଏକ ବାସଭବନକୁ ସରକାରୀ ନିୟମରେ ଭଡ଼ା

ନିଆଗଲା । ସେଠାରେ ଏକାଧିକ ବର୍ଷ ଅଫିସ୍ ଚାଲିବା ପରେ ହାଇସ୍କୁଲ ଅଧୀନରେ ଥିବା ଏକ ଖାଲି ଆଦିବାସୀ ଛାତ୍ରାବାସକୁ ହାଇସ୍କୁଲ ହେ.ମା.ଙ୍କ ସମ୍ମତିକ୍ରମେ ୧୯୮୫ ସାଲରୁ ଅଫିସ୍ ପାଇଁ ମିଳିଥିଲା । ନଡ଼ିଆ ବାଡ଼େଇ ଅଫିସ୍ ପ୍ରବେଶର ଶୁଭାରମ୍ଭ କରିଥିଲେ ତତ୍କାଳୀନ ମଣ୍ଡଳାଧୀଶ ଶ୍ରୀ ରାମଚନ୍ଦ୍ର ପଣ୍ଡା । ତାହା ଏ ପର୍ଯ୍ୟନ୍ତ ସେଠାରେ ଚାଲି ଆସୁଅଛି । ସେଠାକୁ ଗଲା ପରେ ସେହି ଗୃହର ମରାମତି ପାଇଁ ଆମ ବିଭାଗୀୟ କିଛି ପାଣ୍ଠି ବିଭିନ୍ନ ସରକାରୀ ନିମ୍ନ ମାଧମିକ ବିଦ୍ୟାଳୟରେ ବଳକା ଥିଲା ଓ ତାକୁ ଏହି ଅଫିସ୍‌ଘର ମରାମତି ପାଇଁ ଓ ଅଫିସ୍‌କୁ ଲାଗି ଏକ ବରପାଲି ପାଇଖାନା କରାଯାଇ ବ୍ୟବହାରୋପଯୋଗୀ କରାଗଲା ଓ ଅଫିସ୍‌କୁ ବିଜୁଳି ଯୋଗାଯୋଗ କରାଯାଇ ଥିଲା । ପରେ A.G. Office ଅଡ଼ିଟ୍ ଦଳ ଆସି ଆପତ୍ତିଜନକ କାରଣ ଦର୍ଶାଇବାର ଆଳ କରିବାରୁ ମୁଁ ତାଙ୍କର ସନ୍ତୋଷ ପାଇଁ କଥାଟାକୁ କିପରି ସମସ୍ତଙ୍କ ଉପକାରୀ ହେବ ବୋଲି ବୁଝାଇବାରୁ ସେମାନେ ସେହି ଆପତ୍ତିରୁ ଓହରି ଗଲେ । ଏହା ପ୍ରକୃତରେ ଅଫିସ୍ ପାଇଁ ଏକ ଉପାଦେୟ, ଉଦାହରଣ ମୂଳକ ଓ ସତ୍ ସାହସିକ ପଦକ୍ଷେପ ବୋଲି ଗ୍ରହଣ କରାଗଲା । ଏହି ଅଫିସ୍‌ଘର ମରାମତି ଓ ବାଡ଼ା ଆଦି ପାଇଁ ଏକ ପ୍ଲାନ ଓ ଏଷ୍ଟିମେଟ୍ (Plan and Estimate) ପ୍ରାୟ ଟ. ୩୫୦୦୦ର D.P.I. ଅଫିସ୍‌କୁ ପଠା ଯାଇଥିଲା । ତାର Follow up Action ବା ପଛରେ ଚେଷ୍ଟା କେତେ ଦୂର କରାଗଲା ତାହା ଜଣା ନାହିଁ ।

ଏପରି ଭାବେ ରହଣିକାଳ ମଧ୍ୟରେ ବିଭିନ୍ନ ବ୍ଲକ ସ୍ତରରେ ଶିକ୍ଷା ସମ୍ବନ୍ଧୀୟ, ପ୍ରଦୂଷଣ ସମ୍ପର୍କୀୟ ବା ଶିକ୍ଷକମାନଙ୍କ ଦରମା ସଂଶ୍ଳିଷ୍ଟ ବୀମାକରଣ ପାଇଁ ଏକାଧିକ ସଭା, ସମିତି ଆୟୋଜନ ଓ ବିଭିନ୍ନ ବ୍ଲକ ଉନ୍ନୟନ ଅଧିକାରୀଙ୍କ ସାହାଯ୍ୟରେ ଅତ୍ୟନ୍ତ ଆଭ୍ୟନ୍ତରୀଣ ଓ ଦୁର୍ଗମ ପଥଯୁକ୍ତ ବିଦ୍ୟାଳୟ ପରିଦର୍ଶନ କରି ଶିକ୍ଷକ ଓ ଜନସାଧାରଣଙ୍କର ଆନ୍ତରିକ ମନୋଭାବ ଆମ ବିଭାଗ ପ୍ରତି ଆକର୍ଷଣ କରାଯାଇ ପାରିଥିଲା । ଏପରିକି ମୋର ପଦ୍ମପୁର ଆସିବା ପୂର୍ବରୁ ବା ଧର୍ମଗଡ଼ ଯିବା ପୂର୍ବରୁ ଯେଉଁ ଶିକ୍ଷା ବିଭାଗକୁ ଲୋକମାନେ ତୁଚ୍ଛ ମନେ କରୁଥିଲେ ମୋର କାର୍ଯ୍ୟକାଳ ମଧ୍ୟରେ ତାହା ବିଭିନ୍ନ ସରକାରୀ କର୍ମଚାରୀଙ୍କ ସହଯୋଗ ଓ ସମନ୍ୱୟ ହେତୁ ଏକ ଆବଶ୍ୟକୀୟ ବିଭାଗ ବୋଲି ଗଣ୍ୟ ହେଲା । ପ୍ରକାଶ ଥାଉ କି ଆମ ଅଫିସ୍ ଘର ପାଇଁ ସରକାରୀ ଜାଗା ଗାଇସିଲେଟ୍ ରାସ୍ତାରେ କୃଷି ଉଦ୍ୟାନ ବିଭାଗ ପାଇଁ ଆମ ଅଫିସ୍‌ଘର ଜାଗା ମଧ୍ୟ ଚିହ୍ନଟ କରାଯାଇ ସାରିଥିଲା । ତାର ପରବର୍ତ୍ତୀ ପଦକ୍ଷେପ କଣ ନିଆଗଲା ତାହା ଆମକୁ ଅଜଣା । ଏପରି ଭାବରେ ବିଭାଗୀୟ ଦପ୍ତର ପାଇଁ ଅଫିସ୍‌ଘର, ଜାଗା ନିର୍ଦ୍ଧାରଣ ଓ ଶିକ୍ଷା ବିଭାଗକୁ ଲୋକଙ୍କ ଲୋଚନ ଗୋଚରକୁ

ଆଣିବା ପାଇଁ ଯାହା କରାଯିବା କଥା ସେଥିଲାଗି ଯଥାସାଧ ଉଦ୍ୟମ କରାଯାଇ ଥିଲା । ଏପରି ଭାବେ ପ୍ରାୟ ୩ ବର୍ଷ କାଳ ଅତିବାହିତ ହେବା ପରେ ଅର୍ଥାତ୍ ୧୯୮୬ ସାଲର ଜାନୁୟାରୀ-ଫେବୃୟାରୀ ପର୍ଯ୍ୟନ୍ତ ମୁଁ ଅଫିସ୍‌ଘରେ ରହି କାର୍ଯ୍ୟ କରୁଥିଲି । ପରବର୍ତ୍ତୀ ସମୟରେ ଅର୍ଥାତ୍ ଜୁନ୍ ମାସ ବେଳେ ଆମ ଅଫିସ୍‌ର ଉପ ଶିକ୍ଷା ଜିଲ୍ଲାଧିକାରୀ ଶ୍ରୀ ରଘୁନାଥ ମିଶ୍ରଙ୍କ ବଦଳି ହେବା ହେତୁ ତାଙ୍କ ରହୁଥିବା ବାସଭବନକୁ ମୁଁ ଅସ୍ଥାୟୀ ଭାବେ ଭଡ଼ାସୂତ୍ରରେ ରଖିଲି ମୋର ଅବସର ନେବା ପର୍ଯ୍ୟନ୍ତ ଅର୍ଥାତ୍ ୩୧.୮.୮୬ ।

ଏହି କାଳ ମଧରେ ମୋର ବ୍ୟକ୍ତିଗତ ସାମାଜିକ କାର୍ଯ୍ୟ କରିବାକୁ ପଡ଼ିଥିଲା । ଅର୍ଥାତ୍ ୧୯୮୩ରେ ବଡ଼ ପୁଅ ପ୍ରଦୀପ୍ତର ଦୁହିତା (ଲିମା) ଜନ୍ମ ହେବାରୁ ତାର ନାମକରଣ ପାଇଁ ଜୁନ ୮୩ ରେ ଏକ ସତ୍ୟନାରାୟଣ ପୂଜା ଓ ବନ୍ଧୁ ମିଳନର ଆୟୋଜନ କରାଯାଇ ଥିଲା । ପୁଣି ୧୯୮୪ରେ ୨ୟା କନ୍ୟାର ନାମକରଣ ଓ ଅନ୍ନପ୍ରାସନ ପାଇଁ ସାମାଜିକ ବନ୍ଧୁ ମିଳନର ଆୟୋଜନରେ ବହୁ ଜନସମାଗମ ହୋଇଥିଲା । ୧୯୮୫ରେ ୨ୟ ପୁତ୍ର (ସୁଦୀପ୍ତ)ର ବିବାହ ସମ୍ବଲପୁରରେ ଓ ଏହା ପରେ ୧୯୮୬ ଜୁନ୍ ୧୮ରେ ଆମର କନିଷ୍ଠା କନ୍ୟା ମମତା ଯେ କି ବି.ଏ. ଓ ବି.ଇଡି. ସାରି ବରଗଡ଼ ସରକାରୀ ବାଳିକା ବିଦ୍ୟାଳୟରେ ଅସ୍ଥାୟୀ ରୂପେ ୧୯୮୨ରୁ କାର୍ଯ୍ୟରତ ତାର ବିବାହ ସମାହିତ ହେଲା । ଜୋଇଁ ବାବୁ ଶ୍ରୀ ସୁଧୀର ମିଶ୍ର M.Com । ସେତେବେଳେ ଜଗତସିଂହପୁର ଘରୋଇ ମହାବିଦ୍ୟାଳୟରେ ଅଧାପକ ଥିଲେ । ତାଙ୍କ ବରାନୁଗମନ ଦିନ ଅର୍ଥାତ୍ ଉପରୋକ୍ତ ଦିବସର ସନ୍ଧ୍ୟାରେ ପ୍ରାୟ ସାଢ଼େ ୭ ପରେ ସାଢ଼େ ୮ ପର୍ଯ୍ୟନ୍ତ ଝଡ଼ ତୋଫାନ ଘଟି ଆମର ତମ୍ବୁ ସାଜସଜ୍ଜା ସବୁ ଉଜାଡ଼ି ଦେଲା । କିନ୍ତୁ ପରେ ପାଗଟି ଅନୁକୂଳ ହେତୁ ଭୋଜି ଆଦି ସୁରୁଖୁରୁରେ ସରିଗଲା । ଏହା ପରେ ବିବାହ କର୍ମ ଚାଲିଥିବା ବେଳେ ପୁଣି ବର୍ଷା ହେତୁ ଆମ ଅସ୍ଥାୟୀ ବେଦୀର ଛାତ ତାକୁ ସମ୍ଭାଳି ନ ପାରିବାରୁ ବିବାହ କର୍ମ ପାଇଁ ଉପର ମହଲା ଘରକୁ ସ୍ଥାନାନ୍ତରିତ କରାଗଲା ଓ ପ୍ରାତଃ ୫ଟା ବେଳେ ବିବାହ ସରି ପ୍ରାୟ ସାଢ଼େ ୬ ବେଳେ କନ୍ୟାବିଦାୟ ବେଳେ ଅହରହ ବର୍ଷା ଚାଲିଥାଏ । ତେଣୁ ବହୁ କଷ୍ଟ ସ୍ୱୀକାର ପୂର୍ବକ ବିବାହ ପାଇଁ ଉଦ୍ଦିଷ୍ଟ ଜିନିଷପତ୍ରାଦି ପରିବହନ ଓ ତାଙ୍କ ଗାଁ ଦେଶଭଟଲିକୁ ନେବାରେ ଖର୍ଚ୍ଚାନ୍ତ ଓ କଷ୍ଟସାଧ ହେଲା କିନ୍ତୁ କାମଟି କୌଣସି ମତେ ସମାହିତ ହେଲା ।

ଆମ ଜୋଇଁ ସୁଧୀର ବାବୁ ଦେଶଭଟଲିର ସୁନାମଧନ୍ୟ ୰ ଗୋପାଳ ମିଶ୍ର ମେନେଜର, ପ୍ରସିଦ୍ଧ ଗଣିତ ଶିକ୍ଷକ ୰ କାହ୍ନୁ ମିଶ୍ରଙ୍କ ଭ୍ରାତାଙ୍କ ୪ର୍ଥ ପୁତ୍ର ଓ

ସ୍ଥାନୀୟ ବିଜୁଳି ବିଭାଗୀୟ କନିଷ୍ଠ ଯନ୍ତ୍ରୀ ଓ ଜନପ୍ରିୟ ସଙ୍ଗଠକ ଶ୍ରୀ ଉପେନ୍ଦ୍ର ମିଶ୍ରଙ୍କ ଭ୍ରାତା । ଏ ଉତ୍ସବରେ ବହୁ ଜନସମାଗମ ଘଟି ଝଡ଼ବର୍ଷା ସତ୍ତ୍ୱେ ବି ହୋଇଥିଲା ଓ ତାଙ୍କୁ ଉପଯୁକ୍ତ ଚର୍ଚ୍ଚାର ଅଭାବ କରାଯାଇ ନ ଥିଲା । ଏଣୁ ପ୍ରାୟ ସମସ୍ତେ ଆମର ସାମାଜିକ କର୍ମରେ ଯୋଗ ଦେବାକୁ ଭୁଲନ୍ତି ନାହିଁ । କାରଣ ନିମନ୍ତ୍ରିତ ବ୍ୟକ୍ତିଙ୍କ ସୁବିଧା ପାଇଁ ବ୍ୟକ୍ତିଗତ ଚର୍ଚ୍ଚାର ସୁଯୋଗ ଦିଆଯାଏ ଓ ଅନୁପସ୍ଥିତ ନିମନ୍ତ୍ରିତ ବ୍ୟକ୍ତିଙ୍କ ମଧ୍ୟ ଖବର ପରେ ନିଆଯାଏ ।

ପ୍ରକାଶ ଥାଉ କି ସେଦିନର ବର୍ଷାର ଆଉ ବିରାମ ନ ଥିଲା ଓ ଦୀର୍ଘ ୧୩ ଦିନ ଧରି ୩୦.୬ ପର୍ଯ୍ୟନ୍ତ ଚାଲିଥିଲା ଏବଂ ମୋର ଯାହା ମନେ ହୁଏ ବୋଧ ହୁଏ ମୋର ଝିଅ ଶାଶୁଘରୁ ଫେରିବା ପରେ ବର୍ଷା ଛାଡ଼ିଲା ଓ ଆକାଶ ସଫା ହୋଇ ସୂର୍ଯ୍ୟ ଦେଖାଗଲେ । ଅବଶ୍ୟ ଏହି ସାମାଜିକ କାର୍ଯ୍ୟଟି ମୋର ଚାକିରୀ ଜୀବନର ପ୍ରାୟ ଶେଷ କାର୍ଯ୍ୟ । ବିବାହ ସମୟରେ ସାନ ଝିଅ ପଢ଼ା ସାରି ସ୍ଥାନୀୟ ବାଳିକା ବିଦ୍ୟାଳୟରେ ଶିକ୍ଷୟିତ୍ରୀ କାମ ୧୯୮୪ରୁ କରି ଆସୁଥିଲା । ବିବାହ ହେତୁ ସେ ଆଉ ଚାକିରୀ କରିବାରେ ଅସୁବିଧା ହେତୁ ସାମୟିକ ଭାବେ ଚାକିରୀ ଛାଡ଼ି ଦେଇ ଛୁଟିରେ ଥିଲା କିନ୍ତୁ ପରେ ତାର ସ୍ୱାମୀଙ୍କ ପ୍ରଚେଷ୍ଟାରେ ସେ ପୁଣି ଚାକିରୀରେ ଯୋଗ ଦେଇ ଏ ପର୍ଯ୍ୟନ୍ତ କାର୍ଯ୍ୟରତା । ଅବଶ୍ୟ ତାର ଯୋଗ୍ୟତାନୁସାରେ ଚାକିରୀର ସ୍ତର ସମତୁଲ ହେଲାଣି । ସେ ଦକ୍ଷ ଶିକ୍ଷୟିତ୍ରୀ ଭାବେ ଏବେ ପରିଚିତା ।

ଝିଅର ବାହାଘର ସମୟରେ ଆମ ଅଫିସର Dy. I/S ଶ୍ରୀ ରଘୁନାଥ ମିଶ୍ରଙ୍କ ତାଲଚେର ହାଇସ୍କୁଲକୁ ବଦଳି ହେଲା ଓ ଆମଠାରୁ ବିଦାୟ ନେଇ ସେଠାରେ ଯୋଗ ଦେଲେ । ଏହା ପରେ ମୋର ଚାକିରୀକାଳର ଶେଷ ସମୟ ନିକଟତର ହେବାରୁ ମୁଁ ଅଫିସ୍‌ର ସବୁ କାଗଜାତ ଠିକ୍‌ଠାକ୍ କରି ଅବସର ପାଇଁ ପ୍ରସ୍ତୁତ ହେବାକୁ ଆରମ୍ଭ କଲି । ଅର୍ଥାତ୍ ମୋର ଅବସର ନେବାର ଶେଷ ଦିନ ୩୧.୮.୮୬ (ରବିବାର) ଥିବାରୁ ତା ପୂର୍ବରୁ ମୋତେ ସାବଧାନତା ଓ ଯତ୍ନର ସହ ସବୁ କରିବାକୁ ହେଲା । ଅଗଷ୍ଟ ମାସର ପ୍ରାରମ୍ଭରୁ ପ୍ରାୟ ୧୫ ଦିନ ପର୍ଯ୍ୟନ୍ତ ମୋ ସ୍ତ୍ରୀ ଓ ବଡ଼ ନାତୁଣୀ ଲିମା ଯାଇ କିଛି ଦିନ ମୋ ସଙ୍ଗେ ରହିଲେ । ଇତି ମଧ୍ୟରେ ମୋର ନିଜ ପାଇଁ ଏକ ବାସଗୃହ ଭଡ଼ା ନେଇଥିଲି । ସେହି ସମୟରେ ମୁଁ ଓ ମୋ ସ୍ତ୍ରୀ ବିଚାର କରି ଆମ ତରଫରୁ ଆମ ଅଫିସ୍‌ର କର୍ମଚାରୀମାନଙ୍କୁ, ସହକାରୀ ନିରୀକ୍ଷକମାନଙ୍କୁ ଓ କେତେକ ଶିକ୍ଷକ ଓ ପ୍ରଧାନ ଶିକ୍ଷକଙ୍କୁ ଏକ ପଂକ୍ତିଭୋଜିର ବ୍ୟବସ୍ଥା କରାଯାଇ ଥିଲା । ଅବଶ୍ୟ ଏହା ଥିଲା ବିଦାୟ ପୂର୍ବର ଏକ ସ୍ନେହ ଓ ପ୍ରେମର ଶେଷ ମିଳନ । ସମସ୍ତେ ଏହା ଜାଣି ଏକ ସ୍ୱରରେ ପ୍ରକାଶ କରିଥିଲେ ଯେ

ଜଣେ ଶିକ୍ଷକ...
ଏହା ପୂର୍ବରୁ କୌଣସି ବିଦାୟୀ କର୍ମଚାରୀ ତାଙ୍କ ତରଫରୁ ଏପରି ଏକ ଆୟୋଜନ କରି ନ ଥିଲେ ଓ ଏହା ଥିଲା ଏକ ଅଭିନବ ଓ ନୂତନ ଚିନ୍ତାଧାରା ।

## ଘର ବାହୁଡ଼ା :

ଏହା ପରେ ମୋର ବିଦାୟ କାଳୀନ ବିଭିନ୍ନ ସମାବେଶ ପ୍ରତି ବ୍ଲକ ସ୍ତରରେ ଓ ବିଭିନ୍ନ ଉଚ୍ଚ ବିଦ୍ୟାଳୟ, ମାଧମିକ ବିଦ୍ୟାଳୟ ଓ ପ୍ରାଥମିକ ବିଦ୍ୟାଳୟ ତରଫରୁ ଆୟୋଜିତ ହୋଇଥିଲା । ମୋର ସମୁଦାୟ ବିଦାୟକାଳୀନ ସଭାର ସଂଖ୍ୟା ପ୍ରାୟ କୋଡ଼ିଏରୁ ଅଧିକ । ମୋର ଦାୟିତ୍ୱରେ ୬ଟି ବ୍ଲକ ଓ ତହିଁରେ ଥିବା ୧୨ଟି ସହନିରୀକ୍ଷକଙ୍କ କେନ୍ଦ୍ର, ପ୍ରାୟ ୧୫୦ରୁ ଅଧିକ ନିମ୍ନ ମାଧମିକ ବିଦ୍ୟାଳୟ ଓ ପ୍ରାଥମିକ ବିଦ୍ୟାଳୟ ସଂଖ୍ୟା ସହସ୍ରାଧିକ । ସେମାନଙ୍କ ମଧରୁ ବ୍ଲକ ସ୍ତରୀୟ ସଭାକୁ ଛାଡ଼ି ଦେଲେ ପ୍ରାୟ ନିମ୍ନ ମାଧମିକ ବିଦ୍ୟାଳୟ ଓ ପ୍ରାଥମିକ ବିଦ୍ୟାଳୟରୁ ଓ ଉଚ୍ଚ ବିଦ୍ୟାଳୟରୁ ପୃଥକ ଭାବେ ଏସବୁର ଆୟୋଜନ କରାଯାଇ ଥିଲା । ସବୁଠାରୁ ଉଲ୍ଲେଖନୀୟ ବିଷୟ ଏହି ଯେ ମୋର ଅବ୍ୟାହତି ନେବାର୍ କିଛି ଦିନ ପରେ ମଧ ବିଜେପୁର ବ୍ଲକର ଶିକ୍ଷକଗଣ ଏକ ବିଦାୟ କାଳୀନ ସଭା ଆୟୋଜନ କରିଥିଲେ ଓ ଏଥିରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ବିଜେପୁରର ତତ୍କାଳୀନ ବ୍ଲକ ଉନ୍ନୟନ ଅଧିକାରୀ ଶ୍ରୀଯୁକ୍ତ ଅହମ୍ମଦ । ଏପରି ଭାବେ ମୋର ଚାକିରୀକାଳର ପରିସମାପ୍ତି ଘଟି ଏକ ଅଧାୟର ଅବସାନ ଘଟିଲା । ମୁଁ ଅଫିସ୍‌ର ଦାୟିତ୍ୱ ହସ୍ତାନ୍ତର କରିଥିଲି ରାଜବୋଡ଼ାସମ୍ବରର ଉଚ୍ଚ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଶ୍ରୀ ଲୋକନାଥ ସାନବର୍ଷାଙ୍କୁ ଓ ସେଠାରୁ ମୁଁ ୨.୯.୮୬ଇ. ଦିନ କାର୍ଯ୍ୟମୁକ୍ତ ତ ହୋଇଥିଲି ୩୧.୮ରୁ ଓ ନିଜ ବାସସ୍ଥାନ ବରଗଡ଼କୁ ଚାଲି ଆସିଲି । କର୍ମମୟ ଯୁଗର ଅବସାନ ଘଟିଲା ଦୀର୍ଘ ୩୮ ବର୍ଷ ପରେ କେତେକ ବିଭିନ୍ନ ଅନୁଭୂତିକୁ ହୃଦୟରେ ଧରି । ସବୁ ସମୟ ଓ ବିଶ୍ୱକର୍ତ୍ତାଙ୍କ ନିର୍ଦ୍ଦେଶ ଓ ନିୟମର ଫଳ ।

## ଅବସର ପରେ (୧.୯.୮୬ ଠାରୁ ଏ ପର୍ଯ୍ୟନ୍ତ):

ମୋର ତ ନିଜର ଜିନିଷପତ୍ର ସେମିତି କିଛି ନ ଥିଲା କିନ୍ତୁ ଯାହା ବି ଥିଲା ତାକୁ ପୂର୍ବରୁ ଜଣେ ଅଫିସ୍ ସହାୟକ ସବୁ ଧରି ଆସିଥିଲେ । ତେଣୁ ମୁଁ କେବଳ ଏକ ଛୋଟ ଏଟେଚି ଧରି ସମସ୍ତଙ୍କଠାରୁ ବିଦାୟ ନେଇ ଯାହାକୁ ଯାହା ବିଦାୟ କାଳୀନ ପ୍ରାପ୍ୟ ପ୍ରଦାନ କରି ଆସିଲି । ମୋତେ ବିଦାୟ ଦେଲା ବେଳେ ଅଫିସ୍‌ର କର୍ମଚାରୀଗଣ ଓ ବିଶେଷତଃ ୪ର୍ଥ ଶ୍ରେଣୀର ସମସ୍ତେ ଅତିଶୟ ଦୁଃଖିତ ହୋଇଥିଲେ ।

ମୋ ସଙ୍ଗରେ ଆମ ଅଫିସ୍‌ର ଅନ୍ୟତମ ସହାୟକ ଶ୍ରୀ ଅଲେଖଚନ୍ଦ୍ର ଦାଶ ବରଗଡ଼ ମୋ ବସାକୁ ଆସି ଛାଡ଼ିଗଲେ । ଏହା କ'ଣ କମ୍ ଆନ୍ତରିକତା ଓ ଭକ୍ତିର ଲକ୍ଷଣ ?

ମୁଁ ବରଗଡ଼ ଆସି ପ୍ରଥମେ ନିୟମିତ କାର୍ଯ୍ୟକ୍ରମରୁ ହଠାତ୍ ବ୍ୟତିକ୍ରମ ହେବା ହେତୁ କିମିତି କିମିତି ଲାଗିଲା । କିନ୍ତୁ ଯାହା ହେଉ ସବୁକୁ ମୁକାବିଲା କରି ଅନ୍ୟ ଧରଣର ପରିସ୍ଥିତିରେ ନିଜକୁ ଖାପ ଖୁଆଇ ଚଳିବାକୁ ହେଲା । କାର୍ଯ୍ୟକାଳର ଶେଷ ଭାଗରେ ଅବସର କାଳୀନ କେତେ କାର୍ଯ୍ୟକ୍ରମ କରିବାର ଉଚ୍ଚାକାଂକ୍ଷା ପୋଷଣ କରାଯାଇ ଥିଲା - ଅର୍ଥାତ୍ ମୋର ମୁଖ୍ୟ ପରିକଳ୍ପନାରେ ମୋର ବନ୍ଧୁ, ନାତି କୁଟୁମ୍ବ ଓ ପରିଚିତ ଶିକ୍ଷକମାନେ ଚାରିଧାମ ଭ୍ରମଣରେ ଯିବାର ବହୁ ଆଶା ପୋଷଣ କରିଥିଲେ । କିନ୍ତୁ ଅବସର କାଳୀନ ପରେ ରହିବା ସମୟରେ ଘରର ପରିସ୍ଥିତି ଏପରି ହେଲା ଯେ କୌଣସି କାରଣରୁ ନିଜ ବାସସ୍ଥାନ ଛାଡ଼ି ବାହାରକୁ ଯିବାର କାର୍ଯ୍ୟକ୍ରମ କିଛି ନିଶ୍ଚିନ୍ତ ଭାବେ କରାଯାଇ ପାରିଲା ନାହିଁ କାରଣ ଘରର ଚଳଣୀ ଦାୟିତ୍ୱ ନେବାର ଉପଯୁକ୍ତ ଦାୟାଦ ଅଭାବରୁ ଏହି ସଙ୍କଟମୟ ପରିସ୍ଥିତି ଉପୁଜି ଥିଲା ଓ ନିଜର ଆଗରୁ ପ୍ରସ୍ତାବିତ କାର୍ଯ୍ୟକ୍ରମ ଠିକ୍ ଭାବେ କରାଯାଇ ପାରି ନ ଥିଲା । ମୋଟାମୋଟି ଭାବେ ସେପରି କିଛି ବିଶେଷ କାର୍ଯ୍ୟକ୍ରମ କରାଯାଇ ପାରି ନ ଥିଲା ।

ଏ ସମୟ ମଧ୍ୟରେ ଏକାଧିକ ବାର ସମ୍ବଲପୁର ମଣ୍ଡଳାଧୀଶଙ୍କ ଅଫିସ୍‌କୁ ଯାଇ ମୋର ପେନସନ କାଗଜ ଠିକ୍‌ଠାକ୍ କରି ଉପରିସ୍ଥ ନିର୍ଦ୍ଦେଶକଙ୍କ ଅଫିସ୍‌କୁ ପଠାଗଲା । ସେଠାରେ ଇତିମଧ୍ୟରେ ତାଙ୍କର ଅଫିସ୍‌ଘର ବଦଳ ଓ ନିର୍ଦ୍ଦେଶଙ୍କ ଅନୁସାରେ ସମୀକ୍ଷକମାନଙ୍କ ପୁନର୍ବିନ୍ୟାସ ପାଇଁ ମୋର ପେନସନ କାଗଜ ତନଖିବାରେ ବିଳମ୍ବ ହେଲା ଓ ପ୍ରାୟ ବର୍ଷାଧିକ କାଳ ପଡ଼ି ରହିଲା । ତେଣୁ ସେ ସମ୍ପର୍କରେ ଯେତେ ଲେଖାପଢ଼ା ଓ ଧାଁ ଧପଡ଼ କଲେ ମଧ ୮୭-୮୮ ପାର ହୋଇଗଲା ।

ଇତିମଧ୍ୟରେ ୧୯୮୭ ସେପ୍ଟେମ୍ବର ୮ରେ ଗୁରୁ ମହାରାଜ ଶିବାନନ୍ଦଙ୍କ ଜନ୍ମ ଶତବାର୍ଷିକୀ ପାଇଁ ଋଷିକେଶଠାରେ ମହାସମାରୋହର ଆୟୋଜନ ଚାଲିଥିଲା ଓ ଦେଶ ବିଦେଶରୁ ସହସ୍ରାଧିକ ଶିଷ୍ୟ ଓ ସଦସ୍ୟଗଣ ସେଠାରେ ସମବେତ ହେବାର କଳ୍ପନା ଓ ଯୋଜନା କରାଯାଇ ଥିଲା । ତେଣୁ ଆମ୍ଭେମାନେ ବରଗଡ଼, ରାଉରକେଲା ଓ ସୁନ୍ଦରଗଡ଼ରୁ ପ୍ରାୟ ୨୦/୨୫ ଜଣ ୪.୯ରେ ଏଠାରୁ ବାହାରି ଋଷିକେଶ ଅଭିମୁଖେ ଯାତ୍ରା କଲୁଁ । ସଙ୍ଗେ ମୋର ସ୍ତ୍ରୀ ମଧ ଯାଇଥିଲେ । ୪ ତାରିଖ ସକାଳେ ଆଗ୍ରାରେ ଅନ୍ୟାନ୍ୟ ମାନେ ଗୋପ, ମଥୁରା, ବୃନ୍ଦାବନ ବୁଲି ଦେଖିବାକୁ ଓହ୍ଲାଇ ଯିବାରୁ ଆମେ ଦୁହେଁ ଦିଲ୍ଲୀ ଅଭିମୁଖେ ଯାତ୍ରା କଲୁଁ । କାରଣ ଆଗରୁ ଆମେ

ଏସବୁ ଦେଖି ସାରିଥିଲୁଁ। ମୁଁ ତ ପୂର୍ବରୁ ଏକାଧିକବାର ଦେଖିବାର ସୁଯୋଗ ପାଇଥିଲି। ଆମେ ପ୍ରାୟ ସାଢ଼େ ୧୧ରେ ଦିଲ୍ଲୀ ପହଞ୍ଚିଲୁଁ। ସେଠାରୁ ରାତ୍ରରେ ଋଷିକେଶ ପାଇଁ ଆମ ଗାଡ଼ି ଯିବାର ଥିଲା ଓ ସେଥିରେ ଆମ ସ୍ଥାନ ସଂରକ୍ଷଣ ହୋଇଥିଲା। ସେଠାରୁ ୫ ତାରିଖ ରାତିରେ ବାହାରି ଆର ଦିନ ସକାଳେ ହରଦ୍ୱାରରେ ପହଞ୍ଚିଲୁ। ପରେ ସେଠାରୁ ଋଷିକେଶ ଯାଇ ଦିବା ୧୧ଟାରେ ପହଞ୍ଚିଲୁଁ। ସେଠାରୁ ଅଟୋରିକ୍ସାରେ ମୁନେକିରେତିର ଶିବାନନ୍ଦ ଆଶ୍ରମର ଅଭ୍ୟର୍ଥନା କେନ୍ଦ୍ରରେ ନାମ ଲେଖାଇ ଆମ ରହିବା ସ୍ଥାନ ପାଇଁ ଅପେକ୍ଷା କଲୁଁ। ଅଭ୍ୟର୍ଥନା କେନ୍ଦ୍ରଟି ଆଶ୍ରମର ପ୍ରଧାନ ଫାଟକର ସମ୍ମୁଖରେ ରାସ୍ତାର ଅପର ପାର୍ଶ୍ୱରେ ଗଙ୍ଗାକୂଳରେ ଅବସ୍ଥିତ। ସଂପୃକ୍ତ ସହାୟକ ବନ୍ଧୁ ଆମ୍ଭଙ୍କୁ ସ୍ନାନାଦି କାମ ସାରି ମଧ୍ୟାହ୍ନ ଭୋଜନ ପରେ ଆମ ପାଇଁ ଉଦ୍ଦିଷ୍ଟ ଧର୍ମଶାଳା ପାଇଁ ସହାୟକ ଦେଇ ପଠାଇ ଦେବେ ବୋଲି ନିର୍ଦ୍ଦେଶ ଦେବାରୁ ଆମ୍ଭେ ଦୁହେଁ ଆମ ଜିନିଷପତ୍ର ସେହି କେନ୍ଦ୍ରରେ ଜିମା ଦେଇ ଆଶ୍ରମ ପାର୍ଶ୍ୱସ୍ଥ ଗଙ୍ଗା ନଦୀକୁ ଯାଇ ସ୍ନାନ କଲୁଁ ଓ ସେଠାରୁ ଫେରି ଅନ୍ନପୂର୍ଣ୍ଣା କ୍ଷେତ୍ରକୁ ଭୋଜନ ପାଇଁ ଗଲୁଁ। ସେଠାକୁ ଯାଇ ଯାହା ଦେଖିଲୁଁ ସେଥିରେ ଆମର ଆଶ୍ଚର୍ଯ୍ୟର ସୀମା ନାହିଁ। ଶୁଣିଲୁଁ ମଧ୍ୟାହ୍ନ ଭୋଜନ ପାଇଁ ୧୧ଟାରୁ ଖାଇବା ଆରମ୍ଭ କରାଯାଏ ଓ ଶତବାର୍ଷିକୀ ପାଇଁ ପ୍ରାୟ ସପ୍ତାହେ ଏହାର ଶୃଙ୍ଖଳା ଉପରେ ବହୁତ ଗୁରୁତ୍ୱ ଦିଆ ଯାଇଛି। ପ୍ରାୟ ଦିନକୁ ଦୁଇ ସହସ୍ରାଧିକରୁ ଅଧିକ ଭକ୍ତ ପ୍ରାୟ ଭାରତ ତଥା ଭାରତ ବାହାରୁ ଆସି ଜମା ହୋଇ ଦିନକୁ ସକାଳେ ଚା ଓ ଜଳଖିଆ ଓ ଦୁଇ ଥର ଅନ୍ନ ଭୋଜନ ୨/୩ ପ୍ରକାର ବ୍ୟଞ୍ଜନ ତରକାରୀ ରନ୍ଧା ଓ ଅନ୍ତତଃ ଏକ ମିଠା ବା ଆବଶ୍ୟକସ୍ଥଳେ ଏକାଧିକ ଦିଆଯାଉ ଥିଲା। ପୁଣି ଚା ସହ ସାମାନ୍ୟ ଲଘୁ ଜଳଖିଆ ଯେ ଗ୍ରହିବ ଓ ଠିକ୍ ସନ୍ଧ୍ୟା ୬ଟାରେ ରାତ୍ର ଭୋଜନ ଆରମ୍ଭ ହୋଇ ଯାଉଥିଲା। ଦୁଇଟି ବିରାଟ ହଲ୍ ଭୋଜନ ପାଇଁ ବନ୍ଦୋବସ୍ତ କରାଯାଇ ଥିଲା ଯହିଁରେ ପ୍ରାୟ ସହସ୍ରାଧିକ ଭକ୍ତାଭକ୍ତଗଣ ଭୋଜନ ପାଇଁ ବସି ପାରିବେ। ସମସ୍ତଙ୍କ ପାଇଁ ବସିବା ପାଇଁ ଆସନ ଓ ପିଇବା ପାଇଁ ଗିଲାସ ଓ କପ୍‌ରେ ଚା ପିଇବାର ବ୍ୟବସ୍ଥା କରାଯାଇ ଥିଲା। ଶୁଣିବାକୁ ପାଇଲୁଁ ଯେ ଗତ ୪/୫ ଦିନ ଧରି ସକାଳେ ଓ ସନ୍ଧ୍ୟାରେ ବିଭିନ୍ନ ପ୍ରକାର ମିଠା ଦିଆଯିବାର ବ୍ୟବସ୍ଥା କରାଯାଇ ଥିଲା ଓ କାହାକୁ କିଛି ଅଭାବ ଅସୁବିଧା ବା ନିଅଣ୍ଟ ପଡୁ ନ ଥିଲା। ଦିନରେ ବା ରାତ୍ରରେ ଆବଶ୍ୟକତାନୁଯାୟୀ ରୋଟି ମଧ ଓ ସମୟ ସମୟରେ ପୁରୀ ଯୋଗାଇ ଦିଆଯାଉ ଥିଲା। ଯେଉଁମାନେ ସେଠାକୁ ଖାଇବା ପାଇଁ ଯାଇ ପାରୁ ନ ଥିଲେ ସେମାନଙ୍କ ପାଇଁ ତାଙ୍କ ଆତ୍ମୀୟଗଣ ଟିଫିନ କେରିଅରରେ ଖାଦ୍ୟଦ୍ରବ୍ୟ ନେଇ ଯାଉଥିଲେ ଓ

ଅନେକ ଦକ୍ଷିଣା ଲୋକେ ପ୍ରାୟ ସର୍ବଦା ଗୋଟିଏ ପାତ୍ରରେ ନିଜର ସ୍ୱାନକୁ ନେଇ ଯାଉଥିଲେ। କେହି କାହିଁକି ନେଉଛ ବୋଲି ପଗ୍ଚରିବାର ଶୁଣା ନ ଥିଲା।

ଆମେ ପହଞ୍ଚିବା ଦିନ ପ୍ରାୟ ଭକ୍ତ ସମାଗତ ସଂଖ୍ୟା ପ୍ରାୟ ୩/ ୪ ହଜାରରୁ ବେଶୀ ଥିଲେ ଓ ତାହା ବଢ଼ି କରି ୮.୯.୮୬ ଦିନ ପ୍ରାୟ ୧୦ ହଜାରରେ ପହଞ୍ଚିଗଲା। ଏ ସମସ୍ତ ଖାଦ୍ୟ ପରସିବା ପାଇଁ ବିଭିନ୍ନ ରାଜ୍ୟର ଭକ୍ତମାନଙ୍କୁ ଦାୟିତ୍ୱ ଦିଆଯାଇ ଥିଲା। ତେଣୁ ପରିବେଷଣରେ କୌଣସି ଅସୁବିଧା ଦେଖାଯାଉ ନ ଥିଲା।

ଆମେ ଭୋଜନ ସାରି ଅଭ୍ୟର୍ଥନାସ୍ଥଳକୁ ଫେରି ସଂପୃକ୍ତ ଥଇଥାନକାରୀ ବ୍ୟକ୍ତିଙ୍କଠାରୁ ଚିଠା ନେଇ ଗଙ୍ଗାନଦୀ ଆରପଟେ ଥିବା ପରମାର୍ଥ ଭବନକୁ ଶିବାନନ୍ଦ ଝୁଲା ପାର ହୋଇ ଗଲୁଁ ଓ ଆମ ପାଇଁ ନିର୍ଦ୍ଧାରିତ କୋଠରୀରେ ରହିଲୁଁ। ଉପର ମହଲା କୋଠରୀଟି ୨ ଶଯ୍ୟା ପଟାଖଟ ଥିବା ଓ ପଛ ପଟେ ବାରଣ୍ଡା ଥିବାର ସୁବିଧାରେ ସଜ୍ଜିତ ଓ କୋଠରୀରେ ବିଜୁଳି ଓ ପଙ୍ଖା ଓ ଆଲୋକର ସୁବିଧା ଥିଲା। ଉପରେ ସମସ୍ତଙ୍କ ପାଇଁ ଶୌଚାଳୟର ମଧ ସୁବ୍ୟବସ୍ଥା ଥିଲା। ଏହି ପରମାର୍ଥ ନିକେତନ ଧର୍ମଶାଳାରେ ଏପରି କୋଠରୀ ଛଡ଼ା ରନ୍ଧାବଢ଼ା ସୁବିଧା ଥାଇ ଅନ୍ୟ କୋଠରୀଗୁଡ଼ିକରେ ମଧ ବ୍ୟବସ୍ଥା ଅଛି। କୌଣସି ବ୍ୟକ୍ତି ଚାହିଁଲେ ରାନ୍ଧିବା ପାଇଁ ସାମାନ୍ୟ ଶୁଳ୍କରେ ସେ ସବୁ ଯୋଗାଇ ଦିଆଯାଏ। କିନ୍ତୁ ଏହି ଧର୍ମଶାଳାରେ ରହିଲେ ଠିକ୍ ସମୟ ପୂର୍ବରୁ ରାତ୍ରରେ ଆସିବାକୁ ହୁଏ ଓ ପ୍ରାତଃ ୪ଟାରୁ ଉଠି ସମୂହ ପ୍ରାର୍ଥନାରେ ଯୋଗ ଦେବାକୁ ହୁଏ ନଚେତ୍ ପରଦିନ ସେହି ଧର୍ମଶାଳା ଛାଡ଼ିବାକୁ ହୁଏ। କୌଣସି କୋଠରୀରୁ ପ୍ରାର୍ଥନାରେ ଯୋଗ ନ ଦେଲେ ତାଙ୍କ ନାମ ସମସ୍ତଙ୍କ ଆଗରେ ଘୋଷଣା କରାଯାଇ ସାବଧାନ କରାଯାଏ। ପୁଣି ଧର୍ମଶାଳାର ସହାୟକମାନେ କୋଠରୀମାନଙ୍କୁ ଯାଇ ସେଠାରେ ଥିବା ବ୍ୟକ୍ତିଙ୍କୁ ଉଠାଇ ପ୍ରାର୍ଥନାରେ ଯୋଗ ଦେବାକୁ ଅନୁରୋଧ କରନ୍ତି। ପୁଣି ଠିକ୍ ସମୟରେ ଘଣ୍ଟ ଶଙ୍ଖ ବଜାଇ ସମସ୍ତଙ୍କୁ ସତର୍କ କରାଯାଏ। ପ୍ରାର୍ଥନା ପ୍ରାୟ ୧ ଘଣ୍ଟା ଧରି ଚାଲେ। ପ୍ରାୟ ୬ଟା ବେଳେ ଏହା ଶେଷ ହେଲେ ପୁଣି ଯେ ଯାହାର ଅସମ୍ପୂର୍ଣ୍ଣ ଦୈନନ୍ଦିନ କାମ ସାରି ପୁଣି ଶିବାନନ୍ଦ ଆଶ୍ରମକୁ ଅନ୍ୟାନ୍ୟ କାର୍ଯ୍ୟରେ ଯୋଗଦାନ - ଚା, ଜଳପାନ ଆଦି କାମରେ ଲାଗି ଯାଆନ୍ତି। ପ୍ରାୟ ୮ଟାରୁ ଶତବାର୍ଷିକୀ ପାଳନର କାର୍ଯ୍ୟକ୍ରମ ଆରମ୍ଭ ହୋଇ ବକ୍ତାମାନଙ୍କ ବକ୍ତୃତା ପ୍ରଦାନରେ ଏ ସବୁ ଏକ ବିରାଟ ଅସ୍ଥାୟୀ ସୁସଜ୍ଜିତ ପେଣ୍ଡାଲରେ ସମାହିତ ହୁଏ। ଏଥିରେ ପ୍ରାୟ ବହୁ ସହସ୍ରାଧିକ ଦର୍ଶକ ବସି ପାରିବାର ବ୍ୟବସ୍ଥା କରାଯାଇ ଥିଲା ଓ ତାର ସାଜସଜା ଦାୟିତ୍ୱ ଆଗ୍ରାର ଏକ ବିରାଟ ସଂସ୍ଥା କେତେ ଲକ୍ଷ ଟଙ୍କା ବ୍ୟୟରେ ଠିକା ନେଇଥିଲେ। ସେହି ସଭାସ୍ଥଳରେ

ସବୁ କାର୍ଯ୍ୟକ୍ରମ ଦେଖିବା ଓ ଦେଖାଯିବା ପାଇଁ ଅଭ୍ୟର୍ଥନା ସ୍ଥଳରୁ ଆଶ୍ରମର ବିଶ୍ୱନାଥ ମନ୍ଦିର ଓ ଅନ୍ୟାନ୍ୟ ୩/୪ଟା ସ୍ଥାନରେ ଟେଲିଭିଜନ ସଂଯୋଗ କରାଯାଇ ଥିଲା। କାରଣ ସଭାସ୍ଥଳ ଗୋବର୍ଦ୍ଧନ ଧାମ ଏକ ଉଚ ସ୍ଥାନ ହୋଇଥିବାରୁ ବୃଦ୍ଧା ଓ ଅସହାୟ ଲୋକେ ଉପରକୁ ଯାଇ ନ ପାରି ମଧ ସେହି କାର୍ଯ୍ୟକ୍ରମ ସନ୍ଦର୍ଶନର ସୁଯୋଗ ପାଇଥିଲେ। ଏଠାରେ ଶିବାନନ୍ଦ ଆଶ୍ରମ ସମ୍ପର୍କରେ ଏକ ସମ୍ୟକ ଧାରଣା ଦେଲେ ଅପ୍ରାସଙ୍ଗିକ ହେବ ନାହିଁ। ଏହି ଆଶ୍ରମଟି ଋଷିକେଶ ସହରର ଅନତି ଦୂରରେ ପ୍ରଧାନ ରାସ୍ତାର ଅର୍ଥାତ୍ ଗଙ୍ଗାନଦୀର ଡାହାଣ ପାର୍ଶ୍ୱସ୍ଥ ଏକ ପାହାଡ଼ିଆ ଅଞ୍ଚଳରେ ପ୍ରାୟ ୨/୩ ଏକର ଧରି ବିସ୍ତୃତ। ଏହା ୧୯୪୦/୪୨ରୁ ଆଶ୍ରମ ରୂପେ ଗଢ଼ି ଉଠି ଏହା ଶିବାନନ୍ଦ ନଗର ନାମରେ ପରିଚିତ। ଏଥିରେ ଆଶ୍ରମବାସୀଙ୍କ ରହିବା ପାଇଁ ସାନ ବଡ଼ ବାସଗୃହ, ଶୌଚାଳୟ, ରୋଷେଇ ଘର, ସଂଗ୍ରହାଳୟ, ବିଶ୍ୱନାଥ ମନ୍ଦିର ତଥା ବହୁ ଲୋକଙ୍କ ବସିବା ଓ ଭୋଜନ ପାଇଁ ଏକ ପ୍ରଶସ୍ତ ଛାତ ଥିବା ଖାଇବା ସ୍ଥାନ ରହିଛି। ଏହା ବ୍ୟତୀତ ସେଠାରେ ଥିବା ଅନ୍ୟାନ୍ୟ ସହାୟକ ବ୍ରହ୍ମଚାରୀ, ସନ୍ନ୍ୟାସୀ ଓ ଅନ୍ୟମାନଙ୍କ ପାଇଁ ଛୋଟବଡ଼ ବାସଗୃହ ରହିଛି। ପ୍ରଧାନ ସଡ଼କରୁ ମୁଖ୍ୟ ଦ୍ୱାର ଦେଇ କେତେକ ସୁଉଚ ପାବଚ୍ଛ ପାର ହେଲେ ବାମ ପାଖେ ବର୍ତ୍ତମାନ ଆଶ୍ରମର ମୁଖ୍ୟ ସ୍ୱାମୀ ସଦ୍‌ଗୁରୁ ଚିଦାନନ୍ଦଜୀଙ୍କ ଆଶ୍ରମ କୁଟୀର ଅଛି। ଏହାଛଡ଼ା ଗତ ୧୯୭୭ ପରେ ଏକ ସ୍ୱତନ୍ତ୍ର ପରିକଳ୍ପିତ ଦାନ ପ୍ରାପ୍ତ ପରିମାଣରେ କେତେକ ସ୍ୱୟଂସମ୍ପୂର୍ଣ୍ଣ ଆବାସ ନିର୍ମାଣ କରାଯାଇଛି ଓ ତାକୁ ଗୋବର୍ଦ୍ଧନ ଧାମ ନାମକରଣ କରାଯାଇଛି। ସେହି ଧାମ ପାର୍ଶ୍ୱରେ ଯୋଗବେଦାନ୍ତ ଅରଣ୍ୟ ଏକାଡେମୀ ନାମରେ କେତେକ ବଡ଼ ବଡ଼ କୋଠରୀ ନିର୍ମିତ ହୋଇ ସେଠାକୁ ଆଗନ୍ତୁକ ଦଳଗତ ଭକ୍ତାଭକ୍ତଙ୍କୁ ଆଶ୍ରୟ ପ୍ରଦାନ କରେ। ସେହି ଗୋବର୍ଦ୍ଧନ ଧାମ ଅପେକ୍ଷାକୃତ ଉଚ୍ଚ ସ୍ଥାନରେ ଅବସ୍ଥିତ ଓ ସେଠାରେ ଏକ ପ୍ରଶସ୍ତ ଖୋଲା ପଡ଼ିଆରେ ଏହି ଶତବାର୍ଷିକୀ ମୁଖ୍ୟ ସଭାସ୍ଥଳ ବା Pendal ତିଆରି ହୋଇଥିଲା ଯହିଁରେ ବହୁ ସହସ୍ରାଧିକ ଦର୍ଶକ ବସି ପାରିବାର ବ୍ୟବସ୍ଥା କରାଯାଇ ବର୍ଷା ଓ ପବନରୁ ରକ୍ଷା ପାଇବା ପ୍ରତି ସଜାଗ ଦୃଷ୍ଟି ଦେଇ ଏକ ସୁରକ୍ଷା ପ୍ରେକ୍ଷାଳୟ ଭଳି କରାଯାଇ ବିଶିଷ୍ଟ ବ୍ୟକ୍ତିଙ୍କ ବସିବା ପାଇଁ ସୁଉଚ୍ଚ ସର୍ବଜନ ଦୃଶ୍ୟମାନ ସ୍ଥାନ ଗୁରୁଦେବ ସ୍ୱାମୀ ଶିବାନନ୍ଦଙ୍କ ଏକ ବିରାଟ ପ୍ରତିକୃତିରେ ସଜିତ ହୋଇଥିଲା। ଏସବୁ କାର୍ଯ୍ୟକ୍ରମ ଦର୍ଶନ ଶ୍ରବଣ, ପ୍ରସାର ପାଇଁ ଉପଯୁକ୍ତ ବିଜୁଳି ଓ ଇଲେକ୍ଟ୍ରୋନିକ୍ସ ଯନ୍ତ୍ରର ସୁବନ୍ଦୋବସ୍ତ କରାଯାଇ ଥିଲା। ସଭାସ୍ଥଳରେ ବିଭିନ୍ନ ଶାଖାରୁ ଆସିଥିବା ପୁସ୍ତକ, ଛବି ରିଙ୍ଗ, ଘଣ୍ଟା, ମନିପର୍ସ ଆଦି ବିକ୍ରୟର ଷ୍ଟଲମାନ ଖୋଲା ଯାଇଥିଲା। ସ୍ଥାନେ ସ୍ଥାନେ ଅସ୍ଥାୟୀ ଶୌଚାଳୟ,

ସ୍ନାନାଗାର ଓ ପାନୀୟ ଜଳର ସୁବ୍ୟବସ୍ଥା କରାଯାଇ ଥିଲା । ଏପରିକି ଯେତେ ଆଗନ୍ତୁକ ସଂଖ୍ୟା ବୃଦ୍ଧି ହେଲେହେଁ କାହାରି ରହିବା, ଖାଇବା ବା ଅନ୍ୟ କର୍ମରେ ଅବ୍ୟବସ୍ଥା ନ ଥିଲା । ଆଉ ଏକ ବିଶେଷତ୍ୱ ଯେ କାହାକୁ ଭୋଜନ ପାଇଁ ଦେୟ ଦେବାକୁ ପଡୁ ନ ଥିଲା, କିନ୍ତୁ ଅପର ପକ୍ଷରେ କୌଣସି ଆଗନ୍ତୁକ ବିନା ଦାନରେ ସେଠାରେ ଭୋଜନ କରିବା ପାଇଁ ପ୍ରସ୍ତୁତ ନ ଥିଲେ । ତେଣୁ ସ୍ୱତଃପ୍ରବୃତ୍ତ ଦାନ ଓ ବାହ୍ୟ ବଦାନ୍ୟ ବ୍ୟକ୍ତିଙ୍କ ଅଯାଚିତ ଦେୟ ପରିମାଣ କଳ୍ପନାତୀତ ଥିଲା ।

ଆଶ୍ରମର ସମ୍ମୁଖରେ ରାସ୍ତାର ଅପର ପାର୍ଶ୍ୱରେ ଠିକ୍ ଗଙ୍ଗାକୂଳରେ ଯାହାକି ମୁନେକିରେତି (ମୁନିମାନଙ୍କ ନିବାସ) ନାମରେ ପରିଚିତ ସେଠାରେ ଏକ ଦ୍ୱିତଳ ପ୍ରାସାଦ ନିର୍ମିତ ହୋଇ ତାର ତଳ ଭାଗରେ ଆଶ୍ରମ ଅଫିସ୍, ପ୍ରେସ ଓ ଔଷଧାଳୟ ଓ ଶିବାନନ୍ଦଙ୍କ ଦ୍ୱାରା ବ୍ୟବହୃତ ଗୁରୁ କୁଟୀର ଓ ତାଙ୍କ ଅନ୍ୟାନ୍ୟ ବ୍ୟବହୃତ ଜିନିଷାଦି ସୁରକ୍ଷିତ ରହିଛି । ଏହା ନିକଟରେ ଏକ ପାଣି କଳ ଓ ଜଳ ପରିଷ୍କାର ବ୍ୟବସ୍ଥା କରାଯାଇ ଆଶ୍ରମକୁ ନଦୀର ଜଳ ଯୋଗାଣର ସୁବ୍ୟବସ୍ଥା କରାଯାଇଛି ।

ଆଗରୁ ବର୍ଣ୍ଣିତ ଯୋଗବେଦାନ୍ତ ଅରଣ୍ୟ ବିଦ୍ୟାପୀଠ ଏକ ବିଶ୍ୱବିଦ୍ୟାଳୟ ସ୍ତରୀୟ ମାନ୍ୟତାପ୍ରାପ୍ତ ହୋଇ ବର୍ଷକୁ ୨/୩ଟି ସାଧନା ଶିବିର ଓ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ହାତକୁ ନେଇ ବିଭିନ୍ନ ସ୍ୱେଚ୍ଛାସେବୀ ଯୁବକ ଓ ଅନ୍ୟାନ୍ୟ ସ୍ୱତଃପ୍ରବୃତ୍ତ ବ୍ୟକ୍ତିବିଶେଷଙ୍କୁ ତାଲିମ କରି ପ୍ରମାଣ ପତ୍ର ଦେବାର ବ୍ୟବସ୍ଥା ଅଛି । ଆଶ୍ରମରୁ ଇଂରାଜୀ ଓ ହିନ୍ଦୀରେ Divine Life ଦୁଇଟି ମାସିକ ଆଶ୍ରମର ମୁଖପତ୍ର ଓ ଅନ୍ୟାନ୍ୟ ସ୍ୱାମୀଜୀମାନଙ୍କ ଲିଖିତ ପୁସ୍ତକାଦି ପ୍ରେସରୁ ଛପାଯାଇ ପ୍ରକାଶିତ ଓ ବିତରିତ ଓ ବିକ୍ରୟ କରାଯାଇ ଗୁରୁବାଣୀ ପ୍ରଚାର ଓ ପ୍ରସାର ଦିଗରେ ପ୍ରଯତ୍ନ କରାଯାଉଛି । ମୋଟ ଉପରେ ଏହା ଏକ ଆଦର୍ଶ ଆନ୍ତର୍ଦେଶୀୟ ଆଧ୍ୟାତ୍ମିକ ସଂସ୍ଥା । ପୁଣ୍ୟତା ଓ ମାନ୍ୟତା ଅର୍ଜନ କରି ପୃଥିବୀର ସର୍ବତ୍ର ଆଦୃତ ହୋଇ ରହିଛି । ବର୍ତ୍ତମାନ ଶିବାନନ୍ଦ ଶତବାର୍ଷିକୀ କାର୍ଯ୍ୟକ୍ରମର ପର ଦିବସର ବର୍ଣ୍ଣନା ଏକାନ୍ତ ବାଞ୍ଛନୀୟ ।

ପ୍ରାୟ ୪.୯.୮୭ରୁ ଶତାବ୍ଦୀ ସମାରୋହ ଆରମ୍ଭ ହୋଇ ବିଭିନ୍ନ ଗଣମାନ୍ୟ ବ୍ୟକ୍ତି, ସାଧୁସନ୍ଥ ଓ ପ୍ରବଚକ ତଥା ସଙ୍ଗୀତଜ୍ଞ ଓ ପ୍ରମୁଖ ମୁନିଋଷୀମାନଙ୍କ ପ୍ରବଚନ ସ୍ୱାମୀ ଚିଦାନନ୍ଦଜୀ ମହାରାଜଙ୍କ ଅଧ୍ୟକ୍ଷତାରେ ସୁପରିଚାଳିତ ହୋଇ ୭.୯.୮୭ରେ ପୂର୍ବାହ୍ନ କାର୍ଯ୍ୟକ୍ରମ ପରେ ଭୋଜନ ସାରି ସହର ପରିକ୍ରମା ସକାଶେ ସମସ୍ତ ଆଗନ୍ତୁକଙ୍କୁ ନେଇ ବିଭିନ୍ନ ପ୍ରଦେଶ ଓ ସଂସ୍ଥାର ପତାକା ଧରି କାର୍ଯ୍ୟକ୍ରମ ଆୟୋଜିତ ହୋଇଥିଲା । ଏଥିରେ ଆଗନ୍ତୁକ ସମସ୍ତେ ଆବାଳ ବୃଦ୍ଧ ବନିତା

ସ୍ୱତଃପ୍ରବୃତ୍ତ ହୋଇ ଯୋଗ ଦେଇ ପ୍ରାୟ ୩/୪ କିଲୋମିଟର ଦୂରତାରେ ସାରା ସହର ପରିଭ୍ରମଣ କରି ଏକ ଅଭୂତପୂର୍ବ ପରମ୍ପରା ସୃଷ୍ଟି କଲେ । ସେଠାକାର ସ୍ଥାନୀୟ ଓ ଅନ୍ୟାନ୍ୟମାନଙ୍କ ମଧ୍ୟରେ ଏକ ଅଭିନବ ସ୍ପନ୍ଦନ ଓ ଜାଗରଣ ସୃଷ୍ଟି କରି ଗୁରୁଜୀଙ୍କ ଜୀବନୀ, ଲେଖା ଓ ଆଦର୍ଶର ସୁପରିକଳ୍ପିତ ଯୋଜନାର ପ୍ରଚାର ଓ ପ୍ରସାରର ଆୟୋଜନ କରିଥିଲେ । ପ୍ରକୃତରେ ଏପରି ଏକ ସମାରୋହ ସାରା ଭାରତରେ ସମସ୍ତଙ୍କ ମୁଖରେ ଏକ ସବିଶେଷ ଘଟଣା ବୋଲି ସ୍ୱୀକୃତ ହୋଇଥିଲା ।

ସେହି ଉତ୍ସବ ପାଇଁ ୮.୯.୮୭ ଶେଷ ଦିନ ଓ ସେହି ଦିନ ବୃହତ୍ ଗୁରୁପାଦ ପୂଜା ପ୍ରାତଃ ୭ଟାରୁ ୧୦ଟା ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥିଲା । ଏହା ଉତ୍ସବର ସର୍ବୋତ୍କୃଷ୍ଟ ଓ ଆକର୍ଷଣୀୟ କାର୍ଯ୍ୟକ୍ରମ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ଉତ୍ସବ ପାଳନରେ ସନ୍ଧ୍ୟାରେ ଅନ୍ୟାନ୍ୟ କାର୍ଯ୍ୟକ୍ରମ ସହ ସାଂସ୍କୃତିକ କାର୍ଯ୍ୟକ୍ରମର ଆୟୋଜନ ଏକ ସୁସଂକଳ୍ପିତ ଯୋଜନା । ଏହି ସାଂସ୍କୃତିକ କାର୍ଯ୍ୟକ୍ରମ ପାଇଁ ବିଭିନ୍ନ ରାଜ୍ୟରୁ ଅର୍ଥାତ୍ ଆସାମ, ଉତ୍ତର ପ୍ରଦେଶ, ବିହାର ତଥା ଦକ୍ଷିଣାଞ୍ଚଳର ରାଜ୍ୟମାନଙ୍କରୁ ଦଳଗତ ଓ ବ୍ୟକ୍ତିଗତ କଣ୍ଠଶିଳ୍ପୀ ଓ ଅନ୍ୟାନ୍ୟ ଆଧ୍ୟାତ୍ମିକ ଜାଗରଣ ପାଇଁ ଏକାଙ୍କିକା ଓ ନାଟକାଦି ପ୍ରସ୍ତୁତ କରାଯାଇ ଅଭିନୀତ ହେଲା । ସର୍ବଭାରତୀୟ ସ୍ତରର ସୁଖ୍ୟାତି ସମ୍ପନ୍ନ ହରି ଓଁ ଶରଣ ଓ ତାଙ୍କ ସ୍ତ୍ରୀ ତଥା ଆଧୁନିକ ଜଗତର ଅନ୍ୟତମ ଜନପ୍ରିୟ କଣ୍ଠଶିଳ୍ପୀ ଅନୁପ ଜଲୋଟା ଓ ତାଙ୍କ ପିତା ଆସି ନିଜର ସୁମଧୁର କଣ୍ଠରେ ଭଜନ ପରିବେଷଣ କରି ଦର୍ଶକମାନଙ୍କୁ ମୁଗ୍ଧ କରିଥିଲେ । ଏପରି ଭାବେ ୮.୯.୮୭ରେ ଏହି ଉତ୍ସବର ଉଦ୍‌ଯାପନ କାର୍ଯ୍ୟକ୍ରମ ପରେ ପରଦିନ ଶ୍ରଦ୍ଧାଳୁଗଣ ସ୍ୱାମୀଜୀ ଚିଦାନନ୍ଦ ମହାରାଜଙ୍କ ପରାମର୍ଶ ଓ ନିର୍ଦ୍ଦେଶକ୍ରମେ ଯେ ଯାହାର ସ୍ୱସ୍ଥାନ ଉଦ୍ଦେଶ୍ୟରେ ବା କେହି କେହି ବଦ୍ରିନାଥ, କେଦାରନାଥ, ଗଙ୍ଗୋତ୍ରୀ ଓ ଯମୁନୋତ୍ରୀ ଆଦି ଦର୍ଶନରେ ମୁହାଇଲେ । ଆମ୍ଭେମାନେ ମଧ୍ୟ ଆମ ଦଳର ସମସ୍ତଙ୍କ ମତାମତ ନେଇ ଓ ସୁବିଧାନୁସାରେ ରାଉରକେଲା, ସୁନ୍ଦରଗଡ଼ ଓ ବରଗଡ଼ର ଦର୍ଶକଗଣ ଏକ ସ୍ୱତନ୍ତ୍ର ବସ୍ ଯୋଗାଡ଼ କରି ଯିବାକୁ ୯.୯.୮୭ ଦିନ ସ୍ଥିର କଲୁଁ । ଏଥିପାଇଁ ସ୍ୱାମୀଜୀଙ୍କ ଅନୁମତି ନେଇଥିଲୁଁ । କିନ୍ତୁ ଏଠାରେ ଏକ ସୂଚନାଯୋଗ୍ୟ ଘଟଣାର ବିବରଣୀ ବିଶେଷ ଆବଶ୍ୟକୀୟ ମନେ ହୁଏ । ୭.୯.୮୭ର ନଗର ପରିକ୍ରମା ପରେ ମୋର ସ୍ତ୍ରୀ ଯେ କି ପଦବ୍ରଜରେ ସମସ୍ତ ନଗର ଶୋଭାଯାତ୍ରାରେ ଭାଗ ନେଇ ସନ୍ଧ୍ୟାରେ ନିଜ ବସାକୁ ଫେରିବା ପରେ ରାତିରେ ହଠାତ୍ ଅସୁସ୍ଥ ହୋଇ ପଡ଼ିଲେ । ଅର୍ଥାତ୍ ରାତ୍ରରେ ଦେହ କ୍ଲାନ୍ତ ହେତୁ ପରଦିନର ବୃହତ୍ ପାଦପୂଜା ଦର୍ଶନ ଛଡ଼ା ଅନ୍ୟ କୌଣସି କାର୍ଯ୍ୟକ୍ରମରେ ଭାଗ ନେଇ ନ ପାରି

କେବଳ ବସାରେ ଶୋଇ ରହିଥିଲେ । ତଥାପି ମୁଁ ଗୁରୁପଦ ଆଶ୍ରା କରି ପରଦିନ ବଦ୍ରିନାଥ ଯାତ୍ରା ପାଇଁ ଦଳର ଆୟୋଜକଙ୍କୁ ଆମର ୨ ଜଣଙ୍କର ନାମ ଦେଇ ଅଗ୍ରିମ କିଛି ମୂଲ୍ୟ ଦେଇ ଦେଇଥିଲି । ଆମ ସଙ୍ଗେ ବରଗଡ଼ରୁ ଯାଇଥିବା ମୋର ସ୍ତ୍ରୀଙ୍କ ବଡ଼ ବାପାଙ୍କ ଜ୍ୟେଷ୍ଠା କନ୍ୟା ଶାନ୍ତି ଓ ତାଙ୍କ ଶ୍ରୀ ରାମନାରାୟଣ ବାବୁ ଯାଇଥିଲେ ଓ ସେମାନେ ମଧ୍ୟ ଆମର ସହଯାତ୍ରୀ ହୋଇ ବଦ୍ରିନାଥ ଯିବାକୁ ଅଭିଳାଷୀ ହୋଇ ନିଜର ମତାମତ ଓ ନାମ ଆଦି ଦେଇଥିଲେ । ଏପରି ଭାବେ ୮.୯.୮୭ ରାତିଟି ପାର ହେଲା ବେଳକୁ ମୋର ସ୍ତ୍ରୀଙ୍କ ଅସୁସ୍ଥତା କିଛି କମି ଯାଇଥିଲା । ତଥାପି ମୁଁ ତାଙ୍କ ଶାରୀରିକ ଦୁର୍ବଳତା ପୂର୍ବ ଦିନସାରା ଉପବାସ ହେତୁ ୯.୯.୮୭ରେ ବଦ୍ରିନାଥ ଦର୍ଶନକୁ ବାତିଲ କରିବା ପାଇଁ ପ୍ରସ୍ତାବ ଦେବାରୁ ସେ ମୋତେ ଯାଇ ପାରିବାର ସାହସ ଦେଲେ । ତେଣୁ ସେ ଦିନ ସକାଳୁ ନିତ୍ୟକର୍ମ ସାରି ସାମାନ୍ୟ ଲୁଗାପଟା ସହ ମୁନେକିରେତିର ଆଶ୍ରମର ଅଫିସ୍ ନିକଟକୁ ବାହାରିଲୁଁ । ବାକୀ ଆମର ଅନ୍ୟାନ୍ୟ ଜିନିଷପତ୍ର ସେହି ପରମାର୍ଥ ନିକେତନର ଏକ କୋଠରୀରେ ଏକାଠି ରଖି ବାକୀ ସବୁ କୋଠରୀ ତ୍ୟାଗ କରି ତହିଁର ତାଲାଚାବି ଆଦି ମେନେଜରଙ୍କଠାରେ ଜିମା ଦେଇ ଆମର ବଦ୍ରିନାଥ ଗମନ ଓ ୩/୪ ଦିନ ପରେ ଫେରି ଜିନିଷ ସବୁ ନେବାର ବିଷୟ ଜଣାଇଲୁଁ । ଅବଶ୍ୟ ପ୍ରକୃତ ମେନେଜର ସେତେବେଳେ ଅନୁପସ୍ଥିତ ଥିଲେ । ଆମେ କେବଳ ଗୋଟିଏ କୋଠରୀ ଚାବି ରଖି ବାକୀ ସବୁ ଛାଡ଼ି ଦେବାର ଜଣାଇଲୁଁ । ଆମେ ଆସି ରାସ୍ତାରେ ବସ୍ ପାଇଁ ଅପେକ୍ଷା କରିବା ସମୟରେ ମୋର ସ୍ତ୍ରୀ ଦୁର୍ବଳତା ହେତୁ ସାମାନ୍ୟ ବାନ୍ତି କଲେ ଓ ଅସୁସ୍ଥତା ପ୍ରକାଶ କରି କିଛି ସମୟ ନିର୍ବାକ୍ ହେଲେ । ସେତେବେଳେ ମୁଁ ଆଉ କିଛି ଉପାୟ ନ ଦେଖି ମୋର ଯାତ୍ରାର ପ୍ରସ୍ତାବକୁ ମନରେ ଅଗ୍ରାହ୍ୟ କରି ତାଙ୍କୁ କିଛି କିଛି ପାନୀୟ ଗରମ କ୍ଷୀର ଓ ଚା ଟିକିଏ ପିଇଲା ପରେ ସେ ଆଶ୍ୱସ୍ତ ହେଲେ । ତାପରେ ତାଙ୍କୁ ବସାକୁ ଫେରିଯିବା କଥା କହିବାରୁ ସେ ଦମ୍ଭ କରି ନିଶ୍ଚୟ ବଦ୍ରିନାଥ ଯିବାକୁ କହି ସୁସ୍ଥ ଭାବେ ବସି ନିଜର ସିଦ୍ଧାନ୍ତ ଜଣାଇଲେ । ମୁଁ ମଧ୍ୟ ତାଙ୍କ ପ୍ରସ୍ତାବରେ ଏକମତ ହୋଇ ଯିବାକୁ ମନେ ମନେ ଗୁରୁଙ୍କୁ ଓ ଈଶ୍ୱରଙ୍କୁ ଧ୍ୟାୟି ମନସ୍ଥ କଲି । ଠିକ୍ ସମୟରେ ବସ୍ ଆସିବାରୁ ଆମେ ସମସ୍ତେ ବସ୍‌ରେ ବସି କେଦାରନାଥ ବଦ୍ରିନାଥ ଦିଗରେ ଅଗ୍ରସର ହେଲୁଁ । ଗଲାବେଳେ ଗଙ୍ଗା ନଦୀକୂଳେ ହିମାଳୟର କଡ଼େ କଡ଼େ ଏକ ଅଣ ଓସାରିଆ ରାସ୍ତାରେ ଯିବା ବେଳେ ପଥ ପାର୍ଶ୍ୱର ଦୃଶ୍ୟ ଅତି ମନୋରମ ଦେଖା ଯାଉଥିଲା । ବାଟରେ ଏକ ପଥପ୍ରାନ୍ତ ହୋଟେଲରେ ମଧ୍ୟାହ୍ନ ଭୋଜନ ପରେ ପୁଣି ଯାତ୍ରା ଆରମ୍ଭ କରି ସନ୍ଧ୍ୟାରେ ଉତ୍ତର କାଶୀରେ ପହଞ୍ଚିଲୁଁ ଓ ସେତେବେଳେ ସେଠାରେ ବର୍ଷା ହେଉଥାଏ । ତେଣୁ ଶୀଘ୍ର ରାତ୍ର ଭୋଜନ ରୋଟି/

ଜଣେ ଶିକ୍ଷକ...

ତରକାରୀ ସାରି ବିଶ୍ରାମ ନେଲୁଁ।

ସକାଳୁ ନିତ୍ୟକର୍ମ ସାରି କେଦାରନାଥ ଯିବା ପଥରେ ଗୌରୀକୁଣ୍ଡରେ ଦିନ ୯ଟା ବେଳେ ପହଞ୍ଚି ମଧ୍ୟାହ୍ନ ଭୋଜନ ପାଇଁ ନିତ୍ୟକର୍ମ ଗାଧୁଆ ପାଧୁଆ ସକାଶେ ଏକ ବିଶ୍ରାମାଗାରରେ ରହିଲୁଁ। ସେଠାରେ ଏକ କୁଣ୍ଡରୁ ଗରମ ପାଣି ବାହାରୁଥିଲା। ସେଠାରେ ସ୍ନାନ ସାରି ଆସି ଭୋଜନ ପରେ କେଦାରନାଥ ଯିବାକୁ ସ୍ଥିର କଲୁଁ। ଏଠାରେ ଆମ ବସ୍‌ଟି ଅପେକ୍ଷା କଲା। ଆମ ସଙ୍ଗରେ ଯାଇଥିବା ରାମନାରାୟଣ ବାବୁ ତାଙ୍କ ଶାରୀରିକ ଦୁର୍ବଳତା ଓ ମାନସିକ ସାହସ ଅଭାବରୁ ଉଚ୍ଚକୁ ଉଠିବାକୁ ଅମଙ୍ଗ ହେଲେ ଓ ବିଶ୍ରାମାଳୟରେ ରହିବା ପାଇଁ ସ୍ଥିର କରି ଆମ୍ଭମାନଙ୍କୁ ଯାଅ ବୋଲି ମତ ଦେଲେ। ଏଣୁ ମୁଁ, ମୋର ସ୍ତ୍ରୀ, ତାଙ୍କ ଭଉଣୀ ଶାନ୍ତି ତଥା ଆମ ସହଯାତ୍ରୀ ସୁନ୍ଦରଗଡ଼ର ଯନ୍ତ୍ରୀ ବିଭାଗର ବଡ଼ ବାବୁ ପାଣି ବାବୁ ଏକ ସଙ୍ଗେ ଦଳ ହୋଇ ଏକାଠି ଚାଲିବା ସ୍ଥିର କଲୁଁ। ଅନ୍ୟମାନେ ମଧ୍ୟ ନିଜ ନିଜ ସମ୍ପର୍କ ଓ ପରିଚୟ ଅନୁସାରେ ଦଳ ହୋଇ ଯିବାର ଆରମ୍ଭ କଲେ। ପ୍ରାୟ ଦିନ ୧୨ଟା ପରେ ସେଠାକାର ଦୋକାନରୁ ଯୋତା, ପ୍ଲାଷ୍ଟିକ ଓଢ଼ଣୀ ଓ ପର୍ବତ ଆରୋହଣର ସହାୟକ ରୂପେ ଏକ ଲୁହା ଲାଗିଥିବା ଦଣ୍ଡା କିଣି କେଦାରନାଥ ପଥରେ ଅଗ୍ରସର ହେଲୁଁ। ଗୌରୀକୁଣ୍ଡରୁ କେଦାରନାଥର ଦୂରତା ୧୪ କି.ମି.। ସେଠାକୁ ଯିବା ପାଇଁ ଚାଲି ଚାଲି ଯିବା ବ୍ୟତୀତ ଦୋଳି/ଘୋଡ଼ା ଓ ପାଲକୀରେ ଯିବାର ବ୍ୟବସ୍ଥା ଅଛି। ଏସବୁ ପାଇଁ ବିଭିନ୍ନ ବିଭିନ୍ନ ଦର। ଦୋଳିର ଅର୍ଥ ଗୋଟି ଝୁଡ଼ିରେ ବସାଇ ଅନ୍ୟ ଜଣେ ମୁଣ୍ଡରେ ବୋହି ନେବା, ପାଲକୀର ଅର୍ଥ ୨ ଜଣ/୪ ଜଣ ମିଶି ଏକ କାଠ ପଟାର ଖଟରେ ବସାଇ ନିଆଯାଏ। ଘୋଡ଼ାରେ ଗଲେ ଘୋଡ଼ାର ସଇସ ଯାତ୍ରୀଙ୍କୁ ଘୋଡ଼ାରେ ବସାଇ ଘୋଡ଼ାକୁ ଧରି ବା ପାଖରେ ଥାଇ ଘୋଡ଼ା ସଙ୍ଗେ ଚାଲିଥାଏ। ଦୋଳିରେ ଗଲେ ପ୍ରାୟ ୬୦/୭୦ ଟଙ୍କା ମଜୁରୀ ଘୋଡ଼ା ପାଇଁ ଯିବା ଆସିବା ଟ.୧୦୦/୧୧୦ଙ୍କା ଓ ପାଲକୀରେ ଯିବାକୁ ହେଲେ ପ୍ରାୟ ଟ.୧୫୦ ରୁ ଟ.୨୦୦ଙ୍କା ପର୍ଯ୍ୟନ୍ତ ସେତେବେଳେ ଦେବାକୁ ପଡୁଥିଲା।

ଆମ୍ଭେମାନେ ଚାରି ଜଣଯାକ ଚାଲି ଯିବାର ମନସ୍ଥ କରି ଯାତ୍ରା ଆରମ୍ଭ କଲୁଁ। ବାଟରେ ବର୍ଷା ହେବାରୁ ଆମର ପିନ୍ଧିଥିବା ଲୁଗାପଟା ତିନ୍ତି ଗଲା। ତେଣୁ ଭିଜା ଲୁଗାର ଓଜନ ବଢ଼ିଗଲା ଓ ଚାଲିବାରେ କଷ୍ଟ ହେଲା। ଗଲା ବେଳେ ବାଟରେ ବିଶ୍ରାମ ନେବା ପାଇଁ ବା ଚା, ଜଳପାନ ପାଇଁ ବିଭିନ୍ନ ସ୍ଥାନ ରହିଛି। ସେମାନେ ସମସ୍ତେ ନିଜର ଇଚ୍ଛାନୁସାରେ ଚା/ଜଳଖିଆ ବା ରୋଟି ତରକାରୀ ଖାଇବାର ବ୍ୟବସ୍ଥା ଅଛି। ପ୍ରାୟ ୩ ଘଣ୍ଟା ଚାଲିବା ପରେ ମଧ୍ୟସ୍ଥ ଏକ ବିଶ୍ରାମ ଘାଟିରେ ଚା

ଜଳଖିଆ ଖାଇ ଆଗକୁ ଯିବାକୁ ସ୍ଥିର କଲୁଁ । ସେଠାରେ ଘୋଡ଼ାମାନଙ୍କୁ ମଧ୍ୟ ବିଶ୍ରାମ ଦେଇ ତାଙ୍କୁ ଘାସ ଆଦି ଖାଇବାକୁ ଦିଆଯାଏ । ପ୍ରାୟ ୮/୧୦ କିଲୋମିଟର ଯିବା ପରେ ମୋ ସ୍ତ୍ରୀ ଓ ଶାନ୍ତି ଚାଲି କରି ଯିବା ପାଇଁ ଅସମର୍ଥ ହେବାରୁ ତାଙ୍କ ପାଇଁ ଆନୁପାତିକ ଅଳ୍ପ ମୂଲ୍ୟରେ ଘୋଡ଼ାର ବନ୍ଦୋବସ୍ତ କରି ପଠାଇଲି ଓ ଆମେ, ପାଣି ବାବୁ ଆଦି ଚାଲି କରି ଯିବାର ସ୍ଥିର କଲୁଁ । ସେତେବେଳେ ପ୍ରାୟ ସନ୍ଧ୍ୟା ୫ଟା । କିନ୍ତୁ ସେମାନଙ୍କୁ ଏକାକୀ ପଠାଇବା ଅନୁଚିତ ମନେ କରି ମୁଁ ମଧ୍ୟ ଗୋଟିଏ ଘୋଡ଼ାରେ ତାଙ୍କର ଅନୁଗମନ କଲି । ଗଲାବେଳେ ପାର୍ବତ୍ୟ ପଥଟି ବନ୍ଧୁର ଓ ପଥରପୂର୍ଣ୍ଣ - ଏକ ଆଡ଼େ ଗଙ୍ଗା ନଦୀ ଓ ଅପର ପାର୍ଶ୍ୱରେ ହିମାଳୟ ପର୍ବତର ଅତ୍ୟୁଚ୍ଚ ପାର୍ଶ୍ୱର ସଂକୀର୍ଣ୍ଣ ରାସ୍ତା । ସେଠାରୁ ଗଙ୍ଗା ନଦୀ ଧୀରେ ଧୀରେ ସଂକୀର୍ଣ୍ଣ ହୋଇ ଯାଉଥାଏ ଓ ଉପରୁ ତାର ଅଣଓସାରିଆ ସୁଗଭୀର ଶଯ୍ୟାକୁ ଦୃଷ୍ଟି ପକାଇଲେ ଛାତିରେ ହୃତକମ୍ପ ସୃଷ୍ଟି ହୋଇ ଛନକା ଲାଗେ । ହେଲେହେଁ ଈଶ୍ୱରଙ୍କୁ ଓ ବାବା କେଦାରନାଥଙ୍କୁ ଧ୍ୟାନ କରି ଆଗେଇବାକୁ ହେଉଥାଏ । ଏପରି ଭାବେ ଅଶ୍ୱାରୋହଣ କରି ସନ୍ଧ୍ୟା ସାଢ଼େ ୬ ପରେ ଯାଇ କେଦାରନାଥ ପହଞ୍ଚିଲା ବେଳକୁ ବିଭିନ୍ନ ଅଞ୍ଚଳର ପଣ୍ଡାମାନେ ଅପେକ୍ଷା କରି ରହିଥାନ୍ତି ପାଛୋଟି ନେବାକୁ । ସେମାନେ ସେମାନଙ୍କ ବିଶ୍ରାମାଳୟକୁ ନେଇ ରେଜେଇ, ତକିଆ ଓ ନିଆଁ ଚୂଲି ଯୋଗାଇ ଶୀତରୁ ମୁକ୍ତି ପାଇବାର ସହାୟକ ହୁଅନ୍ତି । ଯାହା ମୋର ମନେ ହୁଏ ସେଠାରେ ରେଜେଇ ଓ ତକିଆ ଦେବା ପାଇଁ ସାଧାରଣତଃ ସାମାନ୍ୟ ଭଡ଼ା ନେଇ ଥାଆନ୍ତି । କିନ୍ତୁ କେଦାରନାଥର ସେହି ପଣ୍ଡା ଆମଠୁ କିଛି ଦେୟ ନ ନେଇ ପରେ ଶେଷରେ ଯାହା ଦେବେ ବୋଲି କହି ଶୀଘ୍ର ନିଆଁ ଜାଳି ଆଣି ଦେଲେ । ପ୍ରକାଶ ଥାଉ କି ଏତେ ଉଚ୍ଚ ସ୍ଥାନରେ ଆବଶ୍ୟକୀୟ ପରିମାଣ ଅମ୍ଳଜାନ ଅଭାବ ବା ବାୟୁର ସାନ୍ଦ୍ରତା ଦୁର୍ବଳ ଥିବାରୁ ବହୁ କଷ୍ଟରେ ନିଆଁ ଜାଳି ହୁଏ । ଯାହା ହେଉ ରାତିରେ ରୋଟି ତରକାରୀ ଖାଇ ବିଶ୍ରାମ ନେଲୁଁ । ସକାଳେ ଉଠି ନିତ୍ୟକର୍ମ ସାରି କେଦାରନାଥ ମନ୍ଦିରକୁ ଦର୍ଶନ ପାଇଁ ବାହାରିଲୁଁ । ସେଠାରେ ପୂଜା ପାଇଁ ମୁଢ଼ି, ଚିନି ଗୋଲି ଓ ସୁଖା ଅରଣ୍ୟ ପୁଷ୍ପ, ସିନ୍ଦୁର ଓ ନଡ଼ିଆ ଆଦି ମିଳେ । ତାକୁ ନେଇ ମନ୍ଦିର ଭିତରକୁ ଯାଇ ପୂଜା କରିବାକୁ ଦେଖିଲୁ ଯେ କେଦାରନାଥ ଲିଙ୍ଗଟି ଏକ ବିରାଟ ଚଟାଣ ପଥର ବିଶେଷ ଓ ତାର ଚତୁର୍ଦ୍ଦିଗରେ ଦଳ ଦଳ ହୋଇ ସେବକ ଓ ଯାତ୍ରୀମାନେ ବସି ପୂଜା ଅର୍ଚ୍ଚନା କରନ୍ତି । ସେଠାରୁ ପୂଜା ସାରି ବାହାରି ଆସିଲୁଁ ଓ ବାଟରେ ଚା ଖାଇ ସେଠାରୁ ପ୍ରତ୍ୟାଗମନ ପର୍ବ ଆରମ୍ଭ ହେଲା । ସେଠାରେ ବୁଲୁଥିବା ପଶୁ ଓ ଜନ୍ତୁଙ୍କୁ ଦେଖିଲୁଁ ଯେ ସେମାନଙ୍କ ଦେହ ଘନ ଲୋମ ବିଶିଷ୍ଟ ଓ

ତାହା ତାଙ୍କୁ ପ୍ରବଳ ଶୀତ ପ୍ରକୋପରୁ ରକ୍ଷା କରେ।

ସେଠାରୁ ଆସି କେଦାରନାଥ ବସ୍ତି ଅଞ୍ଚଳର ଶେଷ ଭାଗରେ ଗୌରୀକୁଣ୍ଡ ଫେରିବା ପାଇଁ ଘୋଡ଼ାମାନେ ନିଜ ନିଜ ମାଲିକ ସହ ଅପେକ୍ଷାରତ। ତେଣୁ ସେଠାକୁ ଆସି ଆମେ ୪ଟି ଘୋଡ଼ା ଟ.୫୫ ଲେଖାଏଁ ଦେଇ ପ୍ରାୟ ୭ଟାରେ ବାହାରି ୧୦ଟାରେ ଫେରି ଆସିଲୁଁ। ଗୌରୀକୁଣ୍ଡ ଆସି ସେହି ଉଷ୍ମ ଜଳକୁଣ୍ଡରେ ସ୍ନାନାଦି ସାରି ଭୋଜନ ପାଇଁ ନିକଟସ୍ଥ ଭୋଜନାଳୟକୁ ଯିବା ପାଇଁ ରାମନାରାୟଣ ବାବୁଙ୍କ ମତାମତ ଲୋଡ଼ିଲୁଁ। କାରଣ ପୂର୍ବ ଦିନ, ରାତିଟା, ସେ ଦିନ ସକାଳ ପର୍ଯ୍ୟନ୍ତ ସେଠାରେ ରହି ସେଠାକାର ବିଭିନ୍ନ ବିଷୟରେ କିଛି ଜ୍ଞାନ ହୋଇଥିଲା। ସେଠାରେ ଭୋଜନ ସାରି ବସ୍‌କୁ ଆସି ଫେରିବା ପାଇଁ ପ୍ରସ୍ତୁତ ହେଲୁଁ। ଇତି ମଧ୍ୟରେ କେଦାରନାଥର ଜଣେ ପଣ୍ଡା ପହଞ୍ଚି ଆମ୍ଭମାନଙ୍କୁ କିଛି ପ୍ରସାଦ ଦେଇ କିଛି ଦକ୍ଷିଣା ପାଇଁ ପ୍ରୟାସ କଲେ। ଉକ୍ତ ମହାଶୟ କେଦାରନାଥରୁ ଚ଼ାଲି ଚ଼ାଲି ଆସିଥିଲେ ଓ ଆମ୍ଭମାନଙ୍କଠାରୁ କିଛି ପାଇ ଫେରିଗଲେ।

ଆମେ ସେଠାରେ ବସ୍‌ରେ ପ୍ରାୟ ୧୨ଟା ବେଳେ ବାହାରି ପ୍ରାୟ ସନ୍ଧ୍ୟା ୬ଟା ବେଳେ ରୁଦ୍ରପ୍ରୟାଗରେ ପହଞ୍ଚି ସେଠାରେ ଏକ ଲଜ୍‌ରେ କେତେକ କୋଠରୀ ଭଡ଼ା ନେଇ ରହିଲୁଁ। ଲଜ୍ ମାଲିକ ଆମମାନଙ୍କୁ ରେଜେଇ, ତକିଆ ଆଦି ଯୋଗାଇ ତାର ଶୁଳ୍କ ନେଇଥିଲେ। ହେଲେହେଁ ଏତେ ସୁଉଚ୍ଚ ଶୀତଳ ସ୍ଥାନରେ ଏସବୁ ଯୋଗାଇ ସର୍ବସାଧାରଣଙ୍କୁ ସାହାଯ୍ୟ କରିବା ବଦାନ୍ୟତା ଓ ସମାଜସେବା ମନୋଭାବର ନିଚ୍ଛକ ପରିଚ଼ାୟକ। ସେଠାରେ ରାତ୍ରି ବିଶ୍ରାମ ପରେ ସକାଳରୁ ନିତ୍ୟକର୍ମ ସାରି ଲଜର ଶୁଳ୍କ ଦେଇ ଚ଼ା ଆଦି ଖାଇ ବଦ୍ରିନାଥ ଅଭିମୁଖେ ଯାତ୍ରା କଲୁଁ।

ବାଟରେ ଏକ ସ୍ଥାନରେ ଜଳଖିଆ କରି ପ୍ରାୟ ୧୨ଟା ବେଳେ ଯାଇ ଯୋଷୀମଠରେ ପହଞ୍ଚିଲୁଁ। ସେଠାରେ ପହଞ୍ଚି ଆଗକୁ ଯିବା ପାଇଁ ଉପର ଆଡୁ ସଙ୍କେତ ପାଇଁ ଅପେକ୍ଷା କରିବା ବେଳେ ସେଠାରେ କେତେକ ମନ୍ଦିର ଦର୍ଶନ କରିବାକୁ ଗଲୁଁ। ପ୍ରତ୍ୟେକ ମନ୍ଦିରର ନିଜ ନିଜ ସେଓ ଓ ନାସପାତି ବଗିଚ଼ା ରହିଛି। ସେଠାକୁ ଗଲେ ସେମାନେ ଅତି ଆନନ୍ଦରେ ସଦ୍ୟ ଫଳ ତୋଳି ଭଗବାନଙ୍କୁ ଅର୍ପଣ କରି ପ୍ରସାଦ ରୂପେ ଦିଅନ୍ତି। କୌଣସି ବ୍ୟକ୍ତି ନିଜେ ସେ ଗଛରୁ ଫଳ ତୋଳିବାକୁ ଚ଼ାହିଁଲେ କେହି ବାରଣ କରିବାର ଦେଖା ନ ଥିଲା। ଅବଶ୍ୟ ସେଠାରେ ସଦ୍ୟ ତୋଳାଯାଇ ଥିବା ସେଓ ଓ ନାସପାତି କିଲୋପ୍ରତି ଟ୨/୩ଙ୍କାରୁ ବେଶି ନ ଥିଲା। ତେଣୁ ଆମେ ଆନନ୍ଦରେ କିଛି ଫଳ କିଣିଲୁଁ। କିନ୍ତୁ ସଙ୍ଗରେ ଯେପରି କୌଣସି

ଝୁଲାମୁଣା ଆଦି ନେଇ ନ ଥିବାରୁ ଆମେ କିଣି ଆଣିବାକୁ ଇଚ୍ଛା ଥିଲେ ମଧ୍ୟ ଆଣି ପାରି ନ ଥିଲୁଁ । ସେଠାରୁ ସଙ୍କେତ ପାଇ ଉପରକୁ ଅଗ୍ରସର ହେଲୁଁ ଓ ପ୍ରାୟ ୪ଟା ବେଳେ ବଦ୍ରିନାଥ ପହଞ୍ଚି ସେଠାରେ ବିର୍ଲାଙ୍କ ନବନିର୍ମିତ ଧର୍ମଶାଳାରେ ବିନା ଶୁଳ୍କରେ ରହିବାର ବ୍ୟବସ୍ଥା କଲୁଁ । ଅବଶ୍ୟ ରେଜେଇ ଓ ତକିଆ ପାଇଁ ଅନ୍ୟ ସ୍ଥାନ ଭଳି ଶୁଳ୍କ ପାଇଁ କଟକଣା ନ ଥିଲା । ତେଣୁ ଆମେ ଆରାମରେ ରହିଲୁଁ । ସେଠାରେ ନିତ୍ୟକର୍ମ ସାରି ସନ୍ଧ୍ୟା ପୂର୍ବରୁ ବଦ୍ରିନାଥ ମନ୍ଦିର ଦେଖିବାକୁ ବାହାରି ପଡ଼ିଲୁଁ । ସେଠାରୁ ମନ୍ଦିରଟି ପ୍ରାୟ ଅଧ କିଲୋମିଟରରୁ କମ ଦୂର । ତେଣୁ ସେଠାକୁ ଯାଇ ଦର୍ଶନ କରି ସନ୍ଧ୍ୟାରେ ଫେରିବା ବାଟରେ ଏକ ଭୋଜନାଳୟରେ ରାତ୍ର ଭୋଜନ ସାରି ଆସି ଧର୍ମଶାଳାରେ ବିଶ୍ରାମ ନେଲୁଁ । ପରଦିନ ନିତ୍ୟକର୍ମ ସାରି ପୁଣି ଥରେ ମନ୍ଦିର ଦର୍ଶନ ପାଇଁ ବାହାରିବା ବେଳେ ସେଠାକାର ପଣ୍ଡା ଆସି ବଦ୍ରିନାଥରେ ପିତୃପିତାମହଙ୍କ ପାଇଁ 'କାପାଳୀ ପିଣ୍ଡ' ଦାନର ବ୍ୟବସ୍ଥା ଥିବାର ସୂଚନା ଦେଇଗଲେ ଓ କହିଲେ ଯେ ସବୁ ପିଣ୍ଡଠାରୁ କାପାଳୀ ପିଣ୍ଡ ଦାନ ସର୍ବଶ୍ରେଷ୍ଠ କର୍ମ । ସେଠାରେ ପିଣ୍ଡ ପ୍ରଦାନ କଲେ ପିତୃପିତାମହ ମୋକ୍ଷ ଲାଭ କରନ୍ତି । ତେଣୁ ସେମାନେ ସେଠାକାର ଏକ ନିର୍ଦ୍ଦିଷ୍ଟ ସ୍ଥାନକୁ ସ୍ନାନ ଶଉଚ ପରେ ଜମା ହେବାକୁ ନିର୍ଦ୍ଦେଶ ଦେଲେ । ସେଠାରେ ମଧ୍ୟ ଏକ ଉତ୍ତପ୍ତ କୁଣ୍ଡ ଅଛି ଓ ଗଙ୍ଗା ନଦୀ ଅଳକାନନ୍ଦା ନାମରେ ଏକ ସୂକ୍ଷ୍ମ ଧାରରେ ପ୍ରବାହିତ ହେଉଛି ।

ଆମେ ସମସ୍ତେ ଏକ ସଙ୍ଗେ ସେହି ସ୍ଥାନରେ ପହଞ୍ଚି ଏକ ଧାଡ଼ିରେ ବସି ଗଲୁଁ । ପଣ୍ଡା ମହାଶୟ ଆମକୁ କୁଶ ଓ ପତ୍ରରେ କିଛି ଅନ୍ନ ଏକ ଝୁଲା ମୁଣାରୁ ଦେଇ କହିଲେ ଯେ ସେ ମନ୍ତ୍ର ଉଚ୍ଚାରଣ ବେଳେ ଆମେମାନେ ଆମ ପୂର୍ବ ପୁରୁଷଙ୍କ ନାମ ଓ ଗୋତ୍ର ନେଇ ପିଣ୍ଡ ପ୍ରଦାନ କରିବୁ ଓ ତାପରେ ଶେଷରେ ପଣ୍ଡାଙ୍କୁ ତାଙ୍କ ଦକ୍ଷିଣା ଦେଇ ପିଣ୍ଡ ଅନ୍ନ ଗଙ୍ଗା (ଅଳକାନନ୍ଦା)ରେ ଭସାଇ ଦେଇ ପୂର୍ବ ପୁରୁଷଙ୍କୁ ମୋକ୍ଷ କଲୁଁ ବୋଲି ଧରି ନେଲୁଁ । ଏହା ସରିବା ବେଳକୁ ପ୍ରାୟ ୯ଟା । ତାପରେ ହୋଟେଲରୁ ଭୋଜନ ସାରି ଆସି ବସ୍‌ରେ ବସିଲୁଁ ଓ ଆମର ଋଷିକେଶ ଫେରିବା ପର୍ବ ଆରମ୍ଭ ହେଲା । ବାଟରେ ପୁଣି ଏକ ରାତ୍ରି ବିଶ୍ରାମ କରି ପରଦିନ ସକାଳେ ବାହାରି ସନ୍ଧ୍ୟା ୩ଟା ବେଳେ ଆସି ଋଷିକେଶରେ ପହଞ୍ଚିଲୁଁ ।

ବଦ୍ରିନାଥ ଯିବା ପୂର୍ବରୁ ଆମର ସମସ୍ତଙ୍କ ଜିନିଷପତ୍ର ପରମାର୍ଥ ନିକେତନର ଏକ କୋଠରୀରେ ଏକତ୍ର ଜମା କରି ରଖି କବାଟ ବନ୍ଦ କରି ଯାଇଥିଲୁଁ ଓ ଅନ୍ୟାନ୍ୟ ସବୁ କୋଠରୀ ଖାଲି କରି ଦେଇ ତାର ଜିମା ଦେଇଥିଲୁଁ । କିନ୍ତୁ ସମସ୍ତଙ୍କ ଜିନିଷ ଏକତ୍ର ରଖାଯାଇ ଥିବା ଓ ତାଙ୍କୁ ତାଲା ପକାଇ ରଖାଯିବା କଥା ମେନେଜରଙ୍କୁ ନ ଜଣାଇ ଚାଲି ଯାଇଥିଲୁଁ କାରଣ ଯିବା ଦିନ ୮ଟା ପୂର୍ବରୁ ଆମେ

ପରମାର୍ଥ ନିକେତନ ଛାଡ଼ି ଦେଇଥିବାରୁ ମେନେଜର ଆସି ନ ଥିଲେ । ତେଣୁ ଆମେ ଋଷିକେଶରୁ ୪/୫ ଦିନ ବାହାରେ ରହିଥିବାରୁ ମେନେଜର ବାବୁ ସେହି ବନ୍ଦ ଥିବା କୋଠରୀକୁ ଖୋଲାଇ ଜିନିଷପତ୍ର ଥିବା ଦେଖି ପୁଣି ତାକୁ ବନ୍ଦ କରାଇ ଥିଲେ । ତେଣୁ ଆମେ ବଦ୍ରିନାଥରୁ ଫେରିବା ପରେ ଆମେ ଗୋବର୍ଦ୍ଧନ ଧାମରୁ ଫରେଷ୍ଟ ଏକାଡେମୀର ଏକ ଡରମିଟେରୀରେ ରହିବାର ସୁବିଧା ହେବାରୁ ଆମ ଜିନିଷ ସହ ସେଠାକୁ ଚାଲିଗଲୁଁ । ସେଠାରେ ସେ ଦିନଟା ରହି ପରଦିନ ସ୍ୱାମୀ ଚିଦାନନ୍ଦଜୀ ମହାରାଜଙ୍କଠାରୁ ଶେଷ ଦର୍ଶନ ଓ ବିଦାୟ ନେଇ ଋଷିକେଶ ରେଳଷ୍ଟେସନକୁ ଯାଇ ସେଠାରେ ରେଳ ଯୋଗେ ହରଦ୍ୱାରରେ ପ୍ରାୟ ୩/୪ଟା ବେଳେ ପହଞ୍ଚିଲୁଁ । ଆମ ଦଳରେ ଯାଇଥିବା ସୁନ୍ଦରଗଡ଼ର ଓକିଲ ବାବୁ ରାଧାକାନ୍ତ ବହିଦାର ଓ ତାଙ୍କ ପତ୍ନୀ ତାଙ୍କର ଶାରୀରିକ ଦୁର୍ବଳତା ହେତୁ ବଦ୍ରିନାଥ ନ ଯାଇ ଆଗରୁ ହରଦ୍ୱାର ଯାଇ ଗାୟତ୍ରୀ ପୀଠ ଶାନ୍ତିକୁଞ୍ଜରେ ରହି ଆମର ପାଇଁ ଧର୍ମଶାଳା ଠିକ୍ କରି ଅପେକ୍ଷା କରିଥିଲେ । ତେଣୁ ଆମ୍ଭେମାନେ ସେହି ଧର୍ମଶାଳାରେ ଯାଇ ରହିଲୁଁ ।

ସେ ଦିନ ଓ ତା ପରଦିନ ହରଦ୍ୱାରରେ ଅବସ୍ଥାନ ବେଳେ ସନ୍ଧ୍ୟାରେ ଗଙ୍ଗା ନଦୀରେ ଗଙ୍ଗା ମାତା ପୂଜନ ଓ ଆରତିର ଦୃଶ୍ୟ ଅତୀବ ମନ୍ତ୍ରମୁଗ୍ଧକର । ସେତେବେଳେ ଶତ ସହସ୍ର ନରନାରୀ କୂଳରେ ବା ନଦୀ ପୋଲ ଉପରେ ବା ଗଙ୍ଗା ନଦୀର ମଧ୍ୟ ଭାଗରେ ଥିବା ସ୍ଥାନରୁ ପୁଷ୍ପ ଓ ଦୀପ ପ୍ରଜ୍ୱଳନ କରି ଭସାଇବା ଦୃଶ୍ୟ ସର୍ବଦା ଅଭୁଲା ସ୍ମୃତି ହୋଇ ରହେ ମନରେ । କାରଣ ବହୁସଂଖ୍ୟକ ଭାସମାନ ପ୍ରଜ୍ୱଳିତ ଦୀପ ସ୍ରୋତରେ ଭାସି ଯାଉଥିବାର ଦୃଶ୍ୟ ପ୍ରକୃତରେ କମନୀୟ ଶୋଭା ସମ୍ଭାରର ଆଧାର ହୋଇ ଆକର୍ଷଣୀୟ ଓ ମନ୍ତ୍ରମୁଗ୍ଧକର ହୋଇଥାଏ । ଶୁଣାଯାଏ ପ୍ରାୟ ପ୍ରତିଦିନ ସନ୍ଧ୍ୟାରେ ସ୍ଥାନୀୟ ଓ ଆଗନ୍ତୁକମାନେ ପ୍ରଜ୍ୱଳିତ ଦୀପ ଭସାଇ ଅପାର ଆନନ୍ଦ ଲାଭ କରନ୍ତି । ପରଦିନ ହରଦ୍ୱାରର ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନ ପରିଦର୍ଶନ କରି ଫେରିବା ବାଟରେ ରୋପ ୱେରେ ଉଚ୍ଚତମ ମନ୍ଦିର ମନସା ଦେବୀଙ୍କର ଦର୍ଶନ ହୋଇ ପାରିଲା ନାହିଁ, କାରଣ ରୋପ ୱେ ଚାଳନା ବନ୍ଦ ଥିଲା । ଅବଶ୍ୟ ତାହା ପରବର୍ତ୍ତୀ ସମୟରେ ଦର୍ଶନ କରିଥିଲୁଁ । ତେଣୁ ସେ ଦିନ ସନ୍ଧ୍ୟାରେ ଭୋଜନ ପରେ ଦିଲ୍ଲୀ ଯାତ୍ରା ପାଇଁ ପ୍ରସ୍ତୁତ ହେଲୁଁ । ପ୍ରାୟ ସାଢ଼େ ୧୦ଟାରେ ବସ୍ ଛାଡ଼ିଲା ଓ ପାଞ୍ଚ ଘଣ୍ଟା ପରେ ପ୍ରାତଃ ସାଢ଼େ ଚାରିଟାରେ ଦିଲ୍ଲୀ ନିଜାମୁଦ୍ଦିନ ଷ୍ଟେସନରେ ପହଞ୍ଚିଲୁଁ । ସେଠାରେ ଯାଇ ବୁଝିଲୁଁ ଯେ ପରବର୍ତ୍ତୀ ଟ୍ରେନ ଯାତ୍ରା ବନାରସ ବାଟେ ଝାରସୁଗୁଡ଼ା ଫେରିବାର ସମ୍ଭବ ନୁହେଁ ଯେହେତୁ ଅତ୍ୟଧିକ ବର୍ଷା ହେତୁ ସେଇ ରେଳପଥ ବନ୍ଦ ଅଛି । ତେଣୁ ବାଧ୍ୟ ହୋଇ ଗୋଆଲିଅର, ଝାନ୍ସି ବାଟେ

ଝାରସୁଗୁଡ଼ା ପରଦିନ ୪ଟା ବେଳେ ପହଞ୍ଚିଲୁଁ । ସେଠାରୁ ରାଉରକେଲା ଓ ସୁନ୍ଦରଗଡ଼ ଯାତ୍ରୀମାନେ ଆମଠାରୁ ବିଦାୟ ନେଲେ ଏବଂ ଆମ୍ଭେମାନେ ତାଙ୍କଠାରୁ ବିଦାୟ ନେଇ ଫେରିଲା ବେଳେ ମନରେ ଦୁଃଖ ଜାତ ହେଲା । ସେମାନଙ୍କ ମଧ୍ୟରୁ ସୁନ୍ଦରଗଡ଼ର ବହିଦାର ଦମ୍ପତି ରାଧାକାନ୍ତ ବାବୁ ଓ ତାଙ୍କ ସ୍ତ୍ରୀ ସହ ବହୁ ଆନ୍ତରିକତା ସୃଷ୍ଟି ହୋଇଥିଲା । ତାହା ଏପର୍ଯ୍ୟନ୍ତ ଅବ୍ୟାହତ ରହିଛି ।

ସାମାଜିକ ପ୍ରଥାନୁଯାୟୀ ପ୍ରାୟ ବର୍ଷକୁ ୨୪ଟି ଏକାଦଶୀ ମଧ୍ୟରେ ଆଷାଢ଼, ଭାଦ୍ରବ, କାର୍ତ୍ତିକ, ମାଘ ମାସର ଶୁକ୍ଳ ପକ୍ଷ ଏକାଦଶୀମାନଙ୍କୁ ପ୍ରାୟ ବଡ଼ ଏକାଦଶୀ କୁହାଯାଏ । ଯେଉଁମାନେ ଭକ୍ତିପୂତ ପ୍ରାଣରେ ଏକାଦଶ୍ୟୁପବାସ କରନ୍ତି ସେମାନେ ଉପରୋକ୍ତ ୪ଟି ଏକାଦଶୀ ପାରଣା କରିବାର ଦୃଷ୍ଟାନ୍ତ ରହିଛି । ଆମ ଘରେ ମଧ୍ୟ ମୋର ଜଣେ ଦି ଜଣ ବିଧବା ପିଉସୀଙ୍କୁ ଛାଡ଼ି ବଡ଼ ବାପା, କାକା, ଖୁଡ଼ୀ ଆଦି ଏସବୁ ଉପବାସ କରୁ ଥିବାରୁ ଦେଖି ଓ ତାଙ୍କଠୁ ପ୍ରେରଣା ପାଇ ମୁଁ ପ୍ରାୟ ୧୯୫୦ ସାଲ ପରେ ଓ ମୋ ସ୍ତ୍ରୀ ଦୀକ୍ଷା ନେବା ପରେ ଅର୍ଥାତ୍ ୧୯୭୩ ସାଲ ପରେ ଏହି ବଡ଼ ଏକାଦଶୀ ପାରଣା କରି ଆସୁଥିଲୁଁ । ତାପରେ ସ୍ଥିର କଲୁଁ ଯେ ଏହି ଉପବାସକୁ ଉଦ୍‌ଯାପନ କରିବା ଉଚିତ; ଯେହେତୁ ମୋର ସାନ କାକା ସ୍ୱର୍ଗୀୟ ଉପେନ୍ଦ୍ର ଦାଶ ମଧ୍ୟ ତାଙ୍କର ଏହି ପାରଣାକୁ ଉଦ୍‌ଯାପନ କରିଥିଲେ ପ୍ରାୟ ୨୫ ବର୍ଷ ପୂର୍ବରୁ । ଏଣୁ ଆମେ ମଧ୍ୟ ସେହି ଉଦ୍ଦେଶ୍ୟରେ ସିଦ୍ଧାନ୍ତ କରି ମତାମତ ନେବାରୁ ଜଣାଗଲା ଯେ ଉକ୍ତ ପାରଣା ଉଦ୍‌ଯାପନ କରିବାକୁ ହେଲେ ଅନ୍ତତଃ ବର୍ଷଟିଏ ବା ୨ ବର୍ଷ ପର୍ଯ୍ୟନ୍ତ ଚବିଷା ଏକାଦଶୀ ଓ ଷଡ଼ ଜୟନ୍ତୀ ଉପବାସ କରଣୀୟ । ସାଧାରଣତଃ ଅନ୍ୟମାନେ ପ୍ରାୟ ୧୨ ବର୍ଷ ଧରି ମଧ୍ୟ ଚବିଷା ଏକାଦଶୀ ପାରଣା ପରେ ଉଦ୍‌ଯାପନ କରା ଯିବାର ଉଦାହରଣ ବିରଳ ନାହିଁ । ଅର୍ଥାତ୍ ବର୍ଷକୁ ଚବିଷା ଏକାଦଶୀ କରା ଯିବାର ତାତ୍ପର୍ଯ୍ୟ ଏହି ଯେ ଏକାଦଶୀ ଓ ଷଡ଼ ଜୟନ୍ତୀ ମିଶି ବର୍ଷକୁ ମାସଟିଏ ଉପବାସ କରିବାକୁ ପଡ଼େ । ଏପରି ଭାବେ ୧୨ ବର୍ଷ ପାରଣା କଲା ପରେ ବର୍ଷକୁ ମାସଟିଏ ହିସାବରେ ୧୨ ବର୍ଷରେ ଏକ ବର୍ଷ ଉପବାସ କରାଯିବାର ବିଧି ଅଛି । ଏହା ପରେ ଉଦ୍‌ଯାପନ କରଣୀୟ । ସେହି ପରିପ୍ରେକ୍ଷୀରେ ୧ ବର୍ଷ ଚବିଷା ଓ ଷଡ଼ ଜୟନ୍ତୀ ପରେ ମଧ୍ୟ ଉଦ୍‌ଯାପନ କରାଯିବାର ବିଧି ଥିବାରୁ ଆମ୍ଭେ ଉଭୟ ପତି ପତ୍ନୀ ୧୯୮୮-୮୯ରୁ ଚବିଷା ଏକାଦଶୀ ଆରମ୍ଭ କରି ୧୯୯୦ କାର୍ତ୍ତିକ ଶୁକ୍ଳ ଏକାଦଶୀକୁ ଉଦ୍‌ଯାପନ କରାଯିବାର ଆୟୋଜନରେ ଲାଗିଲୁଁ । ଷଡ଼ ଜୟନ୍ତୀ ମଧ୍ୟରେ ଶିବ ଚତୁର୍ଦ୍ଦଶୀ, ରାମ ନବମୀ, ନୃସିଂହ ଚତୁର୍ଦ୍ଦଶୀ, କୃଷ୍ଣ ଜନ୍ମାଷ୍ଟମୀ, ବାମନ ଦ୍ୱାଦଶୀ ଓ ଦୁର୍ଗାଷ୍ଟମୀ ଅନ୍ତର୍ଗତ । ତେଣୁ ଆମେ ବର୍ଷକ ପୂର୍ବରୁ ଚବିଷା ଏକାଦଶୀ ପାରଣା

ଆରମ୍ଭ କରି ୧୯୯୦ ସାଲର କାର୍ତ୍ତିକ ଶୁକ୍ଳ ଏକାଦଶୀ ଦିନ ଉଦ୍‌ଯାପନ କରାଯିବାର ସବୁ ବନ୍ଦୋବସ୍ତ କଲୁଁ । ଏଥିରେ ଉପଯୁକ୍ତ ବ୍ରାହ୍ମଣ ଦ୍ୱାରା ଏ କାର୍ଯ୍ୟ ସମ୍ପନ୍ନ କରାଯାଇ ପ୍ରାୟ ୫,୭,୯,୧୧ ବା ତତୋଧିକ ପୂଜ୍ୟ ବ୍ୟକ୍ତିଙ୍କୁ ଆମନ୍ତ୍ରଣ କରାଯାଇ ତାଙ୍କୁ କୁଲ୍ୟାଦାନ ମାଟି ତେଲାଣୀରେ/ ବାଉଁଶ ଡାଟିଆରେ କରାଯାଏ । ଏହି ଆମନ୍ତ୍ରିତ ବ୍ୟକ୍ତିଙ୍କ ମଧ୍ୟରେ ପୁରୋହିତ, ଗୁରୁ, ଜୋଇଁ, ଭଣଜା ତଥା ଅତିଥି ଅଭ୍ୟାଗତଙ୍କୁ ସ୍ଥାନ ଦିଆଯାଏ । ଏଣୁ ଆମେ ଆମ ଚାରିଜଣ ଜୋଇଁ, ତିନିଜଣ ଭଣଜା, ପୁରୋହିତ, ଗୁରୁ ଓ ଅନ୍ୟମାନଙ୍କୁ ନେଇ ଏଗାରଟି କୁଲ୍ୟାଦାନର ବ୍ୟବସ୍ଥା କରିଥିଲୁଁ । ଏଥିପାଇଁ ନିଜ ସକ୍ତି ଅନୁଯାୟୀ ଯାହା ଦାନ କଲେ ମଧ୍ୟ ଯଥେଷ୍ଟ ନୁହେଁ । ଏଥିରେ ସୁବର୍ଣ୍ଣ ନିର୍ମିତ ଲକ୍ଷ୍ମୀନାରାୟଣ ପ୍ରତିମା ଓ ତାଙ୍କ ଆସ୍ଥାନର ପୂଜା ହୋମ କରି ଏକାଦଶୀ ଦିନ ରାତିସାରା ଜାଗ୍ରତ ରହି ପରଦିନ ପୂଜା ଓ ହୋମ ପରେ କୁଲ୍ୟାଦାନ କରାଯାଇ ବ୍ରାହ୍ମଣ ଭୋଜନ ବ୍ୟବସ୍ଥା କରାଯାଇ ଥାଏ । ଏଥିରେ ସ୍ୱଚ୍ଛଳ ବ୍ୟକ୍ତିମାନେ ପ୍ରତି କୁଲ୍ୟାଦାନ ପାଇଁ ଗୋଟିଏ ଦମ୍ପତି ସକାଶେ ବ୍ୟବହାର୍ଯ୍ୟ ବସ୍ତୁ ଯୋଗାଇ ଦିଆଯାଏ । ଏପରିକି ଅଳଙ୍କାର ଓ ଗୋରୁଗାଈ ମଧ୍ୟ ଦାନ କରାଯାଇ ପାରେ । ଆମେ ଆମ ଶକ୍ତିମତେ ଉକ୍ତ ଅନୁଷ୍ଠାନ ଆରମ୍ଭ କରାଯାଇ ୩୧.୧୦.୦୯୯୦ଇ. ଦିନ ଉଦ୍‌ଯାପନା କରିଥିଲୁଁ । ଏଥିରେ ସମସ୍ତ ଝିଅଜୋଇଁ ଓ ଭଣଜାମାନେ ଯୋଗ ଦେଇଥିଲେ ।

ଆମର ଅନୁପସ୍ଥିତିରେ ଅର୍ଥାତ୍ ସେପ୍ଟେମ୍ବର ମାସ ୧୫ରୁ ସରକାରୀ ଆଦେଶ ପାଇ ସାନ ପୁଅ ଡାକ୍ତର ପ୍ରଶାନ୍ତ କିଶୋର ଦାଶ (ଲୁଲୁ) ଦୀପ୍ତିପୁରରୁ ବେସରକାରୀ ଚାକିରୀ ଛାଡ଼ି ସରକାରୀ ଡାକ୍ତରଖାନାରେ ଯୋଗ ଦେଇଥିବା ଶୁଣି ଆଶ୍ୱସ୍ତ ଓ ଆନନ୍ଦିତ ହେଲୁଁ ।

ଏହା ପରେ ଅବସର କାଳୀନ ଜୀବନକାଳ ମଧ୍ୟରେ ଅନେକ ଘଟଣା ଘଟିଛି । ସେଥି ମଧ୍ୟରୁ ସମୟାନୁକ୍ରମେ ସେ ସବୁକୁ ଲିପିବଦ୍ଧ କରିବା ସମ୍ଭବ ନ ହେଲେ ମଧ୍ୟ କେତେକ ବିଶିଷ୍ଟ ଘଟଣାର ଉଲ୍ଲେଖନୀୟ ବିଶେଷତ୍ୱ ରହିଛି । ସେଥି ମଧ୍ୟରୁ ଅବସର ଜନିତ ବିଭିନ୍ନ ପାଉଣା ମିଳିବାର ଏକ ନୂତନ ଘଟଣା । କାରଣ ଜୀବନରେ ପ୍ରଥମେ ଏକ ବେସରକାରୀ ଅନୁଷ୍ଠାନରେ ଚାକିରୀ ଆରମ୍ଭ କରି ପୁଣି ତାକୁ ପରିତ୍ୟାଗ କରି ସରକାରୀ ଚାକିରୀରେ ଯୋଗଦାନ ଓ ତାର ପରିତ୍ୟାଗ ପରେ ମଧ୍ୟ ପୁଣି ବେସରକାରୀ ବିଦ୍ୟାଳୟକୁ ୧.୩.୬୯ରେ ସରକାର ୧୪୨ଟି ବେସରକାରୀ ବିଦ୍ୟାଳୟକୁ ସରକାରୀ ଭାବେ ହାତକୁ ନେଇ ନିୟମାନୁଯାୟୀ ୧୯୫୮ରୁ ଅର୍ଥାତ୍ ବିଦ୍ୟାଳୟକୁ ସମ୍ପୂର୍ଣ୍ଣ ନିଅଣ୍ଟିଆ ଅନୁଦାନ ଦେବା ଦିନଠାରୁ ଅର୍ଥାତ୍

୧.୭.୫୮ରୁ ଜର୍ଜ ହାଇସ୍କୁଲ ଆଦି ୬୪ଟି ବିଦ୍ୟାଳୟ Net Deficit ପ୍ରାପ୍ତି ସ୍କୁଲ ରୂପେ ପରିଗଣିତ ହେବାରୁ ସେ ଦିନଠାରୁ ଅବସର ମିଳିବାର ନିୟମ ପ୍ରଣୀତ ହୋଇଥିବାରୁ ସେପରି ସ୍କୁଲରେ କାର୍ଯ୍ୟରତ କର୍ମଚାରୀମାନଙ୍କୁ ଅବସରକାଳୀନ ଭତ୍ତା ଦେବାକୁ ସ୍ଥିର ହେବା ଦୃଷ୍ଟିରୁ ଆମକୁ ମଧ୍ୟ ସେହି ସୁଯୋଗ ମିଳିଲା । ତେଣୁ ଅଗଷ୍ଟ ୮୮ରେ ମୁଁ ସରକାରୀ ଆଦେଶନାମା ପାଇ ଅବସର ଦିନଠାରୁ ପେନସନ ପାଇବାକୁ ହକଦାର ହେଲି । ସେହି ପରିପ୍ରେକ୍ଷୀରେ ମୋର G.P.F ଜମା ଟଙ୍କା, ପେନସନ ବାକୀ ଟଙ୍କା ଆଦି ମିଶାଇ ପ୍ରାୟ ଲକ୍ଷାଧିକ ଟଙ୍କା ପାଇ ମୋର ନିଜ ବେଙ୍କ ଜମା ପାଣ୍ଠିରେ ରଖିଲି । ଏହା ଜୀବନର ଏକ ସ୍ମରଣୀୟ ଓ ଆନନ୍ଦପୂର୍ଣ୍ଣ ଅନୁଭୂତି । ସେତେବେଳେ ମୋର ମାସକୁ ପେନସନ ଟ.୧୦୨୫ ସ୍ଥିର ହୋଇଥିଲା ଓ ପରେ ତାହା ଟ.୧୧୪୪କୁ ବୃଦ୍ଧି ହୋଇ ଏବେ ସର୍ବମୋଟ ଟ. ୫୪୩୦ ମିଳୁଛି ।

ସେତେବେଳେ ମୁଁ ଭୁବନେଶ୍ୱର ଯାଉଥିବା ସମୟରେ ସେଠାରେ ଶିବାନନ୍ଦଙ୍କ ନାମରେ ଏକ ନୂତନ ଉଚ୍ଚ ବିଦ୍ୟାଳୟ ସ୍ଥାପନ ପାଇଁ ଚିଦାନନ୍ଦଜୀ ମହାରାଜ ଶୁଭ ଦେଉଥିବା ସଭାରେ ଯୋଗ ଦେବାର ସୁଯୋଗ ପାଇଥିଲି । ମୋ ସଙ୍ଗେ ବନ୍ଧୁ ଭାବଗ୍ରାହୀ ମହାପାତ୍ର ମଧ୍ୟ ଯାଇଥିଲେ । ସେତେବେଳେ ମୋର ପ୍ରଥମ ମାସର ପେନସନ ଟଙ୍କା ସ୍କୁଲକୁ ଦାନ କରିବାର ପ୍ରତିଶୃତି ଦେଇଥିଲି ଓ ତେଣୁ ପ୍ରଥମ ପ୍ରାପ୍ତି ଟ.୧୦୨୫ ସେହି ଉଦ୍ଦେଶ୍ୟରେ ପଠାଇ ଦେଲି । ଶିବାନନ୍ଦ ବିଦ୍ୟାଳୟ ପାଇଁ ଆଗରୁ ଟ.୧୦୦୦ ଦେଲେ ୧୦ ବର୍ଷ ପରେ ଫେରାଇବାର ବ୍ୟବସ୍ଥା ହୋଇଥିଲା ।

ଏହି ପରିପ୍ରେକ୍ଷୀରେ ଆଉ ଏକ ସୂଚନା ଦେବା ସମୀଚିନ ମନେ ହୁଏ । ବୋଧ ହୁଏ ସେହି ବର୍ଷ ବରପାଲି ଉଚ୍ଚ ବିଦ୍ୟାଳୟର ବାର୍ଷିକ କ୍ରୀଡ଼ା ଉତ୍ସବରେ ମୁଖ୍ୟ ଅତିଥି ଭାବେ ଯୋଗ ଦେବାର ନିମନ୍ତ୍ରଣ ପାଇ ସେଠାରେ ଉପସ୍ଥିତ ହେଲି । ଆଗରୁ ମଧ୍ୟ ବରଗଡ଼ ଟାଉନ ଉଚ୍ଚ ବିଦ୍ୟାଳୟର ଏକ ଉତ୍ସବରେ ମୁଖ୍ୟ ଅତିଥି ଭାବେ ଯୋଗ ଦେବାର ଅବସରରେ ଏକ ଘୋଷଣା କରାଯାଇ ବିଦ୍ୟାଳୟର ସର୍ବୋତ୍କୃଷ୍ଟ ଖେଳାଳୀଙ୍କୁ ଏକ ସିଲ୍ଡ ଦେବାର ପ୍ରତିଶୃତି ଦେଇ ତାହା ଯୋଗାଇ ଦେଇଥିଲି ।

ଏ ସମ୍ପର୍କରେ ଆଉ ଏକ ସୂଚନା ଦେଲେ ଅପ୍ରାସଙ୍ଗିକ ହେବ ନାହିଁ । କାରଣ ପାଠଶାଳାରେ ଅଧ୍ୟୟନ ବେଳେ ଛାତ୍ରଛାତ୍ରୀଙ୍କ ପାଠପଢ଼ା ତଥା ଅନ୍ୟାନ୍ୟ ବିଷୟରେ ସ୍ପୃହା ବର୍ଦ୍ଧନ ପାଇଁ ଯଦି ପ୍ରୋତ୍ସାହନ ନ ଦିଆଯାଏ ତେବେ ଛାତ୍ରଛାତ୍ରୀଙ୍କ ପାଠ ତଥା ଅନ୍ୟାନ୍ୟ ଜ୍ଞାନ ଆହରଣ ପାଇଁ ଉତ୍ସାହ ରହିବ ନାହିଁ । ତେଣୁ ଏ ବିଷୟକୁ

ଆଖି ଆଗରେ ରଖି ମୋର ସ୍ୱଳ୍ପ ଆୟରୁ କିଛି ପାଣ୍ଠି ସ୍ଥାୟୀ ଜମା ଭାବରେ ରଖି ସେଥିରୁ ମୋର ସମ୍ପର୍କ ଥିବା ବିଭିନ୍ନ ଅନୁଷ୍ଠାନମାନଙ୍କରେ କିଛିଟା ଉତ୍ସାହ ପ୍ରଦାନ ପାଇଁ ଏକ ବୃତ୍ତି ଦେବାର ଯୋଜନା କରି ପ୍ରାୟ ଟ୩୦୦୦ଙ୍କା ବରଗଡ଼ ୟୁନାଇଟେଡ ବେଙ୍କରେ ସ୍ଥାୟୀ ପାଣ୍ଠି ରଖାଯାଇ ଅଛି । ସେଥିରୁ ବର୍ଷକୁ ଉପୁଜୁ ଥିବା ସୁଦରୁ କେତେକ ବିଦ୍ୟାଳୟମାନଙ୍କରେ ପଢୁଥିବା କୃତୀ ଓ ଯୋଗ୍ୟ ଛାତ୍ରଛାତ୍ରୀଙ୍କୁ ଏକ ପୁରସ୍କାର ଦେବା ପାଇଁ ବ୍ୟବସ୍ଥା କରାଯାଇଛି । ସେ ବିଦ୍ୟାଳୟଗୁଡ଼ିକ ହେଲା ଜର୍ଜ ହାଇସ୍କୁଲ, ବରଗଡ଼, ବରପାଲି ହାଇସ୍କୁଲ, ସିଆଲଖଣ୍ଡଥା ହାଇସ୍କୁଲ, ଖୁଣ୍ଟପାଲି ହାଇସ୍କୁଲ, ରାଣାପ୍ରତାପ ଉଚ୍ଚ ବିଦ୍ୟାଳୟ, ବରଗଡ, ଟାଉନ ହାଇସ୍କୁଲ ଓ କେତେକ ବିଶିଷ୍ଟ ଉଦ୍ଦେଶ୍ୟରେ ପୁରସ୍କାର ଦିଆ ଯିବାର ବ୍ୟବସ୍ଥା କରିବାକୁ ସଂପୃକ୍ତ ବିଦ୍ୟାଳୟର ପ୍ରଧାନ ଶିକ୍ଷକମାନଙ୍କୁ ଅନୁରୋଧ କରାଯାଇଛି । ସେମାନେ ତାଙ୍କର ବାର୍ଷିକ ଉତ୍ସବ ସମୟରେ ତାଙ୍କ ସ୍ୱ... ନିର୍ଦ୍ଧାରିତ ଛାତ୍ରଛାତ୍ରୀଙ୍କୁ ପୁରସ୍କାର ଦେବା ପାଇଁ ମୋଠାରୁ/ ମୋ ଉତ୍ତରାଧିକାରୀଙ୍କ ଠାରୁ ନେଇ ଯିବା ପାଇଁ ଅନୁରୋଧ କରାଯାଇଛି ।

ଉପରୋକ୍ତ ବିଦ୍ୟାଳୟମାନଙ୍କରେ ଯେଉଁମାନେ ପୁରସ୍କାର ପାଇବାକୁ ହକଦାର ହେବେ ସେମାନେ ହେଲେ ଜର୍ଜ ହାଇସ୍କୁଲର ସର୍ବୋଚ୍ଚ ପରୀକ୍ଷାରେ ଅର୍ଥାତ୍ ବର୍ତ୍ତମାନ ୧୦ମ ଶ୍ରେଣୀ ବୋର୍ଡ ପରୀକ୍ଷାରେ ବିଜ୍ଞାନରେ ସର୍ବାଧିକ ମାର୍କ ପାଇବା ଛାତ୍ର, ବରପାଲି ଉଚ୍ଚ ବିଦ୍ୟାଳୟର ସାଧାରଣ ସର୍ବୋଚ୍ଚ ପରୀକ୍ଷାରେ ସର୍ବାଧିକ ନମ୍ବର ରଖିଥିବା ଛାତ୍ର/ଛାତ୍ରୀ, ସିଆଲଖଣ୍ଡଥାର ସର୍ବୋଚ୍ଚ ପରୀକ୍ଷାର ସର୍ବାଧିକ ନମ୍ବର ରଖିଥିବା ଛାତ୍ର/ଛାତ୍ରୀ, ରାଣାପ୍ରତାପ ଉଚ୍ଚ ବିଦ୍ୟାଳୟର ସର୍ବୋଚ୍ଚ ପରୀକ୍ଷାରେ ସର୍ବାଧିକ ନମ୍ବର ରଖିଥିବା ଛାତ୍ର/ଛାତ୍ରୀ, ଖୁଣ୍ଟପାଲି ଉଚ୍ଚ ବିଦ୍ୟାଳୟରେ ପଠନ କରୁଥିବା ଛାତ୍ର/ଛାତ୍ରୀ ଯେ କି ୭ମ ଶ୍ରେଣୀ ପରୀକ୍ଷାରେ ଡ୍ରଇଂ (ଚିତ୍ରାଙ୍କନ)ରେ ସର୍ବାଧିକ ନମ୍ବର ରଖିଥିବା ଛାତ୍ରଛାତ୍ରୀ ଏବଂ ପ୍ରତି ବର୍ଷର ଟାଉନ ହାଇସ୍କୁଲର ସର୍ବଶ୍ରେଷ୍ଠ ଖେଳାଳୀଙ୍କୁ ପୁରସ୍କାର ଟ.୫୦ ଲେଖାଏଁ ଦିଆ ଯିବାର ବ୍ୟବସ୍ଥା କରାଯାଇଛି । ସଂପୃକ୍ତ ବିଦ୍ୟାଳୟର ପ୍ରଧାନ ଶିକ୍ଷକମାନେ ତାଙ୍କର ବାର୍ଷିକ ଉତ୍ସବ ସମୟରେ ଉକ୍ତ ପରିମାଣ ମୁଦ୍ରା ଆମଠାରୁ ନେଇ କୃତୀ ଛାତ୍ରଛାତ୍ରୀଙ୍କୁ ପ୍ରଦାନ କରିବାର ବ୍ୟବସ୍ଥା ଅଛି । ଏଥିରୁ ବରପାଲି ଉଚ୍ଚ ବିଦ୍ୟାଳୟରେ କେତେ ଥର ସେହି ପୁରସ୍କାର ଦେଇ ସାରିଲେଣି । ଅନ୍ୟାନ୍ୟ ବିଦ୍ୟାଳୟଗୁଡ଼ିକ କୌଣସି କାରଣରୁ ଏ ପର୍ଯ୍ୟନ୍ତ ଉକ୍ତ ପରିମାଣ ନେଇ ନାହାନ୍ତି । ସେମାନେ ଯେତେବେଳେ କୌଣସି ଉତ୍ସବ ପାଳନ କରିବେ ତାଙ୍କୁ ସେହି ପୁରସ୍କାର ପାଇଁ ସମସ୍ତ ପରିମାଣ ଯୋଗାଇ ଦିଆଯିବାର ବ୍ୟବସ୍ଥା କରିଅଛି ।

ସମ୍ବଲପୁରରେ ୨୮.୪.୯୨ ଦିନ ଶିବାନନ୍ଦଙ୍କ ଦିବ୍ୟ ଜୀବନର ସଂଘର ଆଞ୍ଚଳିକ ସମ୍ମିଳନୀ ହେବାକୁ ଥିଲା। ସେଥିରେ ଶିବ ଚିଦାନନ୍ଦଜୀ ରାଉରକେଲାରୁ ଆସି ଯୋଗ ଦେଇଥିଲେ। ସମ୍ମିଳନୀ ଶେଷରେ ମୁଁ ବରଗଡ଼ ଆସିବା ବେଳେ ବସ୍‌ରେ ବାମ ଅଙ୍ଗଟି ଝିପ୍‌ଝିପ୍ ଲାଗିଲା। ବସ୍‌ରେ ଘରକୁ ଆସି ପହଞ୍ଚିଲା ପରେ ଘରେ ସାନ ପୁଅ ଡାକ୍ତର ଔଷଧ ଦେବାରୁ ସେହି ରୋଗର ପ୍ରଭାବ ବଢ଼ି ନ ପାରି ସେହି ଝିମ୍‌ଝିମ୍‌ଟା ରହିଗଲା ଓ ଏ ପର୍ଯ୍ୟନ୍ତ ସେ ଅନୁଭୂତି ଯାଇ ନାହିଁ।

ଇତି ମଧ୍ୟରେ କିଛି ସମୟ ଅତିବାହିତ ହୋଇଥିଲେ ହେଁ ଆମର ବ୍ୟକ୍ତିଗତ ଶେଷ ଦାୟିତ୍ୱ ଅସମ୍ପୂର୍ଣ୍ଣ ହୋଇ ରହିଥିଲା। ଆମର କନିଷ୍ଠ ପୁତ୍ର ଡା. ପ୍ରଶାନ୍ତ କିଶୋର ଦାଶ (ଲୁଲୁ) କାର୍ଯ୍ୟରତ ହେବାର ପ୍ରାୟ ୩ ବର୍ଷ ଅତିବାହିତ ହୋଇଥିଲେ ହେଁ ତାହାର ବୈବାହିକ ମାଙ୍ଗଳିକ କୃତ୍ୟ ବାକୀ ଥିଲା। କାରଣ ସେ ପୁଣି ସ୍ନାତକୋତ୍ତର ଆୟୁର୍ବିଜ୍ଞାନ ପଠନ ପାଇଁ ପ୍ରଚେଷ୍ଟାରତ ଥିବାରୁ ତାକୁ ଟାଳଟୁଳ କରୁଥିବାରୁ କଥାଟା ଅସମାପ୍ତ ରହୁଥିଲା। ତା ପାଇଁ ଅନେକ ପ୍ରସ୍ତାବ ଆସୁଥିଲେ ହେଁ ବିବାହର ସୁଯୋଗ ମୁହୂର୍ତ୍ତ ଶୁଭ ବେଳା ଆସି ନ ଥିଲା। ତେଣୁ ୧୯୯୧ର ପ୍ରାରମ୍ଭରୁ ନାନା ପ୍ରସ୍ତାବ ଆସି ମଧ୍ୟ ତାର ପରିପୂର୍ଣ୍ଣତା ଘଟି ପାରୁ ନ ଥିଲା। ପ୍ରାୟ ଅପ୍ରେଲ ମେ ମାସରେ ଏକ ପ୍ରସ୍ତାବ ଆସି କିଛି ଦୂର ଆଗେଇବା ପରେ ପୁଣି ବନ୍ଦ ହେଲା। କିନ୍ତୁ କେଜାଣେ କାହିଁକି ସେ ପ୍ରସ୍ତାବର ପୁନରାବୃତ୍ତି ହୋଇ ପରିସ୍ଥିତି ଏପରି ହେଲା ଯେ ପ୍ରସ୍ତାବଟି ପୁରାପୁରି ଆଗେଇ ଉଭୟ ପକ୍ଷ ରାଜି ହୋଇ ୧୪.୭.୯୧ଇ. ଦିନ ବିବାହ ହେବାର ସ୍ଥିରୀକୃତ ହେଲା। ସେହି ପ୍ରସ୍ତାବଟି ଏହି ବରଗଡ଼ ସିମେଣ୍ଟ ନଗର ସ୍ଥିତ ପ୍ରାଣକୃଷ୍ଣ ତ୍ରିପାଠୀଙ୍କ ଜ୍ୟେଷ୍ଠା କନ୍ୟା ତଥା ⁄ ଡା. ଲକ୍ଷ୍ମୀକାନ୍ତ ତ୍ରିପାଠୀଙ୍କ ନାତୁଣୀ ମଧୁଛନ୍ଦା ସହ ଧାର୍ଯ୍ୟ ହେଲା। କୌଣସି ମତେ ୧୪.୭.୯୨ ପବିତ୍ର ରଥଯାତ୍ରା ଦିନ ବରଯାତ୍ରୀ ଯାଇ ୧୫.୭.୯୨ରେ ବିବାହ ପାଣିଗ୍ରହଣ ଓ ୧୬.୭.୯୨ରେ ବନ୍ଦାପନା କର୍ମ ମହାସମାରୋହରେ ସମ୍ପୂର୍ଣ୍ଣ ହେଲା। ଅର୍ଥାତ୍ ଆମର ସାମାଜିକ ଦାୟିତ୍ୱର ପରିସମାପ୍ତି ହେଲା। ପୁଅଝିଅଙ୍କ ବାହାବୁଢ଼ା ଓ ତାଙ୍କର ଚାକିରୀ ପ୍ରାପ୍ତି ଆଦି ସବୁ ପ୍ରାୟ ଶେଷ। ଆମର ନାତିନାତୁଣୀ ସଂଖ୍ୟା ୧୭; ପୁଅ ଓ ଝିଅଙ୍କର ସନ୍ତାନ ମିଶି। ତାର ପର ବର୍ଷ ଅର୍ଥାତ୍ ୧୦.୭.୯୨ରେ ଲୁଲୁବାବୁର ଏକ କନ୍ୟାରତ୍ନ (ଅଭିଳାଷା) ଜନ୍ମ ହେଲା ଓ ଆମ ତୃତୀୟ ପିଢ଼ିର ସଂଖ୍ୟା ୧୪ରୁ ୧୫କୁ ( ୫ ନାତି ଓ ୧୦ ନାତୁଣି) ବୃଦ୍ଧି ପାଇଲା।

୧୯୯୨ର ମାର୍ଚ୍ଚ ମାସରେ ଆମର ବଡ଼ ଭଣଜା ଶିବପ୍ରସାଦ ଦାଶଙ୍କ ମୃତ୍ୟୁ, ପୁଣି ସେହି ବର୍ଷ ଅପ୍ରେଲରେ ଆମର ଜନୈକ ଭଉଣୀର ମୃତ୍ୟୁ ଘଟିଲା।

ତାଙ୍କର ଅସ୍ଥି ପ୍ରବାହ ପାଇଁ ତାର ୨ ପୁଅଙ୍କ ସଙ୍ଗେ ପ୍ରୟାଗ ଯାଇ ସେଠାରୁ ବେନାରସ ହୋଇ ଘରକୁ ଫେରିବାକୁ ହେଲା ।

୧୫.୨.୯୪ରେ ଶ୍ୱଶୁରଙ୍କ ଦେହାନ୍ତ ହେଲା, ପ୍ରାୟ ୮୩ ବର୍ଷ ବୟସରେ ସରସ୍ୱତୀ ପୂଜା ଦିନ । ତାଙ୍କ ଜନ୍ମ ଶିବ ଚତୁର୍ଦ୍ଦଶୀରେ ଓ ମୃତ୍ୟୁ ପୁଣ୍ୟ ଶ୍ରୀପଞ୍ଚମୀରେ ଏକ ଅସାମୟିକ ଜୀବନର ଅବସାନ ଘଟିଲା । ଏକ ସମ୍ପୂର୍ଣ୍ଣ ନିର୍ମାୟା ଓ ସରଳ ବିଶ୍ୱାସୀ ସମସ୍ତଙ୍କ ଉପକାରୀ ଶଙ୍କରବାବୁଙ୍କ ଦେହାବସାନ ଘଟିଲା ପଛରେ ପତ୍ନୀ ଓ ପୁଅଝିଅ ନାତିନାତୁଣୀଙ୍କୁ ଛାଡ଼ି ।

୨୭.୨.୯୪ରେ ମାଧୁରୀର ଝିଅ ବିବାହ ବଲାଙ୍ଗିରର ଅବସରପ୍ରାପ୍ତ CDMO ଦାମୋଦର ମିଶ୍ରଙ୍କ ଏକମାତ୍ର ପୁତ୍ର ଆଶିଷ ସଙ୍ଗେ ସମ୍ପନ୍ନ ହେଲା । ସେ ବମ୍ବେରେ ଭାରତ ପେଟ୍ରୋଲିୟମରେ ଯନ୍ତ୍ରୀ ରୂପେ ଅଧିଷ୍ଠିତ ଥିଲେ । ଏବେ ତାଙ୍କ ଦିଲ୍ଲୀ ପରିବର୍ତ୍ତନ ହୋଇଛି । ଏହି ବର୍ଷ ଆମର ସୌଭାଗ୍ୟକ୍ରମେ ସରକାରୀ ହସପିଟାଲରେ ଏକ ଔଷଧ ଦୋକାନ ଖୋଲିବାର ଆଦେଶ ସରକାରଙ୍କଠାରୁ ପ୍ରାପ୍ତ ହୋଇ ଏ ପର୍ଯ୍ୟନ୍ତ ଚାଲିଛି ।

ଦୁନିଆ ସୁଖ ଓ ଦୁଃଖର ସମ୍ମିଶ୍ରଣରେ ପରିଚାଳିତ । ତେଣୁ ମୋର ଅବସର ଗ୍ରହଣ ପରେ କେତେକ ଆତ୍ମୀୟଙ୍କ ତିରୋଧାନ ଓ କେତେକଙ୍କ ଆବିର୍ଭାବ ହୋଇଛି । ସେ ମଧ୍ୟରେ ମୋର କନିଷ୍ଠ କାକା ଉପେନ୍ଦ୍ର ଦାଶଙ୍କ ଦେହାନ୍ତ, ମୋର ଆଉ ଜଣେ ଆତ୍ମୀୟ ଭଗିନୀ ରମ୍ଭାର ଦେହାନ୍ତ ଆଦି ମଧ୍ୟ ଉଲ୍ଲେଖନୀୟ ଘଟଣାର ଅନ୍ତର୍ଭୁକ୍ତ ।

ଏତଦ୍ ବ୍ୟତୀତ ମୋର ସମ୍ପର୍କୀୟମାନଙ୍କ ମଧ୍ୟରେ ମୋର ଶଳା ହୃଷୀକେଶ ବାବୁଙ୍କ ଜ୍ୟେଷ୍ଠା କନ୍ୟା ନିଭାର ବିବାହ, ଦ୍ୱିତୀୟା କନ୍ୟା ମଧୁମିତାର ବିବାହ, ଶାଳୀମାନଙ୍କ କନ୍ୟାଙ୍କର ବିବାହ ମଧ୍ୟରେ ଷଢୁ ହରିବନ୍ଧୁ କରଙ୍କ ଦୁଇ ଝିଅଙ୍କ ବିବାହ, ସାନ ଷଢୁ ଦାମ ବାବୁଙ୍କ ଦୁଇ ଝିଅଙ୍କ ବିବାହ ବୁନୀ ଓ ପିଙ୍କିର ବିବାହ ମଧ୍ୟ ସୂଚନାଯୋଗ୍ୟ ମନେ ହୁଏ । ଏତଦ୍‌ଭିନ୍ନ ମୋର ଭଉଣୀ ସୁଷମାର ପୁଅଝିଅମାନଙ୍କ ବିବାହ, ସାନ ଭଉଣୀ ବିନୋଦିନୀର ପୁଅମାନଙ୍କ ବ୍ରତ, ବିବାହାଦି ମଧ୍ୟ ଉଲ୍ଲେଖନୀୟ ଘଟଣାଭୁକ୍ତ । ପରିଶେଷରେ ୯୫ ଡିସେମ୍ବର ମାସରେ ମୋର ସାନ ଭଉଣୀ ଜୋଇଁ ଲାଲସାହେବ ମହାପାତ୍ରଙ୍କ ପେଟରେ ଅପ୍ରୋପଚାର ଓ କର୍କଟ ରୋଗର ସୂଚନା ପାଇଁ ତାଙ୍କ ଜୀବନ ଆଶା ଛାଡ଼ିବାକୁ ହେଲା ଓ ୯୬ ଅଗଷ୍ଟରେ ସେ ଇହଲୀଲା ତ୍ୟାଗ କଲେ । ଏହା ଏକ ମର୍ମନ୍ତୁଦ ଘଟଣା କାରଣ ତାଙ୍କର ୩ ପୁଅ ଓ ୪ ଝିଅ ମଧ୍ୟରୁ କେବଳ ଗୋଟିଏ ପୁଅର ଓ ଗୋଟିଏ ଝିଅର ମାଙ୍ଗଳିକ କାର୍ଯ୍ୟ ସମାପନ କରିଥିଲେ । ଏ ସବୁ ଦୃଷ୍ଟିରୁ ସେମାନେ ମୁରବୀହୀନ ହୋଇ ଅସହାୟ

ହେଲେ। ତେଣୁ ତାଙ୍କ ପ୍ରତି ସଜାଗ ଦୃଷ୍ଟି ଦେବା ଉଚିତ ହେଲେ ମଧ୍ୟ ଆମର ବୟସାଧିକ୍ୟ ହେତୁ ସମୁଚିତ ଦୃଷ୍ଟି ଦେବା ଅସମ୍ଭବ ମନେ ହେଉଛି। ସର୍ବୋପରି ସେହି ଭଉଣୀର ୨ୟ ପୁତ୍ର ଉଚ୍ଚ ଶିକ୍ଷା ପାଇ ମଧ୍ୟ ଏକ ସାଧାରଣ ଚାକିରୀରେ ଏପର୍ଯ୍ୟନ୍ତ ରହିଛନ୍ତି। ଅବଶ୍ୟ ଗତ ଅପ୍ରେଲ ୯୮ରେ ତାଙ୍କ ବିବାହ ସମ୍ପନ୍ନ ହୋଇ ଏବେ ତାଙ୍କର ସବୁ ଠିକ୍ ଚାଲିଛି।

ଇତିମଧ୍ୟରେ ଗତ ୧.୨.୯୮ ଦିନ ବଡ଼ ଝିଅ ମାଧୁରୀର ବଡ଼ ପୁଅ ବାପୀର ସରଗଜଠାରେ ଓ ୫.୨.୯୮ ଦିନ ଦ୍ୱିତୀୟ ପୁଅ ବୁବୁନୁର ଢେଙ୍କାନାଳ ବାସୀ ଡାକ୍ତରଙ୍କ ଝିଅ ସଙ୍ଗେ ବିବାହ ସରିଛି। ସାନ ବାବୁ ବୁବୁନୁ କାନପୁରରେ ପ୍ରାୟ ୪ ବର୍ଷ ହେଲା I.D.B.I.ରେ ସହ ମେନେଜର (Asst. Manager) ରୂପେ ଅବସ୍ଥାପିତ ହୋଇ ଆନନ୍ଦରେ ଅଛନ୍ତି। ସେମାନେ ଏକ କାର କିଣି ଆରାମରେ ଅଛନ୍ତି। ଏବେ ସେ ଭୁବନେଶ୍ୱରରେ ଅବସ୍ଥାପିତ।

ଦ୍ୱିତୀୟ କନ୍ୟାର ପୁଅ ଅନୁରାଗ ଶତପଥୀ ପୁନା ମହର୍ଷି ବିଦ୍ୟାପୀଠରୁ ଡାକ୍ତରୀ କଲେଜରେ ଦନ୍ତ ଚିକିତ୍ସା ପାଇଁ ଅଧ୍ୟୟନ କରି କର୍ଣ୍ଣାଟକରେ M.D. କରୁଛି ଓ ୩ୟ ଝିଅ ସବିତା ଓ ୪ର୍ଥ ଝିଅ ମମତା ସମ୍ବଲପୁରରେ ନିଜ ବାସଭବନ ନିର୍ମାଣ କରି ସାରିଲେଣି। ଗତ ୧୦.୨.୯୯ରେ ମୋର ୨ୟ ପୁତ୍ରର ଉଭୟ ପୁତ୍ରଙ୍କ ବ୍ରତଘରରେ ଯୋଗ ଦେବା ପାଇଁ ନିଜ ଗାଡ଼ି ଧରି ଆସିଥିଲେ।

ବ୍ରତଘରଟି ଲକ୍ଷାଧିକ ଟଙ୍କା ବ୍ୟୟରେ ବହୁ ଜନସମାଗମରେ ଓ ମହାସମାରୋହରେ ପରମ୍ପରାନୁଯାୟୀ ସମ୍ବଲପୁରୀ ଚାଲରେ ଖୁଆନି ଘର ଅର୍ଦ୍ଧସମାପନ ହେଲା ଓ ସବୁ ସୁରୁଖୁରୁରେ ଘଟିଯିବାର ଏକ ଅତି ଆନନ୍ଦର ଘଟଣା।

୨୦୦୦ ମାର୍ଚ୍ଚ ମାସରେ ଆମର ମଝିଆଁ ପୁଅ ସୁଦୀପ୍ତ ନୂଆଁ ହୋଇ କିଣିଥିବା ଜୟଦେବ ବିହାରସ୍ଥ Flat ଘରର ଶୁଭାରମ୍ଭ ଅବସରରେ ଆମେ ଭୁବନେଶ୍ୱର ଯାଇଥିଲୁ। ଘରର କାମ ସମ୍ପୂର୍ଣ୍ଣ ହୋଇ ନ ଥିବାରୁ କେବଳ ଶୁଭ ବେଳା ଦେଖି ୧୩.୩.୨୦୦୦ ଦିନ କେବଳ ନଡ଼ିଆ ଭାଙ୍ଗିଥିଲୁଁ। ପରେ ସୁବିଧା ଦେଖି ଭଲ ଭାବେ ଘର ପ୍ରବେଶର ଆୟୋଜନ କରା ଯିବାର ସ୍ଥିର ହେଲା। ଏତଦ୍ଦ୍ୱାରା ଆମ ନିଜର ଘରଟିଏ ରାଜଧାନୀ ଭୁବନେଶ୍ୱରରେ ତୋଳିବାର ସୌଭାଗ୍ୟ ପ୍ରାପ୍ତି ପାଇଁ ପିତୃପିତାମହ ଓ ଈଶ୍ୱରଙ୍କଠାରେ ବହୁତ କୃତଜ୍ଞ ହେଲୁଁ।

ଏକ ଅନନ୍ୟ ଅନୁଭୂତି - ଇତି ମଧ୍ୟରେ ଆମ ଅଜଣାରେ ବାବୁ ସୁଦୀପ୍ତ ଆଗରୁ ତାଙ୍କ ଭାଇମାନଙ୍କ ମଧ୍ୟରେ କଥାବାର୍ତ୍ତା କରି ଆମ ସମସ୍ତଙ୍କର ତାର ପରିବାର ସହ ଏକ ଦୀର୍ଘକାଳୀନ ପରିଭ୍ରମଣ ବ୍ୟୋମଯାନ ଓ ସ୍ୱତନ୍ତ୍ର ଯାନ

ଯୋଗେ ବମ୍ବେ, ଦ୍ୱାରକା, ଅହମଦାବାଦ, ଦିଲ୍ଲୀ ଆଦି ବିଭିନ୍ନ ସ୍ଥାନ ଦର୍ଶନର କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । ଆମର ମଧ୍ୟ ଏକାନ୍ତ ବାସନା ଥିଲା ଯେ ଆମେ ସୁବିଧା ହେଲେ ବ୍ୟୋମଯାନ ଯାତ୍ରା କରନ୍ତୁ । ସେହି ଅଭିଳାଷ ପୂରଣର ସୁଯୋଗ ଓ ଶୁଭ ମୁହୂର୍ତ୍ତ ଆସି ପହଞ୍ଚିଲା ତା. ୧୪.୩.୨୦୦୦ । କେବଳ ତାର ପୂର୍ବ ଦିନ ଆମକୁ ଏ ବିଷୟ ଜଣାଇ ଆଶ୍ଚର୍ଯ୍ୟ ଓ ଆନନ୍ଦ ପ୍ରଦାନ କରିଥିଲା । ସେଦିନ ୧୧ଟାରେ ଉଡ଼ାଜାହାଜ ଚଢ଼ି ଲିଙ୍ଗରାଜଙ୍କୁ ଶୁଭ ପ୍ରତ୍ୟାବର୍ତ୍ତନ ପାଇଁ ପ୍ରାର୍ଥନା ଜଣାଇଲି । ଉଡ଼ାଜାହାଜ ଯାତ୍ରାର ସବିଶେଷ ବିବରଣୀ ପ୍ରଦାନ କଲେ ବିଶେଷ ଦୀର୍ଘ ହେବା ଜାଣି କେବଳ ମାନସିକ ସ୍ତରରେ ତାକୁ ଗୁପ୍ତ ରଖିଲି । ପ୍ରଥମରେ ସମସ୍ତଙ୍କୁ ପରିଚାରିକା ଚକୋଲେଟ ଦେଇ ସ୍ୱାଗତ ଜଣାଇବା ବେଳେ ଚାଳକଙ୍କଠାରୁ ଖବର ମିଳିଲା ଯେ ଆମେ କେତେ ଉଚ୍ଚରେ ଉଡୁଛୁଁ । ତାପରେ ମଧ୍ୟାହ୍ନ ଭୋଜନ ପରିବେଷଣ କରାଗଲା ଯାତ୍ରୀଙ୍କ ଇଚ୍ଛାନୁଯାୟୀ ଆମିଷ ବା ନିରାମିଷ । ଭୋଜନର କିଛି ସମୟ ପରେ ପ୍ରାୟ କେତେବେଳେ ଯେ ସମୟ ଅତିକ୍ରାନ୍ତ ହୋଇଛି ଜଣାଗଲା ନାହିଁ ଓ ପ୍ରାୟ ସାଢ଼େ ୩ଟା ବେଳେ ବମ୍ବେ ସାନ୍ତାକ୍ରୁଜ ବନ୍ଦରରେ ଅବତରଣ କଲୁଁ । ତାପରେ ବାହାରକୁ ଆସି ଆମକୁ ଅପେକ୍ଷାରତ ଶ୍ରୀଯୁକ୍ତ କୌଶିକ ବାବୁ ଆମକୁ ନିର୍ଦ୍ଧାରିତ ରୟେଲ ହୋଟେଲରେ ରଖାଇଲେ । ସେଠାରେ ଆମେ ଟିକିଏ ସ୍ନାନ ଶୌଚ ପରେ ବମ୍ବେ ଭ୍ରମଣରେ ଯାଇ ହରେକୃଷ୍ଣ ମନ୍ଦିର ଓ ଜୁହୁ କୂଳରେ କିଛି ସମୟ ଉପଭୋଗ କରି ହୋଟେଲକୁ ଫେରି ବିଶ୍ରାମ କଲୁଁ ।

ପରଦିନ ସକାଳୁ ୧୫.୩ରେ ସିଦ୍ଧି ବିନାୟକ ମନ୍ଦିର, କମଳା ନେହେରୁ ପାର୍କ, ବୁଟ ହାଉସ ଆଦି ଦେଖି ସମୁଦ୍ରକୂଳ ଓବେରୟ ହୋଟେଲରେ ବିଲ କ୍ଲିଣ୍ଟନଙ୍କ ଆଗମନ ପାଇଁ ପ୍ରସ୍ତୁତ ହେଲୁଁ । ମଧ୍ୟାହ୍ନ ଭୋଜନ ପରେ ତାଜମହଲ ହୋଟେଲ ଦେଖି ହୋଟେଲକୁ ଆସି ବିଶ୍ରାମ କଲୁଁ ।

ପରଦିନ ୧୬.୩ରେ ବାବୁ ତାର ପରିବାର ଧରି Essel World ଓ Water Kingdomରେ ଗଲେ ଓ ଆମେ ଦୁହେଁ ଆମର ସମ୍ବନ୍ଧୀ ଶ୍ରୀ ଭାବଗ୍ରାହୀ ମହାପାତ୍ରଙ୍କ କନିଷ୍ଠ ପୁତ୍ର ଶ୍ରୀକାନ୍ତଙ୍କ ପରଭେଲ ସ୍ଥିତ ବାସଭବନକୁ ଯାଇ ଦିନଟା କଟାଇଲୁଁ । ସନ୍ଧ୍ୟାରେ ବାବୁ ତାର ପରିବାର ଧରି ସେଠାକୁ ଫେରି ରାତ୍ର ଭୋଜନ ପରେ ହୋଟେଲକୁ ଫେରିଲୁଁ । ୧୭.୩ ଦିନ ଆମର ସିରିଡ଼ି ଯିବା ଶୁଣି ଶ୍ରୀକାନ୍ତ ବାବୁଙ୍କ ଅନୁରୋଧରେ ଆମେ ବମ୍ବରେ ରୟେଲ ହୋଟେଲ ଛାଡ଼ି ନାସିକ ବାଟେ ସିରିଡ଼ି ଗଲୁଁ । ସେଠାରେ ସିରିଡ଼ିଙ୍କ ଦର୍ଶନ କରି ସାଇ ପେଲେସରେ ରାତ୍ର ଯାପନ କଲୁଁ । ତା ପରଦିନ ସକାଳେ ପ୍ରାତଃ ଭୋଜନ ପରେ ପୁନା ଉଦ୍ଦେଶ୍ୟରେ ଯାତ୍ରା କଲୁଁ । କାରଣ ସେଠାରେ ଆମ ଝିଅ ବାସନ୍ତୀର ପୁତ୍ର ଅନୁରାଗ (ପପଲୁ) ଦାନ୍ତ

ଡ଼ାକ୍ତରୀ ପାଠ ପଢୁଥିଲା। ବାଟରେ ନାନା ସହର ମଧ୍ୟରେ ଅହମଦ ନଗରରେ ଅଙ୍ଗୁର ଓ ସପେଟା ବେଶ ଶସ୍ତାରେ ମିଳୁଥିଲା। ବାଟରେ ପିଆଜ ବସ୍ତା ଅମଳ ପରେ ବିକ୍ରି ପାଇଁ ରାସ୍ତା କଡ଼ରେ ଦେଖାଗଲା। ପ୍ରାୟ ୧ଟା ବେଳେ ପପଲୁଠାରେ ଯାଇ ପହଞ୍ଚିବାରୁ ସେ ଆଶ୍ଚର୍ଯ୍ୟ ହୋଇ ବିଶ୍ୱାସ କରି ପାରିଲା ନାହିଁ ଯେ ଆମେ ତା'ଠାକୁ ଯାଇଛୁଁ। ତାପରେ ସେଠାକାର ପ୍ରସିଦ୍ଧ ପଞ୍ଚମୀ ହୋଟେଲରେ ମଧ୍ୟାହ୍ନ ଭୋଜନ ସାରି ତାକୁ ତାର ବସାରେ ଛାଡ଼ି ଦେଇ ବମ୍ବେ ଫେରିଲୁଁ। ପହଞ୍ଚିଲା ବେଳକୁ ୭ଟା। ରାତ୍ରିରେ ବିଶ୍ରାମ ନେଇ ପରଦିନ ଜାମନଗର ଯିବାର ଥିଲା। ଏଥର ବମ୍ବେରେ ବହୁଗୁଡ଼ିଏ ଅର୍ଥାତ୍ ୫୪ଟା ଉଚ୍ଚ ରାସ୍ତା Highway ଦେଖିବାକୁ ହେଲା। ଜନଗହଳି ଦୃଷ୍ଟିରୁ ଗମନାଗମନର ସୁବିଧା ପାଇଁ ଏହା ଉଦ୍ଦିଷ୍ଟ।

୧୯.୩ରେ ବମ୍ବେରୁ ଜାମନଗର ପ୍ଲେନରେ ଯାଇ ସେଠାରୁ ଏକ ଗାଡ଼ୀରେ ଦ୍ୱାରିକା ବାଟେ ଅହମଦାବାଦ ଯିବାର ସ୍ଥିର କଲୁଁ। ଜାମନଗରରେ କିଛି ଭୋଜନ କରି ଦ୍ୱାରିକାରେ ପହଞ୍ଚିଲା ବେଳକୁ ପ୍ରାୟ ସନ୍ଧ୍ୟା ୫ଟା। ସେଠାରେ ଡ଼ା. ବେହେରାଙ୍କୁ ପଚ୍ଚାରି ଏକ ହୋଟେଲରେ ରହି ରାତ୍ରରେ ଦ୍ୱାରିକାଧୀଶ ମନ୍ଦିର ଦର୍ଶନ କଲୁଁ। ଭାଗ୍ୟକୁ ସେଦିନ ହୋଲି ଓ ହୋଲି ପୂର୍ଣ୍ଣିମା। ଦ୍ୱାରିକାରେ ପ୍ରଭୁଙ୍କର ସଙ୍ଗେ ହୋଲି ଖେଳ ଓ ପର ଦିନ ବେଟ୍‌ଦ୍ୱାରକା ଯାଇ ସେଠାରେ ମଧ୍ୟ ହୋଲି ପର୍ବର ଅନୁଭୂତି ବିଶେଷ ଆନନ୍ଦପ୍ରଦ ହୋଇଥିଲା। ସେଠାରୁ ଗାଡ଼ିରେ ସମୁଦ୍ର କୂଳ ରାସ୍ତାରେ ଯାଇ ବାଟରେ ପୋରବନ୍ଦରରେ ଗାନ୍ଧୀଜୀଙ୍କ ଜନ୍ମସ୍ଥାନ ଦେଖି ସୋମନାଥ ପହଞ୍ଚିଲା ବେଳକୁ ପ୍ରାୟ ସନ୍ଧ୍ୟା ୮ଟା। ହୋଟେଲରେ ଧୁଆଧୋଇ ହୋଇ ମନ୍ଦିରକୁ ଦର୍ଶନ କରିବାକୁ ଗଲାବେଳେ ଆରତି ସମୟ। ସେଠାରେ ପ୍ରାୟ ୩ ଫୁଟ ପରିଧି ବିଶିଷ୍ଟ କଳା ମୁଗୁନୀ ପଥରର ଏକ ୩ ଫୁଟ ଉଚ୍ଚର ଶିବଲିଙ୍ଗ ବେଶ ମନୋରମ ଓ ଦର୍ଶନୀୟ। ତାଙ୍କୁ ଦର୍ଶନ ସାରି ଆସି ରାତ୍ରିରେ ବିଶ୍ରାମ ନେଲୁଁ।

ତା ପରଦିନ ୨୧.୩ରେ ପୁଣି ଥରେ ସୋମନାଥ ଦର୍ଶନ ସକାଶେ ଗଲାବେଳେ ସେଠାରେ ବହୁ ସଂଖ୍ୟକ ଲୋକ କ୍ଷୀର ଧରି ଶିବଙ୍କ ଉଦ୍ଦେଶ୍ୟରେ ବିକ୍ରୀ କରିବାର ପ୍ରଚଳିତ ପ୍ରଥା ଓ ତାକୁ ନେଇ ଭିଦଙ୍କୁ କ୍ଷୀର ସ୍ନାନ କରି ମନ୍ଦିର ବେଢ଼ା ପରିକ୍ରମା କଲାବେଳେ ମନ୍ଦିରର ଏକ ପାର୍ଶ୍ୱରେ ସମୁଦ୍ର ଲହରୀ ଆସି ଅତି ରମଣୀୟ ଦୃଶ୍ୟ ପ୍ରଦାନ କରୁଥିଲା। ସେଠାରୁ ଫେରି ହୋଟେଲରୁ ଜିନିଷପତ୍ର ଧରି ଅହମଦାବାଦ ଉଦ୍ଦେଶ୍ୟରେ ଜୁନାଗଡ଼ ଓ ରାଜକୋଟ ଦେଇ ସେଠାରେ ପହଞ୍ଚିଲା ବେଳକୁ ପ୍ରାୟ ସାଢ଼େ ୪ଟା। ଶ୍ରୀଯୁକ୍ତ ପଟେଲ ଆମ ଅପେକ୍ଷାରେ ଥିଲେ। ଆମକୁ ନେଇ ଏକ Guest Houseରେ ରଖାଇଲେ। ଅହମଦାବାଦ ଯିବା ବାଟରେ ପଇଡ଼, ଆଖୁ ପଣା, ଘୋଳଦହି ବହୁ ଶସ୍ତାରେ ମିଳୁଥିଲା। Guest Room

ଦୁଇଟି ଯାକ ଶୀତତାପ ନିୟନ୍ତ୍ରିତ । ଆମେ ଧୂଆଧୂଇ ହୋଇ ସାମାନ୍ୟ ଜଳଖିଆ ପରେ ବିଶ୍ରାମ କଲୁଁ । ବାବୁ ଓ ତାର ପିଲାମାନେ ସହରକୁ ଯାଇ ଯାହା କିଛି ଇଚ୍ଛାନୁସାରେ ସଉଦା କିଣାକିଣି କଲେ । ଆମେ ୧୯୮୬ରେ ଆମ ଦ୍ୱିତୀୟ ଝିଅ ବାସନ୍ତୀର ପତି Dr. G.C. Satpathy C.R.P.F.ରେ ମେଡ଼ିକାଲ ଅଫିସର ଥିଲେ । ଆମେ ସେତେବେଳେ ଯାଇ ଅହମଦାବାଦ ଯାଇଥିଲୁଁ । ତେଣୁ ଆମର ସେତେ ଆଗ୍ରହ ନ ଥିଲା । ହେଲେହେଁ ପରଦିନ ୨୩.୩ ସକାଳେ ଜଳଖିଆ ସାରି ଅହମଦାବାଦ ଭ୍ରମଣରେ ବାହାରି ଆଶାରାମ ବାପୁଙ୍କ ଆଶ୍ରମ, ଅକ୍ଷୟ ଧାମ ଓ ସାବରମତି ଆଶ୍ରମ ଓ ଆଜଲେଜ କୂଅଁ ଦେଖିଲୁ । ଏହା ୧୪୪୮ ସାଲରେ ନିର୍ମିତ ହେବାର ସୂଚନା ମିଳେ ।

ସେଦିନ ସନ୍ଧ୍ୟାରେ ହୋଟେଲରୁ ଏରୋଡ୍ରମ ଗଲୁଁ ଓ ଜାଣିଲୁଁ ଯେ ସେଦିନର ରାତ୍ର ଦିଲ୍ଲୀ ଯାତ୍ରୀ ବିମାନର ଯାନ୍ତ୍ରିକ ତ୍ରୁଟି ହେତୁ ତାହା ବାତିଲ କରା ଯାଇଥିଲା । ତେଣୁ ବ୍ୟୋମଯାନ ଚ୍ଚଳନା କର୍ତ୍ତୃପକ୍ଷ ଆମକୁ ରାତିରେ ଏକ 5 Star ହୋଟେଲରେ ନେଇ ରଖାଇଲେ । ଏପରି ହୋଟେଲରେ ଆମ ଭଳି ସାଧାରଣ ଲୋକଙ୍କ ରହିବା କଳ୍ପନାତୀତ । ତଥାପି ସେଠାରେ ରାତ୍ରି କଟାଇ ସକାଳେ ଟବ୍ (କୁଣ୍ଡ)ରେ Foam Bath କରି ବେଶ ଉପଭୋଗ କଲୁଁ । ବେଶୀ ଖୁସି ହେଲା ଆମ ନାତି ପିକ୍‌ଲୁ । ତାପରେ ବସ୍‌ରେ ଏରୋଡ୍ରମକୁ ଆସି ୭ଟା ବେଳେ ପ୍ଲେନରେ ବାହାରି ବରୋଦା ବାଟେ ଦିଲ୍ଲୀ ପହଞ୍ଚିଲା ବେଳକୁ ପ୍ରାୟ ଦିନ ସାଢ଼େ ୧୧ଟା । ପ୍ଲେନରେ କେବଳ ଜଳଖିଆ ଦିଆ ଯାଇଥିଲା । ଦିଲ୍ଲୀରେ ପହଞ୍ଚ ଆଗରୁ ବ୍ୟବସ୍ଥାନୁଯାୟୀ ରାତ୍ରରେ ଗାଡ଼ି ଆସି ଫେରି ଯାଇଥିଲା ଓ ତାହା ପୁଣି ସକାଳୁ ଆସି ଆମକୁ ନେଇ ବୋହୂ ତୃପ୍ତିର ପିଉସୀ ନାନୀଙ୍କ ଝିଅ ଘରକୁ ନେଲା । ସେଠାରେ ଘର କରି D.L.F/4 କଲୋନୀରେ ଅଛନ୍ତି । ସେଠାକୁ ଯାଇ ସ୍ନାନ ଶଉଚ ପରେ ଭୋଜନ ସାରି ୩ଟା ବେଳେ ସ୍ୱତନ୍ତ୍ର ଗାଡ଼ିରେ ଲୋଟସ ଟେମ୍ପଲ, କୁତୁବ ମୀନାର ବାଟେ କୋସାମ୍ବିର ଗୋବର୍ଦ୍ଧନ ଟାଓ୍ୱାରରେ ପହଞ୍ଚିଲୁ ୫ଟା ବେଳେ । ଆମର ନାତୁଣୀ ଝୁନୀ - ମାଧୁରୀର ଝିଅର ପତି ଆଶିଷ ମିଶ୍ର H.P.C.Lରେ ମେନେଜର ଅଛନ୍ତି । ତାଙ୍କ ୮ ତାଲା ଉପରେ ୬ ନମ୍ବର କ୍ୱାଟର୍ସରେ ରହୁଥିଲେ । ଆଶିଷ ବାବୁଙ୍କ ନାନୀ, କୋଇଁ ତଥା ଆମ ବରଗଡ଼ର ବନ୍ଧୁ ଗୋପାଳ ମିଶ୍ରଙ୍କ ବଡ଼ ପୁଅ ବିକ୍ରମାଦିତ୍ୟ ମିଶ୍ର ସପରିବାର ନିଜର ଅଫିସ କାମରେ ସେଠାରେ ପହଞ୍ଚିଲେ । ସେ ତତ୍କାଳୀନ IDCOLରେ ଓ ଏବେ A.C.C.ରେ Law Officer ଅଛନ୍ତି । ସମସ୍ତେ ମିଶି ବେଶ ଆନନ୍ଦରେ ରାତ୍ର ଯାପନ କଲୁଁ ।

ପରଦିନ ୨୪.୩ରେ ବିକ୍ରମ ବାବୁ ତାଙ୍କ ଅଫିସ କାମରେ ଗଲେ ଓ ବାକୀମାନେ ମୋତେ ଓ ଝୁନୀକୁ ଛାଡ଼ି ଆଗ୍ରା, ମଥୁରା ଯାଇ ସନ୍ଧ୍ୟାରେ ଫେରିବା ବେଳକୁ ରାତ୍ର ସାଢ଼େ ୮ଟା ପର । ମୁଁ ଆଗରୁ ସେ ସବୁ ଦେଖି ଥିବାରୁ ଗଲି ନାହିଁ।

ପରଦିନ ୨୫.୩ରେ ଦୁଇଟି ଗାଡ଼ିରେ ସମସ୍ତେ ହରଦ୍ୱାର, ଋଷିକେଶ ଅଭିମୁଖେ ବାହାରିଲୁଁ। ବାଟରେ ଓ୍ୱେତାଲ ବଗିଚ୍ଚରେ ଟ୍ ଖାଇ ବୁଲାବୁଲି କରି ହରଦ୍ୱାର ପହଞ୍ଚିଲା ବେଳକୁ ୪ଟା ପର । ସେଠାକୁ ଯାଇ Ropewayରେ ମନସା ଦେବୀ ମନ୍ଦିର ଦର୍ଶନ କରି ଫେରି ବାଟରେ କିଛି ସଉଦା କରି ଗଙ୍ଗା କୂଳରେ ଗଙ୍ଗା ଆରତୀ ବେଶ ଉପଭୋଗ୍ୟ ଥିଲା । ସେଠାରୁ ଋଷିକେଶ ଯାଇ ଏକ ଆଶ୍ରମର ୫ଟି କୋଠରୀରେ ରହିଲୁଁ। ରାତ୍ର ଭୋଜନ ଚୋଟିଓ୍ୱାଲା ହୋଟେଲରେ ସନ୍ତୋଷରେ ସମାପନ ହୋଇଥିଲା । ପରଦିନ ୨୬.୩ କୌଣସି କାରଣ ବଶତଃ ଦୋକାନ ବଜାର ବନ୍ଦ ଥିଲା । ତେଣୁ ସୁବିଧାରେ ଜଳଖିଆ ମିଳିଲା ନାହିଁ। ସେଠାରୁ ଶିବାନନ୍ଦ ଆଶ୍ରମ ଯାଇ ସ୍ୱାମୀ ଚିଦାନନ୍ଦଜୀଙ୍କୁ ସାମାନ୍ୟ ଦର୍ଶନ କରି ଲଛମନ ଝୁଲା ଯାଇ ୧୪ ତାଲା ମହଲରେ ଭାରତର ସବୁ ଦେବାଦେବୀଙ୍କ ଦର୍ଶନ ପରେ ଫେରିବା ବାଟରେ ଗୁରୁକୁଟୀର ପଛରେ ସ୍ୱାମୀ ଚିଦାନନ୍ଦଜୀ ମହାରାଜ ଗଙ୍ଗା ପୂଜନ କରୁଥିବା ଜାଣି ପାଖକୁ ଯାଇ ଦର୍ଶନ କରି Videoରେ ତାଙ୍କ ଚିତ୍ର ଗ୍ରହଣ କରି ଦିଲ୍ଲୀ ଅଭିମୁଖେ ବାହାରିଲୁଁ। ବାଟରେ ଭୋଜନାଦି ସାରି ଦିଲ୍ଲୀ ପହଞ୍ଚିଲା ବେଳକୁ ପ୍ରାୟ ୫ଟା । ସମସ୍ତେ ପ୍ରାୟ କ୍ଳାନ୍ତ, ତେଣୁ କୌଣସି ମତେ ଖିଆପିଆ ସାରି ବିଶ୍ରାମ ନେଲୁଁ।

ପରଦିନ ୨୭.୩ ଆମ ଭୁବନେଶ୍ୱର ଫେରିବା କଥା । କିନ୍ତୁ ପିଲାଏ ଦିଲ୍ଲୀ ପୁରାପୁରି ଦେଖି ନ ଥିବାରୁ ସେଦିନ ବୁଲାବୁଲି କରି ରାତ୍ରିରେ ବିଶ୍ରାମ ନେଲୁଁ। ୨୮.୩ରେ ଭୁବନେଶ୍ୱର ଯିବା ପାଇଁ ପ୍ରସ୍ତୁତ ହୋଇ ଏରୋଡ୍ରମକୁ ଗଲାବେଳେ ଉଡ଼ାନ୍ କିଛି ବିଳମ୍ବ ଥିବାରୁ ସମସ୍ତ ଯାତ୍ରୀଙ୍କୁ କିଛି Snacks ପ୍ରଦାନ କରିଥିଲେ। ତାପରେ ଠିକ୍ ସାଢ଼େ ୧୦ରେ ଉଡ଼ାନ୍ ଆରମ୍ଭ ହୋଇ ଦେଢ଼ଟାରେ ଭୁବନେଶ୍ୱର ପହଞ୍ଚିଲୁଁ ; ଉତ୍କଳଭୂମି ସ୍ପର୍ଶ କରି ଆମେ ସର୍ବଶୁଭରେ ଫେରି ଥିବାରୁ ପ୍ରଭୁଙ୍କୁ ଅଶେଷ ପ୍ରାର୍ଥନା କଲି । ସେଦିନ ବିଶ୍ରାମ ନେଇ ପରଦିନ ୨୯.୩ରେ ପୁରୀ ଯାଇ ଜଗନ୍ନାଥ ଦର୍ଶନ କରି ସନ୍ଧ୍ୟାରେ ଫେରିଲୁଁ ଓ ରାତ୍ର ବସ୍‌ରେ ବରଗଡ଼ ଫେରିଲୁଁ ଓ ୩ଟାରେ ପହଞ୍ଚିଲୁ । ଏକ ନୂଆ ଅନୁଭୂତି ଓ ସ୍ମରଣୀୟ ଓ ଅନନ୍ୟ ମନେ ହେଲା । ଧନ୍ୟ ଗୁରୁଙ୍କ ଆମ ପ୍ରତି କରୁଣା । 'ଜୟ ଗୁରୁ, ଜୟ ଜଗନ୍ନାଥ, ଜୟ ଲିଙ୍ଗରାଜ।

ନାନା ଆଧ୍ୟାତ୍ମିକ କର୍ମ ଓ ସାମାଜିକ କର୍ମରେ ଯୋଗଦାନ ହେତୁ

ଅଂଶୁଘାତରେ ୫/୬ ଦିନ ଧରି ପୀଡ଼ିତ ହେଲି । କିଛି ଦିନ ପରେ ସାମାନ୍ୟ ସୁସ୍ଥ ଅନୁଭବ କରି ୨୪.୬.୦୨ ଦିନ ଚୈତନ୍ୟ ଚରଣ ଦାଶଙ୍କ ବରଗଡ଼ ଆଗମନ । ସେଦିନ ଦେବସ୍ନାନ ପୂର୍ଣ୍ଣିମା ପାଇଁ ବାଲାଜୀ ଭବନ ଦୋରାବନ୍ଧ ଆଡ଼ିରେ ସତ୍ସଙ୍ଗର ଆୟୋଜନ ହେତୁ ଶାରୀରିକ ବ୍ୟସ୍ତତା ହେତୁ ପର ଦିନଠାରୁ ୨୫.୬.୦୨ରୁ ପ୍ରାୟ ୩ ସପ୍ତାହ ଜ୍ୱର, କାଶରେ ଅସୁସ୍ଥ ପରେ ପରୀକ୍ଷା ପରେ କାଶ ହେତୁ ଅସୁସ୍ଥ ଓ ଔଷଧ ସେବନ । ପୁଣି ଜୁଲାଇ ଶେଷ ସପ୍ତାହରେ Angimaରେ ଆକ୍ରାନ୍ତ ହେତୁ ୮ଟା ଇଂଜେକ୍ସନ ପ୍ରାୟ ଟ.୩୦୦୦ର, X'ray, ପରିସ୍ରା, ରକ୍ତ ପରୀକ୍ଷା ଓ ମଝିରେ Dr. J.P.Lathଙ୍କ ନିବାସକୁ ଯାଇ ଆଲୋଚନା । ଚିକିତ୍ସା ଠିକ୍ ଚାଲିଥିଲେ ମଧ ଏକ ଅନ୍ୟ ପରୀକ୍ଷା କରାଇ ତଦନୁସାରେ ଔଷଧ ସେବନ । ପ୍ରାୟ ଜୁଲାଇ ଶେଷ ଆଡ଼େ ଅର୍ଥାତ୍ ୨୬/୨୭ରେ ଜ୍ୱର ଉପଶମ ଓ ସମ୍ପୂର୍ଣ୍ଣ ଜ୍ୱର ନିବାରଣ କିନ୍ତୁ ବହୁ ଦିନର ଜ୍ୱର ହେତୁ ଦୁର୍ବଳତା । ସମ୍ବଲପୁର, କଟକ, ଭୁବନେଶ୍ୱର, ରାଉରକେଲା, ବଲାଙ୍ଗିରରୁ ଝିଅ, କୋଇଁ, ପୁଅ, ବହୁମାନେ ଆସି ସେବା ଶୁଶ୍ରୁଷା, ସୁଦୀପ୍ତ ୨ ଥର ଆସିଥିଲା । ଏବେ ପ୍ରାୟ ବଳ ଧୀରେ ଧୀରେ ଆସିବାକୁ ଲାଗିଲାଣି । ସବୁ ଗୁରୁ ଗୋବିନ୍ଦଙ୍କ କୃପା । ଋଷିକେଶରୁ ବିଶ୍ୱନାଥ ମନ୍ଦିରରେ ପୂଜା ହୋଇ ପ୍ରସାଦ ଓ ବିଭୂତି ଆସିବାରୁ ମନରେ ଅଶେଷ ଶାନ୍ତି ସାନ୍ତ୍ୱନା ଓ ବଳ ଆସିଗଲା ।

ଅଗଷ୍ଟ ମାସର ଶେଷ ସପ୍ତାହରେ ଅର୍ଥାତ୍ ୨୫/୮ ରୁ ୨୮/୮ ପର୍ଯ୍ୟନ୍ତ ରାତ୍ରରେ ଟିକିଏ ଛାତିରେ ଓ ଗଳାରେ ଅସୁବିଧା ଲାଗିବାରୁ ଔଷଧର ପରିବର୍ତ୍ତନ କରି ଖାଇବାକୁ ଦେଇ ମଧ ସମ୍ପୂର୍ଣ୍ଣ ସୁସ୍ଥତା ଅନୁଭବ କରି ନ ପାରିବାରୁ ଶେଷରେ ଗତ ୩/୯ ଆଡ଼େ ଭାଇଜାଗ Appollo ଡାକ୍ତରଖାନାକୁ ଯାଇ ସେଠାରେ Engeography କରାଯାଇଛି । ସବୁ ଭଗବତ୍ କୃପା ଓ ଗୁରୁଗୋବିନ୍ଦଙ୍କ କରୁଣାରୁ କୁଶଳରେ ଚିକିତ୍ସିତ ହୋଇ ଫେରିଲି । ୨.୯.୦୨ ଦିନ Vizag ଯାଇ Engiography ପରେ ୭.୯.୦୨ରେ ପରୀକ୍ଷା ପରେ ଫେରିଲୁଁ । ଲୁଲୁ ବାବୁ ସଙ୍ଗେ ଯାଇଥିଲେ ଓ ସୁଦୀପ୍ତ Vizag ମଧ ଆସିଥିଲା । ସେଥିରେ ଯାହା ଦେଖାଗଲା ସେଥିରେ କେବଳ ଔଷଧ ସେବନର ବ୍ୟବସ୍ଥା ଥିଲା ଓ ପୂର୍ଣ୍ଣ ନିରାପଦ ମନେ କରି ନବାନ୍ନ ବେଳେ ସମସ୍ତେ ବିଚାର କରି ପୁଣି ୨୧/୯ରେ Vizag ଯାଇ ୨୩/୯ରେ Bypass Surgery କରାଯାଇ ସଫଳତା ସହ କାର୍ଯ୍ୟ ଶେଷ ହେଲା । ସେଠାରେ ପ୍ରାୟ ୨/୧୦ ପର୍ଯ୍ୟନ୍ତ I.C.Uରେ ରହି ସେଦିନ ଡାକ୍ତରଖାନାରୁ ଅବ୍ୟାହତି ନେଇ ରାତିରେ ଟ୍ରେନ୍‌ରେ ଘରକୁ ଫେରି ବରଗଡ଼ରେ ପହଞ୍ଚିଲୁଁ । ସେଦିନ ଠାରୁ ଧୀରେ ଧୀରେ ଆରୋଗ୍ୟ କରିବାକୁ ହେଲା ଓ ୯/ ୧୦ରେ Dr. N.K.Panigrahiଙ୍କୁ ସମ୍ବଲପୁରରେ ଦେଖାଇ ସବୁ ଠିକ୍ ବୋଲି

ଫେରିଛୁ। ଏବେ କ୍ରମେ ସୁସ୍ଥତର ଦିଗରେ ଗତି କରୁଛି।

ଆଉ ଏକ ଅଭୁଲା ସ୍ମୃତି - ୨୭.୧୦.୦୩ରୁ ୨୯.୧୦.୦୩ ପର୍ଯ୍ୟନ୍ତ ଗଞ୍ଜାମ ଜିଲ୍ଲାର ବୁଗୁଡ଼ାଠାରେ People's High Schoolରେ ଦକ୍ଷିଣାଞ୍ଚଳ ଦିବ୍ୟ ଜୀବନ ସଂଘ ଅନୁଷ୍ଠିତ ହୋଇଥିଲା। ସେଥିରେ ପରିବ୍ରାଜକ, ସଭାପତି ତଥା ଦିଗ୍‌ଦର୍ଶକ ଥିଲେ ଓଡ଼ିଶାର ସର୍ବପ୍ରଥମ ଶିବାନନ୍ଦଙ୍କ ପ୍ରତ୍ୟକ୍ଷ ଶିଷ୍ୟ (ଶ୍ରୀ ଦୁର୍ଲ୍ଲଭ ଚୌଧୁରୀ ପୂର୍ବାଶ୍ରମ ନାମ) ଅଧୁନା ସ୍ୱା. ଶିବାନନ୍ଦ ଗୁରୁ ସେବାନନ୍ଦ ଜୀ ମହାରାଜ। ତାଙ୍କ ଆମ ଶାଖା ପ୍ରତି ଅତିଶୟ ଅନୁରାଗ ଓ ଅନୁକମ୍ପା ହେତୁ ଆମ ଶାଖାର ସଭାପତି ଓ ତାଙ୍କ ସ୍ତ୍ରୀଙ୍କୁ ତତ୍‌ସଙ୍ଗେ ଆମ ଦୁଇ ପତୀପତ୍ନୀଙ୍କୁ ମଧ୍ୟ ସେହି ସମ୍ମିଳନୀରେ ଯୋଗ ଦେବାକୁ ଆମନ୍ତ୍ରଣ କରିଥିଲେ। ଅସୁବିଧା ହେତୁ ହେଉ ବା ସୁଯୋଗ ପାଇବାରୁ ବଞ୍ଚିତ ହୋଇ ମୋ ସ୍ତ୍ରୀ ଆମ ସଙ୍ଗେ ଗଲେ ନାହିଁ। ଆମେ ତିନିଜଣ ୨୬.୧୨ରେ ବାହାରି ୨୭ରେ ବୁଗୁଡ଼ାରେ ପହଞ୍ଚିଲୁଁ। ସେଠାରେ ଆମ ତିନିଜଣଙ୍କୁ ଗୁରୁଭକ୍ତିରତ୍ନ ଓ ଗୁରୁଭକ୍ତି ଜ୍ୟୋତି ଓ ଆଧାତ୍ମ ଜ୍ୟୋତି ସମ୍ମାନରେ ସମ୍ମାନିତ କରାଯାଇ ଉପଢ଼ୌକନ ସହ ଗୁରୁ କୃପା ଲାଭ କରିଥିଲୁଁ। ଏହା ଜୀବନର ଏକ ଅଭୁଲା ସ୍ମୃତି କହିଲେ ଅତ୍ୟୁକ୍ତି ହେବ ନାହିଁ।

୨.୧.୨୦୦୧):-

ବର୍ଷେ ପରେ ଏହା କଟକର ବାରବାଟୀ ଷ୍ଟେଡିଅମରେ ଅନୁଷ୍ଠିତ ହୋଇଥିଲା। ସେଥିରେ ମୁଁ, ମୋର ସ୍ତ୍ରୀ, ଆମ ସମୁଦି ଡ଼ା. ଭାବଗ୍ରାହୀ ମହାପାତ୍ର ଓ ତାଙ୍କ ସ୍ତ୍ରୀ, ମୋର ଅନ୍ୟତମ ଛାତ୍ର ପରୀକ୍ଷିତ ଆଚାର୍ଯ୍ୟ ଓ ତାଙ୍କ ସ୍ତ୍ରୀ ଯୋଗ ଦେଇଥିଲୁଁ। ଆମ୍ଭେମାନେ ସମସ୍ତେ ତତ୍କାଳୀନ କଟକରେ ଅବସ୍ଥାପିତ S.P. ଶ୍ରୀଯୁକ୍ତ ରଙ୍ଗାଧର ଶତପଥୀଙ୍କ ବାସଭବନରେ ରହି ସମ୍ମିଳନୀ ଦେଖିବାର ସବୁ ସୁବିଧା ଉପଭୋଗ କରିଥିଲୁଁ। ଏଥିରେ ଶତପଥୀ ଓ ତାଙ୍କ ସ୍ତ୍ରୀ ଶ୍ରୀମତୀ ଲତା ଶତପଥୀଙ୍କ ମହାନ୍ ଉଦାରତା ଅନୁଭବ କରିଥିଲୁଁ।

ଶ୍ରୀଯୁକ୍ତ ଶତପଥୀ ତାଙ୍କ ବରଗଡ଼ ରହଣୀ କାଳରେ ଆମ ଦିବ୍ୟ ଜୀବନ ସଂଘର ସଙ୍ଗଠନ ସକାଶେ ଯଥାର୍ଥ ଉପଦେଶ ଦେଇଥିଲେ। ପୁଣି ତତ୍କାଳୀନ ଶିଶୁ ରୋଗ ବିଶେଷଜ୍ଞ ଡ଼ା. କେ.କେ. ପୃଷ୍ଟିଙ୍କ ସାହାଯ୍ୟ ଓ ପ୍ରେରଣା ଅତି ଅଦ୍ଭୁତ୍ ଭାବରେ କାର୍ଯ୍ୟକାରୀ ହେଲା। ସେହି ଦିନଠାରୁ ସେ ଆମ ସଂଘର ସବୁ କର୍ମରେ ପ୍ରାୟ ସଂପୃକ୍ତ ଓ ଉପଦେଶ ଦେଇ ଚାଲିଛି।

ମୋର ନାତୁଣୀ ପ୍ରଦୀପ୍ତ ବାବୁଙ୍କ ପ୍ରଥମ ଝିଅ ଅରୁଣିମା (ଲିଶା) ଏବେ B.Sc ପାସ୍ କରିଛି । ତାର ଭଉଣୀ ଅଲୌକିକା (ଲିକା) ଗତ ୨୦୦୨ରୁ ଭୁବନେଶ୍ୱରରେ Nilachal Instituteରେ Physio Therapyରେ ଯୋଗ ଦେଇ ଦ୍ୱିତୀୟ ବର୍ଷରେ ଅଧ୍ୟୟନରତ । ଆମ ଦ୍ୱିତୀୟ ଝିଅ ବାସନ୍ତୀର ଏକମାତ୍ର ଅନାମିକା (Igloo) ଇଂରାଜୀରେ M.A. କରି M.B.A. ପରେ ଏବେ Reliance କମ୍ପାନୀରେ କାର୍ଯ୍ୟରତ ଓ ବେଶ ଖୁସିରେ ଅଛି । ତାର ପ୍ରଚେଷ୍ଟାରେ ଗତ ବର୍ଷର ରାକ୍ଷୀ ପୂର୍ଣ୍ଣମୀ ଦିନ ୨୯.୦୮.୦୪ ରବିବାର ଦିନ ତାଙ୍କ କମ୍ପାନୀର ସୌଜନ୍ୟରୁ ମୁଁ, ମୋ ସ୍ତ୍ରୀ, ସୁଦୀପ ଓ ତାର ପୁଅ ଅର୍ଣ୍ଣବ ଏକ Video Conferenceରେ ଯୋଗ ଦେଇଥିଲୁଁ ପ୍ରାୟ ୧୫-୨୦ ମିନିଟ ପର୍ଯ୍ୟନ୍ତ । ଅନ୍ୟ ପକ୍ଷରେ ଦିଲ୍ଲୀରେ ଥିବା ଆଶିଷ ବାବୁ, ଝୁନୀ ଓ ତାର ଛୁଆମାନେ ଆମ ସଙ୍ଗରେ କଥାବାର୍ତ୍ତା କରିଥିଲେ । ଏହା ଏକ ପରମ ସୌଭାଗ୍ୟ ଓ ଉପଭୋଗର ବସ୍ତୁ ନୁହେଁ କି ! ବର୍ତ୍ତମାନ ଯୁଗରେ ସବୁ ସମ୍ଭବ ହେଲାଣି । କିସ ପୁଣି ଦେଖା ନ ଯାଏ ବଞ୍ଚି ଥିଲେ ଜୀବନେ । ଏକ ନୂତନ ଅନୁଭୂତିର ସ୍ୱାଦ ଗ୍ରହିଲୁଁ ଓ ଧନ୍ୟ ହେଲୁ । ତାର ବଡ଼ ଭାଇ ପପଲୁ କର୍ଣ୍ଣାଟକରେ ୫ ବର୍ଷ ହେଲା Dental Surgeryରେ M.D. କରୁଛି । ଆମର ଜ୍ୟେଷ୍ଠ ନାତି ଅନ୍ୱେଷ ଭାଇଜାଗ ବିକାଶ ସଂସ୍ଥାରେ +2 Sc. ପାସ୍ କଲାଣି । ଅନ୍ୟମାନେ ସମସ୍ତେ ନିଜ ନିଜ ସାଧନାରେ ବ୍ୟସ୍ତ ।

ମୋର ବ୍ୟକ୍ତିଗତ କାର୍ଯ୍ୟକ୍ରମ କେବଳ ଗୁରୁବାଣୀ ପ୍ରଚାର, ପ୍ରସାର ଓ ଗୁରୁଙ୍କ ଲେଖା ଅନୁବାଦ କର୍ମରେ ବ୍ୟସ୍ତ । ଗତ ୧୯୭୦ରୁ ଆରମ୍ଭ କରା ଯାଇଥିବା Light Fountainର ଅନୁବାଦ ଗତ ୨୦୦୪ରେ ଶେଷ ହେଲା । ମୋର ଜୀବନୀ ମଧ୍ୟ ପ୍ରାୟ ଲେଖା ସରିଛି । ଅଳ୍ପ ଦିନ ମଧ୍ୟରେ ପ୍ରକାଶିତ ହେବ । ସବୁ ଗୁରୁ ବିଭୁ କୃପା ଉପରେ ନିର୍ଭର । ଏହା ଶେଷ ହେଲେ ଜୀବନର ଅନ୍ତିମ ବାସନା ପୂରଣ ହେବ ।

ଇତିମଧ୍ୟରେ ଏକ ଅତି ସୁଖଦ ଘଟଣା - ଭାଇ ଝସକେତନ ଦାଶଙ୍କର ଏକମାତ୍ର ପୁତ୍ର ମଳୟ କିଶୋର ଦାଶ M.A. Computer ବେଙ୍ଗାଲୋରରେ I.B.M. କମ୍ପାନୀରେ ଯୋଗ ଦେବାର ଅଛି । ଏହା ମଧ୍ୟ ଏକ ଇଶ୍ୱରଙ୍କ ଅପାର କରୁଣା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଇତିମଧ୍ୟରେ ଆମ ଅଞ୍ଚଳର ବିଶିଷ୍ଟ ସ୍ୱନାମଧନ୍ୟ ପୌଣ୍ଡିଆ କାଦୋବାହାଲ ନିବାସୀ ବିନୋଦ ବିହାରୀ ଦାଶଙ୍କର ପୌତ୍ରଙ୍କ ସଙ୍ଗରେ ଭାଇ ଝସକେତନର ବଡ଼ ଝିଅର ବିବାହ ହୋଇ ଏବେ ଏକେ କନ୍ୟା ସନ୍ତାନର ମାତା ହୋଇ ସାରିଛି । ତାହା ବି ଏକ ଆନନ୍ଦପ୍ରଦ ଘଟଣା ।

ମଣିଷ କାଳକ୍ରମାନୁଯାୟୀ ସେହି ପରମ କଲ୍ୟାଣୀୟ ମହାକାଳ

ଧର୍ମରାଜଙ୍କଠାରୁ ନିର୍ଦ୍ଦେଶ ଆସେ । ଆମ ବୟସ ବୃଦ୍ଧି ସଙ୍ଗେ ଏ ଶରୀରରେ ଦେଖା ଦିଏ ନାନା ପ୍ରକାର ପରିବର୍ତ୍ତନ । କିନ୍ତୁ ଏହି ଅଜ୍ଞ ମାନବ ଅର୍ଥାତ୍ ଆମେ ସେ ସବୁକୁ ଧ୍ୟାନ ନ ଦେଇ ସଂସାରିକ ମୋହଜାଲରେ ମାତି ରହୁ । କିନ୍ତୁ କାଳର ଅନିବାର୍ଯ୍ୟ ଗତିରେ ତାହା ସମାହିତ ହୁଏ । ଏ ସବୁକୁ ମନେ ରଖି ସଦାବେଳେ ଗୁରୁ ଓ ସ୍ରଷ୍ଟାଙ୍କୁ ଧ୍ୟାନ କରି ଏ ଜୀବନରେ ସୁରୁଖୁରୁରେ ବିତାଇବାକୁ ପ୍ରଯତ୍ନ କରିବାକୁ ହେବ । ତେଣୁ ସଦାବେଳେ ଗୁରୁ ଓ ଈଶ୍ୱରଙ୍କ ନାମରେ କାମ କରି ଯିବାକୁ ହେବ ।

ଭଗବାନ ଯୀଶୁ ବା ପରମ କାରୁଣିକ ଶ୍ରୀରାମ, କୃଷ୍ଣ ଓ ବିଷ୍ଣୁ ଭଗବାନ ଆମର ସୁକୃତ ଅନୁସାରେ ଆମର ଭାଗ୍ୟ ଓ କୃତ କର୍ମର ଫଳ ନିର୍ଣ୍ଣୟ କରିଛନ୍ତି । ସେହି ହିସାବରେ ମୁଁ ନିଜକୁ ପରମ ଭାଗ୍ୟବାନ ମନେ କରୁଛି । ଏଥିରେ ପିତୃପିତାମହଙ୍କ ଅପାର କରୁଣା ଓ ସନ୍ତୋଷ ତଥା ବନ୍ଧୁପରିଜନ ପଡ଼ୋଶୀଙ୍କ ସ୍ନେହ ଶ୍ରଦ୍ଧା ଯେ ନିହିତ - ସନ୍ଦେହ ନାହିଁ । ମୋର ପରିବାର ବେଶ ସୁସ୍ଥ । ତେଣୁ ଭଗବାନଙ୍କୁ ଧନ୍ୟବାଦ ।

ଗତ ୨୭.୦୨.୨୦୦୪ ଶୁକ୍ରବାର ରାତିର ଏକ ସ୍ୱପ୍ନ ବର୍ଣ୍ଣନାଯୋଗ୍ୟ । ମୋର ତ ପୂର୍ବରୁ ଈଶ୍ୱରାଶିଷ ପ୍ରାପ୍ତି ଅନୁଭୂତି ଉଲ୍ଲିଖିତ ହୋଇଛି । କିନ୍ତୁ ଏଥର ଯାହା ହେଲା ତାହା - ଗୋଟିଏ ପୂଜାରେ ଜଣେ ପୂଜକ କୃଷ୍ଣଙ୍କର ବାଳଗୋପାଳ ମୂର୍ତ୍ତିଙ୍କୁ (ଗଡ଼ି ଗୋପାଳ) ପୂଜା କରି ମୁଣ୍ଡିଆ ମାରିବା ବେଳେ ଦେଖାଗଲା ଯେ ବାଳଗୋପାଳ ମୂର୍ତ୍ତିଟି ଜୀବନ୍ତ ହୋଇ ନିଜ ଆସ୍ଥାନରୁ ଆସି ପୂଜକଙ୍କୁ ଆଶିର୍ବାଦ ଦେଲେ । ପୂଜକ ମୁଣ୍ଡ ଉଠାଇଲା ବେଳେ ମୂର୍ତ୍ତିଟି ନିଜ ଆସ୍ଥାନକୁ ଫେରି ଯିବାର ମୁଁ ନିଜେ ଦେଖିଛି । କିନ୍ତୁ ସ୍ୱପ୍ନ ହେଲେବି ମୋତେ ସେତେବେଳେ ସମ୍ପୂର୍ଣ୍ଣ ସତ ବୋଲି ମନେ ହେଲା । ସ୍ୱପ୍ନ ଭଙ୍ଗ ପରେ ମୋ ଦେହ ପୁଲକିତ ହୋଇ ଭଗବାନ ବାଳଗୋପାଳଙ୍କ ଉଦ୍ଦେଶ୍ୟରେ ପ୍ରଣତି ଜଣାଇଲି । ଏହା ମୋ ପକ୍ଷରେ ଏକ ଶୁଭ ସୂଚକ ଆମୋଦଦାୟକ ଅନନ୍ୟ ଅନୁଭୂତି । ନୁହେଁ କି ? ଭକ୍ତର ଭଗବାନଙ୍କୁ ଜୟ !

ବଡ଼ ନାତି ଅନ୍ୱେଷର ପ୍ରଥମ ବାଳକଟା (ଚୂଡ଼ାକରଣ) ପୁରୀ ବଡ଼ଦାଣ୍ଡରେ ଓ ସାନ ନାତି ଅର୍ପଣ ଓ ଝିଅ ନାତି ବୁବୁନୁର ଝିଅ ପ୍ରୀତିର ଅନ୍ନପ୍ରାସନ ପୁରୀ ଶ୍ରୀମନ୍ଦିର ବାଇଶି ପାବଚ୍ଛରେ ଯଥା ସମୟରେ ଅନୁଷ୍ଠିତ ହୋଇଥିଲା । ଏହା ଆମ ଭଳି ନିମ୍ନ ମଧ୍ୟବିତ୍ତ ପରିବାର ପକ୍ଷେ ଏକ ଅଭିନବ ପ୍ରୟାସ, ଉଚ୍ଚାଭିଳାଷ ତଥା ସ୍ମରଣୀୟ ଘଟଣା ବୋଲି ମନେ କରାଯାଇ ପାରେ । ଏ ସବୁ ସେହି କରୁଣାମୟ ଜଗନ୍ନାଥଙ୍କ ଆଶୀର୍ବାଦ ହେତୁ ସିନା ସମ୍ଭବ ହେଲା ।

ଏପରି ପରସେବା ଓ କଲ୍ୟାଣ ଚିନ୍ତା କରି ଗୁରୁ ଗୋବିନ୍ଦଙ୍କୁ ସ୍ମରଣ କରି ମୋର ଦିନ ଯାଉ ଏହାହିଁ କାମନା ।

## ଉପସଂହାର

ଜୀବଦ୍ଦଶାରେ ୩୮ ବର୍ଷ ଶିକ୍ଷା ବିଭାଗରେ କାର୍ଯ୍ୟରତ ଥାଇ ପ୍ରାୟ ୨୫ ବର୍ଷ ଶିକ୍ଷକତା ଓ ବାକୀ କାଳ ଓଡ଼ିଶା ମାଧ୍ୟମିକ ପରିଷଦ ଓ ଶିକ୍ଷା ଜିଲ୍ଲାଧିକାରୀ ହିସାବରେ ପ୍ରାୟ ସହସ୍ରାଧିକ ଛାତ୍ରଙ୍କୁ ଓ ବହୁ ସଂଖ୍ୟକ ଶିକ୍ଷକଙ୍କୁ ତାଲିମ ଦେଇ ଯୋଗ୍ୟତା ସମ୍ପନ୍ନ କରାଯାଇଛି । ସେମାନଙ୍କ ମଧ୍ୟରୁ ଅନେକେ ଆନ୍ତର୍ଜାତିକ ରାଜ୍ୟ ତଥା ପ୍ରାଦେଶିକ ସ୍ତରରେ କୃତିତ୍ୱର ସହ ସୁନାମ ଅର୍ଜନ କରି ଅଛନ୍ତି, ଏହା ଅତି ଆନନ୍ଦ ଓ ଉତ୍ସାହପ୍ରଦ । ସେମାନଙ୍କ ମଧ୍ୟରେ ବରପାଲି ହାଇସ୍କୁଲର ପୂର୍ବତନ ଛାତ୍ର ଡ଼ା. ବୈଦ୍ୟନାଥ ମିଶ୍ର ଆନ୍ତର୍ଜାତିକ ସ୍ତରରେ ପଦାର୍ଥ ବିଜ୍ଞାନରେ, ଜର୍ଜ ହାଇସ୍କୁଲର ପୁରାତନ ଛାତ୍ର ଡ଼ା. ଯୋଗେଶଚନ୍ଦ୍ର ରଥ, ଇଂ. ମହେଶଚନ୍ଦ୍ର ଷଡ଼ଙ୍ଗୀ, ଇଂ. ବିନୋଦ ଚନ୍ଦ୍ର ଦାଶ, ଡ଼ା. ପ୍ରତିମା ମିଶ୍ର ଆମେରିକାରେ, ଶ୍ରୀ ପ୍ରସନ୍ନ କୁମାର ଦାଶ, I.A.S. ମଧ୍ୟପ୍ରଦେଶ ତରଫରୁ ଦିଲ୍ଲୀରେ, ଇଂ. ଶ୍ରୀ ମଦନଲାଲ ଲାଠ, ସର୍ବୋଚ୍ଚ ଯନ୍ତ୍ରୀ ଅବସର ନେଇ ଦିଲ୍ଲୀରେ ଅଛନ୍ତି । ଆଉ ମଧ୍ୟ ଇଂ. ଶ୍ରୀ ଦିଲ୍ଲୀପ କୁମାର ମିଶ୍ର ମହୀଶୂରରେ ଅବସ୍ଥାପିତ, ଇଂ. ଶ୍ରୀ ରତ୍ନାକର ଦାଶ ଓଡ଼ିଶା ସରକାରଙ୍କର ନିର୍ମାଣ ବିଭାଗରେ ସର୍ବୋଚ୍ଚ ଯନ୍ତ୍ରୀ ଓ ସଚିବ । ଶ୍ରୀ ବିରଞ୍ଚି ମିଶ୍ର ପର୍ଯ୍ୟଟନ ବିଭାଗରେ ଓ ଶ୍ରୀ ବୁଦ୍ଧଦେବ ପଣ୍ଡା ସାଂସ୍କୃତିକ ବିଭାଗର ଉପନିର୍ଦ୍ଦେଶକ ରୂପେ ଭୁବନେଶ୍ୱରରେ ପ୍ରତିଷ୍ଠିତ । ଆଉ କେତେକ ଛାତ୍ର ମଧ୍ୟ ରାଜନୀତିରେ ଭାଗ ନେଇ କେନ୍ଦ୍ରମନ୍ତ୍ରୀ ହିସାବରେ ୰ଡ଼ା. କୃପାସିନ୍ଧୁ ଭୋଇ, ସାଂସଦ ଶ୍ରୀ ପ୍ରସନ୍ନ ଆଚାର୍ଯ୍ୟ, ରାଜ୍ୟର ପୂର୍ବତନ ମନ୍ତ୍ରୀ ଶ୍ରୀ ଆନନ୍ଦ ଆଚାର୍ଯ୍ୟ ବିଧାୟକ ଓ ପୂର୍ବତନ ମନ୍ତ୍ରୀ ରୂପେ ସୁନାମ ଅର୍ଜନ କରିଛନ୍ତି । ଏଥିପାଇଁ ମୁଁ ଗର୍ବିତ ଓ ଆହ୍ଲାଦିତ । ଏପରି ଆହୁରି ମଧ୍ୟ ଯୋଗ୍ୟ ଛାତ୍ର ଥିବେ ତାଙ୍କର ନିଜ ନିଜ କର୍ମ ନେଇ ପ୍ରତିଷ୍ଠିତ । ସମସ୍ତଙ୍କ ମଙ୍ଗଳ ହେଉ । ଜୟ ଜଗନ୍ନାଥ, ଜୟ ଗୁରୁ, ହରି ଓଁ ତତ୍‌ସତ୍ ।

ସର୍ବେ ଭବନ୍ତୁ ସୁଖିନ ସର୍ବେସନ୍ତୁ ନିରାମୟା
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିତ ଦୁଃଖ ଭାଗବବେତ୍ ।

ଓଁ ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ

ତା. ୦୮.୦୭.୦୫
ପବିତ୍ର ଗୁଣ୍ଡିଚ୍ଚ
ଆଷାଢ଼ ଶୁକ୍ଳ ଦ୍ୱିତୀୟା



"ତୁମ"
ଧର୍ମପତ୍ନୀ ଯୋଗେଶ୍ୱରୀଙ୍କ ସ୍ୱର୍ଣ୍ଣଜୟନ୍ତୀ ବାସରେ

## ସୁବର୍ଣ୍ଣ ଜୟନ୍ତୀ ସ୍ମରଣେ

ଆଜି ଶୁକ୍ରବାର ଶ୍ରାବଣ ମାସର
ତୃତୀୟା କୃଷ୍ଣ ପକ୍ଷର,
ସୁବର୍ଣ୍ଣ ଜୟନ୍ତୀ ହୁଅଇ ପାଳିତ
ଛୁଟେ ହସର ଜୁଆର ।୧।
ସନ ଉଣେଇଶ ବୟାଅଶୀ ସାଲ
ଜୁଲାଇ ନଅ ତାରିଖ -
ଏହି ଦିନଟିକୁ ସରବ ମନରେ
ରଖିଥିଲେ କରି ଦକ ।୨।
ପାଞ୍ଚ ବର୍ଷ ତଳେ ସତସ୍ତରୀ ସାଲେ
ଭାଦ୍ରବର ଶୁକ୍ଳ ଷଷ୍ଠୀ,
ସେଦିନ ମୋହର ପୂରଣ ହୋଇଲା
ବରଷ ପଚ୍ଚଶ ଗୋଟି ।୩।
ପିଲାଏ ମିଳିଲେ ପାଳନ କରିଲେ
ସୁବର୍ଣ୍ଣ ଜୟନ୍ତୀ ମୋର,
ଆନନ୍ଦ ମନରେ କରିଲେ ଭାବିଲେ
ନୂଆଁ ଏକ କାରବାର ।୪।
ସେହି ଦିନଠାରୁ ମନରେ ମୋହର
ଜାଗିଥିଲାଟି ବାସନା,
ସୁବର୍ଣ୍ଣ ଜୟନ୍ତୀ 'ମାଧୁରୀ ମାଆ'ଙ୍କ
ପାଳନ କରିବା ସିନା ।୫।
ଆଜି ଦିନଟିକୁ ମନେ ରଖିବାକୁ
ପିଲାଙ୍କୁ ଜଣାଇ ଦେଲି,
ତଥାପି ମନରେ ଚିନ୍ତା ରହିଥାଏ
କାଲେ କ'ଣ ହେବ ? ବୋଲି ।୬।
ଆଗରୁ ବାରତା ପଠା ଯାଇଥିଲା
ନ ଜାଣିବା ପରି କେହି,
ଝିଅ ଜୋଇଁ ସହ ନାତି ନାତୁଣୀଏ
ଆସି ଯୋଗ ଦେବା ପାଇଁ ।୭।

ବିଭୁଦୟା ବଳେ ସେହି ଶୁଭ ଦିନ
ଆଜି ହୋଇଛି ପ୍ରବେଶ
ପୁଅ ଝିଅମାନେ ଯେଉଁଠାରେ ଯିଏ
ଥାଇ ପାଇଲେ ସନ୍ଦେଶ ।୮।
ପୃଥିବୀ ବିଖ୍ୟାତ ଆଶ୍ଚର୍ଯ୍ୟ କୃତାର୍ଥ
'ମାଷ୍ଟର' ନାମେ ବିଦିତ,
ହସ୍ତତନ୍ତ ଶିଳ୍ପ ସମିତି ପ୍ରକଳ୍ପ
ସହଯୋଗର ସଙ୍ଗତ ।୯।
ବିଦ୍ୟାଧର ସଙ୍ଗେ ଶିବଶଙ୍କର ଯେ
ଅଟନ୍ତି ତାଙ୍କର ଭାଇ,
ପିଲାଟି ଦିନରୁ ପିତାମାତା ବୋଲି
ନ ଜାଣନ୍ତି ଜଣେ କେହି ।୧୦।
ସେହି ଅରକ୍ଷିତ କରିଲେ ପ୍ରଖ୍ୟାତ
ସମ୍ବଲପୁରିଆ କଳା
ସୁତା, ରଙ୍ଗ ସଙ୍ଗେ ଲୁଗାର ମହାତ୍ମ୍ୟ
ସଂସାରେ ବାନା ଉଡ଼ିଲା ।୧୧।
ସେହି ବଂଶଯୁକ୍ତ ଶଙ୍କର ଗିରିଜା
କନ୍ୟାଭାବେ ଯୋଗେଶ୍ୱରୀ
ରାସେଶ୍ୱରୀ, ସ୍ନେହ କମଳିନୀ, ସତ୍ୟ
ଭାଇ ହୃଷିକୁ ଆବୋରି ।୧୨।
ଆଜିଠାରୁ ଠିକ୍ ପଚିଶ ବରଷ
ପୂରୁବେ ଏହି ବେଳାରେ,
ତୁମ୍ଭ ପିତାମାତା କୋଳମଣ୍ଡି ଦେଇ
ଜନମ ନେଲା ଧରାରେ ।୧୩।
ଶିଶୁକାଳ ସାରି ହୋଇଲ କୁମାରୀ
ପାଠ ଖେଳରେ ନିପୁଣା,
ଆଗତ ଯୌବନ ଦେଖି ସଭିଙ୍କର
ମନ ହେଲା ଆନମନା ।୧୪।

ପର ଘର ଯିବା    ବେଳ ଆଗତରେ
ଜ୍ଞାତ ପରିଜନ ମିଳି,
ଘର ବର ଯୋଗ୍ୟ    ଜନ ଚିନ୍ତା କଲେ
ହରବଛ ଭାଳି ଭାଳି    ।୧୫।

ଅବଶେଷେ ଭେଟ    ତୁମର ମୋହର
ଶୁଭ ପରିଣୟ ହେଲା,
ଯଥା ରାମଚନ୍ଦ୍ର    ସୀତାମନ୍ତ ଡାକେ
ହସ୍ତଗ୍ରନ୍ଥି ଭିଡ଼ାଗଲା    ।୧୬।

ଆମ ଘରେ ଆସି    କଲ ପଦପାତ
ସାଜି ନବ ବଧୂବେଶ,
ପରିବାର ପୁର -    ଜନ ପରଜନ
ସରବେ ଦେଇ ଉଲ୍ଲାସ    ।୧୭।

ଜ୍ୟେଷ୍ଠା କନ୍ୟା ପୁଣି    ହେଲ ଜ୍ୟେଷ୍ଠାବୋହୂ
ଆମ ବଂଶର ପ୍ରତୀକ
ଆଗ୍ରର୍ଯ୍ୟ ଓ ଦାଶ    ବଂଶର ମହତ
ଧ୍ୱଜାର ରଖିଛ ଟେକ    ।୧୮।

ବଡ଼ଘର ଝିଅ    ଅତି ଅଲିଅଳ
ଗାଉଁଲି ଗ୍ରାମ ଆମର
କିପରି ଚଳିବ ?    ବୋଲି ନଥିଲା କି
ସମସ୍ତଙ୍କ ମନେ ଡ଼ର    ।୧୯।

କର୍ମହିଁ ସାଧନା    ନ ଭାଳି ଯାତନା
ଗୁରୁଜନେ କରି ସେବା
ଘରେ ଓ ବାହାରେ    ବନ୍ଧୁ ବାନ୍ଧବରେ
ଲଭିଲ କେତେ ବାହାବା !    ।୨୦।

ସମସ୍ତ ମୁଖରେ    ସଦା ଭାଷା ଏହି
ଆମ ବାବୁର "କନିଆ"
ମନଲାଖି ଯୋଡ଼ି    ବିହାରୀ, ପାର୍ବତୀ
ପାଇଲେ ବୋହୂ ବଢ଼ିଆ    ।୨୧।

ଭାଗ୍ୟ ଜାଣି-ସିନା ମିଳିଥାଇ ସୁନା
ବୋହୂ, ଜମି, ଗାଈ, ଭଲ
ପୂର୍ବର ସୁକୃତ ବଳରେ ପ୍ରାପତ
କର୍ମ ଫଳର ସୁଫଳ ।୨୨।
ପାଠପଢ଼ା ସାରି କରିଲି ଚାକିରୀ
ଗ୍ରାମରୁ ବାହାରେ ଯାଇ,
ବରପାଲି ପରେ ବରଗଡ଼ ଠାରେ
ଶିକ୍ଷକତା ପେଶା ନେଇ ।୨୩।
କିଛି କାଳ ପରେ ଜନ୍ମ ନେଲା ଘରେ
ନବୀନ ତନୟା ଏକ,
ମାଧୁରୀ ନାମରେ ପରିଚିତ ହୋଇ
ରଖିଲା ଆମର ଟେକ ।୨୪।
ପ୍ରଦୀପ୍ତ, ବାସନ୍ତୀ ସବିତା, ସୁଦୀପ୍ତ
ସୁଶାନ୍ତ, ମମତା ବୋଲି,
ପୁତ୍ର କନ୍ୟାଗଣ କୋଳ ମଣ୍ଡିଦେଲେ
ପ୍ରଶାନ୍ତକୁ ସଙ୍ଗେ ତୋଳି ।୨୫।
ଦିନୁ ଦିନ ପରେ ପୁତ୍ରକନ୍ୟାଗଣ
ଶୁକ୍ଳ ପକ୍ଷ ଚନ୍ଦ୍ର ସମ,
ବୃଦ୍ଧି ବିକଶିଲେ କଳା ଖେଳାଇଲେ
ବିଦ୍ୟା ବିନୟେ ଉତ୍ତମ ।୨୬।
ସଭିଏଁ ବିଭିନ୍ନ ଦିଗରେ ଦକ୍ଷତା
ହାସଲ କରିଲେ ହାତେ,
ନିଜ କର୍ମକ୍ଷେତ୍ରେ ହେଲେ କର୍ମରତ
ନିଷ୍ଠା ଦାୟିତ୍ୱର ସାଥେ ।୨୭।
ମାଧୁରୀ, ବାସନ୍ତୀ, ସବିତାର ବିଭା
ଶୁଭେ ସମ୍ପାଦିତ ହେଲା,
ଭାଗ୍ୟେ ଭଗବାନ ସୁଖ ଦେଇଥାନ୍ତି
ସୁଖ ସାଥେ ଦୁଃଖ ଥିଲା ।୨୮।

ସୁଖ ଦୁଃଖ ଦୁଇ ଆସେ ଚକ୍ରାକାରେ
ଅଖଣ୍ଡ ସୁଖର ଧାରା,
ପାଇନାହିଁ କେହି ମିଳେନି ଧରାରେ
ଆମ ଭାଗ୍ୟରେ ତା ହେଲା ।୨୯।
ଚିରରୁଗ୍‌ଣ ଆମ ସୁଶାନ୍ତ ସନ୍ତାନ
ଧରାରୁ ନେଲା ବିଦାୟ,
ଏକ ଘୋର ଦୁଃଖ ନଦୀ ହେଲେ ପାର
ଜଞ୍ଜାଳ ଲଭେ ବିଲୟ ।୩୦।
ଆମ ଜୀବଦ୍ଦଶା ମଧ୍ୟରେ ତାହାର
ପରଲୋକ ହେଲା ଯେଣୁ,
ମନର ଦୁଃଶ୍ଚିନ୍ତା ଦୂରହେଲା, ଦୁଃଖ
ହରଷ ମିଶିଲା ତେଣୁ ।୩୧।
ଶ୍ୱଶୁର ବାପା, କାକା ମାଆ, ଖୁଡ଼ୀଙ୍କର
ଅତି ଆଦରର ବୋହୂ,
ବୋଲି ଶ୍ୱଶୁରିଆଡ଼େ ହୁରି ପଡୁଥିଲା
ସନ୍ଦେହ ନ ଥିଲା ଆଉ ।୩୨।
ସେମାନଙ୍କ ମନ ଜିଣି ରଖିଥିଲ
ନିଜର ସୁଗୁଣ ବଳେ,
ସ୍ନେହରୁ ବଞ୍ଚିତ ତୁମକୁ କେବେହେଁ
ଜଣେକେ କରିନ ଥିଲ ।୩୩।
ସମସ୍ତଙ୍କ ଆଶା ବଜାୟ ରଖିଲ
ନିଜ ସ୍ୱାର୍ଥ ଦେଇ ଛାଡ଼ି,
ଅସୁବିଧା ଦୁଃଖ ଜନିତ ଜଟିଳ
ଜଞ୍ଜାଳ ସବୁ ସଜାଡ଼ି ।୩୪।
ଅଭାବକୁ ଭାବ ଦୁଃଖୀର ଦୁଃଖରେ
ସମଦଶାପନ୍ନ ହୋଇ,
ନିଜ ଶକ୍ତି ବଳେ ସହାୟତା କଲ
ନିଜକୁ ଦୁଃଖେ ଜଡ଼ାଇ ।୩୫।

ପିତା ମାତା ଦୁହେଁ ଛେଉଣ୍ଡ ଆମକୁ
କରି ଛାଡ଼ି ମର ପୁର,
ଅମରପୁରର ଯାତ୍ରୀ ହୋଇଥିଲେ
ଛାଡ଼ି ସଖା ସହୋଦର ।୩୬।
କ୍ରମେ ସେହି ପଥେ ଚଳି ଆଉ କେତେ
ଗଲେଣି ଅମର ଧାମେ,
ଯଉବନ ନେଇ ଗଲେଣି ଦେଲେଣି
ବାର୍ଦ୍ଧକ୍ୟ ଦେହେ ମରମେ ।୩୭।
ବାପୀ ଓ ବୁବୁନୁ ଝୁନୀର ସହିତ
ରାକୁ ମାଧୁରୀ କୋଳରେ
ପପ୍‌ଲୁ ଇଗ୍‌ଲୁ ପୁଅଝିଅ ଦୁଇ
ଗିରୀଶ ସୀମା ପାଶରେ ।୩୮।
କୃପାସିନ୍ଧୁ ଆଉ ସବିତା ବୁଇର
ଝିଅ ଏକ ଜନ୍ମ ହେଲା,
ଅର୍ଚ୍ଚନା ନାମରେ ଜାଣିଲେଟି ସର୍ବେ
ବଂଶର ନାମ ରଖିଲା ।୩୯।
ନବ ପ୍ରସ୍ଫୁଟିତ ପୁଷ୍ପ ରାଜି ଭଳି
ବଢୁଛନ୍ତି ଆନନ୍ଦରେ
ନାତି ନାତୁଣୀଏ ନିଜ ନିଜ ଘରେ
କିଏ ବା କାହାକୁ ଡ଼ରେ ? ।୪୦।
ଝସ ଓ ନମିତା ବିବାହର ପରେ
ବବ୍‌ଲି ମଳୟ ଦୁଇ
ଆମ କୁଳ କୋଳ ମଣ୍ଡନ କରିଲେ
ବିଭୁଙ୍କର ଇଚ୍ଛା ନେଇ ।୪୧।
ବଡ଼ ପୁଅ ଆମ ପ୍ରଦୀପ୍ତ ବାବୁର
ଶୋଭାମୟୀର ସାଥୀରେ
ବାହାଘର ହେଲା ରୋଷଣୀ ଫୁଟିଲା
ଅତି ସୁଖ ଆଡ଼ମ୍ବରେ ।୪୨।

ଜାଆ ପୁଅ ବୋହୂ     ନାତି ନାତୁଣୀଙ୍କ
    କୋଳାହଳ ମଧ୍ୟେ ଥାଇ,
ସାଧବ ଘରର     ସାଧବାଣୀ ପରି
    ଅଛ ମାଲିକାଣୀ ହୋଇ
କରିଛ ବୈକୁଣ୍ଠ     ଆମ ପରିବାର
    ନିଜ ସ୍ୱାର୍ଥ ତ୍ୟାଗ କରି,
ଅସୁବିଧା ଦୁଃଖ     ଅଙ୍ଗେ ନିଭାଇଛ
    ସଦା ବିଷ୍ଣୁ ନାମ ସ୍ମରି     ।୪୩।
ଦୀର୍ଘ କେତେ ବର୍ଷ     ହେଲାଣି ନେଇଛ
    ଘରର ଦାୟିତ୍ୱ ମୁଣ୍ଡେ
ଅସୁବିଧା ହେଲେ     ବିରକ୍ତ ନ ହୋଇ
    ମଧୁ ଭାଷା ଧର ତୁଣ୍ଡେ     ।୪୪।
ହସି ହସି ଦିନ     କାଟି ନେଉ ଅଛ
    ହସ ମୁଖ ଦେଖି ତୁମ
ପରିବାରା ସାରା     ସନ୍ତୋଷ, ତୁମର
    ଜୀବନ ଯଜ୍ଞ ପରମ     ।୪୫।
ବାକ୍ୟରେ ସତ୍ୟତା     ନିସ୍ପକ୍ଷ ପାତିତା
    ଥିବାରୁ ସରବ ଜନ
ମାନି ଚଳି ଥାନ୍ତି     ତୁମ ଇଚ୍ଛା ଭିନ୍ନ
    ଚିନ୍ତା ନ କରନ୍ତି ଆନ     ।୪୬।
ତୁମେ ନିଜ, କହ     ମୁଁ ଅଟେ ସରଳ
    ପିଲାଙ୍କ ନ ଥାଏ ଭୟ;
ଭକ୍ତି-ଭୟ ଯୋଗୁଁ     ତୁମ ଆଗେ ମୁଖ
    ଖୋଲିତ ନ ଥାଏ ପ୍ରାୟ     ।୪୭।
ଏହି ପରି ଦିନ     ଗଡ଼ି ଯାଉଅଛି
    ବୟସ ବଢ଼ିଛି ଆମ,
କେବେ ଅବା କେତେ     ସମସ୍ୟାର ଜାଲ
    କରିଅଛି ମତି ଭ୍ରମ     ।୪୮।

ବିଷ୍ଣୁ କୃପା ବଳେ — ତାହା ପୂର୍ଣ୍ଣ ହେଲେ
ହୋଇ ଅଛି ସମାଧାନ,
ସୁଖ ପରେ ଦୁଃଖ — ଦିନ ପରେ ରାତି
ଅଟେତ ବିଧି ବିଧାନ ।୪୯।

ସେହି ସୁଖ ଦିନ — ଆଜି ଉପଗତ
ଜୟନ୍ତୀ ପାଳନ ବେଳା,
ଦେଖିଣ ଆଶ୍ଚର୍ଯ୍ୟ — ହୋଇ ଅଛ ତୁମେ
ସନ୍ଦେହ ମନ ଦୋଳିଲା ।୫୦।

ଜାଣି ନ ପାରିଲ — କାହିଁକି ହୋଇଛି
ଏତେ ସବୁ ଆୟୋଜନ,
ବଡ଼ ଛୋଟ ଲୋକେ — ପୁଅ ଝିଅ ମିଶି
କଲେ ମିଶାନ୍ତି ଚନ୍ଦନ ।୫୧।

ପୂଜା ପାଠ ହେଲା — ଗୀତ ବାଦ୍ୟ ଭୋଜ
ସତ୍ ସଙ୍ଗର ଆୟୋଜନ,
ସଭିଏ ଏକତ୍ର — କରିଛନ୍ତି ପୁଣି
ନାମ ଭଜନ କୀର୍ତ୍ତନ ।୫୨।

ପଚାଶ ବରଷ — ପୂରିବାରୁ ମୋର
ଜୟନ୍ତୀ ପାଳନ ଏଇ,
ତୁମର ଜୟନ୍ତୀ — ପାଳନେ ଆସିଛି
ସେ କଥା ପାସୋରି ଗଲ ।୫୩।

ଆସିଛି ସେଦିନ — ମନେ ଅଛି ତୁମ
ଯେବେ ପାଦ ଦେଲ ଘରେ,
ସେଦିନ ଆସିଛି — ପୁନଶ୍ଚ ଦେଖୁଛି
ତୁମର ମୋର ମଧ୍ୟରେ ।୫୪।

ବରଷକ ପରେ — ଶିଶୁକନ୍ୟା ଜନ୍ମି
ବାର୍ତ୍ତା ଚହଟିଣ ବଂଶ,
କୋଳାହଳ ମୟ — ଦିନ ଜୀବନର
କାଟିଲ ଦେଇ ସନ୍ତୋଷ ।୫୫।

ଘର ସ୍ନେହ ଛାଡ଼ି ବିଦେଶ ଗମିଲି
କଟକରେ କଲି ଘର,
ଭୁଞ୍ଜିଲି ବିସ୍ୱାଦ ବିଯୋଗୀ ଜନର
ଛାଡ଼ି ପୁର ପରିବାର ।୫୬।
ସେତେ ବେଳେ ତୁମେ ସମସ୍ତ ବିପଦ
ଆପଣେ ମୁଣ୍ଡାଇ ବୁକେ,
ଚଳାଇଲ ଘର ସମ୍ମାନିତ କରି
ପ୍ରଶାନ୍ତ ସନ୍ତୋଷ ମୁଖରେ ।୫୭।
ଉଚ୍ଚ ପଦବୀର ଲାଳସା ନିଶାରେ
ଛାଡ଼ି ଗଲି ପରିବାର,
ପଦବୀର ନିଶା କିନ୍ତୁ ମନୋ ଦୁଃଖ
ପାରିଲିନି କରି ଦୂର ।୫୮।
କଟକରୁ ପୁଣି ସମ୍ବଲପୁରକୁ
ବଦଳି ହୋଇଲା ଯେବେ,
ଝିଅ ଜ୍ୱାଇଁ ମେଳେ ନାତି ନାତୁଣୀଙ୍କ
ସୁଖେ ଦିନ ଗଲା ଲବେ ।୫୯।
ସମ୍ବଲପୁରରୁ ସିଆଲଖଣ୍ଡଥା
ଉଚ୍ଚ ବିଦ୍ୟାଳୟ ଗଲି,
ଅଳ୍ପ କିଛି ଦିନ କରି ନିଜ କର୍ମ
ସେଠାରୁ ବିଦାୟ ନେଲି ।୬୦।
କଲି ଆଗମନ ସୁଦୂରେ ଗମନ
ଉଚ୍ଚତର ପଦବୀରେ,
ଧର୍ମଗଡ଼ ଶିକ୍ଷା ଜିଲ୍ଲା ନିରୀକ୍ଷକ
ରୂପେ ମୋ ଅବସ୍ଥାନରେ ।୬୧।
ଧର୍ମଗଡ଼ ଆସି ଯୋଗ ଦେବା ପରେ
ହେଲା ମୋର ପରିଚୟ
ଏଠାକାର ଯେତେ କର୍ମଚାରୀ ସାଥେ
କଲି ଭାବ ବିନିମୟ ।୬୨।

କଟକ ଠାରୁତ ନିକଟ ସ୍ଥାନ ଏ
ଯାତାୟର କଷ୍ଟ ବେଶୀ,
ପରିବାର ସାଥେ ମିଳନ ଇଚ୍ଛାରେ
ମନ ମାରି ଯାଏ ବସି ।୬୩।
ରହିବା, ଖାଇବା, ଶୋଇବାର କିଛି
ସୁବିଧା ଏଠାରେ ନାହିଁ,
କୌଣସି ପ୍ରକାରେ ଦିନ ଯାଉ କଟି
ନୀତିରେ କାମ ଚଳଇ ।୬୪।
ଦୂରେ ରହି ସଦା ଚିନ୍ତା କରୁଥାଇ
ଏକାକୀ କିପରି ଘରେ ?
ସମ୍ଭାଳି ଜଞ୍ଜାଳ ଚଳାଅ ସଂସାର
ସବୁକୁ ବୋହି ମୁଣ୍ଡରେ ।୬୫।
ଅସୀମ ଧଇର୍ଯ୍ୟ ଧାରଣେ ସକ୍ଷମ
ସର୍ବଂସହା ବୋଲାଇଛ,
ଘରର ଇଜ୍ଜତ ମାନ ସମ୍ମାନରେ
ପଣତେ ବାନ୍ଧି ରଖିଛ ।୬୬।
ଆଦର୍ଶ ଜନନୀ ଆଦର୍ଶ ଗୃହିଣୀ
ଅଟ ଆଦର୍ଶ ଦୁହିତା
ଆମ ଘରେ ତୁମେ କୂଳଲକ୍ଷ୍ମୀ ରୂପେ
ହୋଇଛ ସଦା ବନ୍ଦିତା ।୬୭।
ତୁମ ବିନା ସିନା ଏ ଦେହ କଷଣ
କେତେ ଯେ ଭୋଗେ ଜାଣିଛି,
ତୁମ ମୋ ଭିତରେ ଭିନ୍ନା ଭିନ୍ନ ନାହିଁ
ହୃଦୟ ମାନି ନେଇଛି ।୬୮।
ସେଥି ପାଇଁ ଆଜି ଜୟନ୍ତୀ ପାଳନ
ସମାରୋହ ଆୟୋଜନ,
ସେ ଉପଲକ୍ଷ୍ୟେ ବନ୍ଧୁ ପରି ଜନ
କରିଛନ୍ତି ଆଗମନ ।୬୯।

ତୁମର ସ୍ମୃତିକୁ ସଞ୍ଜାଳି କରିବେ
ସାରା ପରିବାର ମୋର
ସେଥିପାଇଁ ଏକ ନବୀନ ଯୋଜନା
କରିଛନ୍ତି ରୂପାନ୍ତର ।୭୦।
ଏକ ଶତ ମୁଦ୍ରା ଶତାଧିକ ବର୍ଷ
ରହିବ ସଞ୍ଚୟ ଜମା,
'ପାର୍ବତୀ ବିଦାର' ପାଣ୍ଠି ବୋଲାଇବ
ହରାଇ କାଳର ସୀମା ।୭୧।
ଛଅ ବରଷରେ ଜମା ଉଠି ଆଇ
ଦ୍ୱିଗୁଣିତ ଟଙ୍କା ପୁଣି
ଜମା କରୁଥିବେ ପୁତ୍ର ପୌତ୍ର କ୍ରମେ
ସାର୍ଦ୍ଧ ଆଠ ଯୁଗ ଜାଣି ।୭୨।
ଲୋକ ହିତ କର କାର୍ଯ୍ୟରେ ଏ ଧନ
ଅବଶେଷେ ଖର୍ଚ୍ଚ ହେବ,
ମଙ୍ଗଳ କାରିଣୀ ଜଗତ ମଙ୍ଗଳ
କାରଣେ ସ୍ମରଣ ନେବ ।୭୩।
ଦୁହିତା ରୂପରେ ହୋଇଥିଲେ ଜାତ
କଲ ଦୁଇକୁଳ ହିତ,
କାଳ କଷଟିରେ କଷା ହୋଇ ତୁମେ
କରିବ ହିତ ଜଗତ ।୭୪।
ଗୁରୁ, ବ୍ରହ୍ମା, ବିଷ୍ଣୁ ଅଟନ୍ତି ମହେଶ
ଗୁରୁ କୃପା ପାରାବାର
ଗୁରୁଙ୍କ ସନ୍ତୋଷ ଲଭିଲେ ମନୁଷ୍ୟ
ହୁଏ ଭବସିନ୍ଧୁ ପାର ।୭୫।
ଜଗତେ ସକଳେ ପ୍ରଭୁ ପାଦ ପଦ୍ମ
ମନରେ ସର୍ବଦା ଧାୟୀ,
କାଳ କାଟୁଥାଅ ନାମ ଗାନ କର
ଭବୁ ପାର ହେବା ପାଇଁ ।୭୬।
ଆହେ ବିଶ୍ୱ ପତି ଅଗତିର ଗତି
ମୋର ଏତିକି ଗୁହାରି,
କର ତାଂରେ ଦୟା କଟୁ ଭବ ମାୟା
ତୁମରେ ସ୍ମରଣ କରି ।୭୭।

ତୁମ୍ଭେ ମୋତେ କଅଣ ନକଲ ?

ଘର ଆମ ବାପାଙ୍କର
ତୁମେ ଆସି ଆମ ଘରେ ପଶି
ଗୃହୀ ମୋତେ କଲ
ସେଦିନୁ ମୁଁ ଗୃହସ୍ଥ ହୋଇଲି
ତୁମେ ନିଜେ ଘରେ ମୋର ଗୃହିଣୀ ବନିଲ ।୧।
ମୁଁ ହୋଇଲି ବାପା
ପୁଅ ଝିଅ ମାନେ ଏକେ ଏକ
ବାପା, ବାପା କୁହାଟ ଛାଡ଼ିଲେ
ମୁଁ ଶୁଣିଲି,
ତୁମେ ମୋତେ ବାପା କରାଇଲ ।୨।
ମୋ ଝିଅ, ମୋ ପୁଅ ମାନେ
ତୁମ ଯତ୍ନେ ପାରି ହେଲେ-
ବାଲ୍ଯତ ବୟସ,
ନୂଆ ଘର କଲେ,
ତାଙ୍କ ପିଲା ଝିଲା ଏବେ
ଅଜା ଆଈ ଡ଼ାକିଲେ ଆମକୁ
ଏହା ମୂଳେ ତୁମେହିଁ ରହିଲ ।୩।
ବଡ଼ ପୁଅ, ବଡ଼ ବୋହୂ ଆଉ ଝିଅ ପୁଏ,
ଆଜି ଏବେ ପାଳନ କରନ୍ତି
ତୁମ ସୁବର୍ଣ୍ଣ ଜୟନ୍ତୀ
ତୁମେ ପୁଣି ଆଜି,
ପଷ୍ମଶ ଗୋଟି ବସନ୍ତ ଦେହେ ବିତାଇଲ ।୪।
ତୁମ ଦେହ ପନ୍ଦର ବସନ୍ତ ଭୋଗୀ
ପରଶିଲା ଯେଦିନ ମୋ ଦେହ
ସେ ଦିନ ଓ ଆଜି ଏ ଦିନରେ
ପାର୍ଥକ୍ୟ ମୁଁ ବାରି ପାରେ ନାହିଁ
ତୁମେ ଏକ ପ୍ରହେଳିକା କଲ ? ।୫।
ଆମେ ଯାତ୍ରୀ ମରତ ପଥରେ
ବୟସରେ ବଢ଼ାଇ ବଢ଼ାଇ
ଜୀବନର ରଥ ଚକ୍ର ଗଡ଼ାଇ ଗଡ଼ାଇ
ଏ ଯେ ପଥେ ଆଗେଇ ଗ୍ଭଲିଛେ
ତୁମେ ତହିଁ ସାରଥୀ ହେଲ
ସେ ପଥକୁ ତୁମେ ରୂପ ଦେଲ
ତୁମେ ମୋତେ କଣ ନକଲ ? ।୬।

## ପ୍ରଥମ ଅଧ୍ୟାୟ

ନମୋ ନମୋ ଗଣପତି ! ପାର୍ବତୀ ନନ୍ଦନ,
ସର୍ବାଗ୍ରେ ପୂଜିତ ପ୍ରଭୁ ଈନ୍ଦୁର ବାହନ ।
ଗିରିଜା ମାନସ ପୁତ୍ର ଯେଣୁ ତୁମେ ଅଟ,
ଦେବ ଦେବ ମହାଦେବ ସଙ୍ଗେ ହେଲା ଭେଟ ।
ଚିହ୍ନି ନ ପାରି ତାହାଙ୍କୁ ବାଟ ଓଗାଳିଲ,
ମାତାଙ୍କ ଆଜ୍ଞା ପାଳନେ ଅଟଳ ରହିଲ ।
ମହେଶ୍ୱର ଆଶୁତୋଷ ଚିହ୍ଲାଦେଲେ ଯେବେ,
ମାତାଦେଶ ପାଳନରେ ଏକନିଷ୍ଠ ତୁମ୍ଭେ ।
ପରିଶେଷେ କ୍ରୋଧାନ୍ୱିତ ହୋଇ ବିଶ୍ୱନାଥ,
ନ ଜାଣି କାଟିଲେ ମୁଣ୍ଡ ହେଲ ତୁମ୍ଭେ ହତ ।୫।
ଗୃହ୍ମା ମଧ୍ୟେ ପରବେଶ ହେଲେ ଯେହ୍ନେ ଶିବ,
ଗଭୀର ଆଶ୍ଚର୍ଯ୍ୟ ହେଲେ ଦେଖି ପତି ଦେବ ।
ମାହେଶ୍ୱରୀ ପଚ୍ଚାରିଲେ କିପରି ଆସିଲ ?
ବାଟରେ ଥିଲା ମୋ ପୁତ୍ର ହୋଇ ଦ୍ୱାରପାଳ ।
ତୁମ ପୁତ୍ର ? ବାଟରେ ରହି ଦ୍ୱାର ଜଗିଥିଲା,
ଆଜ୍ଞା ନାହିଁ ଛାଡ଼ିବାକୁ ମନାକରି ଦେଲା ।
ଚିହ୍ନା ଦେଲି ଯେବେ ମୁହଁ କିଛି ନ ଶୁଣିଲା,
ତେଣୁ ମୋର କ୍ରୋଧଫଳ ଶାସ୍ତି ସେ ପାଇଲା ।
କଲି ତାର ମୁଣ୍ଡକାଟ ତ୍ରିଶୂଳରେ ମୋର,
ମୋର ପ୍ରବେଶରେ ମନା କଲା ବାରମ୍ୱାର ।୧୦।
ଏହା ଶୁଣି ଗିରିସୁତା ମୂର୍ଚ୍ଛିତା ହୋଇଲେ,
ହା ପୁତ୍ର ! ବୋଲିଣ ଦେବୀ ଭୂମିରେ ଲୋଟିଲେ ।
ଏହା ଦେଖି ଦେବ ଦେବ ପ୍ରଭୁ ସଦାଶିବ,
ମୃତ ପୁତ୍ର ବଞ୍ଚାଇବା ଜାଗେ ମନେ ଭାବ ।
ଗଇ ତାଙ୍କ ଅନୁଚର ଶୀଘ୍ର ଆଜ୍ଞା ଦେଲେ,
ମୁଣ୍ଡ ଗଣ୍ଡି ଏକଠାରେ ରଖ ସେ ବୋଇଲେ ।୧୩।
ଯାଇ ଦେଖନ୍ତି ମୁଣ୍ଡଟି ନ ଥିଲା ସେଠାରେ,
ମୁଣ୍ଡ ନ ପାଇ ପ୍ରଭୁଙ୍କୁ ଜଣାଇଲେ ଖରେ ।

ଆଶୁତୋଷ ଚିନ୍ତା କରି କହିଲେ ଚରଙ୍କୁ,
ଶୀଘ୍ର ଯାଇ କାଟିଆଣ ଏପରି ମୁଣ୍ଡକୁ ।୧୫।
ଯେଉଁ ପ୍ରାଣୀ ଉତ୍ତରକୁ ମୁଣ୍ଡ କରିଥିବ,
ନିଜ ମାତା ପାଖେ ତାର ଶୋଇ ରହିଥିବ ।
ଅନୁଚର ଗଣେ ଯାଇ ନ ପାଇଲେ କାହିଁ
ଦେଖିଲେ ହସ୍ତି ଶିଶୁଟି ମାତା ପାଶେ ଶୋଇ,
ଶିଘ୍ର କାଟି ଆଣି ଦେଲେ ହସ୍ତି ଶିଶୁ ମୁଣ୍ଡ
ଶଙ୍କର ପ୍ରସାଦେ ମୁଣ୍ଡ ଗଣ୍ଡି ଏକ ପିଣ୍ଡ ।
ବଞ୍ଚିଣ ଉଠିଲା ଶିଶୁ ଶିବ କୃପାବଳେ,
ଗଜାନନ ନାମେ ଖ୍ୟାତ ସରବେ ଜାଣିଲେ,
ବ୍ୟାସ ମୁଖରୁ ନିସୃତ ଶାସ୍ତ୍ର ଲେଖିବାରେ,
ଖୋଜିଲେ ଲେଖିବା ପାଇଁ ଅତି ନିର୍ଭୁଲରେ ।୨୦।
ଦେବଗଣ ପ୍ରସ୍ତାବିଲେ ଗଣେଶଙ୍କ ନାମ
ନିର୍ଭୁଲରେ ଶାସ୍ତ୍ର ଲେଖିବାକୁ ସେ ସକ୍ଷମ ।
ନିଜ ବୁଦ୍ଧିରେ ଅମୃତ ଲଡୁ ଲାଭ କଲେ
ଅଗ୍ରଜ କାର୍ତ୍ତିକେୟ ଯା ପାଇ ନ ପାରିଲେ ।
ଏହିପରି ଜ୍ଞାନି ବୁଦ୍ଧି ଅଛି ତାଙ୍କ ଯେତେ
ସେଥି ପାଇଁ ଭାଷା କାହିଁ ଲେଖିବାକୁ ସତେ ।
ଗଣନାଥ ପାଦପଦ୍ମେ ରଖ ସଦା ଲୟ,
ସର୍ବ ବ୍ୟାଧି ରୋଗ ଆଦି ଲଭିବ ବିଳୟ ।
ତାଙ୍କ ପିତା ସଦାଶିବ ପ୍ରଭୁ ଆଶୁତୋଷ
ତ୍ରିବେଣୀ ବ୍ରତ ଲେଖନେ ଦିଅନ୍ତୁ ଆଶିଷ ।୨୫।

-୦-

## ଦ୍ୱିତୀୟ ଅଧ୍ୟାୟ

ତ୍ରିବେଣୀ-ବ୍ରତ କଥାକୁ ମନ ଯେବେ ଲେଖିବାକୁ
ସାବିତ୍ରୀ ବ୍ରତ ଆଖ୍ୟାନ ମନେ ଆସଇ
ମଦ୍ର ଦେଶ ନରପତି ତାଙ୍କ ସୁପୁତ୍ରୀ ସାବିତ୍ରୀ
ନିଷ୍ଠା ସହ ଯଜ୍ଞ କରି ଥିଲେ ସେ ପାଇ
ବଢ଼ିଲା ସୁକନ୍ୟା ତାଙ୍କରି
ଦିନୁ ଦିନ ବୟସରେ ଦିଶେ ସୁନ୍ଦରୀ ।୧।
ସାବିତ୍ରୀ ସୁନ୍ଦରୀ ପଣେ ଯୁବରାଜ ପୁତ୍ର ଗଣେ
ସଞ୍ଚରିଲା ମନେ ଏକ ଭ୍ରାନ୍ତ ଧାରଣା
ରୂପ ତାର ଦରଶନେ ଚକିତ ହୁଅନ୍ତି ମନେ
ବିବାହ ପ୍ରସ୍ତାବ ସର୍ବେ କରନ୍ତି ମନା
ଯୋଗ୍ୟ ବର ନ ପାଇ ରାଜା
ବିଭିନ୍ନ ରାଜ୍ୟକୁ ଯାଇ ପଡ଼ିଲା ଖୋଜା ।୨।
ଶେଷେ ହୋଇଲେ ନିରାଶ ବୁଲିଲେ ଅନେକ ଦେଶ
ତେଣୁ ସ୍ୱୟମ୍ବର କାର୍ଯ୍ୟ ସ୍ଥଗିତ ହେଲା
ତେଣୁ ପୁତ୍ରୀକୁ ପଠାଇ ତୀର୍ଥାଟନେ ନିଜେ ଯାଇ
ତୋର ମନେ ଯେଉଁ ବର ପସନ୍ଦ ହେଲା
ତାକୁ ବରି ବିଭା ହୋଇବୁ
ଆନନ୍ଦରେ ଭବିଷ୍ୟତ ଦିନ କାଟିବୁ ।୩।
ପିତାଙ୍କ ଆଦେଶ ପାଇ ଅତି ଆନନ୍ଦିତ ହୋଇ
ନାନାଦେଶେ ଭ୍ରମି ଶେଷେ ପାଇଲା ପତି
ଦ୍ୟୁମତସେନ ରାଜାର ସତ୍ୟବାନ ସୁକୁମାର
ପିତା ମାତାଙ୍କ ସ୍ନେହରେ ପାଳିତ ଅତି
ଅନ୍ଧ ପିତା ମାତା ଲଉଡ଼ି
ତାଙ୍କ ସେବାରେ ଭକତି ଦିଏ ଅଜାଡ଼ି ।୪।
ପତି ରୂପ ସନ୍ଦର୍ଶନେ ହେଲା ଆକର୍ଷିତ ମନେ
ସୁଚତୁରୀ ବିଚକ୍ଷଣା ସାବିତ୍ରୀ ନାରୀ
ମନେ ମନେ ପତି ବୋଲି ବରଣ କଲା ସେ ବାଳୀ
ନିଜ ଦେଶେ ବାହୁଡ଼ିଲା ରାଜକୁମାରୀ
ପିତାଙ୍କ ଆଗେ ତା ମାନସ
ସ୍ଥିର କରିଥିବା କଥା କଲା ପ୍ରକାଶ ।୫।

ପିତା ଆନନ୍ଦିତ ହୋଇ ଝିଅକୁ କୋଳକୁ ନେଇ
ଚିନ୍ତିଲେ ମନରୁ ବୋଝ ହୋଇଲା ଦୂର
ପାଖେ ଥିଲେ ବ୍ରହ୍ମଜ୍ଞାନୀ ସର୍ବଜ୍ଞ ନାରଦ ମୁନି
କିପାଇଁ ଆନନ୍ଦେ ରାଜା ହୁଅ ବିଭୋର ?
ରାଜା କନ୍ୟା କଥା କହିଲେ
ଶୁଣି ଦେବର୍ଷି ନାରଦ ବିଷର୍ଣ୍ଣ ହେଲେ ।୬।
ରାଜା ଦେଖି ମୁନି ମୁଖ ଆଗ୍ରହରେ ପ୍ରଶ୍ନ ଏକ
କିପାଇଁ ହୁଅ ମନରେ ଦୁଃଖ ଦେବର୍ଷି ?
ମନରେ ନ ରଖି କିଛି ଯାହା ମନେ ଉପୁଜିଛି
ଅତି ଶୀଘ୍ର ଆମ ଆଗେ କହ ପ୍ରକାଶି
ମନ ଆମ୍ଭ ହୋଇବ ତୋଷ
ଯେଣୁ ତୁମ୍ଭ ବଚନରେ ଆମ୍ଭ ବିଶ୍ୱାସ ।୭।
ଶେଷରେ ନାରଦ ଯତି ଅତି ଦୁଃଖେ ପ୍ରକାଶନ୍ତି
ରାଜପୁତ୍ର ସତ୍ୟବାନ ଅଟେ ଅଳ୍ପାୟୁ
ଆଜିଠୁଁ ଏକ ବରଷ କାଟିବ ହୋଇ ହରଷ
ତାପରେ ଏ ଧରାଧାମେ ନ ଥିବ ଆଉ
ଏହା କପାଳର ଲିଖନ
ତାହାକୁ କି କହି କେବେ କରିଛି ଆନ ? ।୮।
ଶୁଣିଲା ସେ ରାଜ ପୁତ୍ରୀ ଭକତି ମନେ ସାବିତ୍ରୀ
ପ୍ରକାଶ କରିଲା କଥା ନିଜ ମନର
ମୋର ସେହି ଅଟେ ପତି ତା ବିନୁ ମୋ ଅନ୍ୟଗତି
ନାହିଁ ବୋଲି ମୁହିଁ ତାହା କରିଛି ସ୍ଥିର
ଏହା ଅଟେ ମୋହରି ପଣ
ଏଥିରୁ ଅନ୍ୟଥା ଆଉ ନାହିଁଟି ଜାଣ ।୯।
ତେଣୁ ରାଜା ବାଧ ହୋଇ ପୁତ୍ରୀର ଇଚ୍ଛାରେ ସେହି
ସତ୍ୟବାନ ହସ୍ତେ ଝିଅ କଲେ ପ୍ରଦାନ
ଝିଅ ଶାଶୁଘର ଯାଇ ଆନନ୍ଦେ ଦିନ କାଟଇ
ଶାଶୁ ଶ୍ୱଶୁର ପତିଙ୍କ ସେବାରେ ମନ
ଏହି ରୂପେ ଦିନ ଗଡ଼ିଲା
ଶେଷରେ କାଳ ଦିବସ ପ୍ରବେଶ ହେଲା ।୧୦।

ବନ ଶୋଭା ଦେଖିବାକୁ ପତି ସଙ୍ଗରେ ଯିବାକୁ
ବଳୁଛି ତା ମନେ ଇଚ୍ଛା ପ୍ରକାଶ କଲା
ସବୁଦିନ ପରି ଯେହ୍ନେ ସତ୍ୟବାନ ଗଲା ବନେ
ସମସ୍ତଙ୍କ ଆଜ୍ଞା ନେଇ ସାବିତ୍ରୀ ଗଲା
କିଛି କ୍ଷଣ ହେଲା ଅତୀତ
ସତ୍ୟବାନ ଶିର କଷ୍ଟେ ହେଲା ଅଚେତ ।୧୧।
ପଡ଼ିଲା ବୃକ୍ଷର ତଳେ ନିକଟେ କେହି ନ ଥିଲେ
ତାର ସେବା ଶୁଶ୍ରୁଷାର ଯତନ ପାଇଁ
ଦେଖିପାରି ତାର ପତ୍ନୀ ମନେ ଭାବିଲା ସାବିତ୍ରୀ
ସଂଶୟ ଜାଗିଲା ତାର କିସ କରଇ ?
ମନରେ ସାହସ ବାନ୍ଧିଲା
ବିପଦର ମୁକାବିଲା କରି ବସିଲା ।୧୨।
ଦିବସ ହୋଇଲା ଶେଷ ରାତ୍ରି ଆସି ପରବେଶ
କ୍ରମେ କ୍ରମେ ଅମା ଅନ୍ଧକାର ଘୋଟିଲା
ବନ ହେଲା ନିଶବଦ ମନେ ଜାଗେ ଅବସାଦ
ପତି ସତ୍ୟବାନ ପିଣ୍ଡ ପ୍ରାଣ ଛାଡ଼ିଲା
ଘନ ମଧ୍ୟ ରାତ୍ର ସମୟେ
ଆସି ପ୍ରବେଶିଲେ ଜନ୍ତୁପତି ସ୍ୱଦେହେ ।୧୩।
ଦେଖିଲେ ସତୀ ସାବିତ୍ରୀ ଧରିଛି ଅଙ୍କରେ ପତି
ପ୍ରାଣ ନେଇ ଯିବା ପାଇଁ ନାହିଁ ଉକର
ହୋଇଣ ଅତି ବିନୟ ଯମରାଜ ଅନୁନୟ
ପ୍ରକାଶିଲେ ନେବେ ପ୍ରାଣ ସତ୍ୟବାନର
ଯମ ପାଶେ ବାନ୍ଧିଲେ ପ୍ରାଣ
ପ୍ରସ୍ଥାନ କରିଲେ ଯମ ଚଢ଼ି ବାହନ ।୧୪।
ସତୀ ସାବିତ୍ରୀ ପଛରେ ଚାଲିଛନ୍ତି ଅତି ଧୀରେ
ପତି ସଙ୍ଗ ବିନୁ ଇଚ୍ଛା ନାହିଁ ଅନ୍ୟରେ
ବେଣୁ ଯନ୍ତୁପତି ସଙ୍ଗେ କହିଲେ କଥା ପ୍ରସଙ୍ଗେ
ଫେରାଇ ଦେବାକୁ ପତି ପ୍ରାଣ ସତ୍ୱରେ
ଧର୍ମରାଜ କହନ୍ତି ଶୁଣ
ଜନ୍ମ ହେଲେ ମୃତ୍ୟୁ ଅଟେ ବିଧି ବିଧାନ ।୧୫।

ତଥାପି ସାବିତ୍ରୀ ଗଲା　　　ଯମ ପିଛା ନ ଛାଡ଼ିଲା
ମୋହର ଗୁହାରି ଶୁଣି ଦିଅନ୍ତୁ ବର
ମାଗୁଅଛି ଗୋଟି ବର　　　ଅନ୍ୟେ ନାହିଁ ଦରକାର
ଏହା ଅଟେ ଶେଷ ଇଚ୍ଛା ପୂରଣ କର
ଅନ୍ୟ ବାଟ ନ ପାଇ ଯମ
ପ୍ରକାଶ କର ବୋଇଲେ ଅତି ଉତ୍ତମ　।୧୬।
ଅତି ବୁଦ୍ଧିମତୀ କନ୍ୟା　　　ସର୍ବ ଗୁଣରେ ସଂପୂର୍ଣ୍ଣା
ଶ୍ୱଶୁରଙ୍କ ହୃତ ରାଜ୍ୟ ଭିକ୍ଷା କରିଲେ
ପିତାଙ୍କର ପାଇଁ ପୁତ୍ର　　　ଶାଶୁ ଶ୍ୱଶୁରଙ୍କ ନେତ୍ର
ଦିଅ ମୋତେ ଶତପୁତ୍ର ବର ମାଗିଲେ
ସମସ୍ୟାରୁ ଉଦ୍ଧାର ପାଇଁ
ବର ଦେଲେ ଖୁସି ମନେ ତଥାସ୍ତୁ କହି　।୧୭।
ଆନନ୍ଦିତ ଏହା ଶୁଣି　　　ସାବିତ୍ରୀ ରମଣୀ ମଣି
ପତି ପ୍ରାଣ ଫେରାଇବା ପ୍ରାର୍ଥନା କଲେ
ଯମରାଜ ଆଚମ୍ବିତ　　　ଶୁଣି ସାବିତ୍ରୀର ମତ
ପୁତ୍ର ଜନନୀ କିପରି ହେବି ବୋଇଲେ ?
ଯେଣୁ ମୁହିଁ ଅଟଇ ସତୀ
ପୁତ୍ର କାହୁଁ ଜନ୍ମାଇବି ନ ପାଇ ପତି　।୧୮।
ଧର୍ମରାଜ ଜନ୍ତୁପତି　　　ମନେ ହୋଇ ହୃଷ୍ଟମତି
ଧନ୍ୟ ଧନ୍ୟ ନାରୀମଣି ତୁହିଁ ବୋଇଲେ
ଫେରାଇ ନିଅ ତୋ ପତି　　　ସଙ୍ଗେ ରହ ସୁଖେ ଅତି
ସାବିତ୍ରୀ ମହାତ୍ମ୍ୟ ଖ୍ୟାତ ହେଉ ଭୂତଳେ
ସେହି ଦିନୁ ସାବିତ୍ରୀ ବ୍ରତ
ସାଧବା ନାରୀଏ ସର୍ବେ ପାଳନେ ରତ　।୧୯।
ଜ୍ୟେଷ୍ଠ ମାସ ଅମାବାସ୍ୟା　　　ସାବିତ୍ରୀ ବ୍ରତର ଓଷା
ନାରୀଏ ପୂଜା କରନ୍ତି ପତିଙ୍କ ହିତେ
ସେପରି ଘଟଣା ଏକ　　　ଘଟିଛି ଅନ୍ୟଥା ଦେଖ
ପତି ପାଇଁ ତ୍ୟାଗର ନ ହୁଏ ପରତେ
ଯେ ସାବିତ୍ରୀ ବ୍ରତ ନ ପାଳେ
ସମଫଳ ଲଭିବ ସେ ଓଷାର ବଳେ　।୨୦।

-୦-

## ତୃତୀୟ ଅଧ୍ୟାୟ

ଶୁଣ ଶୁଣ ସୁଜ୍ଞଜନେ ମନ କର୍ଣ୍ଣ ଦେଇ,
ଅପରୂବ ଘଟଣାଏ ଉଲ୍ଲେଖ କରଇ ।୧।
ଏକ ଦିନ ମଧ୍ୟାହ୍ନରେ ଶିବ ଓ ପାର୍ବତୀ
ଆନନ୍ଦରେ ଆକାଶରେ ବିହାର କରନ୍ତି ।୨।
ଯିବା ପଥେ ଦେଖିଲେକ ରମ୍ୟ ମହୋତ୍ସବ,
ସାଧ୍ୱୀ ସୀମନ୍ତିନୀ ଗଣେ ପାଳନ୍ତି ପରବ ।୩।
ସେହିଦିନ ଥିଲା ମାଘ ମାସ ଅମାବାସ୍ୟା,
ବହୁନାରୀ ମିଳି ସେଠି ପାଳୁଥିଲେ ଓଷା ।୪।
ଦିନ ବେଳେ ଦେଖି ଏହି ମହାସମାରୋହ,
ଆଦିଶକ୍ତି ଗିରିଜାଙ୍କ ହୋଇଲା ସନ୍ଦେହ ।୫।
କାହିଁକି ଏମାନେ କିଏ କଣ କରୁଛନ୍ତି ?
ମୋତେ ବୁଝାଇଣ କହ ଆହେ ପଶୁପତି ।୬।
ଜାଣିବାକୁ ମନେ ମୋର ବଢୁଛି ଆଗ୍ରହ
ଶୀଘ୍ର ଦୂର କର ମୋର ମନରୁ ସନ୍ଦେହ ।୭।
ଏହି ସ୍ଥଳେ କେଉଁ ପୂଜା ହୁଏ କାହିଁପାଇଁ ?
କିପାଇଁ ନାରୀଏ ଠୂଳ ପୂଜାର୍ଚ୍ଚନେ ବାଇ ? ।୮।
ପ୍ରଥମେ ତ୍ରିଶୂଳଧାରୀ ନ ଶୁଣିଲା ପରି,
ଅନ୍ୟାନ୍ୟ କଥା ପ୍ରସଙ୍ଗେ ଦିଅନ୍ତି ସେ ଟାଳି ।୯।
ଆଦିମାତା ଗୌରୀ ଯେବେ ଅଝଟ ହୋଇଲେ,
ଶଙ୍କର କଥା ମହାତ୍ମ୍ୟ ପ୍ରକାଶ କରିଲେ ।୧୦।
ଶୁଣ ଶୁଣ ପାର୍ବତୀ ଗୋ ! କଥା ମନଦେଇ
ପ୍ରଭୁ ସଦାଶିବ ତାଙ୍କୁ କହନ୍ତି ବୁଝାଇ ।୧୧।
ମର୍ତ୍ତ୍ୟବାସୀ ନାରୀଗଣ ତ୍ରିବେଣୀର ବ୍ରତ
ପାଳନ କରନ୍ତି ସର୍ବେ ହୋଇ ଆନନ୍ଦିତ ।୧୨।
ସାବିତ୍ରୀ ବ୍ରତକୁ ଯେହ୍ନୁ ନ କରେ ପାଳନ
ତ୍ରିବେଣୀ ବ୍ରତରୁ ସେହି ଫଳ ଲଭେ ଜାଣ ।୧୩।
ଗଙ୍ଗା, ଯମୁନା ଓ ସରସ୍ୱତୀର ସଙ୍ଗମେ,
ଉକ୍ତସ୍ଥାନେ ଏ ଉତ୍ସବ ହୁଏ ମନୋରମ ।୧୪।

ଅଭୀଷ୍ଟ ଫଳ ଏହାର ଲଭିବାକୁ ସର୍ବେ,
ନୀତି ନିୟମ ପାଳନେ ନିଷ୍ଠା ଥାଏ ଯେବେ ।୧୫।
ପାଳନ କରି ସୁଫଳ ସେମାନେ ଲଭନ୍ତି
ଯୁଗ ଯୁଗ ଧରି ଚାଲୁଅଛି ଏହି ରୀତି ।୧୬।
ଗିରିଜା ପୁଚ୍ଛନ୍ତି ଏହି ପର୍ବ କେବେଠାରୁ,
ଚଳି ଆସୁଅଛି କହ ମୋତେ ମହାମେରୁ ।୧୭।
ବୁଝାଇ କହନ୍ତୁ ଏହା ଇତିବୃତି କଥା,
ସନ୍ଦେହକୁ ଦୂର କର ନ ଭାଳି ଅନ୍ୟଥା ।୧୮।
ଏହା ଶୁଣି ଶୂଳପାଣି ଲଭିଲେ ସନ୍ତୋଷ
ଶୁଣ ଶୁଣ ଗିରିସୁତା ପର୍ବର ଉଦ୍ଦେଶ୍ୟ ।୧୯।
ମନ ଦେଇ ଶୁଣ ଏହା ଅତି ଗୁପ୍ତ କଥା
ଶୁଣିଲେ ମନରୁ ତବ ଦୂର ହେବ ଚିନ୍ତା ।୨୦।

-୦-

## ଚତୁର୍ଥ ଅଧ୍ୟାୟ

ଏଥିଅନ୍ତି ଶୁଣ ପାର୍ବତୀ ରମଣ
ବଖାଣିଲେ ପାର୍ବତୀଙ୍କୁ
ମନ କର୍ଣ୍ଣ ଦେଇ ଭକ୍ତିମତି ହୋଇ
ଶୁଣିଲେ ଶିବ କଥାକୁ ।୧।
ବହୁ ପୂର୍ବ କାଳେ ଅବନ୍ତୀ ଅଞ୍ଚଳେ
ଚନ୍ଦ୍ରଧ୍ୱଜ ନାମେ ରାଜା
ପାତ୍ର ମନ୍ତ୍ରୀ ସଙ୍ଗେ ଚଳି ନାନାରଙ୍ଗେ
ପାଳୁଥିଲେ ସୁଖେ ପ୍ରଜା ।୨।
ଦେଢ଼ ଶହ କୋଶ ପରିଯନ୍ତେ ଦେଶ
ତାଙ୍କରି ଥିଲା ବିସ୍ତୃତ
ନର ନାରୀ ଗଣ ଚଣ୍ଡାଳ ବ୍ରାହ୍ମଣ
ସଦା ଥିଲେ ଆନନ୍ଦିତ ।୩।
ସେହି ନରମଣି ଦୁର୍ଗେଶ ନନ୍ଦିନୀ
ଶୁଭେ କର ଧରିଥିଲେ,
ଈଶ୍ୱରଙ୍କୁ ସେବି ପତ୍ନୀ ସୁଖ ଲଭି
ପୂଜା ଧର୍ମରେ ଲାଗିଲେ ।୪।

ଅତିଥି ବ୍ରାହ୍ମଣ    ସେବାରେ ନିପୁଣ
ନ କରନ୍ତି ଅବହେଳା,
ତେଣୁ ପ୍ରଜାଗଣ    ଆନନ୍ଦେ ରହିଣ
ଲାଗିଥିଲା ହରି ଲୀଳା ।୫।

ଏହିପରି ଭାବେ    ଦୀର୍ଘ ଦିନ ଯେବେ
ଅତିବାହିତ ହୋଇଲା
ରାଜା ରାଣୀ ଦୁହେଁ    ଅପତ୍ୟର ସ୍ନେହେ
ବଞ୍ଚିତ ହେବାକୁ ଥିଲା ।୬।

ପୂଜା ଓଷା କରି    ସେବି ହର ଗୌରୀ
ସୁକନ୍ୟା ଲଭିଲେ ଏକ
ଦିନ ମାସ ବର୍ଷ    ବଢ଼ିଲା ବୟସ
ରଖିଲା ରାଜାଙ୍କ ଟେକ ।୭।

ବହୁ ଆଡ଼ମ୍ବର    ଉତ୍ସବ ଆସର
ସମାରୋହ ଆୟୋଜନ,
ପାତ୍ର ମନ୍ତ୍ରୀ ଗଣେ    ପୁର ପଲ୍ଲୀ ଜନେ
ଅତି ଉଲ୍ଲସିତ ମନ ।୮।

ସମୟର ସ୍ରୋତ    ହେଲା ଅତିକ୍ରାନ୍ତ
ରାଜନନ୍ଦିନୀ ବୟସ,
ଚନ୍ଦ୍ରକଳା ସମ    ଅତି ଅନୁପମ
ଦେଖି ସରବେ ସନ୍ତୋଷ ।୯।

ରାଜା ରାଣୀଙ୍କର    ଗେଲ ବସରର
ଅତି ଅଳିଅଳ ଯେଣୁ
ଅତି ସରାଗରେ    ନାମ ରଖିଥିଲେ
ଚନ୍ଦ୍ରକାନ୍ତି ନାମ ତେଣୁ ।୧୦।

କ୍ରମେ ଚନ୍ଦ୍ରକାନ୍ତି    ଶିକ୍ଷା ରାଜନୀତି
ସବୁରେ ହେଲା ନିପୁଣା
ପିତା ମାତାଙ୍କର    ମନରେ ଗଭୀର
ଚିନ୍ତା କଲା ବାଟବଣା ।୧୧।

ପାତ୍ର ମନ୍ତ୍ରୀ ମେଳେ ବସିଣ ସକଳେ
ପାଞ୍ଚିଲେ କାନ୍ତି ପ୍ରଣୟ
ଯୋଗ୍ୟ ବର ଯେଣୁ ନ ପାଇଲେ ତେଣୁ
ମନ ହୋଇଲା ଅଥୟ ।୧୨।
ଝିଅ ଜନ୍ମ କରି ବିଭାଘର ସାରି
ଯୋଗ୍ୟ ପାତ୍ରେ ଦାନ କରି
ପିତା ମାତାଙ୍କର ମନରେ ଅପାର
ଆନନ୍ଦ ଯାଏ ସଞ୍ଚରି ।୧୩।
ରାଜତନୟାର ମନଲାଖି ବର
ଯେଣୁ ଶୀଘ୍ର ନ ମିଳିଲା,
ପିତା ମାତାଙ୍କର ରାଜ ଦରବାର
ଚିନ୍ତାରେ ମଗନ ହେଲା ।୧୪।
ତେଣୁ କଲେ ସ୍ଥିର ହେବ ସ୍ୱୟମ୍ବର
ରାଜନନ୍ଦିନୀ ପ୍ରଣୟ
ଆମନ୍ତ୍ରିବେ ବର ବିଭିନ୍ନ ରାଜ୍ୟର
ସଭାରେ ହେବ ନିର୍ଣ୍ଣୟ ।୧୫।
ଶୁଣି ଏ ବିଚାର ରାଜ ତନୟାର
ମନକୁ ଯହୁଁ ନୋହିଲା,
ପାତ୍ର ମନ୍ତ୍ରୀ ସୈନ୍ୟ ଦାସଦାସୀଗଣ
ସହ ତୀର୍ଥାଟନେ ଗଲା ।୧୬।
ପ୍ରସ୍ତାବ ଝିଅର ରାଜାରାଣୀଙ୍କର
ମନକୁ ପସନ୍ଦ ହେଲା,
ତେଣୁ ଝିଅ ସଙ୍ଗେ ସାହାଯ୍ୟ ପ୍ରସଙ୍ଗେ
ରାଜଥାଟ ପଠାଗଲା ।୧୭।
ବୁଲି ନାନା ଦେଶ ପାଇ ବହୁ କ୍ଲେଶ
ମନଲାଖି ଯୋଗ୍ୟ ବର
ଯେବେ ନ ମିଳିଲା ମନେ ସ୍ଥିର କଲା
ରହିବ କୁମାରୀ ଚିର ।୧୮।

ମନେ ମନେ ଭାଳି ସଦାଶିବ ଶୂଳୀ
ରାତ୍ରରେ ନିଦ୍ରାରେ ରତ
ଦେଖିଲା ସ୍ୱପନ ଲାଖି ତାର ମନ
ଯୋଗ୍ୟବର ଉପଗତ ।୧୯।

ଯୋଗ୍ୟ ପାତ୍ର ପାଇ ଆନନ୍ଦିତ ହୋଇ
ମନ ସମର୍ପଣ କଲା,
ପତିରୂପେ ବରି ଶିବ ପାଦସ୍ମରି
ସହସା ନିଦ୍ରା ଭାଙ୍ଗିଲା ।୨୦।

ରାତ୍ର ପାହିଗଲା ସିନ୍ଦୁରା ଫାଟିଲା
ଉଠିଲା ରାଜକୁମାରୀ,
ହୋଇ ମନେ ଖୁସି ବୋଲେ ଆଲୋ ଦାସୀ
ମୋର ଆଶା ଅଛି ପୂରି ।୨୧।

କିଛି କ୍ଷଣ ପରେ ଅନତି ଦୂରରେ
ଆସୁଥିଲା ପଟୁଆର
ଥିଲେ ସେ ମଧ୍ୟରେ ରାତ୍ର ସ୍ୱପନରେ
ଦେଖିଥିଲା ଯେଉଁ ବର ।୨୨।

ଚିନ୍ତିମନେ ନିଜ ହୋଇ ସଜବାଜ
ଦାସୀକୁ ଶୀଘ୍ର ଡ଼ାକିଲା
ଆସେ ପଟୁଆର କେଉଁ ରାଇଜର
ବୁଝି ଆସ ଖରେ ଇଲା ।୨୩।

ଦାସୀ ସୁଚତୁରା ହୋଇ ଆଗତୁରା
ଖବର ଜାଣିବା ପାଇଁ
ଗହଳି ମଧ୍ୟରେ ଯାଇ ପୁଚ୍ଛିବାରେ
ଅଙ୍ଗରାଜ ପୁତ୍ର ସେହି ।୨୪।

ବିଜୟ କେତନୁ ସେ ଦେଶରାଜନ
ତାଙ୍କ ପୁତ୍ର ବଜ୍ରବାହୁ
ସଙ୍ଗେ ଗଜ ଅଶ୍ୱ ପାରଧିସର୍ବସ୍ୱ
ବିଳାସରେ ରତ ସେହୁ ।୨୫।

ସବୁଗୁଣେ ପୂର୍ଣ୍ଣ ଅଟନ୍ତି ନିପୁଣ
ଯୁଦ୍ଧ ପରାକ୍ରମ ନୀତି
ରାଜକର୍ମେ ଦକ୍ଷ ଅଟନ୍ତି ପ୍ରତ୍ୟକ୍ଷ
ସମସ୍ତଙ୍କ ପ୍ରିୟ ଅତି ।୨୬।
ଶୁଣି ସମାଚାର ଆନନ୍ଦ ଅପାର
ଲଭିଲାକ ଚନ୍ଦ୍ରକାନ୍ତି
ଥାଟେ ଆଜ୍ଞା ଦେଲା ଫେରିବା ବୋଇଲା
ପାଇଲି ମୋ ଯୋଗ୍ୟପତି ।୨୭।
ତୀର୍ଥାଟନ ସାରି ସ୍ୱଦେଶକୁ ଫେରି
ପିତାଙ୍କୁ କରି ସାକ୍ଷାତ
ନିଜମନ କଥା ନକରି ଅନ୍ୟଥା
ଶୀଘ୍ର ପ୍ରକାଶିଲା ସେତ ।୨୮।
ସେହି ସମୟରେ ପିତାଙ୍କ ସଙ୍ଗରେ
ଥିଲେ କୁଳ ପୁରୋହିତ
ରାଜାଙ୍କ ଦୁହିତା ଚନ୍ଦ୍ରକାନ୍ତି କଥା
ଶୁଣୁଥିଲେ ଦେଇ ଚିତ୍ତ ।୨୯।
କରିଲେ ଗଣନ ଜାଣିଲେ ତତ୍‌କ୍ଷଣ
ଅଳ୍ପାୟୁସ ବଜ୍ରବାହୁ
କିଛିକାଳ ଅନ୍ତେ ଲଭିବ ନିଶ୍ଚିତେ
ମୃତ୍ୟୁସ୍ଥିର ତାର ଯେହୁଁ ।୩୦।
ଶୁଣିଲେ ରାଜନ ହୋଇଲେ ବିଷର୍ଣ୍ଣ
ଦୁହିତା ଆଡ଼କୁ ଚାହିଁ
ଦୁଃଖିତ ମନରେ ପ୍ରକାଶିଲେ ନରେ
ଏଥକୁ ବିଚାର ତୁହିଁ ।୩୧।
ରାଜାର ତନୟା ନ ହୋଇ ଅଥୟା
ପ୍ରକାଶିଲା ମନକଥା
ଯାକୁ ଥରେ ଇଚ୍ଛି ପତିମନେ ବାଛି
ନହେବ କେବେ ବ୍ୟଥା ।୩୨।

ବୁଝାଇଲେ ଯେତେ                    ନ ଶୁଣିଲା କେତେ
ପ୍ରସ୍ତାବ ଆଦି ବିଗ୍ରର
ମନରେ ନିଜର                    ରହିଲା ଅଟଳ
ଦୃଢ଼ ମନେ କଲା ସ୍ଥିର ।୩୩।
ତେଣୁ ହୋଇ ବାଧ                    ନ କରିଲେ ସାଧ
ଇଚ୍ଛାମତେ କୁମାରୀକୁ
ଇଚ୍ଛା ବିରୁଦ୍ଧରେ                    ଝିଅ ବାହାଦେଲେ
ଅଙ୍ଗରାଜ କୁମାରଙ୍କୁ ।୩୪।

-୦-

## ପଞ୍ଚମ ଅଧ୍ୟାୟ

ଝିଅ ଗଲା ଶାଶୁ ଘରକୁ । ଆଦରି ନିଜ କରମକୁ ।।
ଶାଶୁ, ଶ୍ୱଶୁର ଓ ପତିର । ସେବାରେ ରହିଲା ତତ୍ପର ।।
କୁଳ ପୁରୋହିତ ବଚନ । ମନରେ ରହିଛି ସ୍ମରଣ ।।
ସମୟ ହୋଇଲା ନିକଟ । ଅଭିଷ୍ଟ ବିଷମ ସଙ୍କଟ ।।
ପୂର୍ବ ଭଳି ରାଜକୁମାର । ବଜ୍ରବାହୁ ହେଲା ବାହାର ।।୫।।
ମୃଗୟା କରିବା ପ୍ରୟାସ । ଆଗ୍ରହ କରିଲା ପ୍ରକାଶ ।।
ଚନ୍ଦ୍ରକାନ୍ତି ତା ମନରେ । ଲୁଗ୍ୱଇ ରଖି ତା ଭିତରେ ।।
ପତିର ସଙ୍ଗେ ତା ଯିବାର । ଉଦ୍ଦେଶ୍ୟ ଜଙ୍ଗଲ ବିହାର ।।
ଶାଶୁ ଶ୍ୱଶୁରଙ୍କ ଆଦେଶ । ମାଗିବା ପାଇଁକି ପ୍ରବେଶ ।।
ତାଙ୍କରି ନିକଟେ ମିଳିଲା । ବନକୁ ଯିବାକୁ କହିଲା ।।୧୦।।
ପତିର ସଙ୍ଗେ ଅଭିଳାଷ । ତାଙ୍କଠି କରିଲା ପ୍ରକାଶ ।।
ସମ୍ମତି ଦେଲେ ସେ ଯିବାକୁ । ଶାଶୁ ଓ ଶ୍ୱଶୁର ବୋହୂକୁ ।।
ପତି ପତ୍ନୀ ଦୁହେଁ ଚଳିଲେ । ଅରଣ୍ୟ ମଧ୍ୟରେ ପଶିଲେ ।।
କୁମାର ଧନୁ ତା ହାତରେ । ଶରକୁ ଯୋଖିଲା ଲୟରେ ।।
ଶିକାର ଖୋଜିଣ ନ ପାଇ । ଦୂରକୁ ଯାଇ ସେ ଖୋଜଇ ।।୧୫।।
ବହୁତ କଷଣ ପାଇଲା । ଶରୀର ଅବଶ ଲାଗିଲା ।।
ବସିଲା ବୃକ୍ଷେକ ମୂଳରେ । ବସି ପଡ଼ିଲା ସେ ସତ୍ତ୍ୱରେ ।।
ମନରେ ହୋଇଲା ନିରାଶ । ନପାଇ ଶିକାର ସନ୍ଦେଶ ।।
ଏପରି ମନରେ ଭାଳଇ । ପତ୍ନୀ ତା ପାଖରେ ମିଳଇ ।।

କି ହେଲା ? ବୋଲିଣ ପଚ୍ଚରେ । କିପାଇଁ ଅଧିର ମନରେ ||୨୦||
ଯେବେ ନ ମିଳିଲା ସିକାର । ମନକୁ ଅଥୟ ନ କର ||
ଅବଶ ଲାଗୁଛି ତୁମକୁ । ରଖ ମୋ କୋଳରେ ମୁଣ୍ଡକୁ ||
ବିଶ୍ରାମ କର କିଛି କାଳ । ମନରେ ଅନ୍ୟଥା ନ ଭାଳ ||
ଆରାମ ଲାଗିଲେ ଉଠିବ । ଶିକାର ସନ୍ଧାନେ ଲାଗିବ ||
ବିଶ୍ରାମ ନେବାକୁ ବସିଲା । କାନ୍ତିରେ କୋଳେ ଆଶ୍ରାନେଲା ||୨୫||
କୁମାର ନିଦ୍ରାର ଭୋଳରେ । କିଛି ସମୟ ଉତ୍ତାରେ ||
ସ୍ୱାମୀର ସେବାରେ ଲାଗିଛି । ବିଭୁଙ୍କ ଆଶିଷ ବାଞ୍ଛୁଛି ||
ଦେଖିଲା ସ୍ୱାମୀଙ୍କ ନିଶ୍ୱାସ । ବହିଲା ଶେଷ ଅଣଚ୍ଚଷ ||
ନିଶ୍ୱାସ ବହେ ଖରତର । କାନ୍ତି ହୁଅଇ ହରବର ||
ପିଣ୍ଡରୁ ପରାଣ ବାହାର । ଜଡ଼ ଯେ ହୋଇଲା ଶରୀର ||୩୦||
ଆସିଲା ସଙ୍କଟ ସମୟ । କୁମାରୀ ହୋଇଲା ଅଥୟ ||
ମନରେ ବାନ୍ଧିଲା ସାହସ । ଚିନ୍ତି ମନରେ ଆଶୁତୋଷ ||
ଶରୀରେ ଜୀବନ ନ ଥିଲା । ପିଣ୍ଡଟି ଶୀତଳ ହୋଇଲା ||
ପତିକୁ ଡ଼ାକିଲା ଅନେକ । ବିଅର୍ଥ ହୋଇଲା ତା ଡ଼ାକ ||
ଶେଷରେ ନିଶ୍ଚୟ କରିଲା । ସତୀ ଯିବାକୁ ସ୍ଥିର କଲା ||୩୫||
ମୃତ ପତିକୁ ଧରି ସଙ୍ଗେ । ବାହୁନି କାନ୍ଦେ ନାନାରଙ୍ଗେ ||
ମିଳିଲା ଯମୁନା କୂଳରେ । ସପତି ପଶିବ ଜଳରେ ||
ଯମୁନା ଗଙ୍ଗାର ସଙ୍ଗମ । ସରସ୍ୱତୀର ଯେ ମିଳନ ||
ତ୍ରିବେଣୀ ବୋଲି ସେ ବିଖ୍ୟାତ । ସଙ୍ଗମେ ମିଶିବ ତୁରିତ ||
ମୃତ ଶରୀର ସ୍ୱାମୀଙ୍କର । ସହିତ ମିଳିଲା ସେଠାରେ ||୪୦||
ପ୍ରୟାଗ ସଙ୍ଗମ ନିକଟେ । ଚିନ୍ତିଲା ପ୍ରଭୁଙ୍କୁ ସଙ୍କଟେ ||
କି ଥାଇ ଏ ଛାର ଜୀବନ । ପତି ସଙ୍ଗରେ ଯାଉ ପ୍ରାଣ ||
ବିଚ୍ଚରି ଜଳେ ସେ ପଶିଲା । ଅପୂର୍ବ କଥାଏ ଘଟିଲା ||
ଗଙ୍ଗା, ଯମୁନା, ସରସ୍ୱତୀ । ସହସା ଉପ୍ନନ୍ନା ତ୍ରିମୂର୍ତ୍ତି ||
ତ୍ରିଦେବୀ ଆଦରେ କହନ୍ତି । କିପାଇଁ କରୁ ଏ ଅନୀତି ||୪୫||
କାନ୍ତି ଯେ ତହୁଁ ପଚ୍ଚରଇ । ମୋ ପଥେ ବାଧା ଦିଅ କାହିଁ ?
କିଏ ନ ଜାଣେ ତୁମ୍ଭେମାନେ ? । ବାରଣ କର ଅକାରଣେ ||
ପତି ମୋ ଯମର ପାଶରେ । ବାନ୍ଧିଣ ନେଲେ ଆରପାରେ ||

ତେଣୁ ମୋ ବଞ୍ଚିବା ନୁହଇ । କାରଣ ମୁଁ ସତୀ ଅଟଇ ।।
ଉତରେ ତ୍ରିଦେବୀ ବୋଲନ୍ତି । ମରି ନାହିଁ ତୋହର ପତି ।।୫୦।।
ଶୋଇଛି ପ୍ରଗାଢ଼ ନିଦରେ । ଜଳକୁ ସିଞ୍ଚ ତା ମୁଁହରେ ।।
ଲଭିବୁ ତାହାର ସୁଫଳ । ତୋ ପତି ଉଠିବ ଚଞ୍ଚଳ ।।
ସହସା ରମଣୀ ଧାଇଁଲା । ତ୍ରିବେଣୀ ଜଳକୁ ଆଣିଲା ।।
ସିଞ୍ଚିଲା ପତିର ମୁଖରେ । ପତି ଯେ ଉଠିଲା ସତ୍ୱରେ ।।
ପତି ଓ ପତ୍ନୀ ଦୁଇଜଣ । ପ୍ରଣାମ କରିଲେ ତକ୍ଷଣ ।।୫୫।।
କିଏ ଗୋ ବୋଲି ସେ ପୁଚ୍ଛିଲେ । ଆମେ ଯେ ତ୍ରିଦେବୀ ବୋଇଲେ ।।
ତ୍ରିବେଁଣୀ ଦେବୀ ଆମ୍ଭ ନାମ । ଏ ଅଟେ ପ୍ରୟାଗ ସଙ୍ଗମ ।।
ଅଟଇ ପୁଣ୍ୟ ତୀର୍ଥସ୍ଥାନ । ଏଠାଇ କରଇ ଯେ ସ୍ନାନ ।।
ଭକ୍ତି ମନରେ ସ୍ନାନ କରେ । ତାର ପାତକ ସବୁ ହରେ ।।
ଆଜିଠୁଁ ଏ ବ୍ରତ ପାଳିବ । ତ୍ରିବେଣୀ ବ୍ରତ ନାମ ଦେବ ।।୬୦।।
ସକଳେ ଜାଣିବେ ଜଗତେ । ଓଷାକୁ ପାଳିବେ ସମସ୍ତେ ।।
ମାଘର କୃଷ୍ଣ ଅମାବାସ୍ୟା । ମଧ୍ୟାହ୍ନେ ପାଳିବ ଏ ଓଷା ।।
ଯେ ଜନ ଏହାକୁ ପାଳିବେ । ଓଷାର ସୁଫଳ ଲଭିବେ ।।
ସାବିତ୍ରୀ ବ୍ରତର ବିକଳ୍ପ । ଏ ଓଷା ତାହାର ପ୍ରକଳ୍ପ ।।
ଶୁଣ ଯେ ତାହାର ନିୟମ । ପାଳନେ ହୋଇବ ସକ୍ଷମ ।।୬୫।।
ତାପରେ ଦେବୀଏ କହନ୍ତି । ମନେ ରଖିବୁ ଚନ୍ଦ୍ରକାନ୍ତି ।।
ପୂଜାର ନିୟମ ପାଳନେ । ରହିବୁ ସଦା ଶୁଦ୍ଧମନେ ।।
ସଭିଙ୍କୁ କହିବୁ ବୁଝାଇ । ବ୍ରତକୁ ପ୍ରସାରିବା ପାଇଁ ।।
ବ୍ରତର ଶୁଭ ଫଳ ଲଭି । ତ୍ରିବେଣୀ ଦେବୀ ପଦ ସେବୀ ।।
ଦେବୀଏ ହେଲେ ଅନ୍ତର୍ଦ୍ଧାନ । ଦମ୍ପତି ହେଲେ ହତଜ୍ଞାନ ।।୭୦।।
ଓଷାର ପ୍ରସାର ହୋଇଲା । ସମସ୍ତେ ପାଳିଲେ ଏ ମେଳା ।।
ଓଷାକୁ କରିଲେ ପାଳନ । ପତି ଦୀର୍ଘାୟୁ ହୁଏ ଜାଣ ।।
ଆନନ୍ଦେ ଦିନ କଟାଇବେ । ସଭିଏଁ ସୁଖରେ ରହିବେ ।।
ଏ କଥା ଯେ ଜନ ଶୁଣିବେ । ଦୁଃଖ କଷ୍ଟରୁ ମୁକ୍ତ ହେବେ ।।
ଏହି ବ୍ରତ ନିୟମକୁ । ଶୁଣି ନିଷ୍ଠାରେ ପାଳିବାକୁ ।।୭୫।।
ଜଣାଇ ଜ୍ଞାତି ପରିବାରେ । ପ୍ରଚ୍ଚର କରିବେ ସତ୍ୱରେ ।।
ପ୍ରତି ବରଷ ମାଘ ମାସେ । ବ୍ରତ ପାଳିବ ଉପବାସେ ।।
ବ୍ରତକୁ ନିଷ୍ଠାରେ ପାଳିବ । ପତି ସୁହାଗ ପ୍ରାପ୍ତ ହେବ ।।୭୮।।

-୦-

## ଷଷ୍ଠ ଅଧ୍ୟାୟ

ଏଥ ଅନନ୍ତରେ ଶୁଣ ବ୍ରତର ନିୟମ,
ମାଘ ଓଷାର ତ୍ରିବେଣୀ ବ୍ରତ ଅନ୍ୟ ନାମ।
ମାଘ ମାସ କୃଷ୍ଣପକ୍ଷ ଅମାବାସ୍ୟା ଦିନ,
ସାଧବା ସ୍ତିରିଏ ଏହା କରିବେ ପାଳନ।
ସାବିତ୍ରୀ ବ୍ରତ ପାଳନ କରେ ଯେଉଁ ନାରୀ,
ସେ ମଧ୍ୟ ପାଳିବେ ଏହି ବ୍ରତକୁ ଆଦରି।
ଯେଉଁ ନାରୀଏ ସାବିତ୍ରୀ ବ୍ରତ ନ କରନ୍ତି,
ଏ ବ୍ରତ ପାଳନ ବିନା ନାହିଁ ଅନ୍ୟ ରୀତି।
ପ୍ରାତଃରୁ ଉଠିଣ ସର୍ବେ ନିତ୍ୟ କର୍ମ ସାରି,
ଓଷା ପାଳିବାକୁ ବ୍ରତୀ ହେବେ ସବୁ ନାରୀ।
ପୂଜା ଆସ୍ଥାନକୁ ଲିପା ପୋଛା କରିଥିବେ,
ବର, ପିପ୍ପଳ ବୃକ୍ଷକୁ କୁଣ୍ଡରେ ରଖିବେ।
ତୁଳସୀ ଚଉରା ମୂଳେ କରିବେ ପୂଜନ,
ବ୍ରତର ସୁଫଳ ନିଶ୍ଚେ ମିଳିବ ବହନ।।୭।।
ସାତ ବର୍ଣ୍ଣ ପୁଷ୍ପ ଆଉ ସାତ ଜାତି ଫଳ
ଅଷ୍ଟୋତ୍ତର ଶତ ଦ୍ରବ ଅରୁଆ ଚାଉଳ।
ଯତନରେ ବାନ୍ଧି ତାକୁ ପୂଜା ସ୍ଥାନେ ଥୋଇ,
ପତିଙ୍କ ଦୀର୍ଘାୟୁ ଆଶା ତ୍ରିବେଣୀକୁ ଧ୍ୟାୟୀ।
ସାତରଙ୍ଗ ସୂତା ବ୍ରତ ଚୁଡ଼ୀ ସଙ୍ଗେ ଲାଖ,
ପୂଜା ସାମଗ୍ରୀଭ ସହ ସଜାଇଣ ରଖ।।୧୦।।
ନୂତନ ବସନ ପିନ୍ଧି ପୂଜନ କରିବ,
ପତିଙ୍କ ପାଇଁ ନୂତନ ବାସ ଆଣିଦେବ।
ନାରିକେଳ ଫଳ ଅଟେ ଅତିଶ୍ରେଷ୍ଠ ଫଳ,
ତାକୁ ଅରପିଲେ ଦେବୀ କରିବେ ମଙ୍ଗଳ।
ମଧ୍ୟାହ୍ନରେ ନାରୀ ମିଳି ଓଷା ଏକ ସଙ୍ଗେ,
ପାଳନ କରିବେ ତ୍ରିବେଣୀ ବ୍ରତ ଅନୁରାଗେ।
ପୂଜା ଆରାଧନା ଓଷା ବ୍ରତ ଉପଚାର,
ବ୍ରତ ଶେଷେ ମହାତ୍ମ୍ୟକୁ ପଢ଼ି ବାର ବାର।

ପରସାଦକୁ ସଭିଏଁ ବାଣ୍ଟିଣ ଖାଇବ
ନିଜ ନିଜ ଗୁରୁଜନେ ପ୍ରଣାମ କରିବ ।।୧୯।।
ଲଭିବ ତାଙ୍କର ଶୁଭ ଆଶିଷ ଅପାର,
ମନରେ ଚିନ୍ତିବ ଦେବୀ ତ୍ରିବେଣୀ ଆବର ।
ପୂଜା ଶେଷେ ପତି ପାଦ ପ୍ରକ୍ଷାଳନ କରି,
ପାଇବ ଚରଣାମୃତ ଭକ୍ତିରେ ତାଙ୍କରି ।
ଦୂବ, ତଣ୍ଡୁଳ ପୁଷ୍ପକୁ ପତିଙ୍କୁ ଅରପି,
ତାଙ୍କ ସମ୍ମୁଖରେ ଧୂପ ଦୀପ ଜାଳି ରଖି ।
ନବୀନ ବସନ ତାଙ୍କୁ ଭକ୍ତିଭରେ ଦେବ,
ପତିଙ୍କର ଦୀର୍ଘାୟୁଷ କାମନା କରିବ ।
ପରିଶେଷେ ନଇବେଦ୍ୟ ଦେବ ଖାଇବାକୁ,
ପରମ ଦେବତା ବୋଲି ମଣିବ ପତିଙ୍କୁ ।।୨୦।।
ତାପରେ ପ୍ରସାଦ ନିଜେ ସେବନ କରିବ,
ଫଳମୂଳ ବିନା କିଛି ତୁଣ୍ଡରେ ନ ଦେବ ।।୨୧।।
ଦିନ ମଧ୍ୟେ ଏକବାର ଭୋଜନ କରିବ,
ଅନ୍ନ ବିନା ଫଳାହାର ପ୍ରସାଦ ସେବିବ ।
ତ୍ରିବେଣୀ ବ୍ରତର କଥା ଶେଷରେ ଶୁଣିବ,
ମନେ ମନେ ତ୍ରିଦେବୀଙ୍କୁ ସ୍ମରଣ କରିବ ।
ତାଙ୍କରି ପ୍ରସାଦେ ହେବ ଅହି ସୁଲକ୍ଷଣୀ
ପତିବ୍ରତା ଆଦର୍ଶରେ ହୁଅ ସୁଗୃହିଣୀ ।
ଏହି ବ୬ତ ଓଷା କଥା ଯାହା ଘରେ ଥିବ,
ତ୍ରିଦେବୀ ପ୍ରସାଦ ତାଙ୍କୁ ।ବଶ୍ୟ ମିଳିବ ।
ତ୍ରିବେଣୀ ବ୍ରତର କଥା ହେଲା ସମାପନ,
ଶିବ ପାର୍ବତୀଙ୍କୁ ଯାହା କହିଥିଲେ ଜାଣ ।।୨୬।।

-୦-

## ପୂଜ୍ୟ ପୂଜାର ଅର୍ଘ୍ୟ

ବାପା ଆକାଶରୁ ବଡ଼ ଅଟନ୍ତି,
ସଦାବେଳେ ଏହି କଥାକୁ ଚିନ୍ତି ।
ପିତା ଓ ମାତାଙ୍କୁ ଭକ୍ତି ଦେଖାଅ,
ଭବସାଗରରୁ ନିସ୍ତାର ପାଅ ।
ବାପାମାଆଙ୍କର ଆଶୀର୍ବାଦରେ,
ସାଂସାରିକ ଦୁଃଖ ପଳାଏ ଖରେ ।
ତାଙ୍କରି ବିହୁନେ ତୁମ ଜନମ,
ଏହି ସଂସାରର ଧର୍ମ କରମ ।
ଭୋଗ କରିବାର ସୌଭାଗ୍ୟ ସଜ,
ପାଇଥାନ୍ତ କି ? ତା ମନରେ ହେଜ ।
ପିତାଙ୍କର ଶୁଭ ଆଶୀଷ ପାଇ,
'ସତ୍ୟବ୍ରତ'-'ଭୀଷ୍ମ' ନାମ ବୋଲାଇ ।
'ଇଚ୍ଛାମୃତ୍ୟୁ' ବର ତାହାଙ୍କୁ ଦେଲେ,
ଧନ୍ୟ- 'ପିତାପୁତ୍ର' ନାମ ରଖିଲେ ।
ପୁତ୍ର ନଚିକେତା ପିତା ଆଜ୍ଞାରେ,
ପହଞ୍ଚିଲେ ଯାଇ ଯମଙ୍କ ଠାରେ ।
ଯମଶ୍ରୀ ତାହାଙ୍କୁ ନ ପାରି ରଖି,
ଫେରାଇଦେଲେ ସେ ମୃତ୍ୟୁ ଉପେକ୍ଷୀ ।
ପିତାମାତା ସମ ଶାଶୁଶ୍ୱଶୁର,
ତାଙ୍କୁ ନ୍ୟୁନ ବୋଲି ମନେ ନ ଧର ।
ମନପ୍ରାଣ ଦେଇ ସେବା ତାଙ୍କରି,
ଆନନ୍ଦରେ ମନ ଦିଅଟି ଭରି ।
ଅତିଥି, ବନ୍ଧୁଙ୍କୁ ଦେବତା ଭଳି,
ଭକତି ଦେଖାଅ ହୃଦୟ ଖୋଲି ।
ଗୁରୁଙ୍କ ଆଦେଶ ମାନି ଆରୁଣୀ,
ହିଡ଼ବନ୍ଧେ ଶୋଇ ରୋଧିଲେ ପାଣି ।
ଗୁରୁ ନିଜେ ଖୋଜି ଆଣିଲେ,
ସେଥିପାଇଁ ସର୍ବେ ତାଙ୍କୁ ଜାଣିଲେ ।
ଆଉ ଜଣେ ଶିଷ୍ୟ ଶ୍ରୀଉପମନ୍ୟୁ,
ଗୁରୁ ଆଜ୍ଞା ମାନି ଶୁଖିଲା ତନୁ ।

ଶେଷେ ତାଙ୍କ ଦୃଷ୍ଟିଶକ୍ତି ହରାଇ,
ଶୁଷ୍କ ଜୀର୍ଣ୍ଣ କୂପେ ପଡ଼ିଲେ ଯାଇ ।
ତାଙ୍କ ଗୁରୁଭକ୍ତି ପ୍ରଭାବ ବଳେ,
ଅଶ୍ୱିନୀକୁମାର ନିଜେ ଆସିଲେ ।
ଔଷଧକୁ ଯାଚି ତାଙ୍କୁ ସେବନ
କରିବା ପାଇଁକି କଲେ ପ୍ରଦାନ ।
ଗୁରୁ ଆଜ୍ଞା ବିନା ନ କରି ପାନ,
ଶେଷେ ଗୁରୁ ଆସି କହିଲେ ଧନ୍ୟ !
ତାଙ୍କରି ନିର୍ଦ୍ଦେଶେ ଔଷଧ ସେବା,
ଗୁରୁଭକ୍ତି ଦେଖି କଲେ ବାହାବା !
ଏହିଭଳି ଗୁରୁଭକ୍ତିର ଗାଥା,
ଶୁଣା ନାହିଁ କେହ୍ନେ ଆଉ ଅନ୍ୟଥା ।
ଗୁରୁ ଆଦେଶକୁ ସଦା ମାନିବ,
ଚିରକାଳ ଦେଶେ ଯଶ ରହିବ ।
ଧ୍ରୁବ, ପ୍ରହ୍ଲାଦ ଶିଶୁଙ୍କ ଭକ୍ତି,
କେବେ ଶୁଣା ନାହିଁ ଏଭଳି ଶକ୍ତି ।
ତାଙ୍କ ଭକତିର ଏ ପରାକାଷ୍ଠା,
ଦେଖା ନାହିଁ କାହିଁ ଏପରି ନିଷ୍ଠା ।
ଧ୍ରୁବ ଭକତିରେ ହୋଇଲେ ତୁଷ୍ଟ,
ବିଷ୍ଣୁ ସ୍ୱୟଂ ଆସି ହେଲେ ପ୍ରବିଷ୍ଟ ।
ଭକ୍ତ ପ୍ରହ୍ଲାଦର ବିଶ୍ୱାସ ବଳେ,
ବିଷ୍ଣୁ ବିକଟାଳ ରୂପ ଧରିଲେ ।
ନରସିଂହ ରୂପ ପ୍ରକଟ ହେଲେ,
ଭକତର ବାନା ଟେକି ରଖିଲେ ।
ଏହିପରି କେତେ ଶିଷ୍ୟ, ଭକତ,
ସାରା ଧରା ଧାମେ ହୋଇ ବିଖ୍ୟାତ ।
ତେଣୁ ଶୁଣ ଆହେ ଜନ ସମାଜ !
ପିତାମାତାଗୁରୁଗୋବିନ୍ଦ ଭଜ ।
ନିଷ୍ଠା, ଭକ୍ତି, ପ୍ରେମ ହୃଦୟ ଦେଇ,
ଗୁରୁଜନଙ୍କ ପଦରେ ଧାୟି ।

ଜଣେ ଶିକ୍ଷକ...

ଶୁଦ୍ଧପୂତ ମନେ ପୂଜା କରିଲେ,
ନିଶ୍ଚେ ଶୁଭାଶିଷ ମିଳିବ ଭଲେ ।
ଆଶୀର୍ବାଦ ଲଭି ପାଇବ ଶାନ୍ତି,
ଯଦି ଦେଖାଇବ ସପ୍ରେମ ଭକ୍ତି ।
ଲଭିବ ଶେଷରେ ଦିବ୍ୟାନନ୍ଦକୁ,
ଭଜିଲେ ବିଷ୍ଣୁଙ୍କ ପାଦପଦ୍ମକୁ ।
ପ୍ରତିଦିନ ଉଠି ତୁଳସୀ ମୂଳେ,
ମୁଣ୍ଡିଆ ମାରିବ ଚଉଁରା ତଳେ ।
ତୁଳସୀ ଅଟନ୍ତି ବିଷ୍ଣୁଙ୍କ ପ୍ରିୟା,
ତାଙ୍କୁ ପୂଜା କଲେ ବିଷ୍ଣୁଙ୍କ ଦୟା ।
ଅଚିରେ ଲଭିବ ଅଟେ ନିଶ୍ଚୟ,
ଏଥିରେ ନାହିଁଟି ତିଳେ ସଂଶୟ ।
ସ୍ୱାମୀ ଶିବାନନ୍ଦ ତପସ୍ୟା ବଳେ,
ସାରା ବ୍ରହ୍ମାଣ୍ଡରେ ବିଖ୍ୟାତ ହେଲେ ।
ସ୍ୱାମୀ ଚିଦାନନ୍ଦ ତାହାଙ୍କ ଶିଷ୍ୟ,
ସ୍ଥିତପ୍ରଜ୍ଞ-ଜ୍ଞାନ କଲେ ନିଜସ୍ୱ ।
'ଭଲ ହୋଇ', 'ଭଲ କରିବା' ଶିକ୍ଷା,
ପ୍ରଚାରିଲେ ଏହି ପରମ ଦୀକ୍ଷା ।
ସାରା ଜଗତରେ ଦିବ୍ୟଜୀବନ,
ସଂଘଟିର ନାମ ହେଲା ବୟାନ ।
ପାଳିଲେ ତାହାର ଦିବ୍ୟ ନୀତିକୁ,
ଲଭିବ ନିଶ୍ଚୟ ଦିବ୍ୟାନନ୍ଦକୁ ।
ପରିଶେଷେ ତୁମ୍ଭେ ମୋକ୍ଷ ଲଭିବ,
ଏହା କହିଛନ୍ତି ଶ୍ରୀ ଗୁରୁଦେବ ।
ଗୁରୁଜନ ବିଜ୍ଞ ସଦା ପୂଜିବ,
ଚିରକାଳ ଦେଶେ ବିଖ୍ୟାତ ହେବ ।
ତେଣୁକରି ଏହା ମନରେ ରଖ,
ପୂଜ୍ୟ ପୂଜା କରି ରଖିବ ଟେକ ।
'ହରିଓଁ', 'ଶ୍ରୀରାମ' ସଦା ଉଚ୍ଚାରି,
ତବ ଜୀବ ଯାଉ ସୁଖରେ ତରି ।

-୦-

# ଉଦ୍‌ବୋଧନା

ଯୁବକ ଯୁବତୀ ଜାତୀୟ ସମ୍ପତ୍ତି
ଏହାକୁ ମନେ ରଖିବ,
ତାଙ୍କରି ସମ୍ପୂର୍ଣ୍ଣ ବିକାଶ ଘଟିଲେ
ଦେଶ ସମୃଦ୍ଧ ହୋଇବ ।୧।
ତାହାଙ୍କ ସ୍ତରରୁ ସଙ୍ଗଠନ ପାଇଁ
ଯୁବଗୋଷ୍ଠୀର ମିଳନ
ସେମାନେ ସଂଯତ ହୋଇ ସଙ୍ଗଠିତ
ହେବ ଉନ୍ନତି ବିଧାନ ।୨।
ବିଦ୍ୟୁତ ଓ ଜଳ ଜାତୀୟ ସମ୍ବଳ
ବନବୃକ୍ଷର ସୁରକ୍ଷା,
ସତ୍ ବିନିଯୋଗ ତାହାର ହୋଇଲେ
ସମାଜ ହୋଇବ ରକ୍ଷା ।୩।
ଖତ, ଲାଞ୍ଚ, ମିଛ ଆଦିର ପ୍ରପଞ୍ଚ
ପ୍ରସରିଛି ସମାଜରେ
ସେଥିରୁ ନିବୃତ୍ତି ଲଭିବା ପ୍ରବୃତ୍ତି
ସଦା ଜାଗୁ ଅନ୍ତରରେ ।୪।
ଯୌତୁକ ରାକ୍ଷସ ପ୍ରଭାବରେ ଦେଶ
ବଧୂ ପାଏ ନିର୍ଯ୍ୟାତନା
ହୋଇ ଏକତ୍ରିତ ତାର ଦୂରୀଭୂତ
ଆଗଭର ହୁଅ ସିନା ।୫।
ଶିକ୍ଷା, ରାଜନୀତି ଲକ୍ଷ୍ୟ ହୀନ ଅଟି
ତାକୁ ସଜାଡ଼ିବା ପାଇଁ
ଯୁବକ ଗୋଷ୍ଠୀର ସଂଗ୍ରାମ ମାଧ୍ୟମ
ଆସ ଅଗ୍ରସର ହୋଇ ।୬।
ଆହେ ଯୁବଗୋଷ୍ଠୀ ! ହୁଅରେ ଏକାଠି
ଜାଗି ଉଠ ଏହିଠାରୁ,
ଆଗେଇ ଯିବାକୁ ସଜାଅ ନିଜକୁ
ଉତ୍ସାହ ଆସୁ ଅନ୍ତରୁ ।୭।
ଏହିପରି କେତେ ଅନ୍ୟାୟ ଅନୀତି
ବ୍ୟାପି ଅଛି ସବୁଠାରେ
ସେସବୁ ମୂଳରୁ କର ଉତ୍ପାଟନ
ଶାନ୍ତି ବିରାଜୁ ସଂସାରେ ।୮।
ଜାତୀୟ ବିଧାନ କରନ୍ତି ବୟାନ
ଗୁରୁଚିଦାନନ୍ଦ ସ୍ୱାମୀ
ତାକୁ ଆମ୍ଭେମାନେ ପାଳନ କରିଲେ
ଦେଶ ହେବ ଅଗ୍ରଗାମୀ ।୯।
ଆହେ ଯୁବଗୋଷ୍ଠୀ ! ଦେଇ ଶୁଭ ଦୃଷ୍ଟି
ଏହାକୁ ରଖିବ ମନେ
ପିତା, ମାତା, ଶାଶୁ, ଶ୍ୱଶୁରଙ୍କୁ କେବେ
ନ ମଣିବ ନ୍ୟୂନପଣେ ।୧୦।
ଯେଣୁ ସେ ଅଟନ୍ତି ଜୀବନ୍ତ ଈଶ୍ୱର
ତାଙ୍କରି ସେବା କରିବ,
ସେମାନେ ସନ୍ତୋଷ ଲଭିଲେ ନିଶ୍ଚୟ
ଭବକଷ୍ଟ ଦୂର ହେବ ।୧୧।
ତାଙ୍କରି ଅଭାବେ ତୁମରି ଏ ଭବେ
ସ୍ଥିତି ଥିଲା କି ସମ୍ଭବ ?
ତେଣୁ ତାଙ୍କ ପ୍ରତି ଜଣାଇ ପ୍ରଣତି
ପାରି ହୁଅ ଭବନାବ ।୧୨।
ଗୁରୁ ଶିବାନନ୍ଦ ଦେଇ ଆଶୀର୍ବାଦ
କରନ୍ତୁ ତୁମ୍ଭ ମଙ୍ଗଳ,
ଚିଦାନନ୍ଦ କୃପା ହେଉ ତବ ଭିକ୍ଷା
ମନକୁ କରି ନିର୍ମଳ ।୧୩।
ନିଜେ ହୋଇ ଭଲ ଶୁଭ କର୍ମଫଳ
ସଦାବେଳେ ଲଭୁଥାଅ,
ତାଙ୍କରି ପ୍ରସାଦେ ଏହି ଧରା ମଧ୍ୟେ
ଚିରାୟୁ ଯଶସ୍ୱୀ ହୁଅ ।୧୪।
ଆହେ ବିଶ୍ୱପତି ! ଅଗତିର ଗତି
ଏତିକି ସୁଦୟା ହେଉ,
କୃପା କର ବାରେ ଯୁବଗୋଷ୍ଠୀ ପରେ
ଭବିଷ୍ୟ ଉଜ୍ଜ୍ୱଳ ହେଉ ।୧୫।

## ଅତିଥି

ଜଣା ବା ଅଜଣା ନୂଆଁ ବା ପୁରୁଣା
ଆସି ପହଞ୍ଚିଲେ ଘରେ,
ତାହାଙ୍କୁ ଅତିଥି ବୋଲି ମନେ ଚିନ୍ତି
ରହିବ ତାଙ୍କ ସେବାରେ ।୧।

ଯିଏ ଯେତେବେଳେ ଆସନ୍ତି ଅକାଳେ
ଘରକୁ ପ୍ରବେଶ କରି,
ତାଙ୍କୁ ଆମ୍ଭେମାନେ ଅତି ସନମାନେ
ମାନିବା ଆଦର କରି ।୨।

ଅସମୟେ ଯେହୁ ଆସନ୍ତି ଘରକୁ
ସେହି ଅଟନ୍ତି ଅତିଥି
ତାଙ୍କ ଆଗମନେ ବର୍ଷ, ମାସ, ଦିନ
କେବେ ନ ହୁଏ ପଣତି ।୩।

ତାଙ୍କୁ ପୂଜ୍ୟ ଭାଳି ମାନି ପାର ଯଦି
ମିଳିବ ସୁଫଳ ଅତି,
କେହି କେବେ କେବେ ଆଗନ୍ତୁକ ପ୍ରତି
ନ ଦେଖାନ୍ତି ଭାବଭକ୍ତି ।୪।

ଏହା କିନ୍ତୁ କେହି ନିଜ ମନେ ଚିନ୍ତି
ଟିକେ ଭାବି ନ ପାରନ୍ତି
ତାଙ୍କୁ କିନ୍ତୁ ଚିହ୍ନି ନ ପାରି ତାହାଙ୍କୁ
ଘଉଡ଼ି ଯାଇଁ ଦୁର୍ଗତି ।୫।

ତାଙ୍କୁ ହେୟ ବୋଲି ମନେ ଚିନ୍ତା କରି
ଆଚରୁ ମୂଢ଼ ପ୍ରକୃତି
ଯଦି ସମାଦର କରି ସୁବିଗ୍ଭର
କରିବ ତାଙ୍କୁ ତୃପତି ।୬।

ଏହା ଯେ ନିଶ୍ଚିତ ନିରାଟ ଏ ସତ୍ୟ
ନାହିଁ ଦ୍ୱିଧାଟି ଏଥିରେ,
ଅତିଥିଙ୍କ ସେବା ପାଇଁ ମନ ଦେଇ
କରି ଥିବ ଆନନ୍ଦରେ ।୭।

ଅତିଥି ଈଶ୍ୱର ଏକ ବୋଲିବାର
ରହିଛି ସର୍ବଥା ଜାଣ
ମନକୁ ନିର୍ମଳ ନ କରି ଦୁର୍ବଳ
ନିଜକୁ କରିବ ଧନ୍ୟ ।୮।

ଭକ୍ତା ଶ୍ରୀ ଶବରୀ ଯୁଗ ଯୁଗ ଧରି
ଗ୍ଭହିଥିଲେ ରାମ ପଥ,
ଦଶରଥ ସୁତ ରଘୁକୁଳ ନାଥ
ସ୍ୱୟଂ ହେଲେ ଉପସ୍ଥିତ ।୯।

ଅତି ସରାଗରେ କୋଳି ରଖି ଘରେ
ସଞ୍ଚି ଥିଲା ତାଙ୍କ ପାଇଁ,
ଗୋଟି ଗୋଟି କରି ନିଜେ ଗ୍ଭଖି କରି
ଦେଲା ରାମଙ୍କୁ ଖୁଆଇ ।୧୦।

ଏପରି ଘଟଣା ପୁରାଣେ ବର୍ଣ୍ଣନା
କରନ୍ତି ସନ୍ଥ ତୁଳସୀ
ଏପରି ପବିତ୍ର ଗାଥାଟି ଅନ୍ୟତ୍ର
ନାହିଁ ଗ୍ରନ୍ଥରେ କୌଣସି ।୧୧।

ପୁରାଣ ବର୍ଣ୍ଣିତ ବିଦୁର ଚରିତ
କୃଷ୍ଣ ଅତିଥି ରୂପରେ,
ଖାଇ ଶାଗ ଭାତ ହୋଇଲେ ତୃପତ
ଏଡ଼ି କୌରବ ସଭାରେ ।୧୨।

ଅତିଥି ସତ୍କାର ପାଇଁ କର୍ଣ୍ଣବୀର
ପତିପତ୍ନୀ ସ୍ୱହସ୍ତରେ,
ତାଙ୍କ ଅଳିଅଳ ରାଜକୁମାରର
ହତ୍ୟା କଲେ ଆନନ୍ଦରେ ।୧୩।

ଅତିଥିଙ୍କ ସେବା ମାଧବଙ୍କ ସେବା
ବୋଲି ଜଗତେ ପ୍ରଖ୍ୟାତ
ଏଣୁ ହେ ସୁଜନେ ! ରଖି ଥାଅ ମନେ
ନ ଛାଡ଼ିବ ନିଜ ପଥ ।୧୪।

ଅତିଥି ସନ୍ତୋଷ ଲଭିଲେ ବିଶେଷ
ତାଙ୍କ ସୁଦୟା ଲଭିବ
ଏ ଭବସାଗରେ ଦୁଃଖ ଜଞ୍ଜାଳରେ
ଦୁଃଖ କଷ୍ଟ ଦୂର ହେବ ।୧୫।

-o-

# ଦିବ୍ୟ ଚେତନା

## ଗୁରୁ

ଗୁରୁ ଯେ ଅଟନ୍ତି ମହାନ,
ନ ଥାଏ ତାଙ୍କ ଅଭିମାନ ।୧।
କ୍ରୋଧ ତାଙ୍କଠୁ ଥାଏ ଦୂରେ,
ସଦା ସର୍ବଦା ସ୍ନେହ ଭରେ ।୨।
ଦୟାଳୁ ତାଙ୍କର ସ୍ୱଭାବ,
ପ୍ରସାରି ଥାଏ ସର୍ବ ଠାବ ।୩।
କ୍ରୋଧକୁ କଲେ ଅବରୋଧ,
ନ ଘଟେ କେବେହେଁ ପ୍ରମାଦ ।୪।
ଗୁରୁ ଅଟନ୍ତି କ୍ଷମାଶୀଳ,
ସର୍ବେ ଏ କଥା ମନେ ଭାଳ ।୫।
ଗୁରୁ ଲଭିବେ ଯେବେ ତୋଷ,
ନକ୍ସେ ଲଭିବ ସୁଆଶିଷ ।୬।
ଏଣୁ ଗୁରୁଙ୍କୁ ସଦା ପୂଜ,
ତାଙ୍କ ନାମକୁ ହୃଦେ ଭଜ ।୭।
ଗୁରୁଙ୍କ ଆଶିଷ ଲଭିଲେ,
ଭୂଖଣ୍ଡ ଜିଣି ପାର ହେଲେ ।୮।
ଗୁରୁଙ୍କ ଆଜ୍ଞା ସଦା ପାଳି,
ତାଙ୍କ ମନ୍ତ୍ରକୁ ଜପା ମାଳି ।୯।
କରି ପାରିଲେ ନିରନ୍ତର,
ଭବସାଗରକୁ ହେବ ପାର ।୧୦।
ଗୁରୁକୃପାରେ ମୋକ୍ଷ ପ୍ରାପ୍ତି,
ନିଶ୍ଚେ ଲଭିବ ନିତ୍ୟ ଶାନ୍ତି ।୧୧।
ଗୁରୁ ଗୋବିନ୍ଦ ନୁହେଁ ଭିନ୍ନ,
ଗୁରୁ ସାକ୍ଷାତେ ଭଗବାନ ।୧୨।
ଏହି ଧାରଣା ସଦା ରଖ,
ଉନ୍ନତ କର ଗୁରୁ ଟେକ ।୧୩।

-୦-

## ନାରୀ

ନୁହେଁ ଯେ କାହାରି ଅରି ସେହି ଅଟେ ନାରୀ,
ସଦା ସେ ଅଟେ ସର୍ବ ମଙ୍ଗଳକାରୀ ।୧।
ନାରୀ-ମା ରୂପେ ମହାନ ଧରାରୁ ଆହୁରି,
କୋଳରେ କରେ ଧାରଣ କଷ୍ଟ ସହ୍ୟ କରି ।୨।
ଦୁଃଖ ଦୁର୍ଦ୍ଦଶାର ବେଳେ କିଏ ତାହା ପରି ?
ନିଷ୍କପଟେ ପାଳେ ସଦା କାମଧେନୁ ପରି ।୩।
ଖାଦ୍ୟ, ପେୟ, ସ୍ନେହ, ଶ୍ରଦ୍ଧା ଯୋଗାଏ ସବୁରି,
ଜନନୀ, ଭଗିନୀ, ଜାୟା ରୂପେ ଅବତରି ।୪।
ଏହି କଥା ସଦା ବେଳେ ମନରେ ସୁମରି,
ତାଙ୍କ ରକ୍ଷା, ସେବା କଥା ମନରେ ବିଚାରି ।୫।
ତାଙ୍କ ପ୍ରତି ଯଥୋଚିତ ଭକ୍ତିଭାବ ଭରି,
ପାରିଲେ ଲଭିବା ନିଶ୍ଚେ ସନ୍ତୋଷ ତାଙ୍କରି ।୬।
ତାହା ହେବ ଭବିଷ୍ୟତ ପାଥେୟ ଆମରି,
ଏଣୁ ଆହେ ସୁଜ୍ଞଜନେ ! ଏହାକୁ ବିଚାରି ।୭।
ଆପ୍ରାଣ ପ୍ରଚେଷ୍ଟା କର ସମାଦର କରି,
ବିଶେଷତଃ ବୃଦ୍ଧା ବେଳେ ସେବାଯତ୍ନ କରି ।୮।
ନିଜକୁ ସୌଭାଗ୍ୟଶାଳୀ କର ନରନାରୀ,
ଯେଣୁ ସେ ଅଟନ୍ତି ଲକ୍ଷ୍ମୀ ପ୍ରତିମା ସୁନ୍ଦରୀ ।୯।
ସେ ହସିଲେ ହସିବ ଏହି ଧରାଟି ଆମରି,
ଗାଅ ଲକ୍ଷ୍ମୀ, ସରସ୍ୱତୀ, ନାରାୟଣୀ ସ୍ମରି ।୧୦।
ନିଶ୍ଚେ ଲଭିବା ଆନନ୍ଦ ସର୍ବେ ମନ ଭରି,
ସାରା ବିଶ୍ୱରେ ଖେଳିବ ଆନନ୍ଦ ଲହରୀ ।୧୧।
ସେଖୀ ହେବ ମାନବ ଆଶିଷେ ତାଙ୍କରି,
ଏଥିରେ ସଂଶୟ ନାହିଁ ତିଳେ ବି କାହାରି ।୧୨।
ଜୟ ମା ଜୟ ମା ସଦା ଗାଅ ମନ ଭରି,
ଭବ ସାଗରୁ ନିଶ୍ଚେ ସୁଖେ ହେବ ପାରି ।୧୩।

-୦-

## ଆହେ ଭଗବାନ

ଆହେ ଭଗବାନ  କରେଁ ନିବେଦନ
ସୁଖରେ ଦିଅ ମରଣ,
ଜୀବ ଗଲା ବେଳେ  ଜଣେ କେହି ହେଲେ
ନ ଲଭୁ ଦୁଃଖ କଷଣ ।୧।
ଲଭିଲେ ଜନମ  ନିଶ୍ଚୟ ମରଣ
ଅଟେ ବିଧାନ ବିଧିର,
ସଦା ଆମ୍ଭେମାନେ  ରଖି ଏହା ମନେ
ନ ହେବା କେବେ ଅଧୀର ।୨।
ପଞ୍ଚ ମହାଭୂତ  ହୋଇ ଏକତ୍ରିତ
ଗଠିତ ଏହି ଶରୀର,
ଶରୀରରୁ ଶ୍ୱାସ  ହୋଇଲେ ନିଷ୍କାସ
ଶବ ନାମରେ ବିଗ୍ରର ।୩।
ଶବାଧାର ଯୋଗେ  ସଜାଇ ଆବେଗେ
ନେଇ ଯାନ୍ତି ଶ୍ମଶାନକୁ,
ପରିବାରଜନେ  ବନ୍ଧୁ ସାଥୀମାନେ
ଥାନ୍ତି ସାନ୍ତ୍ୱନା ଦେବାକୁ ।୪।
ଏଣୁ ହେ ମାନବ !  ମନେ ରଖିଥିବ
ଏ ଜୀବନ କ୍ଷଣସ୍ଥାୟୀ,
ଜୀବ ଗଲେ ଗଲା  ସବୁ ଶେଷ ହେଲା
କେହି କାହାର ନୁହଇ ।୫।
ଜନମିଲା ବେଳେ  କେହି ଜଣେ ହେଲେ
କିଛି ନ ଆଣେ ସାଙ୍ଗରେ,
ମଲାବେଳେ ମଧ  ନ ରହିବ ସାଧ
କିଛି ନେବାକୁ ସାଥୀରେ ।୬।

ଏ ମାୟା ସଂସାର  ଅଟେ ଖେଳଘର
ସତ୍ୟ ମନେ ରଖିଥାଅ,
ହରି ନାମ ଘୋଷ  କରନା ଭାବନା
କେବେ ହତାଶ ନ ହୁଅ ।୭।
ଏ ମର ଶରୀର  ହେବ ନାରଖାର
ପ୍ରକୃତି ନିୟମ ବଳେ,
ପ୍ରଭୁ ଦୟାମୟ  ନୁହନ୍ତି ନିର୍ଦ୍ଦୟ
ପ୍ରଣାମ ଚରଣ ତଳେ ।୮।
ମରିବା ସମୟ  ଅଟେ ଦୁଃଖମୟ
ସମସ୍ତେ ଏହା ଜାଣନ୍ତି,
ପ୍ରଭୁ ନାମ ଧରି  ଗୁରୁଙ୍କୁ ସୁମରି
ପାଇବା ନିଶ୍ଚୟ ମୁକ୍ତି ।୯।
ଏଣୁ ସଦାକାଳେ  ମନେ ରଖିଥାଇ
ବିଭୁନାମ ଘୋଷୁଥାଅ,
ତାଙ୍କରି ଦୟାରେ  ତାଙ୍କ ଶ୍ରୀପୟରେ
ମନକୁ ସମର୍ପି ଦିଅ ।୧୦।
ଗୁରୁଙ୍କ ଆଶିଷ  ଲଭିବାକୁ ଆଶ
ରଖିଥାଅ ନିରନ୍ତର,
କୃପାରେ ତାଙ୍କର  ଏ ଭବ ସାଗର
ସୁଖେ ହୋଇଯିବ ପାର ।୧୧।
ହରି ଓଁ ହରି ଓଁ  ସଦା ବୋଲୁଥାଅ
ତାହାଙ୍କର ପ୍ରଭାବରେ,
ଏ ଭବସାଗର  ନ ହେବ ଦୁସ୍ତର
ଗୁରୁ ଗୋବିନ୍ଦ କୃପାରେ ।୧୨।

-o-

## ଯେ ପ୍ରଭୁ

ଯେ ପ୍ରଭୁ ବ୍ରହ୍ମାଣ୍ଡ କରତା,
ଅଟନ୍ତି ମୋର ପ୍ରାଣଦାତା;
ଯାହାଙ୍କ କରୁଣା ଅପାର
ତାହାଙ୍କ ପଦେ ନମସ୍କାର ।୧।
ପିତା ମାତାଙ୍କ ଯତନରେ
ବଢ଼ିଲି ଅତି ଆନନ୍ଦମେ,
ନାହିଁ ତାର ପଟାନ୍ତର
ତାହାଙ୍କ ପଦେ ନମସ୍କାର ।୨।
ଗୁରୁଙ୍କ କୃପା ପ୍ରଭାବରେ
ଅଜ୍ଞାନ ଦୂର ହୁଏ ଖରେ,
ହୃଦେ ପୂରଇ ଜ୍ଞାନ ସାର,
ସେ ଗୁରୁ ପଦେ ନମସ୍କାର ।୩।
ଜନ୍ମଭୂମିରେ କରି ବାସ,
ଲଭି ପବନ, ପାଣି, ଗ୍ରାସ;
ଶୁଣିଲି କୀରତି ଯାହାର
ସେ ଦେଶ ପଦେ ନମସ୍କାର ।୪।
ସରବେ କୃପା କର ବାରେ
ହୁଏ ମୁଁ ଆଦର୍ଶ ସଂସାରେ ।୫।

-o-

## ଆହେ ଜଗନ୍ନାଥ

ଆହେ ଜଗନ୍ନାଥ ! ବିଶ୍ୱ ନିୟନ୍ତା,
ତୁମେ ସାରା ବିଶ୍ୱ ସୃଷ୍ଟିକରତା । ।୧।
ତୁମର ବିନା କେହି ଏ ଜଗତେ
ଚଳି ପାରଇ ନିଜ ଇଚ୍ଛା ମତେ । ।୨।
ସର୍ବେ ତୁମ୍ଭ ନିୟମରେ ଚାଳିତ,
କାହାରି ନାହିଁଟି ନିଜ ଆୟତ୍ତ । ।୩।
ତୁମ ଆଦେଶରେ ଗ୍ରହ ତାରକା,
ଭ୍ରମୁଛନ୍ତି ନିଜ ପଥରେ ଏକା । ।୪।
ତୁମ କୃପାରେ ମରୁତ ବହଇ,
ସୂର୍ଯ୍ୟ କିରଣ ରାଜି ପ୍ରକାଶଇ । ।୫।
ମେଘ ବରଷା କରଇ ପ୍ରଦାନ,
ପୃଥିବୀ-ମାତା କରେ ଶସ୍ୟ ଉତ୍ପନ୍ନ । ।୬।
ଦେବା ଦେବୀ ସବୁ ରୂପ ତୁମରି,
ପୂଜା ଅର୍ଚ୍ଚନା ଭକତି ପ୍ରସରି । ।୭।
କର ଉଚିତ ସମ୍ମାନ ପ୍ରଦାନ,
ତବେ ନ ରହିବ ଦୁଃଖ କଷଣ । ।୮।
ଏଣୁ ଆସ ସର୍ବେ ମିଳି ପ୍ରାର୍ଥନା,
ଗୁରୁ-ବିଭୁ ପାଦେ କରି ଅର୍ଚ୍ଚନା । ।୯।
ମନେ ଭରି ଦେବା ଭକ୍ତି ସ୍ୱଭାବ,
ପୂଜିବା ଦେଖ ସର୍ବ ଦେବୀଦେବ । ।୧୦।
ଭବ ମାୟା କଷ୍ଟ ଦୂର ହୋଇବ,
ଏହା ନିଶ୍ଚିତ ଅଟଇ ଭୋଦେବ । ।୧୧।

-୦-

## ରେ ଭୁଲାମନ

ରେ ଭୁଲା ମନ ! ରେ ବାୟା ମନ !
କାହିଁକି ହେଉ ଛନ ଛନ । ରେ ଭୁଲା... ଘୋଷା
ନ ଭାବିଲୁ କେବେ ଦିନେ, ଜୀବ ଧାରଣ କାରଣ,
କେଉଁଠାରୁ ଆସିଅଛୁ ? ନ ଜାଣୁ ଫେରିବା ସ୍ଥାନ । ୧-ରେ ଭୁଲା ମନ...
ବିରାଜିତ ତୋ ଶରୀରେ ଆତ୍ମାରାମ ନିରଞ୍ଜନ,
ତାଙ୍କୁ ଚିହ୍ନିବାକୁ କେବେ, ନ ଭାଳିଲୁ କିଛି କ୍ଷଣ । ୨-ରେ ଭୁଲା ମନ...
ଜୀବନ ଧାରଣ ଅଟେ ମନେ ରଖ ମୂଲ୍ୟହୀନ,
ଜନ-ସେବା ଅର୍ଥେ ଯଦି ତାହା ନୁହେଁ ପ୍ରୟୋଜନ । ୩-ରେ ଭୁଲା ମନ...
ମାନବ ସେବା ଅଟଇ ମାଧବ-ସେବାଟି ଜାଣ,
ସେମାନେ ସନ୍ତୋଷ ହେଲେ ଜୀବନ ହୋଇବ ଧନ୍ୟ । ୪-ରେ ଭୁଲା ମନ...
ସେବା, ପ୍ରେମ, ପବିତ୍ରତା, କରି ସାଧ୍ୟମତେ ଦାନ,
ଏକାଗ୍ରତା, ଧ୍ୟାନ ଦ୍ୱାରା ମୁକ୍ତିରସ ଆସ୍ୱାଦନ । ୫-ରେ ଭୁଲା ମନ...
ଭଲ ହୋଇ, ଭଲ କାମ କରିବା ଧର୍ମ ପାଳନ,
ପରି-ଶେଷରେ ଲଭିବ ଦିବ୍ୟାନନ୍ଦ ସୁଧାପାନ । ୬-ରେ ଭୁଲା ମନ...
ଶିବାନନ୍ଦ, ଚିଦାନନ୍ଦ ପ୍ରଚେଷ୍ଟା କରି ଆପ୍ରାଣ,
ଦିବ୍ୟ ଜୀବନର ବାର୍ତ୍ତା, ସର୍ବଥା କଲେ ପ୍ରେରଣ । ୭-ରେ ଭୁଲା ମନ...
ବିଶ୍ୱ ବ୍ରହ୍ମାଣ୍ଡରେ ଖ୍ୟାତ ସେମାନେ ଅଟନ୍ତି ଜାଣ,
ତେଣୁ ସେହି ଆଦର୍ଶକୁ କରିବା ଆମେ ପାଳନ । ୮-ରେ ଭୁଲା ମନ...
ମନକୁ କଲେ ଆୟତ୍ତ ସଦ୍‌ଗୁଣ ହେବ ବର୍ଦ୍ଧନ,
ଲଭିବ ଶେଷରେ ନିଶ୍ଚେ ମୋକ୍ଷ-ମାର୍ଗର ସନ୍ଧାନ । ୯-ରେ ଭୁଲା ମନ...
ଏହା ନେଇ ଯିବ ଆପେ ମୁକ୍ତିର ଉଚ୍ଚ ସୋପାନ,
ହରି ଓଁ, ହରି ଓଁ ମନେ ସଦା କର ଉଚ୍ଚାରଣ । ୧୦-ରେ ଭୁଲା ମନ...

-୦-

ଜଣେ ଶିକ୍ଷକ...

## ଆହେ ନୀଳାଚଳ ବିହାରୀ

ଆହେ ନୀଳାଚଳ ବିହାରୀ !

ଶଙ୍ଖ, ଚକ୍ର, ଗଦା, ଆୟୁଧ ଧାରୀ । ଆହେ... ଘୋଷା

ବଡ଼ ଭାଇ ସାନ ଭଉଣୀଙ୍କ ସଙ୍ଗେ ରତ୍ନ ସିଂହାସନ ଅଛ ଆବୋରି,
ଷାଠିଏ ପଉଟି ଭୋଗ ଖାଉଅଛ, ଆନନ୍ଦ ବଜାର ଯାଉଛି ଭରି । ।୧। ଆହେ...
ଲକ୍ଷେ ଯୋଜନରୁ ଗଜ ଡ଼ାକ ଦେଲା ଚକ୍ର ପେଶି ନକ୍ର ସଂହାର କରି,
ଭକତଜନଙ୍କ ଡ଼ାକ ଶୁଣିବାକୁ ସଦାବେଳେ କାନ ରଖିଛ ଢ଼େରି । ।୨। ଆହେ...
ଭକତିର ସହ ଶ୍ରୀଫଳ ପଠାଇ ଭାବିଲା ମନେ ଦାସିଆ ବାଉରୀ,
ତାହା ମନ ଜାଣି ପ୍ରଭୁ ଚିନ୍ତାମଣି ନେଲ ଶ୍ରୀଫଳକୁ ହସ୍ତ ପ୍ରସାରି । ।୩। ଆହେ...
କୃଷ୍ଣ ଅବତାରେ ବାଲୁତ କାଳରେ କରିଥିଲ ପରା ଲବଣୀ ଚୋରୀ ?
ଗୋପୀଜନ ମନ ପରଖିବା ପାଇଁ କରିଥିଲ ତାଙ୍କ ବସନ ଚୋରୀ । ।୪। ଆହେ...
ଶ୍ରୀରାଧା ସାନ୍ନିଧ ପାଇବା ପାଇଁ କି ଧରିଥିଲ ବେଶ ବୁଢ଼ା ନାଉରୀ,
ଯମୁନା ଜଳକୁ ଶୁଖାଇ ଦେଲ ହେ ! କଲ ନାବକେଳି ମୁରଲୀଧାରୀ ।।୫। ଆହେ...
ସୁଗ୍ରୀ, ବିଭୀଷଣ ସଙ୍ଗେ ମିତ୍ରପଣ ଫେରାଇଲ ତାଙ୍କ ରାଜୁତି ଶିରୀ,
ମୋ ଉପରେ ପ୍ରଭୁ ଦୟାକର ବାରେ ରହି ଅଛି ସଦା ତୁମ୍ଭଙ୍କୁ ସ୍ମରି । ।୬। ଆହେ...
ବାଙ୍କ ବିହାରୀ, ରାଧା-ପ୍ରାଣେଶ୍ୱର, କୁଞ୍ଜବିହାରୀ, ଆଉ କେତେ ନାମ ଅଛି ତୁମରି,
ଶ୍ରୀ ହରି, ଶ୍ରୀ ହରି, ନାମ ଉଚ୍ଚାରି, ଦିନ ମୋର ସବୁ ଯାଉଟି ସରି । ।୭। ଆହେ...

-o-

## ହେ ନାରାୟଣ

ହେ ନାରାୟଣ ! ପଶୁଛି ତୁମ୍ଭ ଶରଣ,
ପାପୀ, ତାପୀ ତାରିବାକୁ ପ୍ର କରିଛ ତିଆଣ । ହେ...
ଗୋପୀ ଗୋପାଳଙ୍କ ମେଳେ, ସଖା ସଙ୍ଗୀ କୌତୁହଳେ,
ଯମୁନା ନଦୀର କୂଳେ କଲ ଗୋବତ୍ସ ଚାରଣ । ହେ... ।୧।
ଭକତର ଡ଼ାକ ଶୁଣି, ଆହେ ପ୍ରଭୁ ଚକ୍ରପାଣି
ଚକ୍ର ପେଶୀ ବ୍ୟାଧ ନାଶି ରଖିଲ ହରିଣି ପ୍ରାଣ । ହେ... ।୨।
କୁରୁପତି ସଭା ତଳେ, ଦ୍ରୌପଦୀ ଆପଦ କାଳେ
ଭକତର ଡ଼ାକ ଶୁଣି କୋଟି ବସ୍ତ୍ର କଲ ଦାନ । ହେ... ।୩।
ଆହେ ପ୍ରଭୁ ବ୍ରଜରାଜ, କୌତୁକିଆ ନଟରାଜ,
ଇନ୍ଦ୍ର ଦର୍ପ ଭାଙ୍ଗିବାକୁ ଟେକିଥିଲ ଗୋବର୍ଦ୍ଧନ । ହେ... ।୪।
ପାଣ୍ଡବ କୌରବ ମଧ୍ୟେ କୁରୁକ୍ଷେତ୍ର ଧର୍ମଯୁଦ୍ଧେ,
ଆଦରିଲ ସ୍ୱଇଚ୍ଛାରେ ଅର୍ଜୁନ ସାରଥୀ-ପଣ । ହେ... ।୫।

ଜଣେ ଶିକ୍ଷକ...

ଅଟ କେଡ଼େ ମହାୟାନ, ନାହିଁ ମୋର ଜ୍ଞାନ, ଧ୍ୟାନ,
ଜାଣେ ନାହିଁ ସ୍ତବ, ସ୍ତୋତ୍ର, ଅଟେ ମୁହିଁ ଅକିଞ୍ଚନ । ଆହେ... ।୬।
ହୃଦୟକୁ ଖୋଲି ମୋର, ପଢୁଛି ତୁମ୍ଭ ପୟର,
ମାଗୁ ଅଛି ଖାଲି ତବ ଶୁଭ ଆଶିଷ ସିଞ୍ଚନ । ଆହେ... ।୭।
ପ୍ରଭୁ ତୁମରି କୃପାରେ, ପଙ୍ଗୁ ଗିରି ଲଘି ପାରେ,
ଏହିପରି ଘଟିଅଛି କେତେ କେତେ ସୁଘଟନ । ଆହେ... ।୮।
ଭକତ ବତ୍ସଳ ହରି ! ପାପୀ ଅଜାମିଳ ତାରି,
କଲା ଯେବେ ପୁତ୍ର ନାମ, ନାରାୟଣ-ଉଚ୍ଚାରଣ । ଆହେ... ।୯।
ପ୍ରଭୁବାରେ ଦୟା କର, ଭବସାଗରୁ ଉଦ୍ଧର,
ତୁମ୍ଭର ଶ୍ରୀପଦ୍ମ ପାଦେ ସଦା ଥାଉ ମୋର ମନ । ଆହେ... ।୧୦।

-o-

## ଆହେ ପ୍ରଭୁ ଚକ୍ରଧର

ଆହେ ପ୍ରଭୁ ଚକ୍ରଧର !
ମୋ ଉପରେ ପ୍ରଭୁ ସୁଦୟା କର,
ହେ ବଂଶୀଧର ! ଭବସାଗରୁ କରହେ ପାର । ।୧। ହେ ବଂଶୀଧର...
ଆହେ ପ୍ରଭୁ ଚକାଡ଼ୋଳା !
ପାପୀ ତାରିବାକୁ ବାନ୍ଧିଛ ଭେଳା,
ହେ ନନ୍ଦ ବଳା ! ଜପୁ ନାମ ଅଛି ମାଳା । ।୨। ହେ ବଂଶୀଧର...
ଆହେ ପ୍ରଭୁ କଳାମୁଖ !
ମୋ ଉପରେ ପ୍ରଭୁ ସୁଦୟା ରଖ,
ହେ ପଦ୍ମମୁଖ ! ସଦା ରଖିଛ ଭକ୍ତର ଟେକ । ।୩। ହେ ବଂଶୀଧର...
ଆହେ ପ୍ରଭୁ ବନମାଳୀ !
ଯମୁନା ତୀରରେ ରଚିଲ କେଳି,
ହେ ଶିଖିଚୂଳୀ ! ମୋର ପାଇଁ କନ୍ଦୁଅନି ଅଳି । ।୪। ହେ ବଂଶୀଧର...
ଜଗତର ନାଥ ତୁମେ !
ସଦା ରହି ଥାଅ ଗୋଲକ ଧାମେ,
ହେ ବିଷ୍ଣୁ ନାମେ ! ବୁଡ଼ି ରହିଛି ତୁମରି ନାମେ । ।୫। ହେ ବଂଶୀଧର...
ଆରତ ଭଞ୍ଜନ ହରି !
ଡ଼ାକି ଡ଼ାକି ପ୍ରଭୁ ଗଲିଣି ସରି,
ହେ ଗିରିଧାରୀ ! ଥରେ ଶୁଣ ଭକ୍ତର ଗୁହାରୀ । ।୬। ହେ ବଂଶୀଧର...

ଜଣେ ଶିକ୍ଷକ...

ମଥୁରାରେ ଜନ୍ମ ହୋଇ,
ଗୋପପୁରରେ ବଢ଼ିଲ ଯାଇ,
ହେ କଳା କହ୍ନାଇ ! ନିଜ କୃତ ମାୟାରେ ଭୁଲାଇ । ।୭। ହେ ବଂଶୀଧର...
ପତିତ ପାବନ ବାନା !
ଉଡୁଅଛି ପ୍ରଭୁ ଜଗତେ ସିନା,
ହେ ନନ୍ଦରକାହ୍ନା ! ସଦାବେଳେ କରୁଛି ପ୍ରାର୍ଥନା । ।୮। ହେ ବଂଶୀଧର...
ଆହେ ପ୍ରଭୁ ନାରାୟଣ !
ସବୁ ପ୍ରାଣୀଙ୍କର ଗତିକାରଣ,
ହେ ଆରତତ୍ରାଣ ! ପାଦ ତଳେ ପଶୁଛି ଶରଣ । ।୯। ହେ ବଂଶୀଧର...
ବିଶ୍ୱପତି ଭଗବାନ !
ସାରା ବ୍ରହ୍ମାଣ୍ଡକୁ କର ପାଳନ,
ହେ ଯଦୁ ନନ୍ଦନ ! ଅଟ ସଦା ଦୟାର ବିଧାନ । ।୧୦। ହେ ବଂଶୀଧର...
ଆହେ ବ୍ରହ୍ମାଣ୍ଡ କରତା !
ସବୁ ପ୍ରାଣୀଙ୍କର ଭାଗ୍ୟନିୟନ୍ତା,
ହେ ସୃଷ୍ଟିକର୍ତ୍ତା ! ମୋର ମନରୁ କଟୁ ଦୁଶ୍ଚିନ୍ତା । ।୧୧। ହେ ବଂଶୀଧର...

-୦-

## ବଡ଼ଦିନ

ଡ଼ିସେମ୍ବର ମାସେ ଚାରିଖ ପଚିଶ
କୁହାଯାଏ ବଡ଼ଦିନ ।
ଖ୍ରୀଷ୍ଟିଆନ ଜନ ଯୀଶୁ ଜନ୍ମଦିନ
ବୋଲି କରନ୍ତି ପାଳନ । ।୧।
ଦିନର ମହାତ୍ମ୍ୟ ବଡ଼ ପ୍ରକୃତରେ
ଖ୍ରୀଷ୍ଟଧର୍ମର କାରଣ ।
ଭୂଗୋଳ ମତରେ ତାକୁ ଗଣିବାରେ
ଛୋଟ ଦିନ ବୋଲି ଜାଣ । ।୨।
ସାରା ପୃଥିବୀରେ ଖ୍ରୀଷ୍ଟ ସମାଜରେ
ପାଳନ୍ତି ଉତ୍ସବ ଏହି ।
ସମାରୋହ ବେଳେ ଜାତି ବନ୍ଧୁ ମେଳେ
ଆନନ୍ଦ ନୁହଇ କହି । ।୩।
ନିଜ ଜାତି ଧର୍ମ ନୀତି ଓ ନିୟମ
ନ ଭାଳିବ ଉଚ ନୀଚ ।
ଅନ୍ୟକୁ ମହାନ୍ ଭାବି ପାରେ ମନ
ନ ମଣ ନିଜକୁ ତୁଚ୍ଛ । ।୪।
ସଭିଙ୍କ ଧରମ ପାଳନ କରମ
ଅଟଇ ମହାନ୍ ଚିନ୍ତା ।
ଅନ୍ୟ ଧର୍ମ, ଜାତି ଆଦର୍ଶର ରୀତି
ପାଳି ନ ହୁଅ ହିନସ୍ତା । ।୫।
ଜାତି, ଧର୍ମ ଏକ ବୋଲି ଭାବି ଦେଖ
ବସୁଧାକୁ ଏକ ମଣି ।
ନିଜ ନିଜ ମଧ୍ୟେ ନ ରହି ବିବାଦେ
ବିଶ୍ୱ ପରିବାର ପ୍ରାଣୀ । ।୬।
ସର୍ବେ ଏକ ହୋଇ ମିଳି ମିଶି ରହି
ଏକ ମନ ଥାଏ ଦେହେ ।
ସମସ୍ତ ମାନବ କାୟା, ଅବୟବ
ଏକା ନାଳି ରକ୍ତ ବହେ । ।୭।
ଗଠନ ସମାନ ମନ, ଧ୍ୟାନ, ଆନ
ଯେବେ ମନରେ ଭାବିବ ।
ଏ ଭବସାଗର ହେବ ଛାରଖାର
ଦୁଃଖ, ଅଶାନ୍ତି ଲଭିବ । ।୮।
ସାରା ପୃଥିବୀରେ ଜଳ, ସମୀରରେ
ପଡ଼େ ସୂର୍ଯ୍ୟ, ଚନ୍ଦ୍ରାଲୋକ ।
ଏହି ପୃଥିବୀକୁ ଭୋଗ କରିବାକୁ
ରହିଛି ନିୟମ ଏକ । ।୯।
ଏକା ଦେଶେ ରହି ଏକା ଖାଦ୍ୟ ଖାଇ
ନ କର ମନେ ଦୁଶ୍ଚିନ୍ତା ।
ଏ ଭବସାଗର କରିଦେବେ ପାର
ଏହି ବିଶ୍ୱର ନିୟନ୍ତା । ।୧୦।

-୦-

ଜନତା ଯାହା ଦ୍ୱାରା ନୀତ ବା ସତ୍ ମାର୍ଗରେ ଚାଳିତ ହୁଏ, ଦିତି ବା ବିଭେଦକାରିଣୀ ଶକ୍ତିକୁ ଯାହା ତିରସ୍କାର କରେ, ତାହା ହେଉଛି ମଙ୍ଗଳମୟ ନୀତି ।

ଶିକ୍ଷାନୀତି - ପ୍ରବିଣ ଜୀବନାଦର୍ଶ ହିଁ ସମାଜର ହିତସାଧକ । କର୍ମମୟ ଜୀବନରେ ପ୍ରବେଶ କାଳ ଦିନଠାରୁ ଯିଏ ଶିକ୍ଷକ ରୂପେ ଅତିବାହିତ କରି ମାଧ୍ୟମିକ ଶିକ୍ଷା ପରିଷଦର ବିଶିଷ୍ଟ କର୍ମଚାରୀ ରୂପେ କାର୍ଯ୍ୟକରି ଶିକ୍ଷାଜିଲ୍ଲା ନିରୀକ୍ଷକ ରୂପେ ଜୀବନ ଯାପନ କରି ଯଥାସମୟରେ ଅବସର ଗ୍ରହଣ କରିଛନ୍ତି । ଯାହାଙ୍କର ଗୁଣ ଧର୍ମଗଡ଼ ଶିକ୍ଷାଜିଲ୍ଲା ତଥା ଏ ଅଞ୍ଚଳର ଶିକ୍ଷକମାନଙ୍କ ନିକଟରେ ସୁବିଦିତ, ବିନୟ ସୌଜନ୍ୟ ହେଉଛି ଯାହାଙ୍କର ବିଶେଷତ୍ୱ, ଯେ ନିଜର ସନ୍ତାନସନ୍ତତିମାନଙ୍କୁ ଯଥାର୍ଥ ଉଚ୍ଚ ଶିକ୍ଷାଦାନ ପୂର୍ବକ ସେମାନଙ୍କୁ ସମୁନ୍ନତି ମାର୍ଗ ପ୍ରଶସ୍ତ କରିଛନ୍ତି, ସେହି ସ୍ୱାତ୍ମାନୁସନ୍ଧାନତତ୍ପର ଶ୍ରୀଯୁକ୍ତ ଶଶିଭୂଷଣ ଦାଶ ମହାଶୟ ତାଙ୍କର ଜୀବନୀ ନିଜେ ଆମ୍ଭମାନଙ୍କ ଅନୁରୋଧରେ ଲେଖିଛନ୍ତି । ତାହା ଅବଶ୍ୟ ପଠନୀୟ । ତାହା ପାଠ କଲେ ସୁନିଶ୍ଚିତ ଭାବରେ ବହୁତ ଶିକ୍ଷା ଲାଭ କରାଯାଇ ପାରିବ । ସତ୍ୟସନ୍ଧିତ୍ସୁ ସମୁନ୍ନତକାମୀ ସୁଧୀ ପାଠକବର୍ଗ ତହିଁରୁ ସାର ସଂଗ୍ରହ କରି ନିଜ ନିଜର ଶ୍ରେୟୋବିଧାନ ମାର୍ଗ ନିର୍ଣ୍ଣୟ କରି ପାରିବେ । ଜୀବନୀ ଲେଖକ ଧନ୍ୟବାଦାର୍ହ ।

ବିବେକାର୍କ ପ୍ରଭାଭାତ୍ରୁଃ/ପୟାତୁ ବିଲୟଂ ତମଃ
ଜୟତୁ ସତ୍ୟ ମେବୈକଂ
ମନସି ରାଜତାତ୍ ନମଃ
ଓଁ ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ

ଶ୍ରୀ ଗଙ୍ଗାଧର ଗୁରୁ